## ପୁସ୍ତକ ସମ୍ପର୍କରେ

ମହାଭାରତ ସାତସମୁଦ୍ରଠାରୁ ବିଶାଳ ହେଲେ ଅମର ଚରିତ୍ର କର୍ଣ୍ଣ ତାହା ଭିତରେ ଏକ ବିରାଟ ତିମିଙ୍ଗିଳ । ନାନା ବିଡ଼ମ୍ବନାସମୂହ ମଧ ଦେଇ ଜୀବନରେ ଉଠିଥିବା ଘାତ-ପ୍ରତିଘାତର ଝଞ୍ଜାକୁ ସେ ଯେଉଁପରି ଭାବରେ ସମ୍ମୁଖୀନ ହୋଇଛନ୍ତି ତାହା ଯୁଗ ଯୁଗ ଧରି ଆକୃଷ୍ଟ କରିଆସିଛି ଲେଖକମାନଙ୍କୁ । ଫଳରେ ତାଙ୍କ ଜୀବନ ଚରିତକୁ ନେଇ ସୃଷ୍ଟି ହୋଇଛି ବିଭିନ୍ନ ଭାଷାରେ ଅଗଣିତ ନାଟକ, ଖଣ୍ଡ-କାବ୍ୟ ଓ ଉପନ୍ୟାସ ଆଦି କୃତି ।

ଜନ୍ମିତ ମାତା-ପିତାଙ୍କ ସ୍ନେହରୁ ଚିରବଞ୍ଚିତ ସେ । ପଦେ ପଦେ ସମାଜଦ୍ୱାରା ଉପେକ୍ଷିତ ଓ ଅପମାନିତ । ବାରମ୍ବାର ସମାଜ ଦାବି କରିଆସିଛି ତାଙ୍କଠାରୁ ଜାତିଗତ ଶ୍ରେଷ୍ଠତା । ସ୍ୱୀକୃତି ଦେଇ ନାହିଁ ତାଙ୍କ ପୌରୁଷକୁ । ସେ ଏଭଳି ଅପରାଧ ଲାଗି ଦଣ୍ଡ ଭୋଗିଛନ୍ତି ଯାହା ତାଙ୍କ ନିଜସ୍ୱ କୃତ ନୁହେଁ । ଏପରି ସଂଘର୍ଷମୟ ଓ ବଞ୍ଚିତ ଜୀବନରେ ବ୍ୟକ୍ତିତ୍ୱ ତାଙ୍କର ହୋଇଉଠିଛି ଧୂମିଳ । ସେ ହୋଇଯାଇଛନ୍ତି ଏକାକୀ । ଏଭଳି ଏକାକିତ୍ୱର ଯାତନା ମହାଭାରତରେ ଆଉ କୌଣସି ଚରିତ୍ର ଭୋଗି ନାହାନ୍ତି ।

ତାଙ୍କର ବୈଚିତ୍ର୍ୟମୟ ଓ ସଂଘର୍ଷକ୍ଲିଷ୍ଟ ଜୀବନକୁ ନେଇ ସୃଷ୍ଟ ଏଇ ଉପନ୍ୟାସ 'କର୍ଣ୍ଣ' ଯହିଁରେ କର୍ଣ୍ଣ କେବଳ ଏକ ବ୍ୟକ୍ତି ନୁହନ୍ତି, ବରଂ ଏକ ସାମାଜିକ ସ୍ଥିତି । ଏଇ ସ୍ଥିତିର ଦହନ ଏବେ ମଧ୍ୟ ଅଛି । ତାହାରି ବିରୋଧରେ ଅବିରତ ଯୁଦ୍ଧ ଘୋଷଣା କରୁଥିବା ଏଇ ଉପନ୍ୟାସ ସତେଯେମିତି ଆଜିର ଦଳିତ-ମଥିତ-ବଞ୍ଚିତ କର୍ଣ୍ଣମାନଙ୍କୁ ଦେଉଛି ଅନୁପ୍ରେରଣା, ଜାଗ୍ରତ ହେବାପାଇଁ ! ହୀନମ୍ମନ୍ୟତାର ନିର୍ମୋକକୁ ତ୍ୟାଗ କରିବା ପାଇଁ !!

KARNA
A Novel
by Surendranath Satapathy
Published by Vidyapuri, Cuttack - 753 002

ISBN 81-7411-356-8

ପ୍ରଥମ ପ୍ରକାଶ ଫେବୃୟାରୀ ୨୦୦୧
ଦ୍ୱିତୀୟ ମୁଦ୍ରଣ ଅପ୍ରେଲ ୨୦୦୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୧୯୦.୦୦

## ଏକ

ମୁଁ କର୍ଣ୍ଣ । ମୋ' ପ୍ରିୟ ସଖା ଦୁର୍ଯ୍ୟୋଧନଙ୍କ ପାଇଁ ଅଙ୍ଗରାଜ କର୍ଣ୍ଣ । ପରାଜିତ କ୍ଷତ୍ରିୟ ରାଜା ଓ ଅନ୍ୟାନ୍ୟ ବୀରମାନଙ୍କ ପାଇଁ ମହାବୀର କର୍ଣ୍ଣ । ଯାଚକମାନଙ୍କ ପାଇଁ ଦାନବୀର କର୍ଣ୍ଣ । ପାଣ୍ଡବମାନଙ୍କ ପାଇଁ ସୂତପୁତ୍ର କର୍ଣ୍ଣ । ଖାଲି ତ ପାଣ୍ଡବମାନେ ନୁହନ୍ତି, ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, ଗୁରୁ କୃପାଚାର୍ଯ୍ୟ, ଅନ୍ୟାନ୍ୟ ଋଷି – ବ୍ରାହ୍ମଣମାନେ ଓ ତିନି ଉଚ୍ଚ ବର୍ଣ୍ଣର ଲୋକମାନେ ସମସ୍ତେ ମତେ କେବଳ ଗ୍ରହଣ କରିଛନ୍ତି ସୂତପୁତ୍ର ଭାବରେ । ଯଦିଓ ଭାଗ୍ୟର ପ୍ରସାଦରୁ ମୁଁ ହୋଇପାରିଥିଲି ଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଶିଷ୍ୟ, ତଥାପି ଗୁରୁଙ୍କର ମୋ'ପ୍ରତି ନ ଥିଲା ଶ୍ରଦ୍ଧାମୟ ଡାକ, 'ବାପା କର୍ଣ୍ଣ' । ବରଂ ଥିଲା ଅବହେଳାପୂର୍ଣ୍ଣ ଡାକ 'ସୂତପୁତ୍ର କର୍ଣ୍ଣ' । ଗୁରୁଗୃହରେ ପଞ୍ଜୀକରଣ ହୋଇଥିବା ମୋ'ର କର୍ଣ୍ଣ ନାମଟି ଲୁଚି ଯାଇଥିଲା ଅମାବାସ୍ୟାର ଅନ୍ଧକାରରେ ଲୁଚିଯାଇଥିବା ଚନ୍ଦ୍ରକଳା ଭଳି । ତାହା ସହିତ ସୂତପୁତ୍ର ଯୋଡ଼ା ନ ହେଲେ ପ୍ରଣବ ଅଶୁଦ୍ଧ ହୋଇଯାଉଥିଲା ଯେମିତି । ଅଥବା ମହାମେଘର ଘନଘୋଟରେ ଲୁଚିଯାଇଥିବା ଜ୍ୟୋତିର୍ମୟ ସୂର୍ଯ୍ୟମଣ୍ଡଳ ଭଳି । ସୂତପୁତ୍ର, ସୂତପୁତ୍ର ଓ ସୂତପୁତ୍ର । ସମସ୍ତଙ୍କର ମୋ'ପାଇଁ ଏଇ ତାଚ୍ଛଲ୍ୟଭରା ଆହ୍ୱାନ । ସତେ ଯେମିତି ମୋ'ର ଆଉ କୌଣସି ଯୋଗ୍ୟତାର ପରିଚୟ ନାହିଁ । ସତେଯେମିତି କାକରଲୁହଭିଜା ଚିରଅବନତ ଦୂବଘାସଟିଏ ମୁଁ । ଚିରଦିନ ଅବହେଳିତ । ସମସ୍ତଙ୍କ ଦଳା-ଚକଟା ସହିବାର ଭାଗ୍ୟ ନେଇ ଜନ୍ମିଛି । ବେଳେ ବେଳେ ଭାବେ, ସୂତକୁଳରେ ଜନ୍ମ ହେବାଟା କ'ଣ ଏଡ଼େ ପାପ ? ଏଡ଼େ ଅପରାଧ ? କାହାର ଜନ୍ମ କେଉଁ କୁଳରେ ହେବ, ତାହା ବିଧାତାଙ୍କ ବିଧାନ ସିନା । ସେଥିରେ ମଣିଷର ହାତ ବା କାହିଁ ? ତା'ହେଲେ ସେଥିପାଇଁ ମଣିଷ ନିନ୍ଦିତ ହୁଏ କାହିଁକି ? ଅପମାନିତ ହୁଏ କାହିଁକି ? ଯଦି କୁଳକୁ ନେଇ ବଡ଼-ସାନର ବିଚାର, ତା'ହେଲେ ଏଇ କୁଳଗୁଡ଼ିକର ବର୍ଣ୍ଣୀକରଣ କଲା କିଏ ? କେଉଁ ବିଚାର ନେଇ ସେ ଏହା କଲା ? ବେଦ କହେ ଯେ ଏକୈବ ମାନୁଷୀ ଜାତିଃ । ମଣିଷ ଜାତି ଗୋଟିଏ । ତା'ହେଲେ ବେଦଦ୍ରଷ୍ଟା ଋଷିଙ୍କଠାରୁ ଅଧିକ ଜ୍ଞାନୀ ବୋଲି ମିଥ୍ୟାଭିମାନରେ ଜର୍ଜରିତ ହୋଇ କିଏ ସୃଷ୍ଟି କଲା ଏ ଜାତି, କୁଳ, ପ୍ରବର ଇତ୍ୟାଦିକୁ ? ପୁଣି କୁଳରେ ଜନ୍ମାଇବାର ଶକ୍ତିକୁ ଧରିରଖିଲା କିଏ ? କିଏ ଦେବ ଏହାର ଉତ୍ତର ?

ଯଦି ବିଧାତା ମୋ' ଆଗରେ ଆଜି ମୂର୍ତ୍ତିମାନ୍ ହୋଇ ଠିଆ ହୁଅନ୍ତେ, ତା'ହେଲେ ତାଙ୍କୁ ଏହି ପ୍ରଶ୍ନଟି ବାରମ୍ବାର ପଚାରି ଅଥୟ କରିଦିଅନ୍ତି ! ଋଷି-ବ୍ରାହ୍ମଣମାନଙ୍କୁ ଅଥବା ସମାଜର ଅନ୍ୟାନ୍ୟ ବଡ଼ପଣ୍ଡାମାନଙ୍କୁ ଏ ପ୍ରଶ୍ନ ପଚାରିବାରେ କିଛି ହିଁ ଲାଭ ନାହିଁ । ସେମାନେ ତ ପଥର । ନିର୍ଜୀବ ଅଟଳ୍ ପଥର । ଯୁଗ-ଯୁଗ ଧରି ଅନ୍ଧବିଶ୍ୱାସର ଶିଉଳିକୁ ଛାତିତଳେ ଜାବୁଡ଼ି ଧରିଥିବା ପଥର ! ଚିର ପ୍ରାଣହୀନ ! ଆଉ ସେହି ପଥର ତଳେ ଲୁଚି ରହିଛି ନିହିତ

ସ୍ୱାର୍ଥର କଳାନାଗ । ସବୁବେଳେ ଫଁ ଫଁ । କିଏ ଯଦି ସେହି ପଥରକୁ ସାମାନ୍ୟ ଟିକିଏ ଟେକିବାର ପ୍ରୟାସ କଲା, ତା' ଉପରେ ଅବିଶ୍ରାନ୍ତ ଚୋଟ ଉପରେ ଚୋଟ । ଅତି ବିଷାକ୍ତ ଓ ଦୁରନ୍ତ ! ମୁଁ ତ ଏଇ ବିରାଟ ସାମାଜିକ ଶୃଙ୍ଖଳର ଗୋଟିଏ ଛୋଟ କଡ଼ି ମାତ୍ର । ମୋର ଆଉ ଚାରା କ'ଣ ?

ମୁଁ କୁଆଡ଼େ ପ୍ରଥମ ପାଣ୍ଡବ । ପାଣ୍ଡୁମହିଷୀ କୁନ୍ତୀଦେବୀଙ୍କର ପ୍ରଥମ ସନ୍ତାନ । ଭାଗ୍ୟର ବିଡ଼ମ୍ବନା ଏପରି ଯେ ବହୁ ବିଳମ୍ବରେ ଜାଣିଲି ମୋର ବଂଶପରିଚୟ । କିନ୍ତୁ ସେତେବେଳକୁ ଥିଲି ବିବଶ । ପ୍ରଥମ ପାଣ୍ଡବ ହିସାବରେ ପରିଚୟ ଦେବାକୁ ମୋର ସାହସ ନ ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ରହିଯିବି ସୂତପୁତ୍ର ହୋଇ— କୌନ୍ତେୟ ନୁହେଁ, ରାଧେୟ ହୋଇ । ମୋର, ପାଣ୍ଡବ ଭାଇମାନେ ସେମାନଙ୍କ ଏ ଶତ୍ରୁ-ସଖା କର୍ଣ୍ଣକୁ ହୁଏତ ଚିହ୍ନିପାରିବେ ନିଜର ସହୋଦର ଭାଇ ବୋଲି ତା'ର ମୃତ୍ୟୁ ପରେ । ହାୟ ! ଏ କ'ଣ କମ୍ ବିଡ଼ମ୍ବନା ? କମ୍ ଦୁଃଖଦ ? ମୋ' ସୂତପୁତ୍ରର ଜୀବନ କାହାଣୀଠାରୁ କମ୍ ମର୍ମନ୍ତୁଦ ? କେତେ ଦୀର୍ଘନିଃଶ୍ୱାସ ଛାଡ଼ିଲେ ଏଇ ବେଦନାକୁ ବାଷ୍ପୀଭୂତ କରିଦେଇ ହେବ ?

ମୁଁ ରାଜା ହେଲି । ଖାଲି ଏମିତି ସେମିତି ଦେଶର ରାଜା ନୁହେଁ । ବିରାଟ ଅଙ୍ଗଦେଶର ରାଜା । ଦ୍ରୋଣ, ପରଶୁରାମଙ୍କ ଭଳି ଆଚାର୍ଯ୍ୟ ଦୁହିଁଙ୍କଠାରୁ ଧନୁର୍ବିଦ୍ୟା ଶିଖିଲି । ଦିବ୍ୟାସ୍ତ୍ରସମେତ ସକଳ ଅସ୍ତ୍ର-ଶସ୍ତ୍ରରେ ହେଲି ଧୁରନ୍ଧର । ଦିଗ୍‌ବିଜୟ କଲି । ଅକାତରେ ଯାଚକମାନଙ୍କୁ ଦାନ କଲି । ମୋ' ଦାନମଣ୍ଡପର ଖ୍ୟାତି କୁଆଡ଼େ ବ୍ୟାପିଗଲା ଦିଗ-ବିଦିଗ ଧରି । ସେଥିପାଇଁ ଲୋକେ ମତେ କହିଥାନ୍ତି ଦାନବୀର କର୍ଣ୍ଣ ବୋଲି । ସେମାନଙ୍କ ପ୍ରଶଂସାରେ ଫୁଲି ଉଠିବାର ଅବକାଶ 'ମୋ'ପାଇଁ କେବେ ଆସି ନାହିଁ ଓ ଆସିବ ନାହିଁ ବି । ମୁଁ ଚିରଦିନ ରହିଆସିବି ଜଣେ ବିନୟୀ ପ୍ରଜାସେବକ ରାଜା ହୋଇ । କେହି ମୋର ପ୍ରଶଂସା କରନ୍ତୁ ଅଥବା ନିନ୍ଦା କରନ୍ତୁ, ସେଥିରେ ମୋର କ'ଣ ବା ଯାଏ – ଆସେ ? ମୁଁ ଚିରଦିନ ମୋର କର୍ତ୍ତବ୍ୟ ହିଁ କରି ଆସିଛି । ଶେଷନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ତାହା କରି ଚାଲିଥିବି । ଝଙ୍କା ବରଗଛଟିଏ ଭଳି ସମସ୍ତଙ୍କୁ ଛାଇ ଦେଇ ଆସିଛି । ମଧ୍ୟାହ୍ନ-ସୂର୍ଯ୍ୟଙ୍କ ପ୍ରଚଣ୍ଡ ଅଂଶୁଘାତ ମତେ ବିଚଳିତ କରି ନାହିଁ ଆଉ କରି ନାହିଁ ବି ବିବ୍ରତ ଅଥବା ପଥଭ୍ରଷ୍ଟ । ଗୋଟିଏ ମାତ୍ର ଲକ୍ଷ୍ୟ ମୋ' ଜୀବନରେ । ମୁଁ ଖାଲି ଦେଇ ହିଁ ଆସିଛି । ନିଜକୁ ତିଳ ତିଳ କରି ଜାଳି ସଳିତାଟି ଭଳି ସମସ୍ତଙ୍କୁ ଆଲୋକ ଦେଇ ଆସିଛି । କିଛି କାହାରିଠାରୁ ନେଇ ନାହିଁ କିମ୍ବା ନେବାର ଅଭିଳାଷ ବି ରଖି ନାହିଁ । ନେଇଥାନ୍ତି ବା କାହିଁକି ? ନେବାରେ ତ ଦୁଃଖ ! ଦେବାରେ ସିନା ଆନନ୍ଦ ! ସୁଖଭୋଗୀ କେବେହେଲେ ଜଗତ୍‌କୁ ସୁଖ ଦେଇପାରିବ ନାହିଁ । ଏହା ତ ଚିରନ୍ତନ ନିୟମ । ଏହି ଚିରନ୍ତନ ନିୟମଟିକୁ ସାରା ଜୀବନରେ ଅକ୍ଷରେ ଅକ୍ଷରେ ପାଳିଛି । ନିତିଦିନ ସାକାର କରି ଆସିଛି । ଚିରଦୁଃଖୀ ମୁଁ ସୂତପୁତ୍ର କର୍ଣ୍ଣ ! ହଁ, ଚିରଦୁଃଖୀ ! ଅଥଚ ଅନ୍ୟମାନଙ୍କୁ ସୁଖ ଦିଆଇ ପାରିଥିବାରୁ ଚିରସୁଖୀ ! ବଡ଼ ବିଡ଼ମ୍ବିତ ଭାଗ୍ୟ ମୋର ! ବିଚରା କର୍ଣ୍ଣ ! ବିଚରା ସୂତପୁତ୍ର ରାଧେୟ !!

ଆଜି ସେହି ଦେବାପାଇଁ ହିଁ ମୁଁ ଧର୍ମକ୍ଷେତ୍ର-କୁରୁକ୍ଷେତ୍ରର ସମରଭୂମିରେ ଅବତୀର୍ଣ୍ଣ । କୁରୁସେନାର ସେନାପତି ମୁଁ । ମଦ୍ରରାଜ ଶଲ୍ୟ ମୋ'ର ସାରଥି । ପରମ ମିତ୍ର

ଦୁର୍ଯ୍ୟୋଧନଙ୍କ ଆଗରେ ପ୍ରତିଜ୍ଞା କରିଛି, ଜୀବନ ଦେଇ ତାଙ୍କୁ ବିଜୟୀ କରାଇବି । ମିତ୍ର-ଋଣରୁ କିଛିଟା ହେଲେ ମୁକ୍ତ ହେବି । ମୋ' ବଳ-ବୀର୍ଯ୍ୟର ଚରମ ପରାକାଷ୍ଠା ଦେଖାଇବାର ଏଇ ହିଁ ଏକ ସୁବର୍ଣ୍ଣ ସୁଯୋଗ । ଏହାର ସଦୁପଯୋଗ ନିଶ୍ଚିତ ଭାବରେ କରିବି । ଆଜି କର୍ଣ୍ଣ ଓ ଅର୍ଜୁନ ଦୁହିଁଙ୍କ ମଧ୍ୟରୁ ଜଣେ ହିଁ ବଞ୍ଚିରହିବ ଆଗାମୀକାଲିର ସୂର୍ଯ୍ୟୋଦୟ ଦେଖିବା ପାଇଁ । ମୋ ଜନ୍ମଦାତ୍ରୀ ଜନନୀ କୁନ୍ତୀଦେବୀ ବଞ୍ଚି ରହିବେ ପଞ୍ଚପାଣ୍ଡବର ଜନନୀ ହୋଇ – ଷଟ୍‌ପାଣ୍ଡବଙ୍କର କିନ୍ତୁ ନୁହେଁ । ଏ ସୁବର୍ଣ୍ଣ ସୁଯୋଗକୁ କ'ଣ କିଏ ଛାଡ଼େ ? ମୁଁ ତେଣୁ ଏହାର ସଦୁପଯୋଗ କରିବି ।

କିନ୍ତୁ ହଠାତ୍ ଏ କ'ଣ ହେଲା ? ଏ କି ଦୁର୍ଯୋଗ ଆସି ଉପସ୍ଥିତ ? ଅର୍ଜୁନଙ୍କ ସହିତ ଯୁଦ୍ଧ କରୁଥିବା ଅବସରରେ ବାମଭାଗର ରଥଚକ୍ରଟି ମୋର ହଠାତ୍ ଧରଣୀଲଗ୍ନ ହେଲା । ଖାଲି ତ ଧରଣୀଲଗ୍ନ ନୁହେଁ । ଧରଣୀର ଗର୍ଭକୁ ଧୀରେ ଧୀରେ ଚାଲିଯାଉଛି । ଶଲ୍ୟଙ୍କ ଭଳି ପ୍ରବୀଣ ସାରଥି । ଇନ୍ଦ୍ର-ସାରଥି ମାତଳି ଅଥବା କୃଷ୍ଣସାରଥି ଦାରୁକଙ୍କ ସହିତ ତାଙ୍କର ତୁଳନା । ସ୍ୱୟଂ କୃଷ୍ଣଙ୍କଠାରୁ ବି ସାରଥି-କଳାରେ କିଛି କମ୍ ନୁହନ୍ତି । କିନ୍ତୁ ତାଙ୍କର ସମସ୍ତ ଉଦ୍ୟମ ଓ ରଥ ଚାଳନର କଳା କୌଶଳ ସତ୍ତ୍ୱେ ସେ ବି ତାହାକୁ ଉଦ୍ଧାର କରିବାରେ ଅସମର୍ଥ । ଅସହାୟ ଦୃଷ୍ଟିରେ ଚାହିଁଛନ୍ତି । ସ୍ଥାଣୁଟିଏ ହୋଇ ରଥନୀଡ଼ରେ ବସିଛନ୍ତି ମୁଁ ରଥରୁ ଅବତରଣ କରି ନିଜ ହାତରେ ଚେଷ୍ଟା କରୁଛି ରଥଚକ୍ରକୁ ଉଦ୍ଧାର କରିବା ଲାଗି । କିନ୍ତୁ ପାରୁ ନାହିଁ । ତାହା ଆହୁରି ତଳକୁ– ତଳକୁ ପଶିଯାଉଛି ! ଅତି ଦାରୁଣ ଏ ବିପର୍ଯ୍ୟୟ ! ତଥାପି ଉଦ୍ୟମ ମୋର ଅବ୍ୟାହତ । ଆଶା ତଥାପି ସଂଜୀବିତ ! ମଣିଷର ଆଶା ତ ! ସହଜରେ ମରେନା ଠିକ୍ ଯେମିତି ଦୂବଘାସ । ସାମାନ୍ୟ ଜଳସ୍ପର୍ଶରେ ପୁଣି ଗଜୁରି ଉଠେ ।

ସାରା କୁରୁକ୍ଷେତ୍ରରେ ରଣର ଘୋର ଘନଘଟା । ଅସ୍ତ୍ରମାନଙ୍କର ଝନ୍‌କାର ଶବ୍ଦ । ଆହତ ଓ ମୁମୂର୍ଷୁମାନଙ୍କର ଆର୍ତ୍ତ-ବିକଳ ଚିତ୍କାର । ଶବମାନଙ୍କର, ଭଗ୍ନ ରଥ ତଥା ଆୟୁଧମାନଙ୍କର ଏକ ବିରାଟ ଆସ୍ତରଣରେ ଛାଇ ହୋଇଯାଇଛି ରଣାଙ୍ଗନ । ବୀରମାନଙ୍କ ଉତ୍ସାହଭରା ସିଂହନାଦ । ସ୍ଥାନେ ସ୍ଥାନେ ମୁମୂର୍ଷୁମାନଙ୍କ ଆର୍ତ୍ତଚିତ୍‌କାର, ତାହା ସାଥେ ସାଥେ ସମତାଳ ଦେଇ ଗର୍ଜି ଉଠୁଛନ୍ତି ଶଙ୍ଖ, ଭେରୀ ଆଦି ବାଦ୍ୟଗଣ । ଅଶ୍ୱମାନଙ୍କର ହ୍ରେଷାରବ ଓ ହସ୍ତୀମାନଙ୍କର ବୃଂହଣ-ଧ୍ୱନିରେ କାନ-ଅତଡ଼ା ପଡୁଛି । ତୀରମାନଙ୍କର ସାଇଁ-ସାଇଁ ଶବ୍ଦ । ସୂର୍ଯ୍ୟରଶ୍ମିର ସମ୍ପାତରେ ଲକ୍ଷ-ଲକ୍ଷ ଅସ୍ତ୍ର-ଶସ୍ତ୍ରରେ ଚିକ୍-ଚିକ୍ କରି ଉଠୁଛନ୍ତି । ଏକାଧିକ ସୂର୍ଯ୍ୟଙ୍କ ଭ୍ରମ ସୃଷ୍ଟି କରାଉଛନ୍ତି । ସମସ୍ତେ ନିଜ ନିଜ ଶକ୍ତି ଅନୁସାରେ ଯୁଦ୍ଧରତ ।

ଅଥଚ ମୁଁ ବିଚରା କର୍ଣ୍ଣ । ମହାବୀରର ଗର୍ବ ମୋର ଏବେ ଖର୍ବ । ମୁଁ ଏବେ ନିରସ୍ତ୍ର ହୋଇ ଭୂଇଁରେ ଆଇ ରଥଚକ୍ରକୁ ଉଠାଇବାର ଅସଫଳ ଚେଷ୍ଟା କରୁଛି ! ଭାଗ୍ୟର ଏ କି ବିଡ଼ମ୍ବନା ସତେ !

ଏଇ କଥା ଭାବିଲା ବେଳକୁ ମନରେ ମୋର ବିଷାଦ ଭରି ଉଠୁଛି ।

ବଡ଼ ବିଚିତ୍ର କଥା ଏ । ଖାଲି ତ ବାମ ରଥଚକ୍ରଟି ମୋର ମାଟିରେ ପଶିଯାଇ ନାହିଁ । ଦିବ୍ୟାସ୍ତ୍ରସମେତ ଯାହାକିଛି ଶସ୍ତ୍ରବିଦ୍ୟା ଆଚାର୍ଯ୍ୟ ପରଶୁରାମଙ୍କଠାରୁ ଶିଖିଥିଲି ତାହା ଧୀରେ ଧୀରେ ମନରୁ ମୋର ପାସୋରି ଯାଉଛି । ଆଉ କେତୋଟି ମୁହୂର୍ତ୍ତରେ ସବୁ ଭୁଲି ବସିଥିବି ବୋଧହୁଏ ।

ଏଇ ଅବସ୍ଥାରେ ମନେପଡ଼େ ମୋର ଅତୀତ ଦିନଗୁଡ଼ିକର କଥା । ଦୁଇଟି ବଡ଼ ଭୟଙ୍କର ଅଭିଶାପ କଥା । ଗୋଟିଏ ବ୍ରାହ୍ମଣଙ୍କ ଅଭିଶାପ । ଅପରଟି ଆଚାର୍ଯ୍ୟ ପରଶୁରାମଙ୍କ ଅଭିଶାପ । ଉଭୟ ଅଲଂଘନୀୟ । ଉଭୟ ଏବେ ଦୈବରୂପରେ ମୋ' ଆଗରେ ଠିଆ । ଦୁଇଟି ଭୟଙ୍କର ରାକ୍ଷସ ଭଳି ମୋର ଗଳାରୁଦ୍ଧ କରିଦେବାକୁ ବସିଛନ୍ତି । ଅସହାୟ ମୁଁ ! ନିତାନ୍ତ ଅସହାୟ ! ନିତାନ୍ତ ଉପାୟହୀନ !

ଏଇ ସେଦିନ କଥା । ଜଣେ ବ୍ରାହ୍ମଣଙ୍କର ଯଜ୍ଞ-ଧେନୁଟିକୁ ବଣ୍ୟପଶୁ ଭାବି ଅଜ୍ଞାତରେ ମାରି ଦେଇଥିଲି । ସେ ମତେ ଅଭିଶାପ ଦେଇଥିଲେ । ବଡ଼ ନିଷ୍ଠୁର ସେ ଅଭିଶାପ । ଜୀବନର ଅନ୍ତିମ ସମୟରେ ଯୁଦ୍ଧଭୂମିରେ ମୋ' ରଥଚକ୍ର ଧରଣୀଲଗ୍ନ ହେବ । ହୋଇଯିବ ଅଚଳ । ଆଉ ଦ୍ୱିତୀୟ ଅଭିଶାପ । ତାହାତ ଆହୁରି ନିଷ୍ଠୁରତର । ଆତ୍ମପରିଚୟକୁ ଲୁଚାଇ ରଖି ଓ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦିଆଇ ଗୁରୁ ପରଶୁରାମଙ୍କ ପାଖରୁ ଶିଖିଥିଲି ବ୍ରହ୍ମାସ୍ତ୍ରର ପ୍ରୟୋଗ ଓ ସଂହାରର କଳା-କୌଶଳ । କିନ୍ତୁ ଦୁର୍ଭାଗ୍ୟକୁ ମୋର ପ୍ରକୃତ ପରିଚୟ ତାଙ୍କୁ ପରେ ଜଣା ପଡ଼ିଥିଲା । ସେ ଜାଣିପାରିଲେ ସୂତପୁତ୍ର ମୁଁ । ବ୍ରହ୍ମାସ୍ତ୍ର ଶିଖିବାର ସମ୍ପୂର୍ଣ୍ଣ ଅନଧିକାରୀ । ଅଭିଶାପ ଦେଇ କହିଥିଲେ, ପ୍ରାଣ-ସଂକଟ କାଳରେ ତାଙ୍କଠାରୁ ଶିଖିଥିବା ବ୍ରହ୍ମାସ୍ତ୍ର ମୋର ପାସୋର ଯିବ ।

ଏହି ଦୁଇଟିଯାକ ଅଭିଶାପ ଏବେ ଫଳିଛି । ଦୁଇଟିଯାକ ଅଭିଶାପ ସେମାନଙ୍କ ମୃତ୍ୟୁଶୀତଳ ହାତଟିମାନ ମୋ' ସାରା ଦେହରେ ବୁଲାଇ ଆସୁଛନ୍ତି ! ଆଃ ! କି ଅବସାଦ ! କି କଷ୍ଟ ! କି ମରଣାନ୍ତକ ବେଦନା ! ଆଉ ସହିହେଉ ନାହିଁ ।

ଏଥିରୁ କ'ଣ ମୁକ୍ତି ନାହିଁ ? ସମରାଙ୍ଗନର ରକ୍ତପ୍ରଦିଗ୍ଧ ସମୀରଣ ସତେଯେମିତି ମୋର କାନେ କାନେ କହି ଯାଉଛି, ନା, ଏଥିରୁ ଜମା ମୁକ୍ତି ନାହିଁ । ଜମା ଶାନ୍ତି ନାହିଁ । ବଡ଼ ଦାରୁଣ ଏ ଉଦ୍‌ଘୋଷଣା !

ଭାବୁଛି, କର୍ଣ୍ଣର ଜନ୍ମ ଯେମିତି ହୋଇଛି ସାରା ଜୀବନ ଧରି କେବଳ ଅଭିଶାପର ବିଷରେ ଜଳି-ପୋଡ଼ି ମରିବା ଲାଗି ! ଅଭିଶାପର ଆଗ୍ନେୟ ପ୍ରବାହରେ ଭାସି-ଭାସି ଯିବା ଲାଗି ! ଖାଲି ଦହନ ଓ ଦହନ । ଏଇ ଦହନ ଯେମିତି ତା' ପାଇଁ ଆସିଛି ଚିରନ୍ତନ ଅଙ୍ଗରାଗ ଭଳି ! ସୂତକୁଳରେ ଜନ୍ମ । ତା' ପାଇଁ ବିଧାତାଙ୍କର ଏକ କ୍ରୁର ଅଭିଶାପ । ଯଦି ବିଧାତା ତା'କୁ ସୂତକୁଳରେ ଜନ୍ମ ଦେଲେ, ତା'ହେଲେ ବଡ଼ ହେବାପାଇଁ ଅଭିଳାଷ ଦେଲେ କାହିଁକି ? ମହତ୍ତ୍ୱାକାଙ୍‌କ୍ଷା ଦେଲେ କାହିଁକି ? ଯଦି ତା'କୁ ଫୁଲଟିଏ କରି ଗଢ଼ି ତୋଳିଲେ, ତା'ହେଲେ ତା'ଠାରେ ମହକ ଭରିଦେଲେ କାହିଁକି ? ଆଉ କାହିଁକି ଭ୍ରମରର ଗୁଞ୍ଜନକୁ କାନେଇବାର ପ୍ରବୃତି ଭରିଦେଲେ କୋଷ-କୋଷ ଭରି ? ଯଦି ନୀଚ କୁଳର ଗଭୀର

ସମୁଦ୍ରରେ ତା'କୁ ଶାମୁକାଟିଏ କରି ଜନ୍ମ ଦିଆଇଲେ, ତା'ହେଲେ ତା'ଠାରେ ମୁକ୍ତା ସୃଷ୍ଟି କରାଇବାର ପ୍ରବୃତ୍ତି ଆଣିଦେଲେ କାହିଁକି ? ସତେ କାହିଁକି ? କାହିଁକି ଏ ଅବିଚାର ?

ଯେ ତ ଗଲା ଜନ୍ମକୁ ନେଇ ଅଭିଶାପ । ତାହା ଉପରେ ପୁଣି ଗୁରୁ ଓ ବ୍ରାହ୍ମଣଙ୍କର ଅଭିଶାପ । କେତେ ସହିବ ଯେ ରକ୍ତମାଂସଧାରୀ କର୍ଣ୍ଣ ବୋଲି ମଣିଷଟି ? ସହିବାର ତ ପୁଣି ଗୋଟାଏ ସୀମା ଅଛି । ସେ ତ ନୀଳକଣ୍ଠ ମହାଦେବ ନୁହେଁ ଯେ ବାସୁକିର ତୀବ୍ର ହଳାହଳ ବିଷକୁ ଜୀର୍ଣ୍ଣ କରିଦେବ ! ସେ ଆପଣମାନଙ୍କ ଭଳି ଜଣେ ମଣିଷ । ହସ-କାନ୍ଦ, ମାନ-ଅଭିମାନ, ଦୁଃଖ-ସୁଖ ସବୁକୁ ନେଇ ଏକ ଦୁର୍ବଳ ମଣିଷ । ଭାଗ୍ୟର ବାରମ୍ବାର ନିର୍ଦ୍ଦୟ କଶାଘାତକୁ କେତେ ବା ସହିବ ସେ ? ଝଡ଼ିବର୍ଷାରେ ଭାଙ୍ଗି ପଡ଼ିଥିବା କମଳ-ନାଳଟି ଭଳି କେତେ ଆଉ ସେ ଅପମାନର ବାତ୍ୟାରେ ଗ୍ରୀବା ଭାଙ୍ଗି ଠିଆ ହୋଇ ରହିବ ?

ଏଇ ତ, ମୋର ଏଭଳି ଅବସ୍ଥା ଦେଖି କୁନ୍ତୀପୁତ୍ର ଅର୍ଜୁନ ସେଠି ହସୁଛନ୍ତି । କିନ୍ତୁ ବୀରଧର୍ମ ପାଳିବାକୁ ଯାଇ ମୋର ଅସ୍ତ୍ରହୀନ ଅବସ୍ଥାରେ ମୋ' ଉପରେ ଆକ୍ରମଣ କରିବା ପାଇଁ ଆଗେଇ ଆସୁ ନାହାନ୍ତି । ଚିତ୍ତରେ ଭରା ସଂକୋଚର ଜୁଆର । ବୀରପୁଙ୍ଗବ ସେ । ବୃହସ୍ପତି ଅଥବା ଶୁକ୍ରାଚାର୍ଯ୍ୟଙ୍କ ଭଳି ଜ୍ଞାନୀ । ସକଳ ମର୍ଯ୍ୟାଦାର ଖଣି । ସକଳ ଶୀଳାତ୍ମକ ପ୍ରବୃତ୍ତିର ଉତ୍ସ । ସେ ବା କିପରି ଆକ୍ରମଣ କରନ୍ତେ ? ବୀରଧର୍ମର ଉଲ୍ଲଙ୍ଘନ କରନ୍ତେ ? ପୁଣି ଏ ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ? ଏଇ କଥା ଟିକକ ମତେ ଯାହା ଆଶ୍ୱାସନା ଦେଉଛି । ରଥଚକ୍ରକୁ ଉଦ୍ଧାର କରିବାର ମୋ' ଉଦ୍ୟମକୁ ଉତ୍ସାହିତ କରୁଛି । ଉତ୍ସାହିତ କରୁଛନ୍ତି ବି ଅପରାହ୍ଣର ସୂର୍ଯ୍ୟଦେବତା କନକ-ରଶ୍ମିକରକୁ ସଂପ୍ରସାରିତ କରି ।

କିନ୍ତୁ ଏ ପୁଣି କ'ଣ କ'ଣ ଘଟୁଛି ? ହଠାତ୍ ସ୍ଥିତିର ଏ କି ପରିବର୍ତ୍ତନ ? ସବୁ କିଛି ଓଲଟ-ପାଲଟ । କୃଷ୍ଣ ମତେ ଏହି ଅବସ୍ଥାରେ ହିଁ ଆକ୍ରମଣ କରିବା ପାଇଁ ତାଙ୍କୁ କରୁଛନ୍ତି ଇଙ୍ଗିତ । ଦେଉଛନ୍ତି ଅନୁପ୍ରେରଣା ଓ ପ୍ରୋତ୍ସାହନ । ଅଥଚ ଏଣେ ମୁଁ ଗୁରୁଙ୍କ ଅଭିଶାପ ଫଳରେ ବ୍ରହ୍ମାସ୍ତ୍ର ଓ ଅନ୍ୟାନ୍ୟ ଦିବ୍ୟାସ୍ତ୍ରଗୁଡ଼ିକର ପ୍ରୟୋଗବିଦ୍ୟା ଭୁଲି ବସିଛି । ମନ୍ତ୍ରହୀନ ବ୍ରାହ୍ମଣଙ୍କ ଭଳି ଯଜ୍ଞବେଦୀ-ମୂଳରେ ମୁହଁ ମୋର କଳାକାଠ ପଡ଼ି ଯାଇଛି । ମୂକ ପାଲଟି ଯାଇଛି ମୁଁ । ଆଉ ନିର୍ବେଦ ବି ।

ମନେ ମନେ ହସୁଛି କୃଷ୍ଣଙ୍କ ଏଇ ବିପରୀତ ଆଚରଣ ଦେଖି । କପଟୀ ସେ । ସକଳ କୁଚକ୍ରର ଖଣି । ସକଳ ପ୍ରହେଳିକାର ଭଣ୍ଡାର । ଧର୍ମ ପାଇଁ ସବୁ କିଛି କରିପାରନ୍ତି । ଅଧର୍ମ କରିବାକୁ ମଧ୍ୟ ପଛାନ୍ତି ନାହିଁ । ଅନ୍ତତଃ ସେହିଭଳି ଆମକୁ ଦିଶନ୍ତି । ସେ ପ୍ରତିଜ୍ଞା କରିଥିଲେ ଯେ ମହାଭାରତ ଯୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ଭାଗ ନେବେ ନାହିଁ । କେବଳ ପାର୍ଥସାରଥି ହୋଇ ରହିବେ । ନିଜର ଭୁବନବିଦିତ ଚକ୍ରକୁ ଚଳାଇବେ ନାହିଁ । କିନ୍ତୁ ପ୍ରକୃତରେ କ'ଣ ସେ ନିଜକୃତ ପ୍ରତିଜ୍ଞାକୁ ରଖିପାରିଛନ୍ତି ? ନିଜେ ଦେଇଥିବା ପବିତ୍ର ପ୍ରତିଶ୍ରୁତିକୁ ପାଳିପାରିଛନ୍ତି ? ମୁଁ କହିବି, ପାଣ୍ଡବମାନଙ୍କ ପକ୍ଷରେ ପ୍ରଧାନ ନାୟକ ତ ଏକା ସେହି । ଆଗରେ, ପଛରେ ଓ ଦୁଇ ପାଖରେ, ସବୁଠାରେ ତାଙ୍କରି ହିଁ ସ୍ଥିତି । ସବୁର ମୂଳରେ ତାଙ୍କରି ମନ୍ତ୍ରଣା । ତାଙ୍କରି ଯୋଜନା । ତାଙ୍କରି ଅନୁପ୍ରେରଣା । ସବୁ କିଛି ତାଙ୍କର । ନାମକୁ

ମାତ୍ର ପାଣ୍ଡବମାନେ ଓ ସେମାନଙ୍କ ସହାୟକ ବୀରମାନେ ସିନା ଲଢୁଛନ୍ତି । ନିଜ ଚକ୍ରଟିକୁ ସିନା ସେ ପ୍ରତ୍ୟକ୍ଷରେ ଛାଡ଼ି ନାହାନ୍ତି କେବଳ ଥରଟିଏ ଛଡ଼ା ଯେତେବେଳେ ପିତାମହ ଭୀଷ୍ମ ତାଙ୍କୁ ତାହା କରିବା ପାଇଁ ବିବଶ କରିଦେଇଥିଲେ । କିନ୍ତୁ ପରୋକ୍ଷରେ ଛାଡ଼ିଛନ୍ତି ଆଉ ଏକ ବିରାଟ ଓ ଦୁର୍ବାର ଚକ୍ର । ଅତି ଶକ୍ତିଶାଳୀ । ଏକାନ୍ତ ଅଲଂଘନୀୟ । କାଳର ଚକ୍ର । ସ୍ୱୟଂ କୃଷ୍ଣ ବି ସେଥିରୁ ବାଦ ଯିବେ ନାହିଁ । ହେବେ ତାହାର ଅସହାୟ ଶରବ୍ୟ । କାହାରି ତହିଁରୁ ପରିତ୍ରାଣ ନାହିଁ– ମୁକ୍ତି ନାହିଁ !

ଆଉ ଡେରି ନାହିଁ । ସେହି ଚକ୍ରର ତୀକ୍ଷ୍ଣ ଧାର ମତେ ବି କାଟିଦେବ । ସେଥିକି ମୋର ଅବଶ୍ୟ ଦୁଃଖ ନାହିଁ । ନାହିଁ ମଧ୍ୟ ଭୟ କିମ୍ବା ଅନୁତାପ । କିନ୍ତୁ ମୋ' ଜୀବନର ଏକ ଅପୂର୍ଣ୍ଣ ଆଶା ରହିଯାଇଛି । ତାହା ଏବେ ପୂରଣ କରିବି । ଆଉ ଯେତିକି ସମୟ ବଞ୍ଚିବି, ତାହାରି ଭିତରେ କହିଯିବି ମୋ' ହର୍ଷ-ବିଷାଦଭରା ଜୀବନକାହାଣୀ ! ମୁଁ ସିନା ସୂତପୁତ୍ର । ନିଦାଘକାନନର ରକ୍ତ-ଟହଟହ ପଳାଶଫୁଲଟିଏ । କିନ୍ତୁ ଜୀବନ ମୋର ବିଚିତ୍ର ଓ ଘଟନାବହୁଳ । ଜୀବନସାରା ସଂଗ୍ରାମ କରି ଆସିଛି । ପ୍ରତିଟି ସଂଗ୍ରାମରେ ଅବଶ୍ୟ କ୍ଷତ-ବିକ୍ଷତ ହୋଇଛି ବିଶେଷ ଭାବରେ । କିନ୍ତୁ ଶେଷରେ ବିଜୟଶ୍ରୀରେ ହୋଇଛି ମଣ୍ଡିତ । ମୋର ଦୃଢ଼ ଆତ୍ମବଳ ଓ ଆତ୍ମବିଶ୍ୱାସ ହିଁ ମତେ ଏଭଳି ଯଶ-କୀର୍ତ୍ତିର ଅଧିକାରୀ କରାଇଛି । ମନର ବାଛୁରୀ ମାଡ଼ର ସ୍ମୃତି-ଗୋମାତାର ପହ୍ନାରେ ବାରମ୍ବାର ମୁଣ୍ଡିଆ ମାରୁଛି । ତହିଁରୁ ଝରୁଛି ଅସଂଖ୍ୟ ଘଟଣାର କ୍ଷୀର-ପ୍ରବାହ । ସେଥିରେ ପରିସ୍ନାତ ମୁଁ । ସଂପୂର୍ଣ୍ଣ ରୂପେ ପରିପ୍ଲାବିତ । ସେଇ ସବୁ କିଛି କହିଯିବା ମୋ' ପକ୍ଷରେ ଅବଶ୍ୟ ସମ୍ଭବପର ନୁହେଁ । ସେଥିପାଇଁ ସମୟ ବି ନାହିଁ । ତେଣୁ ମୋ' ଜୀବନର ପ୍ରଧାନ-ପ୍ରଧାନ କେତୋଟି ଘଟଣା ହିଁ ଏବେ କହିଯିବି । ସେଇଥିରୁ ଲୋକେ ମତେ ଯାହା ବା ବୁଝିବେ ! ଇତିହାସ ମୋର ଯାହା ବା ମୂଲ୍ୟାୟନ କରିବ ! ଅଥବା କରିବ ଅବମୂଲ୍ୟାୟନ !! ମୋର ନିନ୍ଦା ଅଥବା ପ୍ରଶଂସା କରିବ !

ସେ ଯାହାହେଉ ପଛକେ, ମୋ' କହିବା କଥା ଏବେ କହିଯିବି । ସେଥିପାଇଁ ଦୃଢ଼ନିଶ୍ଚୟ ମୁଁ । ଭଲ-ମନ୍ଦର ନିର୍ଣ୍ଣୟ ଲୋକମାନଙ୍କ ହାତରେ । ଭବିଷ୍ୟତ୍‌ର ଇତିହାସ ହାତରେ । ସେଥିପ୍ରତି ନିସ୍ପୃହ ମୁଁ । ଘୋର ଉଦାସୀନ ।

ଆପଣମାନେ ଭାବିପାରନ୍ତି, ଏହି ସମରାଙ୍ଗନର ଭୀମ-ଭୟଙ୍କର ପରିବେଶରେ ଆତ୍ମକାହାଣୀ କହିବାର ବା ପ୍ରୟୋଜନ କ'ଣ ? ପୁଣି ଯେତେବେଳେ ଜୀବନର ଅନ୍ତିମ ଲଗ୍ନ ଆସନ୍ନ ? ଏତେ ଅଳ୍ପ ସମୟ ମଧ୍ୟରେ କିପରି ବା ତାହା କହିହେବ ? ମୁଁ କିନ୍ତୁ କହିବି, ସେଥିର ଯଥେଷ୍ଟ ପ୍ରୟୋଜନ ଅଛି ଓ ତାହା ଏଇ ଅଳ୍ପ ସମୟ ମଧ୍ୟରେ କହି ବି ହେବ । କାହିଁକି ହେବ ନାହିଁ ? ଭଗବାନ୍ କୃଷ୍ଣ ତ ପୁଣି ଯୁଦ୍ଧର ଅବ୍ୟବହିତ ପୂର୍ବରୁ ଏହି ସମରାଙ୍ଗନରେ ହିଁ ଗୀତାର ଦୀର୍ଘ ଓ କଠିନ ତତ୍ତ୍ୱ ଅର୍ଜୁନଙ୍କୁ କହିଦେଇପାରିଛନ୍ତି । ଏଇ ସେଇ ଜାଗାଟି ଦିଶୁଛି ମତେ ଜଳ-ଜଳ ହୋଇ । ମୋ'ଠାରୁ ମାତ୍ର ତିନି ଶହ ଧନୁ ଦୂରରେ ତାହାର ସ୍ଥିତି । ପ୍ରତିଦିନ ଯୁଦ୍ଧାରମ୍ଭ ପୂର୍ବରୁ ସେହି ଜାଗାଟିକୁ ନମସ୍କାର କରିଥାଏ ମୁଁ । ଆଉ ନମସ୍କାର ବି କରିଥାଏ ଗୀତାର ପ୍ରବକ୍ତା ଭଗବାନ୍ କୃଷ୍ଣଙ୍କୁ । ଏବେ ତ ସେ ମୋର ଅତି

ନିକଟରେ । ଅର୍ଜୁନଙ୍କ ହାତରେ ମୋର ପ୍ରାଣ ଗଲା ବେଳେ ସେ ରହିବେ ସାକ୍ଷୀ ହୋଇ । ଏହା ତ ବଡ଼ ଭାଗ୍ୟ ମୋର ! ସାରା ଜୀବନ ଧରି ଯେଉଁ ନୀତି ଓ ଆଦର୍ଶ ପଛରେ ଧାଇଁ ଆସିଛି ତାହା ଯେପରି ଆଜି ସଫଳ ହୋଇଯିବ ଶତ ଧାରରେ – ସହସ୍ର ଧାରରେ ! ତାଙ୍କୁ ମୋର ବାରମ୍ବାର ନମସ୍କାର । ମୁଁ ତେଣୁ ମୋର ଜୀବନକାହାଣୀ ଏଇ ପରିବେଶରେ କହିପାରିବି ନାହିଁ କାହିଁକି ? ନିଶ୍ଚୟ ପାରିବି । ସେ ଦୃଢ଼ ଆତ୍ମବିଶ୍ୱାସ ମୋର ଅଛି ।

ଆଉ ମୋ' ଆତ୍ମକାହାଣୀ କହିବାର ପ୍ରୟୋଜନ କଥା । ମୁଁ ନମ୍ରତାର ସହିତ କହିବି, ତାହାର ପ୍ରୟୋଜନ ବି ଅଛି । ପୁଣି ନିତାନ୍ତ ଜରୁରୀ ସେହି ପ୍ରୟୋଜନ । ବର୍ତ୍ତମାନ ନ କହିଲେ ଆଉ କେବେହେଲେ କହିପାରିବି ନାହିଁ । ଅନ୍ୟମାନେ ବି କେହି ତାହା କହିପାରିବେ ନାହିଁ । ସାରା ଜୀବନ ଭରି ମୋର ଯେଉଁ ସଂଗ୍ରାମ, ଯେଉଁ ବ୍ୟଥାଭରା ଦୀର୍ଘଶ୍ୱାସ, ଯେଉଁ ତୀବ୍ର ବେଦନାର ଜ୍ୱାଳା, ଯେଉଁ ପଶ୍ଚାତ୍ତାପର ଅଶ୍ରୁ, ତାହା ସବୁ କ'ଣ କେବେ ପ୍ରକାଶ କରିଛି ? ପ୍ରାଣକୁ ପଥର କରି ସବୁ ନିଜ ଦେହରେ ମାରିଦେଇଛି ସିନା ! ତେଣୁ ଅନ୍ୟ ଲୋକେ ସେ କଥା ଜାଣିବେ ବା କୁଆଡୁ ? ଭବିଷ୍ୟତ୍‌ର ଇତିହାସ ମତେ ଚିହ୍ନିବାର ଅବକାଶ ପାଇବ ବା କୁଆଡୁ ?

ସାଧାରଣ ଭାବରେ ଲୋକେ କହିବେ, ଦୁର୍ଯ୍ୟୋଧନଙ୍କ ପକ୍ଷ ନେବାଦ୍ୱାରା ମୁଁ ଅସତ୍ୟ, ଅଧର୍ମ ଓ କପଟର ପକ୍ଷକୁ ସମର୍ଥନ କରିଛି । ମହାଭାରତ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ଯେଉଁ ବିଚିତ୍ର ଓ ଅଦ୍ଭୁତ ଘଟଣା ଦୁଇଟି ଘଟିଥିଲା ତାହାରି ପୃଷ୍ଠଭୂମିରେ ମୋ' ସଂପର୍କରେ ଏଭଳି ଭ୍ରମାତ୍ମକ ଧାରଣା ଆସିବା ସ୍ୱାଭାବିକ । ଗୋଟିକରେ ସ୍ୱୟଂ କୃଷ୍ଣ ମତେ ମୋର ଜନ୍ମରହସ୍ୟ ବତାଇ ଦେଇଥିଲେ । ତାଙ୍କରିଠାରୁ ପ୍ରଥମେ ଜାଣିଲି ଯେ ମୋର ଜନ୍ମଦାତ୍ରୀ ମାଆ ହେଉଛନ୍ତି ପାଣ୍ଡୁମହିଷୀ କୁନ୍ତୀଦେବୀ । ମୁଁ ରାଧେୟ ନୁହେଁ । ପାଣ୍ଡବମାନଙ୍କ ପରି କୌନ୍ତେୟ । ସେମାନଙ୍କର ଜ୍ୟେଷ୍ଠ ଭ୍ରାତା । ପ୍ରଥମ ପାଣ୍ଡବ । ମାଆଙ୍କର କାନୀନ ପୁତ୍ର । ପାଣ୍ଡବମାନଙ୍କ ପକ୍ଷକୁ ସମର୍ଥନ କରିବା ପାଇଁ ତାଙ୍କର ସନିର୍ବନ୍ଧ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଇଥିଲି । ସ୍ୱୟଂ ମାତା କୁନ୍ତୀଦେବୀ ମଧ୍ୟ ପରେ ପରେ ଆସି ସମସ୍ତ ରହସ୍ୟକୁ ଉଦ୍‌ଘାଟିତ କରିଦେଇଥିଲ ମୋ' ଆଗରେ । ମତେ କରିଥିଲେ ଅନୁରୂପ ଅନୁରୋଧ । ଏହି ଦୁଇଟିଯାକ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲି ଅତି ଦାରୁଣ ଭାବରେ । ଅବଶ୍ୟ ମୋ' ଜନ୍ମଦାତ୍ରୀ ମାଆଙ୍କୁ ଗୋଟିଏ ପ୍ରତିଶ୍ରୁତି ଦେଇ କହିଥିଲି, ଅର୍ଜୁନଙ୍କ ଛଡ଼ା ଆଉ କୌଣସି ପାଣ୍ଡବଙ୍କୁ ଯୁଦ୍ଧରେ ମାରିବି ନାହିଁ ବୋଲି । ମୁଁ ଅର୍ଜୁନଙ୍କୁ ମାରିବି ଅଥବା ସେ ମତେ ମାରିବେ । ଜନନୀ ମୋର ତାଙ୍କର ପାଞ୍ଚପୁଅଙ୍କୁ ସବୁବେଳେ ଦେଖିବାକୁ ପାଇବେ । ପ୍ରଥମ ପାଣ୍ଡବ ଭାବରେ କନିଷ୍ଠ ଚାରି ଭ୍ରାତାଙ୍କୁ ଅଭୟଦାନ କରିବା ମୋର କର୍ତ୍ତବ୍ୟ । ତାହା ବୁଝିଥିଲି । ସେ ଦୁଃଖ ଓ ଆନନ୍ଦର ମିଶ୍ରିତ ହୃଦୟ ନେଇ ଫେରି ଯାଇଥିଲେ ।

ଆପଣମାନେ ଭାବିପାରନ୍ତି, ଜାଣି-ଶୁଣି ଅଧର୍ମର ପକ୍ଷକୁ ସମର୍ଥନ କରିଛି ମୁଁ । ତାହା କିନ୍ତୁ ଭୁଲ ଧାରଣା । ଯାହା ବା କରିଛି, ତାହା ଛଡ଼ା ଆଉ ଅନ୍ୟ କିଛି କରିପାରି ନ ଥାନ୍ତି । ମୁଁ ଥିଲି ବିବଶ । ହଁ, ଅତି ମାତ୍ରାରେ ବିବଶ । ସେହି ବିବଶତା ହେତୁ ଦୁର୍ଯ୍ୟୋଧନଙ୍କ ପକ୍ଷକୁ

ସମର୍ଥନ କରିବା ଛଡ଼ା ମୋର ଗତ୍ୟନ୍ତର ନ ଥିଲା । ମିତ୍ରତାର ବନ୍ଧନରେ ତାଙ୍କ ସହିତ ବାନ୍ଧି ହୋଇ ରହିଥିଲି ଅତି ନିବିଡ଼ ଭାବରେ । ସେ ମୋର ଯେଉଁ ଉପକାର କରିଥିଲେ ଓ ଯେଉଁଭଳି ଦୟନୀୟ ପରିସ୍ଥିତିରେ ମୋର ମାନ-ମର୍ଯ୍ୟାଦାକୁ ରକ୍ଷା କରିବାପାଇଁ ଆଗେଇ ଆସିଥିଲେ ଅଯାଚିତ ଭାବରେ, ତାହାର ସୁଧ-ମୂଳ ପରିଶୋଧ ଲାଗି ଥିଲି ପ୍ରତିଶ୍ରୁତିବଦ୍ଧ । ତାହା ହିଁ ମତେ ବିବଶ କରି ରଖିଥିଲା ସାରା ଜୀବନ ଧରି । ଜାଲବଦ୍ଧ କପୋତଟି ଭଳି ହେଉଥିଲି ଛଟପଟ ! କ'ଣ ଆଉ ବା କରିପାରିଥାନ୍ତି ? ସାଧାରଣ ରକ୍ତ-ମାଂସରେ ଗଢ଼ା ମଣିଷଟିଏ ମୁଁ । ମିତ୍ରପ୍ରେମରେ ଅନ୍ଧ-ପାଗଳ । ସେଭଳି ଅବସ୍ଥାରେ ମଣିଷ କ'ଣ ଭଲ-ମନ୍ଦର ବିଚାର କରିପାରେ ? ସେଥିପାଇଁ ଭବିଷ୍ୟତ୍‌ର ଇତିହାସ କ'ଣ ମତେ କ୍ଷମା ଦେବ ନାହିଁ ? ମୋ' ଭାବୀ ଦାୟାଦମାନେ କ'ଣ ମୋ'ପାଇଁ ବିନ୍ଦୁଏ ମାତ୍ର ଲୁହ ଝରାଇବେ ନାହିଁ ନୀରବରେ ? ଥରଟିଏ ପାଇଁ କ'ଣ ବନ-କପୋତୀର କଣ୍ଠରେ ମୋ' କାତର ଜୀବନର ସୁର ଉଠିବ ନାହିଁ ଗୁଞ୍ଜରିତ ହୋଇ ? ହଁ, ଥରଟିଏ ପାଇଁ ମାତ୍ର ! ଦ୍ୱିଧାଗ୍ରସ୍ତ ଚିତ୍ତ ମୋର ଏଇ ଚିନ୍ତାରେ ଅନେକବାର ଥରିଉଠେ !

ବିବଶତା କଥା କହୁଥିଲି ପରା । ବାସ୍ତବିକ, ଏହି ବିବଶତା ହିଁ ମତେ ଯେମିତି ସାରା ଜୀବନ ଘାରି ରଖିଛି । ଜୋକ ପରି ମୋ' ଦେହରେ ଲାଗିରହି ରକ୍ତ ଶୋଷି ଚାଲିଛି । ମୋର ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସମଗ୍ର ଦିଗ୍‌ବଳୟକୁ କରି ରଖିଛି ଆଚ୍ଛନ୍ନ । ଏହି ବିବଶତା ହେତୁ ମୋ' ଜନ୍ମଦାତ୍ରୀ ମାଆ ମତେ ଜନ୍ମ ହେବାମାତ୍ରେ ମଞ୍ଜୁଷାଟିରେ ପୂରାଇଦେଇ ନଦୀ-ଜଳରେ ଭସାଇ ଦେଇଥିଲେ । ଏହି ବିବଶତା ହେତୁ ସାରା ଜୀବନ ମୋ' ନିଜ ଭାଇ ପାଣ୍ଡବମାନଙ୍କର ବିରୋଧୀ ହୋଇ ରହିଗଲି ଓ ସେମାନଙ୍କ ବିପକ୍ଷରେ ଲଢ଼ିଲି । ଇସ୍ ! ବିବଶତା ଆଉ ପୁଣି କ'ଣ ନ କଲା ? ଦ୍ରୁପଦରାଜନନ୍ଦିନୀ କୃଷ୍ଣା ପାଣ୍ଡବମାନଙ୍କ ବଧୂ । ମୋର କନ୍ୟା ସମାନ । ତାଙ୍କୁ ପୁଣି କୌରବ ରାଜସଭାରେ ସେଦିନ କହିଥିଲି ବେଶ୍ୟା ବୋଲି ! କେଉଁ ପରିସ୍ଥିତିରେ ପଡ଼ି ଏହିସବୁ କହିଥିଲି, ତାହା ଯଦି ଆଜି ଖୋଲି ନ ଦେଉଛି, ତେବେ ଚିରଦିନ ପାଇଁ ମୋ' ସଂପର୍କରେ ଲୋକମାନଙ୍କର ଭୁଲ ବୁଝାମଣା ରହିଯିବ । ମୋ' ନାଁରେ କଳଙ୍କ ରଟିବ । ମୋ' ଜନ୍ମଦାତା ସବିତାଦେବଙ୍କର ନିନ୍ଦା ହେବ । ସେଇଥିପାଇଁ ତ ମୋର ଏଇ ଆତ୍ମକାହାଣୀ କହିବାର ଆବଶ୍ୟକତା । ଏହି ଦାୟିତ୍ୱକୁ ଏଡ଼ାଇ ଦେବି ବା କିପରି ?

ମୋର ଏଇ କାହାଣୀ ଅବଶ୍ୟ ଆପଣମାନଙ୍କୁ ସେତେଟା ଭଲ ଲାଗି ନ ପାରେ । ନା ଅଛି ଏଥିରେ ସ୍ୱପ୍ନର ସୁଗନ୍ଧି ନା ମାଧ୍ୱୀର ମାଦକତା । ଅଥବା ନା ଅଛି ଏଠି ପ୍ରଣୟ ବିଭୋର ଯୁବକ-ଯୁବତୀଙ୍କର ପ୍ରାଣପୂରା ଅନୁରାଗ ନା ପ୍ରୀତିଭରା ଅଭିମାନ ! ଏଠି ବି ନାହିଁ ମଳୟଜର ସ୍ନିଗ୍ଧ-ଶୀତଳ ସ୍ପର୍ଶ । ଏଠି ଖାଲି ଅଛି ଉଷ୍ମ ମରୁଭୂମିର ତାତିଲା ପବନ ! ଶୁଷ୍କ ସତ୍ୟର ଐକାନ୍ତିକ ଚିତ୍କାର ! ବନଗହନର କେଉଁ ଏକ ନିଭୃତ କୁଞ୍ଜନରେ ଗୁଞ୍ଜରିତ ଏକାକୀ ପକ୍ଷୀର ଆର୍ତ୍ତବିକଳ ସୁର ! ଯାହା କିଛି ବା କହିଯିବି, ସବୁ କିନ୍ତୁ ସତ କଥା । ସବୁ ଅଙ୍ଗେ ନିଭାଇଛି । ସବୁର ସ୍ମୃତି ଏବେ ମଧ୍ୟ ଗୋଟି ଗୋଟି କରି ଝଲସିଉଠୁଛି ମୋ'

ମନୋରାଜ୍ୟରେ । ତାହାକୁ ଲିଭାଇଦେବାର ଯେ ଅଭିଶାପ ପାଇ ନାହିଁ, ଏହା ବଡ଼ ଭାଗ୍ୟର କଥା ।

ଛାପି-ଛାପିକା ବୁଟି ପଡ଼ିଥିବା ପାଟ ଶାଢ଼ିଟି ଭଳି ଚିତ୍ରିତ ମୋ' ଜୀବନ । ଅଥଚ କୌରବ-ପକ୍ଷର ଯେଉଁ କଣ୍ଟାବାଡ଼ ତାହା ସେଥିରେ ବାଜି ତହିଁରେ ଦେଖା ଦେଇଛି ଶତ ଶତ ଛିଦ୍ର । ତାହା ମୋ' ଜୀବନକୁ ଗୋଟିଏ ଛିଣ୍ଡା ଶାଢ଼ିରେ ପରିଣତ କରିଦେଇଛି । ଯଦି ଜଣେ ମାତ୍ର କେହି ସେହି ଛିଦ୍ରଗୁଡ଼ିକ ଦେଇ ମତେ ଦେଖନ୍ତା, ମୋ' ଜୀବନକୁ ଅନୁଧ୍ୟାନ କରନ୍ତା ଓ ମୋ' ବିବଶତାକୁ ମାପନ୍ତା, ତା'ହେଲେ ମୁଁ କୃତାର୍ଥ ହୋଇଯାନ୍ତି । ତେଣୁ ମୋରି ଭାବୀ ବଂଶଧରମାନଙ୍କୁ ଏଇ ଏକନିଷ୍ଠ ଆହ୍ୱାନ – ଏଇ ଏକାନ୍ତ ଅନୁରୋଧ – ତୁମ୍ଭମାନଙ୍କ ମଧ୍ୟରୁ ଜଣେ କେହି ହେଲେ ଆସ ଓ ମତେ ବୁଝିବା ପାଇଁ ଚେଷ୍ଟା କର । ମୁଁ ବି ତୁମରିମାନଙ୍କ ଭଳି ଜଣେ ମଣିଷ । ଦୋଷ କରିପାରେ । ଭୁଲ କରିପାରେ । ପାପ କରିପାରେ । ପୁଣି ପୁଣ୍ୟ ବି କରିପାରେ । ଗୋଲାପଫୁଲ ଭଳି ମୋର ବି କଣ୍ଟା ଥାଇପାରେ । କିନ୍ତୁ ବାସନା ତ ଅଛି । ଆଉ ଅଛି ତ କୋମଳତା । ସେଇ ବାସନା ଓ କୋମଳତାଟିକକ ତୁମ୍ଭେମାନେ ଗ୍ରହଣ କଲେ କ୍ଷତି କ'ଣ ? ଏତିକି ଉଦାରତା କ'ଣ ଆଶା କରିବି ନାହିଁ ତୁମ୍ଭମାନଙ୍କ ପାଖରୁ ?

ହଁ, ଆଉ ଗୋଟିଏ ବିଶେଷ କଥା । ତାହା ବି ଏକ ବିଶେଷ କାରଣ, ଯେଉଁଥିପାଇଁ ଏଇ କାହାଣୀଟି କହିବାକୁ ଯାଉଛି । ଆଗରୁ ତ କହିଛି, ଏହା ଏକ ଅଭିଶପ୍ତ ଜୀବନର କାହାଣୀ – ଏକ ଦଳିତ ପ୍ରାଣର ଆର୍ତ୍ତନାଦର କାହାଣୀ । ଏତେ ନିନ୍ଦା, ଏତେ ଅପମାନ, ଏତେ ଅନାଦର, ଏତେ ଅସମ୍ମାନ, ଏତେ ବେଦନା, ଏତେ ଦୀର୍ଘଶ୍ୱାସ ସତ୍ତ୍ୱେ ଦବିଯାଇ ନାହିଁ ମୁଁ । ଉପରକୁ ଉଠିବାପାଇଁ ନିରନ୍ତର ଉଦ୍ୟମ କରି ଚାଲିଛି । ଆଗକୁ ଆଗକୁ ପାଦ ବଢ଼ାଇଛି । ପଛକୁ ହଟି ନାହିଁ । ସୂତକୁଳରେ ଜନ୍ମିଥିବାର ରଜ୍ଜୁଟି ମତେ ଯେତେଥର ପଛକୁ ଟାଣିଛି, ସେତେଥର ତାହାକୁ କରିଦେଇଛି ଛିନ୍ନ-ଭିନ୍ନ । ନିଜ ଉଦ୍ୟମରେ ପୌରୁଷକୁ ମୋର ପ୍ରତିପାଦିତ କରାଇଛି । ଜଗତ୍ ଆଗରେ ଦେଇଛି ମୋର ନିଜସ୍ୱ ପରିଚୟ । ମୋର ଇଚ୍ଛା ଓ ଉଦ୍ଦେଶ୍ୟ, ଯଦି ଏହି କାହାଣୀଟି ପଢ଼ି ଜଣେ କେହି ସମାଜର ପଦଦଳିତ ବ୍ୟକ୍ତି ଉଦ୍‌ବୁଦ୍ଧ ହୋଇ ଉପରକୁ ଉଠିପାରିଲା, ତଥାକଥିତ ନୀଚତାର ବନ୍ଧନକୁ ତୁଟାଇ ଦେଇପାରିଲା, ତା'ହେଲେ ମୋର କାହାଣୀ କହିବାଟା ସାର୍ଥକ ହେବ । ବଗିଚାରେ ଶୁଖି ଯାଉଥିବା ଅଗଣିତ ଫୁଲ ମଧ୍ୟରୁ ଗୋଟିଏ ହେଲେ ଫୁଲ ବିକଶି ଉଠୁ !

ଆଉ ବିଶେଷ ଭୂମିକା ନ ଦେଇ ମୋର ଯାହା କହିବାର କଥା, ତାହା ଏବେ ଆରମ୍ଭ କରୁଛି । କାହାଣୀଟି ଆରମ୍ଭ କରିବି ମୋ' ପିଲାଦିନରୁ । ଶିଶୁଟି ଯେତେବେଳେ କିଛି ବୁଝିବା ଭଳି ହୋଇଯାଏ, ସେତେବେଳେ ତା'ର ପ୍ରଥମ ଜ୍ଞାନ ଆସେ ମାଆଙ୍କ ବିଷୟରେ । ଆଉ ସବୁ ଜ୍ଞାନ ଆସେ ପଛରେ । ପ୍ରଥମେ ତେଣୁ ସେଇ ମାଆଙ୍କ କଥା କହୁଛି ।

କିଏ ସେଇ ମାଆ ?

## ଦୁଇ

ମୋ’ ମାଆଙ୍କ ନାଁ ରାଧା । ଦୁଇଟି ଅକ୍ଷରର ନାଁଟି । କିନ୍ତୁ ମୋର ଅୟୁତ ବାଧାର ଉତ୍ତାପକୁ ନିବାରଣ କରିବାପାଇଁ ସତେଯେମିତି ମମତାର ସ୍ୱଚ୍ଛ-ଶୀତଳ ଏକ ବିପୁଳ ଗଙ୍ଗାଧାର ! ସ୍ନେହର ଉର୍ମିରେ ଚଞ୍ଚଳ । ଆଶୀର୍ବାଦର କଳସ୍ୱନରେ ଉଚ୍ଛଳ । ସେହି ମୋ’ ମମତାମୟୀ ମାଆ । ତାଙ୍କରି ପୁତ୍ର ଭାବରେ ପରିଚିତ ହୋଇ ଅଶେଷ ଗର୍ବିତ ମୁଁ । ଅନେକ ନାଁ ଅଛି ମୋର । କିନ୍ତୁ ରାଧେୟ ବୋଲି କିଏ ଯଦି ମତେ ଡାକେ, ତାହା ଭାରି ଭଲ ଲାଗେ । ସେହି ଡାକରେ ଯେଉଁ ମମତାମୟୀ ମୂର୍ତ୍ତିଟି ଆଖି ଆଗରେ ଝଲସିଉଠେ ତାହାର ତୁଳନା ହିଁ ନାହିଁ ।

କୌରବରାଜ ଧୃତରାଷ୍ଟ୍ରଙ୍କ ପାଟସାରଥି ଅଧିରଥ ପତ୍ନୀ ସେ । ପିତା ଅଧିରଥଙ୍କର ମଧ ମୋ’ ପ୍ରତି କମ୍ ସ୍ନେହ ଓ ଆଶୀର୍ବାଦ ନ ଥିଲା । ପିତାମାତାଙ୍କ ସ୍ନେହର ସ୍ରୋତସ୍ୱିନୀରେ ଉବେଇ-ଟୁବେଇ ହୋଇ କଟିଯାଉଥାଏ ମୋର ବାଲ୍ୟଜୀବନ । ତରଳ ଢଳ ଢଳ ମର୍ମରିତ ଜୀବନର କମ୍ପନରେ ସଦାଚଞ୍ଚଳ ! ପୁଣି ଅତି ଅନାବିଳ ସ୍ନେହାନୁଭୂତିରେ ଜର୍ଜର ! ଗିରି-ନିର୍ଝରୀ ଭଳି ଅବାଧ ତାହାର ଗତି । ସର୍ବଦା କଳକଳ-ମୁଖରିତ । ଅପ୍ରାପ୍ତିର ଦୁଃଖ ନ ଥାଏ କିମ୍ବା ପ୍ରାପ୍ତିର ଲାଳସା ନ ଥାଏ । କିନ୍ତୁ ତଥାପି ଥାଏ ତାହା ସୁଖମୟ ।

ସେଇ ଜୀବନ କଥା ଭାବିଲେ ମନରେ ଏବେ କେତେ ଅବଶୋଷ ଆସେ । ଆଃ ! ଆଉ ଟିକିଏ ବେଶି ଦିନ ହେଲେ ଭୋଗିଥାନ୍ତି ସେଇ ଜୀବନକୁ ! ଆଉ ଟିକିଏ ଅଧିକ ମାତ୍ରାରେ ହେଲେ ଚାଖିଥାନ୍ତି ସେହି ମହୁକୁ ! ଜୀବନରେ ଅନେକ ସିଦ୍ଧି ମତେ ମିଳିଛି । ମିଳିଛି ବି ଅନେକ ସୁଖ ଓ ଆନନ୍ଦ । କିନ୍ତୁ ପିଲାଦିନର ସେହି ସିଦ୍ଧିହୀନ ସରଳ-ସୁନ୍ଦର ନିଷ୍କପଟ ଜୀବନକୁ ନିଶିଦିନ ଭରି ଯେଉଁ ଆନନ୍ଦ କୁତୁ-କୁତୁ କରି ଦେଉଥିଲା, ତାହାର ତୁଳନା ହିଁ ନାହିଁ ! ଜ୍ଞାନୀ ଲୋକମାନେ କହନ୍ତି, ମଣିଷ କୁଆଡ଼େ ଅମୃତର ସନ୍ତାନ । ସଦାସର୍ବଦା ଅମୃତରେ ଟଳମଳ ! ଏହାର ସତ୍ୟତା ଉପଲବ୍ଧି କରିପାରିଥିଲି ମୋ’ ବାଲ୍ୟଜୀବନରେ ଅତି ପରିପୂର୍ଣ୍ଣ ଭାବରେ । ଅତି ପୁଷ୍କଳ ଭାବରେ ।

ଏବେ ଭାବୁଛି, ମୁହୂର୍ତ୍ତକ ପାଇଁ ହେଲେ ସେହି ଜୀବନକୁ ଜୀଇଁବା ପାଇଁ କିଏ ସୁଯୋଗ ଦିଅନ୍ତା କି !

କିନ୍ତୁ ତାହା କ’ଣ ସମ୍ଭବ ? ଯେଉଁ କାଳ ଚାଲିଯାଇଛି, ତାହା କ’ଣ ଆଉ ଫେରିବା ସମ୍ଭବ ? ଋତୁଚକ୍ର ଅବଶ୍ୟ ଘୂରୁଥାଏ । ଗୋଟିକ ପରେ ଗୋଟିଏ ଋତୁ ଆସେ ଓ ଯାଏ । ପୁଣି ବାର ମାସ ପରେ କ୍ରମାନ୍ୱୟରେ ସେମାନଙ୍କର ହୁଏ ପୁନରାବୃତ୍ତି । ଅବୋଧ ମଣିଷ କହେ, ପୁଣି ଗ୍ରୀଷ୍ମ ଆସିଲା । ପୁଣି ବସନ୍ତ ଆସିଲା । କିନ୍ତୁ ସେହି ଗ୍ରୀଷ୍ମ, ସେହି ବସନ୍ତ କ’ଣ ସତରେ ଫେରିଆସେ ? ନା, ଫେରେ ନାହିଁ । ଯେ ଆସେ ନୂଆ ଗ୍ରୀଷ୍ମ, ନୂଆ ବସନ୍ତ । ମଣିଷ ବିଚରା ଭ୍ରମିତ ହେଉଥାଏ । କାଳର ତାଡ଼ନାରେ ହେଉଥାଏ ଛଟପଟ । ହେଉଥାଏ କ୍ଷତବିକ୍ଷତ । କାଳର ସବୁ କିଛି ଅତ୍ୟାଚାର ସହି ଯାଉଥାଏ । କାଳ ନିକଟରେ ସେ ଥାଏ ସର୍ବତୋଭାବରେ ଅସହାୟ ଓ ବିବଶ । ବିଚରା ମଣିଷ !

ମୁଁ କର୍ଣ୍ଣ ବି ଆଜି ସେହିଭଳି ଅସହାୟ ହୋଇଉଠିଛି । ହୋଇଉଠିଛି ସେହିଭଳି ବିବଶ । ମୁଁ କୁଆଡ଼େ କୁନ୍ତୀଦେବୀଙ୍କର ଜ୍ୟେଷ୍ଠପୁତ୍ର । ସମସ୍ତ ପାଣ୍ଡବଙ୍କର ଅଗ୍ରଜ । ଅଥଚ କାଳ ମତେ ଠିଆ କରାଇଛି ରାଜସାରଥି ଅଧିରଥଙ୍କ ପୁତ୍ର ଭାବରେ । ରାଧାନନ୍ଦନ କର୍ଣ୍ଣ ରୂପରେ । ଖାଲି ସେତିକି ନୁହେଁ । ମୁଁ ଆଜି ସେହି କାଳଦ୍ୱାରା ହିଁ ଅନୁପ୍ରେରିତ ହୋଇ ଲଢୁଛି ମୋର ଆଦରଣୀୟ ଅନୁଜ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ସାଥିରେ । ତାଙ୍କ ପ୍ରାଣ ନେବା ପାଇଁ ମାତା କୁନ୍ତୀଙ୍କ ଆଗରେ କରିଛି ପ୍ରତିଜ୍ଞା । ଅବଶ୍ୟ ତାଙ୍କ ଛଡ଼ା ଆଉ କୌଣସି ପାଣ୍ଡବଙ୍କ ପ୍ରାଣ ନେବା ମୋର କାମ୍ୟ ନୁହେଁ । ସେତିକି ଯାହା ମନକୁ ମନ ନିଜକୁ ସାନ୍ତ୍ୱନା ଦେଉଛି । କିନ୍ତୁ ଏହା କ'ଣ ସତରେ ସାନ୍ତ୍ୱନା ? ଏହା ସାନ୍ତ୍ୱନା ନାଁରେ ପ୍ରତାରଣା ସିନା ! ନିଜକୁ ନିଜେ ପ୍ରତାରିତ କରି ବସିଛି । ହଁ, ପ୍ରତାରିତ କରି ବସିଛି ବିପୁଳ ଭାବରେ । ଯେଉଁ ବିଚିତ୍ର ପରିସ୍ଥିତିରେ ପଡ଼ି ମତେ ଏହି ପ୍ରତିଜ୍ଞା କରିବାକୁ ପଡ଼ିଛି ସେ କଥା ପରେ କହିବି । ହଁ, କାଳ କଥା କହୁଥିଲି ପରା । ସେହି କାଳଦ୍ୱାରା ଅନୁପ୍ରେରିତ ହୋଇ ରଥଚକ୍ର ମୋର ଧରଣୀଲଗ୍ନ ଥିବା ଅବସ୍ଥାରେ ଅର୍ଜୁନ ମତେ ପ୍ରାଣାନ୍ତକ ବାଣ-ପ୍ରହାର କରିବାପାଇଁ ସମୁଦ୍ୟତ । ଅଗ୍ରଜଙ୍କ ପ୍ରାଣ ନେବାପାଇଁ ଅନୁଜଙ୍କ ପ୍ରାଣରେ ଉଦଗ୍ର ତୃଷା ! କାଳଦ୍ୱାରା ହିଁ ଏପରି ବିଡ଼ମ୍ବିତ ପରିସ୍ଥିତିର ସୃଷ୍ଟି । ମୋ' ଜୀବନ ନେବାରେ ଆଉ ବିଳମ୍ବ ନ କରିବା ପାଇଁ ଅର୍ଜୁନଙ୍କ କର୍ଣ୍ଣମୂଳରେ ବାରମ୍ବାର ଉପଦେଶ ଦେଉଛନ୍ତି ଭଗବାନ୍ କୃଷ୍ଣ । ମତେ ଧରି ଅର୍ଜୁନ, କୃଷ୍ଣ ସମେତ ଆମେ ସମସ୍ତେ ଆଜି କାଳର ଦାରୁଣ ତାଡ଼ନାରେ ଅତିଷ୍ଠ । ତା ଆଗରେ ସଂପୂର୍ଣ୍ଣ ଭାବରେ ବିବଶ । କାଳ ଯାହା ଚାହୁଁଛି, ତାହା ଘଟାଇ ଦେଇ ଚାଲିଛି । ଆମେ ଖାଲି ଯାହା ଚାହିଁରହିଛୁ ମୂକ ସାକ୍ଷୀ ହୋଇ । ତାହାର କ୍ରୀଡ଼ନକ ମାତ୍ର ହୋଇ । କାଳ ଆଗରେ ଆମର ସକଳ ଗର୍ବ, ସକଳ ଦର୍ପ, ସକଳ ଅଭିମାନ ତୁଚ୍ଛ !

ମୋର ଆଜି ମନେ ପଡୁଛି ଆଚାର୍ଯ୍ୟ ପରଶୁରାମ ମତେ ଦେଇଥିବା କାଳ ସଂପର୍କରେ ତତ୍ତ୍ୱଭରା ଉପଦେଶ କଥା । ବଡ଼ ଗହନ-ଗଭୀର ସେ ତତ୍ତ୍ୱ । ସାଧାରଣ ମଣିଷ ପାଇଁ ଅଗମ୍ୟ । କିଛିଟା ବୁଝିଥିଲି ମୁଁ । କିନ୍ତୁ ଅନେକ କିଛି ମୋ' ପାଇଁ ରହି ଯାଇଥିଲା ଅଗମ୍ୟ ହୋଇ । ସାରା ଜୀବନ ଧରି ସେହି ବିଷୟରେ ଅନେକବାର ଚିନ୍ତା କରିଛି । କିନ୍ତୁ ଦ୍ୱନ୍ଦ୍ୱ ମୋର ହୋଇପାରି ନାହିଁ ସମାହିତ । ମନରେ ସେମିତି ରହିଯାଇଛି ଝାପ୍‌ସା-ଝାପ୍‌ସା ସନ୍ଦେହ । କାଳକୁ ତାଙ୍କ କହିବାମତେ ଯେତିକି ଜାଣିବା ପାଇଁ ଚେଷ୍ଟା କରିଛି, ସେ ସେତିକି ସେତିକି ଦୂରେଇ ଯାଇଛି ମୋ' ପାଖରୁ । ଅନନ୍ତ, ଅଗମ୍ୟ, ଅବୋଧ ଏହି କାଳ । ବାସ୍ତବିକ ସେହି କଥା ହିଁ ଆଚାର୍ଯ୍ୟ ସେ ଦିନ କହିଥିଲେ ।

ସେ କହିଥିଲେ, ''ବାପା କର୍ଣ୍ଣ ! କାଳ ଅକ୍ଷୟ, ଅବ୍ୟୟ ଓ ଅନନ୍ତ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍‌ରେ ଏହାକୁ ବିଭାଜିତ କରିବା ଏକ ଭ୍ରମ ମାତ୍ର । ଏହା ପରମାତ୍ମାଙ୍କ ସହିତ ସମାନ ଓ ଅନନ୍ତ ଶାନ୍ତିର ଆଧାର । ଏହାକୁ ଖଣ୍ଡିତ ଭାବରେ ଦେଖିଲେ ମଣିଷ ଦୁଃଖ ପାଏ । ଅଥଚ ଅଖଣ୍ଡିତ ଭାବରେ ଦେଖିଲେ ପାଏ ଅସୀମ ସୁଖ । ପାଏ ଚିରନ୍ତନ ଆନନ୍ଦ । ଏହା ହିଁ ବେଦାନ୍ତର ବାଣୀ । ତୁମେ ତେଣୁ କାଳକୁ କାଳଦ୍ୱାରା ଜିଣିବାକୁ ଚେଷ୍ଟା କର । ତାହେଲେ ତୁମେ କାଳ ସହିତ ମିଶିଯିବ ଓ ହୋଇଯିବ କାଳୋତ୍ତୀର୍ଣ୍ଣ । ସେତେବେଳେ କାଳ

ଆଉ ତୁମ ପାଇଁ ପୀଡ଼ାଦାୟକ ହୋଇ ରହିବ ନାହିଁ । କାଳ ଓ ତୁମେ ଏକାକାର ହୋଇଯାଇ ଅବଗାହନ କରିବ ଅମୃତମୟ ସାଗରରେ । ତାହାହିଁ ଏକ ପରିପୂର୍ଣ୍ଣ ଜୀବନର ଚରମ ଲକ୍ଷ୍ୟ । ତାହା ହିଁ ମୋକ୍ଷ । ସେହି ଜୀବନଟି ଜୀଇଁବା ପାଇଁ ଚେଷ୍ଟା କର ବାପା କର୍ଣ୍ଣ ।''

ଏହାକୁ ଖାଲି ଘୋଷିକରି ମନେ ରଖିଥିଲି ସିନା । ଏହାର ସାରତତ୍ତ୍ୱ କିନ୍ତୁ କିଛି ବୁଝିପାରି ନ ଥିଲି । ଦିବ୍ୟାସ୍ତ୍ରଠାରୁ ଆରମ୍ଭ କରି ପାରମ୍ପରିକ ଅସ୍ତ୍ର ପର୍ଯ୍ୟନ୍ତ ଗୁରୁଦେବ ଯାହା ଯାହା ବତାଇଥିଲେ ସବୁ ବୁଝିପାରିଥିଲି କେବଳ ଏହି କାଳତତ୍ତ୍ୱଟିକୁ ଛାଡ଼ିଦେଇ । ତାହା ସାରା ଜୀବନ ଧରି ମୋ' ପାଇଁ ରହିଗଲା ଚିର ଅବୋଧ ଚିର ଅଗମ୍ୟ ହୋଇ । ସତେ ବଡ଼ ବିଚିତ୍ର ଏ କାଳର ତତ୍ତ୍ୱ ।

ମୋ' ପାଇଁ ଏହି କାଳ ଖାଲି ତ ପୀଡ଼ାଦାୟକ ହୋଇ ନାହିଁ । ମୋ' ଜୀବନକୁ ତିଳ-ତିଳ କରି ଜାଳିଦେଇଛି ମଧ୍ୟ । ସୂତପୁତ୍ରର କାଳିମା ଆଣି ମୋ' ଦେହରେ ବୋଳିଦେଇଛି ଯଦିଓ ଜନ୍ମ ମୋର ଦୈବ ଅଂଶରେ । ଜନ୍ମଦାତ୍ରୀ ମାଆଙ୍କଠାରୁ ମତେ ଅଲଗା କରିଦେଇଛି । ମାତୃ-ସ୍ତନ୍ୟକୋଷର ଆଦି ଆହାରକୁ ମୋ'ଠାରୁ ଛଡ଼ାଇନେଇଛି ଅତି ନିମର୍ମ-ନିଷ୍ଠୁର ଭାବରେ । ବଡ଼ ହେବାପାଇଁ ମୋର ସକଳ ଆଶା, ସକଳ ଅଭୀପ୍ସା ଆଗରେ ବଡ଼ ବଡ଼ ପଥରଖଣ୍ଡମାନ ଆଣି ବାଧା-ବିଘ୍ନ ରୂପରେ ଥୋଇଛି । ବଂଶର ଆଭିଜାତ୍ୟ ମୋର ଥିଲେ ବି ମତେ ଦୁର୍ଯ୍ୟୋଧନଙ୍କ କୃପାର ପାତ୍ର ହେବାପାଇଁ ବିବଶ କରିଦେଇଛି । ସେହି ନିଷ୍ଠୁର କାଳକୁ ମୁଁ କେମିତି ବା ମାନିବି ଅମୃତମୟ ବୋଲି ? କେମିତି ବା କହିବି ଶାନ୍ତିବିଧାୟକ ବୋଲି ? କେମିତି ବା ଗ୍ରହଣ କରିବି ଆଶୀର୍ମୟ ବୋଲି ?

ସେହି କାଳ ଏବେ ନିଷ୍ଠୁର-ନିର୍ମମ ଭାବରେ ମୋ'ଠାରୁ ଶୈଶବର ସୁଖମୟ ମୁହୂର୍ତ୍ତଗୁଡ଼ିକୁ ଛଡ଼ାଇ ନେଇଯାଇଛି ।

ଆରେ, ଏ କ'ଣ କହିଯାଉଛି ମୁଁ ? ଶୈଶବ କଥା କହୁ କହୁ କାଳତତ୍ତ୍ୱ କଥା କହି ବସିଲିଣି । ତାହାର ଅବୋଧ ଦର୍ଶନକୁ ଛୁଇଁ ବସିଲିଣି । ମୋର ତ ସେ ବିଷୟରେ ଝାପ୍‌ସା ଝାପ୍‌ସା ଜ୍ଞାନ ବି ନାହିଁ । ତେଣୁ ବୃଥାରେ ତାହାକୁ ଜଣେଇବି ବା କାହିଁକି ? ତେଣୁ ଏବେ ପୁଣି ଫେରିଯାଉଛି ମୋର ଶୈଶବକୁ । ମୋର ବାଲ୍ୟ କ୍ରୀଡ଼ାଭୂମି ଚମ୍ପାପୁର ଗ୍ରାମକୁ । ମୋର ନାଭିଗତ ସଂପର୍କ ଥିବା ସେହି ସୁନ୍ଦର ଭୂମିଟିକୁ ଯାହାର ଗନ୍ଧ ସାରା ଜୀବନ ଧରି ମୋ' ସ୍ମୃତିତୀର୍ଥରେ ରହିଛି ଉଜ୍ଜୀବିତ ।

ଚମ୍ପାପୁର । ଅଙ୍ଗଦେଶର ଛୋଟ ଗାଁଟିଏ । ନାଁଟି ଯେମିତି ସୁନ୍ଦର, ପରିବେଶଟି ବି ସେମିତି ମନୋରମ ଓ ଆକର୍ଷଣୀୟ । କିଏ ଏହି ଗାଁଟି ବସାଇଥିଲା କୋଜାଣି ? ପୁଣି ଏହାର ନାଁ ଚମ୍ପାପୁର ଦେଇଥିଲା କେଜାଣି ? ଆର୍ଯ୍ୟାବର୍ତ୍ତରେ ବହୁତ ବଡ଼ ବଡ଼ ନଗର ଅଛି । ହସ୍ତିନାପୁର, ଦ୍ୱାରକାପୁର, କାମ୍ପିଲ୍ୟ, ମଥୁରା, ଅଯୋଧ୍ୟା, ଏମିତି ଆହୁରି ଅନେକ ନଗର । ଅନେକ ସ୍ୱନାମଧନ୍ୟ ଲୋକଙ୍କର ଚଳପ୍ରଚଳ ସେଠାରେ । ସେଗୁଡ଼ିକରେ ଘଟିଯାଇଥିବା ଘଟଣାବଳୀରେ ଗଢ଼ାଯାଉଛି ଆର୍ଯ୍ୟାବର୍ତ୍ତର ଇତିହାସ । ସେଗୁଡ଼ିକରେ ଜନ୍ମିଥିବା ବୀର-ସହିଦମାନଙ୍କ ରକ୍ତରେ ରଞ୍ଜିତ ହୋଇଉଠିଛି ଆର୍ଯ୍ୟାବର୍ତ୍ତର ସଭ୍ୟତା ଓ ସଂସ୍କୃତିର କମନୀୟ ପ୍ରତିମା । ଅଥଚ ଏଇ ଛୋଟ ଚମ୍ପାପୁର ଗାଁଟି । କୌଣସି ଇତିହାସ

କିମ୍ବା ଭୂଗୋଳର ଭୂର୍ଜପତ୍ରରେ ଏହାପାଇଁ ଜାଗା ନାହିଁ । ଆଉ ଭବିଷ୍ୟତ୍‌ରେ ରହିବ ନାହିଁ ବି । ଏହାର ସ୍ଥିତି ଆର୍ଯ୍ୟାବର୍ତ୍ତର କେଉଁ କ୍ଷୁଦ୍ରାତିକ୍ଷୁଦ୍ର କୋଣରେ ଅଥବା ଅନୁକୋଣରେ । ଦେଶର ରାଜନୈତିକ ପ୍ରାଣକେନ୍ଦ୍ରଠାରୁ କାହିଁ କେତେ ଯୋଜନ ଦୂରରେ । କିନ୍ତୁ ମୋ' ପାଖରେ ଏହା ଅତି ମହାନ୍ । ଏହାରି ପାଣି-ପବନରେ ଗଢ଼ା ମୋର ପିଣ୍ଡ । ଏହାରି ପାଣି ଶୋଣିତ ହୋଇ ପ୍ରବାହିତ ମୋ' ଶିରା-ପ୍ରଶିରାରେ । ପ୍ରତ୍ୟେକଟି ରକ୍ତବିନ୍ଦୁରେ ମୋର ଏହାରି ସ୍ପନ୍ଦନ ! ମାଆ ରାଧାଙ୍କ ଭଳି ଏ ମୋର ଆଉ ଜଣେ ମାଆ । ମୋର ମାଟି-ମାଆ ! ମୋ' ପାଇଁ ଅତି ପୂତପବିତ୍ର ଠିକ୍ ପ୍ରୟାଗ-ତୀର୍ଥ ଭଳି । ପିତା, ମାତା ଓ ଗାଁଲୋକମାନଙ୍କ ମେଳରେ ଥାଇ ମତେ ଲାଗୁଥାଏ, ସତେ ଯେମିତି ମୁଁ ଯମୁନା, ଗଙ୍ଗା ଓ ସରସ୍ୱତୀର ସଙ୍ଗମ-କ୍ଷେତ୍ରରେ ବିଚରଣ କରୁଛି ! ଚିର୍‌ଦିନ ଧରି ସେଇ ମାଟି-ମାଆଟି ମୋ' ସ୍ମୃତିର ଫଳକରେ ପ୍ରତିଫଳିତ । ନିଜର ସବୁଜ ପଣତଟିକୁ ଗଙ୍ଗାଜଳରେ ପଖାଳି-ପଖାଳି କାହିଁ କେଉଁ ଆବହମାନ କାଳରୁ ଶାନ୍ତିମୟ ଶେଯରେ ଶୋଇ ରହିଛି ସେ । ଗଙ୍ଗାର କୂଳେ-କୂଳେ ଲମ୍ବି ଯାଇଥିବା ଘଞ୍ଚ ଚମ୍ପାବନର ଗହଳରୁ ଯେତେବେଳେ ପ୍ରଭାତୀ ବିହଗମାନେ ଆଦ୍ୟ ସଙ୍ଗୀତ ଗାଇଉଠନ୍ତି, ସେତେବେଳେ ଗାଁର ନିଦ ଭାଙ୍ଗେ । ସେ ଅଳସ ଭାଙ୍ଗି ଚେଇଁଉଠେ । ଗାଁଲୋକମାନେ ବି ଚେଇଁଉଠନ୍ତି । ଗାଁ ସାରା ନୂଆ ଜୀବନର ଧରା ଚଞ୍ଚଳ ହୋଇଉଠେ ଓ ସେହି ଚଳଚଞ୍ଚଳ ଧାରା ସହିତ ପ୍ରଭାତୀ ତପନଙ୍କର କନକ କିରଣ ଲୁଚକାଳି ଖେଳିବାକୁ ଲାଗେ । ବେଳେ ବେଳେ ଭାବେ, ଏହି ଘଞ୍ଚ ଚମ୍ପାବନକୁ ଦେଖି କେହି ମହାତ୍ମା ହୁଏତ ଏହି ଗାଁଟିର ନାଁ ଦେଇଥିବେ ଚମ୍ପାପୁର ବୋଲି ।

ଚମ୍ପାଫୁଲର ମହକ ସାଥେ ସାଥେ ଛୋଟ ଗାଁଟିରେ ବାସ କରୁଥିବା ଲୋକମାନଙ୍କ ମଧ୍ୟରେ ଥିବା ମିତ୍ରତାର ମହକ ମିଶି ଗାଁଟିକୁ ଅତି ସୁନ୍ଦର-ଲୋଭନୀୟ କରି ତୋଳିଥାଏ । ଚାରିଆଡ଼େ ଶାନ୍ତି ଓ ସୌହାର୍ଦ୍ଦ୍ୟର ବାତାବରଣ । ସହନଶୀଳତାର ଛଳ-ଛଳ ପ୍ରବାହ ।

ଗାଁଟିରେ ଚାଳିଶ ଘର ସୂତ ପରିବାର । ବେଉସା ରଥ ଚଳାଇବା । ଆମ ପରିବାର ସେମାନଙ୍କ ମଧ୍ୟରୁ ଗୋଟିଏ । ବ୍ରାହ୍ମଣ ଆଦି ଅନ୍ୟାନ୍ୟ ଉଚ୍ଚ ବର୍ଣ୍ଣର ଲୋକେ ଅବଶ୍ୟ ଅଛନ୍ତି । ଆଉ ଅଛନ୍ତି ବି କର୍ମକାର, ଚର୍ମକାର, ବର୍ଦ୍ଧକୀ ଆଦି ଶିଳ୍ପଜୀବୀମାନେ । କିନ୍ତୁ ସେମାନଙ୍କ ସଂଖ୍ୟା ଖୁବ୍ କମ୍ । ସୂତପରିବାରର ଅଧିକତା ହେତୁ ଲୋକେ ସାଧାରଣତଃ ଏହାକୁ ସୂତଗ୍ରାମ ବୋଲି କହିଥାନ୍ତି । ସୂତପ୍ରଧାନ ଅଧିରଥ ହେଉଛନ୍ତି ଗ୍ରାମଭୋଜକ । ଗାଁର ମୁଖିଆ । ପାରମ୍ପରିକ ଭାବରେ ଅଛନ୍ତି ହସ୍ତିନାପୁରର ରାଜସାରଥି । ତାଙ୍କ ପିତା, ପିତାମହ, ପ୍ରପିତାମହ, ବୃଦ୍ଧପ୍ରପିତାମହ ଆଦି ସମସ୍ତେ ଥିଲେ ହସ୍ତିନାପୁରର ରାଜସାରଥି । ସେହି ମୋର ପିତା । ମୋର ଭକ୍ତିପୂତ ପ୍ରଣତି ଢାଳିବାର ଆଧାର । ମନେପଡ଼େ ତାଙ୍କର ସ୍ନେହ ଛଳ-ଛଳ ଆଖି ଦିଓଟି ଯେତେବେଳେ ମୋର ତାଙ୍କ ପାଦତଳେ ପ୍ରଣତି ଢାଳିବା ଅବସରରେ ସେ ସ୍ନେହ-ଜର୍ଜର କଣ୍ଠରେ କହିଥାନ୍ତି – ଆୟୁଷ୍ମାନ୍ ଭବ ବତ୍ସ ! ତାହା ପରେ ମତେ ତଳୁ ଉଠାଇନେଇ ଆଲିଙ୍ଗନ-ପାଶରେ ବାନ୍ଧି ରଖିଥାନ୍ତି ଓ ନିବିଡ଼ ଭାବରେ ମୋ' ଶିର-ଆଘ୍ରାଣ କରିଥାନ୍ତି । ସେହି ଆଘ୍ରାଣ ମାଧ୍ୟମରେ ମୋ' ପ୍ରାଣକୁ ଶୋଷିନେଇ ତାଙ୍କ ପ୍ରାଣ ସହିତ ଏକାକାର କରିଦେଉଥାନ୍ତି ଯେମିତି ! କିନ୍ତୁ ଅଧିକାଂଶ ଦିନ ସେ ଥାଆନ୍ତି

ପ୍ରବାସୀ । ହସ୍ତିନାପୁରରେ ରହୁଥାନ୍ତି । କୁରୁ-ରାଜ୍ୟର ରାଜଧାନୀ ହସ୍ତିନାପୁର । ଆମ ଗାଁଠାରୁ କାହିଁ କେତେ ଯୋଜନ ଦୂରରେ ତାହାର ଅବସ୍ଥିତି । ସାଧାରଣତଃ ବର୍ଷା ଚାରିମାସରେ ରଥ-ଚାଳନର ଦାୟିତ୍ୱ କମି ଯାଇଥାଏ । ସେହି ସମୟରେ ତାଙ୍କୁ ମିଳିଥାଏ ଦୀର୍ଘ ସମୟ ପାଇଁ ଅବକାଶ । ସେତିକିବେଳେ ହିଁ ତାଙ୍କର ଅଧିକତର ସାନ୍ନିଧ ମିଳିଥାଏ ମତେ । ତାହା ଗହମ ଓ ଯଅ ଅମଳ ହେବାର ସମୟ । ଏହା ଛଡ଼ା ଅନ୍ୟ କିଛି ବ୍ୟକ୍ତିଗତ କାର୍ଯ୍ୟ ଅବସରରେ ମଝିରେ-ମଝିରେ ଦୁଇ-ଚାରି ଦିନ ପାଇଁ ସାମୟିକ ଛୁଟି ନେଇ ମଧ ଆସନ୍ତି ।

ରାଜକାର୍ଯ୍ୟ ଲାଗି କିଛି ବେତନ ପାଇବା ସଙ୍ଗେ ସଙ୍ଗେ ପାଞ୍ଚ କର୍ଷ ଭୂମି ବୃତ୍ତି ହିସାବରେ ପାଇଛନ୍ତି ସେ । କର ଦେବାକୁ ପଡ଼େ ନାହିଁ । ସେଥିରେ ଆମ ଛୋଟ ପରିବାରଟି ଚଳିଯାଏ ଖୁବ୍ ସୁରୁଖୁରୁରେ । ଦରିଦ୍ର ସୂତ-ପରିବାର ଉଚ୍ଚ ବର୍ଣ୍ଣମାନଙ୍କର କାହିଁ କେତେ ତଳେ । ସମାଜର ବଡ଼ପଣ୍ଡାମାନଙ୍କ ଆଗରେ ଅତି ହେୟ ! ଅତି ନଗଣ୍ୟ ! ମାଛିଟିଏ ସମାନ ହେବ ପରା ! ଉଠିବାର ଆକାଙ୍‌କ୍ଷା ନାହିଁ କିମ୍ବା ପଡ଼ିଯିବାର ଭୟ ବି ନାହିଁ । ଚିରଦିନ ତିମିରିତ ଗୁହା ମଧ୍ୟରେ ପଡ଼ିରହିବା ହିଁ ସାର । ସତେଯେମିତି ଯଜ୍ଞ-ସମିଧ ପୋଡ଼ିଯିବା ପରେ ରହିଥିବା ଅବଶିଷ୍ଟ ମୁଠାଏ ପାଉଁଶ ! ସୂତ-ପରିବାରର ପ୍ରତ୍ୟେକ ସଭ୍ୟର ଜନ୍ମ ସେଇ ପାଉଁଶଗଦାରୁ । ସ୍ଥିତି ଓ ବିଳୟ ବି ସେଇ ପାଉଁଶଗଦାରେ । ହାୟ ରେ ଚିରଅଭିଶପ୍ତ ସୂତପରିବାର !

ଏହି ଦୈନ୍ୟଜର୍ଜରିତ ଅବହେଳିତ ଜୀବନକୁ ମୁଁ କିନ୍ତୁ ଆଦରି ନେଇଥାଏ ସ୍ୱାଭାବିକ ଭାବରେ । ପିତାମାତା ମନରେ ମୋର ଏହି ଧାରଣାଟିକୁ ବଦ୍ଧମୂଳ କରାଇ ଦେଇଥାନ୍ତି – ମତେ ଦିନେ ପିତୃକାର୍ଯ୍ୟର ଭାର ବହନ କରିବାକୁ ହେବ । ତାହା ମୋର କୌଳିକ ବୃତ୍ତି । ଜୀବିକା ନେବାର ସାଧନ । ସେଥିରୁ ମୁକ୍ତି ପାଇବାର ଉପାୟ ନାହିଁ । ତାହାକୁ ହରାଇଲେ ରାଜକୀୟ ବେତନ ସହିତ ପାଞ୍ଚ କର୍ଷ ନିଷ୍କର ଭୂମିକୁ ହରାଇବାକୁ ହେବ । ପିତା ତେଣୁ ରଥ-ଚାଳନର ସକଳ ପ୍ରକାର କଳା-କୌଶଳ ମତେ ଶିଖାଇବାରେ ଅବହେଳା କରି ନ ଥାନ୍ତି । ମୋ' ପାଇଁ ଛୋଟ ରଥଟିଏ ତିଆରି ହୋଇଥାଏ । ଛୋଟ-ଛୋଟ ଘୋଡ଼ା ଦିଓଟି ବି ଥାଆନ୍ତି । ପିଲାଟିଦିନରୁ ରଥ ଚଳାଇବାର କଳା ଶିଖିବାକୁ ଆରମ୍ଭ କରିଥାଏ ।

ଆକାଶଚାରୀ ପକ୍ଷୀମାନଙ୍କୁ ଦେଖି ମନ ହେଉଥାଏ, ମୁଁ ବି ସେମିତି ଉଡ଼ିଯାଆନ୍ତି କି ! ବିଶାଳ ସଂସାରର ଆକାଶରେ ଘୂରି ବୁଲୁଥାନ୍ତି ମୁକ୍ତ ବିହଗ ଭଳି । ସମାଜରେ ପ୍ରତିଷ୍ଠା ପାଆନ୍ତି । ବଡ଼ ହୁଅନ୍ତି । ନାମଜାଦା ବୀରମାନଙ୍କ ମଧ୍ୟରୁ ଜଣେ ହୁଅନ୍ତି । ଯଶ-କୀର୍ତ୍ତି ଅର୍ଜନ୍ତି । କିନ୍ତୁ ସବୁ ଆଶା ଓ ମହତ୍ତ୍ୱାକାଙ୍‌କ୍ଷା ମରିଯାଏ, ମୋ' ନୀଚକୁଳ ଆଡ଼କୁ ଲକ୍ଷ୍ୟକରି । ଯେତେ ଉପରକୁ ଉପରକୁ ଉଡ଼ିଯିବା ପାଇଁ ମନ ଡାକେ, ସେତେ ମତେ ଏହି ନୀଚକୁଳରେ ଜନ୍ମ ତଳକୁ ଟାଣି ଆଣେ । ଆକାଶରୁ ଭୂଇଁରେ କଚାଡ଼ି ହୋଇପଡ଼େ । ହତାଶ ମନରେ ଭାବେ – ସତେ କ'ଣ ମୋର ବଡ଼ ହେବାର ଆଶାଟି ମଉଳିଯିବ ବଣମଲ୍ଲୀ ଭଳି ? ଆଉ ଆଶାର ଝରଣାଟି ଶୁଖିଯିବ ନୀଚକୁଳର ଧୁ-ଧୁ ବାଲିରେ ? ହାୟ ରେ ଦୁର୍ଭାଗା କର୍ଣ୍ଣ !

କାହିଁକି ହେଲା ମୋର ଏଭଳି ଭାଗ୍ୟହୀନ ଜନ୍ମ ? ଏହାର କୌଣସି ଉତ୍ତର ମୁଁ ପାଇପାରୁ ନ ଥାଏ ଯେତେ ନିଜକୁ ପଚାରିଲେ ବି । ଆମ ଗାଁ କୂଳଭୂଇଁରେ ମଥା ପିଟୁଥିବା ଗଙ୍ଗାର ଲହରୀମାଳା କେତେ ବିଚିତ୍ର କଥା କହିଯାଉଥାଏ ! ଅଥଚ ସେଥିରୁ ମୋର ଏଇ ପ୍ରଶ୍ନର ଉତ୍ତର ମିଳେନା । ତାହା ଚିରଦିନ ପାଇଁ ରହିଯାଏ ଅନୁତ୍ତରିତ ହୋଇ !

ପିତା-ମାତା ଶ୍ରଦ୍ଧାରେ ମୋ' ନାଁ ଦେଇଥିଲେ ବସୁସେନ ବୋଲି । କି ଉଦ୍ଦେଶ୍ୟରେ ତାହା ଦିଆଯାଇଥିଲା ଜାଣେନା । ବେଳେବେଳେ ଭାବେ, ସେମାନେ ମତେ ବସୁ ବା ରତ୍ନଟିଏ ବୋଲି ଭାବିଥିବେ ହୁଏତ । ପ୍ରଥମ ପ୍ରଜାତ ହୋଇ ଆସିଥିଲି ସେମାନଙ୍କ କୋଳକୁ । ହୁଏତ ସେମାନଙ୍କୁ ରତ୍ନଟିଏ ଭଳି ଲାଗୁଥିବି । ସେହି ବିଚାରରେ ଆନନ୍ଦରେ ଫୁଲିଉଠି ହୁଏତ ମୋର ଏହି ନାଁଟି ଦେଇଥିବେ ।

କିନ୍ତୁ କ'ଣ ହେଲି ମୁଁ ଜୀବନରେ ? ରତ୍ନଟିଏ କ'ଣ ହୋଇପାରିଲି ? ନୀଚ ସୂତକୁଳରେ ରତ୍ନର ସ୍ୱପ୍ନ ଦେଖିବା ବୃଥା ସିନା ! ଅବଶ୍ୟ ଲୋକଦେଖାଣିଆ ଭାବରେ ପ୍ରତିଷ୍ଠା ପାଇଛି । ରାଜା ହୋଇଛି । ହୋଇଛି ବି ମହାବୀର । ଦିବ୍ୟାସ୍ତ୍ରଗୁଡ଼ିକର ଅଧିକାରୀ ହୋଇଛି । ଲୋକମୁଖରେ ଦାନବୀର କର୍ଣ୍ଣ ନାମରେ ଖ୍ୟାତ । କିନ୍ତୁ ସମାଜର ଯେଉଁମାନେ ମାନ୍ୟ-ଗଣ୍ୟ ବ୍ୟକ୍ତି, ସେମାନଙ୍କ ନିକଟରେ କ'ଣ ପ୍ରତିଷ୍ଠା ପାଇପାରିଲି ? କୁଳଜାତ ପ୍ରତିଷ୍ଠା କ'ଣ ମତେ ମିଳିଲା ? ଏତେ ତଥାକଥିତ ପ୍ରତିଷ୍ଠା ସତ୍ତ୍ୱେ ମତେ ଲାଗୁଛି ମୁଁ ଯେମିତି ପୂର୍ବ ଭଳି ଅଛି ମାଟିର ଫଟା ପ୍ରଦୀପଟିଏ ହୋଇ । ଯେତେ ତେଲ ଢାଳିଲେ ବି ସରିଯାଉଛି ଶୀଘ୍ର ଶୀଘ୍ର । ଚିରଦିନ ଶିଖାଟି ତାହାର ରହିଛି ବିଶ୍ରୀ ଓ ମଳିନ ! ଖାଲି ଯାହା ମିତ୍ର ଦୁର୍ଯ୍ୟୋଧନଙ୍କ ସୃଷ୍ଟ କୃତ୍ରିମ ରତ୍ନମୟ ଭବନଟିରେ ତାହା ଜଳୁଛି ! କିନ୍ତୁ ସେହି ଜଳିବାରେ ଜୀବନ କାହିଁ ? ଉତ୍ତାପ ବା କାହିଁ ? ମେରୁ ପର୍ବତ ଭଳି ତାଙ୍କୁ ହିଁ ମୁଁ ଆଶ୍ରା କରିଛି । ଏହି ହୀନମ୍ମନ୍ୟତା ବାରମ୍ବାର ଗ୍ରାସ କରିଆସିଛି ମତେ । ବାରମ୍ବାର ଚିତ୍ତତଳେ ବିଦ୍ରୋହର ଝଡ଼ ବୁହାଇ ଆସିଛି ! ଅଥଚ ତାହାର ପରିପ୍ରକାଶ ଘଟିପାରି ନାହିଁ । ପରମ୍ପରା ବାଧା ଦେଇଛି ମତେ । ସମାଜ ବି ବାଧା ଦେଇଛି ।

ବେଳେବେଳେ ଭାବୁଛି, ମନୁଷ୍ୟକୃତ ଏହି ସାମାଜିକ ନୀତିନିୟମର ଶୃଙ୍ଖଳଟିକୁ ସୁଯୋଗ ମିଳିଲେ କରି ଦିଅନ୍ତି ଛିନ୍ନ-ଭିନ୍ନ ! ଶତ ଖଣ୍ଡରେ । ସହସ୍ର ଖଣ୍ଡରେ ।

ପିତା-ମାତା ସିନା ବସୁସେନ ନାଁଟି ଦେଇଥିଲେ । କିନ୍ତୁ ମତେ ସ୍ନେହରେ ଡାକୁଥିଲେ ବସୁ ବୋଲି । ଏକ ଅଦ୍ଭୁତ ପରିସ୍ଥିତିରେ ମୋ' ନାଁ ସହିତ ସେହି ପିଲାଦିନେ ହିଁ ଯୋଡ଼ା ହୋଇଗଲା ଆଉ ଗୋଟିଏ ନାଁ – ବୃଷ । ପିତା ମୋ' ବଳବୀର୍ଯ୍ୟରେ ମୁଗ୍ଧ ହୋଇ ମତେ ଡାକିବାକୁ ଲାଗିଲେ ବୃଷ ନାଁରେ । ମାଆଙ୍କ ସହିତ ଗାଁଲୋକମାନେ ବି ମତେ ଧୀରେ ଧୀରେ ସେହି ନାଁରେ ଡାକିବାକୁ ଆରମ୍ଭ କରିଦେଲେ । ଆଉ ସାଥୀ ପିଲାମାନେ ବି ସେହି ନାଁରେ ଡାକିବାକୁ ଲାଗିଲେ । ମୋରି ଏହି ଦୁଇଟି ଡାକ ନାଁ ଥିଲେ ବି ବସୁ ନାଁର ଚଳଣି ଥିଲା ବେଶି । କେଉଁ ପରିସ୍ଥିତିରେ ଏହି ବୃଷ ନାଁଟି ମୋ' ପାଇଁ ଆସିଗଲା, ସେ କଥା ପରେ କହିବି । ତାହାର ପୃଷ୍ଠଭୂମି ଅତି ଅଦ୍ଭୁତ ଓ ବିଚିତ୍ର । ଏଇ ବୃଷ ନାଁଟି ମୋର ଏଭଳି ପ୍ରିୟ ଥିଲା ଯେ ପରବର୍ତ୍ତୀ ଜୀବନରେ ପିତୃତ୍ୱର ଅଧିକାରୀ ହେବାରେ ମୋ ଜ୍ୟେଷ୍ଠ ପୁତ୍ରଙ୍କ ନାମ

ଦେଇଥିଲି ବୃଷସେନ । ଦୁର୍ଭାଗ୍ୟକୁ ମହାଭାରତ ଯୁଦ୍ଧରେ ମୋ' ପୂର୍ବରୁ ସେ ବୀରଗତି ପାଇସାରିଛନ୍ତି ।

ଆଉ କର୍ଣ୍ଣ ନାଁଟି । ସେଇଟି ମୋର ଭଲ ନାଁ । ଜାତକଲିଖିତ ନାଁ । ସେହି ନାଁରେ ହିଁ ମୁଁ ଜଗତ୍‌ରେ ବିଶେଷ ଭାବରେ ଖ୍ୟାତ । ଜ୍ୟୋତିଷାଚାର୍ଯ୍ୟ ଯେତେବେଳେ ମୋର ଜନ୍ମକୁଣ୍ଡଳୀ ଟାଣିଥିଲେ, ସେତେବେଳେ ପିତା-ମାତା ମୋର ଶ୍ରଦ୍ଧାନାମ ଦେଇଥିଲେ କର୍ଣ୍ଣ । ଆଚାର୍ଯ୍ୟ ଦ୍ରୋଣଙ୍କ ପାଖରେ ସେହି ନାଁରେ ମୁଁ ଥିଲି ପରିଚିତ ଯଦିଓ ସେ ମୋର ନୀଚ କୁଳରେ ଜନ୍ମକୁ ସ୍ମରଣ କରାଇବାକୁ ଯାଇ ଜାଣିଶୁଣି ମତେ ବାରମ୍ବାର ଡାକୁଥିଲେ ସୂତପୁତ୍ର ରାଧେୟ ବୋଲି । ଆଉ ଗୁରୁ ପରଶୁରାମ । ତାଙ୍କ ପାଖରେ ପରିଚିତ ଥିଲି ବ୍ରାହ୍ମଣକୁଳସମ୍ଭୂତ କର୍ଣ୍ଣ ଭାବରେ ।

ମୋର ଥିଲେ ଜଣେ ସାନ ଭାଇ — ସଂଗ୍ରାମଜିତ୍ । ସଂକ୍ଷେପରେ ତାଙ୍କ ଡାକ ନାଁ ଥିଲା ସଂଗ୍ରାମ । କେହି ଭଉଣୀ ନ ଥିଲେ । ଏଇ ଚାରିଜଣଙ୍କୁ ନେଇ ଆମ ଛୋଟ ପରିବାର । ବିଶେଷ ଗରିବ ନୁହେଁ କି ଧନୀ ବି ନୁହେଁ । ଏକ ନିମ୍ନମଧ୍ୟବିତ୍ତ ପରିବାର । କୌଣସିମତେ ଚଳିଯାଉଥିଲୁ ଦୁଃଖ-ସୁଖରେ । ପରେ ଅବଶ୍ୟ ମୋର ଗୁରୁଗୃହରେ ଶିକ୍ଷା ସମୟରେ ଆଉ ଦୁଇ ଭାଇ ଜନ୍ମିଥିଲେ ଶତ୍ରୁଞ୍ଜୟ ଓ ବିରାଟ । ସେ ଦୁଇଟିଙ୍କର ମଧ୍ୟ ଏଇ ମହାଭାରତ ଯୁଦ୍ଧରେ ବୀରଗତି ହୋଇସାରିଛି ।

ପିତାଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ଥିଲା ଆମ ସୂତକୁଳରେ । ପ୍ରଥମରେ ସେ ସୂତଗ୍ରାମ ଚମ୍ପାପୁରର ଗ୍ରାମଭୋଜକ । ଦ୍ୱିତୀୟରେ ହସ୍ତିନାପୁରର ସମ୍ରାଟ୍‌ଙ୍କର ପାଟ-ସାରଥି । ଶେଷରେ ହସ୍ତିନା-ସମ୍ରାଟ୍ ଧୃତରାଷ୍ଟ୍ରଙ୍କର ବ୍ୟକ୍ତିଗତ ବନ୍ଧୁ । ଅନେକ ରାଜକୀୟ ବିଷୟ ନେଇ ପିତାଙ୍କ ସହିତ ସମ୍ରାଟ୍ ପରାମର୍ଶ କରୁଥିଲେ । ମହାମନ୍ତ୍ରୀ ବିଦୁରଙ୍କୁ ଛାଡ଼ି ତାଙ୍କର ଦ୍ୱିତୀୟ ବିଶ୍ୱାସୀ ବ୍ୟକ୍ତି ଥିଲେ ମୋ' ପିତା । ଏହି ଦୃଷ୍ଟିରୁ ତାଙ୍କର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲା ହସ୍ତିନା-ରାଜଦରବାରରେ । ସେହି କାରଣରୁ ହିଁ ମୁଁ ସହଜରେ ହସ୍ତିନା-ରାଜକୁମାରମାନଙ୍କ ସହିତ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କରିପାରିଥିଲି । ଏଭଳି ସୁଯୋଗ କେତେଜଣ ସୂତପୁତ୍ରଙ୍କ ଭାଗ୍ୟରେ ବା ଜୁଟେ ? ସେହି ଦୃଷ୍ଟିରୁ ବିଚାର କଲେ ମୁଁ ଥିଲି ଅତି ଭାଗ୍ୟବାନ୍ । ମୁଁ ଥିଲି ଆମ ପରିବାରର ବଡ଼ ପୁଅ ଭବିଷ୍ୟତ୍‌ରେ ହେବି ସୂତଗ୍ରାମର ଗ୍ରାମଭୋଜକ ଓ ସମ୍ରାଟ୍‌ଙ୍କ ପାଟସାରଥି । ଏହି ସବୁ କାରଣରୁ ମତେ ଆମ ଗାଁର ଲୋକମାନେ ଆଦର-ସମ୍ମାନଭରା ଦୃଷ୍ଟିରେ ଦେଖୁଥିଲେ । ଏକ ସ୍ୱତନ୍ତ୍ର ସ୍ଥାନ ଦେଉଥିଲେ । ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ବି ଦେଉଥିଲେ ।

ମୋର ଥିଲା ଏକ ସହଜାତ ଅଭିମାନ । ମତେ ଲାଗୁଥିଲା, ମୁଁ ଯେମିତି ସମୁଦ୍ରର ବିସ୍ତୀର୍ଣ୍ଣ ଜଳରାଶିରେ ବିଚରଣ କରିବାର ଯୋଗ୍ୟ ବିରାଟ ତିମିଙ୍ଗଳ । ଭୁଲରେ ଆସି ସୂତକୁଳର ଅନ୍ଧୀଭୂତ କୂପ ମଧ୍ୟରେ ପଡ଼ିଯାଇଛି । ତେଣୁ ମାନସିକ ସ୍ତରରେ ସେହି କୂପଠାରୁ ବହୁତ ଦୂରରେ ରହୁଥିଲି । ଆମ ପରିବାରର ସ୍ୱତନ୍ତ୍ର ସ୍ଥିତିଟି ମୋର ସେହି ଅଭିମାନକୁ ଆହୁରି ବେଶି ଫୁଲାଇ ଦେଇଥିଲା । ମତେ ବଡ଼ ହେବାପାଇଁ ଅନୁପ୍ରେରିତ କରିଥିଲା । ମୁଁ ଯେ ସମସ୍ତଙ୍କଠାରୁ ପୃଥକ୍, ଏଇ ଧାରଣା ମନରେ ଆଣି ଦେଇଥିଲା ।

ଏଭଳି ଅଭିମାନର ଆଉ ଗୋଟିଏ ବି କାରଣ ଥିଲା । ତାହା ମୋର ଜନ୍ମଜାତ କବଚ ଓ କୁଣ୍ଡଳ । ସେଥିନେଇ ଅନ୍ୟାନ୍ୟ ସୂତପୁତ୍ରମାନଙ୍କଠାରୁ ମୋର ଥିଲା ସ୍ୱାତନ୍ତ୍ୟ । ଖାଲି ସୂତପୁତ୍ର କାହିଁକି, ଅନ୍ୟ କାହାରିଠାରେ ବି ସେଭଳି ବିଚିତ୍ର କବଚ-କୁଣ୍ଡଳ ନ ଥିଲା । ଆମ ବଂଶରେ କେହି ସେଭଳି କବଚ-କୁଣ୍ଡଳର ଅଧିକାରୀ ହୋଇ ନ ଥିଲେ । ଏହା ଜନ୍ମଜାତ ବୋଲି ଜାଣିଥିଲି ମାଆଙ୍କଠାରୁ ।

କେଉଁ ପରିସ୍ଥିତିରେ ତାହା ଜାଣିଲି ସେ କଥା କହୁଛି ।

ମୋର ସାନ ଭାଇ ସଂଗ୍ରାମ । ବଡ଼ ଏକଜିଦିଆ । ଭାରି ଅଝଟିଆ । ଯାହା ବୁଝିଥିବେ ସେଇଆ । ମତେ ଦିନେ ମାଗିଲେ ମୋ' କବଚ-କୁଣ୍ଡଳ ନିଜେ ପିନ୍ଧିବାକୁ । କାରଣ ସେ ରାଜା ହୋଇ ବୀର ସାଜି ଲଢ଼େଇ କରିବାକୁ ଯିବାପାଇଁ ଚାହାନ୍ତି । ଇଚ୍ଛା, ମୋରି କବଚ-କୁଣ୍ଡଳ ପିନ୍ଧିବେ । ମୋର ଖେଳନା-ଅସ୍ତ୍ର ଧରିବେ । ମୋରି ଖେଳନା-ଘୋଡ଼ା ଚଢ଼ିବେ । ଖେଳନାର ଖଣ୍ଡା, ତାଳ, ଧନୁ, ତୀର, ଘୋଡ଼ା ଆଦି ତାଙ୍କୁ ଧରାଇଦେଲି । କିନ୍ତୁ କବଚ-କୁଣ୍ଡଳ । ସେହି ଦିଓଟିକୁ ଦେଇପାରିଲି ନାହିଁ । ଯେତେ ଚେଷ୍ଟା କଲେ ହେଁ ତାହା ଜମା ମୋ' ଦେହରୁ ବାହାରିଲା ନାହିଁ । ତାହା ମୋ' ଦେହ ସହିତ ମିଶିକରି ରହିଥିଲା । ସଂଗ୍ରାମ ଆଉ ସମ୍ଭାଳ ପଡ଼ନ୍ତି କେତେବେ ? ସେ ରାହା ଧରି କାନ୍ଦିବାକୁ ଆରମ୍ଭ କରିଦେଲେ । ପୂରା ରାଜବେଶ ଧରି ନ ପାରିବାରେ ଅତୃପ୍ତି । ମୁଁ ଅବଶ୍ୟ ତାଙ୍କୁ ଖୁସି କରାଇବା ପାଇଁ ଚାହୁଥିଲି । କୌଣସିମତେ ମୋ' କବଚ-କୁଣ୍ଡଳ ତାଙ୍କୁ ଦେବାପାଇଁ ଚାହୁଥିଲି । କିଛି ଉପାୟ ନ ଦେଖି ଅସହାୟ ହୋଇ ଧାଇଁ ଆସିଥିଲି ମାଆଙ୍କ ପାଖକୁ । ମୋ' କବଚ-କୁଣ୍ଡଳକୁ ଓହ୍ଲାଇ ଦେବାପାଇଁ ତାଙ୍କୁ ଅନୁରୋଧ କରିଥିଲି । ମୋ' ପଛେ ପଛେ ସକ-ସକ କାନ୍ଦି ଛୁଟି ଆସିଥିଲେ ସଂଗ୍ରାମ । ମାଆ ନିଜ ପଣତକାନିରେ ତାଙ୍କ ଲୁହ ପୋଛି ଦେଉଥିବା ଅବସରରେ ମତେ ପଚାରିଲେ, ''ବାପା ବସୁ, ସଂଗ୍ରାମ କାହିଁକି କାନ୍ଦୁଛନ୍ତି ? କ'ଣ ହେଲା ତାଙ୍କର ? କିଏ ମାରିଲା କି ?''

ସବୁ ମାଆଙ୍କର ସେଇ ଗୋଟିଏ ସହଜାତ ପ୍ରବୃତ୍ତି । ପିଲା କାନ୍ଦିଲେ ତା'କୁ କିଏ ମାରିଛି ବୋଲି ସନ୍ଦେହ କରିଥାନ୍ତି । ନ ହେଲେ ପଡ଼ି ଆଘାତ ପାଇଥିବ ବୋଲି ଭାବିଥାନ୍ତି । ହିଂସା ଓ ଆଘାତରୁ ସନ୍ତାନକୁ ରକ୍ଷା କରିବା ହେଉଛି ତାଙ୍କ ସହଜାତ ପ୍ରବୃତ୍ତି । ସନ୍ତାନ ବି ସେମିତି ଟିକିଏ ଭୟ କିମ୍ବା ଆଘାତ ପାଇଲେ ଅଥବା ପାଇବାର ଆଶଙ୍କା ଥିଲେ ମାଆଙ୍କ ପଣତ-କାନିରେ ଆଶ୍ରୟ ନେଇଥାଏ । ମୋ' ମାଆ ତେଣୁ ବାଦ ଯାଇଥାନ୍ତେ ବା କିପରି ? ଲୁହ ପୋଛି ଦେଉ ଦେଉ କି ଯେ ଆଦରଭରା ସାନ୍ତ୍ୱନା – ବାପାଟା ପରା ମୋର ! କାନ୍ଦନା, କାନ୍ଦନା ।

କହିଲି, ''ମାଆ, ସେ କବଚ-କୁଣ୍ଡଳ ପାଇଁ କାନ୍ଦୁଛନ୍ତି । ତାହା ପିନ୍ଧି ଲଢ଼େଇକୁ ଯିବେ ।'' ଏହା କହି ମୃଦୁ-ମୃଦୁ ହସିଥିଲି ।

ମାଆ ବି ହସିଦେଲେ । ମିଠା-ମିଠା ହସ । ସମବେଦନାରେ ଉଚ୍ଛଳ । ଅଝଟିଆ ସଂଗ୍ରାମଙ୍କୁ କୋଳକୁ ଆଉଜାଇ ଆଣି କହିଲେ, ''ହଉ, ବାପା ସଂଗ୍ରାମ ! ଏଥରକ ବାପା ହସ୍ତିନାପୁରରୁ ଫେରିଲେ ତୁମପାଇଁ କବଚ-କୁଣ୍ଡଳ କିଣି ଆଣିବା ପାଇଁ କହିବି । ତାହା ପିନ୍ଧି

ପୁଅ ମୋର ବୀରବେଶ ସାଜିବେ !'' ଏତିକି କହି ସେ ସଂଗ୍ରାମଙ୍କ ମୁହଁ ସାରା ଅଜସ୍ର ଚୁମ୍ବନର ଧାରା ଢାଳିଦେଇଗଲେ ।

ମୁଁ ମାଆଙ୍କ କଥା ଉପରେ ପଡ଼ି କହିଲି, ''ନାଇଁ ମାଆ ! ସେ ଆଉ କୌଣସି କବଚ-କୁଣ୍ଡଳ ମାଗୁ ନାହାନ୍ତି । ସେ ଚାହାନ୍ତି ମୋରି କବଚ-କୁଣ୍ଡଳ । ମୁଁ ତାଙ୍କୁ ଦେବାକୁ ଚାହେ । କିନ୍ତୁ ତାହାକୁ ଦେହରୁ ଜମା ବାହାର କରିପାରୁ ନାହିଁ ।'' କଣ୍ଠରେ ମୋର ଅସହାୟ ବାଣୀ ଥର ଥର । ତହିଁରେ ନୈରାଶ୍ୟ ଥାଏ ଜର ଜର । ସାନ ଭାଇଙ୍କର ଏଇ ସାମାନ୍ୟ ପ୍ରାର୍ଥନା ଟିକକ ପୂରଣ କରି ପାରୁ ନ ଥିବାରୁ ମନରେ ଦୁଃଖ ।

ମାଆ ସେମିତି ହସି-ହସି କହିଲେ, ''ବାପା ବସୁ । ତୁମର, ଏଇ କବଚ-କୁଣ୍ଡଳ ଦେହରୁ କାଢ଼ିହେବ ନାହିଁ ।'' ଓଠକଣରେ ତାଙ୍କର ରହସ୍ୟର ହସ ଧୀରେ ଧୀରେ ଘନେଇ ଉଠୁଥାଏ । ମତେ କିନ୍ତୁ ତାହା ଥାଏ ଅସହ୍ୟ । କିଛି ବୁଝିପାରୁ ନ ଥାଏ । ମାର୍ଜାର-ଶିଶୁଟି ଭଳି ଖାଲି ଆଖି ମିଟି-ମିଟି କରି ଚାହୁଁଥାଏ । ଅବୋଧ ନିରୀହ ଚାହାଣି । ତାଙ୍କୁ ପୁଣି ପଚାରିଲି, ''କାହିଁକି ମାଆ ?''

''ବାପା ! ତୁମ କବଚ-କୁଣ୍ଡଳ ଜନ୍ମଜାତ । ତାହା ତୁମ ଦେହରେ ଜନ୍ମରୁ ଲାଗିକରି ଅଛି । ତାହାକୁ ଦେହରୁ କାଢ଼ିହେବ ନାହିଁ ।''

''ମୋରି ଏକା କାହିଁକି ଏଭଳି କବଚ-କୁଣ୍ଡଳ ମାଆ ? ବାପାଙ୍କର ନାହିଁ । ତୁମର ନାହିଁ କି ସାନ ଭାଇ ସଂଗ୍ରାମଙ୍କର ବି ନାହିଁ । ମୋ' ସାଥିମାନଙ୍କର କାହାରି ହେଲେ ନାହିଁ । ଏହାର କାରଣ କ'ଣ ?''

ଏହି ପ୍ରଶ୍ନରେ ମାଆ ଟିକିଏ ଅସ୍ୱସ୍ତି ବୋଧ କରୁଥିଲେ ବୋଧହୁଏ । ଏହି ଅନୁସନ୍ଧିତ୍ସା ତାଙ୍କୁ ହୁଏତ ସୁଖକର ଲାଗୁ ନ ଥିଲା । ସେ ଧୀରେ ଧୀରେ ହୋଇଉଠୁଥିଲେ ଚିନ୍ତାନ୍ୱିତା । କପାଳରେ ଝାଳ କଣ୍ଟି ଆସୁଥିଲା । ଚିତ୍ତ-ତଳର ଉଦ୍‌ବେଗ ମୁହଁରେ ପ୍ରତିଫଳିତ । ତାହା ଧୀରେ ଧୀରେ କଳାକାଠ ପଡ଼ି ଆସୁଥିଲା । କିଛି ଅଜ୍ଞାତ ଆଶଙ୍କା ତାଙ୍କୁ ଛାଇ ରଖିଥିବା ଭଳି ବୋଧ ହେଉଥିଲା । ନିଜକୁ କାହା ନିକଟରେ ଅପରାଧିନୀ ବୋଲି ବିଚାରୁଥିଲେ ବୋଧହୁଏ । ମନର ଭାବକୁ ଗୋପନ ରଖି ସେ ମତେ ପଣତକାନିରେ ଗୁଡ଼ାଇ ରଖିଥିଲେ ଏବଂ ପରେ ପରେ ଛାତିରେ ଜାକି ଧରିଥିଲେ ଅତି ନିବିଡ଼ ଭାବରେ । ସତେଯେମିତି ହଠାତ୍ ହାତଛଡ଼ା ହୋଇ ଉଠୁଥିବା ମତେ ସେ ବାନ୍ଧି ରଖୁଛନ୍ତି ! ଛାଡ଼ିବାକୁ ଦେଉ ନାହାନ୍ତି । ତାଙ୍କର ଏ ବ୍ୟବହାର ମତେ ଯେତିକି ଲାଗୁଥିଲା ବିଚିତ୍ର, ତାହାଠାରୁ ଅଧିକ ଲାଗୁଥିଲା ରହସ୍ୟମୟ । ପିଲା ମନରେ ମୋର ଅୟୁତ ପ୍ରଶ୍ନବାଚୀ – ମାଆ କାହିଁକି ନୀରବ ? ମୋ' ଜନ୍ମଜାତ କବଚ-କୁଣ୍ଡଳରେ କି ରହସ୍ୟ ଛପିରହିଛି ? ତାହାକୁ ଖୋଲିଦେବାରେ ମାଆଙ୍କର ଏତେ ଭୟ କାହିଁକି ? ଏତେ ଉଦ୍‌ବେଗ କାହିଁକି ?

ତାଙ୍କ ନୀରବତା ମତେ ଅସହ୍ୟ ବୋଧ ହେଉଥିଲା । ତାହା ମୋର ଅନୁସନ୍ଧିତ୍ସାକୁ ବଢ଼ାଉଥିଲା ସିନା କମାଉ ନ ଥିଲା । ପୁଣି ଅଝଟ ହୋଇ ପଚାରିଲି, ''କହ ନା ମାଆ, ଏହାର କାରଣ କ'ଣ ?'' ତାଙ୍କଠାରୁ ଉତ୍ତର ଆଶାରେ ତାଙ୍କ ପଣତକାନିକୁ ଜୋର୍‌ରେ ଟାଣି ଧରିଲି ।

''ମୁଁ ଜାଣେନା ବାପା ।'' ମାଆ ନିରୀହ ଭାବ ଦେଖାଇ କହିଲେ । ମୋ' ମୁହଁ ସାରା ଚୁମ୍ବନର ବରଷା ଅଜାଡ଼ି ଦେଉ ଦେଉ ପୁଣି କହିଲେ, ''ଆଉ କଟାଳ କରନା ବାପା । ମୁଁ କିଛି ଜାଣେନା । ଯେ ଯାହା କିଛି, ତାହା ସବୁ ଭଗବାନ୍‌ଙ୍କର ଦାନ ।''

''କିନ୍ତୁ ସେହି ଦାନ କ'ଣ ଖାଲି ମୋରି ପାଇଁ ? ଆଉ କାହିଁକି କାହାକୁ ସେହି ଦାନ ମିଳି ନାହିଁ ?''

''ସେ କଥା ବି ଜାଣେନା ବାପା ।'' ମାଆଙ୍କ ପୁନର୍ବାର ନିରୀହ ଓ ସ୍ନେହୋଚ୍ଛଳ ଉତ୍ତର ।

ବାଳକ-ମନରେ କିନ୍ତୁ ମୋର ଅଶାନ୍ତ ଝଡ଼ । ମାଆ ଯେ କ'ଣ କହୁଛନ୍ତି ? ମୋ' ଜନ୍ମ-ରହସ୍ୟରେ ସେ ଜାଣନ୍ତି ନାହିଁ ତ ଆଉ ଜାଣନ୍ତି କିଏ ? ମାଆଙ୍କ ଛଡ଼ା ସନ୍ତାନକୁ ଆଉ କିଏ ବା ବତାଇପାରିବେ ତା'ର ଜନ୍ମ ରହସ୍ୟ ? ମାଆ ତା'ହେଲେ କାହିଁକି ଏପରି କହୁଛନ୍ତି ? ମାଆ କ'ଣ ମୋର ଗର୍ଭଧାରିଣୀ ନୁହନ୍ତି ? ମୁଁ କ'ଣ ଆଉ କାହାଙ୍କ ପୁଅ ? ସୂତକୁଳରେ କ'ଣ ମୋର ଜନ୍ମ ନୁହେଁ ? ଏମିତି ଅନେକ କିଛି ପ୍ରଶ୍ନ ମୋ' ମନକୁ ପୀଡ଼ିତ କରୁଥିଲା । କୌତୂହଳ ମୋର ବଢ଼ି ଉଠୁଥିଲା ସିନା; କମୁ ନ ଥିଲା । ତଥାପି ଆଶା ହରାଇ ବସି ନ ଥିଲି । ପୁଣି ପଚାରିଲି, ''ମାଆ ! ତୁମେ ସିନା ଜାଣ ନାହିଁ । କହ ତ ଦେଖି କିଏ ଏହାର କାରଣ କହିପାରିବେ ?

''କହିଲେ କହିପାରିବେ ଗଙ୍ଗା-ମାତା । ତାଙ୍କ ଛଡ଼ା ଆଉ କେହି କହିପାରିବେ ନାହିଁ ।''

''ଗଙ୍ଗା-ମାତା କ'ଣ କଥା କହିପାରନ୍ତି ?'' ମୋର ବାଳକସୁଲଭ ନିରୀହ ପ୍ରଶ୍ନ ।

''କହିବେ ନାହିଁ କାହିଁକି ? ନିଶ୍ଚୟ କହିବେ । ପୁତ୍ର ନିଷ୍ଠା ନେଇ ପଚାରିଲେ ସେ ନିଶ୍ଚୟ କହିବେ ।''

''ମୁଁ ତା'ହେଲେ ତାଙ୍କୁ ହିଁ ପଚାରି ବୁଝିନେବି ମାଆ ।''

''ହଉ ବାପା ବସୁ ।'' ମାଆ ଟିକିଏ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ । ଅନ୍ତତଃ ମତେ ସେମିତି ବୋଧ ହେଉଥିଲା । ଓଠତଳେ ତାଙ୍କର ପୂର୍ବ ଭଳି ମୃଦୁ-ମୃଦୁ ହସର ଝଲକ । ରହସ୍ୟରେ ପରିସ୍ନାତ । ମୋ' ବାଳକ ମନ ପାଇଁ ସଂପୂର୍ଣ୍ଣ ଅବୋଧ । ମନେ ମନେ ସଂକଳ୍ପ କରି ବସିଲି, କାଲି ନିଶ୍ଚୟ ଏହି ପ୍ରଶ୍ନର ଉତ୍ତର ଗଙ୍ଗାମାତାଙ୍କୁ ପଚାରି ବୁଝିନେବି ।

ମାଆଙ୍କୁ ଏମିତି କହିଦେଲି ସିନା । ମନରେ କିନ୍ତୁ ଜମା ତୃପ୍ତି ଆସୁ ନ ଥାଏ । ଆସୁ ନ ଥାଏ ବି ସନ୍ତୋଷ । ଜିଜ୍ଞାସୁ ମନ ମୋର ବାରମ୍ବାର ନିଜକୁ ପଚାରୁଥାଏ – ମାଆ କାହିଁକି କାରଣ କିଛି କହୁ ନାହାନ୍ତି ? କାହିଁକି ବୋଧ ହେଉଛନ୍ତି ଏଭଳି ରହସ୍ୟମୟୀ ? କାହିଁକି ସତ କଥାଟା କହିବାପାଇଁ ଏଭଳି ସଙ୍କୁଚିତା ? ଏଭଳି ଶଙ୍କିତା ? ସତରେ କ'ଣ ଗଙ୍ଗାମାତା ମୋ' ପ୍ରଶ୍ନର ଉତ୍ତର ଦେଇପାରିବେ ? ସତରେ ? ମନରେ ମୋର ଉଚ୍ଚାଟ ଓ ଉଦ୍‌ବେଗ । ବାରମ୍ବାର ଏମିତି କେତେ କେତେ ଶଙ୍କିତ ପ୍ରଶ୍ନ । ଯେତେ ଏହିଭଳି ପ୍ରଶ୍ନ କରୁଥାଏ ସେତେ ଗଣ୍ଠିଗୁଡ଼ିକ ତାହାର ହୋଇଯାଉଥାଏ ଅଧିକରୁ ଅଧିକ ଅଫିଟା ଓ

ଅଛିଣ୍ଡା । ଏହିଭଳି ମାନସିକ ସ୍ଥିତି ଧରି ଫେରିଆସିଥିଲି ମାଆଙ୍କ ପାଖରୁ । ମୋ' ଅତୃପ୍ତ ପ୍ରାଣର ଚିତ୍କାରକୁ ମାଆ ବୁଝିପାରୁଥିଲେ କି ନାହିଁ ଜାଣେନା । ଖାଲି ଏତିକି ଲକ୍ଷ୍ୟ କରିଥିଲି ତାଙ୍କ ରହସ୍ୟଭରା ହସତଳେ ସତେ ଯେପରି କିଛିଟା ଆତଙ୍କ ଥିଲା ଅନୁଲିପ୍ତ !

ଏହି ରହସ୍ୟର ପ୍ରଶ୍ନବାଚୀଟି ଘାରି ରଖିଥିଲା ମତେ ସାରା ଦିନ, ସାରା ରାତି ଭରି । ଚତୁର୍ଦ୍ଦଶୀର ଚନ୍ଦ୍ରମା ଆକାଶରୁ ଓହ୍ଲାଇଆସି ଚାନ୍ଦିନୀର ହାତ ବୁଲାଇ ଆମ ଅଗଣାକୁ କୁତୁ-କୁତୁ କରି ଦେଉଥିଲା । ମୁଁ କିନ୍ତୁ ଜଡ଼ନିର୍ଜୀବ ଭଳି ତାହାକୁ ଅନୁଭବ କରିପାରୁ ନ ଥିଲି । ନିବିଡ଼ ଭାବରେ ଥିଲି ଅନ୍ୟମନସ୍କ । ଆଉ ଉଦାସୀ ମଧ୍ୟ । ମନ ମୋର ଘରେ କିମ୍ବା ତାହାର ପରିପାର୍ଶ୍ୱରେ ନ ଥିଲା । ଉଡ଼ି ଉଡ଼ି ଚାଲିଥିଲା କାହିଁ କେଉଁ ଉଚ୍ଚ ଆକାଶ ବୁକୁରେ କେଉଁ ଅପ୍ରାପ୍ତ ବସ୍ତୁକୁ ଖୋଜି ଖୋଜି !

ସେ ଦିନ ରାତିରେ ମତେ ଜମା ଭଲ ନିଦ ହୋଇ ନ ଥିଲା ।

## ତିନି

ତହିଁ ଆରଦିନ ଯେଉଁ ଘଟଣା ଘଟିଲା, ତାହା ମୋ' ମନର ରହସ୍ୟକୁ ଆହୁରି ଅଧିକ ଘନୀଭୂତ କରିଦେଲା । ମୁଣ୍ଡକୁ ଗୋଳମାଳିଆ କରିଦେଲା । ମହରଗରୁ ଯାଇ ପଡ଼ିଲି କାନ୍ତାରରେ । ମନର ଗୋଲକଧନ୍ଦା ଆହୁରି ଜଟିଳତର । ବାରମ୍ବାର ମନକୁ ଏହି ପ୍ରଶ୍ନ ଛୁଉଁଥିଲା— ସତରେ କ'ଣ ଏହି କବଚ-କୁଣ୍ଡଳ ମୋର ଜନ୍ମଜାତ ? ଯଦି ଜନ୍ମଜାତ, ତା'ହେଲେ କିଏ ମୋର ପିତା-ମାତା ? ଯେଉଁମାନଙ୍କୁ ପିତା-ମାତାଙ୍କ ଭକ୍ତି, ସ୍ନେହ ଓ ଶ୍ରଦ୍ଧା ଦେଇଆସିଛି, ସେମାନେ ତା'ହେଲେ କିଏ ? ଆଉ ମୁଁ ବି କିଏ ? କ'ଣ ସୂତପୁତ୍ର ନା ଆଉ କେହି ? ମାଆ କହିଥିଲେ— ଗଙ୍ଗାମାତା ଏହାର ଉତ୍ତର ଦେବେ । ସେଇ ହିଁ ରହସ୍ୟର ଦ୍ୱାରଟିକୁ ଖୋଲି ଦେଇପାରିବେ । କିନ୍ତୁ କାହିଁ ସେ ତ ଉତ୍ତର ଦେଲେ ନାହିଁ ! ତେବେ କିଏ ମୋ' ଆଖିରୁ ଏଇ ରହସ୍ୟର ଅନ୍ଧପୁଟୁଳିକୁ ଖୋଲିଦେବେ ? ସତେ କିଏ ? କିଏ ସେହି ମହାତ୍ମା ?

ଘଟଣାଟି ଏହିଭଳି ଘଟିଥିଲା ।

ସେଦିନ ସକାଳୁ-ସକାଳୁ ବାହାରି ପଡ଼ିଲି ଗଙ୍ଗା-ତୀରକୁ । ମନରେ ଅଦମ୍ୟ ଉତ୍ସାହ । ଅଶାନ୍ତ ଉଦଗ୍ର ପିପାସା । ଗଙ୍ଗା-ମାତାଙ୍କୁ ପଚାରିବି ମୋ' ଜନ୍ମରହସ୍ୟ— ମୋ' କବଚ-କୁଣ୍ଡଳର ରହସ୍ୟ । ତାହା ଥିଲା କାର୍ତ୍ତିକ ପୂର୍ଣ୍ଣିମାର ଏକ କୁହେଳିକାମୟ ପ୍ରଭାତ । କୁହୁଡ଼ିର ମାତ୍ରାଟା ସେ ଦିନ ଥାଏ ଟିକିଏ ବେଶି । ତିନି ଚାରି ହାତ ଆଗକୁ ବି ରାସ୍ତା ଦିଶୁ ନ ଥାଏ । ଗଙ୍ଗାତୀରର ଚମ୍ପାବନ ଜମା ଦିଶୁ ନ ଥାଏ । ସବୁ ଋତୁରେ ଫୁଟୁଥିବା କେତୋଟି ଚମ୍ପାକୁଞ୍ଜରୁ ବିଚ୍ଛୁରିତ ହେଉଥିବା ଫୁଲର ମହକ ଯାହା ତାହାର ସ୍ଥିତିକୁ ସୂଚାଇ ଦେଉଥାଏ । ଭାବୁଥିଲି, ମୁଁ ବୋଧହୁଏ ପ୍ରଥମ ବ୍ୟକ୍ତି ଆଜି ଆସିଛି ଗଙ୍ଗାତୀରକୁ ଏତେ ସକାଳୁ । କିନ୍ତୁ ଅଦୂରରୁ ଆସୁଥିବା ସୂର୍ଯ୍ୟମନ୍ଦିରର ଘଣ୍ଟି-ଧ୍ୱନି ମୋର ସେଇ ଭ୍ରମକୁ ଦୂର କରିଦେଲା ।

ପୂଜକ ମହାଶୟ ମୋର ବହୁ ପୂର୍ବରୁ ଆସି ଗଙ୍ଗାରେ ସ୍ନାନାଦି ନିତ୍ୟକର୍ମ ସାରି ଏବେ ପୂଜାର୍ଚ୍ଚନାରେ ଲାଗିରହିଛନ୍ତି ।

ଆଗେଇ ଚାଲିଲି ଗଙ୍ଗାତୀରସ୍ଥ ତୁଠ-ପଥର ଆଡ଼କୁ । ଗୋଟିଏ ଲେଖାଏଁ ଶୁଷ୍କ ଉତ୍ତରୀୟ ଓ ଅଧରୀୟ ସାଥିରେ ନେଇଥିଲି । ସେହି ଦିଓଟିକୁ ତୁଠ-ପଥରରେ ରଖିଦେଇ ଗଙ୍ଗାମାତାଙ୍କୁ ନମସ୍କାର କଲି ଏବଂ ଗଙ୍ଗା-ଜଳରେ ଲମ୍ଫ ଦେଲି ।

ମାଆ ମତେ ବାରମ୍ବାର ମନା କରିଥାନ୍ତି ଗଙ୍ଗାର ଗଭୀର ଜଳକୁ ଯିବାପାଇଁ । ଆଜି କିନ୍ତୁ ମୋର ତାଙ୍କ କଥା ମାନିବାକୁ ଜମା ମନ ବଳିଲା ନାହିଁ । ମନକୁ ମନ ପଚାରୁଥାଏ – ଗଙ୍ଗା ପରା ଆମ ମାଆ । ମାଆଙ୍କ କୋଳରେ ପୁଣି ଭୟ ଗୋଟାଏ କ'ଣ ? ସେହି କୋଳର ଯେତେ ଗଭୀର ପ୍ରଦେଶକୁ ଛୁଇଁବ, ସନ୍ତାନ ସେତେ ଅଧିକ ଅଭୟ ପାଇବ ସିନା ! ସେତେ ଗଭୀର-ନିବିଡ଼ ଆଶ୍ରୟ ପାଇବ ସିନା ! ସେତେ ଶାନ୍ତି ପାଇବ ସିନା ! ଅନୁପମ ଅପରୂପ ଶାନ୍ତି ମହାଶାନ୍ତି । ମୁଁ ତେଣୁ ଆଜି ଗଙ୍ଗାର ଗଭୀର ବୁକୁକୁ ଛୁଇଁବି ନାହିଁ କାହିଁକି ?

ବହୁତ ସମୟ ଯାଏ ନିର୍ଭୟରେ ରହିଲି ସ୍ନାନରତ । ଗଙ୍ଗା ବୁକୁରେ ବହୁତଦୂର ପର୍ଯ୍ୟନ୍ତ ଚାଲିଗଲି । ତଳଭୂଇଁକୁ ଯାଇ ଛୁଇଁଲି । କାହିଁକି ଛୁଇଁବି ନାହିଁ ? ମୁଁ କ'ଣ ଏବେ ପିଲା ହୋଇଛି ? ମୁଁ ତ ଏବେ ଚଉଦ ବର୍ଷର କିଶୋର । ମୋର ତେବେ ଭୟ କେଉଁଥିପାଇଁ ? ମୁଁ ପରା ଜଣେ ବୀର କିଶୋର ! ଅନ୍ତତଃ ଏଇ ବୀରତ୍ୱର ଅଭିମାନ ସେତେବେଳେ ମୋର ଥିଲା ।

ଜଳପ୍ରବାହର ଉପରେ, ତଳେ ଓ ମଝିରେ ଥାଇ ବାରମ୍ବାର ସେଇ ଗୋଟିଏ ପ୍ରଶ୍ନ ପଚାରୁଥାଏ ଗଙ୍ଗାମାତାଙ୍କୁ – ମାତଃ ଗଙ୍ଗେ ! ତୁମେ କହ ମୁଁ କିଏ ? ମୋର ପିତାମାତା ? ମୋର କୁଳ କ'ଣ ? ଗୋତ୍ର କ'ଣ ? ବର୍ଣ୍ଣ କ'ଣ ? ବାଟୁଳିଖଡ଼ାରୁ ବାଟୁଳି ବାହାରୁଥିବା ଭଳି ଗୋଟିଏ ପରେ ଗୋଟିଏ ଅଶାନ୍ତ ପ୍ରଶ୍ନ । ଦୁଇ ପ୍ରଶ୍ନ ମଧ୍ୟରେ ସମୟର ବ୍ୟବଧାନ ପ୍ରାୟ ନ ଥିଲା ଭଳି ଲାଗୁଥାଏ ।

ବାରମ୍ବାର ଅନୁଭବ କରୁଥିଲି, ଗଙ୍ଗା-ମାତା ସତେ ଯେମିତି ତାଙ୍କ ଲହରୀର ବାହୁରେ ମତେ ଆଲିଙ୍ଗନ କରୁଛନ୍ତି ଓ ସାରା ତନୁକୁ ମୋର ଚୁମ୍ବନରେ ଭରିଦେଉଛନ୍ତି ଏକ ସୁନିବିଡ଼ ଉଦଗ୍ର ଅନୁରାଗରେ ! ସ୍ନିଗ୍ଧ-ପବିତ୍ର ସେ ଅନୁରାଗ । ଆଶିଷରେ ଛଳ-ଛଳ । ଅମୃତରେ ଢଳ-ଢଳ । ପ୍ରତିଟି ଚୁମ୍ବନରେ ଯେମିତି ମୋ' ଦେହରେ ଭରିଦେଉଛନ୍ତି ଅସୀମ ଶକ୍ତି । ବିପୁଳ ଉତ୍ସାହ ! ବଞ୍ଚିରହିବାର ଓ ଉପରକୁ ଉଠିବାର ଏକ ଅଦମ୍ୟ ଅଭୀପ୍ସା !

ସେହି କୁହେଳିକାଭରା ଶୀତଳ ପ୍ରଭାତରେ କିନ୍ତୁ ତାଙ୍କ ବୁକୁତଳର ସ୍ପର୍ଶ ମତେ ଲାଗୁଥିଲା ଭାରି ଉଷୁମ ଓ ନରମ ଠିକ୍ ମୋ' ମାଆଙ୍କ ବୁକୁତଳ ଭଳି । ଅଥଚ ମୋର ଏତେ ପ୍ରଶ୍ନର ଉତ୍ତର କିଛିହେଲେ ଦେଲେ ନାହିଁ ସେ । ଖାଲି କଳ-କଳ ଛଳ-ଛଳ ଲହରୀର ଅବୁଝା ଭାଷା । ସ୍ୱଚ୍ଛ-ନିର୍ମଳ ଧାରାର ଅବାରିତ ପ୍ରବାହ । ଠିକ୍ ସମୟର ପ୍ରବାହ ପରି । ମୁଁ କିନ୍ତୁ ତାହାର ଅର୍ଥ କିଛି ବୁଝିପାରୁ ନ ଥିଲି । ମା'ର ଅନୁତ୍ତରିତ ପ୍ରଶ୍ନ ଲାଗି ଭାଙ୍ଗିପଡୁଥିଲି ହତାଶାରେ । ମତେ ଲାଗୁଥିଲା – ଗଙ୍ଗାମାତା ସତେ ଯେମିତି ଆଡୁ-ସାଡୁ

କଥା କହି ମତେ ଭଣ୍ଡି ଦେଉଛନ୍ତି । ପୁଣି ପରମୁହୂର୍ତ୍ତରେ ଭାବୁଥିଲି, ହୁଏତ ସେ କହୁଥିବେ– ପୁତ୍ର ବସୁସେନ ! ତୁମେ ବି ଏକ ସ୍ୱଚ୍ଛ ନିର୍ମଳ ଧାରା । ଏମିତି ମୋରି ଲହରୀମାଳା ଭଳି କଳ-କଳ, ଛଳ-ଛଳ ଓ ଚିରମୁଖର । ଏମିତି ଉନ୍ନତ । ଏମିତି ତୁଙ୍ଗ । ସେଇ ହିଁ ତୁମର ଶ୍ରେଷ୍ଠ ପରିଚୟ । ତାହାଠାରୁ ଆଉ ଅଧିକ କିଛି ଆଶା କରୁଛ କାହିଁକି ?

ମନକୁ ମନ କହିହେଉଥିଲି– ହୋଇଥିଲେ ହୋଇଥିବ । କିନ୍ତୁ ଏ ବିଷୟରେ କିଛି ହେଲେ ସ୍ଥିରନିଶ୍ଚୟ ହୋଇପାରି ନ ଥିଲି ।

ମନରେ ମୋର ଉଦ୍‌ଗତ ଅଭିମାନ । ଗଙ୍ଗାମାତା ଛଳନାମୟୀ । ସେ ମତେ ସ୍ନେହ କରୁ ନାହାନ୍ତି । ଆଦର କରୁ ନାହାନ୍ତି । ମୋ' ପ୍ରଶ୍ନର ଉତ୍ତର ଦେଉ ନାହାନ୍ତି । ମତେ ଏଡ଼ାଇ ଯାଉଛନ୍ତି ଜଣେ ଅପାଙ୍‌କ୍ତେୟ ବ୍ୟକ୍ତି ଭଳି !

ଅତି ଶୀଘ୍ର ସ୍ନାନ ଶେଷ କରି ଉଠିଆସିଲି । ଗଙ୍ଗାର ଖୁବ୍ ଦୂରକୁ ଚାଲିଯାଇଥିଲି । ପହଁରି ପହଁରି କୂଳକୁ ଆସିବାପାଇଁ ଅନେକ ସମୟ ଲାଗିଲା । ଆର୍ଦ୍ର ଉତ୍ତରୀୟ ଓ ଅଧରୀୟକୁ ଚୁପୁଡ଼ି ତୁଠ-ପଥରରେ ରଖିଲି ଓ ସେଠାରେ ଆଗରୁ ରଖାଯାଇଥିବା ଶୁଷ୍କ ଉତ୍ତରୀୟ ଓ ଅଧରୀୟ ଆଣି ପିନ୍ଧିଲି । ପୂର୍ବ ଦିଗକୁ ମୁହଁ କରି ଆକାଶକୁ ଚାହିଁଲି । ଅରୁଣ ରାଗର ଖଳ-ଖଳ ପ୍ରବାହ । ତାହାରି ମଧ୍ୟରେ ସୁବର୍ତ୍ତୁଳ କନକ ସୁଷମାର ଝଲକ । ଦୀପ୍ତିରେ ଭରପୂର । ସୂର୍ଯ୍ୟଦେବ ଉଇଁ ଆସୁଛନ୍ତି । ଖାଲି ତ ଉଇଁ ଆସୁ ନ ଥାନ୍ତି । ତାଙ୍କ ସହସ୍ର କିରଣର ହାତ ବୁଲାଇ ଆଣି ପୃଥିବୀକୁ କୁତୁ-କୁତୁ କରି ଉଠାଇ ଦେଉଥାନ୍ତି । ଗଙ୍ଗାଜଳର ସ୍ୱଚ୍ଛ ପ୍ରବାହରେ ଏହି କୁତୁ-କୁତୁ କରିବାଟା ଯେମିତି ପ୍ରତିଭାତ ହେଉଥାଏ ଅଧିକତର ସ୍ପଷ୍ଟ ଭାବରେ । ଅଧିକତର ଲୀଳାୟିତ ଓ ସରସ ଭାବରେ କନକ କିରଣରେ ଚିକ୍ ଚିକ୍ କରୁଥିବା ଗଙ୍ଗାଜଳ ଫୁଲିଉଠୁଥାଏ ସେହି ସ୍ନେହସଜଳ ସ୍ପର୍ଶରେ । ଗଙ୍ଗାସମେତ ସାରା ଜଗତ୍‌ରେ ଖେଳିଉଠୁଥାଏ ନୂତନ ଜୀବନର ଉର୍ମିଳ ପ୍ରବାହ । ସାରା ଜଗତ ଜାଗିଉଠୁଥାଏ । ଏଇ ଜାଗୃତିର ମହାସଙ୍ଗୀତ ଗାଇ-ଗାଇ ଗଙ୍ଗା ଉପରିସ୍ଥ ଆକାଶମାର୍ଗରେ ଉଡ଼ିଯାଉଥାନ୍ତି ଦଳକୁ ଦଳ ବିହଗ-ପଙ୍‌କ୍ତି । ସର୍ବତ୍ର ଜୀବନର ମହାଗାନ । ସୂର୍ଯ୍ୟଦେବଙ୍କ କନକ ଶଙ୍ଖର ଧ୍ୱନି ହୋଇ ଉଠୁଥାଏ ମନ୍ଦ୍ରରୁ ମନ୍ଦ୍ରତର !!

ସୂର୍ଯ୍ୟଦେବଙ୍କୁ ନିରେଖି ଚାହିଁଲି । ପ୍ରତିଦିନ ତାଙ୍କୁ ଯେତେଥର ଚାହେଁ, ସେତେଥର ସେ ମତେ ଦେଖାଦେଇଥାନ୍ତି ଏକ ନୂତନ ଓ ଭବ୍ୟ ରୂପର ସମ୍ଭାର ନେଇ । ସତେ ଯେମିତି ଆଶୀର୍ବାଦର ଏକ ବର୍ଷଣମୁଖର ମେଘ ! ମୋ' ଉପରେ ପୁଷ୍କଳ ଆଶୀର୍ବାଦର ଧାର ଢାଳିଦେବା ପାଇଁ ସଦା ଚଞ୍ଚଳ ! ଅନେକଥର ଲକ୍ଷ୍ୟ କରିଛି ମଧ୍ୟାହ୍ନର ସୂର୍ଯ୍ୟଦେବଙ୍କୁ । ଏପରିକି ଜ୍ୟେଷ୍ଠର ପ୍ରବଳ ଉତ୍ତପ୍ତ ମଧ୍ୟାହ୍ନରେ ମଧ୍ୟ । ମୋ'ପାଇଁ କିନ୍ତୁ ସେ ଥାଆନ୍ତି ପ୍ରାଭାତିକ ସୂର୍ଯ୍ୟଦେବଙ୍କ ଭଳି କବୋଷ୍ଣ କିରଣରେ ଭରପୂର । ଅତି ସ୍ନିଗ୍ଧ-କୋମଳ ତାଙ୍କ ସ୍ପର୍ଶ । ଖୁବ୍ ସୁଖଦ । ଦେହ ମୋର ଜମା ତାତେ ନାହିଁ । ଏହାର କାରଣ କିନ୍ତୁ ବୁଝିପାରେ ନା । କେହି ବି ମତେ ବୁଝାଇପାରନ୍ତି ନାହିଁ । ବଡ଼ ବିଚିତ୍ର ଓ ଆଶ୍ଚର୍ଯ୍ୟ ଲାଗେ ମତେ । ବାରମ୍ବାର ପ୍ରଶ୍ନ ଆସେ ମନକୁ, ସୂର୍ଯ୍ୟଦେବ କିଏ ? ତାଙ୍କ ସହିତ ମୋର କିବା ସମ୍ବନ୍ଧ ? ସେ କାହିଁକି ମୋ' ପାଇଁ ଏଭଳି ଆଶୀର୍ମୟ ?

ସେଦିନ ପ୍ରଭାତର ସୂର୍ଯ୍ୟ ବି ମୋ' ପାଇଁ ନବୀନ ଅରୁଣ ରାଗରେ ସତେ ଯେମିତି ଛଳଛଳେଇ ଉଠୁଥିଲେ ! ସ୍ନେହଭରା ଚାହାଣି ଢାଳି ଚାହିଁଥିଲେ ମୋ' ଆଡ଼କୁ !

ତାଙ୍କୁ ହାତ ଯୋଡ଼ି ନମସ୍କାର କଲି ।

ସେତେବେଳେ ମନକୁ ମୋର ଗୋଟିଏ କଥା ଛୁଇଁଲା । ପିତା ତ ବାରମ୍ବାର କହନ୍ତି ସୂର୍ଯ୍ୟଦେବ ସାରା ଜଗତର ଆତ୍ମା ବୋଲି । ତାଙ୍କୁ ତା'ହେଲେ ମୋ' ଜନ୍ମରହସ୍ୟ ନିଶ୍ଚୟ ଜଣାଥିବ । ତାଙ୍କୁ ହିଁ ପଚାରିବି । ହଁ, ତାଙ୍କୁ ହିଁ ପଚାରିବି । ମନେ ମନେ ଏଇ ନିଷ୍ପତ୍ତି ନେଇ ହାତ ଯୋଡ଼ିଥିବା ଅବସ୍ଥାରେ ବ୍ୟାକୁଳ ଚିତ୍ତରେ ତାଙ୍କୁ ପଚାରିଲି, ''ହେ ସୂର୍ଯ୍ୟଦେବ ! କହନ୍ତୁ ତ ମୁଁ କିଏ ? ଆଉ ମୋ' ପିତା-ମାତା ବି କିଏ ? ମୁଁ କ'ଣ ରାଧେୟ ନୁହେଁ ? ଆଉ କେହି ? ଏ କଥା ଜାଣିବାପାଇଁ ପ୍ରାଣ-ମନ ମୋର ବଡ଼ ଅସ୍ଥିର । ଅତି ବ୍ୟାକୁଳ ।''

''ବାପା କର୍ଣ୍ଣ ! ତୁମେ ମୋରି ପୁତ୍ର । ମୋରି ଆତ୍ମା ।'' ଚତୁର୍ଦ୍ଦିଗକୁ ପ୍ରକମ୍ପିତ କରିଦେଇ ଓ ମତେ ଆଶ୍ଚର୍ଯ୍ୟର ସାଗରରେ ବୁଡ଼ାଇଦେଇ ଆକାଶ-ମାର୍ଗରୁ ଭାସି- ଆସିଲା ଏକ ଅପୂର୍ବ କଣ୍ଠସ୍ୱର । ଅତି ଉଦାତ୍ତ ଓ ଗମ୍ଭୀର । ସ୍ନେହରେ ପିଚ୍ଛିଳ ଓ ଆଶୀର୍ବାଦରେ ଛଳ-ଛଳ । ଅନ୍ତତଃ ସେମିତି ଲାଗିଲା ମତେ ।

ଚମକି ପଡ଼ିଲି । ହଠାତ୍ ମତେ ସ୍ୱପ୍ନ ଦେଖିଲା ଭଳି ଲାଗିଲା । ସେହି ଶବ୍ଦର ପ୍ରତିଧ୍ୱନି ଗଙ୍ଗାର ତୀର-ପ୍ରାଚୀରରେ ବାଜି ଏ ପର୍ଯ୍ୟନ୍ତ ବି ମରି ନ ଥିଲା । ତାହାର କିଛିଟା ମୂର୍ଚ୍ଛନା ତଥାପି ରହି ଯାଇଥିଲା । ଚକିତପୁଲକରେ ବୁଲି ଚାରିଦିଗକୁ ଚାହିଁଲି । ଚାରିଆଡ଼େ ଶୂନ-ଶାନ । ଖାଲି ଯାହା ଗଙ୍ଗାର ଲହରୀ ଓ ପ୍ରାଭାତିକ ବିହଗମାନଙ୍କର କାକଳି ସେହି ନୀରବତାକୁ ଭଙ୍ଗ କରୁଛି । କେହି କୁଆଡ଼େ ନାହାନ୍ତି । କିଏ ତା'ହେଲେ ମୋର ଏହି ପ୍ରଶ୍ନର ଉତ୍ତର ଦେଲେ ? କ'ଣ ସୂର୍ଯ୍ୟଦେବ ନିଜେ ?

ଆଚମ୍ବିତ ହୋଇ ସୂର୍ଯ୍ୟଦେବଙ୍କ ଆଡ଼େ ପୁଣି ଚାହିଁଲି । ଯାହା ଦେଖିଲି, ସେଥିରେ ହୋଇଉଠିଲି ଆଶ୍ଚର୍ଯ୍ୟ ବିଭୋର । ସୂର୍ଯ୍ୟମଣ୍ଡଳ ମଧ୍ୟରେ ଝଲସି ଉଠୁଛି ଏକ ଦିବ୍ୟସୁନ୍ଦର ମୁଖ । କନକଗୌର କାନ୍ତି । ଶିରରେ ସୁବର୍ଣ୍ଣ ମୁକୁଟ । କର୍ଣ୍ଣରେ ଦୋଳାୟିତ ମଣିମୟ କୁଣ୍ଡଳ । ଓଠ ତଳେ ଦର-ଦର ହସ । ସତେଅବା ଅଯୁତ ମଲ୍ଲୀବୀଥିରୁ ଛୁଟିଆସୁଛି ଚକିତ ହାସର ଚହଟ । ସେହି ହାତ ତଳୁ ମୋ' ଲାଗି ଝରି-ଝରି ଯାଉଛି ସତେ ଅବା ଆଶୀର୍ବାଦର ଶତ ସୁରଧୁନୀର ଧାରା ! ଆଃ ! କି ଅମୃତମୟ ଓ ଶୀତଳ ସେ ଧାରା ! ତାହାର ପ୍ରତିଟି ବିନ୍ଦୁରେ ଯେମିତି ଜୀବନର ଅଙ୍କୁର ଫୁଲି ଫୁଲି ଉଠୁଛି ! ମୋ'ପାଇଁ ସୁଖ ଓ ଆନନ୍ଦର ଦୋଳିଟିଏ ସତେଅବା ଆକାଶମାର୍ଗରେ ଝୁଲି-ଝୁଲି ଆସୁଛି !

ମନରେ ମୋର ତଥାପି ଦ୍ୱନ୍ଦ୍ୱଭାବ । ତଥାପି ସନ୍ଦେହ । ସ୍ୱପ୍ନ ଦେଖୁ ନାହିଁ ତ ? ଏହା ମୋ' ଆଖିର ଭ୍ରମ ନୁହେଁ ତ ?

ବାରମ୍ବାର ଆଖି ଦୁଇଟିକୁ ମଳିଲି ଓ ପୁଣି ନିରୀକ୍ଷଣ କରି ଚାହିଁବାକୁ ଲାଗିଲି । ନା, ସ୍ୱପ୍ନ ନୁହେଁ । ସ୍ପଷ୍ଟ ଦେଖାଯାଉଛି ସେହି ମୁହଁଟି । ଯେତେଥର ଦେଖୁଥାଏ ସେତେଥର ତାହା ହୋଇଉଠୁଥାଏ ଅଧିକରୁ ଅଧିକ ସୁନ୍ଦର ଓ ଆଶୀର୍ବାଦମୟ । ପୁଣି ଅଧିକରୁ ଅଧିକ ହସ-ହସ ।

ଏହା ଥିଲା ମାତ୍ର କେତୋଟି ମୁହୂର୍ତ୍ତର ସ୍ଥିତି । ତାହା ପରେ ହଠାତ୍ ମୁଖଟି କୁଆଡ଼େ ଅଦୃଶ୍ୟ ହୋଇଗଲା । କି ଏକ ଅଭାବନୀୟ ଅଦ୍ଭୁତ ମାନସିକ ସ୍ଥିତିରୁ ବାସ୍ତବ ପାର୍ଥିବ ସ୍ଥିତିକୁ ଫେରିଆସିଲି । ପୁଣି ସେହି ମନ୍ଦିରର ଘଣ୍ଟି-ଧ୍ୱନି । ଗଙ୍ଗା କୂଳର ତୁଠ-ପଥର । ତାହାର ଉଚ୍ଛଳ ପ୍ରବାହ । ଆଉ ତାହାରି ତୁଠରେ ଠିଆ ହୋଇଛି ମୁଁ । ଚକିତ-ବିସ୍ମୟରେ ବିହ୍ୱଳିତ ସୂତପୁତ୍ର ବସୁସେନ । ଜ୍ୟେଷ୍ଠ ରାଧେୟ । ସମାଜ ଆଖିରେ ଦଳିତ ଓ ଧୂଳିଧୂସରିତ ଫୁଲମାଳାଟିଏ !

ସେଦିନଟି ମୋ' ପାଇଁ କି ଦିନ ଥିଲା କେଜାଣି, ହଠାତ୍ ଆଉ ଏକ ଘଟଣା ଘଟି ଯାହା ମୋ' ବିସ୍ମୟକୁ ବହୁଗୁଣିତ କରି ବଢ଼ାଇଦେଲା । ଖାଲି ତ ବଢ଼ାଇଦେଲା ନାହିଁ । ମତେ ବହୁ ବର୍ଷ ଧରି ଏକ ଛାୟାଚ୍ଛନ୍ନ ରହସ୍ୟର ଜାଲରେ ବାନ୍ଧି ରଖିଲା । ଯେଉଁ ଜନ୍ମରହସ୍ୟଟିକୁ ଜାଣିବାପାଇଁ ଥିଲି ଉଦ୍‌ଗ୍ରୀବ, ତାହାକୁ ଆହୁରି ଅଧିକତର ଘନୀଭୂତ କରିଦେଲା । ସେହି ରହସ୍ୟର ଘନ କୁହେଳିକାକୁ ଭେଦିବାପାଇଁ ଅଧିକରୁ ଅଧିକ ବ୍ୟାକୁଳିତ କରିଦେଲା ମତେ । ତାହା ନ କହି ରହିପାରୁ ନାହିଁ ।

ହଠାତ୍ ମୋ' ମୁଣ୍ଡ ଉପରେ ଗୋଟାଏ ବଡ଼ ଛାଇ ଚଳ-ଚଞ୍ଚଳ ହୋଇଉଠିଲା । କାହାର ଛାଇ ବୋଲି ଆକାଶକୁ ଚାହିଁ ଜାଣିବା ପୂର୍ବରୁ ମୋ' ଆଗରେ ଗୋଟିଏ ଧନୁ ମାତ୍ର· ବ୍ୟବଧାନରେ କନକ-ରେଖାଟିଏ ଟାଣି ହୋଇଗଲା । ମୁହୂର୍ତ୍ତକ ମଧ୍ୟରେ ପୁଣି ରେଖାଟି ହଲଚଲ ହେବାକୁ ଲାଗିଲା । ସୂର୍ଯ୍ୟଙ୍କ ଅରୁଣ ଆଲୋକରେ ତାହାର କଳଙ୍କିତ ରୂପ ଆହୁରି ଝଲସିଉଠିଲା । ତାହା ଥିଲା ଗୋଟାଏ ନାଗସାପ । ହଠାତ୍ ଆକାଶରୁ ବିରାଟ ଏକ ଛଞ୍ଚାଣର ପଂଝାରୁ ଖସି ପଡ଼ିଥିଲା । ରକ୍ତଜର୍ଜର ତନୁଟି ଧରି ସାପଟା ଧାଇଁ ଆସୁଥିଲା ତୁଠପଥର ଆଡ଼କୁ । ଉଦ୍‌ଫଣ ନାଗ । ସୁ-ସୁ ଗର୍ଜନ କରୁଛି । ବିଷମୟ ଦୃଷ୍ଟି । ଆତ୍ମରକ୍ଷା ଲାଗି ପ୍ରସ୍ତୁତ ହୋଇଗଲି । ବିରାଟ ଏକ ଶିଳାଖଣ୍ଡ ଉଠାଇଲି ତାହାକୁ ଲକ୍ଷ୍ୟକରି । ମୋର ଲକ୍ଷ୍ୟ ଥିଲା ଅବ୍ୟର୍ଥ । ତାହାର ଆଘାତରେ ସାପଟାର ପ୍ରାଣ ଯାଇଥାନ୍ତା ନିଶ୍ଚୟ । ଛଞ୍ଚାଣଟା ବି ତାହାର ଆହାରରୁ ବଞ୍ଚିତ ହୋଇ ନ ଥାନ୍ତା ।

ହଠାତ୍ ଅନୁଭବ କଲି, ମୋର ଉତ୍ତୋଳିତ ଦକ୍ଷବାହୁ ସ୍ତବ୍ଧ । କାହାଙ୍କର ଦୃଢ଼ ମୁଷ୍ଟି ତାହାକୁ ବାନ୍ଧି ରଖିଛି । ପରେ ପରେ ଶୁଣିବାକୁ ପାଇଲି କାହାଙ୍କର ବଜ୍ର-ନିର୍ଘୋଷ, ''ବନ୍ଦ କର, ବନ୍ଦ କର କର୍ଣ୍ଣ । ଆଶ୍ରୟପ୍ରାର୍ଥୀ ଜୀବ ଉପରେ ଆକ୍ରମଣ କରିବା ନିନ୍ଦନୀୟ । ଏହା କ୍ଷତ୍ରିୟଧର୍ମର ବିରୋଧୀ । କ୍ଷାନ୍ତ ହୁଅ ବାପା, କ୍ଷାନ୍ତ ହୁଅ ।''

ଦେହରେ ମୋର ବିଜୁଳିର ଚମକ । ସେହି ସ୍ନେହାର୍ଦ୍ର, କରସ୍ପର୍ଶଟି ସତେ ଯେମିତି ମୋ' ଦେହରେ ଆଣି ଭରିଦେଇଥିଲା ଶତହସ୍ତୀର ବଳ । ଅଥଚ ତାଙ୍କ ମୁଷ୍ଟିବନ୍ଧଟି ଏପରି ଦୃଢ଼ ଥିଲା ଯେ ମୋ' ବାହୁ ସାମାନ୍ୟମାତ୍ର ହଲିପାରୁ ନ ଥିଲା । ମୁଁ ବି ଟଳିପାରୁ ନ ଥିଲି । କି ଏକ ଅନନ୍ୟ ଅନୁଭୂତିରେ ହୋଇଯାଇଥିଲି ନିର୍ବାକ୍ – ନିର୍ବେଦ । ଶକ୍ତିମାନ୍ ବୋଲି ମୋର ଯେଉଁ ଅଭିମାନ ଥିଲା ତାହା ହଠାତ୍ ମିଶିଗଲା ମାଟିରେ ।

ପଛକୁ ଫେରି ଚାହିଁଲି । ଦେଖିଲି, ଠିଆ ହୋଇଛନ୍ତି ଜଣେ ବଳିଷ୍ଠ ସୌମ୍ୟମୂର୍ତ୍ତି । ଜଟାଜୂଟ ଶିରା ଶ୍ମଶ୍ରୁଳ ମୁଖମଣ୍ଡଳ । ଦୀର୍ଘ ନାସା ଓ ପ୍ରଲମ୍ବିତ ବାହୁ । ବାମ ହସ୍ତରେ

କମଣ୍ଡଳୁ । ଦକ୍ଷିଣ ହସ୍ତର ଦଣ୍ଡ ସାମୟିକ ଭାବରେ ସ୍ଥାନାନ୍ତରିତ ବାମ କକ୍ଷକୁ । ଦକ୍ଷିଣ ହସ୍ତଟି ମୁଷ୍ଟିବଦ୍ଧ ହୋଇ ମୋ' ଦକ୍ଷିଣ ବାହୁରେ ଲଗ୍ନ । ମୁହଁରେ ଛଳ ଛଳ ହସ ଠିକ୍ ଗଙ୍ଗାର ଫେନାୟିତ ଲହରୀମାଳା ଭଳି । ଅଥବା କାର୍ତ୍ତିକେନ୍ଦୁଙ୍କ ବିମଳ ଜ୍ୟୋତ୍ସ୍ନା ଭଳି । ପରିଧାନ କୃଷ୍ଣାଜିନ । କନକସ୍ନିଗ୍ଧ ପାଦଯୁଗଳରେ ସୁଶୋଭିତ ଶୁଭ୍ର ପାଦୁକା । ଏଭଳି ରୂପ ଧରି ସେ ଭାରି ସୁନ୍ଦର ଦିଶୁଥାନ୍ତି । ସାକ୍ଷାତ୍ ଦେବପ୍ରତିମା ହେବେ ପରା !

ଆଶ୍ଚର୍ଯ୍ୟ-ଚକିତ ହୋଇଉଠିଲି ମୁଁ ।

ମୋ' ହସ୍ତର ଶିଳାଖଣ୍ଡଟି ଶିଥିଳିତ ହୋଇ ତଳେ ଆସି ପଡ଼ିଲା । ସଙ୍ଗେ ସଙ୍ଗେ ତାଙ୍କ ମୁଷ୍ଟିବନ୍ଧନ ମଧ୍ୟ ହୋଇଗଲା ଶିଥିଳିତ । ସେ ସ୍ନେହରେ ମୋ' କାନ୍ଧରେ କର-ସଞ୍ଚାଳନ କରିବାକୁ ଲାଗିଲେ ଓ ଆହୁରି କୋମଳତର ସ୍ୱରରେ କହିଲେ, ''ବାବୁ ! କ୍ଷାନ୍ତି କ୍ଷତ୍ରିୟଙ୍କର ପରମ ଧର୍ମ । ଏହାଠାରୁ ବଳିକରି ଧର୍ମ ନାହିଁ । ତୁମେ ତେଣୁ ଶାନ୍ତ ହୁଅ ।''

ଇତିମଧ୍ୟରେ ନାଗସାପଟା ଘୁଷୁରି ଘୁଷୁରି ଆସି ତୁଠ-ପଥର ସନ୍ଧିରେ କୁଆଡ଼େ ଲୁଚିଗଲା । ଛଞ୍ଚାଣଟି ବି ଚକ୍ରଗତିରେ କିଛି ସମୟ ପାଇଁ ଆକାଶରେ ଘୂରି ବୁଲିବା ଉତ୍ତାରୁ ଶିକାର ହରାଇ ବିଫଳମନୋରଥ ହୋଇ ନୀଳ ଆକାଶରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ମୋ' ମନ-ଆକାଶରେ କିନ୍ତୁ ଚମକିତ କମ୍ପନ ତଥାପି ଭରି ଚାଲିଥାଏ । ବାରମ୍ବାର ମନକୁ ପଚାରୁଥାଏ – କିଏ ଏହି ସୌମ୍ୟବଦନ ପୁରୁଷ ? କାହିଁକି ମତେ ସମ୍ବୋଧନ କଲେ କ୍ଷତ୍ରିୟ ବୀର ବୋଲି ? ମୁଁ ତ ବରଡାଳରେ ବସିଥିବା ଡାମରାକୁଆଟିଏ । ରାଜଭବନର ସ୍ୱର୍ଣ୍ଣଚୂଡ଼ାରେ ବସିଥିବା କପୋତର ସୌଭାଗ୍ୟ ମୋର କାହିଁ ? ଅଥଚ ସେହି ସୌଭାଗ୍ୟ ପାଇବା ପାଇଁ ମନରେ ମୋର ଆଶାର ବୀଜକୁ ଯେ ଅଙ୍କୁରିତ କରାଇଦେଲେ କାହିଁକି ? ମୋର ଜନ୍ମ ତ ନୀଚ ସୂତକୁଳରେ । ରଥ ଚଳାଇବା ଓ ଅଶ୍ୱସେବା କରିବା ମୋର କୌଳିକ ବୃତ୍ତି । ବଂଶ-ପରମ୍ପରାର ଦାନ । ମୁଁ ସୂତ ଅଧିରଥଙ୍କ ପୁତ୍ର । ରଥଶାଳା ଓ ରଥନୀଡ଼ ମୋର କର୍ମଭୂମି । ସେହି ଦୃଷ୍ଟିରେ ହିଁ ମତେ ସାରା ଜଗତ୍ ଦେଖିଆସୁଛି । ଏହି ସନ୍ୟାସୀଜଣକ ଏପରି କହିଲେ କାହିଁକି ? କ'ଣ ତାଙ୍କର ଅଭିପ୍ରାୟ ? ଗଙ୍ଗାମାତାଙ୍କ ଭଳି ଯେ ମତେ ପ୍ରତାରିତ କରୁ ନାହାନ୍ତି ତ ? ଅଥବା କରୁ ନାହାନ୍ତି ତ ପରିହାସ ?

କିଛି ସମୟ ଧରି ସ୍ତମ୍ଭିତ ରହିବା ଉତ୍ତାରୁ ମୁହଁ ଖୋଲିଲି, ''ହେ ସନ୍ୟାସୀପ୍ରବର ! କହନ୍ତୁ ଆପଣ କିଏ ? ମତେ କାହିଁକି ଆତ୍ମରକ୍ଷା କର୍ମରୁ ବାଧା ଦେଲେ ?''

''ବାପା କର୍ଣ୍ଣ ! ତୁମେ ମତେ ସେଇ ଜଣେ ସନ୍ୟାସୀ ବୋଲି ଜାଣିଥାଅ । ତୁମର ହିତୈଷୀ ମୁଁ । ତୁମେ ଆତ୍ମରକ୍ଷା କରୁ ନ ଥିଲ । ବରଂ ଅନୀତି ଓ ଅଧର୍ମ କରି ବସୁଥିଲ । ତହିଁରୁ ତୁମକୁ ନିବୃତ୍ତ କରାଇଛି ମାତ୍ର ।''

''ଆଗକୁ ମାଡ଼ିଆସୁଥିବା ନାଗସାପକୁ ଆତ୍ମରକ୍ଷା ଲାଗି ଆଘାତ କରିବା କ'ଣ ପାପ ?''

''ସ୍ଥଳବିଶେଷରେ ପାପ ହୋଇପାରେ ବାପା ।''

‘‘କିପରି ?’’ ମୋର ସଚକିତ ପ୍ରଶ୍ନ ।

‘‘କିଏ ଆକ୍ରମଣ କରିବାକୁ ଆସୁଛି ଅଥବା ଆଶ୍ରୟ ଖୋଜି ଆସୁଛି, ତାହା ଜାଣିବା ହେଉଛି କ୍ଷତ୍ରିୟ ବୀରଙ୍କ କର୍ତ୍ତବ୍ୟ । ତୁମେ ଭ୍ରମିତ ଚିତ୍ତରେ ଥାଇ ତାହା ପାଳିବାକୁ ଭୁଲିଯାଇଥିଲ । ଏଇ ଦେଖୁନ୍, ସାପଟା କେମିତି ପଥର-ସନ୍ଧିରେ ଲୁଚିଯାଇଛି !’’ ବୁଝିପାରିଲି ମୁଁ କିପରି ନିରପରାଧ ସାପଟାକୁ ମାରିବାକୁ ବସୁଥିଲି ।

‘‘ହେ ଆର୍ଯ୍ୟବର ! ହେ ପ୍ରଭୋ ! ଆପଣ ଏ କ'ଣ କହୁଛନ୍ତି ? ମୁଁ କ'ଣ କ୍ଷତ୍ରିୟ ? ମୁଁ ପରା ସୂତପୁତ୍ର କର୍ଣ୍ଣ ।’’

‘‘ନା, ନା, ତୁମେ ସୂତପୁତ୍ର ନୁହଁ । ତୁମେ କ୍ଷତ୍ରିୟପୁତ୍ର । ଏକ ଅତି ଉଚ୍ଚ କୁଳ-ପରମ୍ପରାର ଦାୟାଦ । ତୁମେ ଜଣେ ବଡ଼ ବୀର ହେବ । ମୋ' କଥାରେ ବିଶ୍ୱାସ ରଖ ବାପା କର୍ଣ୍ଣ ।’’ ମୁହଁରେ ତାଙ୍କର ପୂର୍ବ ଭଳି ହସ ଆହୁରି ଅଧିକ ରହସ୍ୟମୟ ହୋଇଉଠୁଥିଲା । ମୋ' ଚିତ୍ତ-ତଳେ କିନ୍ତୁ ବିରାଟ ଝଡ଼-ବତାସର ପବନ ଗର୍ଜିଉଠି ମତେ ଅଥୟ କରିଦେଉଥିଲା । ଭାବୁଥାଏ, ପାଣିଗିନାଟିରେ ଚାନ୍ଦର ପ୍ରତିଚ୍ଛବିଟିକୁ ଚାନ୍ଦ ବୋଲି ଭାବିବା ଯେମିତି ଭ୍ରମାତ୍ମକ, ଠିକ୍ ସେମିତି ଭ୍ରମାତ୍ମକ ମତେ କ୍ଷତ୍ରିୟ ବୋଲି ଡାକିବା । ତା'ହେଲେ ଯେ ସନ୍ୟାସୀ କାହିଁକି ମତେ ଡାକୁଛନ୍ତି କ୍ଷତ୍ରିୟ ବୋଲି ? କ'ଣ ତାଙ୍କର ଉଦ୍ଦେଶ୍ୟ । କାହିଁକି ସେ ମତେ ପକାଇଦେଉଛନ୍ତି ଏକ ଗୋଳକଧନ୍ଦାର ଘୂର୍ଣ୍ଣିରେ ? ସତେ କାହିଁକି ?

ତାଙ୍କୁ ଆଉ କିଛି ଅଧିକ ପ୍ରଶ୍ନ ପଚାରିବା ପୂର୍ବରୁ ଗଙ୍ଗାତୀରସ୍ଥ ଡେଙ୍ଗା ଚମ୍ପାଗଛରେ ଏକ କମ୍ପନର ସୃଷ୍ଟି ହେଲା । କୌତୂହଳୀ ହୋଇ ସିଆଡ଼େ ଆଖି ଫେରାଇ ଚାହିଁଲି । ଉଚ୍ଚ ଶାଖାରେ ଅଛି କୁଆ-ବସାଟିଏ । ତହିଁରୁ ଆସୁଛି ଡେଣା ଫଡ଼ ଫଡ଼ ଶବ୍ଦ । ପରେ ପରେ କୋଇଲିର ମିଠା-ମିଠା ଧ୍ୱନି— କୁହୁ... କୁହୁ... କୁହୁ... କୁଆ-ବସାରେ ପୁଣି କୋଇଲି କୁହୁଧ୍ୱନି ! ଆଶ୍ଚର୍ଯ୍ୟ ଲାଗୁଥିଲା ମତେ । ମୁହୂର୍ତ୍ତକ ମଧ୍ୟରେ ଦିଓଟି କୋଇଲି-ଛୁଆ କୁହୁ-କୁହୁ ଧ୍ୱନି କରି ମୋ' ମୁଣ୍ଡ ଉପର ଦେଇ ଆକାଶରେ ଉଡ଼ି ଚାଲିଗଲେ । କପାଳରେ ମୋର ବିସ୍ମୟର କୁଞ୍ଚିତ ରେଖା । ମନରେ ପ୍ରଶ୍ନବାଚୀ — କୁଆ କ'ଣ କୋଇଲିର ମାଆ ?

ସନ୍ୟାସୀଜଣକ ମୋ' ମନର କଥାକୁ ବୁଝିପାରିଲେ କି କେଜାଣି ସେ ମତେ ଆହୁରି ବିସ୍ମୟରେ ବୁଡ଼ାଇଦେଇ କହିଲେ ‘‘ହଁ, କର୍ଣ୍ଣ, ହଁ । କୁଆ ବି ହୋଇଥାଏ କୋଇଲିର ମାଆ । ଦ୍ୱିତୀୟ ମାଆ । ପାଳିକା ମାଆ’’ ।

‘‘ମାନେ ?’’ ମୋର କିଶୋରସୁଲଭ ଜିଜ୍ଞାସାଭରା ପ୍ରଶ୍ନ ।

ସେ ଯାହା କହିଲେ, ସେଥିରେ ତ ମୋର କୁହୁ ଧ୍ୱନି ନେଇଥିବା ସନ୍ଦେହ ଦୂର ହୋଇଗଲା । କିନ୍ତୁ ଆଉ ଗୋଟିଏ ସନ୍ଦେହ ଜମାଟ ବାନ୍ଧି ବସିଲା ମନରେ ଯେତେବେଳେ ସେ କହିଲେ — ତମେ ବି କର୍ଣ୍ଣ, ଗୋଟିଏ କୋଇଲି-ଛୁଆ । କେଉଁ ଦିନ କୁହୁ ଧ୍ୱନି କରି କୁଆ-ବସାରୁ ଉଡ଼ିଯିବ ।

ସେ ଯେଉଁଭଳି ଆତ୍ମପ୍ରତ୍ୟୟଭରା ସ୍ୱରରେ କହୁଥାନ୍ତି, ତହିଁରେ ମୋ' ବିସ୍ମୟ ତ ଖାଲି ଘନୀଭୂତ ହେଉ ନ ଥାଏ । ମୁଣ୍ଡ ବି ଘୂରୁଥାଏ ବାତଚକ୍ର ଭଳି ।

ତାଙ୍କ କହିବା କଥା ହେଲା, କୋଇଲି କେବେହେଲେ ନିଜ ଅଣ୍ଡାକୁ ଫୁଟାଏ ନାହିଁ । ମାଆ-କୋଇଲି ଯାଇ କୁଆ-ବସାରେ ଅଣ୍ଡା ଦେଇଆସେ । କୁଆ ଓ କୋଇଲି ଦୁହିଁଙ୍କର ଅଣ୍ଡା ଦେଖିବାକୁ ଏକା ଭଳି । ମାଆ-କୁଆ କୋଇଲି ଅଣ୍ଡାକୁ ନିଜ ଅଣ୍ଡା ସାଥିରେ ଉଷୁମାଏ ଓ ଫୁଟାଏ । କୋଇଲି-ଛୁଆ ବି ଜନ୍ମ ହେଲାବେଳେ ଦେଖିବାକୁ ଠିକ୍ କୁଆଛୁଆ ଭଳି । କୁଆ କୋଇଲିଛୁଆକୁ ନିଜର ସନ୍ତାନ ଭାବି ପାଳେ, ପୋଷେ । ଶେଷରେ ଛୁଆଟି ବଡ଼ ହେଲେ କୁହୁ-କୁହୁ ରାବ ଦିଏ । ସେତେବେଳେ କୁଆମାନେ ତାହାକୁ ଚିହ୍ନିପାରନ୍ତି ଓ ତାହା ଉପରେ ଆକ୍ରମଣ କରିବସନ୍ତି । ସେ ବି ସେତେବେଳେ ପାଇଯାଏ ଆତ୍ମପରିଚୟ । କୁହୁ ଧ୍ୱନି କରି କୁଆ ବସାରୁ ଉଡ଼ିଯାଏ ନିଃସୀମ ଆକାଶରେ । ଲକ୍ଷ୍ୟ ତାହାର ଥାଏ କେଉଁ ଶ୍ୟାମଳ ଶୋଭାରେ ଭରପୂର ବନାଶ୍ରମ ଅଥବା ମଧୁମୟ ବାସନ୍ତିକ କୁଞ୍ଜ ।

ସେ ସିନା ସରଳ ଭାବରେ ଏତକ କଥା କହିଦେଲେ । କିନ୍ତୁ ମୋ' ମନରେ ଖେଳାଇଦେଲେ ଅଗଣିତ ଅଶାନ୍ତ ଢେଉ । ତାଙ୍କ କଥା ଯେମିତି ଥିଲା ରହସ୍ୟମୟ, ସେ ବି ସେମିତି ଥିଲେ ରହସ୍ୟମୟ । କୌତୂହଳୀ ହୋଇ ପଚାରିଲି, ''ହେ ଆର୍ଯ୍ୟବର ! ଆପଣଙ୍କ ଆଶ୍ରମ କେଉଁଠି ? ଆଉ ନାଁ ବି କ'ଣ ?''

''ବାପା, ସନ୍ନ୍ୟାସୀଙ୍କର ନାଁ ନ ଥାଏ । ନ ଥାଏ ବି ବଂଶପରିଚୟ । ମତେ ଖାଲି ଜଣେ ସନ୍ନ୍ୟାସୀ ବୋଲି ବୁଝିଥାଅ । ମୋ' ଆଶ୍ରମ ଏଇ ପାଖରେ । ଚମ୍ପାବନ ମଧ୍ୟରେ ।''

''ଚମ୍ପାବନ ମଧ୍ୟରେ ?'' ମୋ' ପ୍ରଶ୍ନ ଥିଲା ଆଶ୍ଚର୍ଯ୍ୟଚକିତ । ତାଙ୍କୁ ପୁଣି କହିଲି, ''ମୁଁ ତ କାହିଁ ସେଠାରେ କୌଣସି ଆଶ୍ରମ ଦେଖି ନାହିଁ ।'' ଦୃଢ଼ତାରେ ଭରପୂର ଥିଲା ମୋର କଣ୍ଠସ୍ୱର । କାରଣ ଚମ୍ପାବନର କୋଣ-ଅନୁକୋଣ ସବୁ ମୋର ପରିଚିତ ।

''ଏଇ ସେଇଠି ଅଛି ମୋ' ଆଶ୍ରମ ।'' ଏହା କହି ସେ ଗଙ୍ଗାତୀରକୁ ଲାଗି ଚମ୍ପାବନର ଉପାନ୍ତରେ ଥିବା ସୂର୍ଯ୍ୟମନ୍ଦିର ଦିଗକୁ ଆଙ୍ଗୁଠି ଦେଖାଇଦେଲେ ଓ ମତେ ପୁଣି କହିଲେ, ''ପୁତ୍ର କର୍ଣ୍ଣ ! ତୁମେ ମୋ' ସାଥିରେ ଆସ । ତୁମକୁ ମୋ' ଆଶ୍ରମ ଦେଖାଇଦେବି ।''

''ଯେ ଆଜ୍ଞା ପ୍ରଭୋ !'' ତାଙ୍କ କଥାରେ ସମ୍ମତି ପ୍ରଦାନ କରି କହିଲି । ତାଙ୍କ ସ୍ନେହଭରା ପୁତ୍ରଡାକ ମନରେ ମୋର ଏକ ଅଜ୍ଞାତ ପୁଲକ ଭରିଦେଲା । ମତେ ଲାଗୁଥାଏ, ସତେ ଯେମିତି ଏକ ନିବିଡ଼ କନକ ସୂତ୍ରରେ ତାଙ୍କ ସହିତ ବନ୍ଧା ମୁଁ । ସେ ସଂପର୍କ ସତେ ଯେମିତି ଅତି ଅଭାବିତ ! ଅତି ଘନିଷ୍ଠ ! ଅତି ଆତ୍ମିକ !

ସେ ଆଗେ ଆଗେ ଚାଲିଥାନ୍ତି । ମୁଁ ଚାଲିଥାଏ ତାଙ୍କ ପଛେ ପଛେ ବାଧ୍ୟ ଶିଶୁଟି ଭଳି । ଅଥବା ମୃଗୁଣୀର ପଛେ ପଛେ ଧାଉଁଥିବା ମୃଗ-ଶାବକଟି ଭଳି ।

କାର୍ତ୍ତିକର ହେମାଳିଆ ପବନ । କାକରଭିଜା ଘାସ । ଗଙ୍ଗା-ତୀରରେ ମଥା ପିଟୁଛନ୍ତି ଅଶାନ୍ତ ଲହରୀମାଳା । ଚମ୍ପାବନରେ ମୁଖରିତ ବିହଗ-କାକଳି । ଲହରୀର ଗର୍ଜନ ସହିତ ତାହା ମିଶି ସୃଷ୍ଟି କରୁଥାଏ ଏକ ଅଭାବନୀୟ ଧ୍ୱନି । ସତେ ଅବା ଚମ୍ପାବନର ଶ୍ୟାମାୟମାନ

ହୋମାନଳକୁ ପରିଶୀଳିତ କରି ହେଉଥାଏ ଏକ ଶାନ୍ତ-କାନ୍ତ ମନ୍ଦ୍ର ମନ୍ତ୍ରଧ୍ୱନି ! ନିର୍ଜନ ବନପଥରେ ଦୁଇ ଜଣ ମାତ୍ର ପଥିକ । ସେ ଓ ମୁଁ । ସେ ଚାଲୁଥାନ୍ତି ଅତି ଦୃଢ଼ ଓ ଦ୍ରୁତ ପଦକ୍ଷେପରେ । ସାଧାରଣ ମାନବୀୟ ପଦକ୍ଷେପଠାରୁ ଦୃଢ଼ତର ଓ ଦ୍ରୁତତର । ବୟସରେ ପ୍ରୌଢ଼ତ୍ୱର ସୀମାକୁ ଅତିକ୍ରାନ୍ତ କରିଯାଇଛନ୍ତି ସେ । ବାର୍ଦ୍ଧକ୍ୟର ଦେହଳିରେ ପାଦ ପକାଇବାକୁ ଯାଉଛନ୍ତି । ଅଥଚ ତାଙ୍କର ଏଭଳି ଦ୍ରୁତ ଗତି ! ମତେ ଭାରି ଆଶ୍ଚର୍ଯ୍ୟ ଲାଗୁଥାଏ । ମୁଁ ଧାଇଁ-ଧାଇଁ ମଧ ତାଙ୍କ ଭଳି ସମଗତିରେ ଯାଇପାରୁ ନ ଥାଏ । ମନରେ ମୋର ବାରମ୍ବାର ପ୍ରଶ୍ନବାଚୀ, କିଏ ଏହି ନବୀନ ସନ୍ନ୍ୟାସୀବର ? କିଏ ଏହି ଆସି ଆଜି ପ୍ରାଭାତିକ ଶାନ୍ତକାନ୍ତ ବାତାବରଣ ମଧ୍ୟରେ ମନରେ ମୋର ଦେଇଗଲେ ଦ୍ୱନ୍ଦ୍ୱର ଝଡ଼ ? କିଏ ହୋଇପାରନ୍ତି ଯେ ? କ'ଣ ମନୁଷ୍ୟ ନା ଦେବତା ନା ଗନ୍ଧର୍ବ ନା ଆଉ କେହି ?

ତାଙ୍କଠାରୁ ମୋର ବ୍ୟବଧାନ ଯେତିକି ବଢୁଥାଏ, ମନରେ ଆଶ୍ଚର୍ଯ୍ୟଭାବ ବି ସେତିକି ବଢ଼ିଉଠୁଥାଏ ।

ଲକ୍ଷ୍ୟ କଲି, ସେ ଯାଇ ପହଞ୍ଚିଲେ ସୂର୍ଯ୍ୟମନ୍ଦିରର ଦ୍ୱାରଦେଶରେ । ପଛରେ ପଡ଼ିଯାଇଥିବା ମତେ ମୁହୂର୍ତ୍ତକ ପାଇ ଚାହିଁଦେଇ ଟିକିଏ ହସିଦେଲେ । କଳ-କଳ ଛଳ-ଛଳ ହସ । ସକାଳର ପ୍ରଭାତର କୁହେଳିକା ଦୂର ହୋଇଯିବା ଭଳି ଲାଗିଲା ସେଇ ହସର ଝଲକରେ । ମତେ ପାଖକୁ ଆସିବାପାଇଁ ହସ୍ତଦ୍ୱାରା ଇଙ୍ଗିତ ଦେଇ ହଠାତ୍ କୁଆଡ଼େ ଅଦୃଶ୍ୟ ହୋଇଗଲେ । ଜାଣିପାରିଲି ନାହିଁ ସେ କୁଆଡ଼କୁ ଗଲେ ? ମନ୍ଦିର ଭିତରକୁ ନା ବାହାରକୁ ?

କିଛି ସମୟ ଉତ୍ତାରୁ ଧାଇଁ-ଧାଇଁ ଆସି ମନ୍ଦିର ନିକଟରେ ପହଞ୍ଚିଲି । ଆଖପାଖରେ କେଉଁଠି ହେଲେ ତାଙ୍କୁ ପାଇଲି ନାହିଁ । ବହୁତ ଖୋଜାଖୋଜି କଲି । ସେ ନାହାନ୍ତି କିମ୍ବା ତାଙ୍କ କଥିତ ଆଶ୍ରମ ବି ନାହିଁ । ଅଥଚ ମନ୍ଦିର ଓ ତାହାର ପରିପାର୍ଶ୍ୱ ଚହଟି ଉଠୁଛି କି ଏକ ସ୍ନିଗ୍ଧ ସୌରଭର ମହକରେ ! ଅତି ଦିବ୍ୟ ଅତି ମଧୁମୟ । ଅତି ଅଭାବନୀୟ ।

ଆଶ୍ଚର୍ଯ୍ୟଚକିତ ହୋଇ ପୁଣି ଆସି ଠିଆ ହେଲି ମନ୍ଦିରଦ୍ୱାରରେ । ପୂଜକଙ୍କ ପ୍ରାଭାତିକ ଆରତି ସରିବା ଉପରେ । ଆରତି ସାରି ସେ ବାହାରି ଆସିଲେ ଓ ମତେ ଆରତିର ଗନ୍ଧ ଆଘ୍ରାଣ କରିବାର ସୁଯୋଗ ଦେଲେ । ଭକ୍ତି ଗଦ୍‌ଗଦ ଚିତ୍ତରେ ତାହାକୁ ଆଘ୍ରାଣ କଲି ଓ ସୂର୍ଯ୍ୟଦେବଙ୍କୁ ପ୍ରଣାମ କଲି ।

ମନେ ମନେ ସେଇ ଏକ ଅଶାନ୍ତ ଚିନ୍ତାର ଅନିବାର ଆଘାତ — କିଏ ହୋଇପାରନ୍ତି ଯେ ସନ୍ନ୍ୟାସୀ ?

ସୂର୍ଯ୍ୟଦେବଙ୍କୁ ବାରମ୍ବାର ଗୁଣୁ-ଗୁଣୁ ହୋଇ ପ୍ରାର୍ଥନା କରୁଥାଏ "ହେ ପ୍ରଭୋ ! ମନରୁ ମୋର ଏଇ ଅଶାନ୍ତ ଝଡ଼କୁ ଶୀଘ୍ର ଶାନ୍ତ କରିଦିଅ । ବଡ଼ ଚିନ୍ତିତ ଓ ବ୍ୟଥିତ ମୁଁ । କିଶୋରପ୍ରାଣ ମୋର ଗଭୀର ଭାବରେ ଆକୁଳ । ଦୟାକର ପ୍ରଭୋ ! ଆଖିର ଅନ୍ଧ-ପୁତୁଳିକୁ ମୋର ଖୋଲିଦିଅ ।"

ପୂଜକ ମହାଶୟ ମୋ' ମନୋଭାବକୁ ଲକ୍ଷ୍ୟ କରି ପଚାରିଲେ, ''ବାପା ବତ୍ସ ! କ'ଣ ହୋଇଛି ତୁମର ? ଏଭଳି ଚିନ୍ତିତ କାହିଁକି ? କାହିଁକି ଏଭଳି ଉଦ୍‌ବିଗ୍ନ ?''

''ଆପଣ ଜଣେ ସନ୍ନ୍ୟାସୀଙ୍କୁ ଏଠାରେ ଦେଖିଛନ୍ତି କି ?'' ମୋର ଅନୁସନ୍ଧିତ୍ସାଭରା ପ୍ରଶ୍ନ ।

ପୂଜକ ମହାଶୟ ହସି ହସି କହିଲେ, ''କେତେ ସନ୍ନ୍ୟାସୀ ତ ଆସନ୍ତି ଏଠାକୁ । ଏଇ ତ ଦୁଇ ଦିନ ତଳେ ଭରଦ୍ୱାଜଙ୍କ ଆଶ୍ରମରୁ ଜଣେ ସନ୍ନ୍ୟାସୀ ଆସିଥିଲେ । ରାତିଟା ମନ୍ଦିରର ମୁଖଶାଳାରେ କଟାଇ ବଡ଼ିଭୋରରୁ ଚାଲିଗଲେ । ତୁମେ କେଉଁ ସନ୍ନ୍ୟାସୀଙ୍କ କଥା ପଚାରୁଛ ?''

''ସେ ସନ୍ନ୍ୟାସୀଙ୍କ କଥା ନୁହେଁ ବ୍ରାହ୍ମଣବର । ଏଇ କେତୋଟି ମାତ୍ର ମୁହୂର୍ତ୍ତ ପୂର୍ବରୁ ଏଠାକୁ ଜଣେ ସନ୍ନ୍ୟାସୀ ଆସିଥିଲେ । ମତେ ସାଙ୍ଗରେ ଆଣୁଥିଲେ । ମୁଁ ଟିକିଏ ପଛରେ ପଡ଼ିଗଲି । ସେ ଆସି ଏଇ ଦ୍ୱାରଦେଶରେ ଅଟକିଗଲେ । ମତେ ହାତଠାରି ଡାକିଲେ ପାଖକୁ ଆସିବାପାଇଁ । ତାହା ପରେ ତାଙ୍କୁ ଆଉ ଦେଖିବାକୁ ପାଉ ନାହିଁ ।'' ଶତଘ୍ନୀର ମୁଖରୁ ଗୋଟିକ ପରେ ଗୋଟିଏ କରି ଗୋଲକ ତୀବ୍ର ଗତିରେ ଛୁଟିଲା ଭଳି ଏତକ କଥା କହିଦେଲି । ଟିକିଏ ମାତ୍ର ବିରାମ ନ ଥିଲା ।

''କାହିଁ, କେହି ସନ୍ନ୍ୟାସୀ ଏଠାକୁ ଆସିନାହାନ୍ତି ତ ।''

''ସେ କହୁଥିଲେ, ତାଙ୍କ ଆଶ୍ରମ କୁଆଡ଼େ ଏଇ ସୂର୍ଯ୍ୟମନ୍ଦିର ନିକଟରେ । ଆପଣ ସେଭଳି କୌଣସି ଆଶ୍ରମ ଦେଖିଛନ୍ତି କି ?''

''କାହିଁ, ନାହିଁ ତ ।'' ତାଙ୍କ କପାଳରେ ମଧ୍ୟ ସଚକିତ ବିସ୍ମୟର ଭାଙ୍ଗ । ସେ ହୁଏତ ମୋରି ଭଳି ଭାବୁଥିଲେ– କିଏ ହୋଇପାରନ୍ତି ଯେ ବିଚିତ୍ର ସନ୍ନ୍ୟାସୀ ? କିଏ ଏହି ଚମ୍ପାବନର ରହସ୍ୟମୟ ଅତିଥି ?

ଏତିକିବେଳେ ମନ୍ଦିରର ମୁଖଶାଳାର ଛାତରୁ ଝୁଲୁଥିବା ବିରାଟ ଘଣ୍ଟିଟି ଖୁବ୍ ଜୋର୍‌ରେ ବାଜିଉଠିଲା । ତାହା କାହାଙ୍କ ବଳିଷ୍ଠ ହାତ ଦୋହଲାଇ ଦେଉଥିବା ଭଳି ଲାଗୁଥାଏ । ପୂଜକ ଓ ମୁଁ ଚମକି ପଡ଼ିଲୁ । କେହି କୁଆଡ଼େ ନାହାନ୍ତି । ଅଥଚ ଘଣ୍ଟିଟି ଦୋହଲି ଦୋହଲି ବାଜି ଚାଲିଛି ।

ବଡ଼ ଆଶ୍ଚର୍ଯ୍ୟ ! କିଏ ତେବେ ବଜାଇଲେ ଘଣ୍ଟି ? ମନରେ ମୋର ଅଯୁତ ପ୍ରଶ୍ନବାଚୀ ।

ମୋ' ଦୃଷ୍ଟି ହଠାତ୍ ଘଣ୍ଟି ଉପରେ ଓ ପରେ ପରେ ମନ୍ଦିରସ୍ଥ ସୂର୍ଯ୍ୟମୂର୍ତ୍ତିଙ୍କ ଉପରେ ପଡ଼ିଲା । ସୁବର୍ଣ୍ଣ କିରୀଟଧାରୀ କନକ ପ୍ରତିମା । ପୂର୍ବ ଦିଗକୁ ମୁହଁ କରି ଅବସ୍ଥାପିତ । ବାଳସୂର୍ଯ୍ୟଙ୍କ କିରଣଜାଲରେ ସମ୍ୟକ୍ ପରିସ୍ନାତ । ଆହୁରି ଚମକି ଉଠୁଛନ୍ତି ଚକିତ ଆଭାରେ । ଲକ୍ଷ୍ୟ କଲି ଗୋଟିଏ ଅତି ଅଦ୍ଭୁତ କଥା । ସେହି ମୂର୍ତ୍ତିଟି ମୁହୂର୍ତ୍ତକୁ ମୁହୂର୍ତ୍ତ ପରିବର୍ତ୍ତିତ ହୋଇଯାଉଛନ୍ତି ନୂତନ ରୂପରେ । କେତେବେଳେ ନିତିଦିନିଆ କନକ ମୂର୍ତ୍ତି ତ ଆଉ କେତେବେଳେ ପୂର୍ବରୁ ଦେଖିଥିବା ସୌମ୍ୟ ସନ୍ନ୍ୟାସୀମୂର୍ତ୍ତି । ଅବିକଳ ସେହି ରୂପ ।

ସେହି ଶ୍ମଶ୍ରୁ । ସେହି ପ୍ରଲମ୍ବିତ ବାହୁ । ସେହି ଦଣ୍ଡ ଓ କମଣ୍ଡଳୁ । ଆଶ୍ଚର୍ଯ୍ୟଚକିତ ହୋଇ ପୂଜକଙ୍କୁ ପ୍ରଶ୍ନ କଲି, ''ପୂଜକ ମହାଶୟ ! ଆପଣ କିଛି ଦେଖିପାରୁଛନ୍ତି ?''

''କେଉଁଠି ବାପା ବସୁ ?''

''ଏଇ ସୂର୍ଯ୍ୟ-ପ୍ରତିମାରେ ।''

''କ'ଣ ?''

''ଯେଉଁ ସନ୍ୟାସୀଙ୍କ କଥା କହୁଥିଲି, ତାଙ୍କରି ପ୍ରତିଛବି । କିଛି ଦେଖିପାରୁଛନ୍ତି ଆପଣ ?''

''ନା ବସୁ, ମୁଁ କିଛି ଦେଖିପାରୁ ନାହିଁ ।'' ତାଙ୍କର ନୈରାଶ୍ୟଭରା ଉତ୍ତର ।

''ମୁଁ କିନ୍ତୁ ପରିଷ୍କାର ଦେଖିପାରୁଛି ପୂଜକ ମହାଶୟ । ସେହି ସନ୍ୟାସୀଜଣକ ଏହି ପ୍ରତିମାରେ ଦେଖାଯାଉଛନ୍ତି ଓ ପୁଣି ସେଥିରେ ଲୀନ ହୋଇଯାଉଛନ୍ତି । ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ମତେ ।''

ପୂଜକ କିଛି ସମୟ କ'ଣ ଭାବିଲେ ଓ ତାହା ପରେ ମତେ ହସି-ହସି କହିଲେ, ''ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ବାପା । ତୁମେ ବଡ଼ ଭାଗ୍ୟବାନ୍ । ହଁ, ବଡ଼ ଭାଗ୍ୟବାନ୍ । ଭଗବାନ୍ ସୂର୍ଯ୍ୟଦେବଙ୍କର ତୁମ ଉପରେ ଅସୀମ କୃପା । ସେ ତୁମକୁ ଦର୍ଶନ ଦେଇଛନ୍ତି । ଜନ୍ମ ତୁମର କୃତାର୍ଥ । ତୁମ ଶିରରେ ତାଙ୍କ ଆଶୀର୍ବାଦର ଧାରା ଝରୁଛି । ତାଙ୍କୁ ବାରମ୍ବାର ପ୍ରଣାମ କର ।''

ପୂଜକଙ୍କ କଥା ମାନି ସୂର୍ଯ୍ୟଦେବଙ୍କୁ ବାରମ୍ବାର ସାଷ୍ଟାଙ୍ଗ ପ୍ରଣାମ କଲି । ଆଖିର ଲୁହରେ ମନ୍ଦିରର ଦ୍ୱାରଦେଶକୁ ଧୋଇଦେଇଗଲି । ମତେ ଲାଗୁଥିଲା, ସତେ ଯେମିତି ସୂର୍ଯ୍ୟଦେବତାଙ୍କ ପାଦପୀଠର ଧୂଳିକୁ ନେତ୍ରନୀର ମୋର ଧୋଇଦେଇଯାଉଛି ! ନିଜକୁ ଖୁବ୍ ଭାଗ୍ୟବାନ୍ ମନେ କରୁଥିଲି । ଅତି ଧନ୍ୟ ମନେ କରୁଥିଲି । ଏହିପରି ସାଷ୍ଟାଙ୍ଗ ପ୍ରଣିପାତ କରିଥିବା ଅବସ୍ଥାରେ ବହୁତ ସମୟ ଧରି ପଡ଼ିରହିଲି । ସୂର୍ଯ୍ୟଦେବ ସ୍ୱୟଂ ମତେ ଦେଖା ଦେଲେ ଏବଂ ଡାକିଲେ ପୁତ୍ର ବୋଲି । ଆଃ ! କି ଆନନ୍ଦ ! କି ସୁଖ ! ସେହି ଆନନ୍ଦ ଓ ସୁଖକୁ ସହିପାରିବା ଭଳି ଶକ୍ତି ସୂର୍ଯ୍ୟଦେବ ମତେ ଦିଅନ୍ତୁ । ଏହି ପ୍ରାର୍ଥନା ତାଙ୍କୁ କରୁଥିଲି ।

ସେହିଦିନୁ ମନେ ମନେ ସୂର୍ଯ୍ୟଦେବଙ୍କୁ ମୋର ଗୁରୁଦେବ ବୋଲି ମାନିନେଇଥିଲି । ସବୁ ବିଷୟରେ ମୋର ଚରମ ଓ ପରମ ଉପଦେଷ୍ଟା ହୋଇ ସେହି ହିଁ ରହିଥିଲେ । ଜୀବନରେ ମୋର ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ପରଶୁରାମ ଆଦି ଅନେକ ଗୁରୁ ଆସିଛନ୍ତି । କିନ୍ତୁ ତାଙ୍କ ଭଳି କେହି ଗୁରୁ ହୋଇପାରି ନାହାନ୍ତି । ମୋର ସକଳ ଦ୍ୱିଧା, ସକଳ ସନ୍ଦେହକୁ ସେଇ ହିଁ ଦୂର କରିଛନ୍ତି । ସେଇ ମୋର ଆଦ୍ୟ ଗୁରୁ ଓ ଅନ୍ତିମ ଗୁରୁ ମଧ୍ୟ । ଜୀବନର ଏଇ ଅନ୍ତିମ ଲଗ୍ନରେ ତାଙ୍କରି ଆଶୀର୍ବାଦ ମୋର କାମ୍ୟ !

ଏହା ଭିତରେ କେତେ ସମୟ ବିତିଗଲା ଯେ ଜମା ଜାଣିପାରି ନ ଥିଲି । ଗଙ୍ଗାର ତଟବନକୁ ଥରାଇ ଥରାଇ ବିଚଳିତ ହେଉଥିବା ତାହା ବୁକୁର ଲହରୀ-ଗର୍ଜନ ମତେ ଜମା ଶୁଭୁ ନ ଥିଲା । ଖାଲି ଯାହା ଶୁଭୁଥିଲା ସନ୍ୟାସୀରୂପଧାରୀ ସୂର୍ଯ୍ୟଦେବଙ୍କର ସ୍ନେହଭରା

ପୁତ୍ର-ଡାକ । ଦିବ୍ୟ-ପବିତ୍ର ଆଶିଷବୋଳା ଡାକ । ଉତ୍ସାହ ଓ ଅନୁପ୍ରେରଣାରେ ଚିର ଟଳମଳ ! ପୁଣି ବି ଶୁଭୁଥିଲା ତାଙ୍କ ଦିଆ ମୋର ନୂତନ ପରିଚୟ । ମୁଁ କୁଆଡ଼େ କ୍ଷତ୍ରିୟ ସନ୍ତାନ । ଛାତିତଳେ ମୋର କି ଏକ ପ୍ରଚ୍ଛନ୍ନ ପୁଲକର ଢେଉ ! ଜାଣିପାରୁ ନ ଥିଲି ତାହାର ଗଭୀରତା ଓ ଉତ୍ତୁଙ୍ଗତା । ପ୍ରାୟ ସଂବିତ୍ ହରାଇ ବସିଥିଲି !

## ଚାରି

ସଂବିତ୍ ମୋର ଫେରିଆସିଲା ଯେତେବେଳେ ଶୁଣିବାକୁ ପାଇଲି କେହି ଜଣେ ମତେ ଡାକୁଛି, ''ଭାଇ ! ଉଠ ।''

ପରିଚିତ କଣ୍ଠସ୍ୱର । ପ୍ରଣିପାତର ଧ୍ୟାନ ମୋର ଭାଙ୍ଗିଗଲା । ଚମକି ପଡ଼ି ଉଠିବସିଲି । ସ୍ୱପ୍ନୋତ୍‌ଥିତ ଭଳି ବୋଧ ହେଉଥିଲା । ଆଖି ମଳି ଚାହିଁଲି । ଦେଖିଲି, ମନ୍ଦିରର ଦ୍ୱାର ଅବରୁଦ୍ଧ । ପୂଜକ ମହାଶୟ ପୂଜାର୍ଚ୍ଚନା ସାରି କେତେବେଳୁ ମନ୍ଦିର ଛାଡ଼ି ଚାଲିଯାଇଛନ୍ତି ବୋଧହୁଏ । ମନ୍ଦିରର ପ୍ରାଙ୍ଗଣରେ ସକାଳର ଖରା ଚିକ୍ ଚିକ୍ ମାରୁଛି । ବୁଲା କୁକୁରଟାଏ କୁଣ୍ଡଳିତ ଭାବରେ ଶୋଇରହି ଉଷୁମ ଟାଣୁଛି । ଗୁଣ୍ଡୁଚିମୂଷାଟାଏ କିଛି ଖାଦ୍ୟ ସଂଗ୍ରହ କରିବା ଅବସରରେ ଚିନିକ୍ ଚିନିକ୍ ବୋଲି ଚିତ୍କାର କରି ଡେଇଁ ଡେଇଁ ବୁଲୁଛି । ସାନ ଭାଇ ସଂଗ୍ରାମ ମତେ ଡାକୁଛନ୍ତି । ମୁହଁରେ ତାଙ୍କର ସ୍ନେହଭରା ହସ । ସେ ପୁଣି କହିଲେ, ''ଏତେବେଳଯାଏ କ'ଣ ଏଠି ଶୋଇରହିଛ ? ଭୁଲିଗଲ କି ଆଜି କାର୍ତ୍ତିକୋତ୍ସବ ବୋଲି ?''

''ଆରେ ସତେ ତ ।'' ଜିଭ କାମୁଡ଼ି କହିଲି ଓ ଶୀଘ୍ର-ଶୀଘ୍ର ଉଠି ତାଙ୍କ ସାଥିରେ ଘର ଆଡ଼େ ମୁହାଁଇଲି । ଆସିଲାବେଳେ ଅନେକ ଖେଳସାଥୀଙ୍କୁ ବାଟରେ ଭେଟିଲି । ସେମାନେ କାର୍ତ୍ତିକଯାତ୍ରା ଦେଖିବାପାଇଁ ପ୍ରସ୍ତୁତ ହୋଇ ଆସିସାରିଥାନ୍ତି । ମତେ ଖୋଜି ଖୋଜି ମନ୍ଦିର ଆଡ଼େ ଆସୁଥାନ୍ତି । ମତେ ଏଭଳି ସଦ୍ୟସ୍ନାତ ଅବସ୍ଥାରେ ଦେଖି ସେମାନେ ଶ୍ଳେଷଭରା ସ୍ୱରରେ ପଚାରିଲେ, ''କି ସେନାପତି ମହାଶୟ ! କ'ଣ ଏ ପର୍ଯ୍ୟନ୍ତ ତୁମେ ଯାତ୍ରାକୁ ଯିବାପାଇଁ ପ୍ରସ୍ତୁତ ହୋଇ ନାହଁ ? ବଡ଼ ଆଶ୍ଚର୍ଯ୍ୟ !''

''ଏଇ ସଙ୍ଗେ ସଙ୍ଗେ ଆସୁଛି । ତୁମ୍ଭେମାନେ ସମସ୍ତେ ଆଗରେ ଚାଲୁଥାଅ ।'' ଏତକ କହିଦେଇ ନିଜେ ପ୍ରସ୍ତୁତ ହେବାପାଇଁ ତର ତର ହୋଇ ଘରକୁ ଆଗେଇଲି । ସାଥିରେ ସାନ ଭାଇ ସଂଗ୍ରାମ । ସେ ମୋର ଗତିକୁ ତ୍ୱରାନ୍ୱିତ କରିବାପାଇଁ ବାରମ୍ବାର କରୁଥାନ୍ତି ଅନୁପ୍ରେରିତ । ବିଳମ୍ବ ସହିପାରୁ ନ ଥାନ୍ତି । ଯାତ୍ରାର କୌତୂହଳପୂର୍ଣ୍ଣ ଡାକ ତାଙ୍କୁ କୁତୁ କୁତୁ କରିଦେଉଥାଏ ଅତି ବିପୁଳ ଭାବରେ ! ଯେତେହେଲେ ଛୋଟ ପିଲା ତ । ଉତ୍ସାହ ତାଙ୍କର ଅଦମ୍ୟ । ତାହା ବାରମ୍ବାର ବାହାରି ଆସୁଥାଏ ବିଭିନ୍ନ ରୂପ ଧରି ।

ଆପଣମାନେ ଭାବିପାରନ୍ତି ସୂତପୁତ୍ର ବସୁସେନ ମୁଁ ସେନାପତି ହେଲି କିପରି ? ସେ ଗୌରବ ମତେ ଦେଲା କିଏ ? ଜ୍ୟେଷ୍ଠର ତାତିଲା ଆକାଶକୁ ଚାହିଁ ଦୀର୍ଘଶ୍ୱାସ ଛାଡୁଥିବା ପଳାଶଫୁଲର ପ୍ରାଣରେ ଅଭାବିତ ବାସନାର ଆକର୍ଷଣ ଆଣିଦେଲା କିଏ ?

ଏଇଟା ମୋ' ସାଥୀମାନଙ୍କର ଦାନ । ସେହିମାନେ ହିଁ ମତେ ମଣ୍ଡିତ କରିଛନ୍ତି ଏଭଳି ପଦବୀରେ । ସେମାନଙ୍କର ପ୍ରିୟ ନେତା ମୁଁ । ସକଳ କର୍ମରେ ନେଇଥାଏ ନେତୃତ୍ୱ । ଏପରି କି ମୋ'ଠାରୁ ଅଧିକ ବୟସର ସାଥୀମାନଙ୍କୁ ବି ଦେଇଥାଏ ନେତୃତ୍ୱ । ସେଥିପାଇଁ ସେମାନେ ସମସ୍ତେ ମତେ ଆଦରରେ ଡାକିଥାନ୍ତ ସେନାପତି ବୋଲି । ଆଉ ବେଳେବେଳେ ଡାକିଥାନ୍ତି ମହାରାଜ ବୋଲି । ଏଥିରେ ସମ୍ମାନବୋଧ ସେତେଟା ନ ଥାଏ । ବରଂ ଥାଏ ସ୍ନେହ, ପ୍ରୀତି ଓ ଅନୁରାଗ । ପ୍ରଥମ କାରଣ ହେଲା, ମୋ' ବଂଶଗତ ମର୍ଯ୍ୟାଦା । ମୁଁ ଗ୍ରାମଭୋଜକ ସୂତପ୍ରମୁଖ ଅଧିରଥଙ୍କ ପୁତ୍ର । ଦ୍ୱିତୀୟ କାରଣ ହେଲା ମୋର ବଳବୀର୍ଯ୍ୟ ଓ ସାହସ । ସମସ୍ତଙ୍କୁ ସୁଖ ଦେବାପାଇଁ ସ୍ୱାଭାବିକ ଆଗ୍ରହ ଓ ଆଗୁସାର-ଭାବ । କିଏ ଫଳଚୋରି କରୁଥିବା ଅବସ୍ଥାରେ ଧରାପଡ଼ିଯିବାର ଆଶଙ୍କା ଥିଲେ, ଉଦ୍ୟାନ ପ୍ରାଚୀରକୁ ଡେଇଁ ତାଙ୍କୁ ରକ୍ଷା କରିଥାଏ । କିଏ ଅସାବଧାନତା ହେତୁ ପାଣିରେ ବୁଡ଼ିଯାଉଥିଲେ ନିଜ ଜୀବନକୁ ପାଣି ଛଡ଼ାଇ ଦେଇ ତାଙ୍କୁ ଉଦ୍ଧାର କରିବାର ଉଦ୍ୟମ କରିଥାଏ । ସାଥୀ ଛୋଟ ହୋଇଥିଲେ ଓ ତାଙ୍କ ହାତ ଫଳଗଛକୁ ପାଉ ନ ଥିଲେ ତାଙ୍କପାଇଁ ଫଳ ତୋଳି ଦେଇଥାଏ । ଏହିପରି ଭାବରେ ସାଥୀମାନଙ୍କ ସେବା କାର୍ଯ୍ୟକୁ ଧର୍ମ ବୋଲି ବିଚାରିଥାଏ । ଆଉ ଆମର ଯେତେବେଳେ ମିଛି-ମିଛିକା ରାଜଦରବାର ବସେ, ସେଥିରେ ମୁଁ ହୁଏ ରାଜା । ମୋ' ସାନ ଭାଇ ସଂଗ୍ରାମ ହୁଅନ୍ତି ମନ୍ତ୍ରୀ ।

ଏଇ ରାଜା ହେବାର ସ୍ୱାଦୁଟି କ୍ଷଣସ୍ଥାୟୀ ହୋଇଥିଲେ ବି ମତେ ଭାରି ଭଲ ଲାଗୁଥାଏ । ତାହା ମୋ'ପାଇଁ ଥାଏ ଅତୀବ ଆକର୍ଷଣୀୟ । ସେହି ଅବସରରେ ପ୍ରଜାଶାସନ ଚାଲେ । ରଣଯାତ୍ରା ଚାଲେ ଏବଂ ରଣଦୁନ୍ଦୁଭି ବାଜେ । ରଣ ଚାଲେ ଓ ଯଜ୍ଞକାର୍ଯ୍ୟବି ଚାଲେ । ରାଜାଙ୍କ ସକଳ କର୍ତ୍ତବ୍ୟକୁ ଅନୁକରଣ କରି କାର୍ଯ୍ୟମାନ ଚାଲେ । ମିଛିମିଛିକା ଦାନ-ଦକ୍ଷିଣା ମଧ ଚାଲେ । ମୁଁ ଘରୁ କେତେବେଳେ କେମିତି ଖଟା, ମିଠା, ପିଠା ଅଥବା ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ କିଛି ଆଣିଥାଏ । ଦାନକର୍ମ ସମାହିତ କରୁଥିବା ଅବସରରେ ସାଥୀମାନଙ୍କୁ ଦାନ କରେ । ଏହି ଦାନ-ଦକ୍ଷିଣା ଦେବାଟା ଚାଲିଥାଏ କିନ୍ତୁ ଆମ ନିଜ-ନିଜ ମଧ୍ୟରେ ।

ଦିନେ କିନ୍ତୁ ଏକ ବିଚିତ୍ର ଘଟଣା ଘଟିଥିଲା ଯେତେବେଳେ ଜଣେ ପ୍ରକୃତ ଯାଚକ ବ୍ରାହ୍ମଣ ଆସି ଜୁଟିଥିଲେ ମୋଠାରୁ ଦାନ ଗ୍ରହଣ କରିବାପାଇଁ । ତାହା ନ କହିବାର ଲୋଭ ସମ୍ବରଣ କରିପାରୁ ନାହିଁ ।

ସେଦିନ ଆମେ ମିଛି-ମିଛିକା ଅଶ୍ୱମେଧ ଯଜ୍ଞ କରୁଥାଉ । ଯଜ୍ଞକାର୍ଯ୍ୟ ସରିଲା । ପୂର୍ଣ୍ଣାହୁତି ପଡ଼ିଲା । ଦାନ ଦେବା ଆରମ୍ଭ ହେଲା । ସେ ଦିନ ଆମ ଘରୁ ଆଣିଥିବା ଖଟାରୁ ଟିକିଏ ଟିକିଏ ଦାନ କରିଥିଲି । ଦାନ କାର୍ଯ୍ୟ ଶେଷ ହେବା ଉପରେ । ମୋ' ପାଖରେ ଅବଶିଷ୍ଟ ଖଟାରୁ ଟିକିଏ ମାତ୍ର ଅଛି ମୋ' ନିଜ ପାଇଁ । ତାହାର ସଦୁପଯୋଗ କରିବା ପୂର୍ବରୁ ଦ୍ୱାରୀଙ୍କୁ ନିର୍ଦ୍ଦେଶ ଦେଇ କହିଥିଲି, ''ହେ ଦ୍ୱାରୀ ! ଦେଖ ତ ଆଉ କେହି ଦାନ ନେବାପାଇଁ ପ୍ରାର୍ଥୀ ରହିଛନ୍ତି କି ନାହିଁ ?''

ଦ୍ୱାରୀ ମତେ ସମ୍ମାନ ଦେଖାଇ ପ୍ରାର୍ଥୀ ଖୋଜିବାପାଇଁ ଯାଇଛନ୍ତି କି ନାହିଁ ହଠାତ୍ ଜଣେ ପ୍ରୌଢ଼ ବ୍ରାହ୍ମଣ ଆସି ଉପସ୍ଥିତ ହେଲେ ମୋ' ଆଗରେ ଏବଂ କହିଲେ, ''ପ୍ରାର୍ଥୀଙ୍କୁ ଖୋଜିବା ଆବଶ୍ୟକ ନାହିଁ । ମୁଁ ନିଜେ ଏବେ ଉପସ୍ଥିତ । ମତେ ଦାନ ଦିଅନ୍ତୁ ।''

ଏଭଳି ପରିସ୍ଥିତରେ ମୋ' ସାଥୀମାନଙ୍କ ମଧ୍ୟରେ ଚଞ୍ଚଳତା ଖେଳିଗଲା । ସେମାନେ ହତବାକ୍ ହୋଇଗଲେ । ସମସ୍ତଙ୍କ କପାଳରେ ଚିନ୍ତା ଓ ବିସ୍ମୟର ଭାଙ୍ଗ । ସତକୁ ସତ ଏଇ ପ୍ରାର୍ଥୀଜଣକ ଆସିଲେ କିପରି ? ୟାଙ୍କୁ କି ଦାନ ଦିଆଯାଇପାରିବ ? ମୋର କିନ୍ତୁ କିଛି ଚିନ୍ତା ଓ ଉଦ୍‌ବେଗ ନ ଥିଲା । ମୁଖମଣ୍ଡଳରେ ରାଜାଙ୍କ ସୁଲଭ ଗାମ୍ଭୀର୍ଯ୍ୟ ସେହିପରି ଥିଲା ଅତୁଟ । ହସି-ହସି ଘୋଷଣା କଲି, "ନିଅନ୍ତୁ ବିପ୍ରବର । ନିଅନ୍ତୁ ଆପଣଙ୍କ ଦାନ ।" ଏହା କହି ହାତରେ ଧରିଥିବା ଅବଶିଷ୍ଟ ଖଟାତକ ତାଙ୍କୁ ଦେଇଦେବା ପାଇଁ ହାତ ବଢ଼ାଇଲି ।

ସେ କିନ୍ତୁ ଏଭଳି ଅପୂର୍ବ ଦାନ ନେବାପାଇଁ ପ୍ରସ୍ତୁତ ନ ଥିଲେ ଜମା । ସେ ଥିଲେ ଜଣେ ପ୍ରକୃତ ପ୍ରାର୍ଥୀ । ମିଛି-ମିଛିକା ପ୍ରାର୍ଥୀ ନୁହନ୍ତି । ତାଙ୍କର କିଛି ଅର୍ଥର ଆବଶ୍ୟକତା ଥିଲା । ଏହି ଦାନକୁ ଦେଖିବା ମାତ୍ରେ ସେ ପଛକୁ ଘୁଞ୍ଚିଗଲେ ଓ କହିଲେ, "ମହାରାଜ ! ପ୍ରାର୍ଥୀଙ୍କ ଆବଶ୍ୟକତା ନ ବୁଝି ଦାନ ଦେବାପାଇଁ ଆଗେଇ ଆସୁଛନ୍ତି କିପରି ? ମୋର ଯେ ଦାନ କ'ଣ ହେବ ?"

"ଆପଣ ତେବେ କ'ଣ ଚାହାନ୍ତି ?"

"କିଛି ଅର୍ଥ । ମୋର ଏକମାତ୍ର ପୁତ୍ରର ଉପନୟନ ଲାଗି କିଛି ଅର୍ଥର ଆବଶ୍ୟକତା ଅଛି । ମୁଁ ଗରିବ ବ୍ରାହ୍ମଣ । ଏପର୍ଯ୍ୟନ୍ତ ଅର୍ଥର ବ୍ୟବସ୍ଥା କରିପାରି ନାହିଁ । ସେହି ଲାଳସାରେ ଏହି ବାଟରେ ଯାଉଥିଲି । ଏଠାରେ ଦାନ ଦିଆଯାଉଥିବାର ଶୁଣି ଚାଲିଆସିଲି ।" ବ୍ରାହ୍ମଣ ଜଣେ ସରଳ ଓ ନିରୀହ ବ୍ୟକ୍ତି ବୋଲି ଜଣା ପଡୁଥାନ୍ତି । ସେ ଏତକ କଥା କହିଗଲେ ନିର୍ବିକାର ଭାବରେ ।

ମନରେ ମୋର ମୁହୂର୍ତ୍ତକ ପାଇଁ ଦ୍ୱନ୍ଦ୍ୱ । କ'ଣ ତାଙ୍କୁ କହିବି ? ଏବଂ କିପରି ? ତାଙ୍କୁ କ'ଣ କହିଦେବି ଯେ ଆମର ଏଠି ଚାଲିଛି ମିଛିମିଛିକା ଦାନ ବୋଲି ? ଦାନର ଅଭିନୟ ବୋଲି ? କିନ୍ତୁ ମନର ଅଭିମାନ ମୋର ଏହା କହିବାକୁ ବାରଣ କରୁଥିଲା । ସତେ ଯେମିତି ସେଇ କେତୋଟି ମୁହୂର୍ତ୍ତ ପାଇଁ ହୋଇଯାଇଥିଲି ଜଣେ ମହାଦାନୀ ମହାରାଜା । ହସି ହସି ଶାନ୍ତ ସ୍ୱରରେ କହିଲି, " ଆପଣ ଆପଣଙ୍କ ଦାନ ପାଇବେ ବିପ୍ରବର ।" ଏହା କହିବା ସଙ୍ଗେ ସଙ୍ଗେ ମୋ' ହାତର କନକ କଙ୍କଣ ଦୁଇ ପଟ କାଢ଼ି ତାଙ୍କୁ ଦେଇଦେଇଥିଲି । ତାଙ୍କ ମୁଖମଣ୍ଡଳର ପ୍ରସନ୍ନତା ଖେଳିଯାଇଥିଲା । ସେ ଆଶୀର୍ବାଦ-ମୁଦ୍ରାରେ ହାତ ଟେକି ମତେ କହିଥିଲେ, "ଦିଗ୍‌ବିଜୟୀ ଭବ ।" ତାହା ପରେ ସେହି ସ୍ଥାନ ଛାଡ଼ି ଚାଲିଯାଇଥିଲେ ।

ମୋ' ସାଥୀମାନେ ଅବାକ୍ ହୋଇ ଚାହିଁରହିଥିଲେ ମୋର ଏଇ କାର୍ଯ୍ୟକୁ । ମୋର କିନ୍ତୁ କିଛି ମାତ୍ର ବିକାର ନ ଥିଲା ମନରେ । ନ ଥିଲା ବି କିଛି ପଶ୍ଚାତ୍ତାପ ।

ଘରେ ପହଞ୍ଚିବା ମାତ୍ରେ ମାଆ ମୋର ଶୂନ୍ୟ ହାତ ଦିଓଟି ଦେଖି ପଚାରିଥିଲେ ଉଦ୍‌ବେଗଭରା କଣ୍ଠରେ, "ବାପା ବସୁ ! ତୁମ ସୁନାକଙ୍କଣ ଦିଓଟି ଗଲା କୁଆଡ଼େ ?"

"ଜଣେ ଗରିବ ବ୍ରାହ୍ମଣଙ୍କୁ ଦାନ ଦେଇଦେଲି ।"

"ମାନେ ?" ମା'ଆଙ୍କ ଆଖି ଦୁଇଟି ବିସ୍ମୟରେ ବିସ୍ଫାରିତ ।

"ହଁ ମାଆ, ଦାନ ଦେଇଦେଲି ।" ଦୋହରାଇ କହିଲି ଓ ଯାହା ଯାହା ଘଟିଥିଲା ଖୋଲିକରି କହିଗଲି ।

"ତୁମେ ଯେ କ'ଣ କଲ ବାପା ? କେତେ କଷ୍ଟରେ କଙ୍କଣ ଦିଓଟି ଗଢ଼ାଇଥିଲି ! ସେଥିପାଇଁ ମୋ' କଣ୍ଠର ହାରକୁ ଭାଙ୍ଗିବାକୁ ପଡ଼ିଥିଲା ।" ତାଙ୍କ ମନରେ ସାମାନ୍ୟ ବିରକ୍ତି । କିନ୍ତୁ କ୍ରୋଧ ନ ଥାଏ । କାରଣ ମୁଁ ଥିଲି ତାଙ୍କର ଅଲିଅଳ ଜ୍ୟେଷ୍ଠ ସନ୍ତାନ । ମୋ' ଉପରେ ରାଗିବାକୁ ଜମା ଶିଖି ନ ଥାନ୍ତି ସେ । ସମସ୍ତ ପିତାମାତା ପ୍ରଥମ ପ୍ରଜାତକୁ ଠିକ୍ ଏମିତି ଦେଖିଥାନ୍ତି । ଏମିତି ଅପେକ୍ଷାକୃତ ଅଧିକ ସ୍ନେହ ଢାଳିଦେଇଥାନ୍ତି । ସହଜାତ ପ୍ରବୃତ୍ତିର ସେହି ଶଗଡ଼-ଗୁଳାରେ ପଡ଼ି ମୋ' ମାଆ ବାଦ ଯାଇଥାନ୍ତେ ବା କିପରି ?

"ମାଆ ! ମୋର ଆବଶ୍ୟକତାଠାରୁ ସେହି ଗରିବ ବ୍ରାହ୍ମଣଙ୍କ ଆବଶ୍ୟକତା ଥିଲା ଅଧିକ । ଧନର ସୃଷ୍ଟି ତ କେବଳ ସେଇଥିପାଇଁ । ଆବଶ୍ୟକତା ମେଣ୍ଟାଇବାପାଇଁ । ଏଥିରେ ମୋର ଭୁଲ ରହିଲା କେଉଁଠି ?" କଣ୍ଠସ୍ୱର ମୋର ଥିଲା ବିନୟଭରା ଅଥଚ ଦୃଢ଼ । କୃତକର୍ମ ଲାଗି ସାମାନ୍ୟ ଟିକିଏ ବି ଅନୁଶୋଚନା ନ ଥିଲା । ବରଂ କର୍ତ୍ତବ୍ୟ ପାଳିଛି ବୋଲି ନିଜକୁ ନିଜେ ଧନ୍ୟ ମନେ କରୁଥିଲି ।

ମାଆ କିଛି ସମୟ ପାଇଁ କ'ଣ ଭାବିଲେ । ତାଙ୍କ ହୃଦୟ ବି ଥିଲା ଖୁବ୍ ଉଦାର ଜଣେ ରାଜମାତାଙ୍କ ଭଳି । ସମୁଦ୍ର ଭଳି ଗଭୀର । ସେ ମତେ କୋଳକୁ ଆଉଜାଇ ନେଇ କହିଲେ, "କିଛି ଭୁଲ କରି ନାହଁ ବାପା । ସବୁ ଠିକ୍ କରିଛ । ମୋ' ସୁନା ପୁଅଙ୍କର କେତେ ବୁଦ୍ଧି !" ପରେ ପରେ ମତେ ନିବିଡ଼ ଭାବରେ ଜାକି ଧରିଲେ ଛାତି ତଳେ ଓ ଅସରାକୁ ଅସରା ଚୁମ୍ବନ ବରଷାଇ ଦେଇଗଲେ ମୋ' ଗଣ୍ଡଦେଶରେ । ମମତାମୟୀ ମାଆଙ୍କର ମମତାଭରା ଚୁମ୍ବନ । ମତେ ଲାଗୁଥିଲା ତାଙ୍କର ପ୍ରତିଟି ଚୁମ୍ବନ ଯେମିତି ମୋ' କାନେ କାନେ କହିଯାଉଥିଲା – ତୁମେ ଦେଇଚାଲ ବାପା କର୍ଣ୍ଣ ! ତୁମେ ଦେଇଚାଲ । ସମସ୍ତଙ୍କୁ ଦେଇଚାଲ । ଖାଲି ଦେବାପାଇଁ ତ ତୁମର ଜନ୍ମ । ଦେବାରେ ହିଁ ଧନୀ ହୋଇଉଠ ! ନେବାର ଦାରିଦ୍ର୍ୟ ତୁମର ନ ରହୁ । ପରେ ଯେତେବେଳେ ବଡ଼ ହେଲି, ପାଠ-ଶାଠ ପଢ଼ିଲି ଓ ବେଦାଧ୍ୟୟନ କଲି ସେତେବେଳେ ମାଆଙ୍କ ସେଇ କଥା କେଇ ପଦର ସମାନ ଗୁଞ୍ଜରଣ ଶୁଣିପାରିଥିଲି ଏକ ବୈଦିକ ମନ୍ତ୍ରର ଝଙ୍କାରରେ – 'ଯାଚିତାରଃ ନଃ ସନ୍ତୁ ମା ଚ ଯାଚିସ୍ମ କଞ୍ଚନ' । ତୁମ୍ଭେମାନେ ଯାଚକମାନଙ୍କୁ ଖାଲି ଦେଇଚାଲ; କାହାକୁ କିଛି ମାଗ ନାହିଁ । ମାଆ ସତେ କେତେ ବଡ଼ ମନ୍ତ୍ରଦ୍ରଷ୍ଟା ଋଷିଙ୍କ ଜ୍ଞାନ ପାଇଥିଲେ !

ସେଦିନ ମାଆ ମତେ ଯେଉଁ ଉତ୍ସାହ ଦେଇଥିଲେ, ଯେଉଁ ଅନୁପ୍ରେରଣା ଦେଇଥିଲେ ତାହାକୁ ସାରା ଜୀବନ ଧରି ଗଣ୍ଠିଧନ କରି ସାଇତି ରଖିଛି । ଦାନକୁ ମୋର ସର୍ବପ୍ରଥମ କର୍ତ୍ତବ୍ୟ ବୋଲି ମାନି ନେଇଛି । ମୋ'ଠାରୁ କେହି ଖାଲି ହାତରେ ଫେରି ନାହାନ୍ତି । ଆଉ ଜୀବନ ଥିବାଯାଏ ଫେରିବେ ନାହିଁ ମଧ୍ୟ । ଦେବାରେ ମଣିଷ ଧନୀ ହୁଏ ଓ ନେବାରେ ହୁଏ ଦରିଦ୍ର । ମୁଁ ଚିରଧନୀ ହେବାକୁ ଚାହେଁ, ଚିରଦରିଦ୍ର କିନ୍ତୁ ନୁହେଁ । ମୁଁ ଜୀବନରେ ଅନେକ ରାଜ୍ୟଜୟ କରିଛି । କିନ୍ତୁ କେଉଁଠି ହେଲେ ବିଜିତ ରାଜ୍ୟର ଧନକୁ ଲୁଣ୍ଠନ କରି ଦରିଦ୍ରତାର ଛୋଟ ପ୍ରକୃତି ଦେଖାଇ ନାହିଁ ।

ଆରେ, ଏ କ'ଣ କହିଯାଉଛି ମୁଁ ? ସୂର୍ଯ୍ୟମନ୍ଦିରର ଦେହଳିରୁ କାହିଁ କେତେ ବର୍ଷକୁ ଆଗେଇଯାଇ କହିବସୁଛି ମୋ' ପରବର୍ତ୍ତୀ ଜୀବନର ଦାନ-ଧର୍ମ କଥା । ଏବେ ପୁଣି ଫେରିଯାଉଛି ମୋର ପୂର୍ବ କଥାକୁ ।

ସାଥୀ ପିଲାମାନେ ମୋ' କଥା ମାନି କାର୍ତ୍ତିକୋତ୍ସବର ପ୍ରାନ୍ତର ଆଡ଼କୁ ଆଗେଇଲେ । ସେଥିପାଇଁ ପ୍ରସ୍ତୁତ ହେବା ନିମିତ୍ତ ସଂଗ୍ରାମଙ୍କୁ ସାଥିରେ ଧରି ମୁଁ ଘର ଆଡ଼େ ମୁହାଁଇଲି । ମୋ' ମନରେ ବି ଉତ୍ସବର ଘନଘଟା ଦେଖିବାପାଇଁ ଧୀରେ ଧୀରେ ଉତ୍କଣ୍ଠା ଓ ଉଦ୍‌ବେଗ ଛୁଇଁବାକୁ ଲାଗିଲା । ଗତି ମୋର ଆପେ ଆପେ ତ୍ୱରାନ୍ୱିତ ହୋଇଉଠିଲା ଅଦୂରରୁ ଧେନୁର ହମ୍ବା-ରଡ଼ି ଶୁଣି ବତ୍ସାଟିର ଗତି ତ୍ୱରାନ୍ୱିତ ହେଲା ଭଳି ।

## ପାଞ୍ଚ

ଘରେ ପହଞ୍ଚି ଶୀଘ୍ର ଶୀଘ୍ର ଉତ୍ସବକୁ ଯିବାପାଇଁ ପ୍ରସ୍ତୁତ ହୋଇଗଲି । ସଂଗ୍ରାମ ତ ଆଗରୁ ପ୍ରାୟ ପ୍ରସ୍ତୁତ ହୋଇ ସାରିଥିଲେ । ସେ ଦିନ ପାଗଟା କେମିତି ଅଧିକ ମାତ୍ରାରେ ହେମାଳିଆ ଥାଇ ଆସନ୍ନ ମାର୍ଗଶୀର ମାସର ଆଗମନୀର ପୂର୍ବସୂଚନା ଦେଉଥିଲା । ଆମେ ଦୁଇ ଭାଇ ପଶମ ଚାଦର ଘୋଡ଼ି ହୋଇ ବାହାରିଲୁ । ଅବଶ୍ୟ ବାହାରିବାପାଇଁ ଟିକିଏ ଡେରି ହେଲା । ଆମ ନିଜ ପାଇଁ ନୁହେଁ । ମାଆଙ୍କ ପାଇଁ । ମାଆଙ୍କୁ ସାଥିରେ ନେଇଯିବାକୁ ହେବ । ସେ ରୋଷେଇ-କାର୍ଯ୍ୟରେ ବ୍ୟସ୍ତ ଥାଆନ୍ତି । ତାଙ୍କ କାମଦାମ ସରିବା ଉତ୍ତାରୁ ଆମେ ମାଆ ଓ ଦୁଇ ଭାଇ ବାହାରିଲୁ । ଆଗରେ ମୁଁ । ମୋ' ପଛରେ ସଂଗ୍ରାମ ଓ ତାଙ୍କ ପଛରେ ମାଆ ।

ପିତା ଆଗରୁ ଉତ୍ସବ-ପ୍ରାନ୍ତରକୁ ଚାଲି ଯାଇଥାନ୍ତି । ସେ ଗ୍ରାମଭୋଜନକ । ଗାଁର ମୁଖିଆ ହିସାବରେ ତାଙ୍କର ଏଥିପାଇଁ ସ୍ୱତନ୍ତ୍ର କର୍ତ୍ତବ୍ୟ ଅଛି । ସମସ୍ତ ବ୍ୟବସ୍ଥା ତାଙ୍କୁ ତଦାରଖ କରିବାକୁ ପଡ଼ିଥାଏ । ବିଶେଷକରି ପ୍ରାନ୍ତରେ ଯେଉଁ ବୃଷଯୁଦ୍ଧର ଆୟୋଜନ କରାଯାଏ, ସେଥିର ବିଜେତା ବୃଷ ଓ ସେହି ବୃଷର ସ୍ୱତ୍ୱାଧିକାରୀ ଗ୍ରାମର ନାମ ଘୋଷଣା କରିବା ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । ଅନ୍ୟ ବର୍ଷମାନଙ୍କରେ ସେ ଏହି ଉତ୍ସବ ଲାଗି ଛଅ-ସାତ ଦିନ ପାଇଁ ରାଜଦରବାରରୁ ସାମୟିକ ଛୁଟି ଆଣିଥାନ୍ତି । ଏ ବର୍ଷ କିନ୍ତୁ ଚତୁର୍ମାସ୍ୟା ପରେ ଏ ପର୍ଯ୍ୟନ୍ତ ରାଜଭବନକୁ ଯାଇନାହାନ୍ତି । କାର୍ତ୍ତିକ ଶେଷରେ ଯାଇ ଯିବେ । ଏହାର କାରଣ ହେଲା, ଇତିମଧ୍ୟରେ ସଂଜୟ ବୋଲି ଜଣେ ଯୁବକ ସାରଥି ସମ୍ରାଟ୍ ସାରଥି-ସେବାରେ ଯୋଗ ଦେଇଛନ୍ତି । ସେ ଭାରି ପାରିବାର । ଲୋକ ସମ୍ରାଟଙ୍କର ଧୀରେ ଧୀରେ ପ୍ରିୟ ଓ ବିଶ୍ୱାସୀ ହୋଇ ଉଠୁଛନ୍ତି । ସେଥିପାଇଁ ପିତାଙ୍କ କାର୍ଯ୍ୟ କିଛିଟା ଲାଘବ ହୋଇଯାଇଛି । ଏତେ ଦିନ ଧରି ସେ ଗାଁରେ ରହିପାରିଛନ୍ତି ।

ଏହି ସାରଥି ସଂଜୟଙ୍କୁ ମୁଁ କକା ବୋଲି ଡାକିଆସିଛି । ତାଙ୍କ କଥା ପରେ କହିବି ।

ହଁ, କାର୍ତ୍ତିକୋତ୍ସବ କଥା କହୁଥିଲି । ଉତ୍ସବ ପ୍ରାନ୍ତରଟି ଗାଁର ଶେଷ ସୀମାରେ ଅବସ୍ଥିତ ଠିକ୍ ଗଙ୍ଗା-କୂଳରେ । କାହିଁ କେଉଁ ଆବହମାନ କାଳରୁ ଏହି ଉତ୍ସବ ଚାଲିଆସୁଛି । ଆଖପାଖର ଆଠ-ଦଶ ଖଣ୍ଡି ଗାଁର ଲୋକଙ୍କ ଗହଳି ଏଠି । ଉତ୍ସବଟିର ବଡ଼ ନାଁ । ବେଳେ

ବେଳେ ହସ୍ତିନାପୁର ଓ ଅନ୍ୟାନ୍ୟ ନଗରମାନଙ୍କରୁ ବି ଦେଖଣାହାରୀମାନେ ଏଠାକୁ ଆସିଥାନ୍ତି । ବଡ଼ ଜାକଜମକରେ ଉତ୍ସବଟି ପାଳିତ ହୁଏ । ବୃଷଯୁଦ୍ଧ ଏହାର ପ୍ରଧାନ ଆକର୍ଷଣୀୟ କେନ୍ଦ୍ରବିନ୍ଦୁ । ଆଖ-ପାଖ ଗାଁମାନଙ୍କର ବୃଷମାନେ ଏହି ଯୁଦ୍ଧରେ ଭାଗ ନେଇଥାନ୍ତି । ବିଜେତା ବୃଷର ସ୍ୱତ୍ୱାଧିକାରୀ ଗାଁକୁ ପୁରସ୍କାର ମିଳିଥାଏ । ସେହି ଗାଁର ମୁଖିଆ ପିତାଙ୍କଠାରୁ ପୁରସ୍କାର ଗ୍ରହଣ କରିଥାନ୍ତି । ଖୁବ୍ କମ୍ ସମୟ ପାଇଁ ଉତ୍ସବଟି ଚାଲିଥାଏ । ଦିନର ତୃତୀୟ ପହରର ମଝିରେ ହିଁ ତାହା ପ୍ରାୟ ସରି ଯାଇଥାଏ । ତେଣୁ ଆମେ ଥିଲୁ ଭାରି ତରତର ।

ଆମେ ପହଞ୍ଚିଲା ବେଳକୁ ବୃଷଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ବିରାଟ ଲୋକଗହଳି ଯୁଦ୍ଧର ମଣ୍ଡପ ନିକଟରେ । ଆବାଳବୃଦ୍ଧବନିତା ସମସ୍ତେ ଏକଜୁଟ । ବିଭିନ୍ନ ପୋଷାକପରିଚ୍ଛଦ ପିନ୍ଧିଥିବା ହେତୁ ମଣ୍ଡପସ୍ଥଳଟି ଗୋଟିଏ ଚିତ୍ରିତ ଚନ୍ଦ୍ରାତପ ଭଳି ଶୋଭା ପାଉଥାଏ । ତାହା କରତାଳି ଧ୍ୱନିରେ ଫାଟି ପଡୁଥାଏ । ତାହା ସାଥେ ସାଥେ ନିଜ ନିଜ ଗାଁର ବୃଷକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ତାହାର ନାଁ ଧରି ଲୋକେ ଡାକୁଥାନ୍ତି ଘିର୍.... ଘିର୍.... ଘିର୍.... ବିଶେଷକରି ଯୁବକ ଓ କିଶୋରମାନଙ୍କଠାରେ ଏଭଳି ଡାକର ଓଜସ୍ୱିତା ଛକଛକେଇ ଉଠୁଥାଏ । ସେତେବେଳକୁ ତିନି ହଳ ବୃଷଙ୍କ ଯୁଦ୍ଧ ସରିଗଲାଣି । ଅବଶିଷ୍ଟ ଅଛନ୍ତି ଆଉ ଦୁଇ ହଳ ବୃଷ । ଶୁଣିବାକୁ ପାଇଲୁ ଯେ ଏପର୍ଯ୍ୟନ୍ତ ଆମ ଛନ୍ନ ବିଜୟୀ ହୋଇ ଚାଲିଛି । ଛନ୍ନ ଆମ ଗାଁର ବୃଷ । ସମସ୍ତଙ୍କ ଦ୍ୱାରା ଆଦରରେ ପରିପୋଷିତ । ଅତି ଉତ୍ତମ କୁଳଜ ବୃଷଟିଏ । ପିତା ଏହାକୁ ହସ୍ତିନାପୁରର କୌଣସି ଜଣଙ୍କ ଘରୁ ବତ୍ସ ଅବସ୍ଥାରେ ହିଁ ସଂଗ୍ରହ କରିଥିଲେ । ଗାଁର ସୂର୍ଯ୍ୟମନ୍ଦିରର ପ୍ରାଙ୍ଗଣରେ ବଡ଼ ଏକ ଉତ୍ସବର ଆୟୋଜନ କରାଯାଇଥିଲା ଏହାର ନାମକରଣ ଦେବା ଉଦ୍ଦେଶ୍ୟରେ । ସମସ୍ତଙ୍କ ସହମତିରେ ଏହାର ନାମ ଦିଆଯାଇଥିଲା ଛନ୍ନ ।

ସମସ୍ତଙ୍କ ଆଦର-ଯତ୍ନ ଫଳରେ ବତ୍ସଟି ବଢ଼ିଉଠେ ଏକ ହୃଷ୍ଟପୁଷ୍ଟ ବୃଷ ରୂପରେ । ଧୀରେ ଧୀରେ ଭୟଙ୍କର ବି ହୋଇଉଠେ । ଅପରିଚିତ ଲୋକଟି ତାହାର କଳା କଳା ବଡ଼ ଆଖି ଦିଓଟି ଦେଖିଲେ ଭୟରେ ଥରିଉଠେ । ତାହାଠାରୁ ସାବଧାନୀ ଦୂରତାରେ ନିଜକୁ ରଖାଇ ଦୂରେଇ ଯାଇଥାଏ । ଅଥଚ ଗାଁର ଲୋକମାନଙ୍କ ପାଖରେ ସେ ଥାଏ ଅତି ନିରୀହ ଠିକ୍ ମେଷଶାବକଟିଏ ଭଳି । ଅଥବା କ୍ଷୁଦ୍ର ମାର୍ଜାର ଶିଶୁଟିଏ ଭଳି । ଛୋଟ ଛୋଟ ପିଲାମାନଙ୍କ ସହିତ ଖେଳିବା, ସେମାନଙ୍କୁ ପିଠିରେ ବସାଇ ବୁଲାଇବା ଇତ୍ୟାଦି ଅନେକ କୌତୁକପ୍ରଦ କାମରେ ଅଶେଷ ଆନନ୍ଦ ପାଇଥାଏ । ଅଥଚ ପ୍ରତିଦ୍ୱନ୍ଦ୍ୱୀ ବୃଷ ନିକଟରେ ସେ ଅତି କ୍ରୂର । ଅତି ଭୟଙ୍କର ଓ ଦୁର୍ଦ୍ଦାନ୍ତ । ତାହାର ଅଘାତ ଯେମିତି ଫଳପ୍ରଦ ହେବ, ସେଥିପାଇଁ ଗାଁଲୋକେ ତାହାର ଶିଙ୍ଗ ଦିଓଟିକୁ ମୁନିଆ କରିଦେଇଥାନ୍ତି । ତୀକ୍ଷ୍ଣ ବର୍ଚ୍ଛାଗ୍ର ପରି ତାହାର ଶିଙ୍ଗ ଦିଓଟି ଚମକି ଉଠୁଥାଏ । ଉତ୍ଖାତ କେଳି ଫଳରେ ତାହାର ଶିଙ୍ଗରେ ଲାଗିଥିବା ମାଟିକୁ ସେ ଦିନ ଭଲ ଭାବରେ ଛଡ଼ାଇ ଦେଇଥାନ୍ତି ଗାଁର ଲୋକମାନେ ।

ବାଘ ଭଳି ସେହି ଛନ୍ନ— ଆମ ଆଦରର ଛନ୍ନ ଏବେ ଲଢୁଛି । ହେଣ୍ଟାଳ ଉପରେ ହେଣ୍ଟାଳ ଛାଡ଼ି ଲଢୁଛି । ଧୂଳିର ଘନ ପଟଳ ସୃଷ୍ଟି କରାଇ ଲଢୁଛି । ଗତ କିଛି ବର୍ଷ ଧରି

ପ୍ରତିଥର ଏଇ ବୃଷଯୁଦ୍ଧରେ ଆମ ଗାଁ ପାଇଁ ବିଜୟର ମୁକୁଟ ଆଣିଦେଇଛି । ଆମ ଗାଁର ମାନ-ସମ୍ମାନ ରଖିଛି । ଏଥରକ ମଧ୍ୟ ରଖିବ ବୋଲି ଆମ ସମସ୍ତଙ୍କ ଆଶା । ଆଜିର ଯୁଦ୍ଧ ପାଇଁ ତାହାକୁ ବିଶେଷ ଭାବରେ ପ୍ରସ୍ତୁତ କରାଯାଇଛି । ଗତ ରାତିରେ ଖାଦ୍ୟ ସହିତ ପ୍ରଚୁର ପରିମାଣରେ ଉତ୍କଟ ମଦିରା ପିଆଇ ଦିଆଯାଇଛି । ଶିଙ୍ଗ ଦିଓଟିରେ ହଳାହଳ ବିଷ ବୋଲି ଦିଆଯାଇଛି । ଉଦ୍ଦେଶ୍ୟ, ପ୍ରତିଦ୍ୱନ୍ଦ୍ୱୀ ବୃଷକୁ କେବଳ ପରାଜିତ କରାଇବା ନୁହେଁ । ତା'କୁ ମରଣାନ୍ତକ ଆଘାତ ଦିଆଇବା । ହୁଏତ ସେ ନିଜେ ବି ମରିଯାଇପାରେ ।

ବେଳେବେଳେ ଭାବେ ମଣିଷ ଏତେ କ୍ରୁର ହୁଏ କାହିଁକି ? ଏତେ ନିର୍ମମ ହୁଏ କାହିଁକି ? ନିଜର କୌତୁକ ଲାଗି ଅନ୍ୟ ଗୋଟିଏ ଜୀବକୁ ମରାଇଦେବାକୁ କୁଣ୍ଠାବୋଧ କରେ ନାହିଁ କାହିଁକି ? ପ୍ରତିଦ୍ୱନ୍ଦ୍ୱୀ ବୃଷଟି କ'ଣ ଖାଲି ପରାସ୍ତ ହେଲେ ଚଳନ୍ତା ନାହିଁ ? ତାକୁ ମାରିଦେବା ଲାଗି ଏଭଳି ହୀନ ଉଦ୍ୟମ କାହିଁକ ? ଏହା କ'ଣ ମଣିଷପଣିଆ ? ଛି ! ଛି !

କିନ୍ତୁ କିଏ ବନ୍ଦ କରିବ ଏହି ପ୍ରଥାକୁ ? କିଏ ପଥର ଆଣି ରଖିବ ଏହି ପରମ୍ପରାର ଶଗଡ଼ ଗୁଳାରେ ? ସମାଜର ବଡ଼ପଣ୍ଡାମାନଙ୍କୁ ଧରି ସମସ୍ତେ ତ ଆଜି ସେହି ପରମ୍ପରାର ଦାସ – ସେହି ହିଂସ୍ର ପରମ୍ପରାର ଅନ୍ଧ ଅନୁଗାମୀ । ପଶୁଠାରୁ ବି ହୀନ ! ତଥାପି ସେମାନଙ୍କର ଗର୍ବ ମଣିଷ ବୋଲି । ହାୟ ସେ ମୂର୍ଖ ମଣିଷ !

ସେତେବେଳେ ମଧ୍ୟ ଏହି ବୃଷଯୁଦ୍ଧର ଅବସରରେ ମଝେ ମଝେ ମୋର ଏହି ଭାବନା ଆସୁଥିଲା ।

ଲୋକଗହଳି ମଧ୍ୟରୁ ପ୍ରୋତ୍ସାହନଭରା ଆହ୍ୱାନ ଛନ୍ନ ! ଘିର୍... ଘିର୍... ଘିର୍... ଛନ୍ନ ଟିକିଏ ଦୁର୍ବଳ ହୋଇପଡୁଛି । ସେଥିପାଇଁ ଆମ ଗାଁର ଲୋକେ ଓ ତାହାର ସମର୍ଥକମାନେ ତା'ପାଇଁ ଏଭଳି ଉତ୍ସାହଭରା ଡାକରା ଦେଉଥାନ୍ତି ।

ସଂଗ୍ରାମ ମଧ୍ୟ ଲୋଭ ସମ୍ବରଣ କରି ନ ପାରି ଚିତ୍କାର କରିଉଠିଲେ – ଛନ୍ନ, ଘିର୍... ଘିର୍... ଘିର୍... ।

ମାଆ ତାଙ୍କୁ ବାରଣ କରି କହିଲେ, "ଛି ବାପା ସଂଗ୍ରାମ ! ଏମିତି ଡାକନ୍ତି ନାହିଁ । ଛନ୍ନ ତୁମ ପାଖକୁ ମାଡ଼ିଆସିବ ଯେ !"

"ଆସୁ । ସେ ମୋର କ'ଣ କରିବ ? ମୁଁ ତ ତା' ପିଠିରେ ବସେ । ତା'ର ଲାଞ୍ଜରେ ଦୋଳି ଖେଳେ ।"

"ଏବେ କିନ୍ତୁ ଆସିଲେ ତୁମକୁ ଦୁଇ ଶିଙ୍ଗରେ ଉପରକୁ ଟେକିଦେବ ।" ମାଆ ବିରକ୍ତ ହୋଇ କହିଲେ । କଥାରେ କିଛିଟା କପଟ କ୍ରୋଧ ବି ମିଶିଥିଲା ।

"ତା'ହେଲେ ତ ଭଲ ହେବ । ମୁଁ ସୁବିଧାରେ ପିଠିରେ ବସିଯିବି ।"

"ଦୁଷ୍ଟ ।" ମାଆ ତାଙ୍କର କଅଁଳିଆ ଗାଲରେ ଧୀର ଚାପୁଡ଼ା ମାରି କହିଲେ । ମାଆଙ୍କ ମୁହଁରେ ସରୁ ହସ । ସଂଗ୍ରାମଙ୍କ କୌତୁକପୂର୍ଣ୍ଣ କଥା ଶୁଣି ମତେ ବି ହସ ମାଡୁଥାଏ ।

ବାସ୍ତବିକ ସେଦିନ ବୃଷଯୁଦ୍ଧର ମଜା ଦେଖିବାପାଇଁ ସେଠାକାର ଆବାଳବୃଦ୍ଧବନିତା ସମସ୍ତେ ସଂଗ୍ରାମଙ୍କ ଭଳି ଶିଶୁ ପାଲଟିଯାଇଥାନ୍ତି ।

ବୃଷଯୁଦ୍ଧର ମଣ୍ଡପ ପାଖକୁ ଯିବା ପୂର୍ବରୁ ମାଆ ଚାହିଁଲେ ରଜ୍ଜୁ-ନଟିନୀର ଖେଳ ଦେଖିବାକୁ । ଜାଗାଟି ବେଶି ଦୂରରେ ନ ଥିଲା । ସେଠାରେ ମଧ୍ୟ ଲୋକଗହଳି । ବିଶେଷ କରି ନାରୀ ଓ ଝିଅପିଲାମାନଙ୍କ ଗହଳି । ବିଭିନ୍ନ ରଙ୍ଗର ଅଧୋବାସ ଓ ଉତ୍ତରୀୟ ଦେହରେ ପକାଇ ରଙ୍ଗରଙ୍ଗିଆ ପ୍ରଜାପତିମାନଙ୍କ ଭଳି ଦିଶୁଥାନ୍ତି । ଆଖ-ପାଖରେ କେତେ ଜଣ ଯୁବକ ଓ କିଶୋର ମଧ୍ୟ ଠିଆ ହୋଇଥାନ୍ତି । ବଡ଼ ବିଚିତ୍ର ଢଙ୍ଗରେ ରଜ୍ଜୁ ଉପରେ ନୃତ୍ୟ କରି ଚାଲିଥାଏ ରଜ୍ଜୁ-ନଟିନୀ । ମୋରି ବୟସର ଝିଅଟିଏ । କିଶୋରୀ । ନୃତ୍ୟକଳାରେ ଅଶେଷ ନିପୁଣା । ବାଦ୍ୟର ତାଳେ ତାଳେ ଅଭିନବ ଭଙ୍ଗୀରେ ନାଚି ନାଚି ଯାଉଥାଏ ସେ । ଦେଖଣାହାରୀମାନେ ଚକିତ-ବିସ୍ମୟରେ ଦେଖୁଥାନ୍ତି ତା'ର ନୃତ୍ୟ-କଳା ।

ହଠାତ୍ ଏକ ଘନ କଳରବ ଗୁଞ୍ଜରିତ ହୋଇଉଠିଲା । କଳରବଟି ଆସୁଥିଲା ବୃଷଯୁଦ୍ଧର ମଣ୍ଡପ ଦିଗରୁ । ଅଗଣିତ ଲୋକଙ୍କ ମିଳିତ ଚିତ୍କାର । ଠେଲାପେଲା ଓ ଧସ୍ତାଧସ୍ତି । ଲୋକମାନେ ଏଣେତେଣେ ଧାଇଁ ପଳାଇ ଯାଉଛନ୍ତି । ଦେଖିଲି ସେମାନେ ବିଜୟୀ ଛନ୍ନର ରାସ୍ତାଟିକୁ ପରିଷ୍କାର କରିଦେଉଛନ୍ତି । ସେ ଧାଉଁଛି ଉନ୍ମତ୍ତପ୍ରାୟ ହୋଇ । ତା'ର ଦୁଇ ଶିଙ୍ଗ ରକ୍ତଜର୍ଜର । ଗଭୀର ମରଣାନ୍ତକ ଆଘାତ ଦେଇଛି ପ୍ରତିଦ୍ୱନ୍ଦୀ ବୃଷଟିକୁ । ସେ ବିଚରା ମୃତ୍ୟୁର ଯନ୍ତ୍ରଣାରେ ଛଟପଟ ହେଉଛି । ଛନ୍ନର କ୍ରୋଧ କିନ୍ତୁ ତଥାପି ଅନୁପଶାନ୍ତ । ସେ ଧାଉଁଛି ଲୋକମାନଙ୍କୁ ଆଘାତ କରିବାପାଇଁ । ସେମାନଙ୍କ ରକ୍ତରେ ତା'ର କ୍ରୋଧର ପିପାସାକୁ ମେଣ୍ଟାଇବା ପାଇଁ । ଭୟଙ୍କର ମୂର୍ତ୍ତି । ଗର୍ଜନ ଭୀଷଣ । ମଦିରାର ନିଶାରେ ସେ ପାଗଳ ପ୍ରାୟ । ଲୋକଗହଳି ଓ ବିଚିତ୍ର ଚିତ୍ରିତ ପରିବେଶ ଦେଖି ଆହୁରି ଅଧିକ କ୍ରୋଧଭରା ଗତିରେ ଧାଇଁଆସୁଛି ରଜ୍ଜୁ-ନଟିନୀର ପରିସର ମଧ୍ୟକୁ । ଲୋକେ ଯେ ଯୁଆଡ଼େ ଛତ୍ରଭଙ୍ଗ ଦେଇ ପଳାଇଗଲେ । ନଟିନୀଟି ବିଚାରୀ ଭୟରେ ଖସିପଡ଼ିଲା ରଜ୍ଜୁଧାରରୁ । ସେ ତଳେ ପଡ଼ିଯିବା ଅବସରରେ ଛନ୍ନ ତା' ଆଡ଼କୁ ମାଡ଼ିଆସିଲା ତୀବ୍ର ଗତିରେ ତା'କୁ ଆଘାତ କରିବାପାଇଁ । ସମସ୍ତଙ୍କ ଆଖି ବୁଜି ହୋଇଗଲା । ସମସ୍ତେ ଆହା ଆହା କରୁଥାନ୍ତି । କିନ୍ତୁ କେହି ଛନ୍ନ ପାଖକୁ ଆସିବାପାଇଁ ସାହସ କରିପାରୁ ନ ଥାନ୍ତି ।

ମୁହୂର୍ତ୍ତକରେ କର୍ତ୍ତବ୍ୟ ମୋର ସ୍ଥିର କରିନେଲି । ବିଜୁଳି ବେଗରେ ଧାଇଁଯାଇ ଝିଅଟିକୁ ତଳୁ ଉଠାଇ ଆଣିଲି ଓ ତା'କୁ ଦୂରକୁ ଠେଲି ଦେଇ ତା' ଜାଗାରେ ଠିଆ ହୋଇଗଲି । ଠିଆ ହୋଇ ଆଦରପୂର୍ଣ୍ଣ ଚୁ-ଚୁ ସ୍ୱରରେ ଚେଷ୍ଟା କଲି ଛନ୍ନକୁ ଶାନ୍ତ କରାଇବା ପାଇଁ । କିନ୍ତୁ ଛନ୍ନ ଶାନ୍ତ ହେବ କ'ଣ ? ଓଲଟି ଆହୁରି ବେଶି କ୍ରୋଧିତ ହୋଇଉଠିଲା । ମଦନିଶାରେ ମାତାଲ ଥିବା ଅବସ୍ଥାରେ ଚିହ୍ନା-ଅଚିହ୍ନା ବାରିବାର ଶକ୍ତି ଲୋପ ପାଇଯାଇଥିଲା ତା'ର । ତା'ର ଆକ୍ରମଣର ଲକ୍ଷ୍ୟଟିକୁ ଦୂରେଇ ଦେଇଥିବା ହେତୁ ମୋ' ଉପରେ ପ୍ରଚଣ୍ଡ ବେଗରେ ଆକ୍ରମଣ କଲା ସେ । ଦୁଇ ଶିଙ୍ଗରେ ଛାତି ଉପରେ ଆଘାତ କରି ମତେ ଆକାଶକୁ ଫିଙ୍ଗିଦେଲା । ଏହି ଆଘାତ ଫଳରେ ଯେଉଁ ଶବ୍ଦ ହେଲା ସେଥିରେ ଚମକି ପଡ଼ିଲି ମୁଁ । ମୁଦ୍‌ଗରଟି ଲୌହ-ପତ୍ରରେ ବାଜିଲେ ଯେପରି ଶବ୍ଦ ହୁଏ, ତାହା ଥିଲା ଅନୁରୂପ । କିଛି ବିଚାର କରିବା ପୂର୍ବରୁ ମୁହୂର୍ତ୍ତକରେ ଆକାଶ ଉପରକୁ ଉଠିଯାଇ ତଳେ କଚାଡ଼ିହୋଇ ପଡ଼ିଲି । କିନ୍ତୁ ସାହସ ଓ ଧୈର୍ଯ୍ୟ ହରାଇ ନ ଥିଲି । ହଠାତ୍ ଝାଡ଼ି-ଝୁଡ଼ି ହୋଇ ଉଠି

ବସିଲି । ଛନ୍ନ ଦ୍ୱିତୀୟ ବାର ଆକ୍ରମଣ କରିବା ପୂର୍ବରୁ ତା' ଉପରକୁ ଲମ୍ଫପ୍ରଦାନ କରି ଖୁବ୍ ଜୋର୍‌ରେ ଧରିନେଲି ତା'ର ସବଳ ଓ ତୀକ୍ଷ୍ଣ ଶିଙ୍ଗ ଦୁଇଟିକୁ ।

ଆଉ ଛନ୍ନକୁ ସମ୍ଭାଳେ କିଏ ? ରାଗରେ ଆହୁରି ଅଧିକ ଜର୍ଜରିତ ହୋଇଉଠିଲା ସେ । ଲାଞ୍ଜ ଉପରକୁ ଟେକି ବାତଚକ୍ର ଭଳି ଘୂରିବାକୁ ଲାଗିଲା । ବାରମ୍ବାର ଚେଷ୍ଟା କରୁଥାଏ ମତେ ଫିଙ୍ଗି ଦେବାପାଇଁ । କିନ୍ତୁ ପାରୁ ନ ଥାଏ । ଖାଲି କରୁଥାଏ ଗର୍ଜନ ଉପରେ ଗର୍ଜନ । ବଜ୍ରର ନିନାଦ ଅବା !

ଅଦୂରରୁ ଲକ୍ଷ୍ୟ କରୁଥାଏ, ମାଆ ମୋ' ଆଡ଼କୁ ଚାହିଁ ହାୟ ହାୟ ବୋଲି ଚିତ୍କାର କରୁଥାନ୍ତି ଓ ମୋ' ପାଖକୁ ଧାଇଁଆସିବାର ଚେଷ୍ଟା କରୁଥାନ୍ତି । ତିନି-ଚାରି ଜଣ ଲୋକ ତାଙ୍କୁ ଧରିରଖିଥାନ୍ତି ଜୋର ଜବରଦସ୍ତି କରି । ତାଙ୍କୁ ସାନ୍ତ୍ୱନା ଦେଇ ମୁଁ ବାରମ୍ବାର କହୁଥାଏ, ''ଭୟ ନାହିଁ ମାଆ ! ମୋର କିଛି ହେବ ନାହିଁ । ତୁମେ ଥୟ ଧର ।''

କିଛି ସମୟ ଏହିପରି ଘୂରିବା ଫଳରେ ଛନ୍ନ ବିବଶ ହୋଇଉଠିଲା । ତା'ର ଘୂରିବାର ବେଗ ହୋଇଉଠିଲା ଶିଥିଳ । ଏହାରି ସୁଯୋଗ ନେଇ ତା'ର ମୁଣ୍ଡକୁ ଖୁବ୍ ଜୋର୍‌ରେ ଚାପି ଧରିଲି ଓ ଶିଳାବନ୍ଧୁର ଭୂମିରେ ଘଷିବାକୁ ଲାଗିଲି । ଏଥିରେ ତା'ର ମୁହଁରୁ ହେଲା ପ୍ରଚୁର ରକ୍ତ-ସ୍ରାବ । ସେ ଆର୍ତ୍ତବିକଳ ସ୍ୱରରେ ଚିତ୍କାର କରିବାକୁ ଲାଗିଲା । ତା'ର ମଦିରା ନିଶା ବହୁ ପରିମାଣରେ ଖସିଗଲା ।

ଅତି ଦୁର୍ବଳ ମୁହୂର୍ତ୍ତ ଦେଖି ତା'ର ଦୁଇ ଶିଙ୍ଗକୁ ଉପାଡ଼ି ଦେବା ଭଙ୍ଗୀରେ ଖୁବ୍ ଜୋରରେ ଟାଣିଦେଲି । ବାସ୍ ! ଗୋଟିଏ ମାତ୍ର ଆକର୍ଷଣ । ସେଇଥିରେ ହିଁ ତା'ର ଶିଙ୍ଗ ଦିଓଟି ଭାଙ୍ଗିଗଲା ଏବଂ ମୁଁ ଛିଟିକି ହୋଇ ତଳେ ପଡ଼ିଗଲି । ଲକ୍ଷ୍ୟ କଲି, ତା'ର ଗଜା ଶିଙ୍ଗ ଦିଓଟିରୁ ବି କିଛି ଅଂଶ ଭାଙ୍ଗିଯାଇଛି ଓ ତହିଁରୁ ରକ୍ତ ଝରି ତା'ର କର୍ଣ୍ଣମୂଳ ପଲାଶଫୁଲ ଭଳି ଲାଲ ହୋଇଉଠିଛି । ସେତେବେଳେ ତା'ର ସମସ୍ତ ମଦିରା ନିଶା ଛାଡ଼ିଯାଇଥିଲା ଓ ସେ ଅତି ମାତ୍ରାରେ ବିବଶ ହୋଇ ଉଠିଥିଲା । ଆତ୍ମରକ୍ଷା ଲାଗି ଲାଞ୍ଜ ଟେକି ଏବଂ ଗାଁ ଗାଁ ଗର୍ଜନ କରି କରି ସେ ଧାଇଁ ପଳାଇଗଲା । ଲୋକେ ତା'ର ଯିବା ବାଟକୁ ପରିଷ୍କାର କରିଦେଲେ ଓ ମତେ ସାଧୁବାଦ ଜଣାଇଲେ ।

ଏତିକିରେ ବୁଝିପାରିଲି ନାହିଁ ହଠାତ୍ ମୋର କ'ଣ ହେଲା ବୋଲି । ମୁଣ୍ଡଟା ହଠାତ୍ ଖୁବ୍ ଜୋରରେ ବୁଲାଇଦେଲା । କାରଣ ମୁଁ ମଧ୍ୟ କିଛି କମ୍ ବିବଶ ହୋଇ ନ ଥିଲି । ଚେତା ହରାଇ ଭୂଇଁରେ ପଡ଼ିରହିଲି ।

## ଛଅ

ଚେତା ଆସିଲା ବେଳକୁ ଦେଖିଲି, ମୁଁ ଉତ୍ସବ-ପ୍ରାନ୍ତରରେ ନାହିଁ । ଶୋଇଛି ଆମ ଘରେ ଖଟ ଉପରେ । ପିତା ବସିଛନ୍ତି ଗୋଟିଏ କାଷ୍ଠାସନରେ ମୋ' ମୁଣ୍ଡ ପାଖରେ । ମାଆ ବସିଛନ୍ତି ମୋ' ପାଦ ପାଖରେ ଓ ଆଉଁଶି ଚାଲିଛନ୍ତି ଦେହ ସାରା । କାନ୍ଦୁଛନ୍ତି ସୁଁ ସୁଁ

ହୋଇ । ସାନଭାଇ ସଂଗ୍ରାମ ବି ତାଙ୍କ ପାଖରେ ବସି କାନ୍ଦୁଛନ୍ତି । ପିତା କାନ୍ଦୁ ନ ଥିଲେ ବି ତାଙ୍କ ମୁହଁ ମଳିନ ଓ କଳାକାଠ ପଡ଼ିଯାଇଛି । ବଡ଼ ଆତଙ୍କିତ ଦୃଷ୍ଟିରେ ଚାହିଁଛନ୍ତି ମୋ' ଆଡ଼େ ।

ମତେ ଭାରି ଶୋଷ କରୁଥିଲା । ଆଖି ଖୋଲିବା ମାତ୍ରେ ପାଣି ମାଗିଲି । ମାଆ ପାଣି ପିଆଇଦେଲେ । ଛନ୍ନର ଗଭୀର ଆଘାତ ପାଇଥିଲି । ଭୂଇଁରେ ବି କଚାଡ଼ି ହୋଇ ପଡ଼ିଥିଲି । ତଥାପି ମୋ' ଦେହରେ କ୍ଷତ ନ ଥିଲା କୌଣସି ସ୍ଥାନରେ । ଦେହ ମଧ୍ୟ ଟିକିଏ ହେଲେ ଅବଶ ଲାଗୁ ନ ଥିଲା । ଯାହା ବା ଅବଶତା ଥିଲା, ତାହା ଦୀର୍ଘ ସମୟ ଧରି ଅଚେତ ରହିବା ଫଳରେ ଗଭୀର ନିଦ୍ରାଜନିତ ଶାନ୍ତିରେ ଦୂର ହୋଇଯାଇଥିଲା । ପାଣି ପିଇବା ମାତ୍ରେ ସଙ୍ଗେ ସଙ୍ଗେ ଉଠିବସିଲି । ମତେ ଲାଗୁଥିଲା, ସତେ ଯେମିତି ବେଶି ସମୟ ଧରି ଶୋଇପଡ଼ିଥିଲି ।

''କେମିତି ଲାଗୁଛି ବାପା ?'' ମାଆ ମୋ' ମୁଣ୍ଡ ଓ ମୁହଁକୁ ଆଉଁଶି ଦେଉ ଦେଉ ପଚାରିଲେ । ଆଖି ତାଙ୍କ ଅଶ୍ରୁସଜଳ । ମମତାମୟ ଓଠତଳୁ ଦରଦଭରା ବାଣୀ । ମୋର ଅବଶତା ତୁଟିଯିବାରେ ତାଙ୍କ ଉଦାସୀ ମୁହଁଟିରେ ହଠାତ୍ ପ୍ରସନ୍ନତାର ଝଲକ । ସେଇ ମୋ' ମାଆ । ମମତାମୟୀ ମାଆ । ମୋର ସକଳ ସୀମାହୀନ ବୁଭୁକ୍ଷାକୁ ମିଟାଇ ଦେବା ଲାଗି ସତେଯେମିତି ଅମୃତଭରା ଏକ ମୂର୍ତ୍ତିମତୀ ଦେବୀ ପ୍ରତିମା ! ଏକ କରୁଣାମୟୀ ବରଦାତ୍ରୀ !

ଖୁବ୍ ଆଶ୍ୱସ୍ତି ଅନୁଭବ କରୁଥିଲି ତାଙ୍କ କଅଁଳିଆ ହାତର ପରଶରେ । କହିଲି, ''ଭଲ ଲାଗୁଛି ମାଆ ।''

ତାହା ପରେ ଆଉ ମାଆଙ୍କୁ ସମ୍ଭାଳେ କିଏ ? ମୋର ଦେହସାରା ବୋଳି ଦେଇଗଲେ ଅଜସ୍ର ଚୁମ୍ବନ । ମୁଣ୍ଡରୁ ତାଙ୍କର ଧାର-ଧାର ହୋଇ ବହି ଚାଲିଥିଲା କଜଳମିଶା ଲୁହର ଝରଣା । ଆନନ୍ଦ-ଲୁହର ଝରଣା । ଅବାରିତ ଅମାନିଆ ସେ ଧାରା ।

ପିତାଙ୍କ ମୁହଁରେ ମଧ୍ୟ ଆଶ୍ୱସ୍ତିର ଚିହ୍ନ ସୁସ୍ପଷ୍ଟ । ସେ ଗର୍ବଭରା କଣ୍ଠରେ ମାଆଙ୍କୁ କହିଥାନ୍ତି, 'ଦେଖିଲ ତ ରାଧା, ଆମ ପୁଅ କର୍ଣ୍ଣଙ୍କ କରାମତି ? ତାଙ୍କ ସାହସ ଓ ବଳବୀର୍ଯ୍ୟ ? ସେ ବୃଷ ସହିତ ଯୁଦ୍ଧ କରି ବି ରହିଗଲେ ଅଜୟ ହୋଇ । ଏଣିକି ମୁଁ ତାଙ୍କୁ ବୃଷ ବୋଲି ଡାକିବି । ଏହା ତାଙ୍କର ହେବ ଆଉ ଗୋଟିଏ ନାଁ ।'' ମୁହଁରେ ତାଙ୍କର ଖଳଖଳ ଅଧା ହସର ଉଚ୍ଛ୍ୱାସ ।

''ହଁ, ହେଲା ଯେ । ବୃଷଟା ତାଙ୍କର ଯଦି କିଛି କ୍ଷତି କରିଥାନ୍ତା ।'' ମାଆଙ୍କ କଥାରେ ଶଙ୍କାର ଉଚ୍ଛୁଳା ଲହରୀ । ହାତ ତାଙ୍କର ଆହୁରି ନିବଡ଼ତର ଭାବରେ ଆଉଁଶି ଦେବାକୁ ଲାଗିଥାଏ ମତେ ।

''ଅସମ୍ଭବ । ଅସମ୍ଭବ ରାଧା । ଏହା ଅସମ୍ଭବ । ତାଙ୍କର ଜନ୍ମଜାତ ଦୃଢ଼ କବଚକୁ ଭେଦିବାର ଶକ୍ତି ସାମାନ୍ୟ ବୃଷଟାର ବା କାହିଁ ? ତୀକ୍ଷ୍ଣ ଅସ୍ତ୍ର-ଶସ୍ତ୍ର ବି ତାହାକୁ ଭେଦି ପାରିବ କି ନାହିଁ ବୋଲି ମନରେ ମୋର ସନ୍ଦେହ ।'' ପିତାଙ୍କ ଓଠତଳେ ଅସୀମ

ପରିତୃପ୍ତିର ହସ ଅଧିକରୁ ଅଧିକ ଉଚ୍ଛୁଳି ଉଠୁଥିଲା । ଦୁର୍ଭେଦ୍ୟ କବଚଧାରୀ ଜଣେ ବୀର ପୁତ୍ରର ଜନକ ଭାବରେ ନିଜକୁ ଖୁବ ଗର୍ବିତ ମନେ କରୁଥିଲେ । ଆଉ ମୋ' ମାଆ । ସେ ବି କିଛି କମ୍ ଗରବିଣୀ ଜଣାପଡୁ ନ ଥିଲେ । ଯେତେହେଲେ ତାଙ୍କର ପ୍ରଥମ ସନ୍ତାନ ପରା ମୁଁ !

କ୍ରମେ କ୍ରମେ ସୁସ୍ଥ ହୋଇଉଠିଲି ଓ ଚଲାବୁଲା କରିବାକୁ ଲାଗିଲି । ଏଡ଼େ ବଡ଼ ଦୁର୍ଘଟଣାଟାଏ ଘଟିଗଲା । ଅଥଚ କିଛି ସମୟ ପରେ ମତେ ଲାଗିଲା, ସତେ ଯେମିତି କିଛି ଘଟି ନାହିଁ । ବଡ଼ ଆଶ୍ଚର୍ଯ୍ୟ ! ମୁଁ ଯେତେ ଆଶ୍ଚର୍ଯ୍ୟ ହେଉ ନ ଥିଲି, ତାହାଠାରୁ ବେଶି ଆଶ୍ଚର୍ଯ୍ୟ ହେଉଥିଲେ ମୋ' ପିତା-ମାତା ଓ ଅନ୍ୟମାନେ ।

ଏଇ ପିତା ସେଦିନ କୌତୁକରେ ମୋର ବୃଷ ବୋଲି ନାଁଟି ଦେଲେ, ତାହା ରହିଗଲା ମୋର ତୃତୀୟ ନାଁ ହୋଇ । ବିଶେଷ କରି ମୋ' ସାଥୀମାନେ କୌତୁକରେ ହେଉ ଅଥବା ମୋର ଶୌର୍ଯ୍ୟ-ବୀର୍ଯ୍ୟକୁ ପ୍ରଶଂସା କରି ହେଉ, ମତେ ଅନେକ ସମୟରେ ଏହି ବୃଷ ନାଁରେ ହିଁ ଡାକିବାକୁ ଲାଗିଲେ । ଏକଇ ଭଗବାନ୍ ତିନି ରୂପରେ ତିନୋଟି ନାଁ ଧରି ରଖିଥାନ୍ତି – ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ମୁଁ କିନ୍ତୁ ଗୋଟିଏ ରୂପରେ ଧରିରଖିଲି ତିନୋଟି ନାଁ – କର୍ଣ୍ଣ, ବସୁ ଓ ବୃଷ । ବାଃ ! ବଡ଼ ଚମତ୍କାର ! ବେଳେ ବେଳେ ଭାବିଲା ବେଳକୁ କୌତୁକପ୍ରଦ ଲାଗୁଥିଲା ମତେ ।

ସତେ ମୁଁ କେତେ ବଡ଼ ଲୋକ ! ମନେ ମନେ ଯେ ଗର୍ବିତ ଅନୁଭବ କରୁ ନ ଥିଲି ତାହା କହିଲେ ହେବି ମିଥ୍ୟାବାଦୀ । ପ୍ରକୃତରେ ଖୁବ୍ ଗର୍ବିତ ଅନୁଭବ କରୁଥିଲି । ପ୍ରଥମ ପୁତ୍ରବତୀ ଜନନୀର ଗର୍ବ ଭଳି ଗର୍ବ । ମଝିରେ ମଝିରେ ଦେଖି ନେଉଥିଲି ମତେ । ମୋ' ଓସାରିଆ ଛାତିକୁ । ମୋ' ମାଂସଳ ପେଶଳ ବାହୁକୁ । ଆଉ ଲୁହା ସମାନ ଟାଣ ମୋ' ଜନ୍ମଜାତ କବଚକୁ । ସୁଦୁର୍ଲ୍ଲଭ ସେଇ ବିଧିଦତ୍ତ ଅପୂର୍ବ ଓ ଅଲୌକିକ ସଂକେତକୁ ।

ସାରା ଦିନ ମୋର କଟିଗଲା ଅସ୍ଥିର ଚିନ୍ତାରେ । ପୂର୍ଣ୍ଣିମାର ଉର୍ମିମାଳା ପରି ଛାତିତଳେ ଭରା ଉଦ୍‌ବେଳନ । ସତରେ କ'ଣ ମୋର କବଚ ଅଭେଦ୍ୟ ? କାହିଁକି ମୋ' ପାଇଁ ବିଧାତାଙ୍କର ଏଇ ଜନ୍ମଜାତ ଅଭେଦ୍ୟ କବଚର ଅବଦାନ ? ମୁଁ ଯେ ସୂତପୁତ୍ର । ସମାଜରେ ଏକ ଦଳିତ-ଅବହେଳିତ ବଂଶର ଦାୟାଦ । କ୍ଷତ୍ରିୟର ଚିରକାମ୍ୟ ବସ୍ତୁଟି ମୋ' ପାଇଁ ପୁଣି କାହିଁକି ? ଏତିକିବେଳେ ମୋର କର୍ଣ୍ଣମୂଳରେ ହାତୁଡ଼ି ଉପରେ ହାତୁଡ଼ିର ପାହାର ଆଣିଦେଉଥାଏ ସନ୍ନ୍ୟାସୀଙ୍କର ସେଇ ରହସ୍ୟମୟ ବାଣୀ – ତୁମେ କ୍ଷତ୍ରିୟ କର୍ଣ୍ଣ, ସୂତପୁତ୍ର ନୁହଁ ।

ମନରେ ମୋର ଆହତ ଅଭିମାନ । ଉଷ୍ଣ ରକ୍ତର ଅଧୀର ପ୍ରବାହ ଶିରା-ପ୍ରଶିରାର ପ୍ରତିଟି କୋଷ ଧରି । ସତେ ଯେମିତି ତାହା ନିବୁଜ କୋଷକୁ ଫଟାଇ ବହି ଚାଲିଯିବ ସାମାଜିକ ବନ୍ଧନର କୋଷକୁ । ଶାଳ୍ମଳୀ-କୋଷ ଭଳି ଅତି ଦୃଢ଼ ସେଇ କୋଷକୁ । ଶାଳ୍ମଳୀ-କୋଷ ଫାଟିଗଲେ ଜ୍ୟେଷ୍ଠର ତାତିଲା ପବନ ତାହାକୁ ଉଡ଼େଇ ଉଡ଼େଇ ଯାଏ କାହିଁ କେତେ ଦୂରକୁ ଅତି ଅସହାୟ ଭାବରେ । ମୋର ଅବସ୍ଥା ସେଇଆ ହେବ ନାହିଁ ତ ?

ଏଇ ମୂଲ୍ୟହୀନ ଅଭିମାନର ଝଞ୍ଜାପବନରେ ଭାସି ଭାସି ପଡ଼ିବି ନାହିଁ ତ କାହିଁ କେଉଁ ସାତ ସମୁଦ୍ର ଓ ତେର ନଈର ଆରପାରିରେ ? କିଏ କହିବ କ'ଣ ହେବ ?

ମନ କିନ୍ତୁ ମୋର କହୁଥାଏ – ନା ତାହା ସମ୍ଭବ ନୁହେଁ । ଜୀବନରେ କଦାପି ତାହା ଘଟିବା ପାଇଁ ଦେବି ନାହିଁ । ମୋ' ଜନ୍ମର ଗୋଟିଏ ଲକ୍ଷ୍ୟ ଅଛି । ଉଦ୍ଦେଶ୍ୟ ଅଛି । ଅଛି ମୋର ଦୁର୍ଦ୍ଦମନୀୟ ଏକ ମହତ୍ତ୍ୱାକାଙ୍କ୍ଷା । ମୁଁ ବଡ଼ ହେବି । ଖୁବ୍ ବଡ଼ । ଉଚ୍ଚକୁ ଉଠିବି । ଅତି ଉଚ୍ଚକୁ । ଆକାଶ ହେବ ମୋର ସୀମା । ସାରା ଜମ୍ବୁଦ୍ୱୀପରେ, ନା, ନା, ତାହାର ସୀମାକୁ ଅତିକ୍ରମ କରି ସାରା ବିଶ୍ୱରେ ହେବି ଜଣେ ବଡ଼ କ୍ଷତ୍ରିୟ । ଇନ୍ଦ୍ରଙ୍କ ସମାନ ପରାକ୍ରମଶାଳୀ । ହଁ, ନିଶ୍ଚୟ ହେବି, ହେବି, ହେବି । ଏହା ତ୍ରିବାର ପ୍ରତିଜ୍ଞା !

ମୁଁ ପରା ସୂତକୁଳର ପଙ୍କଭରା ସରୋବରରେ ଫୁଟନ୍ତା ଏକ ପଦ୍ମ ! ଶୌର୍ଯ୍ୟ-ବୀର୍ଯ୍ୟର ରଶ୍ମିରେ ଢଳ ଢଳ ! କୋଟି ପାରିଜାତ ସମ ସୌରଭରେ ଅନ୍ୱିତ । ଆତ୍ମାଭିମାନର ରକ୍ତିମାରେ ଲାଲ ଟଳମଳ !

ଏମିତି ଗୁଡ଼ାଏ ଚିନ୍ତା କଲା ବେଳେ ମତେ ଲାଗୁଥିଲା, ସତେ ଯେମିତି ମୋ' ଦେହ ସାରା ବାସୁଛି ! ଆଉ ସେଇ ବାସନାରେ ମୋ' ଭଗ୍ନ କୁଟୀରର ଅଙ୍ଗନ ଉଠୁଛି ମହକି ! ଚମ୍ପାପୁରର ରେଣୁ ରେଣୁ ଭରି ଛୁଇଁ ଯାଉଛି ସେଇ ମହକ । ଆଉ ଭାସି ବି ଯାଉଛି ଦୂରକୁ । କାହିଁ କେତେ ଦୂରକୁ !

ଆତ୍ମାଭିମାନ ମଣିଷକୁ କେତେ ଫୁଲାଇ ନ ଦିଏ ସତେ ! ଆଉ ସେ ଯଦି ମୋ' ଭଳି ହୋଇଥାଏ କିଶୋର, ତା'ହେଲେ ସେଇ ଫୁଲିବାଟା କେତେ ଭୟଙ୍କର ହୋଇ ନ ଥାଏ ସତେ ! ଏଇ କଥା ଭାବିଲା ବେଳକୁ ଏବେ ମତେ ବି ହସ ମାଡୁଛି । ମୋର ବୃଥ ଅଭିମାନ ଲାଗି ହସ । ବୃଥା ଆତ୍ମବଡ଼ିମା ଲାଗି ହସ ।

ଛି ! ଛି ! କେଡ଼େ ମୂର୍ଖ ଓ ଅବୋଧ ଥିଲି ସେତେବେଳେ ! ଏଇ ନଶ୍ୱର ଦେହଟି ବିଷୟରେ କେତେ ଥିଲି ଅଭିମାନୀ ! ଆଜି ସେଇ ଦେହଟିକୁ ଯେତେବେଳେ ଛାଡ଼ିବାକୁ ଯାଉଛି ସେତେବେଳେ ସେ ଅଭିମାନ ମୋର ମିଳାଇଯାଉଛି ପାଣିଫୋଟକା ପରି !

ଭାବିଲି, ଆଚ୍ଛା, ଏଇ ମୋର ତଥାକଥିତ ଅଭେଦ୍ୟ କବଚ କଥା । ତାହାକୁ ନିଜେ ପରୀକ୍ଷା କରିନେଲେ କେମିତି ହୁଅନ୍ତା ? ବାସ୍ତବତା କିମ୍ବା ତଥାକଥିକତା । ଏଇ ଦୁଇଟିରୁ କେଉଁଟା ଠିକ୍ ତାହା ଜଣାପଡ଼ିଯାନ୍ତା ସେଇ ପରୀକ୍ଷାରୁ । ଏଇ ସଂକଳ୍ପ ନେଇ ରାତ୍ରି ଭୋଜନ ପରେ ଶେଯ ଧରିଲି । ଅପେକ୍ଷା କରିରହିଲି ସୁଯୋଗକୁ ଠିକ୍ ସ୍ୱାତୀ ନକ୍ଷତ୍ରର ବାରିବିନ୍ଦୁକୁ ଚାତକ ଅପେକ୍ଷା କଲା ଭଳି । ଅଥବା ପଦ୍ମକୋଷରେ ବନ୍ଦୀ ଥିବା ଭ୍ରମରଟି ନିଜର ମୁକ୍ତି ଲାଗି ପ୍ରଥମ ସୂର୍ଯ୍ୟ-ରଶ୍ମିକୁ ଅପେକ୍ଷା କଲା ଭଳି ।

ଈଷତ୍ ହେମାଳିଆ କାର୍ତ୍ତିକର ରାତି । ସମୟ ପ୍ରାୟ ଅଧ-ରାତି । ଶଯ୍ୟାଧାରରେ ଶାୟିତ ମୁଁ । ପାଖରେ ଶାୟିତ ସଂଗ୍ରାମ । ମୋ' ଆଦରର ସାନଭାଇ । ନିଦରେ ଅଚେତ । କେତେବେଳୁ ଘୁଙ୍ଗୁଡ଼ି ମାରିଲେଣି । ବାପା-ମାଆ ବି ନିଦରେ ବୁଡ଼ିରହିଛନ୍ତି । ଚାରିଆଡ଼େ ନିସ୍ତବ୍ଧତା । ନିଶାର ସାଇଁ ସାଇଁ ଗର୍ଜନ ଭାରି ଭୟଙ୍କର । ଗଙ୍ଗାତୀରସ୍ଥ ଚମ୍ପା ବନକୁ ଛୁଇଁ

ଛୁଇଁ ବହୁଛି ଶୀତଳ ପବନ । ମୋ' କକ୍ଷର ଗବାକ୍ଷ ପରଦାକୁ କରିଦେଉଛି କୁତୁକୁତୁ । ନିରାଲୋକିତ କକ୍ଷଟି ମୋର କେମିତି ଖାଁ-ଖାଁ ଲାଗୁଛି । ମତେ କିନ୍ତୁ ନିଦ ନାହିଁ । ଚିତ୍ତ-ମନରେ ଅସ୍ଥିରତା । ମୋର ତଥାକଥିତ ଅଭେଦ୍ୟ କବଚକୁ ପରୀକ୍ଷା କରିନେବି । ସେଇ ପରୀକ୍ଷାର ଫଳ କ'ଣ ହେବ କେଜାଣି ?

ମନରେ ମୋର ଦ୍ୱିଧାଭରା ଆଶଙ୍କା ।

ଅତି ସନ୍ତର୍ପଣରେ ଶେଯରୁ ଉଠି ମାଟିର ପ୍ରଦୀପଟିକୁ ଜଳାଇଦେଲି । ମୁହୂର୍ତ୍ତକରେ କ୍ଷୁଦ୍ର କକ୍ଷଟି ଆଲୋକିତ ହୋଇଉଠିଲା । ଦୁର୍ବାର ନୈଶ ପବନର ଦାଉରୁ ତାହାକୁ ରକ୍ଷା କରିବାଲାଗି ବାତାୟନର ଦ୍ୱାରକୁ ରୁଦ୍ଧ କରିଦେଲି । କକ୍ଷର ଗୋଟିଏ କୋଣରେ ମୋର ଖେଳନା-କୁନ୍ତଟିକୁ ଆଗରୁ ସଂଗ୍ରହ କରି ରଖିଥିଲି । ଦୀପାଲୋକରେ ତାହାର ତୀକ୍ଷ୍ଣ ଅଗ୍ରଭାଗଟି ଚିକ୍-ଚିକ୍ କରିଉଠୁଥାଏ । ତାହାକୁ ହିଁ ଗ୍ରହଣ କଲି ମୋ' ପରୀକ୍ଷାର ସାଧନ ଭାବରେ ।

ଖୁବ୍ ଜୋରରେ କୁନ୍ତଟିକୁ ଉଠାଇ ଛାତିରେ ଆଘାତ କରିବାର ଚେଷ୍ଟା କଲି । କିନ୍ତୁ ତାହାର ତୀକ୍ଷ୍ଣାଗ୍ର ମୋ' ଛାତିକୁ ଛୁଇଁବା ପୂର୍ବରୁ ହସ୍ତର ଗତି ମୋର ହୋଇଯାଇଥିଲା ଶିଥିଳ । ସାହସ ପାଉ ନ ଥିଲା । ଭୟ ଲାଗୁଥିଲା । କାଳେ ଛାତି ଫୁଟିଯିବ । ତେଣୁ ସମୁଦ୍ୟତ କୁନ୍ତର ଆଘାତଟି ମୋ' ଛାତିକୁ ଛୁଇଁଲା ଧୀରେ ଅତି ଧୀରେ ଠିକ୍ ଅଜାଯୁଦ୍ଧରେ ଉଭୟଙ୍କ ଶିର ପରସ୍ପରକୁ ଛୁଇଁଲା ଭଳି ।

ଫେଁ କିନା ହସିଦେଲି । ସେଇ ହାସ୍ୟାହତ ପବନରେ ମୃଣ୍ମୟ ପ୍ରଦୀପର ଶିଖାଟି ସାମାନ୍ୟ ଚହଲିଗଲା । ଆଉ ଟିକକରେ ଲିଭି ଯାଇଥାନ୍ତା ।

ଛି ! କେଡ଼େ ଭୀରୁ ! କେଡ଼େ ଦୁର୍ବଳ ମୁଁ ! ଏଇ ସାହସ ନେଇ ମନେ ମନେ ମହାବୀର ହେବାର ସଂକଳ୍ପ କରିଛି ! ଏଇଭଳି ବାମନ-ମନ ନେଇ ଚନ୍ଦ୍ରଙ୍କୁ ଛୁଇଁବା ପାଇଁ ହାତ ବଢ଼ାଇଛି ! ଧିକ୍ ମତେ !!

ମନରେ ପୁଣି ସାହସ ବାନ୍ଧିଲି ଓ ଧୀରେ ଧୀରେ କୁନ୍ତଟିକୁ ଛାତିରେ ଚାପିବାକୁ ଲାଗିଲି । ବଡ଼ ଆଶ୍ଚର୍ଯ୍ୟ ! ସାମାନ୍ୟତମ ପୀଡ଼ା ବି ଅନୁଭବ କରି ନ ଥିଲି । ମନର ସାହସ ଆହୁରି ବଢ଼ିଗଲା ।

ଠନ୍...କୁନ୍ତର ଛାତି ଉପରେ ଏକ ବଡ଼ ଆଘାତ ଦେବାର ଶବ୍ଦ । ସତେଯେମିତି ଲୁହାର ଫଳକଟି ଉପରେ ବାଜିଛି ସେଇ ଆଘାତ । ଦୁଇ ହାତକୁ ଉପରକୁ ଟେକି ଖୁବ୍ ଜୋର୍‌ରେ କହିଥିଲି କୁନ୍ତର ଆଘାତ । ଠନ୍ କରି ସିନା ତାହାର ଶବ୍ଦ ହେଲା । ମତେ ଲାଗୁଥିଲା ସତେଅବା କୁସୁମ-ପୁଞ୍ଜଟିରେ କିଏ ମତେ ଆଘାତ କରୁଛି ! ଭାରି କୋମଳ ସେଇ ଆଘାତ ! ଆଶ୍ଚର୍ଯ୍ୟ ହେଲି ଖୁବ୍ ।

ମୋ' କବଚ ପ୍ରକୃତରେ ଦୁର୍ଭେଦ୍ୟ ! ଅସ୍ପଷ୍ଟ ସ୍ୱରରେ ଏହି କଥା ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲି । ପ୍ରତିଟି ଉଚ୍ଚାରଣରେ ଅନ୍ତସ୍ତଳରେ ମୋର ଭରିଉଠୁଥାଏ ବିଜୟର ଉଲ୍ଲାସ ! ସତେ ଯେମିତି ବିରାଟ ଓ ଦୁର୍ଜୟ ଦୁର୍ଗଟାଏ ଜିଣିଯାଇଛି । ମନେ ହେଉଥାଏ ଖୁବ୍

ଜୋର୍‌ରେ ଚିତ୍କାର କରିଉଠନ୍ତି ଓ ସାରା ଜଗତକୁ ଦମ୍ଭଭରା ଓଜସ୍ୱୀ ସ୍ୱରରେ ଶୁଣାଇ ଦିଅନ୍ତି – ଆସ, ଆସ ହେ ସମାଜର ଚିନ୍ତାନାୟକମାନେ ! ଆସ ହେ ଉଚ୍ଚବର୍ଣ୍ଣର ଯେତେ ଯେତେ ଅଛ ବୀରମାନେ ସମସ୍ତେ । ମତେ ପଂରା କରୁଥିଲ ନୀଚକୁଳରେ ଜାତ ସୂତପୁତ୍ର ବୋଲି । ଅବହେଳାପୂର୍ଣ୍ଣ ଚକ୍ଷୁରେ ଚାହିଁଥିଲ ଗୋଡ଼-ଘଷା ତୁଠ-ପଥର ଭଳି । ଏବେ ଦେଖିବ ଆସ, ତୁମ୍ଭମାନଙ୍କର ସେହି ଘୃଣାର ପାତ୍ର କର୍ଣ୍ଣ, ସେଇ ଅବହେଳାର ତୁଠପଥର ଏବେ ପାଲଟିଯାଇଛି ପରଶ-ମଣିଟିଏ । ତା'ର କବଚ ଦୁର୍ଭେଦ୍ୟ । ସେ ହେବ ମହାବୀର । ସାରା ଜଗତକୁ ଜିଣିବ । ଜନ୍ମ ସିନା ତାର କୁଳାୟତ୍ତ କିନ୍ତୁ କର୍ମ କରାୟତ୍ତ ! ହଁ, କରାୟତ୍ତ । ସଂପୂର୍ଣ୍ଣ ଭାବରେ କରାୟତ୍ତ ।

ଏଇ ଭାବନାରେ ହାତର ମୁଠା ମୋର ଆପେ ଆପେ ଟାଣ ହୋଇଯାଉଥିଲା । ବାହୁର ମାଂସପେଶୀ ଫୁଲି ଉଠୁଥିଲା ।

ମୁଁ କିନ୍ତୁ ନିଜକୁ ଧୀରେ ଧୀରେ ସଂଯତ କରିନେଇଥିଲି । ଚିତ୍କାର କରି ନ ଥିଲି । ମୋ' ଆଦରର ସାନ ଭାଇଙ୍କ ପ୍ରତି ଦୟା, କାଳେ ତାଙ୍କ ନିଦ ଭାଙ୍ଗିଯିବ ।

ଆତ୍ମରତିରେ ମଜ୍ଜିଯାଇ କକ୍ଷରେ ବାରମ୍ବାର ନୃତ୍ୟ କରିବାକୁ ଲାଗିଲି । ବଡ଼ ଉନ୍ମତ୍ତ ନୃତ୍ୟ । ବଡ଼ ଉଦ୍ଦଣ୍ଡ । ଆପଣାର ନାଭିଗନ୍ଧରେ ମୋହିତ ହୋଇ ଚିରା ମାରି ଧାଉଁଥିବା କସ୍ତୁରୀମୃଗ ଭଳି ଅତି ଉନ୍ମନ !

ଆଃ ! କି ମଦଭରା ସୁଗନ୍ଧର ପୁଲକ !

ସେଇ ଗନ୍ଧକୁ ଆଘ୍ରାଣ କରି କରି କେତେବେଳେ ଯେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଇଗଲି ତାହା ମତେ ଜଣା ନ ଥିଲା ।

## ସାତ

ସନ୍ଦେହ । ହଁ, ସନ୍ଦେହ । ଦୂବଘାସଟି ଭଳି ତାହାର ଜନ୍ମ । ମାଟିରେ ଚେର ଲାଗିଥାଏ କି ନାହିଁ । କିନ୍ତୁ ଧୀରେ ଧୀରେ ତାହାର ବିସ୍ତାର ଘଟେ । ଶେଷରେ ସାରା ପ୍ରାନ୍ତରଟି ଦୂବ ଘାସରେ ଛାଇ ହୋଇଯାଏ । ଗୋଟିଏ ଘାସ-ଶେଯରେ ପରିଣତ ହୋଇଯାଏ । ଏକ ସୁବିସ୍ତୃତ ଶ୍ୟାମଳ ଆସ୍ତରଣ । ମନରେ ସନ୍ଦେହ ଥରେ ଆସିଲେ ତାହା ନ ମିଟିବା ପର୍ଯ୍ୟନ୍ତ ପୂର୍ଣ୍ଣା ତଟିନୀର ଜଳ ଭଳି ବଢ଼ି ବଢ଼ି ଚାଲେ ସିନା, କମ କମେ ନାହିଁ । ମୋ' ମନର ସନ୍ଦେହ ଠିକ୍ ସେମିତି ବଢ଼ିଉଠୁଥିଲା । ବାପା କିମ୍ବା ମାଆ କେହି ତାହାକୁ ପ୍ରଶମିତ କରିପାରୁ ନ ଥିଲେ । ମୁଁ ପ୍ରକୃତରେ କିଏ ବୋଲି ପଚାରିଲେ ମାଆ ଅଦୂରରେ ତାଙ୍କ ପଣତକାନିର ଆଢୁଆଳରେ ମତେ ଲୁଚାଇରଖି ବାରମ୍ବାର ମୋ' ମୁଖକୁ ଚୁମ୍ବନ କରୁଥିଲେ ଓ ସ୍ନେହ-ଗଦ୍‌ଗଦ କଣ୍ଠରେ କହୁଥିଲେ, "ତୁମେ ଆଉ କେହି ନୁହଁ ବସୁ । ଖାଲି ମୋରି ପୁଅ । ହଁ, ମୋରି ପୁଅ ।" ଏତିକି କହି ମତେ କୁଣ୍ଢାଇ ଧରି ମୋ' ମୁଖକୁ ବାରମ୍ବାର ଚୁମ୍ବନ କରୁଥିଲେ । ଆଖିରେ ତାଙ୍କର ଶଙ୍କିତା ହରିଣୀର ଚାହାଣି । କାଳେ ମତେ ହଜାଇ ଦେବେ ପରା ! ଆଉ ବାପା । ସେ ମତେ କିଛି ହିଁ ଉତ୍ତର ନ ଦେଇ ନୀରବ ରହୁଥିଲେ ।

ମୁଖମଣ୍ଡଳରେ ତାଙ୍କର କାରୁଣ୍ୟ ଫୁଟି ଉଠୁଥିଲା । ସତେ ଯେମିତି ତାଙ୍କୁ ଏ ପ୍ରଶ୍ନ ଭାରି ଦୁଃଖ ଦେଉଛି । ଭାରି ବେଦନା ଦେଉଛି ! ମୁଁ ତେଣୁ ଏଭଳି ପ୍ରଶ୍ନ ପଚାରିବା ପାଇଁ ଆଉ ସାହସ କରି ନ ଥିଲି । ମନର ସନ୍ଦେହକୁ ମନରେ ମାରି ହିଁ ରହିଥିଲି ।

ଏହିଭଳି ସନ୍ଦେହର ଦୋଳିରେ ଝୁଲୁଥିବା ସମୟରେ ବାପା ଦିନେ ମତେ ଶୁଭ ଖବରଟିଏ ଶୁଣାଇଲେ । ତାହା ହିଁ ମୋ' ଜୀବନରେ ଆଣି ଦେଇଥିଲା ଏକ ନୂଆ ମୋଡ଼ । ଯାତ୍ରାପଥରେ ଏକ ନୂତନ ଆଲୋକ । ଏକ ନୂତନ ଦିଗ୍‌ଦର୍ଶନ ! ସେଇ ଯେଉଁ ନୂତନ ଜୀବନଟି ପାଇଥିଲି, ସେଥିରେ ମୋର ଅନେକ କିଛି ସ୍ୱପ୍ନ ସାକାର ହୋଇପାରିଥିଲା । ପରିପୂର୍ଣ୍ଣ ବିକାଶ ଲାଗି ଅପୂର୍ବ ସୁଯୋଗ ମିଳିଥିଲା ମତେ ।

ସେଦିନର ସେଇ କଥା ଆଜି ମନେ ପଡ଼େ । କାର୍ତ୍ତିକୋତ୍ସବ ଶେଷ ହେବାର ଠିକ୍ ଦୁଇ ଦିନ ପରେ । ମୁଁ ସକାଳୁ ସକାଳୁ ଗଙ୍ଗା-ସ୍ନାନ କରିବା ନିମିତ୍ତ ବାହାରୁଥାଏ । ବାପା ଆମ ଘର-ଅଗଣାରେ ବନ୍ଧା ହୋଇଥିବା ଘୋଡ଼ାମାନଙ୍କ ସେବା କରୁଥାନ୍ତି । ତାଙ୍କର ଘୋଡ଼ାମାନଙ୍କ ସହିତ ଅପୂର୍ବ ଅଦ୍ଭୁତ ମମତା । ସେମାନେ ସ୍ନେହରେ ତାଙ୍କର ସର୍ବାଙ୍ଗକୁ ଲେହନ କରୁଥାନ୍ତି ଅଥବା ଆଘ୍ରାଣ କରୁଥାନ୍ତି । ମଣିଷ ଓ ପଶୁ ସେଠାରେ ଏକାକାର ହୋଇଯାଇଥାନ୍ତି । ପାରସ୍ପରିକ ପ୍ରେମ ଓ ସହାନୁଭୂତି ସେମାନଙ୍କୁ ବାନ୍ଧିରଖିଥାଏ ନିବିଡ଼ ବନ୍ଧନରେ । ସେଇ ବନ୍ଧନ ଯାହା ମୃଣାଳ ସୂତ୍ର ଭଳି କୋମଳ ଅଥଚ ଛିନ୍ନ ହେବାର କଥା ହେଲେ ଲୌହ ସୂତ୍ର ଭଳି ଦୃଢ଼ ।

ମହାଭାରତ ସମରର ଅବସରରେ ଆଜି ଯେତେବେଳେ ମୁଁ ଅନ୍ତିମ ଶଯ୍ୟାରେ ଶୟାନ, ସେତେବେଳେ ମନେପଡୁଛି ସେହି ମଣିଷପଶୁ ମଧ୍ୟରେ ହେଉଥିବା ଭାବର ଆଦାନ ପ୍ରଦାନ କଥା । ପରସ୍ପର ସହିତ ହେଉଥିବା ନୀରବ ପ୍ରୀତିସମ୍ଭାଷଣ କଥା । ଅଥଚ ଆଜି ଏଠାରେ ଦେଖୁଛି କ'ଣ ? ମଣିଷ ମଣିଷ ମଧ୍ୟରେ ଘୃଣା, ବିଦ୍ୱେଷ । ମଣିଷର ରକ୍ତରେ ହୋଲି ଖେଳି ମଣିଷ ପାଉଛି ଆନନ୍ଦ । ମଣିଷର ଶବ ଉପରେ ଚଢୁଛି ମଣିଷ । ରଚୁଛି ତାଣ୍ଡବ ନୃତ୍ୟ ! କରୁଛି ଭୀମ ଅଟ୍ଟହାସ ! ଅତି କ୍ରୁର ! ଅତି ବୀଭତ୍ସ ! ଛି ! ଛି ! ଏଇ କ'ଣ ମଣିଷପଣିଆ ? ଏଇ କ'ଣ ଦେବରୂପୀ ମଣିଷର ସ୍ୱରୂପ ? ଏଇମାନେ କ'ଣ ସେଇ ଆର୍ଯ୍ୟ ଋଷିମାନଙ୍କର ଦାୟାଦ, ଯେଉଁମାନେ ସେ ଦିନ ଗାଇଥିଲେ, ଉଦାର କଣ୍ଠରେ 'ଭ୍ରାତରୋ ମନୁଜାଃ ସର୍ବେ' । ସବୁ ମଣିଷ ଭାଇଭାଇ । ହାୟ ରେ ମଣିଷର ଅଧଃପତନ ! ସେ ଆଜି ପଶୁଠାରୁ ବି ହୀନ ହୋଇଯାଇଛି ସିନା !

ଦେଖ, ପିଲାଦିନର କଥା କହୁ କହୁ ମୁଁ ସମୟର ସୁଅରେ ଭାସି ଭାସି ମହାଭାରତର ରଣକ୍ଷେତ୍ରକୁ ଚାଲିଆସିଲିଣି । ବଡ଼ ବିଚିତ୍ର ଏ ଗତି । ଆବେଗଚାଳିତ ଏବେ ପୁଣି ଫେରିଯାଉଛି ମୋ' ପିଲାଦିନକୁ । ଆମର ସେଇ ଶେଫାଳୀକୁସୁମର ଆସ୍ତରଣରେ ଶୋଭିତ କ୍ଷୁଦ୍ର ଅଙ୍ଗନଟିକୁ ।

ବାପା ମତେ କହିଲେ, ''ବାପା ବୃଷ ! ଟିକିଏ ଶୁଣ ତ ।'' ତାଙ୍କ ଦତ୍ତ ନୂଆ ନାଁଟି ଧରି ସେ ଡାକୁଥିଲେ । ବଡ଼ କୌତୁକପୂର୍ଣ୍ଣ ଥିଲା ସେ ଡାକ ।

''କ'ଣ ବାପା ?'' ତାଙ୍କ ପାଖକୁ ଆସି ବିନୟପୂର୍ଣ୍ଣ ପ୍ରଶ୍ନ କଲି ।

''କାଲି ସକାଳୁ ଯାତ୍ରା ପାଇଁ ପ୍ରସ୍ତୁତ ହୁଅ ।''

''କେଉଁଠାକୁ ବାପା ?'' ମୋର କୌତୂହଳପୂର୍ଣ୍ଣ ପ୍ରଶ୍ନ ।

''ହସ୍ତିନାପୁରକୁ ।'' ବାପାଙ୍କ ସଂକ୍ଷିପ୍ତ ଉତ୍ତର ।

''ମାଆ ଯିବେ ତ ? ଭାଇ ସଂଗ୍ରାମ ଯିବେ ତ ? ଆମେ ସେଠାରେ କେତେ ଦିନ ରହିବା ?'' ତୂଣୀରରୁ ଶର ଛୁଟିଲା ଭଳି ଗୋଟିକ ପରେ ଗୋଟିଏ କରି ପ୍ରଶ୍ନ ଛୁଟି ଆସୁଥିଲା ମୋ' ମୁଖରୁ ।

''ନା, ଆଉ କେହି ଯିବେ ନାହିଁ । ତୁମେ ଏକା ହିଁ ମୋ' ସାଥିରେ ଯିବ । ତୁମକୁ ଆଉ ଫେରିବାକୁ ହେବ ନାହିଁ ।'' ବାପାଙ୍କ କଣ୍ଠର ଗମ୍ଭୀର ଅଥଚ ହସ ହସ ଉତ୍ତର ।

''ମାନେ ?'' ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

''ତୁମକୁ ସେଠାରେ ଯାଇ ଅଧିକ ବିଦ୍ୟାଶିକ୍ଷା କରିବାକୁ ହେବ ।''

''କାହାଙ୍କ ପାଖରେ ?''

''ଗୁରୁ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟଙ୍କ ପାଖରେ ।''

''ଭାଇ ସଂଗ୍ରାମ କାହିଁକି ଯିବେ ନାହିଁ ? ତାଙ୍କର ବି ତ ବିଦ୍ୟାଶିକ୍ଷା ଆବଶ୍ୟକ ।''

''ହଁ, ଆବଶ୍ୟକ । କିନ୍ତୁ ତୁମେ ଯେଉଁ ବିଦ୍ୟା ଶିକ୍ଷା କରିବ ତାହା ନୁହେଁ ।''

ମନରେ ମୋର ଅହେତୁକ କୌତୂହଳ । ଚଳଚଞ୍ଚଳ ଗିରିନିର୍ଝରୀଟି ଭଳି ମନର ଶିଳାବୁକୁକୁ କରିଦେଉଥାଏ କୁତୁକୁତୁ । କି ବିଶେଷ ଶିକ୍ଷାର ବ୍ୟବସ୍ଥା କରୁଛନ୍ତି ବାପା ମୋ' ପାଇଁ ? ପୁଣି ଏତେ ଦୂରରେ ? ମାଆଙ୍କଠାରୁ ଏତେ ଦୂରରେ ? ଭାଇ, ବନ୍ଧୁ, ସଖା କୁଟୁମ୍ବମାନଙ୍କଠାରୁ ଏତେ ଦୂରରେ ? କାହିଁ ଚମ୍ପାପୁରୀ ? ପୁଣି କାହିଁ ହସ୍ତିନାପୁର ? ବିସ୍ମୟ-ବିସ୍ଫାରିତ ନେତ୍ରରେ ଚାହିଁରହିଥାଏ ବାପାଙ୍କ ଆଡ଼େ । ଆଖିକଣରେ ମୋର ବିଷାଦର କୁଞ୍ଚିତ ରେଖା । ମୁଖମଣ୍ଡଳରେ ଅବସାଦର ଛାୟା । କାରଣ ପ୍ରଥମଥର ପାଇଁ ମତେ ଗାଁ ଛାଡ଼ିଯିବାକୁ ପଡୁଥାଏ ଏତେ ଦୂର ଜାଗାକୁ । କେତୋଟି ମୁହୂର୍ତ୍ତ କଟିଗଲା ନୀରବତାରେ ।

ବାପା ନୀରବତା ଭାଙ୍ଗି କହିଲେ, ''ତୁମକୁ ସେଠାରେ ଶସ୍ତ୍ରବିଦ୍ୟା ଶିଖିବାକୁ ହେବ । କୌରବ ଓ ପାଣ୍ଡବ ରାଜକୁମାରମାନେ ହେବେ ତୁମର ସହପାଠୀ । ତୁମେ ମଧ ସେମାନଙ୍କ ଭଳି ଜଣେ ବଡ଼ ବୀର ହୋଇ ଠିଆହେବ ଏଇ ଜଗତରେ । ପିତାମାତାଙ୍କ ମୁହଁକୁ ଉଜ୍ଜ୍ୱଳ କରାଇବ ।'' ଶେଷ କଥା କେଇପଦ କହିବା ଅବସରରେ ପିତା ମୋ' ପିଠିକୁ ଆଉଁଶି ଦେଇଥିଲେ ଓ ଶିରକୁ ସଂବେଗପୂର୍ଣ୍ଣ ଭାବରେ ଆଘ୍ରାଣ କରିଥିଲେ ।

ବାପା ଯାହା କହିଲେ ତାହା ଶୁଣି ଚିତ୍ତମନରେ ମୋର ପ୍ରସନ୍ନତା 'ଭରି ଉଠିଥିଲା । ପୂର୍ବର ବିଷାଦଭାବ ଧୀରେ ଧୀରେ ଅପସରି ଯାଇଥିଲା । ସତେଯେମିତି ଏଇ କଥା ଶୁଣିବାକୁ, ଏଇ ସୁଯୋଗ ପାଇବାକୁ ପ୍ରାଣ ଚାତକ ମୋର ଚାହିଁରହିଥିଲା ଅନେକ ଦିନ ଧରି ! ମୋର ମଳିନ ମୁଖଶ୍ରୀ କି ଏକ ଆଶାର ନବୀନ ଆଲୋକରେ ଉଜ୍ଜଳି ଉଠିଲା !

ତାଙ୍କ ବକ୍ତବ୍ୟ ହେଲା, ସେ କୁଆଡ଼େ ମୋ'ଠାରେ ଜଣେ ବିଶ୍ୱବିଖ୍ୟାତ ବୀର ହେବାର ସମ୍ଭାବନା ଆବିଷ୍କାର କରିପାରିଛନ୍ତି । ଏ କଥା ତାଙ୍କୁ କୁଆଡ଼େ ତାଙ୍କର ଅନେକ ଶୁଭେଚ୍ଛୁ ବନ୍ଧୁ କହିଛନ୍ତି । ସେ ତେଣୁ ଚାହାନ୍ତି, ମୁଁ ତାହା ପାଇଁ ଉପଯୁକ୍ତ ସୁଯୋଗ ପାଏଁ । ଉପଯୁକ୍ତ ଶିକ୍ଷାଗୁରୁ ଓ ପରିବେଶ ପାଏଁ । ମୁଁ କୁଆଡ଼େ ତିମିଙ୍ଗିଳ ମାଛଟିଏ ଭଳି । ମୋର ବିଚରଣ ଲାଗି ସୁଦୂରପ୍ରସାରୀ ତଥା ସୁଗଭୀର ସାଗରର ଜଳ ଆବଶ୍ୟକ । ତାହା ହସ୍ତିନାପୁରୀର ପ୍ରଶସ୍ତ ଓ ଅଭିଜାତ ପରିବେଶ ଯୋଗାଇ ଦେଇପାରିବ । ଚମ୍ପାପୁରୀର ସୀମିତ କୂପଜଳ କୁଆଡ଼େ ମୋର ଯୋଗ୍ୟ ନୁହେଁ । ଜନ୍ମ ମୋର ଅବଶ୍ୟ ସାରଥି କୁଳରେ । କିନ୍ତୁ ସାରଥି-ବିଦ୍ୟା ମୋର ଯୋଗ୍ୟ ନୁହେଁ । ତାହା ହୋଇପାରେ ମୋର କୌଳିକ ବୃତ୍ତି । କିନ୍ତୁ ମୋର ଜୀବିକା ନିର୍ବାହର ସାଧନ ହୋଇ ନ ପାରେ । ମୋର ବୃତ୍ତି ଓ ପ୍ରବୃତ୍ତି ମଧ୍ୟରେ ଥିବା ଏହି ବିରାଟ ତାରତମ୍ୟକୁ ସେ କୁଆଡ଼େ ସ୍ପଷ୍ଟ ଭାବରେ ଦେଖିପାରୁଛନ୍ତି । ଆଉ ଏକ ବିଶେଷ କାରଣ ତାଙ୍କୁ ଅନୁପ୍ରେରିତ କରିଥିଲା ମୋ' ପାଇଁ ଏଭଳି ବିଶେଷ ଶିକ୍ଷାର ବ୍ୟବସ୍ଥା କରିବାକୁ । ମୁଁ କୁଆଡ଼େ ଯେତେବେଳେ କ୍ଷୁଦ୍ର ଶିଶୁଟିଏ ଥିଲି, ସେତେବେଳେ ଜଣେ ଜ୍ୟୋତିଷାଚାର୍ଯ୍ୟ ଆସିଥିଲେ ଆମ ଗାଁକୁ । ମୋ' କର ଓ କପାଳ ଦେଖି ସେ, ଭବିଷ୍ୟତ୍‌ବାଣୀ ଶୁଣାଇଥିଲେ – ହେ ସୂତ ଅଧିରଥ ! ଏଇ ଶିଶୁ ବଡ଼ ଭାଗ୍ୟବାନ୍ । ଯେ ଦିନେ ଜଣେ ବିଖ୍ୟାତ ବୀର ପୁରୁଷ ହେବ ଓ ହେବ ବି ଜଣେ ରାଜା । ଏମିତି କେତେ କଥା କହିଥିଲେ ସେ ।

ପ୍ରକୃତରେ ସତ କଥା କହିଥିଲେ ହୁଏତ ତାହା ଯେମିତି ଥିଲା ମୋ' ମନର କଥା । ବାପା କଥା ଶୁଣିବାମାତ୍ରେ ହିଁ ମନ ମୋର ଚଳଚଞ୍ଚଳ ହୋଇଉଠିଥିଲା ଆନନ୍ଦରେ । ପ୍ରବୃତ୍ତିର ଅମାନିଆ ବାଛୁରୀଟି ହୃଦୟର ପହ୍ଲାଟିକୁ ବାରମ୍ବାର ଆଘାତ କରୁଥିଲା । ମୁଁ ହସ୍ତିନାପୁରକୁ ଯିବି । ଗୁରୁ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟଙ୍କ ଶିଷ୍ୟ ହେବି । କୌରବ ଓ ପାଣ୍ଡବ ରାଜକୁମାରମାନେ ହେବେ ମୋର ସତୀର୍ଥ । ଏହା କ'ଣ କମ୍ ବଡ଼ ସୁଯୋଗ ? ଏହାକୁ କିଏ ଛାଡ଼େ ? ମୋ' ଭଳି କେତେ ଜଣ ଗ୍ରାମ୍ୟବାଳକଙ୍କ ଭାଗ୍ୟରେ ବା ଏହା ଜୁଟେ ? ବାପା ମୋର ଭାରି ଭଲ ଲୋକ । ଏଭଳି ସୁଯୋଗ ମୋ' ଭଳି ଜଣେ ସୂତପୁତ୍ର ଲାଗି ଆଣି ଦେଇଛନ୍ତି । ଏଇ ଚିନ୍ତାରେ କୃତଜ୍ଞତାଭରା ଆନନ୍ଦରେ ତାଙ୍କ ପାଦତଳେ ଶିର ମୋର ନତ ହୋଇଗଲା । ମୁଗ୍ଧ ପୁଲକରେ ହଠାତ୍ କିଛି ମୋ' ପାଟିରୁ କଥା ବାହାରିଲା ନାହିଁ ।

''କ'ଣ କିଛି କଥା କହୁ ନାହଁ ବାପା ? ମୋ' କଥାରେ ରାଜି ତ ?'' ତାଙ୍କର ଅସହ୍ୟ ପ୍ରଶ୍ନ ।

''ହଁ, ରାଜି ବାପା ।'' ହସି ହସି ମୁଣ୍ଡ ଟେକି ଉତ୍ତର ଦେଇଥିଲି । ତାହା ପରେ ଚଳଚଞ୍ଚଳ ଭଙ୍ଗୀରେ ନାଚି ନାଚି ଗଙ୍ଗାତୀରକୁ ସ୍ନାନ ଲାଗି ଛୁଟିଯାଇଥିଲି । ମନରେ ମୋର ପୁଲକଭରା ଆନନ୍ଦ । ସିଂହଗର୍ଜନ ! ସତେଯେମିତି ସାରା ବିଶ୍ୱକୁ ପ୍ରକମ୍ପିତ କରିଦେବାକୁ ଚାହେଁ ସେଇ ଦୁର୍ମଦ ଗର୍ଜନ ! ଆଖି ଆଗରେ ମୋର ଶତ-ସହସ୍ର ଉଜ୍ଜ୍ୱଳ ଆଶା-ଜ୍ୟୋତିର ଦୁର୍ବାର ଝଲକ । ଅସହ୍ୟ ମୋର କିଶୋରସୁଲଭ ଛୋଟ ଛୋଟ ଆଖି

ଦୁଇଟି ପାଇଁ । ସତେ ଅବା ଜଳିଯାଉଥାଏ କୋମଳ ଆଖି ଦିଓଟି । କିନ୍ତୁ ଭାରି ଭଲ ଲାଗୁଥାଏ । ଜ୍ୱଳନ ବି ଆନନ୍ଦ ଦେଉଥାଏ ।

ଗଙ୍ଗାତଟସ୍ଥ ଚମ୍ପାବନରେ ଗୋଟିଏ ଅତି ପୁରୁଣା ଚମ୍ପାଗଛ । ଖୁବ୍ ଡେଙ୍ଗା । ଡାଳ, ପତ୍ର ଓ ଫୁଲରେ ଭରପୂର । ଗଙ୍ଗାର ଲହରୀମାଳା ତାହା ମୂଳରେ ମଥା ପିଟି ପ୍ରଣତି ଢାଳୁଥାଏ । ଚାରିଆଡ଼େ ଚମ୍ପାଫୁଲର ଉତ୍କଟ ମହକ । ତାହାରି ମୂଳରେ ଯାଇ ବସିଲି । ପଶ୍ଚିମଦିଗକୁ ମୁହଁ କରି ଅପରାହ୍ଣ ସୂର୍ଯ୍ୟଙ୍କର ଧୀରେ ଧୀରେ ମଳିନ ପଡ଼ିଆସୁଥିବା କିରଣଜାଲକୁ ଲକ୍ଷ୍ୟ କରୁଥାଏ । ଲକ୍ଷ୍ୟ ବି କରୁଥାଏ କିପରି ତାହା ଚିକ୍ ଚିକ୍ କରୁଛି ଗଙ୍ଗାଜଳରେ ଓ ସେହି କିରଣକୁ ପିଇଯିବା ଢଙ୍ଗରେ କିପରି କୁମ୍ଭୀରମାନେ ମଝିରେ ମଝିରେ ମୁଣ୍ଡ ଉପରକୁ ଟେକି ଭାସୁଛନ୍ତି । ମନରେ ଗୋଟିଏ ହିଁ ଚିନ୍ତା – ହସ୍ତିନାପୁର । ହସ୍ତିନାପୁର କଥା ବାପାଙ୍କ ମୁହଁରୁ ଅନେକଥର ଶୁଣିଥିଲି । ଦେଖିବାର କେବେ ସୁଯୋଗ ମିଳି ନ ଥିଲା । ଏବେ ସେହି ସୁଯୋଗ ମିଳିବାକୁ ଯାଉଛି । ଖାଲି ତ ଦେଖିବି ନାହିଁ ସେଇଠାରେ ହିଁ ଖାଇବି, ପିଇବି, ରହିବି ଓ ପାଠ ପଢ଼ିବି । ରାଜକୁମାରମାନଙ୍କ ସାଥିରେ ମିଶିବି । ଧନୁର୍ବିଦ୍ୟା ଶିଖିବି । କେତେ ଦିନ, କେତେ ମାସ ଅଥବା କେତେ ବର୍ଷ ରହିବି କେଜାଣି ? ମୋ' ରହିବାଟା ହୁଏତ ଦୀର୍ଘଦିନ ଧରି ବି ହୋଇପାରେ । ଆଜି ଯେଉଁ ହସ୍ତିନାପୁର ମୋ' ନିକଟରେ ସ୍ୱପ୍ନ, ତାହା ବାସ୍ତବରେ ପରିଣତ ହେବ । ଅଥଚ ମୋର ଏକାନ୍ତ ନିଜର ଏଇ ଜନ୍ମମାଟି ଚମ୍ପାପୁରୀ ହୋଇଯିବ ସାତ ସ୍ୱପ୍ନ । କେବେ କେମିତି ହୁଏତ ଥରେ ଅଧେ ତାହାକୁ ଦେଖିବାର ସୁଯୋଗ ମିଳିପାରେ । ହୃଦୟରେ ମୋର ବିଷାଦ ଓ ଆନନ୍ଦ ଫେଣ୍ଟାଫେଣ୍ଟି ହୋଇ ପ୍ରକଟିତ । କିନ୍ତୁ ଧୀରେ ଧୀରେ ସେହି ଭାବନା କ୍ଷୀଣ ହୋଇ ହସ୍ତିନାପୁରକୁ ସ୍ୱଚକ୍ଷୁରେ ଦେଖିବାପାଇଁ ମନ କେବଳ ଆନନ୍ଦରେ ହିଁ ଉଚ୍ଚାଟ ହେବାକୁ ଲାଗିଲା ।

ସୂର୍ଯ୍ୟଦେବ ଧୀରେ ଧୀରେ ପଶ୍ଚିମ ଗଗନଆଡ଼କୁ ଆଗେଇ ଚାଲିଥିଲେ । ସୂର୍ଯ୍ୟରଥର ଗତି ସହିତ ମୋ' ମନରଥର ଗତି ମଧ୍ୟ ଆଗେଇ ଚାଲିଥିଲା ଦୂର ଦିଗ୍‌ବଳୟକୁ ଭେଦକରି ଏକ ଅଦୃଷ୍ଟ ମହାନଗରୀ ଆଡ଼େ – କୁରୁରାଜ୍ୟର ସମୃଦ୍ଧିଶାଳୀ ରାଜଧାନୀ ହସ୍ତିନାପୁର ଆଡ଼େ । ବାପାଙ୍କ ମୁହଁରୁ ଯାହା ଶୁଣିଥିଲି ତାହାକୁ ମନେପକାଇ କେତେ କ'ଣ କଳ୍ପିତ ରୂପ ତାହାର ଜାଗିଉଠୁଥାଏ ମନୋରାଜ୍ୟରେ । ହସ୍ତିନାପୁର ! କୁରୁବଂଶୀ ରାଜାମାନଙ୍କ ସମୃଦ୍ଧଶାଳୀ ରାଜନଗରୀ । ସାରା ଆର୍ଯ୍ୟାବର୍ତ୍ତର ହୃତ୍‌କେନ୍ଦ୍ର ସଦୃଶ । ମହାପରାକ୍ରମୀ ଯୋଦ୍ଧାମାନଙ୍କ ଲୀଳାଭୂମି । ନାନାବିଧ କଳାକାରଙ୍କ କର୍ମଭୂମି । ବିରାଟ ଓ ସୁପ୍ରଶସ୍ତ ରାଜପଥ । ରାଜପଥର ଉଭୟ ପାର୍ଶ୍ୱରେ ଆକାଶଛୁଆଁ ପ୍ରାସାଦ ଅଥବା ମନ୍ଦିରମାନ ସଗର୍ବରେ ବିଦ୍ୟମାନ । ଦୀପସ୍ତମ୍ଭଗୁଡ଼ିକ ଦ୍ୱାରା ଶୋଭିତ ରାଜପଥଟି ରାତିବେଳାରେ ବି ସମଧିକ ସୁନ୍ଦର । ଦିନରାତି ସବୁବେଳେ ରାଜପଥରେ ଜନଗହଳି । ସୁସଜ୍ଜିତ ଦୋକାନ-ବଜାରମାନଙ୍କ ମଧ୍ୟରେ ବି ସମଧିକ ଲୋକଗହଳି । ନାନା ପ୍ରକାର ଯାନବାହନର ଅବିରତ ଗତି । ରଥଚକ୍ରଗୁଡ଼ିକର ଘର୍ଘର ନାଦରେ ଗଗନ ପବନ ପ୍ରକମ୍ପିତ । ଭରା ଐଶ୍ୱର୍ଯ୍ୟର ଏକ ବିପୁଳ ଭଣ୍ଡାର । ସଂପୂର୍ଣ୍ଣ ଏକ ନୂତନ ଓ ଅନନ୍ୟ

ପରିବେଶ । ଚମ୍ପାପୁରର ଗ୍ରାମୀଣ ପରିବେଶଠାରୁ ସଂପୂର୍ଣ୍ଣ ଭିନ୍ନ । ମହାରାଜ ହସ୍ତୀ କୁଆଡ଼େ ଏହି ନଗରୀଟିକୁ ବସାଇଥିଲେ । ତେଣୁ ଏହାର ନାମ ହସ୍ତିନାପୁର । ଗଙ୍ଗାତଟର ତାହାର ସୁନ୍ଦର ପରିବେଶ ତାଙ୍କ ମନକୁ କିଣି ନେଇଥିଲା । ତେଣୁ ସେ ନିଜ ରାଜ୍ୟର ରାଜଧାନୀ ଏହାକୁ କରିଥିଲେ । ତାଙ୍କ ପୂର୍ବରୁ ବୁଦ୍ଧିମାନ୍ ମନୁ, ପୁରୁଷବର ପୂରୁରବା, ନହୁଷ, ଯଯାତି ଆଦି ମହାରାଜାମାନେ ଏଇଠି ଥାଇ ନିଜ ଦିଗ୍‌ବିଜୟର ଯାତ୍ରାରେ ସାରା ଆର୍ଯ୍ୟାବର୍ତ୍ତକୁହିଁ ପ୍ରକମ୍ପିତ କରିଦେଇଥିଲେ । ଯଯାତିଙ୍କର ପରେ ପରେ ଆସିଥିଲେ ପୁରୁ ଜନମେଜୟ, ଅହଂଯାତୀ, ଦେବାତିଥି, ଦୁଷ୍ମନ୍ତ, ଭରତ ଆଦି ମହା-ମହା ରାଜାମାନେ । ସମସ୍ତେ ହସ୍ତିନାପୁରରେ ନିଜ ଉଜ୍ଜ୍ୱଳ ଯଶ-କୀର୍ତ୍ତି ଛାଡ଼ି ଯାଇଛନ୍ତି । ମହାରାଜ ହସ୍ତୀଙ୍କ ପରେ ଆସିଥିଲେ ଅଜମୀଢ, କୁରୁ, ବିଦୂରଥ, ଅନଶ୍ୱ, ପରିକ୍ଷିତ, ଭୀମସେନ, ପରିଶ୍ରବସ୍, ଶାନ୍ତନୁ ଓ ବିଚିତ୍ରବୀର୍ଯ୍ୟ । ସେମାନେ ସମସ୍ତେ ଥିଲେ ନିଜ ଗୁଣରେ ଯଶସ୍ୱୀ । ଏତେ ବଡ଼ ରାଜବୈଭବକୁ ତୁଚ୍ଛ ଜ୍ଞାନ କରି ଶାନ୍ତନୁଙ୍କ ଭାଇ ଦେବାପି ଗୃହତ୍ୟାଗୀ ସନ୍ନ୍ୟାସୀ ହୋଇଯାଇଥିଲେ । ବର୍ତ୍ତମାନ ହସ୍ତିନାପୁରର ରାଜା ଧୃତରାଷ୍ଟ୍ର । ଏମିତି କେତେ କଥା ଭାବିଯାଉଥିଲି ମନେ ମନେ । ପୁଣି ବେଳେବେଳେ ଭାବୁଥିଲି ସେଇ ନାଗରିକ ପରିବେଶ ସହିତ ଏଇ ଗ୍ରାମୀଣ କିଶୋର କର୍ଣ୍ଣ ନିଜକୁ ଖାପ ଖୁଆଇପାରିବ ତ ? ନୀଚ ସୂତକୁଳରେ ଜନ୍ମର ପୁଞ୍ଜିକୁ ଧରି ସେ ତା'ର ସତୀର୍ଥ ରାଜକୁମାରମାନଙ୍କ ସହିତ ହୃଦୟ-ମନ ନେଇ ମିଶିପାରିବ ତ ? ତା'କୁ ହୀନମ୍ମନ୍ୟତା ଗ୍ରାସ କରିବ ନାହିଁ ତ ? କିନ୍ତୁ ପରକ୍ଷଣରେ ଭାବାନ୍ତର ଆସି ମତେ ଯେମିତି କହିଦେଉଥାଏ – ତୁ ପାରିବୁ କର୍ଣ୍ଣ, ପାରିବୁ । ଜନ୍ମ ସିନା ଦୈବର ଆୟତ୍ତ । କିନ୍ତୁ କର୍ମ ତ ନିଜର ଆୟତ୍ତ । ନିଜ କର୍ମ ବଳରେ ତୋ' ବଳିଷ୍ଠ ପୌରୁଷକୁ ଗଢ଼ିପାରିବୁ ।

ହାତ ମୋର ଆପେ ଆପେ ମୁଠା ହୋଇଗଲା କି ଏକ ଦୃଢ଼ ନିଶ୍ଚୟରେ । ମୋର ଅଜ୍ଞାତରେ କ୍ରମଶଃ ପ୍ରକମ୍ପିତ ହେଉଥିବା ମାଂସପେଶୀକୁ ଫୁଲାଇଦେଲି । ମନକୁ ମନ ବାରମ୍ବାର କହିଲି – ହଁ, ମୁଁ ପାରିବି । ନିଶ୍ଚୟ ପାରବି । ମୁଁ ବୀର ହେବି । ବୀରତ୍ୱରେ ମୋ' ସତୀର୍ଥ ରାଜକୁମାରମାନଙ୍କୁ ବଳିଯିବି । ସାରା ଜଗତ୍ ମତେ ସମ୍ମାନ ଦେଖାଇବ । ଶୁଖିଲା ମଲା କାଠ ସମାନ ପରମ୍ପରା ଓ ଅନ୍ଧବିଶ୍ୱାସର ନିଗଡ଼ରେ ବନ୍ଧା ଏଇ ଜରାଜୀର୍ଣ୍ଣ ସମାଜ ମୋର କ'ଣ ବା କରିପାରିବ ? ତାହାର ଭ୍ରୂକଟିକୁ ଅଚିରେ ଉପହାସ କରିବି । ମୁଁ କର୍ଣ୍ଣ । ଅକର୍ଣ୍ଣ ନୁହେଁ !

ନିଃଶ୍ୱାସପ୍ରଶ୍ୱାସ ମୋର ଦ୍ରୁତତର ହୋଇଉଠୁଥିଲା । ତହିଁରେ ଛଳଛଳେଇ ଉଠୁଥିଲା କ୍ରୋଧ ଓ ଆହତ ଅଭିମାନର ଏକ ମିଶ୍ରିତ ପୁଟ ।

ଆଗରୁ କହିଛି, ମୁଁ ସୂର୍ଯ୍ୟଦେବଙ୍କୁ ହିଁ ମାନିନେଇଛି ମୋର ପ୍ରଥମ ଗୁରୁ, ପ୍ରଥମ ଆଚାର୍ଯ୍ୟ ଭାବରେ । କିଛି ସନ୍ଦେହ ମନକୁ ଆନ୍ଦୋଳିତ କଲେ ତାଙ୍କର ପାଖକୁ ଆସେ । ତାଙ୍କୁ ହିଁ ପଚାରେ ଅଗଣିତ ପ୍ରଶ୍ନ । ଉତ୍ସାହ ଓ ଉନ୍ମାଦନା ଧରି ତାଙ୍କ ପାଖରୁ ଫେରିଯାଏ । ସେଦିନ ମଧ୍ୟ ତାଙ୍କ ଆଡ଼କୁ ଚାହିଁ ଭକ୍ତିପୂତ କଣ୍ଠରେ ଏଇ ପ୍ରଶ୍ନଟି ପଚାରିଥିଲି – କହନ୍ତୁ ଗୁରୁଦେବ, ମୋର ହସ୍ତିନାପୁରକୁ ଯିବା ହେବ କି ନାହିଁ ?

ହଠାତ୍ ସୂର୍ଯ୍ୟମଣ୍ଡଳ ମଧ୍ୟରେ, ସେଇ ପୂର୍ବପରିଚିତ ମୁହଁଟି ଦୀପ୍ତିମାନ୍ ହୋଇଉଠିଲା ଓ ତାହାର ଓଠକଣରେ ମୃଦୁ ମୃଦୁ ହସ ଉକୁଟି ଉଠିଲା । ଆଶୀର୍ବାଦ-ମୁଦ୍ରାରେ ହାତ ଟେକି ମତେ କହିଲା ଭଳି ଲାଗିଲା – ଯାଅ ପୁତ୍ର କର୍ଣ୍ଣ, ଯାଅ । ହସ୍ତିନାପୁରକୁ ଯାଅ । ଉପଯୁକ୍ତ ଶିକ୍ଷା ପାଅ । ଭବିଷ୍ୟତ୍‌ର ଇତିହାସକୁ ଗଢ଼ । ଇତିହାସ ତୁମ ପାଇଁ ଅପେକ୍ଷା କରି ରହିଛି ।

ଯଥେଷ୍ଟ ଉତ୍ସାହ ପାଇଲି ଏଥିରୁ । ମନୋବଳ ମୋର ଦୃଢ଼ୀଭୂତ ହେଲା । ସମସ୍ତ ଦ୍ୱିଧା ଦୂର ହେଲା । ପରିବାରର ବନ୍ଧନ, ଗାଁ-ମାଟି, ସାଥିମେଳ ଆଦିର ଆକର୍ଷଣ ମତେ ଆଉ ପଛକୁ ଟାଣିପାରିଲା ନାହିଁ । ସମସ୍ତ ଦୁର୍ବଳତା ମୋର ଦୂର ହେଲା ।

ଖୁସି ମନରେ ହସ୍ତିନାପୁରକୁ ଯିବାର ଦୃଢ଼ ନିଶ୍ଚୟ ନେଇ ଘରକୁ ଫେରିଲି । ନୀଡ଼ ଫେରନ୍ତା ପକ୍ଷୀମାନଙ୍କ କଳରବରେ ଚମ୍ପାବନ ଅଧିକରୁ ଅଧିକ ମୁଖରିତ ହୋଇଉଠୁଥିଲା । ଆଉ ମୋ' ମନ-ଗହନ କଥା । ତହିଁରେ ଯେ କେତେ ନୀରବମୁଖର ବାଣୀ ଉଙ୍କି ମାରୁଥିଲା ତାହା କହିହେବ ନାହିଁ !

## ଆଠ

ତହିଁ ଆରଦିନ ସକାଳ । ବଡ଼ିଭୋରରୁ ଆମେ ପିତାପୁତ୍ର ଦୁହେଁ ସ୍ନାନ ସାରି-ଦେଇଥାଉ । ପାହାନ୍ତାରୁ ଉଠି ପିତା ହସ୍ତିନାପୁରରୁ ଆସିଥିବା ଦ୍ରୁତଗାମୀ ଅଶ୍ୱଟିକୁ ଖୁଆଇ ପିଆଇ ଯାତ୍ରା ଲାଗି ପ୍ରସ୍ତୁତ କରିଦେଇଥାନ୍ତି । ଯଥାସମୟରେ ଶୁଭ ମୁହୂର୍ତ୍ତ ଦେଖି ଯାତ୍ରା କରିବାକୁ ହେବ । ମନକୁ ଯେତେ ପୂର୍ବରୁ ଦୃଢ଼ କରି ରଖିଥିଲେ ବି ଯାତ୍ରାର ଅବ୍ୟବହିତ ପୂର୍ବରୁ ତାହା ଚଞ୍ଚଳ ହୋଇଉଠିଲା । ଚିତ୍ତ-ତଳେ ନାନା ରୂପରେ ଅଶାନ୍ତ ଢେଉମାନ ମୁଣ୍ଡ ଟେକିବାକୁ ଲାଗିଲା । ଆଖିରେ ଆଖିଏ ଲୁହ ଜକେଇ ଆସିଲା । ଦୀର୍ଘଦିନ ଧରି ମୋର ଲୀଳା-ଖେଳାର ପ୍ରିୟ ଭୂମି ଚମ୍ପାପୁରୀକୁ ଛାଡ଼ିବାକୁ ହେବ । ଛାଡ଼ିବାକୁ ହେବ ବହୁସ୍ମୃତିବିଜଡ଼ିତ ଆମ କ୍ଷୁଦ୍ର କୁଟୀରକୁ । ଜାଣେନା କେବେ ପୁଣି ତାହାର ଜୀର୍ଣ୍ଣ ଅଳିନ୍ଦରେ ପାଦ ପକାଇବାର ସୁଯୋଗ ମିଳିବ ।

ମାନସିକ ଅବସ୍ଥାର ପ୍ରତିଚ୍ଛବି ପରିଷ୍କାର ପଡୁଥିଲା ବୋଧହୁଏ ମୋ' ଝାଉଁଳା ମୁହଁରେ । ବାପା ମତେ ସ୍ନେହଭରା ପ୍ରଶ୍ନ କଲେ, "ବସୁ ! କ'ଣ ଯିବାକୁ ମନ କଷ୍ଟ ହେଉଛି ?" ବାଣୀ ତାଙ୍କର ସହାନୁଭୂତି ଓ ବାତ୍ସଲ୍ୟ-ପ୍ରେମରେ ଜରଜର ।

"ନାଇଁ ବାପା ! ସେମିତି କିଛି ନୁହେଁ ।" ଉଦ୍‌ଗତ ଅଶ୍ରୁକୁ କୌଣସିମତେ ରୋକିଦେଇ କହିଲି । ମୁହଁରେ କୃତ୍ରିମ ହସରେଖାଟିଏ ବି ଫୁଟାଇଦେଲି ।

ଏତିକିରେ ମାଆ କିନ୍ତୁ ଭାଙ୍ଗିପଡ଼ିଲେ । ବାପାଙ୍କ ବାରମ୍ବାର ବାରଣ ସତ୍ତ୍ୱେ ଭୋ-ଭୋ ହୋଇ କାନ୍ଦିଉଠିଲେ ଓ ମୋ' ସାରା ଅଙ୍ଗକୁ ସ୍ନେହମୟ ହାତରେ ଆଉଁଶିଦେଇ ମତେ ନିଜ ପଣତର ପକ୍ଷତଳେ ଲୁଚାଇ ରଖିଲେ । ମୋ' ଶିରକୁ ବାରମ୍ବାର ଚୁମ୍ବନ କରି କହିଲେ, "ମୋ' ବାପା ! ମୋ' ଧନ ! ଦେହ ତୁମର ବଜ୍ର ହେଉ ! ତୁମ ରାସ୍ତାର ସବୁ କଣ୍ଟା ଦୂର ହେଉ । ତୁମେ ପାଠ ସାରି ଭଲରେ ଭଲରେ ଘରକୁ ଫେରିଆସ ।" ସେ ପୁଣି କହିଲେ,

''ବିଦେଶ ଜାଗା, ଦେହ-ପା'ର ଯତ୍ନ ନେଉଥିବ । କୌଣସି ଅଚିହ୍ନା ଲୋକ ସାଥିରେ କୁଆଡ଼କୁ ଯିବ ନାହିଁ । ପାଠରେ ମନ ଦେଉଥିବ ।''

''ହଁ ମାଆ ! ଦେହପା'ର ଯତ୍ନ ନେଉଥିବି । ପାଠ ପ୍ରତି ନିଷ୍ଠା ରଖିଥିବି । ମୁଁ ତ ଏବେ ବଡ଼ ହୋଇଗଲିଣି । କାହାକୁ ଡରିବି କାହିଁକି ଯେ ? କାହା ସାଥିରେ ଯିବାର କ'ଣ ବା ଅସୁବିଧା ହେବ ମୋର ? କିଏ ବା ମୋର କ'ଣ କରିପାରିବ ? ଏଇ ଦେଖୁନ ମାଆ, ମୋ' ଦେହରେ କେତେ ବଳ ?'' ଏହା କହିବା ସଙ୍ଗେ ସଙ୍ଗେ ମୋ' ବଳିଲା-ବଳିଲା ବାହା ଦୁଇଟିରେ କ୍ରମେ ବିକଶିତ ହୋଇଉଠୁଥିବା ମାଂସପେଶୀକୁ ପ୍ରଦର୍ଶନ ଭଙ୍ଗୀରେ ମାଆଙ୍କୁ ଦେଖାଇଦେଲି ।

ମାଆ ହସିବାର ଚେଷ୍ଟା କରିଥିଲେ । କିନ୍ତୁ ହସିପାରି ନ ଥିଲେ । କାରଣ ତାଙ୍କ ଚିତ୍ତତଳକୁ ଗଭୀର ବିଷାଦ ଅସ୍ଥିର କରିଦେଉଥିଲା ସେତେବେଳେ । ସେ ଆଉ ଥରେ ମୋ' ମୁହଁରେ ଚୁମ୍ବନ ଦେବା ଅବସରରେ କହିଥିଲେ, ''ପୁଅ ମୋର କେତେ ବୁଦ୍ଧିମାନ୍ ସତେ !'' ପୁଣି କହିଥିଲେ, ''ବାପା ବସୁ ! ତୁମେ ବଡ଼ ହେଲଣି କେଉଁଠି ? ଏବେ ବି ତ ମୋ' ପାଖରେ ଛୋଟ ଶିଶୁଟିଏ । ଏବେ ବି ତ ମୋ' ପଣତ-କାନି ତୁମର ଆଶ୍ରା । ଏହା କହି ଆହୁରି ନିବିଡ଼ ଭାବରେ ପଣତକାନିରେ ମତେ ଘୋଡ଼ାଇ ରଖିଥିଲେ ।

ପିତା ମାତା-ପୁତ୍ରଙ୍କର ଏହି କଥୋପକଥନକୁ ଉପଭୋଗ କରୁଥିଲେ ମୁଗ୍ଧ ଦୃଷ୍ଟିରେ । ସଂପୂର୍ଣ୍ଣ ନୀରବ ରହିଥିଲେ କେତୋଟି ମୁହୂର୍ତ୍ତ ପାଇଁ ।

ମାଆଙ୍କର ସେତେବେଳର ଭାବନାର ପ୍ରତିଛବି ଆଙ୍କି ହୋଇଯାଉଥାଏ ମୋ' ଚିତ୍ତପଟରେ । ଭାବୁଥାଏ, ଏଇ ମାଆ ବୋଲି ମଣିଷଟିର କି ବିଚିତ୍ର ମନଃସ୍ଥିତି ! ସନ୍ତାନ ସଂପର୍କରେ କି ଅଦ୍ଭୁତ ଧାରଣା ! ସନ୍ତାନ ଯେତେ ବଡ଼ ହେଲେ ବି ତାକୁ ଲାଗୁଥାଏ ଦୁଗ୍ଧଯୋଗ୍ୟ କ୍ଷୁଦ୍ର ଶିଶୁଟିଏ ଭଳି । କେବଳ ହିଁ ବକ୍ଷୋଲଗ୍ନ ହେବାର ଯୋଗ୍ୟ । ଯେତେ ବଳବାନ୍ ହେଲେ ବି ତା'କୁ ଲାଗେ ଅତି ଦୁର୍ବଳ ବୋଲି । ଯେତେ ଖାଇଥିଲେ ବି ମାଆ ପାଖକୁ ଆସିଲେ ତା'କୁ ଭୋକ କରେ । ଯେତେ ଯାହା ଜରୁରୀ କାମ ଥାଉ ପଛକେ, ମାଆର ତା'ପାଇଁ ପ୍ରଥମ ସ୍ୱାଗତ ସତ୍କାର ତା'କୁ ଖାଇବାକୁ ଡାକିବାରେ । ଏ କଥା ମାଆକୁ କେହି ଶିଖାଇ ନ ଥାଏ । ଏହା ତା'ର ସହଜାତ ପ୍ରବୃତ୍ତି । ମୋ' ମାଆ ଥିଲେ ଏଇଭଳି ଜଣେ ମାଆ । ତାଙ୍କୁ ମନେ ମନେ କୋଟି କୋଟି ପ୍ରଣାମ କରୁଥିଲି ।

ପିତା ଶେଷରେ ନୀରବତା ଭାଙ୍ଗି ପଚାରିଲେ, ''କ'ଣ ମାଆ – ପୁଅ କଥାବାର୍ତ୍ତା ସରିଲା ? ଶୁଭବେଳା ଗଡ଼ିଯିବ ଯେ ।''

ମାଆ ତରବର ହୋଇ ଉଠିଗଲେ ଓ ଗୋଟିଏ ଛୋଟ ଗଣ୍ଠିଲିଟିଏ ଆଣି ବାପାଙ୍କ ହାତକୁ ବଢ଼ାଇଦେଇ କହିଲେ, ''ଏଥିରେ ଛତୁ ଦେଇଛି । ବାଟରେ ଖାଇବେ ଓ ହସ୍ତିନାପୁରକୁ ନେଇଯିବେ ।''

''ଆଚ୍ଛା ।'' ପିତା ସଂକ୍ଷିପ୍ତ ଉତ୍ତରଟିଏ ଦେଇ ଶୀଘ୍ର ମତେ ବାହାରିବା ପାଇଁ ଆଦେଶ ଦେଲେ ।

ମୋର ବ୍ୟକ୍ତିଗତ ଜିନିଷପତ୍ର ସେମିତି ବିଶେଷ କିଛି ନ ଥିଲା । ଯାହା କିଛି ଆବଶ୍ୟକ ଜିନିଷପତ୍ର ଥିଲା ସେଥିରେ ଗୋଟିଏ ଛୋଟ ଗଣ୍ଠିଲି ଆଗରୁ ତିଆରି କରି ରଖିଥିଲି । ତାହାକୁ ଧରି ବାହାରିପଡ଼ିଲି । ଆମ ପର୍ଣ୍ଣକୁଟୀର ଅଳିନ୍ଦ ଡେଇଁବା ପୂର୍ବରୁ ମାଆ ମୋ' ହାତରେ କ'ଣ ଗୋଟିଏ ଛୋଟ ଜିନିଷ ତରବର କରି ଗୁଞ୍ଜିଦେଇ କାନ ପାଖରେ ତୁନି ତୁନି ହୋଇ କହିଲେ, ''ବାପା ବସୁ ! ହସ୍ତିନାପୁର ସହର ଜାଗା । ଜିନିଷପତ୍ର ଭାରି ମହରଗ । ତୁମେ ସାବଧାନ ହୋଇ ଚଳୁଥିବ । ଦେଖିଚାହିଁ ଖର୍ଚ୍ଚ କରୁଥିବ । ଏଇ କିଛି ନିଷ୍କ ଦେଉଛି । ପାଖରେ ରଖିଥାଅ; ଦରକାରବେଳେ କାମରେ ଆସିବ ।'' ଏଇତକ କଥା ସେ ବାପାଙ୍କୁ ଲୁଚାଇ ଲୁଚାଇ ମତେ କହୁଥିଲେ । ଭାବିଲି, ଏହା ବୋଧହୁଏ ତାଙ୍କ ଗୁପ୍ତ ସଞ୍ଚିତ ଧନ ଯାହା ସେ ମୋରି ଶିକ୍ଷାପାଇଁ ସଞ୍ଚୟ କରି ରଖିଥିଲେ । ତେଣୁ ଚାହୁଁଥିଲେ, ଏକମାତ୍ର ମୁଇଁ ହିଁ ଏହାର ଅଧିକାରୀ ହୁଏ । ଆଉ କେହି ଏ କଥା ନ ଜାଣନ୍ତୁ । ନ ଶୁଣନ୍ତୁ । ଏପରିକି ବାପା ବି !

ବିଚିତ୍ର ଏ ମାଆର ମମତା ! ଭାବୁଥାଏ ମନେ ମନେ ।

ମୁଁ ଘୋଡ଼ାରେ ବସିବାକୁ ଯାଉଛି, ସାନଭାଇ ସଂଗ୍ରାମ କାନ୍ଦ କାନ୍ଦ ହୋଇ ମତେ ପଚାରିଲେ, ''କେବେ ଘରକୁ ଫେରିବ ଭାଇ ?'' ତା' ପିଠିକୁ ସ୍ନେହରେ ଆଉଁଶି ଦେଇ କହିଲି, ''ତୁମେ କାନ୍ଦନା ଭାଇ । ମୁଁ ଶୀଘ୍ର ଫେରିଆସିବି ଯେ ।''

''କେବେ ?'' ତାଙ୍କର ଜିଦ୍‌ଭରା ଅଥୟ ପ୍ରଶ୍ନ । ମୋ' ଫେରିବାର ନିର୍ଦ୍ଦିଷ୍ଟ ଦିନଟି ସେ ଜାଣିବାକୁ ଚାହାନ୍ତି । ବିଚରା ଅବୋଧ ବାଳକ । ସେ କାହୁଁ ଜାଣିବେ ବିଦ୍ୟାଶିକ୍ଷା କେତେ ଦିନ ଲାଗିବ ବୋଲି ? ମୁଁ ତ ନିଜେ ବି ଜାଣି ନାହିଁ । କେବଳ ଏତିକି ଶୁଣିଛି ଗୁରୁଜନମାନଙ୍କଠାରୁ ଯେ ବିଦ୍ୟାଶିକ୍ଷା ଅନନ୍ତ । ଗୋଟିଏ ସରିଲେ ତାହା ଉପରକୁ ଆଉ ଗୋଟିଏ ବିଦ୍ୟା ଅଛି । ସେଇଟି ସରିଲେ ପୁଣି ତାହା ଉପରକୁ ଆଉ ଗୋଟିଏ ବିଦ୍ୟା । ଏମିତି ବିଦ୍ୟାର ଅଛି ଅନନ୍ତ ଭଣ୍ଡାର । ଗୁରୁମାନେ ମଧ୍ୟ ସେମିତି ଅଛନ୍ତି ଜଣଙ୍କ ପରେ ଜଣେ ଉପରକୁ ଉପରକୁ । ସାରା ଜୀବନ ବିତିଗଲେ ମଧ୍ୟ ମଣିଷର ଶିକ୍ଷା ସରିବ ନାହିଁ । ବିଦ୍ୟା ପ୍ରକୃତରେ ଅନନ୍ତ । ଆଉ ଗୁରୁଚୟନ ମଧ୍ୟ ଅନନ୍ତ । ଜୀବନ ସରିଗଲେ ବି ଆଉ କିଛି ବିଦ୍ୟା ରହିଯାଇଥାଏ ଓ ରହି ବି ଯାଇଥାନ୍ତି ଆଉ କେତେକ ଗୁରୁ । ସେ କଥା କିପରି ବା ବୁଝାଇବି ମୋର ଅବୋଧ ସାନଭାଇଙ୍କୁ ? ତାଙ୍କୁ ଏତିକି ମାତ୍ର କହିଲି, ''ମୋ' ପାଠପଢ଼ା ସରିଲେ ଫେରିଆସିବି ।''

''ଫେରିଆସିଲେ ମତେ ତୁମ ପାଠ ପଢ଼ାଇଦେବ ନା ?''

''କାହିଁକି ନୁହେଁ ? ନିଶ୍ଚୟ ।'' ହସି ହସି ଉତ୍ତର ଦେଲି ।

''ଯାହା ଶିଖିଥିବ, ସବୁତକ ପାଠ ?'' ପୁନର୍ବାର ତା'ର ନିରୀହ ପ୍ରଶ୍ନ ।

''ହଁ, ସବୁତକ ପାଠ ।''

''କ'ଣ ଏତେ ପାଠ ?'' ଏହା ପଚାରିବା ଅବସରରେ ସେ ଦୁଇ ବାହୁକୁ ପ୍ରସାରିତ କରି ଗୋଟିଏ ଟୋକେଇ ଆକାର କରି ଦେଖାଇଲା ।

''ନାଇଁ, ତାହାଠାରୁ ଆହୁରି ଅଧିକ ପାଠ ।''

''କେତେ ?''

''ଏତେ ।'' ଏହା କହି ତା'ର ଦୁଇ ବାହୁକୁ ଆହୁରି ପ୍ରସାରିତ କରିଦେଲି ଯାହା ଫଳରେ ତାହା ଗୋଟିଏ ବେତା ଆକାର ଧାରଣ କଲା ।

ଏତିକିରେ ସେ ହସିଉଠିଲା । ମୁଁ ବି ହସିଉଠିଲି । ବାପା-ମାଆ ଅତି ଆମୋଦପୂର୍ଣ୍ଣ ଭାବରେ ଆମ ଦୁହିଁଙ୍କ କଥୋପକଥନକୁ ଉପଭୋଗ କରୁଥିଲେ । ସେମାନେ ମଧ୍ୟ ହସିଉଠିଲେ । ମୋର ବିଦାୟ ମୁହୂର୍ତ୍ତରେ ଆମ ଘରର କରୁଣ ଅଙ୍ଗନ ବୁକୁରେ ହସର ମଲ୍ଲୀସ୍ତବକ କେତୋଟି ଛିଣ୍ଡିପଡ଼ିଲା ଯେମିତି ! ଅତି ଆକସ୍ମିକ ।

ପୂର୍ବରୁ ମାଆଙ୍କଠାରୁ ସଂଗୃହୀତ ଅର୍ଥରେ ସାନଭାଇଙ୍କ ପାଇଁ ମିଷ୍ଟାନ୍ନ ଦୋକାନରୁ ମୋଦକଟିଏ କିଣିକରି ହାତ ପାଖରେ ରଖିଥିଲି । ସେଇଟିକୁ ତାଙ୍କ ହାତକୁ ବଢ଼ାଇଦେଇ ତାଙ୍କ ସରୁ କଅଁଳ ଓଠଟିକୁ ଟେକିଦେଲି ଓ କହିଲି, ''ମୁଁ ଯାଉଛି ଭାଇ । ଫେରିଲେ ତୁମକୁ ପାଠ ପଢ଼ାଇବି । ତୁମେ ଦୁଷ୍ଟ ହେବ ନାହିଁ ।''

ମୋଦକଟି ପାଇ ସେ ଭାରି ଖୁସିଥିଲେ । ମୁଣ୍ଡ ହଲାଇ ମୋ' କଥାରେ ରାଜି ହେଲେ ।

ସେଦିନର ସେଇ ଦୃଶ୍ୟକୁ ଓ ବିଶେଷକରି ମୋ' ସାନଭାଇ ସଂଗ୍ରାମଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ପରବର୍ତ୍ତୀ ଜୀବନରେ ଭୁଲିପାରି ନ ଥିଲି । ହସ୍ତିନାପୁରକୁ ଆସିବା ପରେ ଭାଗ୍ୟବଳରୁ ମୋର ବହୁତ କିଛି ଉନ୍ନତି ଘଟିଲା ଜୀବନରେ । ନାନା ପ୍ରକାର ବିଦ୍ୟା ଶିକ୍ଷା କଲି । ହସ୍ତିନାପୁରର ମହାରାଜାଙ୍କ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନଙ୍କର ଜଣେ ପରମ ମିତ୍ର ହେଲି । ଅଙ୍ଗରାଜ୍ୟର ରାଜା ବି ହେଲି । ନାନାବିଧ ରାଜକୀୟ ଐଶ୍ୱର୍ଯ୍ୟରେ ହେଲି ପରିପୂର୍ଣ୍ଣ । ଯଥାସମୟରେ ସଂଗ୍ରାମଙ୍କୁ ହସ୍ତିନାପୁରକୁ ଡକାଇନେଇ ମୋର ବ୍ୟକ୍ତିଗତ ତତ୍ତ୍ୱାବଧାନରେ ଅସ୍ତ୍ରଶିକ୍ଷା ଦେଲି । ସଂଗ୍ରାମଜିତ୍ ନାଁରେ ସେ ଜଣେ ଅତିରଥୀ ଓ ମହାବୀର ହୋଇ ବାହାରିଲେ । ତାଙ୍କୁ ଅଙ୍ଗରାଜ୍ୟର ସୈନ୍ୟବାହିନୀରେ ଜଣେ ଉପଯୁକ୍ତ ପଦାଧିକାରୀ ଭାବରେ ନିଯୁକ୍ତ କଲି । କିନ୍ତୁ ହାୟ ! ସେ ଆଜି ନାହାନ୍ତି । କୌରବମାନଙ୍କ ଦ୍ୱାରା ମତ୍ସ୍ୟରାଜ ବିରାଟଙ୍କ ଗୋଧନ ଅପହରଣ ଅବସରରେ ସେ କୌରବପକ୍ଷରେ ଥାଇ ବୃହନ୍ନଳାରୂପୀ ଅର୍ଜୁନଙ୍କ ସହିତ ଲଢ଼ିଥିଲେ । ସେଇଠି ତାଙ୍କର ବୀରଗତି ହୋଇଗଲା ! ତାଙ୍କ ସ୍ୱର୍ଗତ ଆତ୍ମା ଶାନ୍ତି ପାଉ !

ଜଣଙ୍କ ପରେ ଜଣେ କରି ଏତେ ଏତେ ଆତ୍ମୀୟସ୍ୱଜନଙ୍କୁ ହରାଇ ମୁଁ ଆଜି ଏକାକୀ ବଞ୍ଚିରହିଛି ଭାଗ୍ୟହୀନ କର୍ଣ୍ଣ କେବଳ ମିତ୍ର ଦୁର୍ଯ୍ୟୋଧନଙ୍କ ଋଣ ଶୁଝିବାପାଇଁ । ଏବେ ସ୍ପଷ୍ଟ ଦେଖିପାରୁଛି ଯେ ଦୁର୍ଯ୍ୟୋଧନଙ୍କ ଜୟ ଏକାନ୍ତ ଅସମ୍ଭବ । କାରଣ ତାଙ୍କ ପାଖରେ ଧର୍ମ ନାହିଁ । ଅଥଚ ପାଣ୍ଡବମାନଙ୍କ ପାଖରେ ଧର୍ମ ଅଛି । ତେଣୁ ସେମାନଙ୍କ ଜୟ ସୁନିଶ୍ଚିତ । ଧର୍ମ ଯେଉଁଠି ଅଛି, କୃଷ୍ଣ ଅଛନ୍ତି ସେଇଠି । ଆଉ କୃଷ୍ଣ ଯେଉଁଠି ଅଛନ୍ତି ଜୟ ସେଠି ସୁନିଶ୍ଚିତ । ଏଇ ପ୍ରବାଦବାଣୀ ଅଚିରେ ସାକାର ହେବାକୁ ଯାଉଛି । ଯେଉଁ ପ୍ରିୟଜନମାନଙ୍କ ବୀରଗତିର ସ୍ମୃତିଚାରଣ କରି ମନେ ମନେ ଏବେ ବ୍ୟଥିତ ହେଉଛି, ବେଦନାକ୍ତ ଉଷ୍ଣ ନିଃଶ୍ୱାସ ଛାଡୁଛି, ମୁଁ ନିଜେ ଯେ ସେହି ଗତି ଆଡ଼କୁ ଧୀରେ ଧୀରେ ଆଗେଇଚାଲିଛି ତାହା

ମତେ ପରିଷ୍କାର ଦେଖାଯାଉଛି । କାରଣ ଅର୍ଜୁନଙ୍କ ବାଣରୁ ନିସ୍ତାର ନାହିଁ କଦାପି । ଯେଉଁ କୃଷ୍ଣ ମତେ ବୀରଗତି ଆଡ଼କୁ ଆଗେଇ ନେଉଛନ୍ତି, ତାଙ୍କୁ ମନେ ମନେ ବାରମ୍ବାର କାତର ନିବେଦନ କରୁଛି – ମୋର ଏଇ ଆତ୍ମକାହାଣୀଟି କହିସାରିବା ପର୍ଯ୍ୟନ୍ତ ସେ ଯେମିତି ମତେ ବଞ୍ଚାଇ ରଖନ୍ତି । ତାହା ଛଡ଼ା ଏଇ ଅନ୍ତିମଲଗ୍ନରେ ମୋର ଆଉ କିଛି କାମନା ନାହିଁ । ନାହିଁ ବି ଆଉ କିଛି ପ୍ରାପ୍ତିର ଲାଳସା । ସେଇତକ ଯଦି ମୁଁ ପୂର୍ଣ୍ଣଭାବରେ କହିଦେଇପାରିବି ତା'ହେଲେ ମୋ' ଜୀବନରେ ଯାହା କିଛି ବା ଅପ୍ରାପ୍ତିର ଅନୁଶୋଚନା ଅଛି, ତାହା ଆଜି ମହାପ୍ରାପ୍ତିର ତୁଷ୍ଟି ଓ ଶାନ୍ତିରେ ପରିଣତ ହୋଇଯିବ !

ଆରେ ! ପୁଣି ସେଇ ଭ୍ରମ । ପୁଣି ସେଇ ବାଚାଳତା ମୋ' ପରିବର୍ତ୍ତିତ ନୂତନ ଜୀବନର ଅୟମାରମ୍ଭ ହୋଇଛି କି ନାହିଁ, ମୁଁ ଯାଇ ପହଞ୍ଚିଲିଣି ଜୀବନର ଅନ୍ତିମ ଭାଗରେ । ଏହା ଭିତରେ ଡେଇଁଗଲିଣି ଅନେକ ଦଶନ୍ଧି । ଶୀଘ୍ର ଶୀଘ୍ର କାହାଣୀଟି ସାରିଦେବା ପାଇଁ ମୋ' ଅନ୍ତରରେ ଜାଗିଉଠୁଥିବା ବ୍ୟାକୁଳତା ଛଡ଼ା ଏହା ଆଉ କ'ଣ ବା ହୋଇପାରେ ? ମୁଁ ତେଣୁ ପୁଣି ଫେରିଯାଉଛି ପଛକୁ ହସ୍ତିନାପୁର ଉଦ୍ଦେଶ୍ୟରେ ଗୃହତ୍ୟାଗ କରିବାର ମୁହୂର୍ତ୍ତଟିକୁ ।

ଆଗରୁ କହିଛି, ସାନଭାଇ ସଂଗ୍ରାମଙ୍କୁ ମୋଦକଟିଏ 'ଲାଞ୍ଚ' ଦେଇ ଖୁସି କରାଇଦେଲି । ପରେ ପରେ ମାଆଙ୍କୁ ମୁଣ୍ଡିଆ ମାରି ଘୋଡ଼ାରେ ବସିଲି । ମୁଣ୍ଡିଆ ମାରିଲା ବେଳେ ମାଆ ମତେ ଟେକୁ ଉଠାଇନେଇ ପୁଣି ଥରେ ତାଙ୍କ ପଣତକାନିରେ ଜଡ଼ାଇ ରଖିଲେ ଓ ବାରମ୍ବାର ମୋର ଶିରଶ୍ଚୁମ୍ବନ କରି କହିଲେ, "ଭଗବାନ୍ ସୂର୍ଯ୍ୟଦେବତା ତୁମର ମଙ୍ଗଳ କରନ୍ତୁ ବାପା !" ଏହା କହି ସେ ମୋ' ସାରା ଦେହକୁ ତାଙ୍କ ସ୍ନେହଳ ହାତରେ ସାଉଁଳି ଦେବାକୁ ଲାଗିଲେ । ମତେ ଲାଗୁଥିଲା, ସତେଯେମିତି ତାଙ୍କର ଏକ ଆଶୀର୍ମୟ ଓ ସ୍ନେହଭରା ସ୍ପର୍ଶପାଇ ମୋର ସର୍ବାଙ୍ଗ ବଜ୍ର ଭଳି ଟାଣ ହୋଇଉଠୁଛି । ମାଆର ହାତଟି ସିନା କଅଁଳିଆ । କିନ୍ତୁ ତହିଁରେ ଅସୀମ ଶକ୍ତି ଭରିଦେଇଛନ୍ତି ଦେବତା । ତା'ର ପରଶ ସନ୍ତାନର ପ୍ରତିଟି ଅଙ୍ଗ-ପ୍ରତ୍ୟଙ୍ଗକୁ ବଜ୍ର ଭଳି ଟାଣ କରିଦେଇଥାଏ । କୌଣସି ଆଘାତ ସେହି ଦେହର କିଛି କ୍ଷତି କରିପାରି ନ ଥାଏ । ଅନ୍ତତଃ ଏଇ ଆତ୍ମବିଶ୍ୱାସ ଥାଏ ସନ୍ତାନ ଓ ମାଆ ଉଭୟଙ୍କ ମନରେ ।

ଘୋଡ଼ା ଧୀରେ ଧୀରେ ଆଗେଇଚାଲିଲା । କ୍ରମେ କ୍ରମେ ବଢ଼ିଉଠିଲା ତାହାର ପଦପାତ । ଗତି ହୋଇଉଠିଲା ଦ୍ରୁତତର । ତାହା ପରେ ସେ ଛୁଟିଲା ପବନଗତିରେ । ଗତି ଏଭଳି ପ୍ରଖର ଯେ କେତେବେଳେ କେମିତି ତାହାର କେତୋଟି ଅଙ୍ଗମାତ୍ର ଦେଖାଯାଉଥିଲା । ଚାଲିବାର ଅନୁଭବ ଆମର ଆସୁଥିଲା କେବଳ ତାହାର ପଦ-ଧ୍ୱନିରୁ । ଗଗନ-ପବନକୁ ମୁଖରିତ କରିଦେଇ ଗୁଞ୍ଜରିତ ହୋଇଉଠୁଥିଲା ତାହାର ପଦଧ୍ୱନି ଟପ୍...ଟପ୍...ଟପ୍... ଟପ୍... ସେଇ ଟାପୁ ଶବ୍ଦ ସହିତ ସମତାଳ ରକ୍ଷା କରି ମନର ଘୋଡ଼ା ମୋର ଛୁଟି ଚାଲିଥିଲା କାହିଁ କେତେ ଦୂରକୁ ! ଘୋଡ଼ାର ଲକ୍ଷ୍ୟସ୍ଥଳ ଥିବା ହସ୍ତିନାପୁରୀକୁ କେବଳ ନୁହେଁ । ବରଂ ତାହାକୁ ଅତିକ୍ରମ କରି କେଉଁ ସୁଦୂର ଚକ୍ରବାଳକୁ । ଅଥବା ଚକ୍ରବାଳକୁ ଭେଦକରି ଆହୁରି ଦୂରକୁ– ଅତି ଦୂରକୁ । କେବଳ ଆକାଶଛୁଆଁ ତ

ନୁହେଁ, ବରଂ ଆକାଶଚିରା ଥିଲା ତାହାର ଗତି । କେତେବେଳେ କେମିତି ଭାବୁଥାଏ, ମୋ' ମନର ଗୁଡ଼ିଟି ଏଇ ଯେଉଁ ଉଡ଼ି ଉଡ଼ି ଯାଉଛି, ତାହା କ'ଣ ନିରନ୍ତର ଏମିତି ଉଡ଼ି ଚାଲିଥିବ ମହାତ୍ତ୍ୱାକାଙ୍କ୍ଷାର ନୀଳ ଆକାଶରେ ? ଅଥବା ଉଡୁଥିବା ଅବସ୍ଥାରେ କଟିଯାଇ କଚାଡ଼ିହୋଇ ପଡ଼ିଯିବ କେଉଁ ପାହାଡ଼ର ଶିଳାକଙ୍କରମୟ ବୁକୁରେ ? ଆମ ଦୁଇ ପଟଦେଇ ସାଇଁ ସାଇଁ ବହୁଥିବା ପବନ ସତେଯେମିତି ମତେ କହିଯାଉଥିଲା – କେଜାଣି ?

ହୃଦୟରେ ମୋର ମହାତ୍ତ୍ୱାକାଙ୍କ୍ଷାର ଭରା ପ୍ରବାହ । ତାହା ସାଥେ ସାଥେ ମଝିରେ ମଝିରେ ଉଠୁଥିବା ସନ୍ଦେହର ଝଡ଼ ବି । ଏଇ ମିଶ୍ରିତ ପାଥେୟକୁ ଧରି ଆଗେଇ ଚାଲିଥାଏ ଲକ୍ଷ୍ୟସ୍ଥଳକୁ ଭବିଷ୍ୟତର ଇତିହାସ ସୃଷ୍ଟି କରିବାର ଅଭିଳାଷ ଧରି । ସୂତପୁତ୍ର କର୍ଣ୍ଣ ମୁଁ ବାମନଟିଏ ହୋଇ ମଧ୍ୟ ଜହ୍ନକୁ ଧରିବାର ନିବିଡ଼ କଠିନ ଆଶା ବା ଦୁରାଶାକୁ ଧରିରଖିଥାଏ !

ଅଶ୍ୱର ସ୍ୱତନ୍ତ୍ର ଚାଳକ କେହି ନ ଥାନ୍ତି । ଚାଳକ ପିତା ନିଜେ । ଭଲ ଭାବରେ ନ ହେଲେ ବି ଚଳନୀୟ ଭାବରେ କିଛିଟା ଅଶ୍ୱଚାଳନା ମୁଁ ଶିଖିସାରିଥାଏ ଚମ୍ପାପୁରୀରେ ଥାଇ । ପିତା କ୍ଳାନ୍ତ ହୋଇପଡ଼ିଲେ ମୁଁ ବି ମଝିରେ ମଝିରେ ଚାଳକର କର୍ତ୍ତବ୍ୟ ନିଭାଉଥାଏ କିନ୍ତୁ ପଥପ୍ରଦର୍ଶକ ଥାଆନ୍ତି ବାପା ନିଜେ । ମତେ ଖୁବ୍ କମ୍ ସମୟ ଓ ସୁଯୋଗ ଦେଉଥାନ୍ତି ଚାବୁକ ଓ ଘୋଡ଼ାର ଲଗାମ ଧରିବାପାଇଁ । ବାରମ୍ବାର ସାବଧାନୀ ବାଣୀ ଶୁଣାଉଥାନ୍ତି ''ସାବଧାନ ପୁତ୍ର ବସୁ, ସାବଧାନ । ଅତି ଦ୍ରୁତଗାମୀ ଅଶ୍ୱ ଯେ । ସାମାନ୍ୟ ଟିକିଏ ପାଦ ଅଙ୍ଗୁଳିର ସଂକେତ ପାଇଲେ ହିଁ ଧାଇଁଚାଲିବ ପବନ-ବେଗରେ । ଚାବୁକର ଆଘାତକୁ ଅପେକ୍ଷା କରିବ ନାହିଁ । ଯଦି କେବେ ତୁମକୁ ଚାବୁକ ମାରିବାକୁ ପଡ଼େ, ତେବେ ଅତି ସାବଧାନ ଥାଇ ତାହା କରିବ । ଜୋର୍‌ରେ ଆଘାତ କରିବ ନାହିଁ ।''

''ହଁ ବାପା ! ମୁଁ ଖୁବ୍ ସାବଧାନ ରହିଥିବି ।'' ମୋର ବିନୀତ ଉତ୍ତର ।

ଘୋଡ଼ା ଯେତେ ଦୂରକୁ ଦୂରକୁ ଯାଉଥାଏ, ଚମ୍ପାପୁରୀ ସେତେ ମୋ' ପଛରେ ପଡ଼ିଯାଉଥାଏ ଉଦୀୟମାନ ସୂର୍ଯ୍ୟଙ୍କୁ ଦେଖି ରାତ୍ରିର ଅନ୍ଧକାର ଦୂରେଇଗଲା ଭଳି । ଅଥବା ରଙ୍ଗମଞ୍ଚରେ ଗୋଟିଏ ଦୃଶ୍ୟର ଅଭିନୟ ସରିଗଲେ ତାହାର ଯବନିକାଟି ପଡ଼ିଗଲା ଭଳି । ପଛରେ ପଡ଼ିଯାଉଥାଏ ମୋ' ବାଲ୍ୟ-କୈଶୋର ଜୀବନର ସ୍ମୃତିସଜଳ ଦିନଗୁଡ଼ିକ । ଗଙ୍ଗାକୂଳର ଚମ୍ପାଫୁଲର ଗନ୍ଧରେ ମହକି ଉଠୁଥିବା ପବନ । ତାହାର ତୁଠ ପଥର । ପୁଣି ସୂର୍ଯ୍ୟମନ୍ଦିରର ସଂଧ୍ୟାକାଳୀନ ଘଣ୍ଟିଧ୍ୱନି । ଆଉ ରହିଯାଉଥାଏ ସେଇ ଉନ୍ମୁକ୍ତ ପ୍ରାନ୍ତର ଯେଉଁଠି ବସୁଥିଲା ଆମ ମିଛିମିଛିକା ରାଜସଭା ଓ ସେହି ବିରାଟ ଶିଳାଖଣ୍ଡ ଯାହା ଥିଲା ମୋର ମିଛିମିଛିକା ସିଂହାସନ । ଆଃ ! କି ସୁମଧୁର ସେଇ ସ୍ମୃତି ! ତାହାରି ପହ୍ନାରେ ବାରମ୍ବାର ମୁଣ୍ଡିଆ ମାରି ବାଛୁରୀଟିଏ ଭଳି ତାହାର ମିଠା-ମିଠା ଦୁଧକୁ ପିଇବାରେ ଯେ କି ଆନନ୍ଦ !

ପରବର୍ତ୍ତୀ ଜୀବନରେ ମତେ ଯେତେବେଳେ କିଛି ନା କିଛି ନୈରାଶ୍ୟ ଘୋଟି ଆସୁଥିଲା, ସେତେବେଳେ ସେଇ ଦୁଧକୁ ଚଁ ଚଁ କରି ପିଇଯାଇ ଅଶେଷ ଶାନ୍ତି ପାଇପାରୁଥିଲି ମୁଁ ।

ସେହି ସବୁକିଛିକୁ ପଛରେ ପକାଇଦେଇ ଆଗେଇବାକୁ ଲାଗିଲି । ବନଭୂମିରେ ନିର୍ବୋଧ ଓ ସ୍ୱଚ୍ଛନ୍ଦ ଗତି କରୁଥିବା ହାତୀଟି ସତେଯେମିତିକି ମୋହରେ ପଡ଼ିଯାଇ ଆପେ ଆପେ ସୁନାର ଶାଙ୍କୁଳିରେ ବନ୍ଧା ହେବାପାଇଁ ଧରାଦେଲା !

ବାସ୍ତବିକ ବଡ଼ ବିଚିତ୍ର ଏ ଜୀବନର ଗତି ! ପୁଣି ଆହୁରି ବିଚିତ୍ର ଓ ଅଦ୍ଭୁତ ମଣିଷ-ଜୀବନର ମହତ୍ତ୍ୱାକାଙ୍କ୍ଷାର ମୋହ ! ପ୍ରାପ୍ତି ଓ ଅପ୍ରାପ୍ତି ଉଭୟ ବ୍ୟଥାପ୍ରଦ । ତଥାପି ମୋହଗ୍ରସ୍ତ ମଣିଷ ସେଇ ମହତ୍ତ୍ୱାକାଙ୍କ୍ଷାର ପଛରେ ଧାଇଁଥାଏ । ମୁଁ ମଧ୍ୟ ମନ୍ତ୍ରମୁଗ୍ଧ ମୃଗ ଭଳି ଧାଇଁ ଚାଲିଥିଲି ଅନୁରୂପ ଭାବରେ ।

## ନଅ

ଆମ ଅଶ୍ୱଟି ଥିଲା ଅତ୍ୟନ୍ତ ଦ୍ରୁତଗାମୀ । ଦୀର୍ଘ ପଥର ଯାତ୍ରା ଲାଗି ବାଛି ବାଛି ବାପା ତାହାକୁ ରାଜକୀୟ ଅଶ୍ୱଶାଳାରୁ ଚୟନ କରି ନେଇଥିଲେ । ଆମକୁ ସେ ଦଶ ଦିନ ସମୟ ମଧ୍ୟରେ ସୂର୍ଯ୍ୟ ବୁଡ଼ିବା ପୂର୍ବରୁ ହସ୍ତିନାପୁରରେ ପହଞ୍ଚାଇଦେଲା । ହୁଏତ ଅନ୍ୟ ଏକ ସାଧାରଣ ଅଶ୍ୱପାଇଁ ଏହି ଦୀର୍ଘପଥକୁ ଅତିକ୍ରମ କରିବା ନିମିତ୍ତ ଏକ ମାସ କିମ୍ବା ତାହାଠାରୁ ଅଧିକ ସମୟ ଲାଗିଥାନ୍ତା । ଗୋଟିଏ ଆମ୍ରକୁଞ୍ଜକୁ ଅତିକ୍ରମ କରିବା ପରେ ପରେ ହିଁ ହସ୍ତିନାପୁରର ତୁଙ୍ଗ ସୌଧମାଳାରୁ ଝଟକିଉଠୁଥିବା ରୂପଶ୍ରୀ ମୁଁ ଦେଖିବାକୁ ପାଇଲି । ଯେଉଁ ହସ୍ତିନାପୁରକୁ ବହୁଦିନ ଧରି ବାପା ଓ ଅନ୍ୟାନ୍ୟ ଗୁରୁଜନମାନଙ୍କ ମୁହଁରୁ ଶୁଣିଥିଲି, ତାହାକୁ ଏବେ ସ୍ୱଚକ୍ଷୁରେ ଦେଖିବାକୁ ପାଇଲି । କୈଶୋରାଞ୍ଚଳ ମନରେ କୌତୂହଳର ଲହଡ଼ି ମୁଣ୍ଡ ପିଟିବାକୁ ଲାଗିଲା । ଛାତିତଳେ ଅଦମ୍ୟ ଆଗ୍ରହ— କେମିତି ଅତି ଶୀଘ୍ର ହସ୍ତିନାପୁରର ଭୂମିରେ ପାଦ ଦେବି ! ତାହାର ସ୍ପର୍ଶଟିକୁ ଅନୁଭବ କରିବି । ବୀରରକ୍ତରେ ସିକ୍ତ ଭୂମିଟିର ପ୍ରାଣଭରା ସୁଗନ୍ଧର ସ୍ପନ୍ଦନକୁ ବୁକୁତଳେ ବହି ଯେଉଁ ପବନ ଦୋହଲି ଦୋହଲି ଦୋଳି ଖେଳୁଛି ତାହାକୁ ଆଘ୍ରାଣ କରିବି ! ଏମିତି କେତେ କ'ଣ ଆଶା ମନରେ ଗଜୁରି ଉଠୁଥିଲା ।

ଏଇ ତେବେ ସେହି ହସ୍ତିନାପୁର । ଆର୍ଯ୍ୟାବର୍ତ୍ତର ବିଖ୍ୟାତ ନଗରୀ ହସ୍ତିନାପୁର । ଏହାର ପ୍ରତିଷ୍ଠାତା ଥିଲେ ମହାରାଜ ହସ୍ତୀ । ତାଙ୍କ ପ୍ରପୌତ୍ର ଥିଲେ କୁରୁ ଯେ କି ଜଣେ ସମଧିକ ପ୍ରତାପୀ ମହାରାଜା । ତାଙ୍କ ପରଠାରୁ ଏହି ରାଜବଂଶ ପରିଚିତ ହେଲା କୁରବଂଶ ନାମରେ । ଏହା ପୂର୍ବରୁ ଭରତ ବଂଶ ନାମରେ ପରିଚିତ ଥିଲା । ଜଣଙ୍କ ପରେ ଜଣେ ମହାରାଜା ଏହି ନଗରୀର ଅନେକ କିଛି ଉନ୍ନତି ସାଧନ କରିଛନ୍ତି । ଏହାର ପରିସୀମାକୁ ବଢ଼ାଇଛନ୍ତି । ଏହାର ଐଶ୍ୱର୍ଯ୍ୟଭଣ୍ଡାରକୁ ମଧ୍ୟ ବଢ଼ାଇଛନ୍ତି । ବିଶେଷ କିଛି ଉନ୍ନତି ଘଟିଥିଲା ମହାରାଜ ଶାନ୍ତନୁଙ୍କ ଶାସନ କାଳରେ । ଏ ସବୁର ମୂକସାକ୍ଷୀ ହୋଇ ରହିଛି ଗଙ୍ଗାନଦୀ । ହସ୍ତିନାପୁରୀ କେବଳ ନିର୍ବାକ୍ ନିଷ୍ପନ୍ଦ ଭାବରେ ଠିଆହୋଇ ରହିଛି ତାହା କୂଳରେ ନିଜ ପ୍ରତିବିମ୍ବକୁ ତାହାର ସ୍ୱଚ୍ଛ ଜଳରେ ନିରନ୍ତର ଦେଖି ଦେଖି । କେତେ ରାଜା-ମହାରାଜା ଆସିଛନ୍ତି-ଯାଇଛନ୍ତି । କିନ୍ତୁ ହସ୍ତିନାପୁର ଠିକ୍ ସେମିତି ଠିଆ ହୋଇରହିଛି । ଆଉ ଠିକ୍

ସେମିତି ନିରବଛିନ୍ନ ଭାବରେ ବହିଚାଲିଛି ଗଙ୍ଗାନଦୀ କାଳର ଭ୍ରୂକୁଟିକୁ ଉପେକ୍ଷା କରି ! ବଡ଼ ବିଚିତ୍ର ଏ ରାଜା-ମହାରାଜାମାନଙ୍କର ଲୀଳାଖେଳ । ଆଉ କାହାଠାରୁ ବି ଅଧିକ ବିଚିତ୍ର ମଣିଷ ମନର ଯଶ-କୀର୍ତ୍ତି ଲାଗି ଦୁର୍ଦ୍ଦମନୀୟ ଲାଳସା ।

ଜାଣିପାରୁ ନ ଥିଲି ହଠାତ୍ ମୋ' କିଶୋର ମନରେ ଏମିତି ଦାର୍ଶନିକତା ଛୁଇଁଲା କାହିଁକି ? ସବୁଆଡୁ ଧ୍ୟାନ ଫେରାଇଆଣି ହସ୍ତିନାପୁର ଆଡ଼କୁ କେବଳ ଚାହିଁରହିଲି । କାରଣ ମଣିଷ ଜୀବନର କ୍ଷଣିକତା ବିଷୟ ଚିନ୍ତା କଲେ ମନରେ ଅଯଥା ବୈରାଗ୍ୟଭାବ ଆସିବ ଓ ମୁଁ ଯେଉଁ ସିଦ୍ଧି ଚାହୁଁଛି, ତାହା ଏକାନ୍ତ ଅସମ୍ଭବ ହୋଇଉଠିବ । ମୋର ଧାରଣା ଦର୍ଶନଜଡ଼ ଜୀବନ ଅପେକ୍ଷା କର୍ମଚଞ୍ଚଳ ଜୀବନ ଅଧିକ ଶ୍ରେୟସ୍କର ।

ଲକ୍ଷ୍ୟସ୍ଥଳ ପାଖେଇ ଯିବାରେ ଅଶ୍ୱର ଗତି ତୀବ୍ରତର ହୋଇଉଠୁଥାଏ । ଶେଷରେ ତାହା ନଗର-ସୀମାର ଅତି ପାଖରେ ଆସି ପହଞ୍ଚିଲା ।

ସୂର୍ଯ୍ୟ ବୁଡ଼ି ନ ଥାନ୍ତି । ତାଙ୍କ ବୁଡ଼ିବାକୁ କିଛି ସମୟ ବାକି ଥାଏ । ଗଙ୍ଗାଜଳ ଢେଉରେ କନକ ରଶ୍ମିଜାଲ ଚିକ୍ ଚିକ୍ ମାରୁଥାଏ । ରୋହୀ କିମ୍ବା ସେହି ଜାତିର ବଡ଼ ମାଛମାନେ କେତେବେଳେ କେମିତି ଜଳ ଉପରକୁ ଡିଆଁ-ଡେଇଁ କରୁଥାନ୍ତି । କନକ ସୂର୍ଯ୍ୟରଶ୍ମି ସହିତ ଖେଳି ଖେଳି ବେଶି ମାତ୍ରାରେ ନୃତ୍ୟପାଗଳ ହୋଇଉଠୁଥାନ୍ତି ଶଫରୀମାନେ । ଏଇ ସଂସାରର ତ ଏଇଆ ହିଁ ରୀତି । ଛୋଟ ଲୋକମାନେ ବେଶି ମୁଖର । ଅଥଚ ବଡ଼ ଲୋକମାନେ ବେଶିଟା ନୀରବ-ଗମ୍ଭୀର ।

ଦେଖିଲି, ଅଶ୍ୱପାଳମାନେ ସେମାନଙ୍କ ଅଶ୍ୱମାନଙ୍କୁ ଛାଡ଼ିଦେଇଥାନ୍ତି ଗଙ୍ଗାତୀରର ଦୂର୍ବା ପ୍ରାନ୍ତରରେ ଚରିବାଲାଗି । ପିଠିରେ ବସିଥିବା କୁଆ-କଜଳପାତି ଆଦି ଚଢ଼େଇମାନଙ୍କୁ ଘଉଡ଼ାଇ ଦେବାଲାଗି ସେମାନଙ୍କ ପୁଚ୍ଛଟିମାନ ଚାମରଚାଳନର ଢଙ୍ଗରେ ଚଳଚଞ୍ଚଳ ଗତିରେ ବୁଲିଆସୁଥାଏ ଉଭୟ ପଟେ । ଆଉ କେତେକ ଅଶ୍ୱପାଳ ସେମାନଙ୍କ ଅଶ୍ୱମାନଙ୍କୁ ଜଳପାନ କରାଇବା ଉଦ୍ଦେଶ୍ୟରେ ଅଡ଼େଇ ନେଉଥାନ୍ତି ଗଙ୍ଗାତୀରକୁ । ହସ୍ତୀପାଳମାନେ ହସ୍ତୀମାନଙ୍କୁ ଗାଧୋଇ ଦେଉଥାନ୍ତି ତାହାରି ଜଳରେ । ସ୍ତ୍ରୀଲୋକମାନେ କଳସରେ ପାଣି ଭରି ନିଜ ନିଜ ଘରକୁ ଫେରୁଥାନ୍ତି ତାହାର ତୀରରୁ । କୃଷିଜୀବୀମାନେ ନିଜ କ୍ଷେତରେ ଶ୍ରମଜର୍ଜର ଦିନଟି ବିତାଇ ଏବେ ଫେରିଆସୁଥାନ୍ତି ଘରକୁ । ନୀଡ଼ମୁଖୀ ବିହଗମାନଙ୍କ କଳଗୁଞ୍ଜନ ଗଗନ-ପବନକୁ ମୁଖରିତ କରିଦେଉଥାଏ । ନଗରର ପାଳିତ ହଂସମାନେ ସାରା ଦିନ ଗଙ୍ଗାରେ ବିତାଇ ଏବେ ଦିନ ଶେଷରେ ଫେରି ଆସୁଥାନ୍ତି ନିଜ ଆଶ୍ରୟସ୍ଥଳୀକୁ ସଧୀର ଗତିରେ । ସୂର୍ଯ୍ୟଦେବଙ୍କ ଭଳି ସମସ୍ତେ ସତେଯେମିତି ଥାଆନ୍ତି ଶ୍ରାନ୍ତ-କ୍ଲାନ୍ତ । ସମସ୍ତେ ଏବେ ଆସନ୍ନ ସଂଧ୍ୟା ଓ ତାହା ପରେ ଆସିବାକୁ ଥିବା ରାତ୍ରିର ଅପେକ୍ଷାରେ ଥାଆନ୍ତି ତୃଷିତ ମନନେଇ ଟିକିଏ ବିଶ୍ରାନ୍ତି ଓ ଶାନ୍ତି ପାଇବାରେ ଆଶାୟୀ । ମୁଁ, ପିତା ଓ ଆମ ଦ୍ରୁତଗାମୀ ଅଶ୍ୱ – ଆମେ ସମସ୍ତେ ଅନୁରୂପ ଭାବରେ ଆମ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଉପରେ ଥାଇ ସେଥିଲାଗି ହୋଇଉଠୁଥିଲୁ ବ୍ୟାକୁଳ ।

ପ୍ରକୃତରେ ଏଇ ଦୀର୍ଘପଥର ଯାତ୍ରାଟି ମୋ'ପାଇଁ ଥିଲା ଖୁବ୍ ପୀଡ଼ାଦାୟକ । କେବଳ ଯାହା ହସ୍ତିନାପୁରକୁ ନୂଆ କରି ଦେଖିବାର ଅଭୀପ୍ସା ଓ ସେଠାରେ ଥାଇ ଶିକ୍ଷା ପାଇବାର କୌତୂହଳ ସେଇ ପୀଡ଼ାକୁ କିଛିଟା ଦୂର କରିଦେଉଥାଏ ।

ସୂର୍ଯ୍ୟଦେବ ହସ୍ତିନାପୁରର ରାଜପ୍ରାସାଦର ଚୂଡ଼ାରେ ରଶ୍ମିଜାଲର ଶେଷ ଚୁମ୍ବନରେଖା ଆଙ୍କିଦେଇ ଅସ୍ତ ହେଲେ । ଆମ ଅଶ୍ୱଟି ସେତେବେଳକୁ ହସ୍ତିନାପୁରର ମହାଦ୍ୱାରରେ ପହଞ୍ଚି ସାରିଥିଲା । ଦ୍ୱାରପାଳମାନେ ଆଦର-ସମ୍ମାନ ସହିତ ମୁଣ୍ଡ ନୁଆଁଇ ପିତାଙ୍କୁ ଅଭିନନ୍ଦନ କଲେ । ଆମେ ନଗର ମଧ୍ୟରେ ପଶିଲୁ । ଅଶ୍ୱଟି ଆଉ କେଉଁଠି ନ ରହି ଚିରଭ୍ୟସ୍ତ ଶିକ୍ଷାକୁ ଅନୁସରଣ କରି ଆପେ ଆପେ ଚାଲିଗଲା ଅଶ୍ୱଶାଳାକୁ । ପିତା ଓ ମୁଁ ଓହ୍ଲାଇପଡ଼ିଲୁ ଅଶ୍ୱପୃଷ୍ଠକୁ । ସଙ୍ଗେ ସଙ୍ଗେ ଅଶ୍ୱପାଳ ଅଶ୍ୱଟିର ରକ୍ଷଣାବେକ୍ଷଣର ଦାୟିତ୍ୱ ଗ୍ରହଣ କଲା । ପିତା ତାହାକୁ ଆଦରରେ ଆଉଁଶିଦେଇ ଫେରିଆସିଲେ ।

ଆମେ ଦୁହେଁ ଚାଲିଲୁ ପିତାଙ୍କ ବାସସ୍ଥାନ ଅଭିମୁଖରେ । ତାହାର ଅବସ୍ଥିତି ଥିଲା ଅଶ୍ୱଶାଳାର ଅଳ୍ପ କିଛି ଦୂରରେ । ରାତିଟା ବିଶ୍ରାମ ନେଲୁ ।

ସେତେବେଳେ ରାଜଭବନସମେତ ସାରା ହସ୍ତିନାପୁରୀ ଧୀରେ ଧୀରେ ଆଲୋକିତ ହୋଇଉଠୁଥାଏ । ଆଉ କିଛି ସମୟ ପରେ ହୁଏତ ହୋଇଉଠିବ ବହୁଳ ଭାବରେ ଆଲୋକିତ । କିନ୍ତୁ ସେଇ ଜ୍ୟୋତିର ବନ୍ୟାକୁ ଦେଖିବାର ସ୍ପୃହା କିମ୍ବା ଧୈର୍ଯ୍ୟ ମୋର ନ ଥାଏ । ମୁହଁ ହାତ ଧୋଇ ମାଆ ଦେଇଥିବା ଛତୁରୁ କିଛି ଖାଇ ଶେଯ ଧରିଲି । ଦୀର୍ଘ ପଥଯାତ୍ରାର କ୍ଳାନ୍ତି ପରେ ସେଇ ନିଦ୍ରା ଥିଲା ମୋ'ପାଇଁ ଅତ୍ୟନ୍ତ ସୁଖଦ ।

## ଦଶ

"ବଡ଼ ଭାଇ ଅଛ ? ଅଧିରଥଭାଇ ଘରେ ଅଛ ?" ପରଦିନ ସକାଳୁ ସକାଳୁ ଗୋଟିଏ ସ୍ନେହସଜଳ ସ୍ୱର ଆମ ଦ୍ୱାରରେ ଶୁଣାଗଲା । ସେତେବେଳକୁ ଆମେ ଶେଯ ଛାଡ଼ି ସାରିଥିଲୁ ଓ ନିତ୍ୟକର୍ମ ମଧ୍ୟ ବଢ଼ାଇ ସାରିଥିଲୁ । ପିତା ପାକକାର୍ଯ୍ୟରେ ଲାଗିଥିଲେ । ମୁଁ ତାଙ୍କୁ ସାହାଯ୍ୟ କରୁଥିଲି ।

ଏଇ ଡାକ ଶୁଣିଲାବେଳେ ମୁଁ ରୁଟି କରିବା ଲାଗି ଯବ-ଚୂନା ଦଳୁଥିଲି । କାମଟି ମାଆଙ୍କ ପାଖରୁ ଶିଖି ସାରିଥିଲି । ତେଣୁ ଏହା କରିବାରେ ମୋ'ପାଇଁ ଆଦୌ ଅସୁବିଧା ନ ଥିଲା । ଦରିଦ୍ର ସୂତପରିବାରର ଲୋକ ଆମେ । ନିର୍ଦ୍ଧନ । ଦାସ-ଦାସୀ ରଖିବାରେ ନିତାନ୍ତ ଅକ୍ଷମ । ତେଣୁ ନିଜ କାମ ନିଜେ ହିଁ କରିବାକୁ ହେବ । ବାପା ଏମିତି କରି କରି ବୁଢ଼ା ହେଲେଣି । ସମ୍ଭବତଃ ମୁଁ ବି ଏଇଆ କରି କରି ବୁଢ଼ା ହେବି, ଯଦି ଦୈବାତ୍ ମୋ' ଭାଗ୍ୟରେ କିଛି ପରିବର୍ତ୍ତନ ନ ଆସେ । ଭାବୁଥାଏ, ସତେ କ'ଣ ଏଭଳି ପରିବର୍ତ୍ତନ ଆସିବ ? ମୁଁ ସୁଯୋଗ୍ୟ ମଣିଷଟିଏ ହୋଇ ଠିଆ ହେବି ଜଗତ ଆଗରେ ? ମଥା ମୋର ଚିରଉନ୍ନତ ରହିବ ସମାଜ ଆଗରେ— ବିଶେଷକରି ସେହିମାନଙ୍କ ଆଗରେ ଯେଉଁମାନେ ମତେ ସୂତପୁତ୍ର କହି ଘୃଣାପୂର୍ଣ୍ଣ ଚକ୍ଷୁରେ ଦେଖୁଛନ୍ତି ? କେଜାଣି ? ମନରେ ମୋର ଦ୍ୱନ୍ଦ୍ୱ ।

ପିତା ଘର ଭିତରୁ ଥାଇ ଉତ୍ତର ଦେଲେ, "ଅଛି ଭାଇ ସଂଜୟ । ଭିତରକୁ ଆସ । ଦ୍ୱାର ଖୋଲା ଅଛି ।" ତାହା ପରେ ସେ ହାତ ଧୋଇ ଆଗନ୍ତୁକଙ୍କୁ ଅଭିନନ୍ଦନ କରିବାପାଇଁ ଆଗେଇ ଆସିଲେ । ମତେ ମଧ୍ୟ ସଂକେତ ଦେଲେ ଆସିବାକୁ । ମୁଁ ବି ଆସିବା ପାଇଁ ହାତ

ଧୋଇବାକୁ ଉଠିଲି । ଉଭୟ ପରସ୍ପରଙ୍କୁ ଭେଟି କୋଳାକୋଳି ହେଲେ । ତାହା ପରେ ପିତାଙ୍କ ଅନୁରୋଧରେ ସେ ତୃଣାସନଟିରେ ବସିଲେ ।

ବୁଝିଗଲି, ଏଇ ତା'ହେଲେ ଗବଲ୍‌ଗଣଙ୍କ ପୁତ୍ର ସାରଥିବର ସଂଜୟ ଯାହାଙ୍କ କଥା ମତେ ପିତା ବାରମ୍ବାର କହିଥାନ୍ତି । ଯେ ତ ଖାଲି ସାରଥି ନୁହନ୍ତି । ମହାଜ୍ଞାନୀ ମଧ୍ୟ । ମହାମନ୍ତ୍ରୀ ବିଦୁରଙ୍କ ଭଳି ମହାରାଜାଙ୍କର ଜଣେ ଚତୁର ଓ ସମର୍ଥ ଉପଦେଷ୍ଟା ।

''ତୁମର ସବୁ ଭଲ ତ ସଂଜୟ ?'' ପିତା ପଚାରିଲେ ।

''ସବୁ ଭଲ ଅଧିରଥଭାଇ । ଆଉ ତୁମ ଚମ୍ପାପୁରୀ ଖବର ? ଭାଉଜ କେମିତି ଅଛନ୍ତି ?''

''ସମସ୍ତ କୁଶଳ-ମଙ୍ଗଳ ଭାଇ । ସମସ୍ତେ ଭଲରେ ଅଛନ୍ତି ।''

''ଶୁଣିଲି, ତୁମେ କାଲି ଆସି ପହଞ୍ଚିଲ । ସାଙ୍ଗରେ ବଡ଼ପୁଅଙ୍କୁ ନେଇ ଆସିଛ । କ'ଣ ନାଁଟି ତାଙ୍କର ? କ...କ...'' ମୋ' ନାଁଟି ତାଙ୍କର ମନେପଡ଼ିଲା ନାହିଁ । ଅଟକିଗଲେ ମଝିରେ ।

''କର୍ଣ୍ଣ'' ପିତା ମନେ ପକାଇଦେଇ କହିଲେ । ପୁଣି କହିଲେ, ''ମୁଁ ତାଙ୍କୁ କହିଛି ଏଠିକି ଆସିବା ପାଇଁ । ଚିହ୍ନା କରାଇଦେବି ।'' ମୋର ଟିକିଏ ଆସିବାରେ ବିଳମ୍ବ ହେବାର ବାପା ଅତିଷ୍ଠ ହୋଇଉଠିଲେ ଓ ବଡ଼ପାଟିରେ ଡାକିଲେ, ''ବାପା ବସୁ ! କହିଲି ପରା ଶୀଘ୍ର ଆସ ବୋଲି । ଏତେ ଡେରି କରୁଛ କାହିଁକି ?'' ତାହା ପରେ ମୋ' ବିଳମ୍ବିତ ରୀତି ଉପରେ ମନ୍ତବ୍ୟ ଦେବାକୁ ଯାଇ କହିଲେ, ''ବସୁ ଭାରି ଲାଜୁଆ ପିଲା । ସେଥିପାଇଁ ଏତେ ଡେରି-ଡେରି କରୁଛନ୍ତି ।''

''ମୋ' ପାଖରେ ଲାଜ କ'ଣ ? ମୁଁ ପରା ତାଙ୍କ କକା । ତୁମରି ସମାନ ବଡ଼ଭାଇ । ଆଚ୍ଛା, ବସୁ କ'ଣ ତାଙ୍କର ଆଉ ଗୋଟିଏ ନାଁ ?'' ସେ କହିଲେ ଓ ପିତାଙ୍କ ଆଡ଼କୁ ଉତ୍ତର ଅପେକ୍ଷାରେ ଚାହିଁ ରହିଲେ ।''

''ହଁ, ଭାଇ ସଂଜୟ । ପ୍ରକୃତ ନାଁ କର୍ଣ୍ଣ । ବସୁ ଡାକ ନାଁ । ଆଉ ଗୋଟିଏ ବି ଡାକ ନାଁ ଅଛି, ବୃଷ ।''

''ବାଃ ! ଭାରି ଚମତ୍କାର । ସବୁ ନାଁ ଅତି ସୁନ୍ଦର ଓ ଚମତ୍କାର ।''

ପ୍ରକୃତରେ ମୋର ଆସିବାର ଟିକିଏ ଡେରି ହୋଇଯାଇଥିଲା । ମୁଁ ଘର ଭିତରେ ଥାଇ ଲୁଗା ବଦଳାଉଥିଲି । ଭଲ ଓ ପରିଷ୍କାର ଲୁଗା ପିନ୍ଧି ଆଗନ୍ତୁକଙ୍କ ପାଖକୁ ଆସିବାପାଇଁ ଚାହୁଁଥିଲି । କେମିତି ନ ଚାହିଁଥାନ୍ତି ଯେ ? ଆଗନ୍ତୁକ ଆଉ କେହି ନୁହନ୍ତି । ସେ ହେଉଛନ୍ତି, ମହାରାଜଙ୍କ ପ୍ରିୟ ସାରଥି ଓ ମୋର ଗୁରୁଜନ ସମାନ । ତାଙ୍କୁ ପୁଣି ପ୍ରଥମ କରି ଦେଖୁଛି । ମଣିଷର ରୁଚିବୋଧ ବୋଲି ଗୋଟାଏ ଜିନିଷ ତ ଅଛି । ସତ କହୁଛି, ଏଇ ରୁଚିବୋଧ ମୋ' ପ୍ରତିଟି ରକ୍ତବିନ୍ଦୁରେ ଭେଦି ଯାଇଥିବା ଭଳି ମତେ ଲାଗେ । ଏହି ରୁଚିବୋଧର କାରଣରୁ ହିଁ ମୁଁ ଖରାପ ପିଲାମାନଙ୍କ ସାଙ୍ଗରେ ମିଶିପାରେ ନାହିଁ । ମୋର ଏଇ ସହଜାତ ପ୍ରବୃତ୍ତି ହେତୁ ସମସ୍ତଙ୍କ ନେତା ହେବାକୁ ଚାହେଁ । ସୂତପୁତ୍ର ବୋଲି ହୀନମ୍ମନ୍ୟତାର

ଅନ୍ଧକାରରେ ପଡ଼ି ମହତ୍ତ୍ୱାକାଙ୍କ୍ଷାର ନିର୍ମଳ ଆଲୋକକୁ ମରିଯିବାକୁ ଦିଏ ନାହିଁ । ମତେ ଲାଗେ, ମୁଁ ଯେମିତି ସମସ୍ତଙ୍କଠାରୁ ପୃଥକ୍ ।

ପିତା ଆଉ ଥରେ ମତେ ଡାକିଲେ । ତରବର ହୋଇ ବାହାରିପଡ଼ିଲି । ପିତା ସଂକେତ ଦେବା ପୂର୍ବରୁ ଆଗନ୍ତୁକଙ୍କୁ ମୁଣ୍ଡ ଲଗାଇ ପ୍ରଣାମ କଲି ।

''ଆୟୁଷ୍ମାନ୍ ଭବ ବତ୍ସ !'' ଏହା କହି ଆଗନ୍ତୁକ ମତେ ଟେକି ଉଠାଇଦେଲେ ଓ ନିଜ କୋଳରେ ନେଇ ବସାଇଲେ । ମୋ' ଦେହ ସାରା ଆଉଁଶିଦେବା ଅବସରରେ ସେ ମୋ' ଜନ୍ମଜାତ କୁଣ୍ଡଳ ଦିଓଟିକୁ ଓ ଅଭେଦ୍ୟ କବଚଟିକୁ ପରୀକ୍ଷା କରିନେଉଥିଲେ । ପିତା ଏହା ଭିତରେ ମତେ ସଂଜୟକକାଙ୍କ ସହିତ ପରିଚିତ କରାଇଦେଲେ ।

''ବଡ଼ ଆଶ୍ଚର୍ଯ୍ୟ !'' ତାଙ୍କର ସଚକିତ ସଂକ୍ଷିପ୍ତ ମନ୍ତବ୍ୟ ।

''କେଉଁ କଥା କହୁଛ ଭାଇ ସଂଜୟ ?'' ବାପାଙ୍କ ପ୍ରତିପ୍ରଶ୍ନ ।

''ଏଇ, ମୋ' ପୁତୁରା କର୍ଣ୍ଣଙ୍କ କବଚ-କୁଣ୍ଡଳ କଥା ।''

''ମତେ ବି ତ ଆଶ୍ଚର୍ଯ୍ୟ ଲାଗେ । ତାହା ଜନ୍ମଜାତ ।''

''ହଁ, ସେମିତି ତ ଜଣାପଡୁଛି । ବିଧାତାଙ୍କର ଏକ ଅଦ୍ଭୁତ-ବିଚିତ୍ର ସୃଷ୍ଟି ।''

''ଏଇ ଅଭେଦ୍ୟ କବଚ ଯୋଗରୁ ତ ପୁଅ ମୋର ଅନେକ ବିପଦରୁ ବଞ୍ଚିଯାଇଛନ୍ତି । ନ ହେଲେ ଆମ ଗାଁର କାର୍ତ୍ତିକୋତ୍ସବ ବେଳେ ଯାହା ଘଟିଥିଲା ନା ।''

ପିତା ସଂଜୟକକାଙ୍କଠାରୁ କିଛି ଉତ୍ସୁକ ପ୍ରଶ୍ନ ଆଶା କରୁଥିଲେ । ତାହା ପରେ ସେ ମୋର ଅଭେଦ୍ୟ କବଚର କାହାଣୀ କହିଥାନ୍ତେ ତୃପ୍ତିଭରା ହୃଦୟ ନେଇ । ପୁତ୍ର ପାଇଁ ପିତାଙ୍କ ହୃଦୟ କେତେ ଉଦାର, କେତେ ସ୍ନେହୋଚ୍ଛଳ ସତେ ! ପୁତ୍ରର ବିନ୍ଦୁଏ ମାତ୍ର ସିଦ୍ଧିରେ ପିତୃହୃଦୟରେ ସିନ୍ଧୁଏ ଆନନ୍ଦ ଉଛୁଳିଉଠେ ! ମାତୃସୃଷ୍ଟି ଭଳି ବିଧାତାଙ୍କର ପିତୃସୃଷ୍ଟି ମଧ୍ୟ ବିଚିତ୍ର । କେହି କାହାରିଠାରୁ ବଡ଼ ନୁହନ୍ତି କି ସାନ ନୁହନ୍ତି ।

ସଂଜୟକକା କିନ୍ତୁ ସବୁ ଜାଣିଥିଲେ । ତେଣୁ ଏ ବିଷୟରେ ଅଧିକ ପ୍ରଶ୍ନ ପଚାରିବାକୁ ଚାହିଁ ନ ଥିଲେ । ସେ ଖାଲି ଏତିକି କହିଲେ, ''ମୁଁ ସବୁ ଜାଣିଛି ବଡ଼ ଭାଇ ।'' ଏହା କହି କବଚଲଗ୍ନ ଛାତିକୁ ଆଉ ଥରେ ଆଉଁଶିଦେଲେ ଆଦରରେ ।

''କେମିତି ଜାଣିଲ ଭାଇ ?'' ବାପା ପଚାରିଲେ ।

''ହସ୍ତିନାପୁରର କେତେକ ସାର୍ଥବାହକଙ୍କଠାରୁ । ସେମାନେ ବଣିଜ ଧରି ସେହି ରାଜ୍ୟକୁ ଯାଇଥିଲେ । କାର୍ତ୍ତିକୋତ୍ସବରେ ଯୋଗ ଦେଇଥିଲେ । ନିଜ ଆଖିରେ ଦେଖିଥିଲେ ବୃଷଯୁଦ୍ଧ । ଏଠାକୁ ଫେରି ସବୁ ଘଟଣା କହିଥିଲେ ।''

''ସୂର୍ଯ୍ୟଦେବତାଙ୍କ କୃପାରୁ ମୋ' ପୁଅଙ୍କର କିଛି ହେଲା ନାହିଁ ।'' ବାପା ଆଶ୍ୱସ୍ତିର ତୃପ୍ତିଭରା ନିଃଶ୍ୱାସ ଛାଡ଼ି କହିଲେ ।

''ତାଙ୍କର କିଛି ହେବ ନାହିଁ ବଡ଼ଭାଇ । ଦୈବ ତାଙ୍କର ସହାୟକ । ମତେ ଲାଗୁଛି , ସେ ଜଣେ ବଡ଼ ବୀର ହେବେ । ତାଙ୍କୁ ସେଥିପାଇଁ ସୁଯୋଗ ଦେବା ଉଚିତ ।''

''ସେଥିପାଇଁ ତ ତାଙ୍କୁ ଗାଁରୁ ଏଠାକୁ ଆଣିଛି ଜଣେ ଉପଯୁକ୍ତ ଆଚାର୍ଯ୍ୟଙ୍କ ପାଖରେ ଛାଡ଼ିବି ବୋଲି । ସବୁ କଥା ଶୁଣି ମହାରାଜା ମଧ ରାଜି ହୋଇଛନ୍ତି ତାଙ୍କୁ ଦ୍ରୋଣାଚାର୍ଯ୍ୟଙ୍କ ପାଖରେ ଛାଡ଼ିବାପାଇଁ ।''

''ବାଃ ! ଭାରି ଭଲ କଥା । ମହାରାଜା ଯଦି ରାଜି ହୋଇଛନ୍ତି, ତା'ହେଲେ କିଛି ଅସୁବିଧା ହେବ ନାହିଁ । ପିତାମହ ଭୀଷ୍ମ ମଧ ରାଜି ହୋଇଯିବେ; କାରଣ ସେ ମହାରାଜାଙ୍କ କଥାକୁ କାଟିପାରିବେ ନାହିଁ । କିନ୍ତୁ...'' କଥା ମଝିରେ ଅଟକିଗଲେ ସଂଜୟ କକା ।

''କିନ୍ତୁ ପୁଣି କ'ଣ ଭାଇ ସଂଜୟ ! ଆଉ ପୁଣି କାହାଙ୍କୁ ରାଜି କରାଇବାକୁ ପଡ଼ିବ ?'' ବାପାଙ୍କର ଅଧୈର୍ଯ୍ୟ ପ୍ରଶ୍ନ । ମୋର ଶିକ୍ଷାପଥରେ ଥିବା ସକଳ ବାଧା-ବିଘ୍ନକୁ ସମସ୍ତ ଶକ୍ତି ଦେଇ ସେ ଅତିକ୍ରମ କରିବାକୁ ଚାହୁଁଥିଲେ ।

''ଆଚାର୍ଯ୍ୟ ଦ୍ରୋଣଙ୍କୁ ।''

''ମହାରାଜା ଓ ପିତାମହ ଭୀଷ୍ମ ରାଜି ହେବା ପରେ ବି କ'ଣ ସେ ଅରାଜି ହେବେ ?''

''ଅରାଜି ହେବାରେ ଅସମ୍ଭବ କିଛି ନାହିଁ । କାରଣ କାହାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରାଯିବ କି ନାହିଁ ତାହା ଆଚାର୍ଯ୍ୟଙ୍କ ସଂପୂର୍ଣ୍ଣ ଇଚ୍ଛାଧୀନ । ତାହା ଛଡ଼ା ଆଚାର୍ଯ୍ୟ ଦ୍ରୋଣ କେବଳ କୌରବ ଓ ପାଣ୍ଡବ ରାଜକୁମାରମାନଙ୍କ ଶିକ୍ଷାଦାନ ଲାଗି ପ୍ରତିଶ୍ରୁତିବଦ୍ଧ । ତେଣୁ କର୍ଣ୍ଣଙ୍କୁ ଶିଷ୍ୟରୂପେ ଗ୍ରହଣ କରିବା ତାଙ୍କର ସଂପୂର୍ଣ୍ଣ ଇଚ୍ଛାଧୀନ ।'' କଥାଟାକୁ ପରିଷ୍କାର କରିଦେବାକୁ ଯାଇ କହିଲେ ସଂଜୟ କକା ।

କ୍ଷଣକାଳ ପାଇଁ ନୀରବରେ ବସିରହିଲେ ବାପା । ଲକ୍ଷ୍ୟ କଲି, ତାଙ୍କ ମୁହଁରେ ଦ୍ୱିଧାର ଲହଡ଼ି ପହଁରୁଛି । ବୋଧହୁଏ ଭାବୁଛନ୍ତି, ଦ୍ରୋଣାଚାର୍ଯ୍ୟ କଥା ରଖିବେ କି ନାହିଁ । ତାଙ୍କୁ ଉତ୍ସାହ ଦେବାକୁ ଯାଇ ସଂଜୟକକା ପୁଣି କହିଲେ, ''ଅଧିରଥ ଭାଇ ! ମୁଁ ଆଜି ମହାରାଜା ଓ ପିତାମହଙ୍କ କାନରେ କଥାଟାକୁ ପକାଇଦେଉଛି । ତୁମେ କେତେବେଳେ କର୍ଣ୍ଣଙ୍କୁ ନେଇ ସେମାନଙ୍କୁ ଭେଟ କରାଉଛ ?''

''ଏଇ, ଅଳ୍ପ ସମୟ ମଧରେ ଖିଆ-ପିଆ ସାରି ଯାଉଛି । ସେମାନେ ରାଜସଭାକୁ ଯିବା ପୂର୍ବରୁ ସାକ୍ଷାତ୍ କରିବି ।''

''ଠିକ୍ ଅଛି । ମୁଁ ମଧ ସେତେବେଳେ ସେଠାରେ ମହାରାଜାଙ୍କ ପାଖରେ ଥିବି । ଭଲ ହେବ । ସେ ତ ଆଗରୁ ରାଜି ହୋଇଛନ୍ତି । ମୋ' କଥାର ଯଦି କିଛି ଅଧିକ ପ୍ରଭାବ ପଡ଼ିଲା, ତା' ହେଲେ ଭଲ ।'' ସଂଜୟକକା ଏହା କହି ଆସନରୁ ଉଠିଲେ ଓ ଆମଠାରୁ ବିଦାୟ ନେଲେ । ଆମେ ଶୀଘ୍ର ଶୀଘ୍ର ଘରକାମ ସାରି ରାଜପ୍ରାସାଦକୁ ଯିବାପାଇଁ ପ୍ରସ୍ତୁତ ହେବାକୁ ଲାଗିଲୁ ।

ସୂର୍ଯ୍ୟକିରଣ ଧୀରେ ଧୀରେ ପ୍ରଖର ହୋଇଉଠୁଥାଏ । ଅଗଣାରେ ଠିଆହୋଇ ଜ୍ୟୋତିଷ୍ମାନ୍ ସୂର୍ଯ୍ୟମଣ୍ଡଳକୁ ସୂର୍ଯ୍ୟ-ନମସ୍କାର ଭଙ୍ଗୀରେ ଚାହିଁଲି । ଗୁରୁଦେବଙ୍କର ସେଇ ଚିରପରିଚିତ ହସ ହସ ମୁହଁ ଓ ଆଶୀର୍ବାଦମୁଦ୍ରାରେ ଉତ୍ତୋଳିତ ହସ୍ତ । ମତେ ଲାଗୁଥିଲା,

ସତେ ଯେମିତି ସେ ମତେ ଉତ୍ସାହିତ କରିବାକୁ ଯାଇ କହୁଛନ୍ତି, ‘‘ଯାଅ ବତ୍ସ କର୍ଣ୍ଣ, ଯାଅ । ମହାରାଜା ଧୃତରାଷ୍ଟ୍ରଙ୍କ ପାଖକୁ ଯାଅ । ପିତାମହ ଭୀଷ୍ମଙ୍କ ପାଖକୁ ଯାଅ । ଆଉ ଯାଅ ବି ଆଚାର୍ଯ୍ୟବର ଦ୍ରୋଣଙ୍କ ପାଖକୁ । ଅଭିଳାଷ ତୁମର ପୂର୍ଣ୍ଣ ହେବ । ନିଶ୍ଚୟ ପୂର୍ଣ୍ଣ ହେବ ।’’

ଏହି କଥାକୁ ସମର୍ଥନ କରିବାକୁ ଯାଇ ଦଲକାଏ ପବନ ବହି ଝର ଝର କରି ଗୁଡ଼ାଏ ଶୁଖିଲା ପତ୍ର ଝାଡ଼ିଦେବାକୁ ଲାଗିଲା ଆମ ଅଗଣାରେ !

ମନେ ମନେ ଖୁବ୍ ଆଶ୍ୱସ୍ତି ଅନୁଭବ କଲି ।

## ଏଗାର

କିଛି ସମୟ ମଧ୍ୟରେ ପ୍ରାତର୍ଭୋଜନ ସାରି ଆମେ ପିତା-ପୁତ୍ର ଦୁହେଁ ବାହାରିଲୁ ରାଜପ୍ରାସାଦ ଅଭିମୁଖରେ । ପିତା ମତେ ମହାରାଜ ଧୃତରାଷ୍ଟ୍ର, ପିତାମହ ଭୀଷ୍ମ ଆଦିଙ୍କ ସହିତ ଭେଟ କରାଇଦେବେ ଓ ରାଜଭବନର ବିଭିନ୍ନ ଜାଗା ଦେଖାଇବେ । ରାଜପୁରୁଷମାନଙ୍କୁ ସାକ୍ଷାତ୍ କରିବାର ବିଧିମାନ ମଧ୍ୟ ମତେ ଆଗରୁ ବତାଇଦେଲେ । ଏଇ ବିଧିଗୁଡ଼ିକର ଉଲ୍ଲଂଘନ କୁଆଡ଼େ ଦଣ୍ଡନୀୟ ଅପରାଧ ।

ହସ୍ତିନାପୁରର ତୁଙ୍ଗ ରାଜପ୍ରାସାଦ । ଗତ ରାତ୍ରିର ଆଲୋକ-ସଜ୍ଜା ଦେଇ ଯାହା ଅଳ୍ପ କିଛି ଦେଖିଥିଲି ତାହାର ଶୋଭା-ସଂପଦକୁ । ବିଶେଷ କିଛି ଦେଖିପାରି ନ ଥିଲି । ଜାଣିପାରି ନ ଥିଲି । ବିଶେଷକରି ମହାରାଜ ଶାନ୍ତନୁ ଯେଉଁ ବିରାଟ ପୁଷ୍କରିଣୀଟିର ନିର୍ମାଣ କରିଥିଲେ ତାହାର ପ୍ରାଚୀରଟିକୁ ମାତ୍ର ଦେଖିଥିଲି ବାହାରୁ-ବାହାରୁ । ଭିତରକୁ ଆସି ନ ଥିଲି । ସେ ଏହା ମଧ୍ୟରେ ଗଙ୍ଗାର ନୂତନ ଜଳ ପ୍ରବେଶ କରିବାର ଓ ବ୍ୟବହୃତ ଜଳ ପୁଣି ସେହି ଗଙ୍ଗାକୁ ନିଷ୍କାସିତ ହେବାର ବ୍ୟବସ୍ଥା ଖଞ୍ଜିଥିଲେ । ଶୁଣାଯାଏ ଯେ ସେ ମଧ୍ୟ ରାଜା ନହୁଷଙ୍କ ଦ୍ୱାରା ନିର୍ମିତ ଓ ଗଙ୍ଗା ପର୍ଯ୍ୟନ୍ତ ଯାଇଥିବା ଗୁପ୍ତ ସୁଡ଼ଙ୍ଗ ପଥଟିର ଜୀର୍ଣ୍ଣ-ସଂସ୍କାର କରାଇଥିଲେ । ଏହାର ଅବସ୍ଥିତି କେଉଁଠି ତାହା ଅବଶ୍ୟ ରାଜାଙ୍କ ଛଡ଼ା ଆଉ କାହାରି ଜାଣିବାର ସମ୍ଭବ ନ ଥିଲା । ତେଣୁ ମୋ’ ପକ୍ଷରେ ତାହା ଦେଖିବା ଥିଲା ଏକାନ୍ତ ଅସମ୍ଭବ । ଅନ୍ୟ କେହି ତାହାକୁ ଦେଖି ତ ନ ଥିଲେ । ତାହାର ସ୍ଥିତି କେଉଁଠି ସେ ବିଷୟରେ ଅନୁମାନ ବି କରିପାରୁ ନ ଥିଲେ । ଯେଉଁ ଶିଳ୍ପୀ ଏହାକୁ ନିର୍ମାଣ କରିଥିଲେ ରାଜାଙ୍କ ନିର୍ଦ୍ଦେଶରେ ତାଙ୍କୁ ଗୁପ୍ତ ଭାବରେ ହତ୍ୟା କରାଯାଇଥିଲା । ଶୁଣିଲି, ଏହା କୁଆଡ଼େ ଥିଲା ରାଜପରମ୍ପରା । ଏହି ଘୃଣ୍ୟ-ନୃଶଂସ ପ୍ରଥା କଥା ଶୁଣି ମନ ମୋର ବିଦ୍ରୋହ କରି ଉଠୁଥିଲା । ନିଜର ସୁରକ୍ଷା ଲାଗି ଯେ ମଣିଷ ଏଭଳି ନିର୍ମମ-ନିର୍ଦ୍ଦୟ ହୋଇପାରେ ତାହା ମୋ’ କଳ୍ପନାରେ ବି ଆସୁ ନ ଥିଲା । ଏଇଆ କ’ଣ ପ୍ରଜାପାଳକ ପିତୃପ୍ରତିମ ରାଜାଙ୍କ ନିଦର୍ଶନ ? ଛି ! ଛି ! ଗୁପ୍ତ ସୁଡ଼ଙ୍ଗଟିକୁ ସିନା ଦେଖିପାରିଲି ନାହିଁ । ରାଜାଙ୍କ ପାଖକୁ ଯିବା ଅବସରରେ ରାଜପ୍ରାସାଦର ଯାହା କିଛି ବା ଦେଖିଲି, ସେଥିରେ ଆଖି ମୋର ଖୋସି ହୋଇଯାଇଥିଲା ।

ସଂପୂର୍ଣ୍ଣ ପ୍ରାସାଦଟି ତିଆରି ବଙ୍ଗଦେଶର ଶଙ୍ଖ ମଲ ମଲ ପଥରରେ । ସୂର୍ଯ୍ୟକିରଣ ପଡ଼ି ତାହା ଚିକ୍ ଚିକ୍ କରୁଥାଏ ଓ ଏକ ନବୀନ ତେଜରେ ଜଳିଉଠୁଥିବା ଭଳି ଲାଗୁଥାଏ । ବାହାର ଅଗଣା ଓ ଚଲା ରାସ୍ତାମାନ ବି ତିଆରି ସେହି ମଲ ମଲ ପଥରରେ । ପୁଷ୍କରିଣୀର ଭିତରକୁ ଯିବାର ଅଥବା ତାହାର ଚାରିପଟେ ବୁଲି ତାହାର ସୌନ୍ଦର୍ଯ୍ୟ ଉପଭୋଗ କରିବାର ସମୟ ଓ ସୁଯୋଗ ମୋ'ପାଇଁ ନ ଥିଲା । କାରଣ ମୁଁ ରାଜଦର୍ଶନ ଲାଗି ଥିଲି ବ୍ୟଗ୍ର । କେବଳ ଯାହା ଦ୍ୱାରଦେଶରୁ ତାହାକୁ ସାମାନ୍ୟ ଟିକିଏ ଦେଖିଦେଇ ଫେରିଆସିଲି । ତାହା ଥିଲା ସ୍ୱଚ୍ଛ ଜଳରେ ଭରପୂର । ନୀଳ ନୀର-ବୁକୁରେ ପହଁରୁଥାନ୍ତି ମାଳାଟିଏ ଭଳି ଲମ୍ବି ଯାଇଥିବା ହଂସପଙ୍‌କ୍ତି । ଲାଲ, ଶ୍ୱେତ, ନୀଳ ରଙ୍ଗର ପଦ୍ମଫୁଲ ବଡ଼ ବିଚିତ୍ର ରୂପରେ ମଣ୍ଡିତ କରିଦେଇଥାଏ ତାହାକୁ । ସତେଅବା ତାରାମଣ୍ଡିତ ଏକ ବିଚିତ୍ର ଓ ଅଦ୍ଭୁତ ଆକାଶର ଶୋଭା ଉଛୁଳ ହୋଇଉଠୁଥାଏ ଚାରିପଟେ ଚାରୋଟି ଘାଟ । ଘାଟଗୁଡ଼ିକର ପ୍ରତିଟି ପାହାଚ ବି ମଲ ମଲ ପଥରରେ ତିଆରି । ମଧ୍ୟେ ମଧ୍ୟେ ରାଜପ୍ରାସାଦ ଭଳି ପଦ୍ମରାଗ, ବିଦ୍ରୁମ, ମରକତ ମଣି ଓ ଅନ୍ୟାନ୍ୟ ରତ୍ନମାନ ଖଞ୍ଜା ଯାଇଛି । ତାହାର ଉଚ୍ଚ ପ୍ରାଚୀରଟି ମଧ୍ୟ ଅନୁରୂପ ଭାବରେ ରତ୍ନମଣ୍ଡିତ । ରାଜଭବନର ଅନ୍ତେବାସିନୀମାନଙ୍କ ଏକାନ୍ତ ଜଳବିହାର ପାଇଁ ସଂପୂର୍ଣ୍ଣ ଉପଯୋଗୀ ।

ରାଜପ୍ରାସାଦ ଭିତରକୁ ଯିବା ପୂର୍ବରୁ ଏଇ ପୁଷ୍କରିଣୀଟିର ଭରା ଐଶ୍ୱର୍ଯ୍ୟ-ସମ୍ଭାର ଦେଖି ମନ ମୋର ବିଚଳିତ ହୋଇ ଉଠୁଥାଏ । ଭାବୁଥାଏ, ସାମାନ୍ୟ ପୁଷ୍କରିଣୀଟିର ଓ ତାହାର ଗୋଡ଼-ଘଷା ପାହାଚଗୁଡ଼ିକର ତ ଏଭଳି ରୂପଶ୍ରୀ ! ଏଭଳି ଆଶ୍ଚର୍ଯ୍ୟର ଗାରିମା ! ରାଜପ୍ରାସାଦ ଭିତରଟି ତା'ହେଲେ କ'ଣ ହୋଇ ନ ଥିବ ! ମନ ମୋର ଆପେ ଆପେ ଚାଲିଯାଉଥାଏ ଆମ ଗାଁକୁ— ଭୂର୍ଜପତ୍ରରେ ଅନୁଲ୍ଲିଖିତ ଚମ୍ପାପୁରୀ ଗାଁକୁ ଓ ଆମ ପର୍ଣ୍ଣକୁଟୀକୁ ଧରି ସେଠାକାର ଅନ୍ୟାନ୍ୟ ପର୍ଣ୍ଣକୁଟୀଗୁଡ଼ିକୁ । ବାସ୍ତବିକ କେତେ ଫରକ ସତେ ! ଆକାଶ-ପାତାଳର ପ୍ରଭେଦ ସିନା ! ହଁ, ମାନୁଛି, ଆମେ ପ୍ରଜା । ଆମେ ଦରିଦ୍ର । ଆମେ ତେଣୁ ରାଜାଙ୍କ ସହିତ ସମାନ ହୋଇପାରିବା କେମିତି ? କିନ୍ତୁ ତାହା ବୋଲି କ'ଣ ରାଜା ଆମରି ରକ୍ତ ପିଇ ନିରନ୍ତର ଜୋକଭଳି ଫୁଲିଉଠୁଥିବେ ? ଆମରି ଧନକୁ ଶୋଷଣ କରି ଧନୀ ହୋଇଉଠୁଥିବେ ? ରାଜଶକ୍ତି କ'ଣ ଆମକୁ ଚିରଦୁର୍ବଳ କରାଇ ନିଜେ ଅତି ପ୍ରବଳ ହୋଇ ଉଠୁଥିବ ? ମୁଁ ଆମ ଗ୍ରାମ୍ୟପାଠଶାଳାରେ ଗୁରୁଙ୍କଠାରୁ ଶିଖିଥିଲି ରାଜା ଶବ୍ଦର ଅର୍ଥ । ନିଜ ସୁଖକୁ ବଳିଦେଇ ସେ କୁଆଡ଼େ ପ୍ରଜାମାନଙ୍କ ସୁଖକୁ ଦେଖିବେ । ନିଜକୁ ତିଳ ତିଳ କରି ଜାଳି ପ୍ରଜାମାନଙ୍କ ଘରେ ମାଟିର ପ୍ରଦୀପଗୁଡ଼ିକୁ କୁଆଡ଼େ ଚିରଦିନ ଜଳାଇ ରଖିବେ । ପ୍ରଜାମାନଙ୍କୁ ଖୁସି କରାଇବେ— ଅନୁରଞ୍ଜିତ କରାଇବେ । ସେଥିପାଇଁ କୁଆଡ଼େ ତାଙ୍କ ନାଁ ରାଜା । ରାଜ୍ୟାଭିଷେକ ବେଳେ ସେ କୁଆଡ଼େ ସମବେତ ସଭାସଦ୍‌ମାନଙ୍କ ଆଗରେ ଦୃଢ଼ ପ୍ରତିଶ୍ରୁତି ଦେଇ କହନ୍ତି— 'ବାଞ୍ଛନ୍ତୁ ନୋ ବିଶଃ' । ପ୍ରଜାମାନେ ମତେ ଚାହିଁଥାନ୍ତୁ । ସେମାନେ ନ ଚାହିଁଲେ ମୁଁ ରାଜପଦ ଛାଡ଼ିଦେବି । କିନ୍ତୁ କାର୍ଯ୍ୟରେ ଘଟେ କ'ଣ ? ଥରେ ରାଜପଦ ପାଇଗଲେ ତାହାର ନିଶାରେ ହୋଇଉଠନ୍ତି ମତ୍ତ-ପାଗଳ । ହୋଇଉଠନ୍ତି ଐଶ୍ୱର୍ଯ୍ୟବିଭୋର ଓ ସଂପୂର୍ଣ୍ଣ ମୋହଗ୍ରସ୍ତ । ଭୁଲିଯାଆନ୍ତି ସେଇ ଶୁଦ୍ଧପବିତ୍ର ପ୍ରତିଶ୍ରୁତିଟିକୁ । ପ୍ରଜାମାନଙ୍କୁ ଶାସନ

କରିବସନ୍ତି । ଅନୁରଞ୍ଜନର ମାତ୍ରା ଅନେକଟା କମ୍ । ଖାଲି ଲୋକମାନଙ୍କୁ ଦେଖାଇବା ପାଇଁ ଶୁଷ୍କ ଔପଚାରିକତା ସିନା ! ନୀଚ ସ୍ୱାର୍ଥ ବିଘ୍ନିତ ହେଲେ ପ୍ରଜାମାନଙ୍କ ସ୍ୱାର୍ଥକୁ ବଳି ଦିଅନ୍ତି । ପ୍ରଜାମାନଙ୍କୁ ମାରି ନିଜେ ଜୀଇଁ ରହନ୍ତି । ଏଇ ତ ରାଜପରମ୍ପରା । ଗଡ଼ିଆସୁଛି ଗଡ୍ଡାଳିକା ପ୍ରବାହ ଭଳି କାହିଁ କେତେ ଯୁଗରୁ । ନିରୀହ ଦୁର୍ବଳ ପ୍ରଜାମାନେ ଚିରଦିନ ଅବହେଳିତ, ଲୁଣ୍ଠିତ ଓ ଶୋଷିତ । ଏହାର ସମାଧାନ କେଉଁଠି ଓ କେବେ ? ଏଇ ଚିନ୍ତାରେ ବିଦ୍ରୋହୀ ରକ୍ତ ମୋର ଟକମକ ହୋଇ ଫୁଟି ଉଠୁଥାଏ ସିନା, କିନ୍ତୁ କିଶୋର ବୁଦ୍ଧିରେ ଏହାର କୌଣସି ସମାଧାନ ପାଇପାରୁ ନ ଥାଏ ।

ମୋ' ମୁହଁର ଗମ୍ଭୀର ଭାବ ଦେଖିକରି କି କ'ଣ ବାପା ପଚାରିଲେ, ''କ'ଣ ଏତେ ଭାବୁଛ ବସୁ ?''

''ନାଇଁ ବାପା, ସେମିତି କିଛି ନୁହେଁ । ମହାରାଜାଙ୍କୁ ଭେଟିବା କଥା ଭାବୁଛି । ଆଉ ଭାବୁଛି ମୋ' ଅସ୍ତ୍ରଶିକ୍ଷା କଥା ।'' ବିଷୟଟିକୁ ଏଡ଼ାଇଦେଇ ଉତ୍ତର ଦେଲି ।

''କିଛି ଭାବନା । ସବୁ ଠିକ୍ ହୋଇଯିବ । ଭାଇ ସଂଜୟ ଆମକୁ ସାହାଯ୍ୟ କରିବେ ।''

''ହଁ, ବାପା ।'' ତାଙ୍କ ସହିତ ସହମତ ହୋଇ କହିଲି ।

ବାପା ମତେ ଶୀଘ୍ର ଶୀଘ୍ର ପାଦ ପକାଇବାପାଇଁ ଅନୁପ୍ରେରିତ କରି କହିଲେ, ''ଡେରି ହୋଇଯାଉଛି । ଆମେ ଏଥରକ ଶୀଘ୍ର ଶୀଘ୍ର ଚାଲିବା ।'' ଏହା କହି ସେ ଗତି ଶୀଘ୍ରତର କଲେ ।

''ହଁ, ବାପା ।'' ତାଙ୍କ ଗତି ସହିତ ପାଦ ମିଳାଇବା ଅବସରରେ କହିଲି ।

ଆମେ ଶୀଘ୍ର ଯାଇ ରାଜପ୍ରାସାଦ ମଧ୍ୟରେ ପ୍ରବେଶ କଲୁ । ଅନେକ ପ୍ରାସାଦର ସମାହାର ଏହି ବିରାଟ ରାଜପ୍ରାସାଦ । ଏହାର ନିର୍ମାତା ଥିଲେ ଦିଗ୍‌ବିଜୟୀ ସମ୍ରାଟ୍ କୁରୁ । ତାଙ୍କ ପ୍ରପିତାମହ ହସ୍ତୀ ଯେଉଁ ପୁରାତନ ପ୍ରାସାଦଟିକୁ ନିର୍ମାଣ କରିଥିଲେ ତାହା ଇତି ମଧ୍ୟରେ ଜୀର୍ଣ୍ଣ ହୋଇଯାଇଥିଲା । ସେହି କୁରୁ ହିଁ ବଙ୍ଗଦେଶରୁ ଶ୍ୱେତମର୍ମର ପ୍ରସ୍ତର ଆଣି ନିର୍ମାଣ କରିଥିଲେ ନୂଆ କରି ରାଜପ୍ରାସାଦଟିକୁ । ଆକାରରେ ପୂର୍ବ ପ୍ରାସାଦଠାରୁ ଅନେକ ବଡ଼ । ମହାନ୍ ଯଶସ୍ୱୀ ରାଜା ଥିଲେ ସେ । ତାଙ୍କରି ନାମ ଅନୁସାରେ ଏହି ରାଜବଂଶ ବିଖ୍ୟାତ ହୋଇଉଠିଲା କୁରୁବଂଶ ନାମରେ ଓ ତାଙ୍କ ଉତ୍ତରଦାୟାଦମାନଙ୍କୁ ଲୋକେ କହିବାକୁ ଲାଗିଲେ କୌରବ ବୋଲି । ଶାନ୍ତନୁ, ବିଚିତ୍ରବୀର୍ଯ୍ୟ, ଭୀଷ୍ମ, ପାଣ୍ଡୁ, ଧୃତରାଷ୍ଟ୍ର ତେଣୁ ସମସ୍ତେ କୌରବ ଯଦିଓ ପାଣ୍ଡୁଙ୍କ ସନ୍ତାନମାନଙ୍କୁ କେହି କେହି ଏବେ ପାଣ୍ଡବ ବୋଲି କହୁଛନ୍ତି । ଗୋଟିକ ପରେ ଗୋଟିଏ କରି ସେହି ପ୍ରାସାଦଗୁଡ଼ିକୁ ଆମେ ଅତିକ୍ରମ କରିବାକୁ ଲାଗିଲୁ । ମତେ ଲାଗୁଥାଏ, ଆମ ଧୂଳିଧୂସରିତ ପାଦସ୍ପର୍ଶରେ ତାହାର ସ୍ୱଚ୍ଛ ନିର୍ମଳ ଚଟାଣ ଯେମିତି ହୋଇଉଠୁଥାଏ ସଂକୁଚିତ ! ଅବଜ୍ଞାପୂର୍ଣ୍ଣ ଉପେକ୍ଷାରେ ଓ ଘୃଣାରେ । ମୁଁ କିନ୍ତୁ ଦଳି ଦଳି ଚାଲିଥାଏ ସେହି ଚଟାଣକୁ । ମନରେ ଫୁଲିଲା ଫୁଲିଲା ଅଭିମାନ ! ଚିତ୍ତତଳେ ଉତ୍କଟ ବିଦ୍ରୂପର ଝଙ୍କାର ! ମୁଁ ସୂତପୁତ୍ର ହେଲେ ବି ତ ଏଇ ଦେଶର ପ୍ରଜା । ଆମରି ରକ୍ତରେ ପରିପୁଷ୍ଟ ଏଇ ରାଜପ୍ରାସାଦର ବୈଭବ । ଇଚ୍ଛା ହେଉଥାଏ, ଶୋଷଣର ଏଇ ପ୍ରତୀକଟିକୁ ବାରମ୍ବାର ପଦାଘାତ କରିବାପାଇଁ । କିନ୍ତୁ ସଂଭ୍ରମ ମତେ ସଂଯତ କରିଦେଉଥାଏ ।

କେତୋଟି ତୋରଣ ଅତିକ୍ରମ କରିବା ପରେ ଏକ ମହାତୋରଣ ପଡ଼ିଲା । ତାହା ଥିଲା ଏକ ବୃହତ୍‌କାୟ ଭବନର । ତାହାକୁ କୁହାଯାଉଥିଲା ମହାଭବନ ବୋଲି । ତହିଁରେ ରାଜତ୍ୱର କ୍ରମରେ ରଖାଯାଇଥାଏ ସମସ୍ତ ପୂର୍ବଜ ସମ୍ରାଟ୍‌ଙ୍କ ଶ୍ୱେତମର୍ମର ପ୍ରସ୍ତରରେ ନିର୍ମିତ ପ୍ରତିମୂର୍ତ୍ତି । ଶେଷ ପ୍ରତିମୂର୍ତ୍ତିଟି ଥାଏ ମହାରାଜ ପାଣ୍ଡୁଙ୍କର । ସାରା ଭବନଟି ଥାଏ ଦିବ୍ୟ ଗନ୍ଧରେ ଭରପୂର । ପ୍ରତିଟି କୋଣ-ଅନୁକୋଣରେ ଦିନରାତି ରତ୍ନ ପ୍ରଦୀପ ଜଳୁଥାଏ । ଦାସୀମାନେ ସୁବାସିତ ତୈଳ ଢାଳୁଥାନ୍ତି । ପ୍ରତ୍ୟହ ପ୍ରତିମୂର୍ତ୍ତିଗୁଡ଼ିକୁ ନୂତନ ନୂତନ ପୁଷ୍ପମାଲ୍ୟରେ ସଜ୍ଜିତ କରାଯାଉଥାଏ । ଏମାନେ ସମସ୍ତେ ଥାଆନ୍ତି ବିଗତ ବର୍ଷଗୁଡ଼ିକର ରାଜା । ସମସ୍ତେ ମୃତ । ଅଥଚ୍ ଦିଶୁଥାନ୍ତି ଜୀବନ୍ତ ଭଳି । ସାରା ଭବନଟିରେ ବୀରତ୍ୱର ଏକ ମୃଦୁ ଗୁଞ୍ଜରଣ ପ୍ରକଟିତ । କୌଣସି ନୂତନ ଆଗନ୍ତୁକ ନିଶ୍ଚୟ ଭୟ ପାଇଯିବ ! ସମଗ୍ର ରାଜପ୍ରାସାଦ ହସୁଥାଏ । ପୂର୍ବଜ ସମ୍ରାଟ୍‌ମାନେ ହସୁଥାନ୍ତି । ମତେ ଲାଗୁଥାଏ, ଏମାନେ ତ ହସୁ ନାହାନ୍ତି ବରଂ କାଳ ହସୁଛି— ଉଚ୍ଛଳ ଅଟ୍ଟହାସରେ ହସୁଛି । ସେଇ ଅଟ୍ଟହାସର ପ୍ରତିବିମ୍ବ ମାତ୍ର ପଡ଼ିଛି ଏମାନଙ୍କଠାରେ ।

ଇସ୍ ! କି ବିକଟାଳ କାଳର ଏଇ ଭୀମ ଅଟ୍ଟହାସ ! ମଣିଷ କ'ଣ ତାହା ବୁଝୁଛି ? ରାଜା-ମହାରାଜାମାନେ କ'ଣ ବୁଝୁଛନ୍ତି ? ଶକ୍ତିବାନ୍ ଲୋକମାନେ କ'ଣ ବୁଝୁଛନ୍ତି ? ସମାଜର ନୀତିନିୟାମକମାନେ କ'ଣ ବୁଝୁଛନ୍ତି ? ତଥାପି ଚାଲିଛି ଶୋଷଣ, ଅତ୍ୟାଚାର । ତଥାପି ଗୁମୁରି ଉଠୁଛି ଦମ୍ଭ-ଅଭିମାନର ଫୁତ୍‌କାର । ଅତୀତରେ ଭଗ୍ନ ଖଡ଼୍‌ଗଗୁଡ଼ିକର ଶେଷ ଝନତ୍‌କାର ଲିଭିଯାଇଛି । ଅଥଚ ନୂତନ ଖଡ଼୍‌ଗଗୁଡ଼ିକରେ ଏବେ ଶାଣ ଦିଆଯାଉଛି । ହାୟ ରେ ନିର୍ବୋଧ ମଣିଷ ! କେବେ ତା'ର ଜ୍ଞାନ ହେବ କେଜାଣି ?

ଗୋଟିକ ପରେ ଗୋଟିଏ ପ୍ରାସାଦ ଅତିକ୍ରମ କରି ଶେଷରେ ଆମେ ଯାଇ ପହଞ୍ଚିଲୁ ମହାରାଜଙ୍କ ନିଜସ୍ୱ ପ୍ରାସାଦରେ— ଆମ ଲକ୍ଷ୍ୟସ୍ଥଳରେ । ଆଖିରେ ମୋର ଆଖିଏ ଉତ୍ସୁକତା ଭରି ଦେଖିନେଲି ସାରା ପରିବେଶକୁ । ଏକ ସୁନ୍ଦର ସ୍ୱର୍ଣ୍ଣାସନରେ ବସିଥିଲେ ସମ୍ରାଟ୍ ଧୃତରାଷ୍ଟ୍ର । ଗୌରାଙ୍ଗ ଦେହ । ଶିରରେ ସୁବର୍ଣ୍ଣ ମୁକୁଟ । ନାନା ପ୍ରକାର ରତ୍ନରେ ଜଡ଼ିତ । କଣ୍ଠରେ ପ୍ରଲମ୍ବିତ ମୁକ୍ତା, ମାଣିକ୍ୟ ଓ ବୈଦୁର୍ଯ୍ୟର ମାଳାଟିମାନ । ବିରାଟ୍ ବାତାୟନଗୁଡ଼ିକରେ ଝୁଲୁଥାଏ କୌଶେୟ ପରଦାଟିମାନ । ସେଗୁଡ଼ିକୁ ସାମାନ୍ୟ ଟିକିଏ ଘୁଞ୍ଚାଇ ଦିଆଯାଇଥାଏ ସୂର୍ଯ୍ୟକିରଣର ପ୍ରବେଶ ଲାଗି । ତାହା ଛଡ଼ା ବିରାଟ ଭବନଟିର ଚାରିକୋଣରେ ଚାରୋଟି ରତ୍ନପ୍ରଦୀପ ଜଳୁଥାଏ । ସେଗୁଡ଼ିକର ତୈଳର ମହକ ଆମୋଦିତ କରିଦେଉଥାଏ ସାରା କକ୍ଷଟିକୁ । ମହାରାଜାଙ୍କ ମୁକୁଟ ଓ ମାଳାଗୁଡ଼ିକରେ ଖଞ୍ଜାଯାଇଥିବା ରତ୍ନଗୁଡ଼ିକର ଜ୍ୟୋତି ଝଲସିଉଠୁଥାଏ ଆଲୋକରେ । ସମସ୍ତ ଜ୍ୟୋତିର ସମ୍ମିଶ୍ରଣରେ ଏକ ନୂତନ-ବିଚିତ୍ର ଆଭା ଉଠୁଥାଏ ଉକୁଟି । ତାଙ୍କ ଶ୍ୱେତ ଅଙ୍ଗବସ୍ତ୍ର ରହି ରହି ଚମକି ଉଠୁଥାଏ ସେହି ଜ୍ୟୋତିରେ । ଘନ-ଦୀର୍ଘ ଦାଢ଼ି ଥିବା କାରଣରୁ ସେ ଖୁବ୍ ପ୍ରଭାବଶାଳୀ ଦିଶୁଥାନ୍ତି । ତାଙ୍କ ଦୁଇ ଆଖିର ଚାରିପଟେ କଳା ଘେରିଥିବା ଭଳି ଦିଶୁଥାଏ । ସେ ଆଖି ବୁଜି ବସିଥାନ୍ତି । ତାଙ୍କଠାରୁ ଅପେକ୍ଷାକୃତ ନୀଚାସନରେ ଡାହାଣପଟେ ବସିଥାନ୍ତି ଆଉ ଜଣେ ତେଜସ୍ୱୀ ଓ ସୌମ୍ୟ ବ୍ୟକ୍ତି । ଦେହର ବର୍ଣ୍ଣ କୃଷ୍ଣ । ଉତ୍ତରୀୟ ଓ ଅଧରୀୟ

ଶ୍ୱେତରଙ୍ଗର । କଳା ଦେହକୁ ଭାରି ମାନୁଥାଏ । ମୁଖମଣ୍ଡଳ ପ୍ରସନ୍ନ । କି ଏକ ତେଜ ବାହାରୁଥାଏ ସେଥିରୁ । ମହାରାଜଙ୍କ ବାଁପଟେ କନକ ରାଜଦଣ୍ଡ ଧରି ଠିଆ ହୋଇଥାନ୍ତି ଆଉ ଜଣେ ବ୍ୟକ୍ତି । ଦୁଇ ପଟେ ଦୁଇ ଜଣ ବ୍ୟକ୍ତି ଥାଇ ସୁନା ବେଣ୍ଟ ଥିବା ଚାମର ଢାଳୁଥାନ୍ତି । ପଛରେ ଆଉ ଜଣେ ବ୍ୟକ୍ତି ଛତ୍ର ଧରି ଠିଆହୋଇଥାନ୍ତି । ନୀଚାସନରେ ବସିଥିବା ବ୍ୟକ୍ତିଙ୍କଠାରୁ ଆହୁରି ନୀଚରେ ଠିଆ ହୋଇଥାନ୍ତି ସଂଜୟଙ୍କକା । ମହାରାଜାଙ୍କ ଏକାନ୍ତ ପ୍ରିୟ ବିଶ୍ୱାସୀ ଲୋକ । ମୁଣ୍ଡ ତାଙ୍କର ବିନମ୍ରତାରେ ସାମାନ୍ୟ ତଳକୁ ଝୁଙ୍କି ପଡ଼ିଥାଏ ।

ଅତି ଆଦର-ସମ୍ମାନ ସହିତ ବାପା ମହାରାଜଙ୍କୁ ମୁଣ୍ଡ ନୁଆଁଇ ଅଭିବାଦନ କଲେ । ତାଙ୍କ ସଂକେତରେ ମୁଁ ମଧ୍ୟ ସେମିତି ଅଭିବାଦନ କଲି ।

"ଆପଣଙ୍କ ସେବକ ସୂତ ଅଧିରଥ ଆପଣଙ୍କୁ ପ୍ରଣାମ କରୁଛି ମହାରାଜ । ମୋ' ସହିତ ମୋ' ପୁତ୍ର କର୍ଣ୍ଣ ମଧ୍ୟ ପ୍ରଣାମ କରୁଛି ।" ବାପା ସେମିତି ମୁଣ୍ଡ ନୁଆଁଇଥିବା ଅବସ୍ଥାରେ କହିଲେ ।

"ଆସ ସୂତବର ଅଧିରଥ । ପୁତ୍ରଙ୍କୁ ଧରି ପାଖକୁ ଆସ । ତୁମ ଚମ୍ପାପୁରୀର ଖବର କ'ଣ ? ସବୁ ଭଲ ତ ?"

ବାପା ଆଦେଶ ମାନି ଆଉ ଟିକିଏ ପାଖକୁ ଘୁଞ୍ଚିଗଲେ ଓ କହିଲେ, "ହଁ, ମହାରାଜ ! ସବୁ ଭଲ ।"

"ତୁମ ପରିବାରର ସମସ୍ତଙ୍କ କୁଶଳ-ମଙ୍ଗଳ ତ ?"

"ହଁ, ମହାରାଜ ! ଆପଣଙ୍କ କୃପାରୁ ସବୁ କୁଶଳ ।"

"ଯାତ୍ରା ତୁମର ଭଲରେ ଭଲରେ ଶେଷ ହେଲା ତ ? ବିଶେଷକରି ବଙ୍ଗଦେଶର ଅରଣ୍ୟପଥରେ କିଛି ବାଧାବିଘ୍ନ ପଡ଼ି ନାହିଁ ତ ?" ସମ୍ରାଟ୍‌ଙ୍କ ଉତ୍କଣ୍ଠାଭରା ପ୍ରଶ୍ନ ।

"ନାଇଁ, କିଛି ବାଧାବିଘ୍ନ ପଡ଼ି ନାହିଁ । ମହାରାଜଙ୍କ ଦୟାରୁ ଜଙ୍ଗଲ-ପାହାଡ଼ ଘାଟି ଜାଗାଗୁଡ଼ିକରେ ସୁରକ୍ଷାର ଭଲ ବ୍ୟବସ୍ଥା କରାଯାଇଛି । ପାନ୍ଥଶାଳାଗୁଡ଼ିକରେ ମଧ୍ୟ କିଛି ଅବବ୍ୟସ୍ଥା ନାହିଁ ।" କୃତକୃତ୍ୟ ହେଉଥିବାର ଭଙ୍ଗୀ ଦେଖାଇ କହିଲେ ବାପା ।

"ବଙ୍ଗଦେଶର ଅରଣ୍ୟପଥରେ ଦସ୍ୟୁମାନେ ମାତିଛନ୍ତି । ପାଞ୍ଚ ପାଞ୍ଚ ଜଣ ସାର୍ଥବାହକଙ୍କ ଶଗଡ଼ଗାଡ଼ିଗୁଡ଼ିକୁ ଲୁଣ୍ଠନ କରିସାରିଲେଣି । ଦଳେ ସୈନ୍ୟ ଆମର ଏଠୁ ଯାଇଛନ୍ତି ସେମାନଙ୍କୁ ଦମନ କରିବାପାଇଁ । ଆମ ଅଧୀନସ୍ଥ ବଙ୍ଗରାଜ ପାରୁ ନାହାନ୍ତି ।" ମହାରାଜଙ୍କ କଣ୍ଠସ୍ୱର ସାମାନ୍ୟ ଗମ୍ଭୀର ହୋଇଉଠୁଥିଲା । ଦସ୍ୟୁଦମନର ସୁବ୍ୟବସ୍ଥା କରିଥିବା କାରଣରୁ କିଛିଟା ମୃଦୁହାସ ଝଟକି ଉଠୁଥିଲା ମୁଖମଣ୍ଡଳରେ ।

"ଆମେ ବି ସେଇ କଥା ଶୁଣିଥିଲୁ ଚମ୍ପାପୁରୀରେ । ମନରେ ଭୟ ଥିଲା । କିନ୍ତୁ କିଛି ଅସୁବିଧା ଆମର ହୋଇ ନାହିଁ । କୌରବବାହିନୀ ଦସ୍ୟୁମାନଙ୍କୁ ଦମନ କରିସାରିଛନ୍ତି ।"

"ନିଶ୍ଚୟ, ନିଶ୍ଚୟ ।" ମହାରାଜାଙ୍କ ଓଠତଳେ ତୃପ୍ତିଭରା ଅଧାହସର ଅଧିକତର ଝଲକ । ଦସ୍ୟୁଦମନରେ ସଫଳତା ପାଇଥିବାରୁ ଆନନ୍ଦ ।

''ତୁମ ପୁତ୍ର କାର୍ତ୍ତିକୋତ୍ସବରେ ଯେଉଁ ଅପୂର୍ବ ବୀରତ୍ୱ ଓ ସାହସ ଦେଖାଇଛନ୍ତି ସେ କଥା ଆମ କାନକୁ ଆସିଛି । ତାଙ୍କ ଜନ୍ମଜାତ କବଚ ଓ୍ କୁଣ୍ଡଳ କଥା ବି ଆମେ ଶୁଣିଛୁ । ନାଁ କ'ଣଟି ତାଙ୍କର ?'' ମହାରାଜଙ୍କ ଅନୁସନ୍ଧିତ୍ସାଭରା ପ୍ରଶ୍ନ । ତାଙ୍କ ମୁହଁକୁ ଲକ୍ଷ୍ୟ କରି ସେ ଯେମିତି ମୋ' ବୀରତ୍ୱ ନେଇ ଖୁବ୍ କିଛି ବିସ୍ମିତ ।

''କର୍ଣ୍ଣ ମହାରାଜ !'' ବାପା ଉତ୍ତର ଦେବାକୁ ଯାଇ କହିଲେ । ମୋ' ପ୍ରଶଂସା ମହାରାଜଙ୍କ ମୁହଁରୁ ଶୁଣି ତାଙ୍କ ମୁଣ୍ଡଟି ଗର୍ବରେ ସାମାନ୍ୟ ଟିକିଏ ଉଠିଗଲା ଭଳି ବୋଧ ହେଉଥିଲା । ସବୁ ପିତାଙ୍କ ଅବସ୍ଥା ଏମିତି । ପୁତ୍ରର ଯଶରେ ନିଜକୁ ଯଶସ୍ୱୀ ମନେକରନ୍ତି । ପୁତ୍ରର ଗର୍ବରେ ନିଜେ ଫାଟିପଡ଼ନ୍ତି ଗର୍ବରେ । ସେ ପୁଣି କହିଲେ, ''ସେଇ ପୁତ୍ର କର୍ଣ୍ଣଙ୍କୁ ତ ସାଥିରେ ଧରି ହସ୍ତିନାପୁର ଆସିଛି । ସେଇ କର୍ଣ୍ଣ ଆପଣଙ୍କୁ ଏଠି ପୁଣି ଥରେ ପ୍ରଣାମ କରୁଛନ୍ତି ।'' ପିତାଙ୍କ ସଂକେତରେ ପୁଣି ଥରେ ପ୍ରଣାମ କଲି ମହାରାଜଙ୍କୁ ।

''କାହିଁ, ତାଙ୍କୁ ଟିକିଏ ମୋ' ପାଖକୁ ପଠାଇଲ ଦେଖି ।'' ମହାରାଜ ନିର୍ଦ୍ଦେଶ ଦେଲେ । ତାଙ୍କ ମୁହଁର ଭଙ୍ଗୀରୁ ଜଣାପଡୁଥିଲା, ସେ ଯେପରି ମୋ' ବିଷୟରେ ଖୁବ୍ କୌତୂହଳୀ ହୋଇଉଠିଛନ୍ତି ।

ସଂଜୟକକା ମୋ' ହାତ ଧରି ମତେ ମହାରାଜଙ୍କ ଅତି ପାଖକୁ ନେଇଗଲେ ଓ କହିଲେ, ''ଏଇ, ଅଧିରଥପୁତ୍ର ଆପଣଙ୍କ ପାଖରେ ଠିଆ ହୋଇଛନ୍ତି ମହାରାଜ ।''

ସଙ୍ଗେ ସଙ୍ଗେ ମହାରାଜଙ୍କ ଗୌରବୋଜ୍ଜ୍ୱଳ ବଳିଷ୍ଠ ବାହୁଯୁଗଳ ଲମ୍ବି ଆସିଲା ମୋ' ଆଡ଼କୁ । ସେ ହାତ ମାରି ଭଲ ଭାବରେ ପରୀକ୍ଷା କରିନେଉଥାନ୍ତି ମୋ' କବଚକୁଣ୍ଡଳକୁ । ତାଙ୍କ ଅଣ୍ଡାଳି ଅଣ୍ଡାଳି ହାତ ମାରିବା ଢଙ୍ଗରୁ ବୁଝିପାରିଲି ଯେ ସେ ଅନ୍ଧ । ବଡ଼ ଆଶ୍ଚର୍ଯ୍ୟ ହେଲି । ଜଣେ ଅନ୍ଧ ପୁଣି ରାଜା ହୋଇପାରିଲେ ବା କେମିତି ? ପୁଣି ରାଜ୍ୟଶାସନ କରୁଛନ୍ତି ବା କିପରି ? କିନ୍ତୁ ସେ କଥା ପଚାରିପାରୁ ନ ଥାଏ । ସଂଭ୍ରମ ଓ ଶିଷ୍ଟାଚାର ମତେ ବାରମ୍ବାର ଚାବୁକ ମାରୁଥାଏ ! ଫେରିବା ବାଟରେ ହିଁ ବାପାଙ୍କୁ ପଚାରିବା ପରେ ଯାଇ ତାଙ୍କଠାରୁ ଯେଉଁ ଉତ୍ତର ପାଇଲି, ସେଥିରେ ମୋ' କୌତୂହଳ ଦୂର ହେଲା । ବାପା କହିଥିଲେ ଧୃତରାଷ୍ଟ୍ର ନାମକୁମାତ୍ର ରାଜା । କିନ୍ତୁ ପ୍ରକୃତରେ ରାଜ୍ୟଶାସନ କରୁଛନ୍ତି ପିତାମହ ଭୀଷ୍ମ । ତାଙ୍କୁ ସାହାଯ୍ୟ କରୁଛନ୍ତି ମହାମନ୍ତ୍ରୀ ଜ୍ଞାନୀପ୍ରବର ବିଦୁର । ତାଙ୍କ ଅନ୍ଧତ୍ୱ ଦୋଷରୁ ରାଜା ହୋଇଥିଲେ ସାନଭାଇ ପାଣ୍ଡୁ । ସେ ସମୟକ୍ରମେ ବନବାସ କଲେ ଓ ସେଇଠି ତାଙ୍କର କାଳ ହେଲା । ତାଙ୍କ ପରଠାରୁ ରାଜା ହୋଇଆସିଛନ୍ତି ଧୃତରାଷ୍ଟ୍ର । ଏହି ପରିସ୍ଥିତିରେ କୌରବମାନଙ୍କୁ ଓ ପାଣ୍ଡବମାନଙ୍କୁ ଉଭୟଙ୍କୁ କୁହାଯାଉଛି ରାଜକୁମାର ।

''ବଡ଼ ଚମତ୍କାର ଓ ବିଚିତ୍ର !'' ମୋ' କବଚକୁଣ୍ଡଳ ସଂପର୍କରେ ମନ୍ତବ୍ୟ ଦେବାକୁ ଯାଇ କହିଲେ ମହାରାଜ । ବାପା କିମ୍ବା ସଂଜୟ କକା କେହି କିଛି ପାଟି ଫିଟାଇ ନ ଥିଲେ । ସେମାନଙ୍କ ମୌନତା ହିଁ ମହାରାଜଙ୍କ କଥାକୁ ସମର୍ଥନ କରୁଥିଲା । ଅପେକ୍ଷାକୃତ ନୀଚାସନରେ ବସିଥିବା ସୌମ୍ୟମୂର୍ତ୍ତିଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ମହାରାଜ କହିଥିଲେ, ''ତୁମେ ଟିକିଏ ନିଜେ ଦେଖୁନା ଅନୁଜ ବିଦୁର । ମତେ ତ ଜନ୍ମଜାତ ଭଳି ଲାଗୁଛି ।''

ସେତେବେଳେ ଯାଇ ଜାଣିପାରିଲି ଯେ ସେହି ଭଦ୍ରବ୍ୟକ୍ତିଙ୍କ ନାମ ବିଦୁର । ସେ ମଧ୍ୟ ମୋ' କବଚକୁଣ୍ଡଳକୁ ତନ୍ନ ତନ୍ନ କରି ପରୀକ୍ଷା କରିନେଲେ ଓ ମହାରାଜଙ୍କ ସହିତ ସହମତ ହୋଇ କହିଲେ, ''ହଁ, ମହାରାଜ ! ଏ କବଚକୁଣ୍ଡଳ ଜନ୍ମଜାତ ।''

''ବିଧାତାଙ୍କର ଏ ଏକ ବିଚିତ୍ର ସୃଷ୍ଟି । ନା କ'ଣ କହୁଛ ଅନୁଜ ବିଦୁର ?''

''ହଁ, ମହାରାଜ ! ବଡ଼ ବିଚିତ୍ର ।'' ବିଦୁର ଉତ୍ତର ଦେଲେ ।

ତାହାପରେ ମହାରାଜ ବାପାଙ୍କ ଆଡ଼କୁ ଚାହିଁ ହସି ହସି କହିଲେ, ''ଭଲ କଲ ଅଧିରଥ, ଭଲ କଲ । ପୁତ୍ର କର୍ଣ୍ଣଙ୍କୁ ସାଥିରେ ନେଇଆସିଲ । ତାଙ୍କୁ ଭଲଭାବରେ ହସ୍ତିନାପୁର ଦେଖାଇଦିଅ । ଏଠାକାର ରାଜପ୍ରାସାଦ, ମନ୍ଦିର, ଉପବନ ସବୁ କିଛି ।''

''ହଁ, ମହାରାଜ ! କିନ୍ତୁ ଆଉ ଗୋଟିଏ କଥା ।'' ବିନୟରେ ବାପା ହାତ ମଳୁଥାନ୍ତି । ମତେ କିନ୍ତୁ ଏତେଟା ବିନମ୍ରତା ଆଦୌ ଭଲ ଲାଗୁ ନ ଥାଏ । କିଶୋର-ରକ୍ତ ମୋର ଗରମ ହୋଇଉଠୁଥାଏ । ମନରେ ମୋର ଅସହିଷ୍ଣୁଭାବ । ମତେ ଲାଗୁଥାଏ ଏଇ ଗରମ ରକ୍ତ ସତେ ଯେମିତି ମୋର ପ୍ରତିଟି ଧମନୀ ଓ ଶିରାକୁ ଫୁଟାଇଦେଇ ପିଚ୍ ପିଚ୍ ହୋଇ ବାହାରି ଆସିବ ପଦାକୁ ଓ ତାହାରି ଉଷ୍ଣତାରେ ତରଳାଇ ଦେବ ଏଇ ଚିରାଚରିତ ପୁରାତନ ପ୍ରଥାକୁ । ହଁ, ଏଇ ଜମାଟବନ୍ଧା ପ୍ରଥାକୁ ଯାହାକୁ ବରଫଜଡ଼ ରାଜକୀୟ ବିଧିବିଧାନ ଜାବୁଡ଼ିକରି ଧରିଛି କାହିଁ କେତେ ଯୁଗରୁ । ଭାବୁଥାଏ ମଣିଷ ଆଗରେ ମଣିଷର ଏଭଳି ନୀଚତାର ଅଭିପ୍ରକାଶ କାହିଁକି ? ଏଭଳି ହୀନମ୍ମନ୍ୟତା କାହିଁକି ? ଅଧଃସ୍ତନ କର୍ମଚାରୀ ହେଲେ ବି ତ ସେ ଜଣେ ମଣିଷ ଯାହାର ଜନ୍ମ ହୋଇଛି ମୁକ୍ତ ଭାବରେ । ତାକୁ ସାରା ଜୀବନ କାହିଁକି ବା ବାନ୍ଧିରଖିବ ସମାଜର ନିର୍ଦ୍ଦୟ ଶୃଙ୍ଖଳ ? ସୁନାର ହେଉ ଅଥବା ଲୁହାର ବି ହେଉ ପଛକେ ? ରାଜକୀୟ ଉପବନରୁ ବହିଆସୁଥିବା ସୁବାସିତ ପବନ ବହି ବହି ସତେ ଯେମିତି ମତେ ସାବଧାନ କରିଦେଉଥିଲା, ସତର୍କ ହୁଅ ସୂତପୁତ୍ର କର୍ଣ୍ଣ ! ବିନା ପ୍ରତିବାଦରେ ମୁଣ୍ଡ ନୁଆଁଇ, ସବୁ ସହିଯାଅ; କାରଣ ସହିବାକୁ ତୁମରି ଜନ୍ମ, କହିବାକୁ ନୁହେଁ— ପ୍ରତିବାଦ କହିବାକୁ ନୁହେଁ ।

ବାସ୍ତବିକ, ସେଦିନ ସବୁ ସହି ଯାଇଥିଲି । ନିରୀହ ମେଷ ଶାବକଟି ଭଳି ବେକଟିକୁ ମୋର ଦେଖାଇ ଦେଇଥିଲି ସାମାଜିକ ବିଧିବିଧାନର ହିଂସ୍ର ସିଂହଟି ଆଗରେ ! କେବଳ ତ ସେଦିନ ନୁହେଁ । ସାରା ଜୀବନ ଧରି ମୋର ଏଇଭଳି ଭାଗ୍ୟହୀନ ସ୍ଥିତି ! ହାୟ ରେ ଦୁର୍ଭାଗା କର୍ଣ୍ଣ ! ହାୟ ରେ ସୂତପୁତ୍ର କର୍ଣ୍ଣ !!

''କି କଥା ସୂତବର ?'' ମହାରାଜଙ୍କର ବାପାଙ୍କୁ ପ୍ରତିପ୍ରଶ୍ନ ।

''ଏଇ, କର୍ଣ୍ଣଙ୍କ ଶିକ୍ଷା କଥା ।''

''ଏ କଥା ଆଉ ପଚାରିବାର ଅଛି ? ପୁତ୍ର ତୁମର ଜଣେ ବୀର ପୁରୁଷ ହେବେ ବୋଲି ଜଣାପଡୁଛି । ଭଲ ଆଚାର୍ଯ୍ୟ ଦେଖି ତାଙ୍କ ଶିକ୍ଷାଦାନର ବ୍ୟବସ୍ଥା କର ।'' ମହାରାଜଙ୍କ ଉତ୍ସାହଭରା ବାଣୀ ।

"ଏ ଗରିବ ସୂତ ଅଧିରଥ କେମିତି ପାରିବ ମହାରାଜ ? ଅଭୟ ଦେଲେ କଥାଟିଏ କହନ୍ତି । ଛୋଟ ମୁହଁରେ ବଡ଼ କଥା କହିବାକୁ ସାହସ ପାଉ ନାହିଁ ।"

"ଆରେ, ତୁମପାଇଁ ଭୟ କରିବାର କ'ଣ ଅଛି ? ପୁଣି ମୋ' ନିକଟରେ ?" ମହାରାଜ ବାପାଙ୍କୁ ଅଧିକରୁ ଅଧିକ ଉତ୍ସାହ ଦେଉଥିଲେ । ସେ କିନ୍ତୁ ଅଧିକରୁ ଅଧିକ ଝାଉଁଳିପଡୁଥିଲେ ଲାଜରେ ଲାଜକୁଳୀ ଲତାଟି ପରି । ଲାଜରେ ଯେତିକି ନୁହେଁ ହୀନମ୍ମନ୍ୟତାରେ ତାହାଠାରୁ ଅଧିକ ।

"କର୍ଣ୍ଣଙ୍କ ଶିକ୍ଷାର ବ୍ୟବସ୍ଥା ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପାଖରେ କରାନ୍ତି । ରାଜକୁମାରମାନଙ୍କ ସହିତ ସେ ଶିକ୍ଷା ପାଆନ୍ତେ । ଏ କଥା ବି ମହାରାଜଙ୍କୁ ଆଗରୁ କହିଥିଲି ।"

"ଆଉ ମୁଁ ରାଜି ହୋଇଥିଲି । ଏଇଆ ତ ?"

"ହଁ, ମହାରାଜ ।" ବାପାଙ୍କ ଆଖି ଦୁଇଟିରେ ଆଶଙ୍କାର ଲହଡ଼ି ଚହଲି ଉଠୁଥିଲା ତୁହାକୁ ତୁହା । ହୁଏତ ଭାବୁଥିଲେ– ମହାରାଜଙ୍କଠାରୁ ପୁରସ୍କାର ପାଇବେ ନା ଦଣ୍ଡ ପାଇବେ ଏଇ ଔଦ୍ଧତ୍ୟ ଲାଗି ।

"ଏଥିରେ ଆପତ୍ତି ଅଛି କେଉଁଠି ? ବାଧା ବା କେଉଁଠି ? ନା, କ'ଣ କହୁଛ ଅନୁଜ ବିଦୁର ?" ଶେଷ ବାକ୍ୟରେ ବିଦୁରଙ୍କ ଆଡ଼କୁ ଚାହିଁ ପ୍ରଶ୍ନ କଲେ ସେ ।

ଚାମରଚାଳକମାନଙ୍କ ଚାମରଚାଳନା ମୁହୂର୍ତ୍ତକ ପାଇ ବନ୍ଦ ହୋଇଗଲା । ସେମାନେ ହୁଏତ ଅତିମାତ୍ରାରେ ସ୍ତବ୍ଧ ଚକିତ ହୋଇଉଠିଥିଲେ ବାପାଙ୍କ ଏଇ ଦୁଃସାହସିକ ପ୍ରଶ୍ନରେ । ଆଉ ମହାରାଜଙ୍କ ସହଜସରଳ ସମ୍ମତିସୂଚକ ଉତ୍ତରରେ । ରାଜକୀୟ ପରମ୍ପରାରେ ଏହା ଏକ ନୂତନ ଅଧ୍ୟାୟ ସୃଷ୍ଟି କରୁଥିବା ଭଳି ଲାଗୁଥିଲା ସେମାନଙ୍କୁ । ମତେ ଲାଗୁଥିଲା, ପବନ ଯେମିତି କ୍ଷଣକାଳ ପାଇଁ ସ୍ତବ୍ଧ ହୋଇଯାଇଛି ! ଝରକା ପରଦାଗୁଡ଼ିକ ବି ଆଉ ହଲୁ ନାହିଁ । ବଡ଼ ବିଚିତ୍ର ଏ ରାଜଭବନ ! ପ୍ରକୃତିଠାରୁ ଆରମ୍ଭ କରି ସବୁ ଜୀବଜନ୍ତୁ ଏଠି ଯେମିତି ଦୃଢ଼ ଭାବରେ ଛନ୍ଦି ହୋଇଯାଇଛନ୍ତି ଚିରାଚରିତ ପୁରାତନ ରାଜକୀୟ ନିୟମ ବେଡ଼ିରେ ! ଗୋଟିଏ ହିଁ ଶଗଡ଼ଗୁଳାରେ ଗଡ଼ିଚାଲିଛି ସମସ୍ତଙ୍କ ଶଗଡ଼ଟିମାନ ।

"କିଛି ଆପତ୍ତି ନାହିଁ ମହାରାଜ । ଯୋଗ୍ୟ ଶିଷ୍ୟଙ୍କ ପାଇଁ ସେହିପରି ଜଣେ ଯୋଗ୍ୟ ଗୁରୁଙ୍କର ଆବଶ୍ୟକତା ଅଛି । ଦ୍ରୋଣାଚାର୍ଯ୍ୟଙ୍କ ଶିଷ୍ୟ ହେବାରେ କର୍ଣ୍ଣଙ୍କର ସଂପୂର୍ଣ୍ଣ ଅଧିକାର ଅଛି । କିନ୍ତୁ–" ବିଦୁର ପ୍ରଥମେ ପ୍ରଥମେ କିଛିଟା ଉତ୍ସାହଭରା କଥା କହିଲେ । କିନ୍ତୁ ତାଙ୍କ ଶେଷପଦ 'କିନ୍ତୁ'ଟି ବାପାଙ୍କୁ ଓ ମତେ କରିଦେଲା ଆଶଙ୍କା-ଜର୍ଜର । ଆତଙ୍କିତ ହୋଇଉଠିଲୁ ଆମେ । କିନ୍ତୁ ମହାରାଜଙ୍କ କଥା ମଝିରେ କାହାର କିଛି କହିବାର ସାହସ ନ ଥିଲା ।

"କିନ୍ତୁଟି ପୁଣି କ'ଣ ବିଦୁର ?" ରହସ୍ୟକୁ ଫିଟାଇବା ଲକ୍ଷ୍ୟରେ ମହାରାଜ ପଚାରିଲେ ।

"ମହାରାଜ ଦ୍ରୋଣାଚାର୍ଯ୍ୟଙ୍କ କାନରେ କଥାଟା ପକାଇପାରନ୍ତି । କିନ୍ତୁ କାହାଙ୍କୁ ଶିଷ୍ୟରୂପରେ ଗ୍ରହଣ କରାଯିବ କି ନାହିଁ ତାହା ଆଚାର୍ଯ୍ୟଙ୍କ ସଂପୂର୍ଣ୍ଣ ଇଚ୍ଛାଧୀନ ବିଷୟ ।

ଏଥିରେ କେହି ତାଙ୍କୁ ବାଧ କରିପାରିବେ ନାହିଁ ।'' ବିଦୁର କଥାଟାକୁ ଅଧିକତର ସ୍ପଷ୍ଟ କରିଦେବାକୁ ଯାଇ କହିଲେ ।

''ତଥାପି ମୋର ପ୍ରିୟ ସୂତ ଅଧିରଥଙ୍କ ପାଇଁ ମୁଁ ଦ୍ରୋଣାଚାର୍ଯ୍ୟଙ୍କୁ କହିବି ।'' ମହାରାଜ କହିଲେ । ବାପାଙ୍କ ପାଇଁ ତାଙ୍କ କଥାରେ ଦରଦ ଓ ସହାନୁଭୂତି ।

''କୃତକୃତ୍ୟ ହୋଇଗଲି ମହାରାଜ !'' ବାପା ହାତଯୋଡ଼ି ପୂର୍ବଠାରୁ ଆହୁରି ଅଧିକ ବିନୟରେ ମୁଣ୍ଡ ନୁଆଁଇ କହିଲେ । ତାଙ୍କ ମୁହଁରେ ଯେଉଁ ପରିତୃପ୍ତିର ହସ ଉକୁଟି ଉଠୁଥିଲା ତାହା ମୋ'ପାଇଁ ଥିଲା ଖୁବ୍ ସୁଖଦ ।

ବିଦୁର ପୁଣି ମୁହଁ ଖୋଲିଲେ, ''ହେ ସୂତବର ଅଧିରଥ ! ତୁମକୁ କିନ୍ତୁ ନିଜେ ଯାଇ ଦ୍ରୋଣାଚାର୍ଯ୍ୟଙ୍କୁ ଅନୁରୋଧ କରିବାକୁ ହେବ । ନିଜ ପୁତ୍ରଙ୍କୁ ତାଙ୍କ ଆଗରେ ପରିଚିତ କରାଇବାକୁ ହେବ ।''

''ତାହା ତ ନିଶ୍ଚୟ କରିବି ମନ୍ତ୍ରିବର । ଶୁଭବେଳା ଦେଖି କାଲି ହିଁ ତାଙ୍କୁ ସାକ୍ଷାତ୍ କରିବି ।'' ବାପାଙ୍କ ଉତ୍ସାହଭରା ଉତ୍ତର । ସେତେବେଳେ ଯାଇ ଜାଣିପାରିଲି ଯେ ବିଦୁର ମହାରାଜଙ୍କ ମନ୍ତ୍ରୀ ।

''ମୁଁ ମଧ କୁଶ-ସମିଧ ଧରି ଆଚାର୍ଯ୍ୟଙ୍କ ଶିଷ୍ୟ ହେବା ନିମିତ୍ତ ପ୍ରାର୍ଥନା କରିବି ।'' ସାହସ ସଞ୍ଚୟ କରି ଏତକ କହିଦେଲି ।

''ବାଃ ! ଚମତ୍କାର ! ଏଇଟା ହିଁ କଥା । ଶିଷ୍ୟଙ୍କ କର୍ତ୍ତବ୍ୟ ହେଉଛି ସେ କୁଶ-ସମିଧ ହସ୍ତରେ ଧରି ଗୁରୁଙ୍କ ଆଗରେ ଶିଷ୍ୟ ହେବାପାଇଁ ପ୍ରାର୍ଥନା କରିବେ । ତାଙ୍କର ଏତିକି ମାତ୍ର ଅଧିକାର । ଶିଷ୍ୟ ରୂପରେ ଗ୍ରହଣ କରିବାଟା ଗୁରୁଙ୍କ ଅଧିକାର । ତୁମର ନିଜ କର୍ତ୍ତବ୍ୟ ବିଷୟରେ ଠିକ୍ ଜ୍ଞାନ ଅଛି କର୍ଣ୍ଣ । ଭଗବାନ୍ ତୁମର ମଙ୍ଗଳ କରନ୍ତୁ ।'' ବିଦୁରଙ୍କ ଏଇ କେତେ ପଦ କଥା ଖୁବ୍ ଉତ୍ସାହ ଦେଲା ମତେ । ଆଉ ବାପାଙ୍କୁ ମଧ ।

ଏତିକିବେଳେ ସଂଜୟଙ୍କା ମୁହଁ ଖୋଲିଲେ, ''ମହାରାଜ ! କର୍ଣ୍ଣ ଉପଯୁକ୍ତ ଶିକ୍ଷା ପାଇ ଜଣେ ବୀରପୁରୁଷ ଭାବରେ ଉତୁରିଲେ ଆମର ବି ଲାଭ ଅଛି ।''

''ଆମର ମାନେ ?'' ମହାରାଜଙ୍କ ପ୍ରତିପ୍ରଶ୍ନ ।

''କୌରବ ସୈନ୍ୟବାହିନୀର ।''

''କିପରି ?''

''ସେ ଜଣେ ଯୋଗ୍ୟ ଅଧିକାରୀ ଭାବରେ କୌରବ ସୈନ୍ୟବାହିନୀରେ ଯୋଗ ଦେବେ । କୌରବବାହିନୀର ଦିଗ୍‌ବିଜୟ-ଯାତ୍ରାରେ ସାହାଯ୍ୟ କରିବେ ।''

''ହଁ, ନିଶ୍ଚୟ, ନିଶ୍ଚୟ ।'' ମହାରାଜ ତୃପ୍ତିଭରା ଦରହାସ ପ୍ରକଟାଇ କହିଲେ ।

ଆମେ ପିତାପୁତ୍ର ଦୁହେଁ ତାହା ପରେ ଯଥାବିଧି ଅଭିବାଦନ କରି ମହାରାଜଙ୍କଠାରୁ ବିଦାୟ ନେଲୁ ।

ଆମ ଫେରିବା ବାଟରେ ଏକ ଆକସ୍ମିକ ଘଟଣା ଘଟିଲା ଯାହା ଫଳରେ ଆଉ ପିତାମହ ଭୀଷ୍ମଙ୍କ ଦର୍ଶନ ଲାଗି ତାଙ୍କ ଭବନକୁ ଯିବାର ଆବଶ୍ୟକତା ପଡ଼ିଲା ନାହିଁ । ସେ କୌଣସି କାର୍ଯ୍ୟ ଉପଲକ୍ଷ୍ୟେ ମହାରାଜଙ୍କ ପାଖକୁ ଆସୁଥିଲେ । ରାଜଭବନର ଶେଷ ପାହାଚ ଅତିକ୍ରମ କରି କେତୋଟି ମାତ୍ର ପାଦ ଆଗେଇଛୁ କି ନାହିଁ ତାଙ୍କ ସହିତ ଭେଟ ହୋଇଗଲା । ବାପା ଓ ମୁଁ ତାଙ୍କୁ ଯଥାବିଧି ଅଭିବାଦନ କଲୁ । ବାପା ମତେ ତାଙ୍କ ସହିତ ପରିଚିତ କରାଇଦେବା ଉତ୍ତାରୁ ସେ ମତେ ଆଦରରେ ଡାକିଲେ, ''ଆସ ବତ୍ସ କର୍ଣ୍ଣ, ଆସ ।'' ତାଙ୍କ ମୁଖମଣ୍ଡଳରେ ଗାମ୍ଭୀର୍ଯ୍ୟ ଭରିରହିଥିଲେ ହେଁ ମତେ ଲାଗୁଥିଲା, ଏଇ ସ୍ନେହଭରା ଡାକରେ ସେ ଯେମିତି ତୁଙ୍ଗ ତରଙ୍ଗ ଭଳି ତରଳି ଯାଉଛନ୍ତି । ତାଙ୍କ ଦୀର୍ଘ ବପୁର ଓଜସ୍ୱୀ ତେଜ ଦେଖି ଆମ ଶିର ଆପେ ଆପେ ନଇଁ ଯାଉଥାଏ ଭକ୍ତି ଓ ଶ୍ରଦ୍ଧାରେ । ଦେହରେ ଶ୍ୱେତ ବସ୍ତ୍ର । ପ୍ରଶସ୍ତ ବକ୍ଷରେ ପ୍ରଲମ୍ବିତ ଯଜ୍ଞୋପବୀତଟି ଖୁବ୍ ଶୋଭାବନ ଦିଶୁଥାଏ ଠିକ୍ ଶ୍ୱେତଗଙ୍ଗାର ଧାରାଟି ଭଳି । ଭାରି ମାନୁଥାଏ ତାଙ୍କ ଗୋରା ଦେହକୁ । ପାଦରେ ଶ୍ୱେତ ରଙ୍ଗର ଜୋତା । ଧୋବ ଫର ଫର ମୁଣ୍ଡ ବାଳ ଓ ଦାଢ଼ି ବାର୍ଦ୍ଧକ୍ୟର ସୂଚନା ଦେଉଥାଏ । ଅଥଚ ତେଜସ୍ୱିତା ଓ ପାଦର ଗତି ଏଥିରୁ ଲେଶ ମାତ୍ର ବାର୍ଦ୍ଧକ୍ୟ ସୂଚିତ ହେଉ ନ ଥାଏ । ସତେଯେମିତି ସେ ଥାଆନ୍ତି ଜଣେ ଚିରନବୀନ ଯୁବକ । ଅମିତବଳବୀର୍ଯ୍ୟରେ ଭରପୂର । ଉଦ୍ଦାମତାରେ ଉଚ୍ଛଳ ଠିକ୍ ଜଳପ୍ରପାତ ଭଳି । ସମସ୍ତଙ୍କର ନମସ୍ୟ ଏଇ ମହାମହିମ ପିତାମହ ଭୀଷ୍ମ ।

ମୋର ପ୍ରଶସ୍ତ ବକ୍ଷ, ଉନ୍ନତ କପାଳ, ଜନ୍ମଜାତ କବଚ-କୁଣ୍ଡଳ ଆଦି ଦେଖି ସେ ମତେ ପୁଣି ଆଦରରେ ପ୍ରଶ୍ନ କଲେ, ''ତୁମେ ଜୀବନରେ କ'ଣ ହେବାପାଇଁ ଲକ୍ଷ୍ୟ ରଖିଛ ବାପା କର୍ଣ୍ଣ ?''

ଉତ୍ତର ଦେବାପାଇଁ ମୁହୂର୍ତ୍ତେ ମାତ୍ର ଲାଜେଇ ଯାଇଥିଲି । କିନ୍ତୁ ପରକ୍ଷଣରେ ଏଇ ଦୁର୍ବଳତାକୁ ହଟାଇଦେଇ ଉତ୍ତର ଦେଲି; ଏ ଜୀବନରେ ଜଣେ ଭଲ ମଣିଷ ଓ ବୀରପୁରୁଷ ହେବାକୁ ଚାହେଁ ।''

''ବାଃ ! ବଡ଼ ଚମତ୍କାର ଲକ୍ଷ୍ୟ ! ତୁମ ଆଶା ନିଶ୍ଚୟ ଫଳିବ । ମୁଁ ଆଶୀର୍ବାଦ କରୁଛି ।'' ଏହା କହି ଆଶୀର୍ବାଦର ମୁଦ୍ରା ଦେଖାଇ ହାତ ଟେକିଲେ । ତାହା ପରେ ବାପାଙ୍କ ଆଡ଼କୁ ଚାହିଁ କହିଲେ, ''ହେ ସୂତବର ଅଧିରଥ ! ତୁମ ପୁତ୍ରଙ୍କର ଉଚ୍ଚ ଆକାଙ୍‌କ୍ଷା ଅଛି । ମହତ୍ ଅଭିଳାଷ ଅଛି । ତାହା ପୂରାଇବା ଲାଗି ତାଙ୍କୁ ସବୁ ପ୍ରକାର ସୁଯୋଗ ଦିଅ ।''

''ସେହି ସୁଯୋଗ ଦେବାପାଇଁ ତ ତାଙ୍କୁ ଚମ୍ପାପୁରୀରୁ ହସ୍ତିନାପୁରକୁ ନେଇଆସିଛି । ଆପଣଙ୍କ ସୁଦୟା ହେଲେ ସବୁକିଛି ସମ୍ଭବ ହୋଇପାରିବ ପ୍ରଭୋ !'' ବାପା ବିନୟାବନତ ହୋଇ କହିଲେ ।

''କହ, ମୁଁ କ'ଣ କରିପାରିବି ?'' ପିତାମହଙ୍କ କଣ୍ଠର ଭାଷାରେ ଶିଷ୍ଟାଚାର ଓ ସହାୟତା ଦେବାଲାଗି ଉଦଗ୍ର ଉତ୍କଣ୍ଠା ଭରି ଉଠୁଥିଲା ।

ବାପା ସବୁ ଘଟଣା ଗୋଟି ଗୋଟି କରି କହିଗଲେ ଓ ମହାରାଜ ମତେ ଶସ୍ତ୍ରବିଦ୍ୟା ଶିଖିବାଲାଗି ଦ୍ରୋଣାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣର ଅନୁମତି ଦେଇଥିବା କଥା ମଧ କହିଦେଲେ । ଆଉ ପିତାମହଙ୍କୁ ନିଜ ସହମତି ଲାଗି ଅନୁରୋଧ କଲେ ।

ପିତାମହ ପୂର୍ବଭଳି ଅନୁରାଗ ଓ ଆଦରଭରା କଣ୍ଠରେ କହିଲେ, ''ମୁଁ ଏଥିରେ ସଂପୂର୍ଣ୍ଣ ସହମତ ଅଧିରଥ । ତୁମେ ପୁତ୍ରଙ୍କ ସହିତ ଦ୍ରୋଣାଚାର୍ଯ୍ୟଙ୍କୁ ଦେଖା କର ।'' ଏହା କହି ସେ ରାଜଭବନକୁ ଯିବାପାଇଁ ଉଦ୍ୟତ ହେଲେ ।

''ଯେ ଆଜ୍ଞା ପ୍ରଭୋ ।'' ପିତାଙ୍କ ସ୍ୱରରେ କୃତଜ୍ଞତା ଛଳ ଛଳ । ସେ ଓ ମୁଁ ତାଙ୍କୁ ଯଥାବିଧି ବିଦାୟର ଅଭିବାଦନ କଲୁ ।

ଫେରିଲାବେଳେ ମତେ ଲାଗୁଥିଲା, ସତେଯେମିତି ମୋ' ହୃଦୟରେ ରୁଦ୍ଧ ଦ୍ୱାରଟିରେ ଅଗଣିତ ଆଶାରେ ଲହରୀମାଳା ଉଦ୍‌ବେଳିତ ହୋଇଉଠୁଛି ଓ ବାରମ୍ବାର ତାହାକୁ ଆଘାତ କରୁଛି ! ସତେଯେମିତି ଦ୍ୱାରଟି ଫିଟିଯିବ ଓ ତାହାରି ମଧଦେଇ ଆସୁଥିବା ସେହି ଲହରୀର ଫୁଲିଲା ଜଳଭଣ୍ଡାର ମୋର ସାରା ଭବିଷ୍ୟତ-ଜୀବନକୁ ସିକ୍ତ କରିଦେବ ! ବାପାଙ୍କ ମୁଖମଣ୍ଡଳରୁ ବୁଝିପାରୁଥିଲି, ସେ ମଧ ସେମିତି ଖୁସି ଥିଲେ । ସେମିତି ସ୍ୱପ୍ନର ସୁବାସ ଦେହସାରା ବୋଳି ହେଉଥିଲେ ! ଆଶା ଓ ସ୍ୱପ୍ନ । ତାହାରି ଭିତରେ ଉବେଇ-ଟୁବେଇ ହେଉଥିଲୁ ଆମେ ପିତା ପୁତ୍ର ଦୁହେଁ ।

କେତେବେଳେ ଯେ ଏହା ଭିତରେ ଘରେ ପହଞ୍ଚିଗଲୁ ତାହା ଜାଣିପାରି ନ ଥିଲୁ ।

## ବାର

ସେ ଦିନର ଅପରାହ୍ଣ । ସୂର୍ଯ୍ୟ ବୁଡ଼ିବାକୁ ତଥାପି ଅନେକ କିଛି ସମୟ ବାକି । ଆମ ଅଗଣାର ବିଭିନ୍ନ ଗଛମୂଳରେ ଛାଇ ଓ ଆଲୁଅର ଲୁଚକାଳି ଖେଳ । ଗଛଡାଳରେ କୁଆଟା ରାବିଉଠିଲା ରାଉ ରାଉ କରି । ମାଆ କହୁଥିଲେ କୁଆ ରାବିଲେ କୁଆଡ଼େ କିଛି ଗୋଟାଏ ଶୁଭ ଖବର ଆସେ । ଏହି ବିଶ୍ୱାସ ଗଢ଼ିଆସୁଛି କାଳକାଳରୁ । ମୁଁ ଅବଶ୍ୟ ନିଜେ ପରୀକ୍ଷା କରି ନାହିଁ ସେଭଳି ଖବର ଆସେ କି ନାହିଁ ବୋଲି । ତଥାପି ସେ ଦିନ କାହିଁକି ମନରେ କଅଁଳି ଉଠିଲା ଆଶାର ଛୋଟ ଚାରାଟିଏ । କିଛି ଶୁଭ ଖବର ଆସିବ ବୋଧହୁଏ ! ଭାବିଲି, ସୂତ ପରିବାରରେ ମଣିଷର ସାରା ଜୀବନତ ବିତିଯାଏ ସବୁ କିଛି ଅଶୁଭ ମଧରେ । ଅଭାବ, ଅଘଟନ, ଅପମାନ, ସାମାଜିକ ନିର୍ଯାତନା, ଦୁଃଖ ଓ ଲୁହ ମଧରେ । ଏଭଳି ନୈରାଶ୍ୟର ଝଞ୍ଜାପବନରେ । ଆକୁଳିତ ଜୀବନରେ କେତୋଟି ମୁହୂର୍ତ୍ତ ପାଇଁ ଆଶାର ସୁଲୁସୁଲିଆ ପବନ ଯଦି ବହିଲା, ସେଥିରେ କ୍ଷତି ବା କ'ଣ ? ସେଇ ପବନ ପ୍ରକୃତରେ ବହୁ କି ନ ବହୁ ସେଥିପାଇଁ ଆଶା କରିବାରେ କ୍ଷତି ବା କ'ଣ ? କାରଣ ଆଶା ହିଁ ତ ଜୀବନ । ତାହାକୁ ଧରି ହିଁ ମଣିଷ ବଞ୍ଚିଥାଏ । ତାହା ବିନା ଯେ ଜୀବନ ଦୁର୍ବିଷହ ।

ମୁଁ ଘରେ ଥିଲି ଏକାକୀ । ବାପା ଯାଇଥିଲେ ରାଜକାର୍ଯ୍ୟରେ ରାଜଭବନକୁ । ତାଙ୍କର ଫେରିବାକୁ ତଥାପି ଡେରି ଅଛି ।

ଏଭଳି ଆଶା ନେଇ ମାନସିକ ଆନନ୍ଦାନୁଭୂତିରେ ବୁଡ଼ିଥିବା ବେଳେ ଦ୍ୱାରଦେଶରେ କାହାର କରାଘାତରେ ଚମକି ପଡ଼ିଲି । ସ୍ୱପ୍ନ ମୋର ଭାଙ୍ଗିଗଲା ।

''କିଏ ?'' ତରବର ହୋଇ ଉଠିଲି ଓ ଘରେ ଥାଇ ପ୍ରଶ୍ନ କଲି ।

''ମୁଁ ବସୁ । କବାଟ ଖୋଲ ।'' ବାରିପାରିଲି ବାପାଙ୍କ କଣ୍ଠସ୍ୱର । ଆଶ୍ଚର୍ଯ୍ୟ ହେଲି ସେ ଏତେ ଶୀଘ୍ର ଫେରିଆସିଥିବାରୁ । ସ୍ୱପ୍ନସଜଳ ତରଳ ମନ୍ ମୋର ନିଜକୁ ପଚାରୁଥାଏ, ''କ'ଣ ସେ କିଛି ଶୁଭ ଖବର ଆଣିଛନ୍ତି କି ମୋ' ପାଇଁ ?''

ଅତି ଶୀଘ୍ର କବାଟ ଖୋଲିଦେଲି । ଦେଖିଲି, ବାପା ଏକାକୀ ଆସି ନାହାନ୍ତି । ସାଥିରେ ଆଣିଛନ୍ତି ଜଣେ ଆଗନ୍ତୁକକୁ । ଆଗନ୍ତୁକଙ୍କ ବେଶଭୂଷା ଓ ଚାହାଣିରୁ ଜାଣିପାରିଲି ସେ ନିଶ୍ଚୟ ଜଣେ ବ୍ରାହ୍ମଣ ହେବେ କିମ୍ୱା ସେହିଭଳି ଜଣେ ଉଚ୍ଚବର୍ଣ୍ଣର ଲୋକ ହେବେ । ଚେହେରାରୁ ଜଣାପଡୁଥାଏ, ପ୍ରୌଢ଼ାବସ୍ଥା ଅତିକ୍ରମ କରିଯାଇଛନ୍ତି । ମୁଣ୍ଡବାଳ, ନିଶ ଦାଢ଼ି ଅଧାରୁ ବେଶି ଧଳା । କପାଳରେ ତ୍ରିପୁଣ୍ଡ୍ରର, ଚିତା ସହିତ ସିନ୍ଦୂର ଟୋପା । ବଡ଼ ପ୍ରଭାବଶାଳୀ ଜଣାପଡୁଥାନ୍ତି । ସୌଜନ୍ୟ ଦୃଷ୍ଟିରୁ ଓ ବୟସ୍ୟମାନଙ୍କ ପ୍ରତି ମୋର ଥିବା ସହଜାତ ଭକ୍ତି ଦୃଷ୍ଟିରୁ ତାଙ୍କୁ ପ୍ରଣାମ କଲି ।

''ଦୀର୍ଘାୟୁର୍ଭବ ବତ୍ସ କର୍ଣ୍ଣ ।'' ସେ ଆଶୀର୍ବାଦ- ମୁଦ୍ରାରେ ହାତ ଟେକି କହିଲେ ।

ଆଶ୍ଚର୍ଯ୍ୟ ହେଲି । ଆଗନ୍ତୁକ ମୋ' ନାଁ ଜାଣିଲେ କେମିତି ? ଭାବିଲି, ବାପା ବୋଧହୁଏ ତାଙ୍କୁ ଆଗରୁ କହାଇ ଦେଇଛନ୍ତି ।

ବାପା ତାଙ୍କୁ ସ୍ୱାଗତ କରି ଘର ଭିତରକୁ ନେଇଆସିଲେ ଓ କୁଶାସନଟିଏ ଦେଲେ ବସିବାକୁ । ତାହା ପରେ ନିଜେ ବସିଲେ ତାଙ୍କ ପାଖରେ । ତାଙ୍କ ନିର୍ଦ୍ଦେଶରେ ମୁଁ ମଧ୍ୟ ପାଖରେ ବସିଲି । ଆଗନ୍ତୁକ ସ୍ୱସ୍ଥ ହେବା ଉତ୍ତାରୁ ପିତା ମତେ କହିଲେ, ''ଯେ ହସ୍ତିନାପୁରର ଶ୍ରେଷ୍ଠ ଜ୍ୟୋତିଷାଚାର୍ଯ୍ୟ ବସ୍ତଶର୍ମା । ଗଣନାୟାନରେ ନିର୍ଭୁଲ । ରାଜଭବନକୁ ଆସିଥିଲେ । ମୋ' ଅନୁରୋଧରେ ଆମ ଘରକୁ ଆସିଛନ୍ତି ।'' ତାହା ପରେ ଜ୍ୟୋତିଷାଚାର୍ଯ୍ୟଙ୍କୁ ଲକ୍ଷ୍ୟକରି କହିଲେ, ''ଯେ ମୋ' ଜ୍ୟେଷ୍ଠପୁତ୍ର କର୍ଣ୍ଣ । ଡାକ ନାଁ ବସୁ ଓ ବୃଷ ।''

''ମହାମହିମ ଜ୍ୟୋତିଷାଚାର୍ଯ୍ୟଙ୍କ ପାଦଧୂଳି ଆମ ଘରେ ପଡ଼ିଲା । ଆମେ କୃତାର୍ଥ ।'' ଏତକ କଥା ସାହସ ବାନ୍ଧି ଜଣେ ବଡ଼ମଣିଷଙ୍କ ଭଳି କହିଦେଲି । ଜ୍ୟୋତିଷାଚାର୍ଯ୍ୟ ହଠାତ୍ ଚମକି ଉଠିଲେ ଓ ମୋ'ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ । ବିଶେଷ କରି ମୋ' ମୁହଁକୁ ଓ କପାଳକୁ । ଭାବୁଥାଏ, ମୋର କହିବାରେ କିଛି ଭୁଲ ରହିଗଲା କି ? କିଛି ଅସୌଜନ୍ୟ ରହିଗଲା କି ? ଅପ୍ରତିଭ ହୋଇଉଠୁଥିଲି ।

ମୋର ସମସ୍ତ ଆଶଙ୍କାକୁ ଦୂର କରିଦେଇ ଜ୍ୟୋତିଷାଚାର୍ଯ୍ୟ ବାପାଙ୍କୁ କହିଲେ, ''ତୁମେ ଧନ୍ୟ ସୂତବର ଅଧିରଥ । ଏଭଳି ପୁତ୍ର ପାଇ ଧନ୍ୟ । କିଶୋର ବୟସରେ ଏଭଳି ଶିଷ୍ଟାଚାରଜ୍ଞାନ କ୍ୱଚିତ୍ ଦେଖାଯାଏ । ମୁଁ ୟାଙ୍କ କରକପାଳ-କୋଷ୍ଠୀ ଆଜି ଭଲ ଭାବରେ ଦେଖିନେବି ।''

ବାପା ବିନୟୀ ହୋଇ କହିଲେ, ''ହେ ଆଚାର୍ଯ୍ୟ । ଆପଣଙ୍କ ପ୍ରସାଦ ମତେ ଆଜି ଧନୀ କରିଦେଲା । କିନ୍ତୁ କର୍ଣ୍ଣଙ୍କ କୋଷ୍ଠୀ ତ ଏଠି ନାହିଁ । ଗାଁରେ ଅଛି ।''

''କିଛି କ୍ଷତି ନାହିଁ । ମୁଁ କରକପାଳ କେବଳ ଦେଖିନେବି । ସେଥିରୁ ଅନେକ କିଛି ଭାଗ୍ୟଫଳ ଜଣାପଡ଼ିବ । ଜାତକର ଜନ୍ମମୁହୂର୍ତ୍ତ ଠିକ୍ ଭାବରେ ନିରୂପିତ ହୋଇ ନ ଥିଲେ କୋଷ୍ଠୀ ଗଣନା ହୁଏତ ଭୁଲ ହୋଇପାରେ । କିନ୍ତୁ କରକପାଳର ଗଣନା । ଏହା ତ ବିଧାନଙ୍କ ଦତ୍ତ । ଏହା କଦାପି ଭୁଲ ହୋଇ ନ ପାରେ ।'' ଜ୍ୟୋତିଷାଚାର୍ଯ୍ୟଙ୍କ କଥାରେ ଦୃଢ଼ତା ଓ ଆତ୍ମବିଶ୍ୱାସର ଲହଡ଼ି । ଆଖି ଦୁଇଟିରେ ତେଜସ୍ୱିତା । ଚାହାଣି ତୀକ୍ଷ୍ଣରୁ ତୀକ୍ଷ୍ଣତର । ବସିବା, କଥା କହିବା, ଚାହିଁବା ଆଦି ସବୁଥିରେ ଦାମ୍ଭିକତା । ସବୁଥିରେ ଅଭିମାନର ତୀବ୍ର ଗନ୍ଧ !

ମତେ ଏହିସବୁ କଥା କୌତୁକପୂର୍ଣ୍ଣ ଲାଗୁଥାଏ । ଅନୁସନ୍ଧିତ୍ସୁ ଚିତ୍ତରେ କୌତୂହଳ ଉଠୁଥାଏ ଚହଲି । ମୁହଁ ସାମାନ୍ୟ ନୁଆଁଇ ଦେଇ ବସିଥାଏ । ବିନୟରେ, ସଂଭ୍ରମରେ ଓ ଲାଜରେ । ଭାବୁଥାଏ ମନରେ କେଡ଼େ ଜ୍ଞାନୀ ସତେ ଯେ ଜ୍ୟୋତିଷାଚାର୍ଯ୍ୟ ! ତାଙ୍କ ଆଗରେ ମୁଁ ସାମାନ୍ୟ ତୃଣଟିଏ ସିନା !

''ବତ୍ସ କର୍ଣ୍ଣ ! ମୋ' ଆଡ଼କୁ ଟିକିଏ ଚାହଁ ତ ।'' ଜ୍ୟୋତିଷାଚାର୍ଯ୍ୟଙ୍କ ଗମ୍ଭୀର ଓ ସ୍ନେହଭରା ନିର୍ଦ୍ଦେଶରେ ତାଙ୍କ ଆଡ଼କୁ ଚାହିଁଲି । ସେ ମୋ' କପାଳକୁ ତୀକ୍ଷ୍ଣ ଦୃଷ୍ଟିରେ ବାରମ୍ବାର ପରୀକ୍ଷା କଲେ ଓ ପିତାଙ୍କୁ କହିଲେ, ''ହେ ସୂତରାଜ ! ତୁମ ପୁତ୍ର ବଡ଼ ଭାଗ୍ୟବାନ୍ । କପାଳରେ ରବି-ଚନ୍ଦ୍ର ଚିହ୍ନ ସେ ରାଜା ହେବେ । ବଡ଼ ବଡ଼ କର୍ମକ୍ଷେତ୍ରରେ ଓ ରାଜନୈତିକ କ୍ଷେତ୍ରରେ ଉନ୍ନତି କରିବେ ।''

''ମୋ' ପୁତ୍ରଙ୍କ ଜନ୍ମ ତ ସୂତକୁଳରେ । ସେ ପୁଣି ରାଜା ହେବେ କେମିତି ? ଏହା ଅସମ୍ଭବ ଲାଗୁଛି । ମତେ ବି ତ ଲୋକେ ସୂତରାଜ ବୋଲି କହୁଛନ୍ତି । ହୁଏତ ସେମିତି କିଛି ରାଜା ହୋଇପାରନ୍ତି ।''

''ନା, ସୂତକୁଳର ରାଜା ନୁହେଁ । ରାଜ୍ୟର ରାଜା ହେବେ । କିପରି ହେବେ ତାହା କହିପାରିବି ନାହିଁ । କିନ୍ତୁ କପାଳରେଖା ସେଇ ସୂଚନା ହିଁ ଦେଉଛି ।'' ଜ୍ୟୋତିଷାଚାର୍ଯ୍ୟଙ୍କ କଣ୍ଠର ଦୃଢ଼ତା ବଢ଼ିଉଠୁଥାଏ । ସେ ତର୍ଜନୀ ନିର୍ଦ୍ଦେଶ କରି ନିଶ୍ଚୟାତ୍ମକ ସ୍ୱରରେ କହୁଥାନ୍ତି ।

''ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ମତେ ।'' ବାପାଙ୍କ ମୁଖମଣ୍ଡଳରେ ବିସ୍ମୟ ଓ ଆନନ୍ଦର ମିଶ୍ରିତ ଭାଙ୍ଗ । ସତ କହୁଛି, ଏଇ କଥା ଶୁଣି କିଶୋର ମନ ମୋର ଫୁଲି ଉଠୁଥିଲା । ସତେଯେମିତି ଛାତି-ତଳେ ଶତ ଶତ ଶତଦଳ ପଦ୍ମ ଏକାଠି ବିକଶି ଉଠୁଥିଲା ! ପୌରୁଷର ପଦ୍ମ । ମହତ୍ତ୍ୱାକାଙ୍‌କ୍ଷାର ପଦ୍ମ । କିନ୍ତୁ କିଛି ନ କହି ନୀରବ ରହିଥିଲି ।

''ଖାଲି ସେତିକି ନୁହେଁ ସୂତବର । ଏହାର ସୂଚନା ତାଙ୍କ ହସ୍ତରେଖାରେ ମଧ୍ୟ ଥିବ ।'' ଏହା କହି ସେ ମୋ' ହସ୍ତର ରେଖାଗୁଡ଼ିକୁ ପରୀକ୍ଷା କରିବାକୁ ଲାଗିଲେ ତନ୍ନ ତନ୍ନ କରି ।

''ଏଇ ଦେଖିପାରୁଛ ଅଧିରଥ, ଏଠି କ'ଣ ଅଛି ?''

''କ'ଣ ଆଚାର୍ଯ୍ୟବର ?'' ବାପାଙ୍କ ବିସ୍ମୟ ଓ କୌତୂହଳ ବଢ଼ି ଉଠୁଥାଏ ।

''ରବିକ୍ଷେତ୍ରରେ ଛକ ଚିହ୍ନ । ଏଥିରୁ ସୂଚନା ମିଳୁଛି, ଯେ ନିଜ ଭାଗ୍ୟକୁ ନିଜେ ହିଁ ଗଢ଼ିବେ । ଅଶେଷ କ୍ଷମତାର ଅଧିକାରୀ ହେବେ । ପୁଣି ଏଇଟିକୁ ଦେଖ । ରବିରେଖା ଆୟୁ-ରେଖାରୁ ବାହାରି ଚନ୍ଦ୍ର-କ୍ଷେତ୍ରକୁ ସ୍ପର୍ଶ କରୁଛି । ଏଭଳି ଥିଲେ ମନୁଷ୍ୟ କାହାରି ସାହାଯ୍ୟ ନ ନେଇ ନିଜ ଭାଗ୍ୟକୁ ନିଜେ ଗଢ଼ିଥାଏ ।''

''ଆଉ ପୁଣି କ'ଣ ଦେଖିପାରୁଛନ୍ତି ?''

''ଯାଙ୍କର ବୃହସ୍ପତି-କ୍ଷେତ୍ରଟି ଉଚ୍ଚ । ଯେ ତେଣୁ ଅନ୍ୟକୁ ସହଜରେ ବଶ କରପାରିବେ ଓ ଜଣେ ବିଦ୍ୱାନ୍ ଭାବରେ ସର୍ବତ୍ର ପୂଜା ପାଇବେ ।''

ପରେ ପରେ ପୁଣି କହିଉଠିଲେ, ''ଆରେ ଏଠି ମୁଁ ଯେ ପୁଣି କ'ଣ ଦେଖୁଛି ?''

''କ'ଣ ପ୍ରଭୋ ?'' ବାପାଙ୍କ କଣ୍ଠରେ ଆତଙ୍କିତ ସ୍ୱର କିଛି ଗୋଟିଏ ଖରାପ କଥା ଶୁଣିବାର ଆଶଙ୍କା ତାଙ୍କ ମନକୁ ଦେଉଥିଲା ଚହଲାଇ । ଅଶେଷ ଭୟଭୀତ ସେ ହୋଇଉଠୁଥିଲେ ।

''କିଛି ଖରାପ କଥା ନୁହେଁ । ସବୁ ଭଲ କଥା । ମୋର ପୂର୍ବ ନିର୍ଣ୍ଣୟକୁ ସମର୍ଥନ କରୁଥିବାର ଆଉ ଏକ ବଳିଷ୍ଠ ପ୍ରମାଣ ।''

ବାପାଙ୍କ ମନୋଭାବ ହଠାତ୍ ବଦଳିଗଲା । ମୁହଁରେ ଆଶୋଜ୍ଜ୍ୱଳ ଦୀପ୍ତି ଉଠିଲା ଉକୁଟି । ସେ ଉତ୍ସୁକତାଭରା ପ୍ରଶ୍ନ କଲେ, ''ଆଉ କ'ଣ ଦେଖୁଛନ୍ତି ଆଚାର୍ଯ୍ୟବର ?''

''ତୁମ ପୁତ୍ରଙ୍କ ହସ୍ତର ବୃଦ୍ଧାଙ୍ଗୁଳିଟିକୁ ଦେଖୁଛି । ତୁମେ ବି ଦେଖ, ତାହା କେମିତି ସ୍ଥୂଳ ! ଆଉ ଦୀର୍ଘ ବି । ଏଭଳି ଲକ୍ଷଣ ଥିଲେ, ମନୁଷ୍ୟ ନିଜ ଇଚ୍ଛା ଅନୁସାରେ ଭାଗ୍ୟକୁ ପରିବର୍ତ୍ତନ କରିଥାଏ । ଆଉ ମଧ୍ୟ ନିଜ ମହିମାକୁ ପ୍ରକାଶିତ କରିଥାଏ । ତେଣୁ ପୁତ୍ର ତୁମର ଯଶସ୍ୱୀ ହେବେ ନିଜ ଇଚ୍ଛାରେ । ନିଜ ଚେଷ୍ଟାରେ ।''

''କର୍ଣ୍ଣଙ୍କର ଇଚ୍ଛା ଜଣେ ବୀର ହେବାପାଇଁ । ପିଲାଟି ଦିନରୁ ତାଙ୍କର ଅସ୍ତ୍ରବିଦ୍ୟା ପ୍ରତି ଖୁବ୍ ଆଗ୍ରହ । ସେ ବୀର ହୋଇପାରିବେ ନା ନାହିଁ ?''

''କାହିଁକି ନୁହେଁ ? ନିଶ୍ଚୟ, ନିଶ୍ଚୟ । ଖାଲି ତ ଅସ୍ତ୍ରବିଦ୍ୟାରେ ନୁହେଁ, ସକଳ ବିଦ୍ୟାରେ ହେବେ ପଣ୍ଡିତ । ଜଗତ୍‌ରେ ଖୁବ୍ ପ୍ରଶଂସା ପାଇବେ ।''

''ଆଚାର୍ଯ୍ୟଙ୍କ ତୁଣ୍ଡ ସୁତୁଣ୍ଡ ହେଉ । ତାଙ୍କ ଆଶୀର୍ବାଦ ସଦା-ସର୍ବଦା ଥାଉ ।'' ବାପା ବିନୟାବନତ ହୋଇ କୃତଜ୍ଞତାଭରା ସ୍ୱରରେ କହିଥିଲେ ।

''ମୁଁ ବା କ'ଣ କରିପାରିବି ? ଯେ ତ ଭାଗ୍ୟର ଲିଖନ । ବିଧିର ବିଧାନ । ଏହା ଘଟିକରି ଅଛି ।''

ବାପାଙ୍କ ମୁଖମଣ୍ଡଳକୁ ପୁଣି ଲକ୍ଷ୍ୟ କଲି । ଖୁବ୍ ପ୍ରସନ୍ନ । ସତେ ଯେମିତି ସ୍ୱର୍ଗସୁଖ ମିଳିଗଲା ତାଙ୍କୁ ! ଅଥବା ଦୀନ-ଦରିଦ୍ର ବିଚରା ବହୁଦିନର ସଞ୍ଚିତ ହଜିଲା ଧନଟିକୁ ଫେରିପାଇଲା ! ବାସ୍ତବିକ, ଏହା ଥିଲା ତାଙ୍କ ପାଇଁ ହଜିଲା ଧନ ଫେରିପାଇବାଠାରୁ ଆହୁରି କିଛି ଅଧିକ । ସୂତକୁଳରେ ଜନ୍ମ । ପୁଣି ଦାରିଦ୍ର୍ୟର ଉତ୍କଟ ନିପୀଡ଼ନ । ତାହା ସାଥେ ସାଥେ ସାମାଜିକ ଉପେକ୍ଷା ଓ ଅବମାନନା । ଏଥିରେ ହଜିଯାଇଥିଲା ତାଙ୍କ

ସୌଭାଗ୍ୟ । ମିଳାଇଯାଇଥିଲା ବଡ଼ ହେବାର ଆଶା । ମରୁଭୂମିର ଶୁଖିଲା ବାଲିରେ ମରିଯାଇଥିଲା ତୃଣର କ୍ଷୀଣ ଜୀବନ-ଧାରାଟି । ଏଇ ଭବିଷ୍ୟଦ୍‌ବାଣୀ ତାଙ୍କର ସେଇ ହଜିଲା ସୌଭାଗ୍ୟକୁ କେବଳ ତ ଫେରାଇଦେବାର ସୂଚନା ଦେଉ ନ ଥିଲା; ଏହା ବରଂ ନୂତନ ସୌଭାଗ୍ୟର ସୁନ୍ଦର ଫୁଲବନଟିଏ ଗଢ଼ିତୋଳିବାର ପ୍ରତିଶ୍ରୁତି ଦେଉଥିଲା । ବୃଦ୍ଧାବସ୍ଥାରେ ତାଙ୍କ ଶୁଷ୍କ ଜୀବନବୃକ୍ଷଟିରେ ନବପଲ୍ଲବ ଭରିଦେଉଥିଲା !

ଭାବୁଥାଏ, ପିତା ବୋଲି ଏଇ ଶବ୍ଦଟିର ଅର୍ଥ-ତାତ୍ପର୍ଯ୍ୟଟିକୁ । ଅନେକବାର ଗ୍ରାମ ପାଠଶାଳାରେ ଗୁରୁ ମତେ ଏହାର ଅର୍ଥ ବୁଝାଇଛନ୍ତି । ସେ ସନ୍ତାନକୁ ପାଳନ କରନ୍ତି । ତେଣୁ ତାଙ୍କୁ କୁହାଯାଏ ପିତା । କିନ୍ତୁ ମୋ' ମତରେ ଏଇଟି ପିତାଙ୍କର ଗୋଟିଏ ସ୍ୱରୂପ ମାତ୍ର । ତାଙ୍କୁ କେବଳ ଜାଣିବାକୁ, ବୁଝିବାକୁ ହେବ ନାହିଁ । ବରଂ ଅନୁଭବ କରିବାକୁ ହେବ । ଶୋଣିତର ପ୍ରତିଟି ବିନ୍ଦୁ ମଧ୍ୟରେ ଅନୁଭବ କରିବାକୁ ହେବ । ପ୍ରତିଟି ନିଃଶ୍ୱାସ କିମ୍ୱା ପ୍ରଶ୍ୱାସରେ ଅନୁଭବ କରିବାକୁ ହେବ । ସନ୍ତାନ ଶିଶୁ ଥିଲାବେଳେ ପିତା ତା' ନିକଟରେ ଘାସଟିଏ ଭଳି ଛୋଟ ଓ କଅଁଳିଆ । ଅଥଚ ସେ ଯେତେ ବଡ଼ ହୁଏ, ତା'ର ଯେତେ ଜ୍ଞାନ ହୁଏ, ପିତା ତା' ଆଗରେ ହୋଇଉଠନ୍ତି ହିମାଳୟଠାରୁ ଉଚ୍ଚତର । ତୁଙ୍ଗିମାରେ ତାହାର ଶୀର୍ଷତମ ଶୃଙ୍ଗଠାରୁ ଆହୁରି ଉଚ୍ଚତର ! ପଦେ ପଦେ ଅନୁଭବ କରିଛି ପିତାଙ୍କ ଅବଦାନ କେତେ ମହାନ୍ ! ତାଙ୍କ ଉଦାରତା କିଭଳି ଗଭୀର ଓ ଅନନ୍ୟ ! ସେ ନିଜେ ଅନ୍ଧାରରେ ଥାଇ ସନ୍ତାନର ଘରେ ଆଲୁଅ ଜାଳିଦିଅନ୍ତି । ମାଟିଦୀପଟିର ଆଲୁଅ ହେଉ ପଛକେ । ନିଜେ ନ ଖାଇ ସନ୍ତାନକୁ ଖୁଆନ୍ତି । ନିଜେ ନ ପିନ୍ଧି ସନ୍ତାନକୁ ପିନ୍ଧାନ୍ତି । ଆପଣା ଜୀବନର ମହୁ ଟିକକ ନିଃଶେଷ କରିଦେଇ ତାହାକୁ ଢାଳିଦିଅନ୍ତି ସନ୍ତାନର ଜୀବନପାତ୍ରରେ । ଏଭଳି ତ୍ୟାଗର ଋଣ କ'ଣ ସନ୍ତାନ କେବେ ଶୁଝିପାରେ ? ଶୁଣିଛି ଗୁରୁଙ୍କ ମୁହଁରୁ ବାରମ୍ୱାର ପିତା କୁଆଡ଼େ ସନ୍ତାନକୁ ସବୁବେଳେ ଭାବନ୍ତି ନିଜ ଆତ୍ମା ଭଳି । ଗୁରୁ ଉଦାହରଣ ଦେବାକୁ ଯାଇ ବୈଦିକ ମନ୍ତ୍ରଟିକୁ ଉଚ୍ଚାରଣ କରି ତାହାର ଅର୍ଥ ବୁଝାଇ ଦିଅନ୍ତି – ଆତ୍ମା ବୈ ପୁତ୍ରନାମାସି । ହେ ପୁତ୍ର ! ତୁମେ ମୋର ଆତ୍ମା । ମୋ' ପିତା କିନ୍ତୁ ଏହି ମନ୍ତ୍ରଟିକୁ ଅତିକ୍ରମ କରି ଯାଇଛନ୍ତି । ସେ ଏହାର ଉର୍ଦ୍ଧ୍ୱରେ । ସେ ମତେ କେବଳ ତ ତାଙ୍କ ନିଜ ଆତ୍ମା ବୋଲି ଭାବି ନାହାନ୍ତି । ବରଂ ଭାବିଛନ୍ତି ତାହାଠାରୁ ଆହୁରି ଅଧିକ ବୋଲି – ଆତ୍ମାଠାରୁ ପ୍ରିୟତର ବୋଲି । ଏଭଳି ଋଣ କ'ଣ ଶୁଝିପାରିବି ? ଶତ ଜନ୍ମରେ ଶତ ଶ୍ରାଦ୍ଧ-ତର୍ପଣ କଲେ ବି କ'ଣ ଶୁଝିପାରିବି ? ଅଗଣାର ବଉଳଡାଳକୁ ଥରାଇଦେଇ ବହିଆସୁଥିବା ପବନ ସତେ ଯେମିତି ମୋ' କାନେ କାନେ କହିଦେଉଥାଏ – କଦାପି ନୁହେଁ । କଦାପି ନୁହେଁ ।

ସେଇ ମୋ' ପିତାଙ୍କୁ ଚାହୁଁଥିଲି ମୁଗ୍ଧ ଦୃଷ୍ଟିରେ ଠିକ୍ ସଂଗୀତର ସ୍ୱରଝଙ୍କାରରେ ମୁଗ୍ଧ ମୃଗ ଶାବକଟି ଭଳି । ନଇଁ ପଡୁଥିଲି ଗରିଷ୍ଠ ଋଣଭାରରେ ।

ସ୍ୱପ୍ନ ମୋର ଭାଙ୍ଗିଗଲା ଯେତେବେଳେ ଜ୍ୟୋତିଷାଚାର୍ଯ୍ୟ ବିଦାୟ ନେବାକୁ ବସିଲେ । ତାଙ୍କୁ ଆମେ ପିତାପୁତ୍ର ଯଥାବିଧି ବିଦାୟ ସଂବର୍ଦ୍ଧନା ଜଣାଇଲୁ ।

ସେଦିନ ରାତିରେ କିନ୍ତୁ ଖୁବ୍ ବିଳମ୍ୱରେ ମତେ ନିଦ ଆସିଲା । ଜ୍ୟୋତିଷାଚାର୍ଯ୍ୟଙ୍କ ଭବିଷ୍ୟଦ୍‌ବାଣୀର ପ୍ରଭାବ ଯେ ମୋ' ଉପରେ ପଡ଼ି ନ ଥିଲା ଓ ମୁଁ ଯେ ଅନାସକ୍ତ ଭାବରେ

ସବୁ କଥା କେବଳ ଶୁଣିଯାଉଥିଲି, ଏ କଥା କହିଲେ ହେବି ମିଥ୍ୟାବାଦୀ । ପ୍ରକୃତରେ ତାଙ୍କ ଭବିଷ୍ୟଦ୍‌ବାଣୀର ଯଥେଷ୍ଟ ପ୍ରଭାବ ପଡ଼ିଥିଲା ମୋ' ଉପରେ । ମୁଁ ଉତ୍ସାହୀ ହୋଇଉଠିଥିଲି । ସାହସୀ ହୋଇଉଠିଥିଲି । ହୋଇଉଠିଥିଲି ବି ଆଶାବାଦୀ । ମୋର ବିକଶି ଉଠୁଥିବା ମାଂସପେଶୀଗୁଡ଼ିକ ଫୁଲିଉଠୁଥାଏ ଦୁର୍ଦ୍ଦମନୀୟ ଅଭିମାନରେ । ଶିରା-ପ୍ରଶିରାରେ ଉଷ୍ଣରକ୍ତର ପ୍ରବାହ ତୀବ୍ରତର । ଗଙ୍ଗାର ଶୀତଳ ଜଳକୁ ଛୁଇଁ ବହିଆସୁଥିବା ସଜଳ ପବନ କିଛି ହେଲେ ବି ଶାନ୍ତି କରିପାରୁ ନ ଥାଏ ସେଇ ପ୍ରବାହକୁ । ହୃଦୟରେ ଅଶାନ୍ତ ପ୍ରଭଞ୍ଜନ । ସତେ ଅବା ସେ ମୋ' ପ୍ରତି ଥିବା ଅତ୍ୟାଚାର ନିପୀଡ଼ନର ବନଟିକୁ ଭାଙ୍ଗିରୁଜି ଧୂଳିସାତ୍ କରିଦେବ ! ଉତ୍‌ଫଣ ନାଗଟି ଭଳି ଫୁତ୍କାର କରିଉଠୁଥିଲି ସମାଜର ଏଇ ଅନ୍ୟାୟ ଉପରେ ଚୋଟ ଉପରେ ଚୋଟ ମାରିବା ପାଇଁ– ତାହାକୁ ବିଷଜର୍ଜର କରିଦେବା ପାଇଁ ! ସେଇ ଧ୍ୱଂସର ପାଉଁଶକୁ ଦଳି-ଚକଟି ଆଗକୁ ଆଗେଇଯିବା ପାଇଁ ।

ଏଭଳି ମାନସିକ ସ୍ଥିତି ମଧ୍ୟରେ କେତେବେଳେ ଯେ ନିଦ-ଦୋଳିରେ ଝୁଲି ଝୁଲି ଶୋଇଗଲି ତାହା ଜାଣିପାରିଲି ନାହିଁ ।

## ତେର

''ବାପା ବସୁ ! ଶୀଘ୍ର ଉଠ । ଆଚାର୍ଯ୍ୟଙ୍କ ପାଖକୁ ଯିବା ପରା ।'' ପାହାନ୍ତା ପହରରୁ ହିଁ ପିତା ମତେ ଡାକି ଉଠାଇଦେଲେ ।

''ହଁ, ବାପା ।'' ଏହା କହି ନିଦ ଭାଙ୍ଗି ଧଡ଼ପଡ଼ ହୋଇଉଠିଲି ।

ଆମେ ବାପପୁଅ ଦୁହେଁ ଶୀଘ୍ର ପ୍ରସ୍ତୁତ ହୋଇଗଲୁ ଆଚାର୍ଯ୍ୟଙ୍କ ପାଖକୁ ଯିବା ପାଇଁ । ସୂର୍ଯ୍ୟୋଦୟର ଠିକ୍ ପରେ ପରେ ଯେଉଁ ମାହେନ୍ଦ୍ର ଲଗ୍ନଟି ପଡ଼ିବ ସେହି ସମୟରେ ଘରୁ ବାହାରିବାପାଇଁ ବାପା ଆଗରୁ ଧାର୍ଯ୍ୟ କରିସାରିଥିଲେ । ଯଥାସମୟରେ ଆମେ ଘରୁ ବାହାରିଲୁ ।

ବାପାଙ୍କଠାରୁ ବୁଝିଲି ଦ୍ରୋଣାଚାର୍ଯ୍ୟ ସପରିବାର ରାଜଭବନର ପରିସର ମଧ୍ୟରେ ହିଁ ରହୁଛନ୍ତି । ତାଙ୍କ ବାସସ୍ଥାନ, ଗ୍ରାସାଚ୍ଛାଦନ ଇତ୍ୟାଦିର ବ୍ୟବସ୍ଥା କରାଯାଇଥିଲା ରାଜଭବନ ତରଫରୁ । ସେ ମୂଳତଃ ଜଣେ ଆଚାର୍ଯ୍ୟ ଥିଲେ ହେଁ ଏଠାରେ ଥିଲେ ରାଜକୁମାରମାନଙ୍କ ଗୃହଶିକ୍ଷକ । ଜଣେ ସାଧାରଣ ବେତନଭୋଗୀ କର୍ମଚାରୀଙ୍କ ସହିତ ପ୍ରାୟ ସମାନ । ଭରଦ୍ୱାଜ ଋଷିଙ୍କ ପୁତ୍ର ଓ ଜଣେ ବିଶିଷ୍ଟ ବିଦ୍ୱାନ୍ ଭାବରେ ତାଙ୍କର ସାରା ଆର୍ଯ୍ୟାବର୍ତ୍ତରେ ନାଁ । ତେଣୁ ସେ ପିତାମହ ଭୀଷ୍ମ, ରାଜା ଧୃତରାଷ୍ଟ୍ର ଓ ଅନ୍ୟାନ୍ୟ ରାଜପୁରୁଷମାନଙ୍କଠାରୁ ଯଥୋଚିତ ମାନ-ମର୍ଯ୍ୟାଦା ପାଉଥିଲେ ଜଣେ ଆଚାର୍ଯ୍ୟ ଭାବରେ । ସେ ବି ଥିଲେ ସାକ୍ଷାତ୍ ପରଶୁରାମଙ୍କ ଶିଷ୍ୟ । ଯୁଦ୍ଧବିଦ୍ୟାରେ ଅତ୍ୟନ୍ତ ନିପୁଣ । ବ୍ରହ୍ମାସ୍ତ୍ରସମେତ ଅନେକ ଅସ୍ତ୍ରଜ୍ଞାନର ଭଣ୍ଡାର । ତେଣୁ ଅନ୍ୟାନ୍ୟ ଦେଶର ରାଜକୁମାର ଓ ରାଜପୁରୁଷମାନଙ୍କର ତାଙ୍କ ଶିଷ୍ୟତ୍ୱ ପାଇବାପାଇଁ ପ୍ରବଳ ପ୍ରତିଯୋଗିତା । ମହାରାଜଙ୍କ ବିଶେଷ ଅନୁମତି ନେଇ

ଓ ସ୍ୱୟଂ ଆଚାର୍ଯ୍ୟଙ୍କ ସହମତିରେ ସେମାନେ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି ତାଙ୍କର । ଶୁଣିଲି, ଅନ୍ୟମାନଙ୍କ ମଧ୍ୟରେ ସିନ୍ଧୁରାଜକୁମାର ଜୟଦ୍ରଥ ଓ ଯଦୁବଂଶୀ ସାତ୍ୟକି କୁଆଡ଼େ ଏବେ ତାଙ୍କର ଶିଷ୍ୟ ହୋଇଛନ୍ତି । ସମସ୍ତ ଶିଷ୍ୟ ତାଙ୍କର କ୍ଷତ୍ରିୟ । ଅନ୍ୟ ବର୍ଣ୍ଣର କେହି ଶିଷ୍ୟ ନାହାନ୍ତି ।

ଗଲା ବେଳେ ମନରେ ଚିନ୍ତା ଆସୁଥାଏ – ମତେ ଆଚାର୍ଯ୍ୟ ଶିଷ୍ୟରୂପେ ଗ୍ରହଣ କରିବେ ତ ? ପୁଣି ଆସୁଥାଏ ଦ୍ୱନ୍ଦ୍ୱ – ଯଦି ଅସ୍ତ୍ରବିଦ୍ୟା ନ ଶିଖିବି, ତେବେ ବୀର ହେବି କିପରି ? ବୀର ନ ହେଲେ ରାଜା ବା ହେବି କିପରି ? ଜ୍ୟୋତିଷାଚାର୍ଯ୍ୟ ମୋର ଯେଉଁ କପାଳ-ହସ୍ତରେଖାର ଗଣନା କରି ଭବିଷ୍ୟଦ୍‌ବାଣୀ ଶୁଣାଇଛନ୍ତି, ତାହା ସତ୍ୟରେ ପରିଣତ ହେବ କିପରି ? ବିଧିର ବିଧାନ ତ ଅଲଂଘନୀୟ । ତାହା ପୁଣି ସାକାର ହେବ କିପରି ? ଏହି କଥା ମତେ ଯାହା ସାନ୍ତ୍ୱନା ଦେଉଥାଏ । ଦେଉଥାଏ ବି ଉତ୍ସାହ ଓ ଆତ୍ମବିଶ୍ୱାସ । ମୋର ସହଜାତ ଅଭିମାନ ପବନ ଭଳି ହୋଇ ସେହି ଆତ୍ମବିଶ୍ୱାସର ଅଗ୍ନିଶିଖାକୁ ଜଳାଇଦେଇ ଯାଉଥାଏ ଉଜ୍ଜ୍ୱଳତର ଭାବରେ ! ସେଇ ଅଗ୍ନିର ଜ୍ୱାଳାମୟୀ ଶିଖାରେ ସତେ ଅବା ମୋ’ ନୀଚ ବର୍ଣ୍ଣରେ ଜନ୍ମର କାଠ ପାଟେରିଟି ଜଳି ପାଉଁଶ ହୋଇଯାଉଥାଏ । ଆଉ ସେଇ ପାଉଁଶଗଦା ଭିତରୁ ମୁଁ ନବଜନ୍ମ ନେଇ ବିକଶି ଉଠୁଥାଏ ପଦ୍ମଫୁଲ ଭଳି ! ମନରେ ମୋର ଏତେ ଏତେ ଆଶା ନେଇ ଆଗେଇ ଚାଲିଥାଏ ପିତାଙ୍କ ସହିତ ରାଜଭବନର ପରିସରରେ ଥିବା ଯୁଦ୍ଧଶାଳା ଅଭିମୁଖରେ । ତାହାରି ନିକଟରେ ଦ୍ରୋଣାଚାର୍ଯ୍ୟଙ୍କ ଶିକ୍ଷାୟତନ ।

ଗତି ଆମର ଧୀରେ ଧୀରେ ବଢ଼ି ପ୍ରଖରତର ହେବାକୁ ଲାଗିଲା । ବାଟରେ ବିଷ୍ଣୁମନ୍ଦିର ନିକଟରେ ଆମେ ଜଣେ ମହନୀୟା ନାରୀମୂର୍ତ୍ତିଙ୍କୁ ଦେଖିଲୁ । ଜଣେ ସମ୍ଭ୍ରାନ୍ତ ମହିଳା ଭଳି ଜଣାପଡୁଥାନ୍ତି । ପୂଜାର୍ଚ୍ଚନା ସାରି ଫେରୁଥାନ୍ତି ପରିଚାରିକାମାନଙ୍କ ଗହଣରେ । ଜଣେ ପରିଚାରିକା ପ୍ରସାଦର ପାତ୍ରଟିଏ ଧରିଥାଏ । ସେ ମନ୍ଦିରର କାମ ସାରି ରାଜଭବନକୁ ଫେରୁଥାନ୍ତି ଆମର ବିପରୀତ ଦିଗରୁ । ବାପାଙ୍କୁ ତାଙ୍କ ପରିଚୟ ପଚାରିବା ପୂର୍ବରୁ ସେ ଆମର ଖୁବ୍ ପାଖକୁ ଲାଗି ଆସିଥିଲେ । ତେଣୁ ପଚାରିପାରିଲି ନାହିଁ ।

ବାପାଙ୍କ ନିର୍ଦ୍ଦେଶରେ ରାସ୍ତା କଡ଼କୁ ସାମାନ୍ୟ ଘୁଞ୍ଚିଯାଇ ହାତଯୋଡ଼ି ଠିଆ ହେଲି । ପିତା ମଧ୍ୟ ସେମିତି ଠିଆ ହେଲେ । ଏଭଳି ଆଚାର-ବ୍ୟବହାର, ରୀତି-ନୀତି ପ୍ରତି ଥିଲି ସଂପୂର୍ଣ୍ଣ ଅପରିଚିତ । ବାଧ୍ୟ ଶିଶୁଟିଏ ଭଳି ତାଙ୍କ ଆଦେଶ ମାନିଗଲି । କିନ୍ତୁ କିଶୋର ରକ୍ତ ମୋର ବିଦ୍ରୋହ କରିଉଠୁଥାଏ । ଭାବୁଥାଏ, ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ବାଟ ଛାଡ଼ି ଦେବାଟା ଅବଶ୍ୟ ଠିକ୍ କଥା । ତେବେ ସେଥିପାଇଁ ରାସ୍ତା ଛାଡ଼ି ଦୂରରେ ଯାଇ ଏଭଳି ଦୀନ ଭାବରେ ମଣିଷ ଠିଆ ହେବ କାହିଁକି ? ମାନ-ମର୍ଯ୍ୟାଦାର ପ୍ରଦର୍ଶନ କ’ଣ ରାସ୍ତା ମଧ୍ୟରେ ହୋଇପାରିବ ନାହିଁ । ଏ ପ୍ରଶ୍ନର ଉତ୍ତର କେହି ମତେ ଦେଇପାରୁ ନ ଥିଲେ । କାରଣ ସାରା ଜଗତ ଥିଲା ମନୁଷ୍ୟକୃତ ପରମ୍ପରାର ବନ୍ଦିଶାଳାରେ ବନ୍ଦୀ ! କିନ୍ତୁ ଏଇ ବନ୍ଦିଶାଳାର ପୁରାତନ କାନ୍ଥରେ ଯେ ଫାଟ ଦେଖାଯିବାକୁ ଆରମ୍ଭ କଲାଣି, ତାହା କେହି ଲକ୍ଷ୍ୟ କରିପାରୁ ନ ଥିଲେ । କରିଥାନ୍ତେ ବା କେମିତି ? ପରମ୍ପରାବାଦୀମାନେ ତ ଆଖି ଥାଇ ଅନ୍ଧ । ଦୂର ଦିଗ୍‌ବଳୟର ବାଦଲକୁ ବିଦାରି ବିଦାରି ଯେ ନୂତନ ସୂର୍ଯ୍ୟ ଉଇଁ

ଆସୁଛନ୍ତି, ତାହା ଲକ୍ଷ୍ୟ କରିବେ ବା କେମିତି ? ମୋର ବିବେକ-ବୁଦ୍ଧି ଯେମତି ମତେ କହୁଥିଲା, ଏଇ ପରମ୍ପରା ଦିନେ ନା ଦିନେ ଭାଙ୍ଗିବ । ଦିନେ ନା ଦିନେ ସାମ୍ୟ-ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱର ଧ୍ୱଜା ଉଡ଼ିବ । କିନ୍ତୁ ଭାବିପାରୁ ନ ଥିଲି କେବେ ଏଇ ସୁଦିନ ଆସିବ ବୋଲି ।

ନାରୀମୂର୍ତ୍ତିଜଣକ ଶୀଘ୍ର ଲାଗିଆସିଲେ ଆମ ପାଖକୁ । ଆମେ ତାଙ୍କୁ ଯଥାବିଧି ଅଭିବାଦନ କଲୁ । ବାପା ଆତ୍ମପରିଚୟ ଦେବା ପୂର୍ବରୁ ସେ ସ୍ନେହସିକ୍ତ କଣ୍ଠରେ ହସି ହସି ପଚାରିଲେ, ''କିଏ ? ସୂତରାଜ ଅଧିରଥ ନା ?''

''ନା ସାନରାଣୀମା ! ସୂତରାଜ ନୁହେଁ । ଆପଣଙ୍କ ପାଦତଳର ଦାସ ସୂତ ଅଧିରଥ ।'' ଏହା କହି ସେ ଆଉ ଥରେ ତାଙ୍କୁ ହାତ ଯୋଡ଼ି ପ୍ରଣାମ କଲେ ।

''ହଉ, ହେଲା ଏବେ ବାବା ।'' ମହିଳାଙ୍କ ଓଠତଳେ ସେମିତି ପୂର୍ବଭଳି ଦରଫୁଟା ହସ ।

ଏତିକିବେଳେ ତାଙ୍କ ଆଖି ପଡ଼ିଗଲା ମୋ' ଉପରେ । ସେ ଖାଲି ବଲ ବଲ ହୋଇ ଚାହୁଁଥାନ୍ତି ମୋ' ମୁହଁକୁ । ବିଶେଷକରି ମୋ' ଜନ୍ମଜାତ କବଚ-କୁଣ୍ଡଳକୁ । ମତେ ଲାଜ ଲାଗୁଥାଏ । ଯିଏ ମତେ ପ୍ରଥମେ ଦେଖନ୍ତି ଏଇ କବଚ କୁଣ୍ଡଳରେ ହିଁ ତାଙ୍କ ଆଖି ଥାଏ ବନ୍ଧା । ମତେ କେତେ ପ୍ରଶ୍ନ ପଚାରି ଅଥୟ କରିଦିଅନ୍ତି । ଲାଜେଇ ଦିଅନ୍ତି ବି । ବେଳେ ବେଳେ ଭାବେ, ବିଧାତା କାହିଁକି ମତେ ଲାଜର କାରଣଭୂତ ଏଇ ଅପୂର୍ବ ଜିନିଷ ଦିଓଟି ଦେଲେ କେଜାଣି ? କ'ଣ ତାଙ୍କର ଲକ୍ଷ୍ୟ ? ମତେ ଲାଜେଇ ମାରିବାରେ କି ଉଦ୍ଦେଶ୍ୟ ସାଧିତ ହେଉଛି ତାଙ୍କର ?

ମୁଁ ମଧ ତାଙ୍କୁ ଦେଖିନେଲି । ଦେଖିନେଲି ତାଙ୍କ ବଡ଼ ବଡ଼ ଆଖି ଦିଓଟିକୁ । ବାତ୍ସଲ୍ୟରସରେ ଢଳ ଢଳ ସ୍ନେହରେ ଛଳ ଛଳ । ସାରା ମୁହଁରେ ଭରିରହିଛି ଅପୂର୍ବ ସୌମ୍ୟତା ଓ ପ୍ରଶାନ୍ତି । ମତେ ଲାଗୁଥାନ୍ତି ଜଣେ ଚିରପରିଚିତା ନାରୀ ଭଳି । ସ୍ନେହ ଓ ଆଶୀର୍ବାଦର ସ୍ୱର୍ଗଙ୍ଗା ସମାନ । ଚମ୍ପାପୁରୀବାସିନୀ ମୋ' ମାଆଙ୍କର ଠିକ୍ ଅନୁରୂପା ଯେମିତି । ସେ ମଧ ମତେ ହଠାତ୍ ଦେଖିଦେଇ ଚମକି ପଡ଼ିଲେ । ତାଙ୍କ ମୁହଁରୁ କଥା ବାହାରିଲା ନାହିଁ । ଓଠ କିନ୍ତୁ ଥରୁଥିଲା ଥର ଥର ହୋଇ । ଅନେକ କିଛି କଥା କହିବାପାଇଁ ବୋଧହୁଏ ଚାହୁଁଥିଲେ । କିନ୍ତୁ କିଛି କହିପାରୁ ନ ଥିଲେ । କିଛି ଗୋଟାଏ ବିବଶତା ତାଙ୍କୁ ଦେଉଥିଲା ବାଧା । ଲକ୍ଷ୍ୟ କଲି ତାଙ୍କ ଆଖି ଦିଓଟିକୁ । ତହିଁରେ ଆଖିଏ ଲୁହ । ମୁଖର ଭଙ୍ଗୀରୁ ଜଣାପଡୁଥିଲା ତାହା ଆନନ୍ଦର ଲୁହ ନିଶ୍ଚୟ । କୌଣସିମତେ ତାହାକୁ ଚାପି ରଖିବାର ଚେଷ୍ଟା କରୁଥାନ୍ତି ସେ । କିନ୍ତୁ ଅମାନିଆ ଲୁହ ମାନୁ ନ ଥାଏ । ଗଳ ଗଳ ହୋଇ ବହିଯାଉଥାଏ । ମତେ ଲାଗୁଥାଏ, ସତେ ଯେମିତି ତାହାର ପ୍ରତିଟି ଧାରା ମୋର ନୀଚକୁଳରେ ଜନ୍ମିଥିବାର କାଳିମାକୁ ଧୋଇଦେଇଯାଉଛି ! ବଡ଼ ବିଚିତ୍ର ଏ ପରିସ୍ଥିତି ! ବଡ଼ ବିଚିତ୍ର ଏ ମନଃସ୍ଥିତି ! ଆଉ ବି ଅତି ବିଚିତ୍ର ଯେ ନାରୀ ! କିଛି ଠିକ୍ କରିପାରୁ ନ ଥାଏ ମୁଁ । ଅପଲକରେ ଚାହିଁରହିଥାଏ କେତୋଟି ମୁହୂର୍ତ୍ତ ଲାଗି ନିର୍ବାକ୍-ନିଷ୍ପନ୍ଦ ସେହି ନାରୀମୂର୍ତ୍ତିଙ୍କୁ ।

ସେ ପଣତକାନିରେ ଆଖିର ଲୁହ ପୋଛି ଆଣିଲେ ।

''କ'ଣ ହେଲା ସାନରାଣୀମା ?'' ତାଙ୍କ ନିକଟତମ ପରିଚାରିକା ଜଣକ ପଚାରିଲା ଶଙ୍କିତ କଣ୍ଠରେ ।

''ନାଇଁ, କିଛି ନୁହେଁ । ଆଖିରେ ଧୂଳି ପଡ଼ିଗଲା ।''

ପରିଚାରିକା ଜଣକ ନୀରବ ରହିଲା । ଆଉ କିଛି ଅଧିକ ଅନୁସନ୍ଧିତ୍ସାର ସ୍ୱର ଉଠାଇ ନ ଥିଲା । ଅନ୍ୟ ପରିଚାରିକାମାନଙ୍କ ଅବସ୍ଥା ମଧ୍ୟ ତଦ୍ରୂପ । ରାଜାଘର କଥା । କେତେ ରହସ୍ୟ, କେତେ ଗୋପନୀୟତାର ଭଣ୍ଡାର । ବିରାଟ ବିରାଟ ଅଟ୍ଟାଳିକାଗୁଡ଼ିକର ରତ୍ନମୟ କାନ୍ଥଗୁଡ଼ିକରେ କେତେ କେତେ ଉଷ୍ଣ ଶ୍ୱାସ ଓ କାତର ଅଶ୍ରୁର ନିରନ୍ତର ମୁଣ୍ଡପିଟା କାନ୍ଦଣା । ବୃଥାରେ ସେଥିରେ ମୁଣ୍ଡ ଖେଳାଇ ନିଜକୁ ଅପଦସ୍ଥ କରାଇବାରେ କିବା ଲାଭ ? କିଏ କାହିଁକି ଜାଣିଶୁଣି ବିପଦକୁ ନିଜ ମୁଣ୍ଡକୁ ଟାଣିଆଣିବ ?''

ଲକ୍ଷ୍ୟ କରି ରାଣୀମା ଯେମିତି ମୋ' ଆଡ଼କୁ ଧାଇଁ ଆସିବାକୁ ଚାହୁଁଛନ୍ତି । ଅଥଚ ପାଦ ତାଙ୍କର ଟେକିବା ପୂର୍ବରୁ ଭୂଇଁରେ ଲାଗିରହୁଛି । ଯିବେ କି ନ ଯିବେ ଏଇ ଦ୍ୱନ୍ଦ୍ୱରେ ପ୍ରପୀଡ଼ିତା । ଭାବୁଥାଏ, କାହିଁକି ତାଙ୍କର ଏଭଳି ମାନସିକ ଦ୍ୱନ୍ଦ୍ୱ ? କାହିଁକି ତାଙ୍କର ମତେ ଦେଖି ଏଭଳି ଅହେତୁକ କୌତୂହଳ ? କାହିଁକି ତାଙ୍କର ମୋ' ପ୍ରତି ଏଭଳି ସ୍ନେହଜର୍ଜର ଚାହାଣି ? ପୁଣି କାହିଁକି ତାଙ୍କର ଏହି ବିବଶତା ?

ମୋର କେବଳ ବିସ୍ମୟ-ଚକିତ ହେବା ଛଡ଼ା ଆଉ କିଛି ହିଁ ଉପାୟ ନ ଥିଲା । ନିଜ ଚିନ୍ତାର ଜାଲରେ ନିଜେ ହିଁ ଛନ୍ଦି ହୋଇଯାଉଥିଲି ।

ରାଣୀମା ଦୀର୍ଘଶ୍ୱାସ ଛାଡ଼ିଲେ । ତାହାର ତାତିଲା ପବନ ସେଠାକାର ବାତାବରଣକୁ ଉଷ୍ଣାୟିତ କଲା କି ନାହିଁ ତାହା ଥିଲା ମତେ ଅଜଣା । ମୁଁ କିନ୍ତୁ ତାଙ୍କ ପ୍ରତି କେଉଁ ଏକ ଅହେତୁକ ଆକର୍ଷଣର ସହାନୁଭୂତିରେ ବ୍ୟଥିତ ହୋଇଉଠିଥିଲି । ଏଇ ଆକର୍ଷଣ ଥିଲା ସହଜାତ ।

ସେ ମୁହଁ ଖୋଲିଲେ ଓ ବାପାଙ୍କୁ ପଚାରିଲେ, ''ଏଇ ବାଳକଜଣକ କିଏ ଅଧିରଥ ?''

''ମୋ' ବଡ଼ପୁଅ କର୍ଣ୍ଣ ସାନ ରାଣୀମା ।''

''ଭାରି ଭଲ ପିଲା ବାପା, କର୍ଣ୍ଣ ! ଆସ ତ ମୋ' ପାଖକୁ ।'' ଶେଷ ପଦଟି ମତେ ଲକ୍ଷ୍ୟ କରି କହିଲେ ।

ବାପାଙ୍କୁ ଚାହିଁଲି । ସେ ମତେ ଅନୁମତି ଦେଇ କହିଲେ, ''ଯାଅ ପୁଅ, ଯାଅ । ରାଣୀମା'ଙ୍କ ପାଦ ଛୁଅଁ ।''

ମୁଁ ଯାଇ ତାଙ୍କ ପାଦ ଛୁଇଁବାର ଉଦ୍ୟମ କଲି । କିନ୍ତୁ ତାହାକୁ ବ୍ୟାହତ କରାଇ ସେ ମତେ ପଣତକାନିରେ ଜାକିଧରିଲେ । ଚମ୍ପାପୁରୀର ରାଧା-ମାଆଙ୍କ ପଣତ କାନି ତଳେ ଥିବା ବେଳେ ମତେ ଯେମିତି ଲାଗେ, ଠିକ୍ ସେମିତି ଲାଗିଲା । ପୁତ୍ରସୁଲଭ ସହଜାତ ପ୍ରବୃତ୍ତି ମତେ ଆହୁରି ବିଲୀନ କରାଇ ଦେଉଥିଲା ତାଙ୍କ ପଣତକାନିର ଆବରଣ ତଳେ । ମୁଁ ଯେମିତି ସଂପୂର୍ଣ୍ଣ ପଶିଯାଉଥିଲି ତାଙ୍କ ସତ୍ତା ମଧ୍ୟରେ । କ'ଣ ଘଟୁଛି କିଛି ବୁଝିପାରୁ ନ ଥିଲି ।

ଖାଲି ହଜିଯାଉଥିଲି କି ଏକ ଚକିତ ସୁଖରେ ! ଆତ୍ମହରା ହୋଇଉଠୁଥିଲି ବିସ୍ମୟରେ ।

ତାଙ୍କ ଲମ୍ପିତ ଓ ଥର ଥର ଓଷ୍ଠାଧାରରୁ ଜାଣିପାରୁଥାଏ, ସେ ଯେମିତି ମୋର ଗଣ୍ଡଦେଶରେ ଚୁମ୍ବନ କରିବାକୁ ଚାହାନ୍ତି । ଫୁଲିଉଠୁଥିବା ନାସାଗ୍ରରୁ ଜାଣିପାରୁଥାଏ ସେ ଯେମିତି ମୋର ଶିର ଆଘ୍ରାଣ କରିବାକୁ ଚାହାନ୍ତି । ଅଥଚ ପାରୁ ନ ଥାନ୍ତି । ବିଚାରୀ ବିବଶା ରାଣୀମା ! ଭାବିପାରୁ ନ ଥିଲି ରାଜଭବନର ବିଭବଶାଳୀ ପରିବେଶରେ ବଢ଼ି ଆସୁଥିବା ରାଣୀମା'ଙ୍କର କ'ଣ ବା ଦୁଃଖ ? କାହିଁକି ପୁତ୍ରହରା କପୋତୀ ସମାନ ତାଙ୍କର ଏମିତି ଅନ୍ତର୍ବେଦନା ? ଏମିତି ଲୁହ ? ଏମିତି କାତର ଦୀର୍ଘଶ୍ୱାସ ? ମୋର ତାଙ୍କ ପ୍ରତି ସମବେଦନାର ଧାରା ଉଠୁଥିଲା ଉଚ୍ଛୁଳି ।

ବାପା ଇତିମଧ୍ୟରେ ରାଣୀମାଙ୍କ ପ୍ରଶ୍ନରେ ମୋର ହସ୍ତିନାପୁରକୁ ଆସିବାର ଉଦ୍ଦେଶ୍ୟ ଜଣାଇ ଦେଇଥିଲେ । ପିତାମହ ଭୀଷ୍ମ ଓ ମହାରାଜଙ୍କ ସହିତ ହୋଇଥିବା ଆଳାପ-ଆଲୋଚନା କଥା ମଧ୍ୟ କହିଦେଇଥିଲେ । ଆଉ କହିଥିଲେ ମୋର ଶିଷ୍ୟତ୍ୱ ପ୍ରାର୍ଥନା କରିବାପାଇଁ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଆମେ ଦୁହେଁ ଯାଉଛୁ ବୋଲି । ରାଣୀମା କହିଲେ, "ହଉ ଯାଅ ଅଧିରଥ ! ତୁମ ଯାତ୍ରାପଥରେ ସଫଳତାର ଫୁଲ ବରଷୁ ।"

"ମୁଁ କୃତକୃତ୍ୟ ରାଣୀମା' । ଆପଣଙ୍କ ଆଶୀର୍ବାଦରୁ ଟିକିଏ ହେଲେ ଥାଉ ।"

"ଖାଲି ଟିକିଏ କାହିଁକି ? ଏଇ ତୁମ ପୁତ୍ର କର୍ଣ୍ଣଙ୍କ ଲାଗି ହୃଦୟ-ମନର ମୋର ସାରା ଆଶୀର୍ବାଦ ରହିଛି ।" ସେ ପୁଣି ମତେ ଲକ୍ଷ୍ୟ କରି କହିଲେ, "ନିଅ ବତ୍ସ କର୍ଣ୍ଣ ! ଏଇ ବିଷ୍ଣୁଙ୍କ ପ୍ରସାଦ ନିଅ । ଏବେ ଆଚାର୍ଯ୍ୟଙ୍କ ପାଖକୁ ଯାଅ । ତୁମ କାମ ନିଶ୍ଚୟ ହୋଇଯିବ ।"

ସେ ମତେ ପଣତ-ଆଢୁଆଳରୁ ମୁକ୍ତ କରିଦେଇସାରିଥିଲେ । ତାଙ୍କ ହାତରୁ ଭକ୍ତିର ସହିତ ଭଗବାନ୍‌ଙ୍କ ପ୍ରସାଦ ଗ୍ରହଣ କଲି । ତାହା ଉତ୍ତାରୁ ସେ ରାଜଭବନ ଆଡ଼େ ଚାଲିଗଲେ । ଗଲାବେଳେ ବୁଲିପଡ଼ି ଥରେ ଦୁଇ ଥର ମୋ' ଆଡ଼କୁ ଚାହିଁଥିଲେ । ଆଃ ! କି ସତୃଷ୍ଣ ଏହି ଚାହାଣି ! ପୁଣି କି ଯେ ମମତାମୟ !

ତାଙ୍କର ଏଇ ବ୍ୟବହାରରେ ମୋର ବିସ୍ମୟର ମାତ୍ରା ବଢ଼ିଉଠିଲା ସିନା, କମିଲା ନାହିଁ । ରାଣୀ ହୋଇ ପୁଣି ମୋ' ଭଳି ଜଣେ ସୂତପୁତ୍ରକୁ ନିଜ ହାତରେ ପ୍ରସାଦ ଅର୍ପଣ କଲେ । ଅଥଚ ବାପାଙ୍କୁ ଅର୍ପଣ କଲେ ନାହିଁ କାହିଁକି ? କି ସଂପର୍କ ଅଛି ବା ମୋର ତାଙ୍କ ସହିତ ? ପରିଚାରିକାମାନେ ମଧ୍ୟ ଏଥିରେ ବିସ୍ମିତା ହୋଇଥିବା କଥା ସେମାନଙ୍କ ମୁଖଭଙ୍ଗୀରୁ ଜାଣିପାରିଥିଲି ।

ମୋ' ଆଦ୍ୟଗୁରୁ ସୂର୍ଯ୍ୟଦେବ ଆମ୍ରତୋଟାର ଆଢୁଆଳରୁ ଧୀରେ ଧୀରେ ଆକାଶ ଉପରକୁ ଉଠୁଥିଲେ । କିରଣ ତାଙ୍କର ତଥାପି ପ୍ରଖର ହୋଇ ନ ଥାଏ । ତାଙ୍କ ଆଡ଼କୁ ସତୃଷ୍ଣ ନୟନରେ ଚାହିଁଲି । ମନେ ମନେ ତାଙ୍କ ଉଦ୍ଦେଶ୍ୟରେ ବାରମ୍ବାର ସେଇ ପ୍ରଶ୍ନ କରିବାକୁ ଲାଗିଲି । ଦେଖିଲି, ସୂର୍ଯ୍ୟମଣ୍ଡଳରେ ସେଇ ଚମ୍ପାବନର ସନ୍ନ୍ୟାସୀଙ୍କ ମୁହଁ ଝଲିଉଠୁଛି । ଓଠତଳେ ମୃଦୁ ମୃଦୁ ହସ । ଆଶୀର୍ବାଦ ମୁଦ୍ରାରେ ଦକ୍ଷିଣହସ୍ତ ମୋ' ଆଡ଼କୁ ପ୍ରସାରିତ । ମତେ ଲାଗିଲା, ସେ ଯେମିତି କହୁଛନ୍ତି, "ବତ୍ସ କର୍ଣ୍ଣ ! ରାଣୀମା'ଙ୍କ ସହିତ

ତୁମର ସଂପର୍କ ଅଛି । ଗଭୀର-ନିବିଡ଼ ସଂପର୍କ ଅଛି । ଉପଯୁକ୍ତ ସମୟରେ ସେ କଥା ଜାଣିପାରିବ ।''

ମୁଣ୍ଡ ମୋର ଗୋଳମାଳିଆ ଧରିଦେଲା । କେବଳ ନିଜକୃତ ଗୋଲକଧନ୍ଦା ମଧ୍ୟରେ ଘାରିହେବା ହିଁ ସାର ହେଲା । ଦେଖିଲି, ବାପା ମଧ୍ୟ ଅନୁରୂପ ଭାବରେ କିଛିଟା ବିସ୍ମିତ ହୋଇଉଠିଛନ୍ତି ।

ଆମେ ବାପ-ପୁଅ ଦୁହେଁ ଭଗବାନ୍‌ଙ୍କ ପ୍ରସାଦକୁ ଭାଗ ଭାଗ କରି ସେବନ କଲୁ ଓ ଲକ୍ଷ୍ୟପଥରେ ଆଗେଇ ଚାଲିଲୁ ।

''ବାପା ! ୟେ କେମିତି ହେଲେ ରାଣୀମା ? ୟେ କ'ଣ ଆମ ମହାରାଜାଙ୍କ ପତ୍ନୀ ?'' ବାଟରେ ବାପାଙ୍କୁ ସନ୍ଦେହ ମୋଚନ ଲାଗି ପ୍ରଶ୍ନ କଲି ।

''ନାଇଁ ବାପା ବସୁ ! ୟେ ମହାରାଜଙ୍କ ଅନୁଜ ପାଣ୍ଡୁଙ୍କ ପତ୍ନୀ । ପାଣ୍ଡବମାନଙ୍କ ମାଆ ।''

''ଆଉ ମହାରାଜଙ୍କ ପତ୍ନୀ କିଏ ?''

''ଗାନ୍ଧାରୀଦେବୀ ମହାରାଜ ଜନ୍ମରୁ ଅନ୍ଧ ବୋଲି ତାଙ୍କ ସହଧର୍ମିଣୀ ଭାବରେ ସେ ଚିରଦିନ ପାଇଁ ନିଜ ଆଖିରେ ଅନ୍ଧପୁଟୁଳି ବାନ୍ଧି ରଖିଛନ୍ତି । ଜଣେ ବଡ଼ ପତିବ୍ରତା ନାରୀ ସେ । କୌରବମାନଙ୍କ ମାଆ ।''

''ୟେ ତା'ହେଲେ ରାଣୀମା' ହେଲେ କିପରି ? ରାଜା ତ ହେଉଛନ୍ତି ଧୃତରାଷ୍ଟ୍ର ।'' ମୋର ପୁଣି ଅନୁସନ୍ଧିତ୍ସାଭରା ପ୍ରଶ୍ନ ।

''ମୁଁ ତ ଆଗରୁ କହିଛି ଧୃତରାଷ୍ଟ୍ର ଥିଲେ ଜନ୍ମରୁ ଅନ୍ଧ । ତେଣୁ ଅନୁଜ ପାଣ୍ଡୁ ରାଜା ହୋଇଥିଲେ । ସେତେବେଳେ କୁନ୍ତୀଦେବୀଙ୍କୁ ଲୋକେ ରାଣୀମା ବୋଲି ଡାକୁଥିଲେ । ପାଣ୍ଡୁ ନାନା କାରଣରୁ ବନବାସ କଲେ ଓ ଧୃତରାଷ୍ଟ୍ର ରାଜାହେଲେ । ବନବାସ ସମୟରେ ତାଙ୍କର କାଳ ହେଲା । ସେହି ବନବାସ ସମୟରେ ହିଁ ପାଣ୍ଡବମାନଙ୍କ ଜନ୍ମ । ତାଙ୍କ ଦ୍ୱିତୀୟ ପତ୍ନୀ ମାଦ୍ରୀ ଚିତାନଳରେ ଇତିମଧ୍ୟରେ ସହଗାମିନୀ ହେଲେ । ପରେ ଯେତେବେଳେ କୁନ୍ତୀଦେବୀ ପାଣ୍ଡବମାନଙ୍କୁ ଧରି ହସ୍ତିନାପୁରକୁ ଫେରିଆସିଲେ ସେତେବେଳେ ତାଙ୍କୁ ପୂର୍ବଭଳି ଲୋକେ ରାଣୀମା ବୋଲି ଡାକିବାକୁ ଲାଗିଲେ । ଦୁହିଁଙ୍କ ମଧ୍ୟରେ ପ୍ରଭେଦ ଦେଖାଇବାକୁ ଯାଇ ଲୋକେ ଗାନ୍ଧାରୀଦେବୀଙ୍କୁ ବଡ଼ରାଣୀମା ଓ କୁନ୍ତୀଦେବୀଙ୍କୁ ସାନରାଣୀମା ବୋଲି ଡାକିବାକୁ ଲାଗିଲେ ।'' ବାପା ସମସ୍ତ ବିଷୟ ପରିଷ୍କାର କରିଦେବାକୁ ଯାଇ ମତେ କହିଲେ । ତାଙ୍କ କଥାରେ ସନ୍ଦେହ ମୋର ଦୂର ହୋଇଗଲା ।

''ତା'ପରେ ଗାନ୍ଧାରୀଦେବୀ କିମ୍ବା କୁନ୍ତୀଦେବୀଙ୍କ ମଧ୍ୟରୁ ଏ ପର୍ଯ୍ୟନ୍ତ କେହି ରାଜମାତା ହୋଇ ନାହାନ୍ତି ।'' ମୋର ପୁନର୍ବାର ପ୍ରଶ୍ନ ।

''ନା ।''

''ତେବେ ବର୍ତ୍ତମାନ ରାଜମାତା କିଏ ?''

''ଦେବୀ ଅମ୍ବିକା । ବର୍ତ୍ତମାନ ବାନପ୍ରସ୍ଥବ୍ରତ ନେଇ ଅରଣ୍ୟରେ କାଳ କାଟୁଛନ୍ତି ।''

ବାଟରେ କୁନ୍ତୀଦେବୀଙ୍କ ଦର୍ଶନରେ ଆମର କିଛିଟା ବିଳମ୍ବ ହୋଇଯାଇଥିଲା । ଆମେ ତେଣୁ ଗତିକୁ ତୀବ୍ରତର କରିଦେଇ ଆଗେଇବାକୁ ଲାଗିଲୁ । ଶିକ୍ଷାରମ୍ଭ ପୂର୍ବର ପ୍ରାର୍ଥନା ହେବା ଆଗରୁ ପହଞ୍ଚିବୁ ବୋଲି ବିଚାରିଥିଲୁ । କିନ୍ତୁ ତାହା ହୋଇପାରିଲା ନାହିଁ । ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚିଲା ବେଳକୁ ପ୍ରାର୍ଥନା ଆରମ୍ଭ ହୋଇଯାଇଥାଏ । ଶିଷ୍ୟମାନେ ବସିଥାନ୍ତି ତୃଣାସନରେ । ଦୁଇ ଗୁରୁ ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ କରିଥାନ୍ତି ଅପେକ୍ଷାକୃତ ଉଚ୍ଚରେ ଥିବା ଏକ ମଣ୍ଡପ ଉପରେ । ଦୁହିଁଙ୍କ ଆସନ କୃଷ୍ଣାଜିନରେ ତିଆରି । ଗୁରୁଦ୍ୱୟ ଓ ଶିଷ୍ୟମାନେ ଏକତ୍ର ପ୍ରାର୍ଥନା କରୁଥାନ୍ତି । ପୂତ-ପବିତ୍ର ଧ୍ୱନି ଶିକ୍ଷାୟତନଟିରେ ଲହସାୟିତ ହୋଇଉଠୁଥାଏ ।

ଓଁ ସହନାଭବତୁ ।
ସହ ନୌ ଭୁନକ୍ତୁ ।
ସହ ବୀର୍ଯ୍ୟଂ କରବାବହୈ ।
ତେଜସ୍ୱିନାବଧୀତମସ୍ତୁ ।
ମା ବିଦ୍ୱିଷାବହୈ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ବାସ୍ତବିକ ଶାନ୍ତିର ଏହି ଆବାହନୀ ମନ୍ତ୍ର ସମଗ୍ର ବିଦ୍ୟାୟତନ ଓ ତାହାର ଆଖପାଖର ପରିବେଶରେ ଶାନ୍ତିର ସୌରଭ ବିଞ୍ଚିଦେଇ ଯାଉଥିଲା । ଜଣାଯାଉଥିଲା, ସତେ ଯେମିତି ସ୍ୱୟଂ ଶାନ୍ତିଦେବୀ ଫୁଲର କଅଁଳିଆ ଦୋଳିଟିରେ ଝୁଲି ଝୁଲି ଆସୁଛନ୍ତି !

ଦ୍ରୋଣାଚାର୍ଯ୍ୟଙ୍କ ଧ୍ୟାନଲଗ୍ନ ଆଖି ଦିଓଟି ଖୋଲିଲା ବେଳକୁ ମୁଁ ଯାଇ ତାଙ୍କ ପାଖରେ ପହଞ୍ଚିସାରିଥିଲି । କୁଶ-ସମିଧ ତାଙ୍କ ପାଦତଳେ ରଖିଦେଇ ତାଙ୍କୁ ଭୂମିଷ୍ଠ ପ୍ରଣାମ କରିସାରିଥିଲି ।

ସେ ଆଚାର୍ଯ୍ୟସୁଲଭ ସଶ୍ରଦ୍ଧ କଣ୍ଠରେ କହିଲେ, ''ଉଠ ବତ୍ସ, ଉଠ । କହ ତୁମେ କିଏ ? ତୁମ ଅଭିପ୍ରାୟ କ'ଣ ?''

''ମୁଁ ରାଜସୂତ ଅଧିରଥଙ୍କ ପୁତ୍ର କର୍ଣ୍ଣ । ଆପଣଙ୍କ ଶିଷ୍ୟତ୍ୱ ଲାଗି ନିବେଦନ କରୁଛି ।'' ବିନମ୍ର କଣ୍ଠରେ କହିଲି ।

ବାପା ଟିକିଏ ଛାଡ଼ି ଦୂରରେ ଠିଆ ହୋଇଥିଲେ । ସେ ପାଖକୁ ଘୁଞ୍ଚିଆସି ହାତଯୋଡ଼ି କହିଲେ, ''ହଁ, ଆଚାର୍ଯ୍ୟବୀର ! ୟେ ମୋ' ପୁଅ କର୍ଣ୍ଣ । ଆପଣଙ୍କ ଶିଷ୍ୟ ହେବାପାଇଁ ଭାରି ଇଚ୍ଛା ତାଙ୍କର । ତାଙ୍କ ପ୍ରତି ଦୟା କରନ୍ତୁ ।''

''ଓ, ତୁମେ ତା'ହେଲେ ସୂତପୁତ୍ର କର୍ଣ୍ଣ । ତୁମର କଥା ତେବେ ଭୀଷ୍ମଦେବ ଓ ମହାରାଜ ଧୃତରାଷ୍ଟ୍ର ମତେ କହୁଥିଲେ । ଆଚ୍ଛା, ତୁମର ଜନ୍ମ ତ ସୂତକୁଳରେ । ସୂତ ବିଦ୍ୟା ନ ଶିଖି ଅସ୍ତ୍ରବିଦ୍ୟା ଶିଖିବାକୁ କାହିଁକି ଚାହୁଁଛ ?''

''ବାପା ମତେ କିଛିଟା ସୂତବିଦ୍ୟା ଶିଖାଇ ଦେଇଛନ୍ତି । ଆଚାର୍ଯ୍ୟଙ୍କ ପାଖରୁ ଏଠି ଆଉ ଅଧିକ କିଛି ଶିଖିବି । ମୁଁ କିନ୍ତୁ ଜଣେ ବୀରପୁରୁଷ ହେବାକୁ ଚାହେଁ । ସେଥିପାଇଁ ଅସ୍ତ୍ରବିଦ୍ୟା ଶିଖିବାକୁ ସକଳ ଇଚ୍ଛା ।''

''ସଂସ୍କୃତ ଭାଷାରେ ଜ୍ଞାନ ଅଛି ?''

''ଅଛି ଆଚାର୍ଯ୍ୟବର ! ଗ୍ରାମପାଠଶାଳାରେ ଗୁରୁଙ୍କ ପାଖରୁ କିଛିଟା ଶିଖିଛି ।''

''ବେଦମନ୍ତ୍ର ଶିଖିଛ ? ତାହାର ଉପଯୁକ୍ତ ଉଚ୍ଚାରଣ ବି ଶିଖିଛ ? କେତେକ ମନ୍ତ୍ରସିଦ୍ଧ ବାଣର ପ୍ରୟୋଗ ଠିକ୍ ଭାବରେ ମନ୍ତ୍ର ବୋଲି କହିବାକୁ ହୋଇଥାଏ ? ପାରିବ ?''

''ହଁ, ପାରିବି ଆଚାର୍ଯ୍ୟବର । ବେଦମନ୍ତ୍ର ବି ଶିଖିଛି ।''

''ଆଚ୍ଛା । ଗୋଟିଏ ମନ୍ତ୍ର ବୋଲିଲ ଦେଖି ।'' ଦ୍ରୋଣାଚାର୍ଯ୍ୟ ଅଧିକରୁ ଅଧିକ କୌତୂହଳୀ ହୋଇଉଠୁଥିଲେ ମୋ' ବିଷୟ ନେଇ । ଇତିମଧ୍ୟରେ ମୋ' ଚେହେରାକୁ, ବିଶେଷ କରି କବଚ-କୁଣ୍ଡଳକୁ ନିରୀକ୍ଷଣ କରିସାରିଥିଲେ ସେ । ଆଚାର୍ଯ୍ୟସୁଲଭ ଗାମ୍ଭୀର୍ଯ୍ୟ ରକ୍ଷା କରି ସେ ବିଷୟରେ କିନ୍ତୁ କିଛି ପ୍ରଶ୍ନ କରୁ ନ ଥିଲେ । ଅନ୍ୟାନ୍ୟ ଶିଷ୍ୟମାନଙ୍କ ମନରେ ମଧ୍ୟ କୌତୂହଳ । ସେମାନେ ବି ବିଶ୍ୱାସ କରିପାରୁ ନ ଥାନ୍ତି ମୁଁ ଶୁଦ୍ଧଭାବରେ ସଂସ୍କୃତ ଉଚ୍ଚାରଣ କରିପାରିବି ବୋଲି । ଉଦଗ୍ର ଉତ୍କଣ୍ଠା ନେଇ ମୋ' ଆଡ଼କୁ ଚାହିଁ ରହିଥାନ୍ତି । ଶିକ୍ଷାୟତନରେ ଏକ ଅସ୍ୱାଭାବିକ ନୀରବତା । କାଠହଣା ଚଢ଼େଇଟିଏ ଠକ୍ ଠକ୍ କରି ଥଣ୍ଟରେ ଗଛକୁ ଆଘାତ କରୁଥିବା ଅବସରରେ ସେଇ ନୀରବତାକୁ କିଛିଟା ଭଙ୍ଗ କରୁଥାଏ ଯେମିତି ।

''ଏଇ, ଶୁଣନ୍ତୁ । ବୋଲୁଛୁ ।'' ସଲଜ୍ଜ ବିନୟରେ ଏତକ କହିଦେଇ ମନ୍ତ୍ରଟିକୁ ବୋଲିବାକୁ ଆରମ୍ଭ କଲି ।

ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା
ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।
ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂସସ୍ତନୂଭି–
ର୍ବ୍ୟଶେମ ଦେବହିତଂ ଯଦାୟୁଃ ।
ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ
ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ ।
ସ୍ୱସ୍ତି ତସ୍ତାର୍କ୍ଷ୍ୟୋଽରିଷ୍ଟନେମିଃ ।
ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଅତି ଶୁଦ୍ଧ ଭାବରେ ଉଚ୍ଚାରଣ କଲି ଏ ମନ୍ତ୍ରଟିକୁ ।

''ଏଇଟି ବି ଗୋଟିଏ ଶାନ୍ତି-ମନ୍ତ୍ର । ଏଇ କିଛି ସମୟ ପୂର୍ବରୁ ଆମର ଏଠି ଯେଉଁ ମନ୍ତ୍ରଟି ବୋଲାଯାଉଥିଲା, ତାହା ତୁମେ ଜାଣିଛ ?'' ଦ୍ରୋଣାଚାର୍ଯ୍ୟଙ୍କ ପୁନର୍ବାର ପ୍ରଶ୍ନ । ସେ ମୋ' ଦକ୍ଷତାକୁ ସବୁ ଦୃଷ୍ଟିରୁ ପରୀକ୍ଷା କରିନେବାକୁ ଚାହୁଁଥିଲେ ।

''ଆଗରୁ ଜାଣି ନ ଥିଲି । କିନ୍ତୁ ବର୍ତ୍ତମାନ ଶୁଣି ଜାଣିଗଲି । କ'ଣ ବୋଲିବି ?''

ଦ୍ରୋଣାଚାର୍ଯ୍ୟ ବିସ୍ମିତ ହୋଇ ପଚାରିଲେ, ''କ'ଣ ଥରକରେ ଶୁଣି ମନେ ରଖିଦେଲ ? ବୋଲିବ ବୋଲି କହୁଛ ଯେ ।''

''ହଁ, ଆଚାର୍ଯ୍ୟବର ! ଆପଣଙ୍କ କୃପାରୁ ମନେରଖିପାରିଛି ।''ଏହା କହି ମନ୍ତ୍ରଟିକୁ ଆମୂଳଚୂଳ ଶୁଦ୍ଧଭାବରେ ବୋଲିଦେଇଗଲି । ଦେଖିଲି, ଆଚାର୍ଯ୍ୟଙ୍କ ଭଳି ଅନ୍ୟାନ୍ୟ ଶିଷ୍ୟମାନେ ବି ମତେ ବିସ୍ମିତ ହୋଇ ଚାହିଁଥିଲେ । ବାପାଙ୍କ କପାଳରେ ମଧ୍ୟ ବିସ୍ମୟର ଭାଙ୍ଗ ଫୁଟିଉଠିଥିଲା ।

କାହାକୁ ନ ଶୁଭିଲା ଭଳି ଅର୍ଦ୍ଧସ୍ଫୁଟ ସ୍ୱରରେ ଆଚାର୍ଯ୍ୟ କହିଲେ, ''ବଡ଼ ବିଚିତ୍ର ଏ ବାଳକ-କିଶୋରର ସ୍ମରଣ ଶକ୍ତି ! ଯେ କ'ଣ ସତରେ ସୂତପୁତ୍ର ।''

ମୁଁ କିନ୍ତୁ ତାଙ୍କ ଓଠ ଚାଲିବାର ଭଙ୍ଗୀରୁ ଜାଣିପାରିଥିଲି ସେ କ'ଣ କହୁଛନ୍ତି ବୋଲି । ମତେ ଲାଗୁଥିଲା, ସେ ଟିକିଏ ଯେମିତି ଧୀରେ ଧୀରେ ମୋ'ପ୍ରତି ତରଳି ଯାଉଛନ୍ତି । ରାଜକୁମାରମାନଙ୍କ ସହିତ ଜଣେ ସୂତପୁତ୍ର ହିସାବରେ ମୋର ଶିକ୍ଷା ପାଇବାର ଯେଉଁ ଅଯୋଗ୍ୟତାର ବନ୍ଧନଟି ଅଛି ତହିଁରୁ ମତେ ମୁକାଳିବା ପାଇଁ ସତେଯେମିତି କିଛି ଗୋଟାଏ ଉପାୟ ଖୋଜୁଛନ୍ତି । ତଥାପି ସନ୍ଦେହ ମୋଚନ ଲାଗି ସେ ପୁନର୍ବାର ବାପାଙ୍କୁ ପଚାରିଲେ, ''ତୁମେ ସତ କହୁଛ ତ ଅଧିରଥ, ଯେ ତୁମର ପୁତ୍ର ବୋଲି ?''

''ହଁ, ସତ କହୁଛି ଆଚାର୍ଯ୍ୟବର । ଯେ ମୋର ଜ୍ୟେଷ୍ଠ ପୁତ୍ର କର୍ଣ୍ଣ । ଡାକ ନାଁ ବସୁ । କନିଷ୍ଠ ପୁତ୍ର ସଂଗ୍ରାମଜିତ୍ ଗାଁରେ ।'' ତାଙ୍କ ମୁହଁ ଥିଲା ହସ ହସ ଓ କଣ୍ଠର ଭାଷା ସହଜ । ତହିଁରେ କିଛିଟା ଗର୍ବଭାବ ମିଶିଥିବା ଭଳି ମତେ ଲାଗୁଥିଲା ।

''ମୁଁ ରାଜି କର୍ଣ୍ଣଙ୍କୁ ଶିଷ୍ୟରୂପରେ ଗ୍ରହଣ କରିବାପାଇଁ । କିନ୍ତୁ ଗୋଟିଏ ସର୍ତ୍ତରେ ।'' ଦ୍ରୋଣାଚାର୍ଯ୍ୟ ଗମ୍ଭୀର ଭାବରେ ଆଦେଶ ଶୁଣାଇ କହିଲେ ।''

''କ'ଣ ସେହି ସର୍ତ୍ତଟି ପ୍ରଭୋ ?'' ବାପାଙ୍କ ଜିଜ୍ଞାସାଭରା ପ୍ରଶ୍ନ । ମୁଖମଣ୍ଡଳରେ ଅସ୍ୱସ୍ତିର କଳା ମେଘ । କାଳେ କିଛି କଠିନ ଦୁଷ୍କରଣୀୟ ସର୍ତ୍ତ ରଖିବେ ଆଚାର୍ଯ୍ୟ ।

''ତୁମ ପୁତ୍ର ରାଜକୁମାରମାନଙ୍କ ସାଥିରେ ଏକାଠି ବସି ପଢ଼ିପାରିବେ ନାହିଁ । ସେ ପରଦାର ଅନ୍ତରାଳରେ ଥାଇ ମୋ'ଠାରୁ ଶିକ୍ଷା ପାଇବେ । ତୁମେ ଏଥିରେ ରାଜି ତ ?''

''ହଁ, ଆଚାର୍ଯ୍ୟବର ! ମୁଁ ରାଜି ।'' ବାପା ସଙ୍ଗେ ସଙ୍ଗେ ଉତ୍ତର ଦେଲେ । କାରଣ ସେ କୌଣସିମତେ ମୋର ଅସ୍ତ୍ରଶିକ୍ଷା ଦ୍ରୋଣାଚାର୍ଯ୍ୟଙ୍କ ପାଖରେ ହିଁ ହେବାର ବ୍ୟବସ୍ଥା କରିବାକୁ ଚାହୁଁଥିଲେ ।

''ତେବେ କାଲିଠାରୁ ସେ ଶିକ୍ଷାୟତନକୁ ଆସନ୍ତୁ ।''

''ହଁ, ପ୍ରଭୋ !'' ଆମେ ପିତା-ପୁତ୍ର ଦୁହେଁ କୃତଜ୍ଞତାଭରା ସ୍ୱରରେ ଏକାଠି କହିଲୁ ଓ ଆଚାର୍ଯ୍ୟଙ୍କୁ ଯଥାବିଧି ସମ୍ମାନ ଦେଖାଇ ଘରକୁ ଫେରି ଆସିଲୁ ।

ବାଟରେ ଆସିଲା ବେଳେ ଆଚାର୍ଯ୍ୟଙ୍କ ସେଇ ସର୍ତ୍ତଟି ବିଷୟ ବାରମ୍ବାର ଭାବୁଥାଏ । ସମାଜରେ ତ ଜାତି-ବର୍ଣ୍ଣ ନେଇ ବଡ଼-ସାନର ଭେଦଭାବ ରହିଛି । ପବିତ୍ର ଶିକ୍ଷାୟତନରେ ପୁଣି ଏଭଳି ଭେଦଭାବ ! ଶିକ୍ଷା ପାଇ ମଣିଷ ସୁସଂସ୍କୃତ ହେବ । ଜୀବନରେ ସିଦ୍ଧି ପାଇବା ଲାଗି ତା'ର ମୂଳଦୁଆଟି ଗଢ଼ିବ । ସେଠି ପୁଣି ଏଭଳି ବାଛ-ବିଚାର ! ଛି ! ଛି ! ଏଇ ଭେଦଭାବ, ବାଛବିଚାର କେବେ ଦୂର ହେବ କେଜାଣି ? ମୁକ୍ତ ହୋଇ ଜନ୍ମିଥିବା ମଣିଷ ମୁକ୍ତ ହୋଇ ଜୀଇଁବାର ପୂର୍ଣ୍ଣ ସୁଯୋଗ କେବେ ପାଇବ କେଜାଣି ?

ବାରମ୍ବାର କ୍ରୋଧ ଓ ଦୁଃଖମିଶା ଫଁ ଫଁ ନିଃଶ୍ୱାସ ଛାଡୁଥିଲି ମୁଁ ।

## ଚଉଦ

ଦ୍ରୋଣାଚାର୍ଯ୍ୟଙ୍କ ଶିକ୍ଷାୟନତରେ ଇତିମଧ୍ୟରେ ଆରମ୍ଭ ହୋଇଯାଇଛି ମୋର ଶିକ୍ଷା । ତାଙ୍କ ସର୍ତ୍ତଟି କିପରି ଠିକ୍ ଠିକ୍ ପରିପୂରିତ ହୁଏ, ସେଥିରେ ସୁବ୍ୟବସ୍ଥା କରିଛନ୍ତି ସେ । ଗୋଟିଏ ପଟେ ରାଜକୁମାରମାନେ ଓ ଅନ୍ୟପଟେ ମୁଁ । ମଝିରେ ଟଣା ହୋଇଛି ପରଦା । ପରଦାର ଅନ୍ତରାଳରୁ ମତେ ଆଚାର୍ଯ୍ୟଙ୍କୁ ଦେଖିପାରିବାର ସୁଯୋଗ ଦେବାପାଇଁ ଦୁଇଟି ଛିଦ୍ର । ଏଇ ଛିଦ୍ର ଦୁଇଟି ଦେଇ ଆଚାର୍ଯ୍ୟଙ୍କଦ୍ୱାରା ଦେଖାଯାଉଥିବା ଅସ୍ତ୍ରବିଦ୍ୟା ସଂଚାଳନ-ବିଦ୍ୟା, ମଲ୍ଲଯୁଦ୍ଧ ଓ ଅସିଯୁଦ୍ଧ ଆଦିର କୌଶଳମାନ ଦେଖିପାରୁଛି । ମନ ମୋର ଯେତେ ବିଦ୍ରୋହ କରୁଥିଲେ ବି ଏଇ ବ୍ୟବସ୍ଥାଟିକୁ ଆଦରିନେଇଛି ବିନା ପ୍ରତିବାଦରେ ମୋର ଚିରବାଞ୍ଛିତ ଅଭିଳାଷଟିର ପରିପୂର୍ତ୍ତି ଲାଗି । କାରଣ ମତେ ବୀର ହେବାକୁ ହିଁ ହେବ । ମୋର ଜନ୍ମ ସିନା ସୂତକୁଳରେ । ତାହା ଅବଶ୍ୟ ମୋ' ବଶର ବାହାରେ କିନ୍ତୁ ମୋ' ପାଖରେ ଅଛି ପୌରୁଷ । ତାହାରି ସାହାଯ୍ୟରେ ନିରନ୍ତର ଉଦ୍ୟମ କରିବି । ଦେଖାଇଦେବି ଜଗତକୁ ଜଣେ ସୂତପୁତ୍ର ନିଜ ଚେଷ୍ଟାବଳରେ କ'ଣ କରିପାରେ ? ନିଜ ପୌରୁଷବଳରେ କି ସିଦ୍ଧି ପାଇପାରେ ? ହଁ, ଦେଖାଇଦେବି । ନିଶ୍ଚୟ ଦେଖାଇଦେବି । ଏଇ କଥା ଅନେକ ବାର ଭାବେ । ଭାବିଲା ବେଳକୁ ମୋର ମାଂସପେଶୀ ଫୁଲି-ଉଠେ । ଛାତି ହୁଏ ପ୍ରସାରିତ । ଖୁବ୍ ଜୋର୍‌ରେ ନିଃଶ୍ୱାସ-ପ୍ରଶ୍ୱାସ ନିଏ ।

ମୁଖ୍ୟତଃ ଯୁଦ୍ଧଶାଳାରେ ହିଁ ଥିଲା ଆଚାର୍ଯ୍ୟଙ୍କ ଆଶ୍ରମ । ବନାଶ୍ରମ ଭଳି ପରିବେଶ ସେତେଟା ଶାନ୍ତ ନ ଥିଲେ ହେଁ ଅଶାନ୍ତ ନ ଥିଲା । ରାଜଭବନ ପରିସରରେ ଥିଲେ ବି ତାହାର କଳରବଠାରୁ ଥିଲା ଅପେକ୍ଷାକୃତ ଦୂରରେ । ତେଣୁ ତାହାର ବାତାବରଣ ଯଥେଷ୍ଟ ଥିଲା ଶାନ୍ତ । ଶୃଙ୍ଖଳା ବି କିଛି କମ୍ ନ ଥିଲା । ସମସ୍ତ ଶିଷ୍ୟଙ୍କୁ ଏକ ଦୃଢ଼ ଦୈନନ୍ଦିନ ଶୃଙ୍ଖଳାବଦ୍ଧ ଜୀବନ ମଧ୍ୟଦେଇ ଗତି କରିବାକୁ ପଡୁଥିଲା । ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ, ତ୍ରିକାଳ ସଂଧ୍ୟାପୂଜା, ପ୍ରାର୍ଥନା, ଯଜ୍ଞ, ଯଥାସମୟରେ ଭୋଜନ ଆଦି ସବୁ କିଛି ଚଳୁଥିଲା ଏକ ଶୃଙ୍ଖଳାର ସହିତ । ପାଠ୍ୟକ୍ରମର କାଳ ଥିଲା ଦୀର୍ଘ ଛଅ ବର୍ଷ ଲାଗି ନିର୍ଦ୍ଦିଷ୍ଟ । ଆଚାର୍ଯ୍ୟ

ଚାହିଁଲେ କୌଣସି ଶିଷ୍ୟ ସିଦ୍ଧି ହାସଲରେ ଅସମର୍ଥ ଥିଲେ ସେହି ଶିଷ୍ୟଙ୍କ ଲାଗି କାଳ ସୀମାକୁ ବଢ଼ାଇ ଦେଉଥିଲେ ସେ । ଆଚାର୍ଯ୍ୟଙ୍କ ବିଶ୍ୱାସ ଯେ ସମସ୍ତଙ୍କୁ ତାଙ୍କ ଶିଷ୍ୟତ୍ୱ ଗ୍ରହଣର ସୁଫଳ ମିଳିବ । ସମସ୍ତଙ୍କୁ ସିଦ୍ଧି ମିଳିବ । ସେଥିପାଇଁ ତ ସମଗ୍ର ଆର୍ଯ୍ୟାବର୍ତ୍ତରେ ଜଣେ ଯୋଗ୍ୟ ଆଚାର୍ଯ୍ୟ ଭାବରେ ତାଙ୍କ ନାଁରେ ବାଜୁଥିଲା ଡିଣ୍ଡିମ । ରାଜକୁମାରମାନଙ୍କୁ ଆଉ ରାଜପ୍ରାସାଦକୁ ଫେରିବାକୁ ହେଉ ନ ଥିଲା । ସାମଗ୍ରିକ ଶିଷ୍ୟଜୀବନ ଏଇ ବିଦ୍ୟାୟତନରପରିସରରେହିଁ କଟାଇବାକୁ ପଡୁଥିଲା । ଦୀର୍ଘାୟତନ ଚାରି ଧାଡ଼ି ଘର ଥିଲା ଯୁଦ୍ଧଶାଳାକୁ ଲାଗିକରି । ସେଇଠାରେ ହିଁ ସେମାନେ ରହୁଥିଲେ । ତାହାଠାରୁ ଟିକିଏ ଛାଡ଼ିକରି ଥିଲା ସାରଥିମାନଙ୍କ ଲାଗି ଉଦ୍ଦିଷ୍ଟ କେତୋଟି ଏକବଖରିଆ ଘର । ଏଇଥିରୁ ଗୋଟିକରେ ରହୁଥିଲି ମୁଁ । ବିଦ୍ୟାୟତନରେ ରହିବାଠାରୁ ଆରମ୍ଭ କରି ଶିକ୍ଷାଗ୍ରହଣ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ମୋର ଥିଲା ରାଜକୁମାରମାନଙ୍କଠାରୁ ପାର୍ଥକ୍ୟ । ସଂପୂର୍ଣ୍ଣ ବାଛ-ବିଚାର । ଉଚ୍ଚ-ନୀଚର ବିରାଟ ପ୍ରାଚୀର ।

ଶିକ୍ଷା ସମାପ୍ତ ନ ହେବା ପର୍ଯ୍ୟନ୍ତ ଶିଷ୍ୟମାନଙ୍କୁ ନିଜ ଘରକୁ ଯିବାର ସୁଯୋଗ ମିଳୁ ନ ଥିଲା । ଅବଶ୍ୟ ପିତାମାତାମାନେ ମଝିରେ ମଝିରେ ଆସି ସେମାନଙ୍କ ସନ୍ତାନମାନଙ୍କୁ ଦେଖିନେବାର ସୁଯୋଗ ପାଉଥିଲେ । ମୋ' କ୍ଷେତ୍ରରେ ମାଆ ତ ମତେ ଦେଖି- ଆସି ନାହାନ୍ତି । ବାପା କିନ୍ତୁ ଅନେକଥର ନିୟମିତ ଭାବରେ ଦେଖିଆସିଛନ୍ତି । ସତୀର୍ଥମାନଙ୍କ ଗହଣରେ ଥାଇ ଧୀରେ ଧୀରେ ମୋର ଏକତ୍ୱବୋଧ ଚାଲିଯିବାକୁ ବସିଲା । ନୂଆ ନୂଆ ବନ୍ଧୁମାନଙ୍କ ସହିତ ମିଶି ନୂଆ ନୂଆ ସ୍ୱପ୍ନର୍ ଜାଲଟିମାନ ବୁଣିବାକୁ ଲାଗିଲି । ଦୃଷ୍ଟିଭଙ୍ଗୀକୁ ଧୀରେ ଧୀରେ ପ୍ରସାରିତ କରିବାର ସୁଯୋଗ ପାଇଲି । ସବୁ ବନ୍ଧୁଙ୍କ ମଧ୍ୟରେ ମୋର ଦୁଇ ଜଣ ପରମ ବନ୍ଧୁ ଥିଲେ । ଜଣେ ରାଜା ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠକୁମାର ଦୁର୍ଯ୍ୟୋଧନ ଓ ଆର ଜଣକ ଆଚାର୍ଯ୍ୟପୁତ୍ର ଅଶ୍ୱତ୍‌ଥାମା । ଅଶ୍ୱତ୍ଥାମାଙ୍କ ଅସ୍ତ୍ରଜ୍ଞାନ ଯେମିତି ବିପୁଳ, ଶାସ୍ତ୍ରଜ୍ଞାନ ମଧ୍ୟ ତାହାଠାରୁ ଅଧିକତର ବିପୁଳ । ସେ ଥିଲେ ଜଣେ ବେଦବିତ୍ ଓ ବ୍ରହ୍ମଜ୍ଞାନୀ । ଋଷି ଭରଦ୍ୱାଜଙ୍କ ପୌତ୍ର । ପୁଣି ଅନୁରୂପ ବ୍ରହ୍ମଜ୍ଞାନୀ ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର । ଏହି ବ୍ରହ୍ମଜ୍ଞାନ ସତେଯେମିତି ସେ ଉତ୍ତରଦାୟାଦ ହିସାବରେ ପାଇଥିଲେ । ଏଇ ଦୁଇ ମିତ୍ରଙ୍କ ସହିତ ମୋ' ପରବର୍ତ୍ତୀ ଜୀବନର ବଡ଼ ଭାଗ ଗୁନ୍ଥା ହୋଇଯାଇଥିଲା କି ଏକ ଅପୂର୍ବ ସଂଯୋଗରେ ! ଏମାନଙ୍କ କଥା ପରେ କହିବି ।

ପ୍ରଥମେ ମତେ ଯୁଦ୍ଧଶାଳାକୁ ଯାଇ ବିଭିନ୍ନ ଅସ୍ତ୍ର-ଶସ୍ତ୍ର ବିଷୟରେ ପରିଚିତ ହେବାକୁ ପଡ଼ିଲା । ସେଥିପାଇଁ ଦୈନିକ କାର୍ଯ୍ୟକ୍ରମ ପୂର୍ବରୁ ପ୍ରସ୍ତୁତ ହୋଇଥିଲା । ମାସକ ମଧ୍ୟରେ ମତେ ଅସ୍ତ୍ରପରିଚୟ ସାରିବାକୁ ହେବ । ଦ୍ରୋଣାଚାର୍ଯ୍ୟ ନିଜେ ମତେ ସେଗୁଡ଼ିକ ସହିତ ପରିଚିତ କରାଇଦେଲେ ଓ ସେଗୁଡ଼ିକର ମାରକ ଶକ୍ତି ବିଷୟରେ ପ୍ରାରମ୍ଭିକ ସୂଚନା ଦେଲେ ।

ଭାବୁଥାଏ ମନେ ମନେ ଏତେପ୍ରକାର ମାରଣାସ୍ତ୍ର ମଣିଷ ଗଢ଼ିଛି । ନୂଆ ନୂଆ ଅସ୍ତ୍ରମାନ ଗଢ଼ିବାପାଇଁ ଗବେଷଣାଗାରଗୁଡ଼ିକରେ ଏବେ ବି ଚାଲୁଛି ଗବେଷଣା । ବୋଧହୁଏ, ଚାଲୁଥିବ ଯୁଗ ଯୁଗ ଧରି । କ'ଣ ଶେଷ ମଣିଷଟିକୁ ଧରଣୀରୁ ନିଃଶେଷ କରିଦେବା

ପର୍ଯ୍ୟନ୍ତ ଚାଲିଥିବ ? କେତେ ଯୁଗ ଧରି ମଣିଷ ନିଜକୃତ ଅସ୍ତ୍ରଗୁଡ଼ିକଦ୍ୱାରା ନିଜେ ପିଇଚାଲିଛି ନିଜ ପ୍ରଜାତିର ରକ୍ତ ଯାହାକି ପଶୁ ବି ପିଏ ନା ! ପଶୁଠାରୁ ଆହୁରି ତଳକୁ ଖସିଆସିଛି ସେ । କେହି ବନ୍ଦ ନ କଲେ ଏଇ ଖସିବା ପ୍ରକ୍ରିୟା ଚାଲିଥିବ ହୁଏତ ଯୁଗ ଯୁଗ ଧରି । ତଥାପି ତା'ର ତୃଷ୍ଣା ମେଣ୍ଟି ନାହିଁ । ସେ ଆହୁରି ରକ୍ତ ଚାହେଁ । ରଣାଙ୍ଗନରେ ଆହୁରି ବିକଟ ଉଦ୍ଦଣ୍ଡ ନୃତ୍ୟ କରିବାକୁ ଚାହେଁ । ଏଇ ଭାବନାରେ ମନ ମୋର ବିଚଳିତ ହୋଇଉଠେ । କାରଣ ମୁଁ ବି ତ ସେଇ ପଥର ପଥିକ । ଶସ୍ତ୍ରବିଦ୍ୟା ଶିକ୍ଷା କରୁଛି କେବଳ ମଣିଷର ରକ୍ତରେ ହୋରି ଖେଳିବାପାଇଁ । କିନ୍ତୁ କ'ଣ କରିବି ମୁଁ ? ଜଣେ ବୀରପୁରୁଷ ହେବାପାଇଁ ମୋର ଅଭିଳାଷ । ଯୁଦ୍ଧରେ ବୀରଗତି ପାଇଲେ ଜୀବନକୁ ଧନ୍ୟ ମନେ କରିବି । ଏହାହିଁ ତ ବୀରମାନଙ୍କ ଧର୍ମ ବୋଲି ଶାସ୍ତ୍ର କହେ । ତେଣୁ ଶାସ୍ତ୍ର ଓ ଶସ୍ତ୍ର ଉଭୟର ଉପାସନା କରିବାକୁ ମୁଁ ବାଧ୍ୟ । ଏଭଳି ପରିସ୍ଥିତିରେ ମଣିଷର ରକ୍ତପାତକୁ ଏଡ଼ାଇ ଦେଇପାରିବି ବା କିପରି ? ନିଜକୁ ଯେତେ ଅପରାଧୀ ଓ ନିର୍ବୋଧ ବୋଲି ଭାବୁଥାଏ, ମନରେ ମୋର ସେତେ ଶସ୍ତ୍ରବିଦ୍ୟା ଶିଖିବାପାଇଁ ଆଗ୍ରହ ବଢ଼ିଉଠୁଥାଏ । ମହତ୍ତ୍ୱାକାଙ୍କ୍ଷା ମତେ ସେତେ ସେହିଆଡ଼କୁ ଟାଣି ନେଉଥାଏ । ମୁଁ ସଂପୂର୍ଣ୍ଣ ବିବଶ । ପୂରାପୂରି ନାଚାର । କର୍ଣ୍ଣ ବୋଲି ଯେଉ ବିଚରା ମଣିଷଟି ତା'ର କି ବିଡ଼ମ୍ବିତ ଭାଗ୍ୟ ସତେ ! ଯାହା କରିବାକୁ ଚାହୁଁଛି, ତାହା କରିପାରୁ ନାହିଁ । ବିବଶତା ତାକୁ ନ କରିବା କାମ କରିବାପାଇଁ ଅନୁପ୍ରେରିତ କରୁଛି ! ହାୟ ! ହାୟ !

ମୋ'ପାଇଁ ସିନା ଆଚାର୍ଯ୍ୟ ଅସ୍ତ୍ରପରିଚୟ ଲାଗି ମାସକର କାର୍ଯ୍ୟକ୍ରମ ସ୍ଥିର କରିଥିଲେ । ମୁଁ କିନ୍ତୁ ସେହି କାର୍ଯ୍ୟଟିକୁ ପନ୍ଦର ଦିନ ମଧ୍ୟରେ ସାରିଦେଲି । ଆଚାର୍ଯ୍ୟ ଯେଉଁ ପରୀକ୍ଷା ନେଲେ, ସେଥିରେ ବି ଉତ୍ତୀର୍ଣ୍ଣ ହୋଇଗଲି । କୌଣସି ଗୋଟିଏ ହେଲେ ବି ଭୁଲ ଉତ୍ତର ଦେଇ ନ ଥିଲି । ସେ ଭାରି ଖୁସି ହେଲେ ଓ କହିଲେ, "ସାଧୁ, ସାଧୁ ସୂତପୁତ୍ର କର୍ଣ୍ଣ ।" ଏଇ ସାଧୁବାଦର ପ୍ରତିକ୍ରିୟା ଜଣାଇ ତାଙ୍କ ପାଦତଳେ ପ୍ରଣାମ କଲି । କିନ୍ତୁ ମନଟା ମୋର ଖୁସି ପରିବର୍ତ୍ତେ ବେଦନାରେ ଗୁମୁରିଉଠିଲା ସୂତପୁତ୍ର ଡାକରେ । ଭାବୁଥାଏ, ଆଚାର୍ଯ୍ୟଙ୍କର ଯଦି ମୋ' ପ୍ରତି ଏତେ ସ୍ନେହ, ଶ୍ରଦ୍ଧା, ତା'ହେଲେ ସେ ତ ମତେ 'ବତ୍ସ କର୍ଣ୍ଣ' ଅଥବା କେବଳ 'କର୍ଣ୍ଣ' ବୋଲି ଡାକିପାରନ୍ତେ । ଏମିତି ବାରମ୍ବାର ସୂତପୁତ୍ର ଶବ୍ଦଟିକୁ ମୋ ନାଁ ସହିତ ଯୋଡୁଛନ୍ତି କାହିଁକି ? ମତେ କେବଳ ମୋର ନୀଚକୁଳରେ ଜନ୍ମ ବିଷୟରେ ଚେତାଇ ଦେବାକୁ ନୁହେଁ କି ? ହଁ, ମାନୁଛି ମୁଁ ସୂତପୁତ୍ର । କିନ୍ତୁ ଯେଉଁଭଳି ଭାବରେ ମତେ ସୂତପୁତ୍ର ବୋଲି ସମ୍ବୋଧନ କରାଯାଉଛି, ତାହାଦ୍ୱାରା ମୋ' ହୀନମ୍ମନ୍ୟତାକୁ ବଢ଼ାଇବାର ଅପଚେଷ୍ଟା କରାଯାଉଛି ସିନା ! ମୁଁ କିନ୍ତୁ ନିଶ୍ଚୟ କରିସାରିଥିଲି, ଏଇ ହୀନମ୍ମନ୍ୟତାର ଊର୍ଦ୍ଧ୍ୱକୁ ଉଠିବାପାଇଁ । ବାସ୍ତବିକ ସାରା ଜୀବନ ଧରି ତାହା ହିଁ କରିଆସିଛି । ସମାଜର ତଥାକଥିତ ଜ୍ଞାନୀଲୋକମାନଙ୍କ ନିରର୍ଥକ ଜ୍ଞାନିମାନ୍ୟତାକୁ ପାଦରେ ଏଡ଼ାଇ ଦେଇଆସିଛି । ଜ୍ଞାନୀ ବୋଲି ଦାବି କରୁଥିବା ଲୋକ ଯେ ଜ୍ଞାନହୀନ ଏହା ନ ଜାଣିବାଠାରୁ ଆଉ ଅଧିକ ଅଜ୍ଞତା କ'ଣ ବା ଥାଇପାରେ ?

ହଁ, ମୋ' ଅସ୍ତ୍ରପରିଚୟ କଥା କହୁଥିଲି ପରା । ପୁଣି ଫେରିଯାଉଛି ସେଠିକି । ସେଇ ପନ୍ଦର ଦିନ ମଧ୍ୟରେ ଶିଖିଗଲି ଅସ୍ତ୍ରଗୁଡ଼ିକର ସାଧାରଣ ଶ୍ରେଣୀବିଭାଗ କଥା । ସେଗୁଡ଼ିକର ଚାରୋଟି ଶ୍ରେଣୀ । ମୁକ୍ତ, ଶତ୍ରୁ ଉପରେ ଆଘାତ କରୁଥିବା ଅସ୍ତ୍ର ମୁକ୍ତ-ଶ୍ରେଣୀର । ଯେମିତି ବାଣ, ବର୍ଚ୍ଛା ଆଦି । ହାତରେ ଥାଇ ଆଘାତ କରୁଥିବା ଅସ୍ତ୍ର ଅମୁକ୍ତ । ଯେମିତିକି ଖଣ୍ଡା, ତରବାରି ଆଦି । ଯନ୍ତ୍ର ମାଧ୍ୟମରେ ଛଡ଼ା ଯାଉଥିବା ଅସ୍ତ୍ରକୁ କୁହାଯାଏ ଯନ୍ତ୍ରମୁକ୍ତ । ଯନ୍ତ୍ର ସାହାଯ୍ୟରେ ଲୁହା କିମ୍ବା ପଥରର ଗୋଳା ଛଡ଼ାଯାଏ । ଯେମିତିକି ଶତଘ୍ନୀ ଅସ୍ତ୍ର । ମୁକ୍ତାମୁକ୍ତ ଅସ୍ତ୍ରଗୁଡ଼ିକ ପୁଣି ଫେରିଆସେ ଯୋଦ୍ଧାଙ୍କ ପାଖକୁ । ଏହା ଉଭୟ ମୁକ୍ତ ଓ ଅମୁକ୍ତ ମଧ୍ୟ । ତେଣୁ ନାଁ ମୁକ୍ତାମୁକ୍ତ । ବିଷ୍ଣୁଙ୍କ ଚକ୍ର, ଇନ୍ଦ୍ରଙ୍କ ବଜ୍ର ଆଦି ଏହି ଶ୍ରେଣୀର । ଆଉ ଜ୍ଞାନ ପାଇଲି ବାଣଗୁଡ଼ିକର ଦଶ ପ୍ରକାର ଗତି ସଂପର୍କରେ । ମୁଣ୍ଡକୁ ଲକ୍ଷ୍ୟ କରି ବାଣ ଛାଡ଼ିଲେ ସେହି ଗତିର ନାଁ ଉନ୍ମୁଖୀ । ହୃଦୟକୁ ଲକ୍ଷ୍ୟକରି ଯାଉଥିବା ବାଣର ଗତି ଅଭିମୁଖୀ । ବାଁ-ଡାହାଣ ଦୁଇ ପଟକୁ ଲକ୍ଷ୍ୟକରି ଛଡ଼ା ଯାଉଥିବା ବାଣର ଗତିକୁ କୁହାଯାଏ ତିର୍ଯ୍ୟକ୍ । ଆଉ ମନ୍ଦା ଗତି । ତାହାକୁ ଆଶ୍ରା କରି ଯାଉଥିବା ବାଣର ଆଘାତ ଅଗଭୀର । ଚର୍ମକୁ ମାତ୍ର ଛୁଇଁଥାଏ । ଗୋମୂତ୍ରିକା ବୋଲି ଆଉ ଗୋଟିଏ ଗତି । ବାଁ- ଡାହାଣ ଦୁଇ ପଟକୁ ଓ କବଚକୁ ଲକ୍ଷ୍ୟକରି ବାଣ ଛଡ଼ାଯାଇଥାଏ ଏ କ୍ଷେତ୍ରରେ । ଯେଉଁ ଗତିରେ ଗଲେ ବାଣ ନିଶ୍ଚିତ ଭାବରେ ଲକ୍ଷ୍ୟଭେଦ କରେ, ନାଁଟି ତାହାର ଧ୍ରୁବା । ଲକ୍ଷ୍ୟରୁ ବିଚଳିତ ହେଲେ ଗତିର ନାଁ ହୁଏ ସ୍ଖଳିତା । ବାରମ୍ବାର ଲକ୍ଷ୍ୟଭେଦ କରି ବାଣ ବାହାରିଗଲେ ହୁଏ ଯମକାକ୍ରାନ୍ତା ଗତି । ହାତ, କାନ ଆଦି ଦେହର ଗୋଟିଏ ଗୋଟିଏ ଅଙ୍ଗକୁ ଲକ୍ଷ୍ୟକରି ବାଣଦ୍ୱାରା ଆଘାତ କଲେ ଗତିର ନାଁ କୃଷ୍ଟା । ଅତିକୃଷ୍ଟା ବୋଲି ଯେଉଁ ଗତିଟି ଅଛି, ତାହା ବଡ଼ ଭୟଙ୍କର । ଏଥିରେ ବାଣ ଶତ୍ରୁର ମୁଣ୍ଡ କାଟି ତାହାକୁ ନିଜ ସାଥିରେ ନେଇ ଦୂରରେ ପକାଇଦିଏ ।

ଅସ୍ତ୍ରଗୁଡ଼ିକର ନାଁ ସହିତ ମୋର ପରିଚୟ ହୋଇଥିବା କଥା ଆଗରୁ କହିଛି । କେତୋଟି ପ୍ରଧାନ ପ୍ରଧାନ ଅସ୍ତ୍ରର ନାଁ ଏବେ କହୁଛି । ଏଇ ଅନ୍ତିମ ସମୟରେ ସବୁ ଅସ୍ତ୍ରର ନାଁ ମନେପଡୁ ନାହିଁ କିମ୍ବା ତାହା କହିବାକୁ ସମୟ ବି ନାହିଁ । ଶୂଳ, ତୋମର, ପରିଘ, ପ୍ରାସ, ଖଣ୍ଡା, ପଟ୍ଟିଶ, ଭୁଶୁଣ୍ଡି, ଗଦା, ଚକ୍ର, କର୍ଣ୍ଣୀ, ନାଳୀକ, ବସ୍ତିକ, ସୂଚୀ, କପିଶ, ଜିହ୍ମ, ଗବାସ୍ଥିଜ ଆଦି ଅନେକ କିଛି ଅସ୍ତ୍ର ସହିତ ମୋର ପରିଚୟ ହୁଏ । ଆଉ ମଧ୍ୟ ପରିଚୟ ହୁଏ ପୂତୀ, କଙ୍କମୁଖ, ସୁବର୍ଣ୍ଣପୁଙ୍ଖ, ଅଶ୍ୱାସ୍ଥି, ଆଞ୍ଜଳିକ, ସନ୍ନତପର୍ବ, ସର୍ପମୁଖୀ ଆଦି ବାଣଗୁଡ଼ିକ ସହିତ । ଧନୁ ଓ ବାଣ ପ୍ରତି ମୋର ଗଭୀର ଆଗ୍ରହ । ଜଣେ ବଡ଼ ଧନୁର୍ଦ୍ଧର ହେବାପାଇଁ ଚାହୁଁଥିଲି । ସେହି ରୁଚି ଦୃଷ୍ଟିରୁ ଧନୁର୍ବାଣ ସହିତ ପରିଚୟ ଓ ତାହାର ଅଭ୍ୟାସ ପ୍ରତି ଧ୍ୟାନ ଦେଇଥିଲି ବିଶେଷ ଭାବରେ । କର୍ଣ୍ଣୀ ଏକ ଭୟଙ୍କର ବାଣ । ଏହାର ଦୁଇଟି ଶୂଳାଗ୍ର । ଦେହ ଭିତରେ ପଶିଲେ ଅନ୍ତବୁଜୁଳାକୁ ଧରି ବାହାରିଆସେ । ମାରକଶକ୍ତି ଖୁବ୍ ବେଶି ନାଳୀକ ଅପେକ୍ଷାକୃତ କ୍ଷୁଦ୍ର ଆକାରର ବାଣ । ସଂପୂର୍ଣ୍ଣ ଭାବରେ ଦେହରେ ପଶିଯାଏ କାହିଁ କେଉଁ ଭିତରକୁ । ଥରେ ପଶିଗଲେ ଆଉ ବାହାରେ ନାହିଁ । ଆଘାତ ଖୁବ୍ ପୀଡ଼ାଦାୟକ । ବସ୍ତିକ ବାଣର ଫଳକ ଓ କାଣ୍ଡର ସନ୍ଧି-ସ୍ଥଳଟି ଖୁବ୍ ପତଳା । ଟିକିଏ ଟାଣିଦେଲେ ଭାଙ୍ଗିଯାଏ । ସଂପୂର୍ଣ୍ଣ ଭାବରେ ପଶିଯାଏ ଦେହ ଭିତରେ । କାଣ୍ଡକୁ ଧରି

ଟାଣିଲେ ସନ୍ଧି ଜାଗାରେ ଭାଙ୍ଗିଯାଏ । ସୂଚୀ ବାଣ ଠିକ୍ କର୍ଣ୍ଣୀ ବାଣ ଭଳି । ଏହାର ଅଗ୍ରଭାଗରେ କିନ୍ତୁ ଛୁଞ୍ଚି ଆକାରରେ ଅନେକ ମୁନିଆ ମୁନିଆ କଣ୍ଟା ଥାଏ । ଅତି ସୂକ୍ଷ୍ମ ଲକ୍ଷ୍ୟକୁ ଭେଦ କରିପାରେ । ଆଉ ବାଣଟି ରହିଯାଏ ଭିତରେ । ଲୁହାର ତିଆରି ବାଣର ନାଁ କପିଶ । ବେଳେ ବେଳେ ମାଙ୍କଡ଼ର ହାତ-ହାଡ଼ରେ ତିଆରି ବାଣକୁ ବି କୁହାଯାଏ କପିଶ । ଜିହ୍ମ ଆଉ ଏକ ବିଚିତ୍ର ବାଣ । ସିଧା ନ ଯାଇ ଯାଏ ଅଙ୍କେଇ-ବଙ୍କେଇ । ଶେଷରେ ଯାଇ ଲକ୍ଷ୍ୟଭେଦ କରେ । ଆଗରେ ଥିବା କୌଣସି ବାଧାକୁ ଏଡ଼ାଇଦେଇ ଶତ୍ରୁ ଉପରେ ଆଘାତ କରିବାଲାଗି ଉପଯୋଗ କରାଯାଏ ଏହାକୁ । ଗୋରୁହାଡ଼ରେ ତିଆରି ବାଣର ନାଁ ଗବାସ୍ଥିକ । ସେହିପରି ହାତୀ ହାଡ଼ରେ ତିଆରି ବାଣର ନାଁ ଗଜାସ୍ଥିକ । ଏହାର ଏକ ବିଚିତ୍ର ଓ ଭୟଙ୍କର ପ୍ରଭାବ । ହାତୀହାଡ଼ ଦେହରେ ପଶିଲେ ବିଷକ୍ରିୟାର ସୃଷ୍ଟି ହୁଏ । ରକ୍ତ ସଞ୍ଚାଳନ ବାଧା ପାଏ । ଫଳରେ ମଣିଷର ମୃତ୍ୟୁ ହୁଏ । ସେହିପରି ଘୋଡ଼ାହାଡ଼ରେ ତିଆରି ବାଣର ନାଁ ଅଶ୍ୱାସ୍ଥିକ । ଆଉ ଗୋଟିଏ ବାଣର ନାଁ ବୈତସ୍ତିକ । ଏକ ଚାଖଣ୍ଡ ମାତ୍ର ଲମ୍ବ । ଶତ୍ରୁ ଅତି ପାଖରେ ଥିଲେ ଏହି ବାଣକୁ ପ୍ରୟୋଗ କରିବାକୁ ପଡ଼ିଥାଏ । ଲମ୍ବା ଲମ୍ବା ଦୂରଗାମୀ ବାଣମାନ ସେଠି କାମ ଦେଇ ନ ଥାଏ । କିଙ୍କିଣୀ, ବର୍ଚ୍ଛା, ଶୂଳ ଆଦି ଗୋଟିଏ ଗୋଟିଏ ପ୍ରକ୍ଷେପାସ୍ତ୍ର । ଘଣ୍ଟିମାନ ଲାଗିଥାଏ ଏଗୁଡ଼ିକରେ । ଗଲାବେଳେ ଏଗୁଡ଼ିକ କିଣି କିଣି ଶବ୍ଦ କରିଥାଏ ।

ଏମିତି ବିଭିନ୍ନ ଅସ୍ତ୍ର ସଂପର୍କରେ ପ୍ରାଥମିକ ପରିଚୟ ପାଇବାରେ ଆଚାର୍ଯ୍ୟଙ୍କ ବିଦ୍ୟାୟତନରେ ମୋର ପ୍ରଥମ ପନ୍ଦର ଦିନ କଟିଗଲା ସହଜ-ସରଳ ଭାବରେ । ଏଭଳି କାର୍ଯ୍ୟବ୍ୟସ୍ତ ଥିଲି ଯେ ଘର କଥା, ପିତାମାତାଙ୍କ କଥା କିମ୍ବା ଆଉ କାହାଙ୍କ କଥା ମନେ ପଡୁ ନ ଥିଲା । ଦୈନିକ ସଂଧ୍ୟାପୂଜା ଅବସରରେ ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ତର୍ପଣ କରୁଥିବା ବେଳେ ମନୋରାଜ୍ୟରେ ଉଭା ହେଉଥିଲେ କେବଳ ହିଁ ଜଣେ । ଚମ୍ପାବନର ସେହି ମହାନ୍ ସନ୍ନ୍ୟାସୀମୂର୍ତ୍ତି । ତାଙ୍କରି ମୁହଁଟିକୁ ହିଁ ବାରମ୍ବାର ଦେଖିବାକୁ ଯାଉଥିଲି ସୂର୍ଯ୍ୟମଣ୍ଡଳର ତେଜୀୟାନ୍ ଜ୍ୟୋତିର୍ବଳୟ ମଧ୍ୟରେ ।

ଭାଗ୍ୟ ମତେ କେଉଁଆଡ଼କୁ ଟାଣୁଥିଲା ତାହା ଥିଲା ମୋ' ଜ୍ଞାନର ଅତୀତ । ତଥାପି ଆଶାବାଦୀ ଥିଲି । ଆଶା ମୋର ଥିଲା ଆକାଶଛୁଆଁ ।

## ପନ୍ଦର

ଚଢ଼େଇ ଆକାଶରେ ଉଡ଼େ । ବେଳେବେଳେ ଲାଗେ, ବାଦଲ ଚିରି ଯେମିତି ଉଡ଼ିଯାଉଛି ଖୁବ୍ ଉଚ୍ଚକୁ । ଲୀନ ହୋଇଯାଉଛି ତାହାର ନିଃସୀମ ବୁକୁରେ । କିନ୍ତୁ ପ୍ରକୃତରେ ଗତି ତାହାର ନ ଥାଏ ସୀମାହୀନ ଅଥବା କ୍ଳାନ୍ତିହୀନ । ଡେଣା ଝାଡ଼ି ଝାଡ଼ି କ୍ଳାନ୍ତ ହୋଇଗଲେ ପୁଣି ଖସିଆସେ ଧରଣୀକୁ । ବିଶ୍ରାମ ନିଏ । ପୁଣି ପ୍ରସ୍ତୁତ ହୁଏ ପରବର୍ତ୍ତୀ ଉଡ଼ାଣ ପାଇଁ । ଅଥଚ ସମୟର ଯେଉଁ ଅଦ୍ଭୁତ ଚଢ଼େଇଟି । ସେ କେବଳ ଉଡ଼ି ହିଁ ଚାଲିଥାଏ । ଡେଣାଝଡ଼ାର ବିରାମ ନ ଥାଏ । ଚିରଗତିଶୀଳ । ଚିରକ୍ଳାନ୍ତିହୀନ । ସେ

କେଉଁଠୁ ପ୍ରଥମେ ଆସିଥିଲା, ବସା ତାହାର କେଉଁଠି ଓ ଲକ୍ଷ୍ୟସ୍ଥଳ କେଉଁଠି କାହାରିକୁ ଜଣା ନାହିଁ । ସେହି ସମୟ ଚଢ଼େଇର ଗତି ସହିତ କିଛିଟା ସମତାଳ ରଖି ମୋର ଶିକ୍ଷା ଆଗେଇ ଚାଲିଥାଏ ଆଚାର୍ଯ୍ୟଙ୍କ ଶିକ୍ଷାୟତନରେ ରାଜକୁମାରମାନଙ୍କ ଗହଣରେ । କେତେ ଅଜ୍ଞାନର ଗଣ୍ଠି ମୋର ଖୋଲିଯାଉଥାଏ । ଏହି ଖୋଲିବାଟାରେ ପାଉଥାଏ ଅସୀମ ଆନନ୍ଦ । ମୋ' ପ୍ରତି ସେଠାରେ ହେଉଥିବା ବାଛ-ବିଚାର ଯାହା କିଛି ଆଘାତ କରୁଥାଏ ମୋ' ପ୍ରାଣତଳକୁ ବେଳେବେଳେ । ନ ହେଲେ ଶିଷ୍ୟଜୀବନ ପ୍ରାୟ ଥାଏ ସୁଖମୟ ଯେତେ ନିୟମ ଶୃଙ୍ଖଳାର ଶୃଙ୍ଖଳରେ ବାନ୍ଧିହୋଇ ରହିଥିଲେ ବି । ଯେତେ ନିଜ ପରିବାରଠାରୁ ଦୂରରେ ରହିଥିଲେ ବି ।

ଦିନକର କଥା ମନେପଡ଼େ । ତାହାରି ଯୋଗରୁ ହିଁ ଜୀବନର ଗତି ମୋର ନୂଆ ମୋଡ଼ ନେଲା । ସେହିଦିନ ମୋ' ଜୀବନକ୍ଷେତ୍ରରେ ଯେଉଁ ନବୀନ ବୀଜବପନ କରାଯାଇଥିଲା, ତାହା କ୍ରମେ ହେଲା ଅଙ୍କୁରିତ । ସେହି ଅଙ୍କୁର ବଢ଼ି ବଢ଼ି ଚାରାଗଛଟିଏ ହେଲା । ଚାରାରୁ ବଢ଼ି ବଢ଼ି ବଡ଼ ଗଛଟିଏ । ପୁଣି ଶାଖା-ପ୍ରଶାଖା ମେଲାଇ ଦେଇ ଫୁଲ-ଫଳ ଧରିଲା । ଶେଷରେ ମତେ ବିବଶ କରି ରଖିଦେଲା ଦୁର୍ଯ୍ୟୋଧନଙ୍କ ପକ୍ଷ ନେବାପାଇଁ । ପାଣ୍ଡବମାନଙ୍କ ଚିରବିରୋଧୀ ହେବାପାଇଁ । ନିଜ ହାତରେ ନିଜ ବଂଶର ଚେରଟିକୁ କାଟିବାର ଚିରପ୍ରଯତ୍ନ କରିବାପାଇଁ । ହାୟ ରେ ଦୁର୍ଭାଗା କର୍ଣ୍ଣ ! ଏଭଳି ଦୁର୍ଭାଗ୍ୟ ଯେମିତି ଆଉ କାହା ଜୀବନରେ ନ ଆସେ । ଏଭଳି ବିବଶତା ଯେମିତି ଆଉ କାହାକୁ ଗିଳି ନ ଦିଏ ଅଜଗର ସାପଭଳି ! ଏଭଳି ବଂଶମରା ଡାହୁକର ଅପକୀର୍ତ୍ତି ଯେମିତି ଆଉ କାହାରି ଭାଗ୍ୟରେ ନ ଜୁଟେ !

ସେଦିନ ଅନ୍ୟଦିନମାନଙ୍କ ଭଳି ଯଥାସମୟରେ ଆରମ୍ଭ ହୋଇଥିଲା ଶିକ୍ଷାଦାନ । ଆଚାର୍ଯ୍ୟ ବସିଥାନ୍ତି ଶୀର୍ଷାସନରେ । କୃପାଚାର୍ଯ୍ୟ ଆସି ନ ଥାନ୍ତି । ତାଙ୍କପାଇଁ ଉଦ୍ଦିଷ୍ଟ ଆସନଟି ଥାଏ ଶୂନ୍ୟ । ଦୁଇଜଣ ଆଚାର୍ଯ୍ୟ ଥିଲେ ହେଁ ଉଭୟ ଭିନ୍ନ ଭିନ୍ନ ସମୟରେ ଶିକ୍ଷାଦାନ କରୁଥାନ୍ତି । କିନ୍ତୁ ପ୍ରତ୍ୟହ ଶିକ୍ଷାଦାନ ଆରମ୍ଭ ହୁଏ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ଦ୍ୱାରା । ସାମଗ୍ରିକ ଶିକ୍ଷାଦାନର ଦାୟିତ୍ୱ ତାଙ୍କରି ଉପରେ । କୃପାଚାର୍ଯ୍ୟ କେବଳ ଜଣେ ସହାୟକ ମାତ୍ର । ରାଜକୁମାରମାନେ ବସିଥାନ୍ତି ନିର୍ଦ୍ଦିଷ୍ଟ ସ୍ଥାନରେ । ପରଦାର ଅନ୍ତରାଳରେ ବସିଥାଏ ମୁଁ ରାଜକୁମାରମାନଙ୍କଠାରୁ ଦୂରତା ରକ୍ଷାକରି । ଶିଷ୍ୟମାନେ ତାଙ୍କଦ୍ୱାରା ପ୍ରଦତ୍ତ ବିଦ୍ୟା ଠିକ୍ ଭାବରେ ଗ୍ରହଣ କରିଛନ୍ତି କି ନାହିଁ ତାହା ପରୀକ୍ଷା କରିବାପାଇଁ ଚାହୁଁଥିଲେ ଆଚାର୍ଯ୍ୟ । ସେ ରାଜକୁମାର ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟକରି ପଚାରିଲେ, ''ବତ୍ସ ଦୁର୍ଯ୍ୟୋଧନ ! ତୁମେ କହିପାରିବ ଶସ୍ତ୍ରଗୁଡ଼ିକ କେତେ ଭାଗରେ ବିଭକ୍ତ ?''

''ଚାରି ଭାଗରେ ।'' ଦୁର୍ଯ୍ୟୋଧନ ଉତ୍ତର ଦେଲେ ।

''ସେହି ଭାଗଗୁଡ଼ିକର ନାଁ କ'ଣ ?''

''ମୁକ୍ତ, ଅମୁକ୍ତ....'' ଏତିକି କହି ଅଟକିଗଲେ ଦୁର୍ଯ୍ୟୋଧନ । ଆଉ ଦୁଇଟି ଭାଗର ନାଁ କହିପାରିଲେ ନାହିଁ ।

''ବାବୁ ଅର୍ଜ୍ଜୁନ ! ତୁମେ କହ ତ ବାକି ଦୁଇଟି ଭାଗର ନାଁ କ'ଣ ?''

''ଯନ୍ତ୍ରମୁକ୍ତ ଓ ମୁକ୍ତାମୁକ୍ତ ।'' ଅର୍ଜୁନ ଉତ୍ତର ଦେଲେ ।

''ସେଗୁଡ଼ିକର ଲକ୍ଷଣ କ'ଣ ?''

''ଯେଉଁ ଅସ୍ତ୍ରକୁ ଯନ୍ତ୍ରରୁ ଛଡ଼ାଯାଏ ତାହା ଯନ୍ତ୍ରମୁକ୍ତ । ଯେମିତିକି ଶତଘ୍ନୀ ଆଦି ଅସ୍ତ୍ର । ମୁକ୍ତାମୁକ୍ତ ଅସ୍ତ୍ର ବିଷୟରେ କିଛି କହିପାରିବି ନାହିଁ ଗୁରୁଦେବ ।''

''ରାଜକୁମାରମାନଙ୍କ ମଧ୍ୟରେ କିଏ କହିପାରିବେ ?''

ସମସ୍ତେ ମୁଣ୍ଡ ତଳକୁ କରିଦେଇ ନୀରବ ରହିଲେ । ଭୀମସେନ ତ ସହଜରେ ଅସହିଷ୍ଣୁ ସ୍ୱଭାବର । ଆଉ ସବୁ କଥାରେ ତରତର । ସେ ଅଧୈର୍ଯ୍ୟ ହୋଇ ଉଠିପଡ଼ି କହିଲେ, ''ମୁଁ କହିପାରିବି ଗୁରୁଦେବ ।''

''କହ ତେବେ ।''

''ଯେଉଁ ଅସ୍ତ୍ର ମୁକ୍ତ ଓ ଅମୁକ୍ତ ଉଭୟ ତାହାର ନାଁ ମୁକ୍ତାମୁକ୍ତ ।''

''ଶବ୍ଦଟି ଅର୍ଥରୁ ତ ତାହାହିଁ ଜଣାପଡୁଛି । ଏ କଥା କହିବାଟା ସହଜ । ତୁମେ ସେଭଳି ଅସ୍ତ୍ରର ଉଦାହରଣ ଦେଖାଅ ।''

କିଛି ସମୟ ଚିନ୍ତା କଲେ ଭୀମସେନ । କପାଳରେ ଭଲ ଭାବରେ ଫୁଟିଉଠିଲା କୁଞ୍ଚିତ ରେଖା । କିନ୍ତୁ ବୁଦ୍ଧି ଦିଶିଲା ନାହିଁ କିଛି । କ୍ଷଣକ ପୂର୍ବରୁ ଦମ୍ଭରେ ଫୁଲିଉଠିଥିବା ତାଙ୍କ ମୁଖମଣ୍ଡଳଟି ମଉଳିଗଲା ଲାଜରେ । ସେ ବସିପଡ଼ିଲେ ମୁହଁ ତଳକୁ କରି ।

ଲକ୍ଷ୍ୟ କଲି ଦୁର୍ଯ୍ୟୋଧନଙ୍କ ମୁଖମଣ୍ଡଳକୁ । ଦୁଷ୍ଟ ହାସ୍ୟରେଖା ଅଧର ତଳେ । ନିଜ ଅସଫଳତା ଲାଗି ଯେତେ ଦୁଃଖ ଅଥବା ଲଜ୍ଜା ନାହିଁ ତାହାଠାରୁ ଅଧିକ ସୁଖ ତାଙ୍କ ଚିରବିରୋଧୀ ଭୀମସେନଙ୍କ ଅସଫଳତାରେ । ଭୀମସେନଙ୍କ ବ୍ୟର୍ଥତାର ପାଉଁଶ-ଗଦାରେ ଉଦ୍ଦଣ୍ଡ ନୃତ୍ୟ କରୁଥାନ୍ତି ଯେମିତି ! ଅନେକବାର ଲକ୍ଷ୍ୟ କରିଛି, ଭୀମସେନଙ୍କର ମଧ୍ୟ ତାଙ୍କପ୍ରତି ଅନୁରୂପ ବ୍ୟବହାର । ଖୁବ୍ ବିସ୍ମିତ ହୋଇଛି ଏଥିରେ । ଆମେ ପରା ଏଠି ପଢୁଛୁ ଋଗ୍‌ବେଦର ବାଣୀ – 'ଭ୍ରାତରୋ ମନୁଜାଃ ସର୍ବେ' । ସବୁ ମଣିଷ ଭାଇ ଭାଇ । ଅଥଚ ନିଜ ପରିବାରରେ ଏଠି ଭାଇ ଭାଇ ମଧ୍ୟରେ ଭଲ ସଂପର୍କ ରହୁ ନାହିଁ । ଏଭଳି ପୋଥିଗତ ବିଦ୍ୟା ପଢ଼ି କିବା ଲାଭ ? ବିଦ୍ୟା ଯଦି ଆମ ଅନୁଭୂତି ଓ ରୁଚିକୁ ମାର୍ଜିତ ନ କଲା, ତେବେ ସେଭଳି ବିଦ୍ୟା ଆମର କି କାମରେ ଲାଗିବ ? ପୁଣି ଭାବୁଥାଏ, ବିଦ୍ୟାର ତ କିଛି ଦୋଷ ନାହିଁ । ସବୁ ଦୋଷ ଆମର । ଆମେ ଶିଷ୍ୟମାନେ ଅଯୋଗ୍ୟ ଓ ଅପଦାର୍ଥ । ସେମାନଙ୍କ ବ୍ୟବହାରକୁ ତେଣୁ ପସନ୍ଦ କରୁ ନ ଥିଲି । ଅସଦାଚରଣ ବୋଲି ବିଚାରୁଥିଲି ।

ଆଚାର୍ଯ୍ୟ ଏତିକିବେଳେ ମତେ ଲକ୍ଷ୍ୟ କରି ଡାକିଲେ, ''ସୂତପୁତ୍ର କର୍ଣ୍ଣ !''

ଆଜ୍ଞା, ଗୁରୁଦେବ ।

''ତୁମେ ମୁକ୍ତାମୁକ୍ତ ଅସ୍ତ୍ରର ଉଦାହରଣ ଦେଇପାରିବ ?''

''ପାରିବି ପ୍ରଭୋ ।''

"କହ ।"

"ବିଷ୍ଣୁଙ୍କ ଚକ୍ର ଓ ଇନ୍ଦ୍ରଙ୍କ ବଜ୍ର ଆଦିକୁ ଉଦାହରଣସ୍ୱରୂପ ନିଆଯାଇପାରେ ।" ମୋର ବିନୟଭରା ଉତ୍ତର ।

"ସାଧୁ, ସୂତପୁତ୍ର କର୍ଣ୍ଣ, ସାଧୁ ! ତୁମେ ଠିକ୍ ଉତ୍ତର ଦେଇଛ ।"

ଅଜ୍ଞାତରେ ମୁଖମଣ୍ଡଳ ମୋର ହୋଇଉଠିଲା ପ୍ରସନ୍ନ । ପରୀକ୍ଷାରେ ରାଜକୁମାରମାନଙ୍କୁ ଯେ ବଳିଯାଇଛି, ସେଥିପାଇଁ ଗର୍ବ ବି ମନରେ ଆସୁଥିଲା । ସେହି ଗର୍ବର ପରିମାଣ ପୁଣି ବେଶି ଥିଲା ଆଚାର୍ଯ୍ୟଙ୍କ ପ୍ରିୟ ଶିଷ୍ୟ ଅର୍ଜୁନଙ୍କ ଅନୁତ୍ତରିତ ପ୍ରଶ୍ନଟିର ଉତ୍ତର ଦେଇପାରିଥିବାରୁ । ତାଙ୍କର ବିଶ୍ୱାସ ଯେ ଅର୍ଜୁନଙ୍କୁ ବଳିକରି ଧନୁର୍ବିଦ୍ୟାରେ ଆଉ କେହି ଦ୍ୱିତୀୟ ଧନୁର୍ଦ୍ଧର ବୀର ନାହାନ୍ତି ଏ ଜଗତରେ । ଅର୍ଜ୍ଜୁନ ଏକମାତ୍ର ଅନନ୍ୟ ବୀର । ଗର୍ବ ଆସୁଥିଲା ପୁଣି ଏଇଥିପାଇଁ ଯେ ମୁଁ ଆଜି ସ୍ୱୟଂ ଆଚାର୍ଯ୍ୟଙ୍କ ଆଗରେ ଅର୍ଜୁନର ଜଣେ ଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ହୋଇ ଠିଆହୋଇପାରିଲି । କେଜାଣି କେମିତି, ସେଦିନ ସୂତପୁତ୍ର ଡାକଟି ମତେ ସେତେ ବାଧି ନ ଥିଲା ।

ସେଦିନ ଆଉ ଗୋଟିଏ କଥା ଲକ୍ଷ୍ୟ କଲି । ସମସ୍ତଙ୍କଠାରୁ ବେଶି ଲାଜରେ ମରିଯାଉଥିଲେ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ । ତାଙ୍କ ମନରେ ଗର୍ବ ଥିଲା । ଅଭିମାନ ଥିଲା । ଗୁରୁଦେବଙ୍କ ପ୍ରିୟ ଶିଷ୍ୟ ସେ । ଧନୁର୍ବିଦ୍ୟାରେ ଖୁବ୍ ପାରଙ୍ଗମ ବୋଲି ଗୁରୁଦେବ ସଦା-ସର୍ବଦା ତାଙ୍କ ପାଇଁ ପ୍ରଶଂସାମୁଖର । ଅଥଚ ସେ ଆଜି ଠିକ୍ ଉତ୍ତର ଦେଇପାରିଲେ ନାହିଁ । ସୂତପୁତ୍ର ହୋଇ ମୁଁ ଠିକ୍ ଉତ୍ତର ଦେଇପାରିଲି । ଏହି ଯୋଗରୁ କି କ'ଣ, ମୁଁ ଲକ୍ଷ୍ୟ କରିଛି ତାଙ୍କର ମୋ'ପ୍ରତି କେମିତି ଗୋଟାଏ ବୈରଭାବ ରହିଆସିଲା । ମୋ' ନାଁ ଶୁଣିଲେ ନାହି ଡେଇଁଲା ତାଙ୍କର । ଧନୁର୍ବିଦ୍ୟା ଶିଖିବାର ତାଙ୍କ ନିଷ୍ଠା, ଉଦ୍ୟମ, ଯତ୍ନ ସବୁ କିଛି ବଢ଼ିଉଠିଲା ଆଶାତୀତ ଭାବରେ । ସେହିଦିନୁ ଆଉ ପଛାଇ ନାହାନ୍ତି ସେ । ଗୁରୁଦେବ ଯେତେବେଳେ ଯାହା ପ୍ରଶ୍ନ ପଚାରିଛନ୍ତି, ତାହାର ନିର୍ଭୁଲ ଉତ୍ତର ଦେଇଛନ୍ତି । ସତ କହୁଛି, ତାଙ୍କ ସହିତ ପ୍ରତିଯୋଗିତା କରି ମୁଁ ମଧ୍ୟ ଅଧିକରୁ ଅଧିକ ଧ୍ୟାନ ଦେଇଥିଲି ଧନୁର୍ବିଦ୍ୟା ପ୍ରତି ।

ମୁଁ ସିନା ତାଙ୍କ କଥା କହିଦେଲି । ତାଙ୍କ ଦୋଷ ବାଛିଦେଲି । ମୋ' ମନର କଥା ଏବେ କହୁଛି । ମୋର ଯେ ସତୀର୍ଥ ଭାବରେ ତାଙ୍କ ପ୍ରତି ଶ୍ରଦ୍ଧା-ସ୍ନେହ ରହିଥିଲା ଅତୁଟ, ସେ କଥା କହିଲେ ମିଥ୍ୟାବାଦୀ ହେବି । କେବେହେଲେ ତ ମିଛ କଥା କହି ନାହିଁ ଜୀବନରେ କେବଳ ଥରଟିଏ ଛଡ଼ା । ତାହା ପୁଣି ବିବଶ ଥିବା ଅବସ୍ଥାରେ । ଆଚାର୍ଯ୍ୟ ପରଶୁରାମଙ୍କଠାରୁ ବ୍ରହ୍ମାସ୍ତ୍ର ସଂପର୍କରେ ଜ୍ଞାନ ପାଇବା ଉଦ୍ଦେଶ୍ୟରେ ତାଙ୍କ ପାଦତଳେ ନିବେଦନ କଲାବେଳେ ତାଙ୍କୁ ମିଛରେ କହିଥିଲି ମୁଁ ବ୍ରାହ୍ମଣ ବୋଲି । ତାହାର ଫଳ ତ ଏବେ ଭୋଗୁଛି । ତାଙ୍କ ଅଭିଶାପ ଫଳରେ ଜୀବନର ସଂକଟପୂର୍ଣ୍ଣ ମୁହୂର୍ତ୍ତରେ ବ୍ରହ୍ମାସ୍ତ୍ର-ସମେତ ସକଳ ଦିବ୍ୟାସ୍ତ୍ରର ଜ୍ଞାନ ଭୁଲିଯାଇଛି । ତେଣୁ ଜୀବନର ଏଇ ଶେଷ ମୁହୂର୍ତ୍ତରେ ଆଉ ମିଛ କହିବି କାହିଁକି ? ପୁଣି ପାପ ଅରଜିବି କାହିଁକି ? ସତ କହୁଛି, ମୋର ବି ସେହିଦିନୁ ଅର୍ଜୁନଙ୍କ ପ୍ରତି ଶତ୍ରୁତା ରହିଗଲା । ତାଙ୍କୁ ମୋର ପରମ ପ୍ରତିଦ୍ୱନ୍ଦ୍ୱୀ ବୋଲି ବିଚାରିବାକୁ ଲାଗିଲି । ଆଜି ଜୀବନର

ଶେଷ ଦିବସରେ ସେଇ ପରମ ପ୍ରତିଦ୍ୱନ୍ଦ୍ୱୀଙ୍କ ସହିତ ଲଢ଼ିବାପାଇଁ ଆଗେଇ ଆସିଛି । ଅରଣ୍ୟରେ ଦୁଇଟି ବାଘ ରହିପାରନ୍ତି ନାହିଁ ଏକାଠି । ଏଣୁ ଏ ଜଗତରେ ମୁଁ ରହିବି କିମ୍ବା ଅର୍ଜୁନ ରହିବେ । ଆମ ଦୁହିଁଙ୍କ ମଧ୍ୟରୁ ଜଣଙ୍କୁ ନିଶ୍ଚୟ ବୀରଗତି ପାଇବାକୁ ହେବ । ଏଇ ପ୍ରତିଶ୍ରୁତି ଦେଇସାରିଛି ମୋ' ଜନ୍ମଦାତ୍ରୀ ଜନନୀଙ୍କୁ । ଯାହା ଜଣାପଡୁଛି, ମୋରି ହିଁ ବୀରଗତି ପାଇବା ଦୈବର ଲିଖନ । ଅର୍ଜୁନ ବଞ୍ଚିରହିବେ ହୁଏତ ।

ଆରେ, ପୁଣି ଏ କ'ଣ କରିବସିଲି ମୁଁ ? ଦ୍ରୋଣାଚାର୍ଯ୍ୟଙ୍କ ଶିକ୍ଷାୟତନରୁ କୁରୁକ୍ଷେତ୍ର ଯୁଦ୍ଧ । ଅତି ଦୀର୍ଘ ସମୟର ବ୍ୟବଧାନ । ଆତ୍ମକାହାଣୀ କହୁ କହୁ ହଠାତ୍ ଡେଇଁପଡ଼ିଲିଣି ଏତେ ଦୂରକୁ ! ଛାଡ଼ିଆସିଲିଣି ସୁଖ, ଦୁଃଖ, ଆଶା, ନିରାଶା, ବେଦନା, ଅଶ୍ରୁ, ଫୁଲ ଓ କଣ୍ଟାରେ ବିଜଡ଼ିତ ଦୀର୍ଘ ଦିନଗୁଡ଼ିକୁ । ତେଣୁ ଏବେ ପୁଣି ଫେରିଯାଉଛି ମୋ' ପୂର୍ବର କୁହା କଥାକୁ । ଘଟଣାବହୁଳ ଦ୍ରୋଣାଚାର୍ଯ୍ୟଙ୍କ ବିଦ୍ୟାୟତନକୁ ।

ଆଚାର୍ଯ୍ୟ ସେଦିନ ଖଡ୍‌ଗଚାଳନର ବିଭିନ୍ନ ଭଙ୍ଗୀ ବିଷୟରେ ସୂଚନା ଦେଲେ । ତାହା ପୂର୍ବରୁ ଅଶ୍ୱଶାସ୍ତ୍ର ଓ ରଥଚାଳନ ବିଷୟରେ ମଧ୍ୟ ସାମାନ୍ୟ କିଛି କହିଲେ । ସେ କହିଲେ, ''ଶିଷ୍ୟଗଣ ! ରାଜକୁମାରମାନଙ୍କର ସାରଥିବିଦ୍ୟା ଓ ଅଶ୍ୱବିଦ୍ୟା ବିଷୟରେ ବିଶାରଦ ଜ୍ଞାନର ଆବଶ୍ୟକତା ନାହିଁ । କିନ୍ତୁ କିଛିଟା ଜାଣିବା ଆବଶ୍ୟକ ।''

''କାହାର ତେବେ ଅଧିକ ଆବଶ୍ୟକ ?'' ଦୁଃଶାସନ ପଚାରିଲେ ।

''ସୂତକୁମାରମାନଙ୍କର । କାରଣ ଭବିଷ୍ୟତ୍‌ରେ ସେମାନେ ରଥଶାଳା ଓ ଅଶ୍ୱଶାଳାର ଦାୟିତ୍ୱ ନେବେ । ରଥ ଚଳାଇବେ ଯେମିତି କି ସୂତପୁତ୍ର କର୍ଣ୍ଣ ।''

ମତେ ତାଙ୍କ କଥାଟା ଭାରି ବାଧିଲା । ଆଚାର୍ଯ୍ୟ କ'ଣ ଚାହାନ୍ତି ମୁଁ ସାରଥି ହେବି ବୋଲି ? ଏଇଆ କ'ଣ ତାଙ୍କର ମୋ'ପ୍ରତି ସଦିଚ୍ଛା ଓ ଆଶୀର୍ବାଦ ? ମନ ମୋର କହୁଥାଏ, ନା, ନା । କଦାପି ନୁହେଁ । ମୁଁ ଅବଶ୍ୟ ସାରଥିବିଦ୍ୟା ଶିଖିଛି ଓ ଆଉ ଶିଖିବି ମଧ୍ୟ । କିନ୍ତୁ ଜୀବନର ଲକ୍ଷ୍ୟ ଜଣେ ବୀରପୁରୁଷ ହେବାପାଇଁ । ପୌରୁଷର ସିଂହ ମୋ' ଭିତରେ ରହି ରହି ଯେମିତି ମର୍ମଭେଦୀ ଗର୍ଜନ କରିଉଠୁଥିଲା – ହଁ, ପାରିବୁ କର୍ଣ୍ଣ, ତୁ ପାରିବୁ । ତୋ' ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବୁ । ଶାଳଗଛ ତୁ । ସାମାନ୍ୟ ଘାସ-ଲଟା ତତେ କି ବାଧା ବା ଦେଇପାରିବ ? ସେଇ ସବୁ ବାଧା-ବିଘ୍ନକୁ ଠେଲିଦେଇ ଉପରକୁ ଉଠିବୁ ତୁ । ଆକାଶକୁ ଛୁଇଁବୁ ।

ମୁଁ କିନ୍ତୁ ସବୁ ସହିଯାଇ ନୀରବ ରହିଥିଲି । ପ୍ରତିଟି ଶିରା-ଧମନୀକୁ ଫୁଲାଇଦେଇ ଯାହା ଉଷ୍ଣରକ୍ତର ଧାରା ଛୁଟାଇ ଚାଲିଥିଲି । ସେଇ ମନୋଭାବର ସାମାନ୍ୟ ଟିକିଏ ସୂଚନା ବି ମୁଖମଣ୍ଡଳରେ ଦେଖାଇ ନ ଥିଲି । ଶିକ୍ଷାୟତନର ଶିଷ୍ଟାଚାରର ଲଗାମ ମୋ' ମନ-ଘୋଡ଼ାକୁ ଟାଣି ଧରିଥିଲା ଖୁବ୍ ଜୋର୍‌ରେ ।

ଆଚାର୍ଯ୍ୟ ପୁଣି କହିଲେ, ''ଶିଷ୍ୟଗଣ ! ଆଜି ମୁଁ ତୁମ୍ଭମାନଙ୍କୁ ଖଡ୍‌ଗଚାଳନ ବିଷୟରେ ଉପଦେଶ ଦେବି । ଆଉ ବିଭିନ୍ନ ଚାଳନଶୈଳୀ ମଧ୍ୟ ଦେଖାଇବି । ତୁମ୍ଭେମାନେ ମନ-ଧ୍ୟାନ ଦେଇ ଶୁଣ ଓ ଦେଖ । ପରେ ପରେ ତୁମ୍ଭମାନଙ୍କଠାରୁ ଏ ବିଷୟରେ ପରୀକ୍ଷା ନେବି ।

ଆଚ୍ଛା, ତୁମ୍ଭମାନଙ୍କ ମଧ୍ୟରୁ ଖଡ୍‌ଗଚାଳନର ବିଭିନ୍ନ ଭଙ୍ଗୀ ବିଷୟରେ କେହି କିଛି ଜାଣିଛ କି ? ଅଥବା ଶୁଣିଛ କି ?''

ରାଜକୁମାରମାନେ ସମସ୍ତେ ମନା କଲେ କିଛି ଜାଣି ନାହାନ୍ତି ଓ ଶୁଣି ନାହାନ୍ତି ବୋଲି । ଏକା ମୁଇଁ ହିଁ ଥିଲି ନୀରବ । ମୋ' ନୀରବତା ଦେଖି ଆଚାର୍ଯ୍ୟ ପଚାରିଗଲେ ''ତୁମେ ନୀରବ ରହିଲ ଯେ ସୂତପୁତ୍ର କର୍ଣ୍ଣ । କ'ଣ କିଛି ଜାଣିଛ ନା ଶୁଣିଛ ?''

''କେବଳ ଶୁଣିଛି ମାତ୍ର । କିନ୍ତୁ ଜାଣି ନାହିଁ ।'' ମୋ' କଥା ଥିଲା ବିନୟଭରା ।

''କାହାଙ୍କ ପାଖରୁ ଶୁଣିଛ ?''

''ବାପାଙ୍କ ପାଖରୁ । ସେ ପୁଣି ତାହା ଶୁଣିଥିଲେ ଭୀଷ୍ମଦେବଙ୍କ ପାଖରୁ ।''

''କ'ଣ ଭୀଷ୍ମଙ୍କ ପାଖରୁ ? ବଡ଼ ଆଶ୍ଚର୍ଯ୍ୟ କଥା । ସେ କ'ଣ ଅଧିରଥଙ୍କୁ ଶିକ୍ଷା ଦେଇଥିଲେ ?'' ଆଚାର୍ଯ୍ୟଙ୍କ କୌତୂହଳ ବଢ଼ିଉଠୁଥାଏ ।

''ନାଇଁ ପ୍ରଭୋ ! ଶିକ୍ଷା ଦେଇ ନ ଥିଲେ । ମହାରାଜ ଧୃତରାଷ୍ଟ୍ରଙ୍କ କନ୍ୟାନିର୍ବାଚନ ଲାଗି ଭୀଷ୍ମଦେବ ଯେତେବେଳେ ଗାନ୍ଧାରରାଜ୍ୟକୁ ଯାଇଥିଲେ, ସେତେବେଳେ ବାପା ଥିଲେ ତାଙ୍କ ସାରଥି । ତାଙ୍କ ଖଡ୍‌ଗଚାଳନର କଳାକୌଶଳ ପାଇଁ ସେ ଥିଲେ ଜଗତ୍ ବିଖ୍ୟାତ । ବାଟରେ ଗଲାବେଳେ ବାପାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ଖଡ୍‌ଗଚାଳନର ବିଭିନ୍ନ କଳାକୌଶଳ ବିଷୟରେ କହିଥିଲେ । ବାପା କେବଳ କୌତୂହଳୀ ହୋଇ ହିଁ ପ୍ରଶ୍ନଟି ପଚାରିଥିଲେ ।''

''ଓ ! ଏଇ କଥା ତା'ହେଲେ । ତୁମେ ସେଗୁଡ଼ିକର ନାଁ କହିପାରିବ ?'' ଆଚାର୍ଯ୍ୟ ସହଜ କଣ୍ଠରେ କହିଲେ ଓ ମତେ ପ୍ରଶ୍ନ ପଚାରିଲେ ।

''ହଁ ପ୍ରଭୋ ! ଖଡ୍‌ଗଚାଳନର ତେରଟି ଭଙ୍ଗୀ ଅଛି । ସେଗୁଡ଼ିକ ହେଲା ଭ୍ରାନ୍ତ, ଉଦ୍‌ଭ୍ରାନ୍ତ, ଆବିଦ୍ଧ, ଆପ୍ଳୁତ, ପ୍ରସୃତ, ସୃତ, ପରିବୃତ୍ତ, ନିବୃତ୍ତ, ସଂପାତ, ସମୁଦୀର୍ଣ୍ଣ, ଭାରତ, କୌଶିକ ଓ ସାତ୍ୱତ ।''

''ବାଃ । ଚମତ୍କାର ।'' ଆଚାର୍ଯ୍ୟ ପ୍ରଶଂସାମୁଖର ହୋଇଉଠିଲେ ମୋ' ପାଇଁ । ଏଥରକ କାହିଁକି ସୂତପୁତ୍ର ଶବ୍ଦଟି ବ୍ୟବହାର କରି ନ ଥିଲେ । ଭାବୁଥାଏ, ବୋଧହୁଏ, ଆବେଗରେ ଏତକ କଥା କହିପକାଇଲେ ସେ ।

ସେ ତାହା ପରେ କହିଚାଲିଲେ, ''ତୁମ୍ଭେମାନେ ସୂତପୁତ୍ର କର୍ଣ୍ଣଙ୍କ ମୁହଁରୁ ତ ଶୁଣିଲ ତେରପ୍ରକାର ଖଡ୍‌ଗଚାଳନର କୌଶଳ କଥା । ତଥାପି ମୁଁ ଆଉଥରେ ତୁମ୍ଭମାନଙ୍କୁ କହୁଛି ।'' ଏହା କହି ସେ ବିଭିନ୍ନ କୌଶଳର ନାଁ ପୁଣି ଦୋହରାଇଲେ । ସେଗୁଡ଼ିକର ଟିକିନିଖି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ପ୍ରଦର୍ଶନ ମଧ୍ୟ କଲେ । ଆମେ ସମସ୍ତେ ଉତ୍କର୍ଣ୍ଣ ହୋଇ ଶୁଣିଲୁ ତାଙ୍କ କଥା । ଶୈଳୀପ୍ରଦର୍ଶନ ବେଳେ ବି ତାଙ୍କ ପ୍ରତି ଚାହିଁଥିଲୁ ମନ-ଧ୍ୟାନ ଦେଇ । ଦେଖିଲି, ପାଣ୍ଡବ ନକୁଳଙ୍କର ଏ ବିଷୟ ପ୍ରତି ବିଶେଷ ଆଗ୍ରହ । ବାସ୍ତବିକ, ଶିକ୍ଷା ଶେଷରେ ସେ ଖଡ୍‌ଗଯୁଦ୍ଧରେ ହୋଇପାରିଥିଲେ ଜଣେ ବିଶିଷ୍ଟ ଯୋଦ୍ଧା । ଅର୍ଜୁନଙ୍କର ମଧ୍ୟ

ଆଗ୍ରହ ଥିଲା । ତାଙ୍କୁ ମଧ୍ୟ ମିଳିଥିଲା କିଛିଟା ସିଦ୍ଧି । କିନ୍ତୁ ନକୁଳ ସିଦ୍ଧିରେ ବଳି ଯାଇଥିଲେ ତାଙ୍କୁ ।

ଆଚାର୍ଯ୍ୟଙ୍କ କଥା ଅନୁସାରେ 'ଭ୍ରାନ୍ତ' ଭଙ୍ଗୀରେ ଖଡ୍‌ଗକୁ ଘୂରାଯାଇଥାଏ ମଣ୍ଡଳାକାରରେ । 'ଉଦ୍‌ଭ୍ରାନ୍ତ' ଭଙ୍ଗୀରେ ଏହା କରାଯାଇଥାଏ ବାହୁକୁ ଉପରକୁ ଟେକି । 'ଆବିଦ୍ଧ' ଭଙ୍ଗୀରେ ନିଜ ଚାରିପଟେ ଘୂରାଯାଇଥାଏ ଏହାକୁ । ଅବଶ୍ୟ ଏହି ତିନିପ୍ରକାର ଭଙ୍ଗୀ ଉଦ୍ଦିଷ୍ଟ ନିଜକୁ ଶତ୍ରୁଆକ୍ରମଣରୁ ରକ୍ଷା କରିବାପାଇଁ । ଯଦି ଏହି ତିନୋଟିଯାକ ଭଙ୍ଗୀର ପ୍ରଦର୍ଶନ ଶତ୍ରୁକୁ ଆକ୍ରମଣଲାଗି କରାଗଲା, ତେବେ ସେହି ଭଙ୍ଗୀର ନାଁ ହେବ 'ଆପ୍ଳୁତ' । ଖଡ୍‌ଗର ଅଗ୍ରଭାଗରେ ଶତ୍ରୁର ଦେହକୁ ସ୍ପର୍ଶ କରିବାର ଯେଉଁ ଭଙ୍ଗୀ ତାହାର ନାଁ 'ପ୍ରସୃତ' । ଶତ୍ରୁର ଚାରିପଟେ ଘୂରୁଥିବା ଅବସ୍ଥାରେ ତା'କୁ ବାରମ୍ବାର ଆଘାତ କଲେ ସେହି ଭଙ୍ଗୀର ନାଁ 'ସୃତ' । ଶତ୍ରୁର ବାମ-ଦକ୍ଷିଣ ଦୁଇପଟେ ଖଡ୍‌ଗ ଚଳାଇବାର ଭଙ୍ଗୀର ନାଁ 'ପରିବୃତ୍ତ' । ଖଡ୍‌ଗ-ଯୁଦ୍ଧରେ ପଛକୁ ଘୁଞ୍ଚିଆସି ପୁନର୍ବାର ଆକ୍ରମଣ ପାଇଁ ପ୍ରସ୍ତୁତ ହେବାର ଯେଉଁ ଭଙ୍ଗୀ, ତାହାର ନାଁ 'ନିବୃତ୍ତ' । ଦୁଇ ଯୋଦ୍ଧା ସେତେବେଳେ ଖଡ୍‌ଗଦ୍ୱାରା ପରସ୍ପରକୁ ଆଘାତ-ପ୍ରତିଘାତ କରନ୍ତି । ସେତେବେଳେ ସେହି ଭଙ୍ଗୀର ନାଁ ହୁଏ 'ସଂପାତ' । ବୀର ଯେତେବେଳେ ଖଡ୍‌ଗ ଯୁଦ୍ଧରେ ନିଜର କିଛି ବିଶେଷତ୍ୱ ଦେଖାନ୍ତି, ସେତେବେଳେ ସେହି ଭଙ୍ଗୀକୁ କୁହାଯାଏ 'ସମୁଦୀର୍ଣ୍ଣ' । ଅଙ୍ଗ-ପ୍ରତ୍ୟଙ୍ଗରେ ଖଡ୍‌ଗକୁ ଭାଙ୍ଗିଦେବାର ଯେଉଁ ଭଙ୍ଗୀ ପ୍ରଦର୍ଶନ କରାଯାଏ, ତାହାର ନାଁ 'ଭାରତ' । ବିଚିତ୍ର ରୀତିରେ ଖଣ୍ଡା ଚଳାଇବାର କଳା-କୌଶଳର ନାଁ 'କୌଶିକ' । ନିଜକୁ ଭଲଭାବରେ ଢାଲ ପଛରେ ଛପାଇ ରଖି ଶତ୍ରୁ ଉପରେ ଆକ୍ରମଣ କଲେ ସେହି ଭଙ୍ଗୀର ନାଁ ହୁଏ 'ସାତ୍ୱତ' ।

ଶେଷରେ ଆଚାର୍ଯ୍ୟ ଜଣ ଜଣ କରି ସମସ୍ତଙ୍କର ପରୀକ୍ଷା ନେଲେ । ସମସ୍ତ ରାଜକୁମାରଙ୍କ ମଧ୍ୟରେ କେବଳ ଅର୍ଜୁନ ଓ ନକୁଳ ଏହି ପରୀକ୍ଷାରେ ହୋଇପାରିଥିଲେ ଉତ୍ତୀର୍ଣ୍ଣ । ଅଶ୍ୱତ୍ଥାମାଙ୍କୁ, ସାତ୍ୟକିଙ୍କୁ ଓ ମତେ ମଧ୍ୟ ମିଳିଥିଲା ସଫଳତା । ଅନ୍ୟମାନେ କେତୋଟି ମାତ୍ର ଶୈଳୀ ପ୍ରଦର୍ଶନ କରିପାରିଥିଲେ ।

ଆଚାର୍ଯ୍ୟ ଅସଫଳ ହୋଇଥିବା ଶିଷ୍ୟମାନଙ୍କୁ ଉତ୍ସାହ ଦେବାକୁ ଯାଇ ପୁଣି କହିଲେ, ''କିଛି ଧୈର୍ଯ୍ୟ କିମ୍ବା ଉତ୍ସାହ ହରାଅ ନାହିଁ । ବାରମ୍ବାର ଅଭ୍ୟାସ କର । ଆପେ ଆପେ ଶିଖିଯିବ ।''

ସେଦିନର ଶିକ୍ଷାଦାନ ସେତିକିରେ ଶେଷ ହେଲା । ଆମେ ଆଚାର୍ଯ୍ୟଙ୍କୁ ପ୍ରଣାମ କରି ତାଙ୍କଠାରୁ ବିଦାୟ ନେଲୁ ।

## ଷୋହଳ

ଏହା ଭିତରେ ଅନେକ କିଛି ଘଟଣା ଘଟିଯାଇଛି ଆଚାର୍ଯ୍ୟଙ୍କ ଶିକ୍ଷାୟତନରେ । ସେ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି ରାଜକୁମାରମାନଙ୍କୁ ଭଲ ଭାବରେ ଅସ୍ତ୍ରଶିକ୍ଷା

ଦେବାପାଇଁ । କୃପାଚାର୍ଯ୍ୟ ତାଙ୍କର ସହାୟକ । ଶିଷ୍ୟମାନେ ମଧ ନିଜ ସାମର୍ଥ୍ୟ ଅନୁସାରେ ଗ୍ରହଣ କରିଛନ୍ତି ଶିକ୍ଷା । ଖାଲି ତ ସାମର୍ଥ୍ୟ ନୁହେଁ ନିରତ ଉଦ୍ୟମ ଓ ନିଷ୍ଠା ଆବଶ୍ୟକ ଉତ୍ତମ ଶିକ୍ଷାପାଇଁ । ତାହାଠାରୁ ବଳିକରି ଆଗ୍ରହ । ତେଣୁ ଆଚାର୍ଯ୍ୟ ସମସ୍ତଙ୍କୁ ସମାନ ଶିକ୍ଷା ଦେବା ସତ୍ତ୍ୱେ ରାଜକୁମାରମାନେ ପୃଥକ୍ ପୃଥକ୍ କ୍ଷେତ୍ରରେ ଲଭିଛନ୍ତି ପାରଦର୍ଶିତା । ଆଉ ମୋ' କଥା । ମୁଁ ତ ଶିକ୍ଷାୟତନରେ ବି ହୋଇଆସିଛି ଅବହେଳା ଓ ଉପେକ୍ଷାର ପାତ୍ର । ମତେ ଜଣେ ବଡ଼ ଶସ୍ତ୍ରଜ୍ଞାନୀ ଭାବରେ ଗଢ଼ି ତୋଳିବାର ଆଗ୍ରହ ଆଚାର୍ଯ୍ୟଙ୍କର ନାହିଁ କହିଲେ ଚଳେ । ଏଇ ପକ୍ଷପାତିତା ଦେଖାଇବାରେ ସେ ଧର୍ମ କରିଛନ୍ତି କି ପାପ କରିଛନ୍ତି ତାହା ମୁଁ କହୁ ନାହିଁ; କାରଣ ସେ ବିଷୟରେ ମୋର କିଛିଟା ମନ୍ତବ୍ୟ ଦେବା ଅଧର୍ମ । ଯେତେହେଲେ ଗୁରୁ ସେ । ମୋ'ପାଇଁ ଜ୍ଞାନର ଦୀପ ଜଳାଇଛନ୍ତି । ତାଙ୍କ ନିକଟରେ ଚିର ଋଣୀ ମୁଁ । ସେ ତେଣୁ ମତେ ଯାହା ଯାହା କହିଛନ୍ତି, ସବୁ କିଛି ଆଗ୍ରହର ସହିତ ଗ୍ରହଣ କରିଛି । ସବୁ ପ୍ରକାର ଅସ୍ତ୍ରରେ ପାରଦର୍ଶିତା ଲାଭପାଇଁ ନିରନ୍ତର ଉଦ୍ୟମ ଓ ଅଭ୍ୟାସ କରିଛି । ଏପରିକି ସାରଥିବିଦ୍ୟାକୁ ବି ଛାଡ଼ି ନାହିଁ । ସିଦ୍ଧି ପାଇଛି କି ନାହିଁ ସେ କଥା ତ ନିଜେ ନିଜ ମୁହଁରେ କରିପାରିବି ନାହିଁ । କାରଣ ଆତ୍ମପ୍ରଶଂସାଠାରୁ ଅଧିକ ନିନ୍ଦନୀୟ ଦୋଷ ଆଉ କିଛି ନାହିଁ । ସେ କଥା ଅନ୍ୟମାନେ କହିବେ । ଜଗତ କହିବ । ଆଗାମୀ ଦିନର ଇତିହାସ କହିବ । ଖାଲି ଏତିକି ଚାହେ, ଯାହାଙ୍କ ଉତ୍ସାହ ଓ ଉଦ୍ଦୀପନା ମତେ ଏତେ ଦୂର ଆଗେଇଆଣିଛି, ମୋ' ହୃଦୟରେ ଜଗାଇଛି ବଡ଼ ହେବାର ଆକାଂକ୍ଷା, ବୀର ହେବାର ଉଦଗ୍ର ଅଭୀପ୍ସା, ସେଇ ମୋ' ଆଦ୍ୟଗୁରୁ ସୂର୍ଯ୍ୟଦେବଙ୍କ ଆଶୀର୍ବାଦବାରି ଯେମିତି ମୋ' ମୁଣ୍ଡରେ ବରଷୁଥାଉ ଚିରଦିନ ! ତା'ହେଲେ ଶତ ବାଧାବିଘ୍ନକୁ ଏଡ଼ାଇଦେଇ ଚାଲିଯିବ । ଜୀବନର ମରୁରେ ନିର୍ଝରିଣୀ ଛୁଟାଇବି !

ହଁ, ରାଜକୁମାରମାନଙ୍କ ପୃଥକ୍ ପୃଥକ୍ କ୍ଷେତ୍ରରେ ପାରଦର୍ଶିତା ପାଇଥିବା କଥା କହୁଥିଲି ପରା । ଯୁଧିଷ୍ଠିର ଶୂଳ ନିକ୍ଷେପ କରିବାରେ ହୋଇଉଠିଥିଲେ ନିପୁଣ । ତାହାଛଡ଼ା ବିଶାରଦ ଜ୍ଞାନ ଅର୍ଜିଥିଲେ ଯୁଦ୍ଧନୀତିରେ ଓ ଧର୍ମନୀତିରେ । ତାଙ୍କ ନୀତିବତ୍ତା ଦେଖି ଲୋକେ ତାଙ୍କୁ 'ଧର୍ମପୁତ୍ର', ଧର୍ମରାଜ ଆଦି ନାମରେ ଡାକୁଥିଲେ । ଅସ୍ତ୍ରପ୍ରୟୋଗରେ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ଧରି ରଖିବା ତାଙ୍କର ଥିଲା ଆଉ ଏକ ବିଶିଷ୍ଟ ଗୁଣ । ତାହାଦ୍ୱାରା ଯୁଧିଷ୍ଠିର ନାମଟିକୁ ସାର୍ଥକ କରୁଥିଲେ ସେ । ଗଦାଯୁଦ୍ଧ ଓ ମଲ୍ଲଯୁଦ୍ଧରେ ନିପୁଣତା ଅର୍ଜିଥିଲେ ଭୀମସେନ । ବଡ଼ କ୍ରୋଧୀ ଥିଲେ ସେ । ଅଧୈର୍ଯ୍ୟଭାବ ବି ଧରିରଖିଥିଲେ । ଶତ୍ରୁକୁ କ୍ଷମା ଦେବାଟା ଯେମିତି ନ ଥିଲା ତାଙ୍କ ଜାତକରେ । ପ୍ରତିହିଂସାବୋଧ ତାଙ୍କର ପ୍ରଶମିତ ହେଉ ନ ଥିଲା କେବେହେଲେ । ଅର୍ଜୁନ ଧନୁର୍ବିଦ୍ୟାରେ ପାଇଥିଲେ ନିପୁଣତା । ସମସ୍ତ ପ୍ରକାର ଶସ୍ତ୍ରବିଦ୍ୟା ଥିଲା ତାଙ୍କର ଆୟତ୍ତାଧୀନ । ଗୁରୁଭକ୍ତି ବି ଅନନ୍ୟା-ପ୍ରତ୍ୟହ ରାତ୍ରିଭୋଜନ ପରେ ଗୁରୁଙ୍କ ପାଦସେବା କରନ୍ତି । ଗୁରୁ ନିଜ ପୁତ୍ର ଅଶ୍ୱତ୍ଥାମାଙ୍କୁ ଜଣେ ପରମ ବୀର କରିବାକୁ ଚାହୁଥିଲେ ହେଁ ତାଙ୍କ ଅଜ୍ଞାତରେ ଅଧିକ ଆଶୀର୍ବାଦ ଚାଲିଯାଉଥାଏ ଅର୍ଜୁନଙ୍କ ପ୍ରତି । ଫଳରେ ଅର୍ଜୁନ ଅଶ୍ୱତ୍ଥାମାଙ୍କୁ ବି ବଳିଯାଇଥାନ୍ତି ଧନୁର୍ବିଦ୍ୟାରେ । ଆଗରୁ କହିଛି, ନକୁଳ ନିପୁଣତା ପାଇଥିଲେ ଖଡ଼୍ଗ ବିଦ୍ୟାରେ ।

ସହଦେବଙ୍କ ନିପୁଣତା ଚକ୍ରଚାଳନରେ । ଦୁର୍ଯ୍ୟୋଧନଙ୍କ ନିପୁଣତା ଗଦାଯୁଦ୍ଧରେ । ତାଙ୍କର ସୁଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ହୋଇ ଗଢ଼ିଉଠୁଥାନ୍ତି ଭୀମସେନ । ଦୁଃଶାସନଙ୍କ ନିପୁଣତା ଥାଏ ଗଦା ଓ ମଲ୍ଲଯୁଦ୍ଧରେ ।

ନିଭୃତରେ ଆଚାର୍ଯ୍ୟଙ୍କଠାରୁ ଗୁପ୍ତ ଅସ୍ତ୍ରବିଦ୍ୟା ଶିଖିବାର ସୁଯୋଗ ପାଇଥାନ୍ତି କେବଳ ଦୁଇ ଜଣ । ତାଙ୍କ ପୁତ୍ର ଅଶ୍ୱତ୍ଥାମା ଓ ପ୍ରିୟ ଶିଷ୍ୟ ଅର୍ଜୁନ । ପ୍ରକୃତରେ ଆଚାର୍ଯ୍ୟଙ୍କ ଇଚ୍ଛା ଥିଲା ନିଜ ପୁତ୍ର ଅଶ୍ୱତ୍ଥାମାଙ୍କୁ ଏକାକୀ ନିଭୃତରେ କିଛିଟା ଅଧିକ ଗୁପ୍ତ ବିଦ୍ୟା ଶିକ୍ଷା ଦେବାପାଇଁ । କିନ୍ତୁ ଏକ ବିଚିତ୍ର ପରିସ୍ଥିତିରେ ପଡ଼ି ଅର୍ଜୁନଙ୍କୁ ବି ତାହା ଶିଖାଇବା ନିମିତ୍ତ ବାଧ୍ୟ ହୋଇଥିଲେ । ହୋଇଥିଲେ ବିବଶ । ବଡ଼ କୌତୁକମୟ ସେଇ ପରିସ୍ଥିତିଟି । ନ କହି ରହିପାରୁ ନାହିଁ । ଏଇଥିରୁ ଜାଣିହେବ ପୌରୁଷ କ'ଣ କରି ନ ପାରେ ? ଇଚ୍ଛା ନ ଥିଲେ ବି ପୌରୁଷବାନ୍ ଶିଷ୍ୟଙ୍କୁ ଆଚାର୍ଯ୍ୟ କିପରି ବାଧହୋଇ ନିର୍ଦ୍ଦିଷ୍ଟ ଶିକ୍ଷା ଦେଇଥାନ୍ତି । ବାସ୍ତବିକ୍, ଅର୍ଜୁନ ଯାହା କିଛି ଅର୍ଜିଥିଲେ, ତାହା ନିଜ ପୌରୁଷବଳରେ । ନିଜ ବୁଦ୍ଧିବଳରେ । ବଳବିକ୍ରମ ବଳରେ । କାହାରି କୃପାବଳରେ କିନ୍ତୁ ନୁହେଁ ।

ସେହି ପୌରୁଷର ହିଁ ସେବା କରିଆସିଛି ମୁଁ ସାରାଜୀବନ ଧରି । ତାହାରି ଦୀପାଲୋକରେ ମୋର ନୀଚକୁଳରେ ଜନ୍ମର ଅନ୍ଧକାରମୟ ଭବନଟିକୁ କରିଆସିଛି ଆଲୋକିତ । ମୁଁ ତେଣୁ କାହିଁକି ବା ବଡ଼ ହେବି ନାହିଁ ? କାହିଁକି ସିଦ୍ଧି ପାଇବି ନାହିଁ ? ପୌରୁଷଜନିତ ସିଦ୍ଧି ପାଇବା ତ ମୋର ଜନ୍ମଗତ ଅଧିକାର । କିଏ ବା ତାହାକୁ ମୋ'ଠାରୁ ଛଡ଼ାଇ ନେଇପାରିବ ? ମନ ମୋର ଯେମିତି ବାରମ୍ବାର ଚେତାଇ ଦେଉଥାଏ – କଦାପି ନୁହେଁ, କଦାପି ନୁହେଁ । ତୁ କର୍ଣ୍ଣ ଜୀବନରେ ସିଦ୍ଧି ପାଇବୁ ହିଁ ପାଇବୁ । ଏହା ତୋ'ର ଜନ୍ମଜ ଅଧିକାର ।

ହଁ, ଅର୍ଜୁନଙ୍କ ନିଭୃତରେ ଗୁପ୍ତ ବିଦ୍ୟା ଶିଖିବା କଥା କହୁଥିଲି ପରା । ଏବେ ଫେରିଯାଉଛି ସେଠାକୁ ।

ଭାବିଚନ୍ତି ଏକ ବିଚିତ୍ର ବ୍ୟବସ୍ଥା କରିଥିଲେ ଆଚାର୍ଯ୍ୟ, ଯେମିତି ଅଶ୍ୱତ୍ଥାମା ତାଙ୍କଠାରୁ ନିଭୃତରେ କିଛି ଗୁପ୍ତ ବିଦ୍ୟା ଶିକ୍ଷା କରିପାରିବେ । କିନ୍ତୁ ଅର୍ଜୁନଙ୍କ ଆଗରେ ଧରାପଡ଼ିଗଲା କଥାଟା । ପ୍ରତ୍ୟହ ସମସ୍ତ ଶିଷ୍ୟଙ୍କୁ ଗଙ୍ଗାଜଳ ଆଣି ଶିକ୍ଷାୟତନରେ ଥିବା ମାଟି ପାତ୍ରରେ ଭରିବାପାଇଁ ଆଦେଶ ଦିଅନ୍ତି । ସମସ୍ତେ ଛୋଟ ମୁହଁ ଥିବା କମଣ୍ଡଳୁ ଧରିଥାନ୍ତି । ଅଥଚ ଅଶ୍ୱତ୍ଥାମା ଧରିଥାନ୍ତି ବଡ଼ ମୁହଁ ଥିବା ପାତ୍ରଟିଏ । ସେ ଶୀଘ୍ର ଶୀଘ୍ର ଜଳ ଆଣି ଭରିଦିଅନ୍ତି ନିର୍ଦ୍ଦିଷ୍ଟ ପାତ୍ରରେ; କିନ୍ତୁ ଅନ୍ୟମାନଙ୍କୁ ସମୟ ଲାଗେ । ଏଇତକ ସମୟ ପାଇ ଆଚାର୍ଯ୍ୟ ଅଶ୍ୱତ୍ଥାମାଙ୍କୁ ଶିକ୍ଷା ଦିଅନ୍ତି କିଛି ଗୁପ୍ତ ବିଦ୍ୟା । ଅର୍ଜୁନ ଏହା ଜାଣିପାରି ବାରୁଣାସ୍ତ୍ରରେ ଶୀଘ୍ର କମଣ୍ଡଳୁକୁ ଭରିଦିଅନ୍ତି ଗଙ୍ଗାଜଳରେ । ଆଉ ଆଚାର୍ଯ୍ୟଙ୍କ ପାଖକୁ ଫେରିଆସନ୍ତି ଅଶ୍ୱତ୍ଥାମାଙ୍କ ସହିତ । ସେତେବେଳେ ଆଚାର୍ଯ୍ୟ ବିବଶ ହୋଇ ଦୁହିଁଙ୍କୁ ଏକତ୍ର ଶିଖାନ୍ତି ଅସ୍ତ୍ରବିଦ୍ୟା ଅତ୍ୟନ୍ତ ଗୋପନୀୟତା ସହିତ । ଫଳରେ ଅର୍ଜୁନ ତ କେବଳ ଅଶ୍ୱତ୍ଥାମାଙ୍କ ସମକକ୍ଷ ହୋଇଉଠନ୍ତି ନାହିଁ, ବରଂ ତାଙ୍କୁ ବଳିଯାଆନ୍ତି ଅନେକ କ୍ଷେତ୍ରରେ । ମୋର ଏ ବିଷୟରେ ଅବଶ୍ୟ ଜ୍ଞାନ ନ ଥିଲା ବ୍ୟକ୍ତିଗତ ଭାବରେ । କାରଣ ଆଚାର୍ଯ୍ୟ ମତେ ପଠାଉ

ନ ଥିଲେ ଗଙ୍ଗାଜଳ ଆଣିବାପାଇଁ । ଏକମାତ୍ର କାରଣ ଯେ ମୋ' ଜନ୍ମ ସୂତକୁଳରେ । ଏଇ କଥା ପରେ ମୁଁ ଶୁଣିଥିଲି ନିଜେ ଗୁରୁପୁତ୍ର ଅଶ୍ୱତ୍‌ଥାମାଙ୍କ ମୁହଁରୁ । ତେଣୁ ଏହାକୁ ଅବିଶ୍ୱାସ କରିବାର ନ ଥିଲା କିଛି କାରଣ ।

ଆଚାର୍ଯ୍ୟଙ୍କ ଏ ପକ୍ଷପାତୀ ଆଚରଣକୁ ସମର୍ଥନ କରି ନ ଥିଲି । ଅଶ୍ୱତ୍‌ଥାମା ବି କରି ନ ଥିଲେ ସମର୍ଥନ । କିନ୍ତୁ ବିଦ୍ୟାୟତନର ଶୃଙ୍ଖଳା ଓ ଗୁରୁଶିଷ୍ୟ-ସଂପର୍କର ପରମ୍ପରାକୁ ଜଗି ଆମେ ରହିଥିଲୁ ନୀରବ ।

ଆଉ ଗୋଟିଏ କ୍ଷେତ୍ରରେ ଥିବା ଅର୍ଜୁନଙ୍କ ବୁଦ୍ଧି ଓ ଉଦ୍ୟମକୁ ପ୍ରଶଂସା ନ କରି ରହିପାରୁ ନାହିଁ । ବାସ୍ତବିକ୍ ମୁଁ ମଧ୍ୟ ସେଥିରୁ ପାଇଥିଲି ଯଥେଷ୍ଟ ଅନୁପ୍ରେରଣା । ତାହାଦ୍ୱାରା ହୋଇଥିଲି ଉପକୃତ । ସେହି ଉପାୟଟିକୁ ଶିଡ଼ି ଭଳି ବ୍ୟବହାର କରି ପାଇଥିଲି ସିଦ୍ଧି । ବିଶେଷକରି ଶବ୍ଦବେଧୀ ବାଣ ପ୍ରୟୋଗ କରିବାର ସିଦ୍ଧି ।

ଘଟଣାଟି ଏମିତି ଘଟେ । ଦିନକର କଥା । ସମୟ ରାତ୍ରି । ଦୀପାଲୋକରେ ଭୋଜନରତ ଅର୍ଜୁନ । ହଠାତ୍ ଦମକାଏ ପବନ ଖୁବ୍ ଜୋର୍‌ରେ ବହି ଲିଭାଇଦିଏ ଦୀପଟିକୁ । ପାଚକ ଆଉ ଦ୍ୱିତୀୟ ଦୀପଟିଏ ଆଣେନା । ଆଚାର୍ଯ୍ୟ ମନା କରିଥାନ୍ତି ଆଣିବାପାଇଁ । ଏଇ ମନା କରିବାରେ ତାଙ୍କର ଏକ ମହତ୍ ଉଦ୍ଦେଶ୍ୟ ଥାଏ ନିହିତ । ଅର୍ଜୁନ ଅନ୍ଧାରରେ ଖାଇପାରୁଛନ୍ତି କି ନାହିଁ ପରୀକ୍ଷା କରିବାପାଇଁ ଚାହୁଥାନ୍ତି ସେ । ଅର୍ଜୁନ କିନ୍ତୁ ଅଭ୍ୟାସ ହେତୁ ଭୋଜନ ଶେଷ କରିଦିଅନ୍ତି ସେଇ ଅନ୍ଧାରରେ । ଭୋଜନ ଶେଷ ହେବା ପରେ ଆଚାର୍ଯ୍ୟ ଆସି ପଚାରନ୍ତି, ''ବତ୍ସ ଅର୍ଜୁନ ! ଭୋଜନ ସାରିଦେଲ ତ ?''

''ହଁ, ଆଚାର୍ଯ୍ୟବର ।''

''କେମିତି ସାରିଲ ? ମୁଁ ଶୁଣିଲି ପବନରେ କୁଆଡ଼େ ଦୀପ ଲିଭି ଯାଇଥିଲା ।''

''ଅଭ୍ୟାସ । କେବଳ ଅଭ୍ୟାସ ବଳରେ ଗୁରୁଦେବ ।''

''ଅନ୍ଧାରରେ କ'ଣ ଖାଦ୍ୟ ଦେଖିପାରିଲ ?''

''ହଁ, ଆଚାର୍ଯ୍ୟବର ! ତାହା ମଧ୍ୟ ଅଭ୍ୟାସବଳରେ ।''

''ଠିକ୍ ସେମିତି ଅଭ୍ୟାସ କରି ତୁମେ ଅନ୍ଧାରରେ ବି ଲକ୍ଷ୍ୟଭେଦ କରିବାପାଇଁ ଶିଖ । ତା' ହେଲେ ଶବ୍ଦବେଧୀ ବାଣ ପ୍ରୟୋଗରେ ସିଦ୍ଧି ପାଇପାରିବ ।''

''କରିବି ପ୍ରଭୋ !'' ଅର୍ଜୁନଙ୍କ ବିନୟଭରା ଉତ୍ତର । ତାଙ୍କ ଆଖି ଖୋଲିଯାଏ ଆଚାର୍ଯ୍ୟଙ୍କ ବାଣୀରେ । ସ୍ଥିର କରିନିଅନ୍ତି ନିଜ କର୍ତ୍ତବ୍ୟ ।

ସେହିଦିନୁ ସେ ଲାଗିଯାଆନ୍ତି ରାତ୍ରିର ଅନ୍ଧକାରରେ ବାଣାଭ୍ୟାସ କରିବାରେ । ମୁଁ ମଧ୍ୟ ତାଙ୍କ ଦେଖାଦେଖି କରିବସେ ଏଇ ଅଭ୍ୟାସ । ଶିକ୍ଷାୟତନର ସମସ୍ତ ଶିଷ୍ୟ ଯେତେବେଳେ ଥାଆନ୍ତି ସୁପ୍ତ, ଆମେ ଦୁହେଁ ସେତେବେଳେ ଥାଉ ଜାଗ୍ରତ । ଦୀର୍ଘ ସମୟ ଧରି କରୁଥାଉ ବାଣାଭ୍ୟାସ । ଗୋଟିଏ ମାସ ମଧ୍ୟରେ ସରିଗଲା ମୋ' ବାଣାଭ୍ୟାସ । ଅନ୍ଧାରରେ ଲକ୍ଷ୍ୟସ୍ଥଳକୁ ଦେଖିପାଇବାର ସିଦ୍ଧି ପାଇଗଲି । ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ହାସଲ କରି ଶବ୍ଦବେଧୀ ବାଣ ମାରିବାର ସାମର୍ଥ୍ୟ । ଏଥିପାଇଁ ଉପଯୋଗ କରାଯାଇଥାଏ

ଜିହ୍ମ-ବାଣ ଯାହା ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ଆଘାତ କରିଥାଏ ଲକ୍ଷ୍ୟସ୍ଥଳରେ । ଅର୍ଜୁନଙ୍କୁ ମଧ୍ୟ ମିଳିଯାଏ ଏଇ ସିଦ୍ଧି । କିନ୍ତୁ ଟିକିଏ ବିଳମ୍ବରେ । ଦୁଇ ମାସ ପରେ । ଆଚାର୍ଯ୍ୟଙ୍କ ଶିଷ୍ୟମାନଙ୍କ ମଧ୍ୟରେ ମୁଁ, ଅର୍ଜୁନ ଓ ଅଶ୍ୱତ୍‌ଥାମା – ଆମେ ତିନିହେଁ ପାଇଥିଲୁ ଏଭଳି ସିଦ୍ଧି । ଅନ୍ୟ କୌଣସି ଶିଷ୍ୟ ଏହାର ଅଧିକାରୀ ହୋଇପାରି ନ ଥିଲେ । ବାସ୍ତବିକ୍, ଆମ ତିନିଜଣଙ୍କୁ ଛାଡ଼ିଦେଲେ ହସ୍ତିନାପୁରରେ କେବଳ ଆଉ ଦୁଇ ଜଣ ହିଁ ଥିଲେ ଏହାର ଅଧିକାରୀ – ଦ୍ରୋଣାଚାର୍ଯ୍ୟ ନିଜେ ଓ ମହାବୀର ଭୀଷ୍ମଦେବ । ଆଉ ତୃତୀୟ ଅଧିକାରୀ କେହି ନ ଥିଲେ ।

ଆଉ ଦିନକର କଥା । ସକାଳର ପ୍ରାର୍ଥନା କର୍ମ ସମାପ୍ତ । ଶିକ୍ଷାଦାନ ଆରମ୍ଭ ହେବାକୁ ଯାଉଥାଏ । ଆଚାର୍ଯ୍ୟ ପ୍ରସ୍ତୁତ ହେଉଥାନ୍ତି ସେଥିପାଇଁ । ଏତିକିବେଳେ ଶିକ୍ଷାୟତନର ଦ୍ୱାରରେ ଆସି ଠିଆହେଲେ ଜଣେ କିଶୋର । କଳା ମେଘ ଭଳି ଦେହର ରଙ୍ଗ । ତ୍ରିପଣ୍ଡ କଳା । ବ୍ୟାଘ୍ରଚର୍ମର ବସ୍ତ୍ର । ନାମକୁ ମାତ୍ର ବସ୍ତ୍ର । ଶରୀରରେ ଅନେକ କିଛି ଭାଗକୁ ଆବୃତ କରିବାରେ ଅକ୍ଷମ । ହାତରେ ଧନୁ ଓ ବାଣ । ମୁଣ୍ଡରେ ଖଜୁରିପତ୍ରରେ ତିଆରି ପଗଡ଼ି । ଧୋବ ଫରଫର ବଗପର ଖଞ୍ଜାଯାଇଛି ତହିଁରେ । ଖୁବ୍ ବଳିଷ୍ଠ ଦେହ ଓ ଓସାରିଆ ଛାତି । କାନ୍ଧରେ ଗୋଟିଏପଟେ ଝୁଲୁଛି ବ୍ୟାଘ୍ରଚର୍ମର ଉର୍ଦ୍ଧ୍ୱବାସ । ଅନ୍ୟପଟେ ଖଜୁରିପଟିରେ ତିଆରି ତୂଣୀର । ବଗପର ଲାଗିଥିବା ବାଣଗୁଡ଼ିକର କାଣ୍ଡ-ମୂଳଟିମାନ ବାହାରକୁ ଦିଶୁଥିବା ଅବସ୍ଥାରେ ଚିକ୍ ଚିକ୍ କରୁଥାଏ । ଛାତିର ସାମାନ୍ୟ କିଛି ଅଂଶକୁ ଯାହା ବା ଆବୃତ କରୁଥାଏ । ବେକରେ ସରି ସରି ହୋଇ ଅନେକ ସରି ପୋହଳାର ମାଳା । କଳା ଦେହଟିକୁ ଭାରି ମାନୁଥାଏ । ଖାଲି ପାଦ । ଜୋତା କିମ୍ବା କଠୋଉ କିଛି ନ ଥାଏ । ଆଚାର୍ଯ୍ୟଙ୍କୁ ସମ୍ମାନ ଦେଖାଇବାକୁ ଯାଇ ସେ ତା'ର ଧନୁ, ବାଣ, ତୂଣୀର ଓ ପଗଡ଼ି ଆଦିକୁ ରଖିଦିଏ ବାହାରେ । ପରେ ତାଙ୍କ ଅନୁମତି ନେଇ ପ୍ରବେଶ କରେ ବିଦ୍ୟାୟତନ ଭିତରେ । ପ୍ରବେଶ କରିବା ସଙ୍ଗେ ସଙ୍ଗେ ଭୂମିଷ୍ଠ ପ୍ରଣାମ କରେ ଆଚାର୍ଯ୍ୟଙ୍କୁ । ଅତି ଭକ୍ତିଭରା ପ୍ରଣାମ । ଆଖିର ଜଳରେ ସତେଯେମିତି ଧୋଇଦିଏ ତାଙ୍କ ପାଦ ଦୁଇଟିକୁ ।

"ଉଠ, ଉଠ, ବାଳକ, ଉଠ । କହ କିଏ ତୁମେ ?"

"ମୁଁ ଜଣେ ନିଷାଦ । ନାଁ ମୋର ଏକଲବ୍ୟ ।" ମୁହଁରେ ତା'ର ସରଳତାର ଅଭିପ୍ରକାଶ । ସତେ ଯେମିତି ଏଇ ସରଳତା ତା'ର ସହଜାତ ପ୍ରବୃତ୍ତି !

"ବାଃ । ଭଲ ନାଁଟିଏ ତ । ଆଚ୍ଛା, ତୁମ ରାଜ୍ୟର ଖବର ସବୁ ଭଲ ତ ?" ଆଚାର୍ଯ୍ୟଙ୍କର ସୌଜନ୍ୟଭରା ପ୍ରଶ୍ନ ।

"ଆଚାର୍ଯ୍ୟଙ୍କ କୃପାରୁ ସବୁ ଭଲ ପ୍ରଭୋ ! ପଶୁ-ପକ୍ଷୀମାନଙ୍କ ମାଂସ, ଫଳମୂଳ ସବୁ କିଛି ମିଳୁଛି ସୁବିଧାରେ ଓ ଯାହାକୁ ଯେତେ । କାହାରି କିଛି ଅସୁବିଧା ନାହିଁ ।"

"ଆଚ୍ଛା, କ'ଣ ପାଇଁ ଆସିଛ ?"

"ଛୋଟ ମୁହଁରେ ବଡ଼ କଥା କହିବାକୁ ସାହସ ଜୁଟୁ ନାହିଁ । ଆଚାର୍ଯ୍ୟ ଅନୁମତି ଦେଲେ କହିବି ।" ହାତଯୋଡ଼ି କହିଲା ଏକଲବ୍ୟ ।

''ଆରେ, ଏଥିରେ ଅନୁମତି ଦେବାର କ'ଣ ଅଛି ? ଏଠି ସମସ୍ତେ ହୃଦୟ ଖୋଲି କଥା କହନ୍ତି । କିଛି ହିଁ ଲୁଚାନ୍ତି ନାହିଁ । ତୁମ ମନର କଥା ବିନା ବାଧାରେ କହିପାର ।''

ଆମେ ସମସ୍ତେ ଉଦ୍‌ଗ୍ରୀବ ହୋଇ ଚାହିଁରହିଲୁ ତା' ପ୍ରତି । କ'ଣ କହୁଛି ଜାଣିବାପାଇଁ ଆଗ୍ରହ । ତା'ର ଆଚାର, ବ୍ୟବହାର, ରୂପ, ପୋଷାକପତ୍ର ଆଦି ସବୁ କିଛି ଆମକୁ ଲାଗୁଥାଏ କୌତୁକପୂର୍ଣ୍ଣ ।

''ହେ ପ୍ରଭୋ ! ମୋର ଅସ୍ତ୍ରଶିକ୍ଷା କରିବାର ଭାରି ଇଚ୍ଛା । ଆଚାର୍ଯ୍ୟ ଦୟା କଲେ ମୋ' ଭାଗ୍ୟ ଖୋଲନ୍ତା ।''

କ୍ଷଣକ ପୂର୍ବରୁ ଆଚାର୍ଯ୍ୟଙ୍କ ମୁଖମଣ୍ଡଳରେ ଥିବା ସହଜ ସରଳ ଭଙ୍ଗୀ ବଦଳିଗଲା । ତାହା କ୍ରମେ ଗମ୍ଭୀର ହୋଇଉଠିଲା । ଏଭଳି ପ୍ରାର୍ଥନା ବୋଧହୁଏ ଆଶା କରୁ ନ ଥିଲେ ସେ । କ୍ରୋଧ ଓ ଘୃଣାରେ ନାକ ଟେକିଲେ । କହିଲେ, ''ତୁମ ଆସ୍ପର୍ଦ୍ଧା ତ କମ୍ ନୁହେଁ ଦେଖୁଛି ବାଳକ ! ସାମାନ୍ୟ ନିଷାଦ ବାଳକ ହୋଇ ମୋର ଶିଷ୍ୟ ହେବାର ଇଚ୍ଛା ! ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛ । ଏ ଇଚ୍ଛା ତୁମର ପୂରିବ ନାହିଁ କେବେହେଲେ । ଫେରିଯାଅ, ଶୀଘ୍ର ଫେରିଯାଅ ମୋ' ପାଖରୁ ।

''ମତେ ଦୟା କରନ୍ତୁ ଗୁରୁଦେବ । ଶସ୍ତ୍ର ଶିକ୍ଷାପାଇଁ ମୋର ଭାରି ଇଚ୍ଛା । ତାହା ପୁଣି ଆପଣଙ୍କଠାରୁ ।'' ଅଧିକରୁ ଅଧିକ ବିନୟୀ ହୋଇ କହିଲା ସେ । ମୁଖମଣ୍ଡଳରେ ତା'ର ଉଦଗ୍ର ଉତ୍କଣ୍ଠା ।

''ଅସମ୍ଭବ ଅସମ୍ଭବ । ଏହା ହୋଇପାରିବ ନାହିଁ କଦାପି । ନିଷାଦକୁଳରେ ଜନ୍ମି ହସ୍ତିନାପୁରର ରାଜକୁମାରମାନଙ୍କ ସହିତ ଏକାଠି ଶସ୍ତ୍ରଶିକ୍ଷା କେମିତି କରିବ ? ଏ ସାହସ ତୁମକୁ ଦେଲା କିଏ ? କିଏ ବା ଦେଲା ଉତ୍ସାହ ?''

''କେହି ନୁହେଁ ଆଚାର୍ଯ୍ୟ, ମୋ' ମନ । କେବଳ ମୋ' ମନ । ମନ ମୋର ଚାହେଁ ଆପଣଙ୍କ ଶିଷ୍ୟ ହେବାପାଇଁ ।''

''ଖାଲି ମନ ଚାହିଁଲେ କ'ଣ ହେଲା ? ସେଥିପାଇଁ ଯୋଗ୍ୟତା ଦରକାର ।''

''ମୁଁ କ'ଣ ଯୋଗ୍ୟ ନୁହେଁ ପ୍ରଭୋ ?''

''ନା, କଦାପି ନୁହେଁ ।''

'ତା'ହେଲେ ମନରେ ମୋର ଏଇ ଚିନ୍ତା ଆସିଲା କାହିଁକି ?'' ଏକଲବ୍ୟର କଣ୍ଠ ଥର ଥର ହୋଇ ଉଠୁଥିଲା ଅଭିମାନରେ । ସତେ ଯେମିତି କି ଏକ ବେଦନାଭରା ଆର୍ତ୍ତ ଚିତ୍କାର ଥରାଇ ଦେଉଥିଲା ତାଂର ବୁକୁ-ତଳକୁ ! ମୁଖଭଙ୍ଗୀରୁ ହିଁ ଜଣା ପଡୁଥିଲା ଛାତିର ବ୍ୟଥା କେତେ ଗଭୀର ! କେତେ ନିବିଡ଼ !

''ସେ କଥା ତୁମେ ଜାଣିଥିବ ଅବୋଧ ବାଳକ ।''

''ମୁଁ କିନ୍ତୁ ଆପଣଙ୍କୁ ମନେ ମନେ ଗୁରୁ ବୋଲି ମାନିନେଇଛି ପ୍ରଭୋ । ମତେ ଗ୍ରହଣ କରନ୍ତୁ ଶିଷ୍ୟ ଭାବରେ । ଶହେ ବାର ହଜାର ବାର ପ୍ରାର୍ଥନା କରୁଛି ଆପଣଙ୍କୁ ।'' ଏହା କହି ଏକଲବ୍ୟ ପୁଣି ଥରେ ଭୂମିଷ୍ଠ ପ୍ରଣାମ କଲା ଆଚାର୍ଯ୍ୟଙ୍କୁ । ଝର ଝର ହୋଇ

ବହିଯାଉଥାଏ ଆଖିରୁ ଲୁହଧାର। । ମତେ କିନ୍ତୁ ଲାଗୁଥାଏ, ଏଇ ଲୁହର ମରମଥର। ଦହକ ଆଚାର୍ଯ୍ୟଙ୍କ ହୃଦୟ-ମନକୁ ସ୍ପର୍ଶ କରୁ ନ ଥାଏ ଯେମିତି ! କି ନିଷ୍ଠୁର ଯେ ତାଙ୍କ ଛାତି !!

''ଏକତରଫା ଭାବରେ କେହି କେବେ ଗୁରୁ କିମ୍ବା ଶିଷ୍ୟ ହୋଇ ନ ଥାନ୍ତି । ମୁଁ ତ ତୁମକୁ ଶିଷ୍ୟରୂପେ ଗ୍ରହଣ କରି ନାହିଁ । ତୁମେ ମୋର ଶିଷ୍ୟ ହେବ କିପରି ?'' ପୂର୍ବ ଭଳି ଆଚାର୍ଯ୍ୟଙ୍କ ଉପେକ୍ଷାଭରା ବାଣୀ । ତାଚ୍ଛଲ୍ୟରେ ସିକ୍ତ । କ୍ରୋଧ ଓ ଘୃଣାରେ ଜର୍ଜର ।

ଏକଲବ୍ୟ ତଳୁ ଉଠି ପୁଣି ହାତଯୋଡ଼ି କହିଲା, ''ମୁଁ କିନ୍ତୁ ଆଚାର୍ଯ୍ୟଙ୍କ ଶିଷ୍ୟ ହୋଇସାରିଛି ମନେ ମନେ । ସେ ମୋ' ଆଚାର୍ଯ୍ୟ । ଆଉ ଦ୍ୱିତୀୟ ଆଚାର୍ଯ୍ୟ ମୋର କେହି ନାହାନ୍ତି । କେହି ହେବେ ନାହିଁ ମଧ୍ୟ । ମୁଁ ତାଙ୍କଠାରୁ ହିଁ ଅସ୍ତ୍ରଶିକ୍ଷା କରିବି । ଦିନ ଆସିବ, ଯେତେବେଳେ ଆଚାର୍ଯ୍ୟଙ୍କର ଜଣେ ଯୋଗ୍ୟ ଶିଷ୍ୟର ପରିଚୟ ଦେଇପାରିବି । ଏବେ ଫେରିଯାଉଛି ।'' ଏକଲବ୍ୟର ଅଭିମାନଭରା କଣ୍ଠ ସ୍ୱରରେ ଭରପୂର ଦାମ୍ଭିକତା ଓ ଆତ୍ମବିଶ୍ୱାସ ଯଦିଓ ବିନୟର ପରିଶୀଳିତ । ସେ ଆଚାର୍ଯ୍ୟଙ୍କଠାରୁ ଶେଷ ପ୍ରଣାମ କରି ବିଦାୟ ନେଲା ।

''ହଉ ଯାଅ । ଶୀଘ୍ର ଯାଅ ଏଠୁ ।'' ଆଚାର୍ଯ୍ୟଙ୍କ ଗୁରୁଗମ୍ଭୀର ଆଦେଶ । ଏକଲବ୍ୟ ଚାଲିଯିବା ପରେ ପୁଣି କହିଲେ, ''ବଡ଼ ଅଦ୍ଭୁତ ଏ ବାଳକ । ଆଶ୍ଚର୍ଯ୍ୟ ୟାର ଗତିବିଧି । ସାହସ ବି କମ୍ ନୁହେଁ । ହୁଁ !''

ତାହା ପରେ ସେ ତାଙ୍କର ଦୈନନ୍ଦିନ ଶିକ୍ଷାଦାନରେ ଲାଗିଗଲେ ନିବିଡ଼ ଭାବରେ । ଭୁଲିଗଲେ କେତୋଟି ମାତ୍ର ମୁହୂର୍ତ୍ତ ତଳେ ତାଙ୍କ ପାଦତଳେ ଏକ ଅବହେଳିତ ଆତ୍ମାର ପକ୍ଷୀ ମୁଣ୍ଡ ପିଟି କାନ୍ଦୁଥିଲା ବୋଲି ।

ଏଇ ଘଟଣାଟି ବେଶ୍ କିଛି ସମୟ ଧରି ଆନ୍ଦୋଳିତ କରିଥିଲା ମୋ' ହୃଦୟ-ମନକୁ । ଆଚାର୍ଯ୍ୟ ଏକଲବ୍ୟକୁ ଏଭଳି ଭାବରେ ଯେଉଁ ପ୍ରତ୍ୟାଖ୍ୟାନ କଲେ ତାହା କ'ଣ ଠିକ୍ କଥା ? କେବଳ ନିଷାଦକୁଳରେ ଜନ୍ମ ହୋଇଛି ବୋଲି କ'ଣ ତା'ର ରାଜକୁମାରମାନଙ୍କ ସହିତ ଅସ୍ତ୍ରଶିକ୍ଷା ପାଇବାର ଅଧିକାର ନାହିଁ ? ସେହି ଆଚାର୍ଯ୍ୟ ତ ଆମକୁ ଅନେକବାର କହିଛନ୍ତି, ସବୁ ମଣିଷ ଭାଇ ଭାଇ । ଏହା ବେଦର ବାଣୀ । ସମସ୍ତଙ୍କ ସମାନତା ଦର୍ଶାଇବାକୁ ଯାଇ ସେ ଅନେକବାର ଗୋଟିଏ ବୈଦିକ ମନ୍ତ୍ରର ଉଦାହରଣ ଦେଇଛନ୍ତି – 'ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ' । ମନ୍ତ୍ରଦ୍ରଷ୍ଟା ଋଷି ମାନବତାର କି ଅପୂର୍ବ ଅଭିବ୍ୟକ୍ତି ଭରିଦେଇଛନ୍ତି ଏଥିରେ ! ହେ ମଣିଷମାନେ ! ତୁମ୍ଭେମାନେ ସମସ୍ତେ ସମାନ ମନ୍ତ୍ର ଉଚ୍ଚାରଣ କର । ତା' ହେଲେ କେଉଁ ବିଚାରରେ ଏକଲବ୍ୟ ଶସ୍ତ୍ରବିଦ୍ୟା ଶିକ୍ଷା କରିବାପାଇଁ ରାଜକୁମାରମାନଙ୍କଠାରୁ ନ୍ୟୂନ ? ତା'ର ଅଛି ନିଷ୍ଠା । ଅଛି ଅଭୀପ୍ସା । ଆଉ ଅଛି ବି ଉଦ୍ୟମ । ଜଣେ ଉତ୍ତମ ଶିଷ୍ୟ ହେବା ନିମିତ୍ତ ଏହିସବୁ ଗୁଣ କ'ଣ ଯଥେଷ୍ଟ ନୁହେଁ ? ତା'ହେଲେ କଥା ଓ କାର୍ଯ୍ୟରେ ଆଚାର୍ଯ୍ୟଙ୍କର କାହିଁକି ଏଭଳି ପ୍ରଭେଦ ?

ମୁଁ ସିନା ବିବଶ ଥାଇ ପ୍ରତିବାଦ କରିପାରୁ ନ ଥିଲି । କିନ୍ତୁ ମନେ ମନେ ଏହାର ଘୋର ପ୍ରତିବାଦ କରୁଥିଲି । ଏଇ ପ୍ରତିବାଦ କିପରି ଥିଲା ନୀରବ-ମୁଖର ତାହା ମୁଁ ଏକା ହିଁ ବୁଝିଥିଲି ।

ଫେରିଗଲାବେଳେ ଯେଉଁ ବ୍ୟର୍ଥତାର ଦୀର୍ଘଶ୍ୱାସ ଛାଡ଼ିଥିଲା ଏକଲବ୍ୟ ତା'ର ଉଷ୍ମ ସ୍ପର୍ଶ ଯେମିତି ଚକମକ କରି ଫୁଟାଇ ଦେଉଥାଏ ମୋର ପ୍ରତିଟି ଶୋଣିତ-ବିନ୍ଦୁକୁ । ରକ୍ତ-ନଳୀ ଫାଟିଯିବା ଭଳି ଲାଗୁଥାଏ । ସେଇ ବ୍ୟର୍ଥତାର ମଝିରେ ବି ତା' ମୁହଁରେ ଝଲି ଉଠୁଥିଲା ଆତ୍ମବିଶ୍ୱାସର ଏକ ଅଭିନବ ଦୀପ୍ତି । ମୋର ମନେ ହେଉଥିଲା, ସେ ନିଶ୍ଚୟ ଦିନେ ନା ଦିନେ ଦେଖାଇଦେବ ନିଜ ପୌରୁଷର ଚମତ୍କାରିତା । ନୀଚକୁଳର ପାଚେରିଟିକୁ ଭାଙ୍ଗିଦେଇ ଠିଆ ହୋଇପାରିବ ଜଣେ ବୀରପୁରୁଷ ଭାବରେ ।

ଘଟଣାଟି ସିନା ଘଟିଗଲା କେତୋଟି ମାତ୍ର ମୁହୂର୍ତ୍ତପାଇଁ । କିନ୍ତୁ ତାହା ଚିରଦିନପାଇଁ ମୋ' ସ୍ମୃତିର ଫଳକରେ ଟାଣିଦେଲା ଏକ ସ୍ୱର୍ଣ୍ଣାଙ୍କିତ ରେଖା । ଭାବିଲି, ନିଜ ପୌରୁଷର ଗର୍ବ-ଅଭିମାନକୁ ଜାବୁଡ଼ି ଧରିଥିବା ଆଉ ଜଣେ ଲୋକ ଅଛି ଏ ସଂସାରରେ । ମୋ' ଭାଇ ଏକଲବ୍ୟ – ନିଷାଦପୁତ୍ର ଏକଲବ୍ୟ । ମୁଁ ତେଣୁ ଏକାକୀ ନୁହେଁ । ସମାଜର ଆମ ପ୍ରତି ଯେଉଁ ଅବିଚାର, ଯେଉଁ ପାତର-ଅନ୍ତର, ତାହାର ପ୍ରତିଶୋଧ ନିଶ୍ଚେ ଆମେ ନେବୁ ପୌରୁଷବଳରେ... ହଁ ନିଶ୍ଚୟ ନେବୁ...

## ସତର

ଆଚାର୍ଯ୍ୟଙ୍କ ଶିକ୍ଷାୟତନରେ ଦିନଗୁଡ଼ିକ ମୋର ବିତିଯାଉଥାଏ ଖୁବ୍ ଖୁସିଖୁସିରେ । ସୂର୍ଯ୍ୟ କେତେବେଳେ ଉଦୟ ହୁଅନ୍ତି ଓ କେତେବେଳେ ପୁଣି ଅସ୍ତ ଯାଆନ୍ତି ଜଣାପଡୁ ନ ଥାଏ ଜମା । ଗଙ୍ଗାନଦୀର ସ୍ୱଚ୍ଛନିର୍ମଳ ଧାରା ଭଳି ମୋ'ପାଇଁ ସମୟର ଧାରା ବହି ଯାଉଥାଏ କଳ କଳ, ଛଳ ଛଳ ହୋଇ ଅବାରିତ ଗତିରେ । ଗଙ୍ଗାଜଳରେ ବି ବେଳେ ବେଳେ ଭାସିଆସେ ମଇଳାଆବର୍ଜନା । ଅଥବା କାହାର ଗଳିତ ଶବ । ତଥାପି ତାହାର ପବିତ୍ରତା ନଷ୍ଟ ହୁଏନା । ମାନ୍ୟତା ଊଣା ହୁଏନା । ମୋ' ବିଦ୍ୟାର୍ଥୀ ଜୀବନର ଧାରାକୁ ଗୋଟିଏ ମାତ୍ର ପୂତିଗନ୍ଧ କରି ଦେଉଥାଏ ବିଷାକ୍ତ । କରି ଦେଉଥାଏ ବ୍ୟଥାରେ ଅଧୀର । ତାହା ହେଲା, ମୋ' ପ୍ରତି ଥିବା ଦୁଇ ଆଚାର୍ଯ୍ୟଙ୍କ ଅବହେଳାଭାବ । ନିରନ୍ତର ସୂତପୁତ୍ର କର୍ଣ୍ଣ ବୋଲି ଡାକ । ପଦେ ପଦେ ଦୁହେଁ ସୂଚାଇ ଦେଉଥାନ୍ତି ମୋ' ନୀଚକୁଳର ଜନ୍ମକୁ । ତାହା ସତ୍ତ୍ୱେ ସତୀର୍ଥମାନଙ୍କର ମୋ' ପ୍ରତି ବ୍ୟବହାର ବିଦ୍ୟାର୍ଥୀ ଜୀବନକୁ କରିଦେଉଥାଏ ମଧୁଜର୍ଜର । ଏତେ ଅବହେଳା ସତ୍ତ୍ୱେ ତାହାହିଁ ମତେ ଦେଉଥାଏ ଆଶା-ଆଶ୍ୱାସନା । ଆମ ସତୀର୍ଥମାନଙ୍କ ମଧ୍ୟରେ ସେଭଳି କିଛି ଭେଦଭାବ ନ ଥାଏ । ସମସ୍ତେ ମତେ କର୍ଣ୍ଣ ବୋଲି ଡାକୁଥାନ୍ତି । ପାଣ୍ଡବ ଯୁଧିଷ୍ଠିରଙ୍କ କଥା ତ ପୃଥକ୍ । ଅତ୍ୟନ୍ତ ସାଧୁ ପ୍ରକୃତିର ସେ । ମାଛିକୁ 'ମ' ବୋଲି କହିବେ ନାହିଁ । ସେ ଡାକନ୍ତି ଭାଇ କର୍ଣ୍ଣ ବୋଲି । ଆଉ ବେଳେ ବେଳେ ସୁକର୍ଣ୍ଣ ବୋଲି । ବାରମ୍ବାର ତାଙ୍କୁ କହେ, ମୋ' ନାଁ କେବଳ କର୍ଣ୍ଣ ବୋଲି । କିନ୍ତୁ ସୁକର୍ଣ୍ଣ ଡାକଟା ସେ ଯେମିତି ଜମା ଛାଡ଼ିପାରନ୍ତି ନାହିଁ । କଥା, କାର୍ଯ୍ୟ, ଚିନ୍ତା, ବଚନ ସବୁ କିଛି ତାଙ୍କର ସୁନ୍ଦର ଓ ସାଧୁ । ଅତ୍ୟନ୍ତ ସ୍ୱାଭାବିକ । ଏକମାତ୍ର ସେଇ ହିଁ ଡାକନ୍ତି କୌରବ ରାଜକୁମାର ଦୁର୍ଯ୍ୟୋଧନଙ୍କୁ ସୁଯୋଧନ ବୋଲି । ସାଧୁତା ଓ ସୁନ୍ଦରତାର ସତେଯେମିତି ଏକ ମୂର୍ତ୍ତିମାନ୍ ବିଗ୍ରହ !

ଆଉ ରାଜକୁମାର ଦୁର୍ଯ୍ୟୋଧନ । ସହଜରେ ତ ଅଭିମାନୀ ସେ । କାହାର ବଡ଼ପଣିଆକୁ ସହିପାରନ୍ତିନି । ସର୍ବଦା ଦେଖାନ୍ତି ନିଜ ବଡ଼ପଣିଆ । ମୁଁତ୍ୱର ଅଜଗର ସାପଟି ତାଙ୍କୁ ଗ୍ରାସ କରିଦେଇଥାଏ ଆମୂଳଚୂଳ । ସେ କିନ୍ତୁ ମତେ ଦିନେହେଲେ ଡାକି ନାହାନ୍ତି ସୂତପୁତ୍ର ବୋଲି । ଅଥବା ଚାହିଁ ନାହାନ୍ତି ହେୟ ଚକ୍ଷୁରେ । ସେ ମଧ ଡାକି ଆସିଛନ୍ତି ଅନ୍ୟମାନଙ୍କ ଭଳି କର୍ଣ୍ଣ ବୋଲି ।

ଲକ୍ଷ୍ୟ କରିଛି ପାଣ୍ଡବମାନଙ୍କ ପ୍ରତି ତାଙ୍କର ପ୍ରଚଣ୍ଡ ଶତ୍ରୁତା । ଖୁବ୍ ଘୃଣାଭାବ । ଏଭଳି ମନୋଭାବ ଚରିନ୍ତନ ଯେମିତି । କୌଣସି ନା କୌଣସି କାରଣ ଦେଖି ପ୍ରାୟ ପ୍ରତ୍ୟହ କଳି କରିବସନ୍ତି ସେମାନଙ୍କ ସହିତ । ବିଶେଷକରି ଭୀମସେନଙ୍କ ପ୍ରତି ଶତ୍ରୁତାର ମାତ୍ରା ଟିକିଏ ଅଧିକ । ଏଭଳି କୌଣସି ଦିନ ନାହିଁ ଯେଉଁଦିନ ଦୁହିଁଙ୍କ ମଧ୍ୟରେ ଖେଳ ଗଦାଯୁଦ୍ଧ ହୁଏନା । ହୁଏତ ଗଦାଯୁଦ୍ଧ ହୋଇପାରେ କିମ୍ବା ମଲ୍ଲଯୁଦ୍ଧ ହୋଇପାରେ । ଦୁହେଁ ହୁଅନ୍ତି କ୍ଷତବିକ୍ଷତ । ଶେଷରେ ଜ୍ୟେଷ୍ଠପାଣ୍ଡବ ଯୁଧିଷ୍ଠିର ଆସି ଶାନ୍ତ କରାନ୍ତି ଦୁଇ ପକ୍ଷକୁ । ମୁଁ ମଧ ବେଳେ ବେଳେ ସକ୍ରିୟ ଅଂଶ ଗ୍ରହଣ କରିଥାଏ ଏଇ ଶାନ୍ତି ପ୍ରକ୍ରିୟାରେ । ଆବଶ୍ୟକ ହେଲେ ବଳପ୍ରୟୋଗ ବି କରିଥାଏ । ଭୀମସେନଙ୍କର ଆଉ କାହାଙ୍କୁ ଡର ନାହିଁ ମୋ' ଛଡ଼ା । ମୋ' ହାତର ଜାବ ଥରେ ପଡ଼ିଗଲେ ସେଥିରୁ ମୁକୁଳି ପାରନ୍ତିନି । ଆଗରୁ କହିଛି, ଧନୁର୍ବିଦ୍ୟାରେ ବି ମୋର ସେମିତି ଅନ୍ୟମାନଙ୍କ ସହିତ ସ୍ପର୍ଦ୍ଧାଭାବ । ବିଶେଷକରି ଅର୍ଜୁନଙ୍କ ସହିତ ।

ବେଳେବେଳେ ମନକୁ ଛୁଏଁ ଏଇ ଚିନ୍ତା । କର୍ଣ୍ଣ ଓ ଅର୍ଜୁନ । ଏ ଦୁହିଁଙ୍କ ମଧ୍ୟରେ କିଏ ଅଧିକ ବଳବାନ୍ ? କିଏ ଅଧିକ ବୀର ? କିଏ ଧନୁର୍ବିଦ୍ୟାରେ ଅଧିକ ଜ୍ଞାନୀ । ଏହାର ଉତ୍ତର କିନ୍ତୁ ଶତଚେଷ୍ଟା କଲେ ବି ମିଳେନା, ଠିକ୍ ଯେମିତି ପିତା-ମାତାଙ୍କ ମଧ ବରିଷ୍ଠତା କନିଷ୍ଠତାର ପ୍ରଶ୍ନ ଉଠାଇଲେ ତାହାର ଉତ୍ତର ମିଳେନା ।

ଲକ୍ଷ୍ୟ କରିଛି, ରାଜକୁମାର ଦୁର୍ଯ୍ୟୋଧନ ଯେମିତି ସର୍ବଦା ମୋର ନିକଟତର ହେବାପାଇଁ ଚେଷ୍ଟିତ । ମତେ ନିଜର କରିନେବାପାଇଁ ଉଦ୍ୟମରତ । ତାଙ୍କରି ଯୋଗରୁ କି କ'ଣ, କୌଣସି କୌରବକୁମାର ମୋ' ପ୍ରତି କିଛିହେଲେ କରି ନାହାନ୍ତି ଦୁର୍ବ୍ୟବହାର ।'ମୁଁ ପାଣ୍ଡବମାନଙ୍କର ଜଣେ ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ଭାବରେ ହୁଏ ଭାବୁଛନ୍ତି ଦୁର୍ଯ୍ୟୋଧନ । ସେଥିପାଇଁ ହୁଏତ ମତେ ହାତମୁଠାରେ ରଖିବାକୁ ଅଛନ୍ତି ସତତ ଚେଷ୍ଟିତ । କିନ୍ତୁ ଆତ୍ମାଭିମାନରୁ କି କ'ଣ ଦିନେହେଲେ ମୋ' ଆଡ଼କୁ ମିତ୍ରତାର ହାତ ବଢ଼ାଇ ନାହାନ୍ତି । କେମିତି ବା ବଢ଼ାଇବେ ? ସେ ଜ୍ୟେଷ୍ଠ କୌରବ ରାଜକୁମାର । ଆଉ ମୁଁ ସୂତପୁତ୍ର ।

କିନ୍ତୁ ଦିନେ ଏଭଳି ପରିସ୍ଥିତି ହେଲା, ଯାହା ଫଳରେ ସେ ଆପେ ଆପେ ମୋ' ପ୍ରତି ମିତ୍ରତାର ହାତ ବଢ଼ାଇଲେ । ସେତେବେଳେ ଭାବିଲି, କ୍ଷତି କ'ଣ ରାଜକୁମାରଙ୍କ ମିତ୍ର ହେବାରେ ? ବରଂ ଲାଭ ଅଛି । ନୀଚ ବଂଶରେ ଜନ୍ମିଛି । ପବନ ସିନା ବଣମଲ୍ଲୀର ବାସନାକୁ ଚହଟାଇଦିଏ ଦିଗ-ବିଦିଗରେ । ପବନ ନ ଥିଲେ ତ ସେ ଝୁରି ଝୁରି ଝରିଯାଉଥାନ୍ତା ଅଗନା-ଅଗନି ବଣରେ ଆପଣାର ବାସନାକୁ ଆପେ ଆଘ୍ରାଣ କରି । ଯଦି ରାଜକୁମାର ଦୁର୍ଯ୍ୟୋଧନ ମିତ୍ର ହିସାବରେ ମୋ'ପାଇଁ ପବନର ସେଇତକ କାମ କରିଦେବେ, ତା'ହେଲେ ତ ମୋ' ଗୌରବ ବଢ଼ିବ । ଜଗତର ଲୋକେ ଚିହ୍ନିବେ ମତେ ।

ସୂତକୁଳର ଅନ୍ଧକାରମୟ କୂପରୁ ଉଦ୍ଧାର ପାଇ ଖୋଲା ଜଗତକୁ ଦେଖିନେବି । ଏହି ବିଚାରରେ ସାଦରେ ଗ୍ରହଣ କରିଥିଲି ତାଙ୍କ ମିତ୍ରତାକୁ ।

ଘଟଣାଟି ଘଟେ ଏହିଭଳି ।

ସେଦିନ ଥାଏ ଆଚାର୍ଯ୍ୟଙ୍କ ଜନ୍ମଦିନ । ସକାଳୁ ସକାଳୁ ଉଠି ଆମେ ଶିଷ୍ୟମାନେ ତାଙ୍କ ପାଦବନ୍ଦନା କଲୁ । ତାଙ୍କ ଉଦ୍ଦେଶ୍ୟରେ ସ୍ତୁତିଗାନ କଲୁ । ସେ ଆଶୀର୍ବାଦ କଲେ ଆମ ସମସ୍ତଙ୍କୁ । ଅଳ୍ପ କିଛି ସମୟ ପାଇଁ ଶସ୍ତ୍ରଶିକ୍ଷା ଦେଇ ତାହା ପରେ ଘୋଷଣା କଲେ ଅବକାଶ । ଆମକୁ ମିଳିଗଲା ଅବକାଶର ମାଦକତାଭରା ସ୍ୱାଚ୍ଛନ୍ଦ୍ୟକୁ ଉପଭୋଗ କରିବାପାଇଁ ସୁଯୋଗ । ଅବଶ୍ୟ ଏଇ ଉପଭୋଗ ଥିଲା ଶୃଙ୍ଖଳାର ଗଣ୍ଡି ମଧ୍ୟରେ ଆବଦ୍ଧ । ନିର୍ଦ୍ଦିଷ୍ଟ ସମୟରେ ସାମଗାନ କରିବାକୁ ହେବ । ନିର୍ଦ୍ଦିଷ୍ଟ ସମୟରେ ଖେଳିବାକୁ ହେବ, ବୁଲିବାକୁ ହେବ ଇତ୍ୟାଦି । ବିଧାତାଙ୍କ ଶାଶ୍ୱତ ନିୟମ ଭଳି ବିଦ୍ୟାୟତନର ଶୃଙ୍ଖଳିତ ନିମୟର ଗତି ଯେମିତି ଏକ ଚିରନ୍ତନ ଶଗଡ଼ଗୁଳା ମଧ୍ୟଦେଇ । ସାମାନ୍ୟ ଟିକିଏ ହଳଚଳ ଅଥବା ପଥଭ୍ରଷ୍ଟ ହେବାର ଅବକାଶ ନାହିଁ । କାହିଁ କେତେ ଯୁଗର ଚଳଣି !

ଅପରାହ୍ନର ଅନେକ କିଛିଟା ସମୟ ବିତିଯାଇଥାଏ । ସୂର୍ଯ୍ୟକିରଣ ଯାଉଥାଏ ଝାଉଁଳି ଝାଉଁଳି । ଗଙ୍ଗାର ସଜଳ ପବନ ଝାଉଁଳା କିରଣର ସାମାନ୍ୟ ଉତ୍ତାପକୁ ତୋଳିଥାଏ ଶୀତଳତର କରି । ଗଙ୍ଗାକୂଳରେ ତୁଠଠାରୁ ଟିକିଏ ଦୂରେଇକରି ବସିଥାଏ ମୁଁ । ଗଙ୍ଗାଜଳକୁ ଚାହୁଁଥାଏ ନିରେଖି ନିରେଖି ।

କଳ କଳ, ଛଳ ଛଳ ଜଳପ୍ରବାହ । ମାଛମାନେ ଚିକ୍ ଚିକ୍ କରୁଥାନ୍ତି । ଠା ଠା ହୋଇ ପହଁରୁଥାନ୍ତି କେତୋଟି କୁମ୍ଭୀର । ଜଳପ୍ରବାହର ପ୍ରତିକୂଳ ଗତିରେ ଯିବାରେ କେତେକ ତତ୍ପର । ହଂସମିଥୁନ କ୍ରୀଡ଼ାରତ ଦଳ ଦଳ ହୋଇ । ମାଛରଙ୍କା ଚଢ଼େଇ କେତୋଟି ପାଣିରେ ବୁଡୁଥାନ୍ତି ଉଠୁଥାନ୍ତି । କେତେବେଳେ କେମିତି ମାଛ ଧରିବାରେ ହେଉଥାନ୍ତି ସଫଳ । ମାଛର ଆକାର ବଡ଼ ଥିଲେ ଗଙ୍ଗାକୂଳର ଥୁଣ୍ଟା ଆମ୍ବଗଛର ଡାଳରେ ବସି ଖାଉଥାନ୍ତି । ସୂର୍ଯ୍ୟଙ୍କ ଗତି ପ୍ରାୟ ଅବସନ୍ନ । ତାହା ସହିତ ସମତାଳ ଦେଇ ସାରା ଜଗତ ମଧ୍ୟ ଅବସନ୍ନ ।

''ରକ୍ଷା କର । ରକ୍ଷା କର ।'' ହଠାତ୍ କାହାର ଆର୍ତ୍ତଚିତ୍କାର ଥରାଇଦେଲା ଗଙ୍ଗାକୂଳକୁ । ଚମକି ପଡ଼ିଲି । କାନ ଡେରି ଶୁଣିଲି । ଆରେ, ନାହିଁ ତ । ଦୁଇଜଣଙ୍କ ଚିତ୍କାର । ମୋର ବାଁ ପଟେ ଥିବା ପାହାଡ଼ ଦିଗରୁ ଆସୁଥାଏ ଭାସି । ଜାଣିଲା ଜାଣିଲା ଭଳି ଲାଗୁଥାଏ କଣ୍ଠସ୍ୱର । ପୁଣି କିଶୋର କଣ୍ଠର । ମନରେ ମୋର ଅଗଣିତ ରହସ୍ୟର ଜାଲ । କିଏ ଯେ କିଶୋର ଦୁଇ ଜଣ ? କ'ଣ ବିପଦ ପଡ଼ିଛି ଦୁହିଁଙ୍କୁ ?

କାଳବିଳମ୍ବ ନ କରି ଧାଇଁଲି ସେ ଦିଗକୁ । ଚିତ୍କାର ହୋଇଉଠୁଥାଏ ଆହୁରି ଆର୍ତ୍ତତର – ଆହୁରି ବିକଳତର ।

''ଭୟ ନାହିଁ । ଭୟ ନାହିଁ । ଯାଉଛି ।'' କଣ୍ଠରେ ମୋର ଆଶ୍ୱାସନ । ଗତିକୁ କରିଦେଲି ଆହୁରି ପ୍ରଖରତର । ପାଖରେ ପହଞ୍ଚି ଯାହା ଦେଖିଲି, ଆଖି ଖୋସି ହୋଇଗଲା

ସେଥିରେ । ମୁହଁରେ ମୋର ଆତଙ୍କର ଛାଇ । ପାହାଡ଼ତଳେ ପ୍ରବାହିତ ଗଙ୍ଗାଜଳର ଦୃଶ୍ୟରେ ହୋଇଉଠିଲି ଆତଙ୍କିତ ଆହୁରି । ଭୀମସେନ ପାହାଡ଼ରୁ ଠେଲିଦେଇଛନ୍ତି ଦୁର୍ଯ୍ୟୋଧନଙ୍କୁ । ଗଙ୍ଗାଜଳରେ ମସ୍ତବଡ଼ ଘଡ଼ିଆଳ କୁମ୍ଭୀର । ଆଁ କରି ଉପରକୁ ଚାହିଁଛି । ଉଦଗ୍ର କ୍ଷୁଧା । ଜଳରେ ପଡ଼ିଯିବାମାତ୍ରେ ତାଙ୍କୁ ଗିଳିଦେବ । ସେ ବଡ଼ ପଥର ଖଣ୍ଡେ ଧରି ତଳକୁ ଲଟକିଛନ୍ତି । ଭାଇ ଦୁଃଶାସନ ତାଙ୍କ ହାତ ଧରି ତାଙ୍କୁ ଟାଣୁଛନ୍ତି ଉପରକୁ । ଭୀମସେନ ରାଗରେ ମାରିଚାଲିଛନ୍ତି ଗୋଇଠା ଉପରେ ଗୋଇଠା । କେତେବେଳେ ଦୁଃଶାସନଙ୍କ ପିଠିକୁ ତ ଆଉ କେତେବେଳେ ଦୁର୍ଯ୍ୟୋଧନଙ୍କ ହାତକୁ । ଦୁହିଁଙ୍କ ହାତ-ମୁଠାର ଶକ୍ତି କ୍ରମେ କ୍ରମେ ଶିଥିଳ ହେବାକୁ ଲାଗିଲାଣି । ହୁଏତ ଯେ କୌଣସି ମୁହୂର୍ତ୍ତରେ ତାହା ସଂପୂର୍ଣ୍ଣ ଶିଥିଳ ହୋଇଯାଇପାରେ । ସେତେବେଳେ ଦୁର୍ଯ୍ୟୋଧନ ସିଧାସଳଖ ପଡ଼ିଯିବେ କୁମ୍ଭୀର ଗର୍ଭରେ । ତଥାପି ପଥରର ଜାବ ଛାଡୁ ନାହାନ୍ତି । ଭୀମସେନଙ୍କ ସକଳ ଉଦ୍ୟମ ବ୍ୟର୍ଥ ।

ଏତିକିବେଳେ ଶେଷ ଚେଷ୍ଟା କଲେ ଭୀମସେନ । ଦୁର୍ଯ୍ୟୋଧନଙ୍କ ଦୁଇ ହାତରେ ଆଘାତ ଦେବାଲାଗି ଗଦା ଉଞ୍ଚାଇଲେ । ଦୁହିଁଙ୍କ ଆର୍ତ୍ତଚିତ୍କାର ଆହୁରି ଅଧିକ କରୁଣତର ହୋଇଉଠିଲା ।

ପଛପଟୁ ଧାଇଁଯାଇ ଉଞ୍ଚାଇଥିବା ଅବସ୍ଥାରେ ଭୀମସେନଙ୍କ ଗଦାଟିକୁ ଧରିନେଲି । କହିଲି, "କ୍ଷାନ୍ତ ହୁଅ ଭୀମସେନ, କ୍ଷାନ୍ତ ହୁଅ । ଏ କ'ଣ କହୁଛ ? ଦୁର୍ଯ୍ୟୋଧନ ଦୁଃଶାସନ ପରା ତୁମ ଭାଇ ।"

ଭୀମସେନ ଅଟକିଗଲେ ପାହାଡ଼ର ବାଧାପାଇ ଗିରିନିର୍ଝରୀ ହଠାତ୍ ଅଟକିଗଲା ଭଳି । ବୁଲିପଡ଼ି ମତେ ଚାହିଁଲେ । କହିଲେ, "ହଁ, ଭାଇ ନା ଆଉ କିଛି ? ଯେ ଦୁହେଁ ମୋର ପରମ ଶତ୍ରୁ ।"

"ତୁମର ସେମିତି ଭାବିବା ଅନୁଚିତ । ଆଉ କହିବା ବି ଅନୁଚିତ ।" ବୟସରେ ମୁଁ ଥିଲି ବଡ଼ । ତେଣୁ ସାନଭାଇଙ୍କୁ ଆକଟ କରିବା ଢଙ୍ଗରେ କହିଲି । ଭାବିଥିଲି ମାନିଯିବେ ସେ । କିନ୍ତୁ ଫଳ ହେଲା ଓଲଟା ।

ତାଙ୍କୁ ଆଉ ସମ୍ଭାଳେ କିଏ ଏଥର ? ଏକେ ତ ରାଗ ଶାନ୍ତ ହୋଇ ନ ଥିଲା ତାଙ୍କର । ମୋର ଏଇ କଥା କେଇ ପଦରେ ଆହୁରି ରାଗିଗଲେ ସେ । ଆଖି ଲାଲ-ଲାଲ । ନିଃଶ୍ୱାସ ଫଁ ଫଁ । ସାପଲାଞ୍ଜରେ ଆଘାତ ଦେଲେ ଯେମିତି ହୁଏ ଠିକ୍ ସେମିତି ମୁଥ ଟେକି ଧାଇଁ ଆସିଲେ ମୋ' ଆଡ଼କୁ । କହିଲେ, "ତୁଟା କିଏ ? ଏଭଳି କହିବାକୁ କିଏ ତତେ ଅଧିକାର ଦେଲା ରେ ?"

ତାଙ୍କ କଥାରେ ରାଗିଗଲି ଓ ଗୋଟିଏ ହାତରେ ତାଙ୍କ ମୁଥଟେକା ହାତଟିକୁ ଧରିନେଇ ଅନ୍ୟ ହାତରେ ମାରିଲି ଏକ ଶକ୍ତ ମୁଥ । ତାଙ୍କ ବଜ୍ରଭଳି ଟାଣ ଥିବା ଗାଲରେ ଟାଇଁ କରି ବାଜିଲା । ତଳେ କଚାଡ଼ିହୋଇ ପଡ଼ିଲେ ସେ। ପରେ ପରେ ଚାଲିଗଲେ ସେଇ ଜାଗା ଛାଡ଼ି । ଗଲାବେଳେ ଆହତ ସିଂହଟିଏ ଭଳି ବାରମ୍ବାର ମୋ' ଆଡ଼କୁ ଚାଳୁଥିଲେ ହିଂସ୍ର ଚାହାଣି । ଆଉ ଦୁର୍ଯ୍ୟୋଧନ-ଦୁଃଶାସନ ଦୁହିଁଙ୍କ ଆଡ଼କୁ ବି ।

ଏହା ଭିତରେ ଦୁଃଶାସନଙ୍କ ସାହାଯ୍ୟରେ ଉପରକୁ ଉଠିଯାଇଥାନ୍ତି ଦୁର୍ଯ୍ୟୋଧନ । ଅସ୍ତବ୍ୟସ୍ତ ଅଧୋବସ୍ତ୍ର ଉତ୍ତରୀୟକୁ ସଜାଡୁଥାନ୍ତି ଓ ଦେହର ଧୂଳିକୁ ପୋଛିଦେଉଥାନ୍ତି ଦୁଃଶାସନ । ଉଭୟଙ୍କ ମୋ' ପ୍ରତି କୃତଜ୍ଞତାଭରା ଦୃଷ୍ଟି । ଦୁର୍ଯ୍ୟୋଧନଙ୍କ ମୁହଁସାରା ଲାଜର ପାଟଳିମା । ଆଖି ଦୁଇଟି କ୍ରୋଧରେ ଆରକ୍ତ । ମତେ ଚାହିଁ ମୁହଁର ଭଙ୍ଗୀକୁ ପରିବର୍ତ୍ତନ କରିଦେଲେ । ହସି ହସି ମୋ' ଆଡ଼କୁ ଆସିଲେ ଆଗେଇ । ନିବିଡ଼ ଭାବରେ ଜାକିଧରିଲେ ମତେ । ସ୍ନେହଭରା ଆଲିଙ୍ଗନ । ଭାରି ଭଲ ଲାଗିଲା ମତେ । ଭାବବିହ୍ୱଳ କଣ୍ଠରେ କହିଲେ, ''ମିତ୍ର କର୍ଣ୍ଣ ! ଆଜିଠାରୁ ତୁମେ ହେଲ ମୋର ପରମ ମିତ୍ର । ମୁଁ ମଧ୍ୟ ତୁମର ପରମ ମିତ୍ର ।''

ମୁହୂର୍ତ୍ତକ ପାଇଁ ବିଚଳିତ ହୋଇଉଠିଲି ମିତ୍ରତାର ଏଇ ଆକସ୍ମିକ ଆହ୍ୱାନରେ । ପୁଣି ଦୁର୍ଯ୍ୟୋଧନଙ୍କ ଭଳି ଜଣେ ଅଭିମାନୀ ରାଜକୁମାରଙ୍କଠାରୁ । ଆଦୌ କରିପାରି ନ ଥିଲି ବିଶ୍ୱାସ ଏଇ ଅଭାବନୀୟ ପରିସ୍ଥିତିକୁ । ହଠାତ୍ କିଛି ଉତ୍ତର ଛୁଇଁ ନ ଥିଲା ମୋ' ମନକୁ ।

ମତେ ନୀରବ ଦେଖି ସେ ପୁଣି ପଚାରିଲେ, ''କ'ଣ ରାଜି ନୁହଁ ମୋ' କଥାରେ ?'' କଣ୍ଠସ୍ୱର ଅଧୈର୍ଯ୍ୟ ଓ ଉତ୍କଣ୍ଠ । ବିଳମ୍ବ ଯେମିତି ଅସହନୀୟ ତାଙ୍କ ପାଇଁ ।

ସୌଜନ୍ୟ ରଖିବାକୁ ଯାଇ କହିଲି, ''କାହିଁକି ନୁହେଁ ? କାହିଁକି ନୁହେଁ ? ନିଶ୍ଚୟ, ନିଶ୍ଚୟ ।'' ମୁହଁ ମୋର ହସ ହସ ।

''ତେବେ ଆସ ମିତ୍ର ! ମୁଁ ତୁମକୁ ଆଉ ଥରେ ଆଲିଙ୍ଗନ କରିବି ।''

ସେ ମତେ ଭିଡ଼ି ରଖିଲେ ଆହୁରି ଏକ ଆଲିଙ୍ଗନରେ । ପୂର୍ବଠାରୁ ଆହୁରି ନିବିଡ଼ତର । ଆହୁରି ସ୍ନେହୋଚ୍ଛଳ । ନବୀନ ମିତ୍ରଙ୍କର ନବୀନ ଆଲିଙ୍ଗନ ।

ତାଙ୍କ ବିଶାଳ ଉଦାର ହୃଦୟର ସ୍ପନ୍ଦନକୁ ଗଭୀର ଭାବରେ ଅନୁଭବ କରୁଥିଲି । ମୋ' ବାହୁ ଦୁଇଟି ମଧ୍ୟ ତାଙ୍କୁ ବଳୟିତ କରିରଖିଲା ସମଧିକ ନିବିଡ଼ ଗଭୀର ଆଲିଙ୍ଗନରେ । ଦୁହେଁ ହିଁ ଥିଲୁ ନୀରବ । ମତେ ଲାଗୁଥିଲା, ଏଇ ନୀରବତା ମଧ୍ୟଦେଇ ମୋ' ଛାତିତଳ ଯେମିତି ହୋଇଉଠୁଛି ଶତବାର ମୁଖରିତ ! ଦୁର୍ଯ୍ୟୋଧନଙ୍କ ଉଷ୍ଣ ଆଲିଙ୍ଗନରୁ ଅନୁଭବ କରିପାରୁଥାଏ, ତାଙ୍କ ଛାତିତଳ ମଧ୍ୟ ଠିକ୍ ସେମିତି ମୁଖରିତ !

ଆମେ ଦୁହେଁ ମିତ୍ର ହୋଇଗଲୁ । ସାରା ଜୀବନ ପାଇଁ ମିତ୍ର ହୋଇଗଲୁ ।

## ଅଠର

ଜ୍ୟେଷ୍ଠ ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ । ଆକାଶରେ ରୁପାଜହ୍ନର ଝଟକ । ଧରଣୀରେ ଖଳ ଖଳ ଜ୍ୟୋସ୍ନାର ପ୍ରବାହ । ଗଙ୍ଗାର ସୀକରସିକ୍ତ ପବନକୁ ତାହା କରିଦେଉଥାଏ ଆହୁରି ଶୀତଳତର । ସାରା ହସ୍ତିନାପୁର ସୁପ୍ତ । କେଉଁଠି ଅବା କେତୋଟି ଭବନରେ ଦେଖା ଯାଉଥାଏ କ୍ଷୀଣ ଦୀପଶିଖାର ଆଲୋକ । ନିକଟରୁ ଶୁଭୁଥାଏ ଧନୁର୍ବାଣର ଟଙ୍କାର ଓ ସାଇଁ ସାଇଁ ଶବ୍ଦ । ଅର୍ଜୁନଙ୍କ ବାଣାଭ୍ୟାସର ଶବ୍ଦ । ଧରଣୀ ଗହୀରିଆ ନିଦରେ ଶୋଇ ଘୁଙ୍ଗୁଡ଼ି

ମାରୁଥାଏ ଅବା ! ମୋର ମଧ୍ୟ ବାଣାଭ୍ୟାସ ପାଇଁ ବାହାରିବା କଥା । କିନ୍ତୁ ସେଦିନ ଟିକିଏ ଡେରି ହୋଇଯାଇଥାଏ । ଜ୍ୟେଷ୍ଠର ତାତି ନିତାନ୍ତ ଅସହ୍ୟ । ରାତିଟାରେ ବି ଝାଳ ବୋହୁଥାଏ । ତେଣୁ କୋଠରିରୁ ବାହାରି ଆସି ବାହାର ଅଗଣାରେ ଥିବା ବକୁଳମଣ୍ଡପରେ ବସିଥାଏ । ବକୁଳଛାୟାର ଶୀତଳତା ସହିତ ଜ୍ୟୋତ୍ସ୍ନାର ଶୀତଳତା ମିଶିଯାଇ ଦେହକୁ ଲାଗୁଥାଏ ଭାରି ସୁଖକର । ଶୂନ୍ୟ ଦୃଷ୍ଟିରେ ଚାହିଁଥାଏ ଆକାଶକୁ । ଭାବୁଥାଏ ଏଣୁ-ତେଣୁ କେତେ କଥା । ବେଶି ଭାବୁଥାଏ ମାଆଙ୍କ କଥା । କେବେ ମୋର ଅସ୍ତ୍ରଶିକ୍ଷା ସରିବ ? କେବେ ଯିବି ଗାଁକୁ ? କେବେ ଭେଟିବି ମୋର ସ୍ନେହର ଅନୁଜ ସଂଗ୍ରାମକୁ ? ଆଉ ସାଙ୍ଗସାଥୀମାନଙ୍କୁ ? ଚମ୍ପାପୁରୀର ଗଙ୍ଗାତଟ, ଚମ୍ପାବନ, ସୂର୍ଯ୍ୟମନ୍ଦିର ଆଦି ସବୁ କିଛି ସ୍ମୃତି-ଧେନୁଟିର ପହ୍ନାରେ ମୁଣ୍ଡିଆ ମାରୁଥାଏ ବାରମ୍ବାର । ପୁଣି ମନେ ବି ପଡୁଥାନ୍ତି ଚମ୍ପାବନର ସେହି ବିଚିତ୍ର ସନ୍ନ୍ୟାସୀ ଓ ତାଙ୍କ ଅଦ୍ଭୁତ ଲୀଳା-ଖେଳା । ଭାବୁଥାଏ, ଏଥରକ ତାଙ୍କୁ ଦେଖିଲେ ପଚାରିବି, ଶିକ୍ଷାୟତନରେ ବି ସୂତପୁତ୍ର ବୋଲି ମୋ' ପ୍ରତି ଯେଉଁ ଅବିଚାର କରାଯାଉଛି, ଯେଉଁ ଅବହେଳା ଦେଖାଯାଉଛି, ତାହା କ'ଣ ଠିକ୍ ? କ'ଣ ଶାସ୍ତ୍ର ଦ୍ୱାରା ଅନୁମୋଦିତ ନା କେତେକ ନ୍ୟସ୍ତସ୍ୱାର୍ଥ ମଣିଷଙ୍କ ମନଗଢ଼ା ନିୟମ ?

ହଠାତ୍ ଚିନ୍ତାର ଧାରା ମୋର ଅଟକିଗଲା ବାଁ କାନ୍ଧରେ କିଏ ଛୁଇଁଦେଲା ବେଳେ । ବଳିଷ୍ଠ ଅଙ୍ଗୁଳିଗୁଡ଼ିକର ସ୍ପର୍ଶ । ଭାବିନେଲି ଗୁରୁପୁତ୍ର ଅଶ୍ୱତ୍ଥାମାଙ୍କ ଛଡ଼ା ଯେ ଆଉ କେହି ହୋଇ ନ ପାରନ୍ତି । ଅଥବା ହୋଇ ବି ପାରନ୍ତି ମିତ୍ର ରାଜକୁମାର ଦୁର୍ଯ୍ୟୋଧନ । ପୁଣି ଭାବିଲି, ଦୁର୍ଯ୍ୟୋଧନ ହୁଏତ ଏବେ ସୁଖନିଦ୍ରାରେ ଶୋଇଥିବେ । କାରଣ ସୁଖଭୋଗୀ ସେ । ପ୍ରାଚୁର୍ଯ୍ୟ ମଧ୍ୟରେ ପରିପାଳିତ, ପରିପୋଷିତ । ସେ ବା କାହିଁକି ଆସିବେ ଏତେ ରାତିରେ ମୋ' ପାଖକୁ ? ତେଣୁ ନିଶ୍ଚୟ ଯେ ମୋର ଅପର ମିତ୍ର ଅଶ୍ୱତ୍ଥାମା । ପଛକୁ ନ ଚାହିଁ ହସି ହସି କହିଲି, ''ମିତ୍ର ଅଶ୍ୱତ୍ଥାମା ! ପଛରେ ଠିଆ ହୋଇଛ କାହିଁକି ? ଆଗକୁ ଆସ ।''

ସେ ପ୍ରକୃତରେ ଥିଲେ ମିତ୍ର ଅଶ୍ୱତ୍ଥାମା । ହସି ହସି ପଛରୁ କହିଲେ, ''ବାଃ । ବଡ଼ ଚମତ୍କାର ମିତ୍ର କର୍ଣ୍ଣ ! ତୁମେ ମତେ ନ ଦେଖି ମଧ୍ୟ ଚିହ୍ନି ପକାଇଲ । କ'ଣ ଶବ୍ଦବେଧୀ ବାଣ ପ୍ରୟୋଗର ସିଦ୍ଧିରୁ ନା ଆଉ କିଛି କାରଣରୁ ?'' ଆଗକୁ ଆସି ସେ ମୋ' ଡାହାଣ କଡ଼ରେ ବସିଲେ ବକୁଳମଣ୍ଡପରେ । ସୌମ୍ୟ ମୁଖମଣ୍ଡଳରେ ତଥାପି ଥାଏ ମୃଦୁ ହସର ଝଟକ ।

''ନାଇଁ ମିତ୍ର ! କେବଳ ସ୍ପର୍ଶବେଧୀ ବାଣଜ୍ଞାନର ସିଦ୍ଧିରୁ ।'' ପରିହାସରେ କହିଲି । ତାହା ପରେ ବକୁଳମଣ୍ଡପର ନୀରବତାକୁ ଭାଙ୍ଗିଦେଇ ଆମେ ଦୁଇ ମିତ୍ର ହସିଉଠିଲୁ ଠୋ-ଠୋ ହୋଇ । କ୍ଷଣକ ପୂର୍ବରୁ ଥିବା ଚିନ୍ତାଜଡ଼ ମୁହଁରେ ମୋର ସହଜତା ଓ ସରଳତାର ଢେଉ ହୋଇଉଠିଲା ଛଳ ଛଳ । ହୃଦୟ-ମନ ଏକାନ୍ତ ହାଲୁକା । ନିର୍ମଳ ପିଞ୍ଜା ବାଦଲଠାରୁ ଆହୁରି ହାଲୁକା ?''

ପଚାରିଲି, ''ଏତେ ରାତିରେ କୁଆଡ଼େ ମିତ୍ର ?''

''କ'ଣ ମିତ୍ରଙ୍କ ପାଖକୁ କିଛି ନିର୍ଦ୍ଦିଷ୍ଟ କାମ ନ ଥିଲେ ଆସିବାକୁ ମନା ?'' ତାଙ୍କର କୌତୁକଭରା ପ୍ରଶ୍ନ ।

''ତୁମକୁ କିଏ କଥାରେ ପାରିବ ମିତ୍ର ? ହଉ, ଆମେ ଆଜି କିଛି ସମୟ ସୁଖାଳାପରେ କଟାଇବା ।''

''କ'ଣ ତୁମକୁ ବାଧା ଦେଲି କାମରେ ? ବିଶେଷ କରି ବାଣାଭ୍ୟାସରେ ?''

''ନାଇଁ, ନାଇଁ । ସେମିତି କିଛି ନୁହେଁ ।''

''ଆଜି କ'ଣ ବାଣାଭ୍ୟାସ ପାଇଁ ଯିବ ନାହିଁ କି ?''

''ନାଇଁ, ଆଜି ତ ଡେରି ହୋଇଗଲାଣି । ଭାରି ଗରମ ବି । ତେଣୁ ଯିବି ନାହିଁ । ଆମେ ଏଠି କିଛି ସମୟ ଗପ-ସପରେ କଟାଇଦେବା । ଭଲ ଲାଗିବ ।''

ସେ ଖୁସି ମନରେ ଚାହିଁଲେ ମୋ' ଆଡ଼େ ଓ ଆହୁରି ସ୍ୱଚ୍ଛ ହୋଇ ବସିରହିଲେ ।

ହଠାତ୍ ଗୋଟିଏ ସ୍ଥାନରେ ଏକ ଅପୂର୍ବ ଦୃଶ୍ୟର ଅଭିନୟ । ଧନୁଷ୍ଟଙ୍କାର ସହିତ ସାଇଁ କରି ଗୋଟିଏ ଶବ୍ଦ ହେଲା । ତାହା ପରେ ହୁତୁ ହୁତୁ ହୋଇ ଜଳିଉଠିଲା ସେହି ସ୍ଥାନଟି । ମୁହୂର୍ତ୍ତକ ପରେ ପୁଣି ସେହିପରି ଶବ୍ଦ । ପରେ ପରେ ପ୍ରଚଣ୍ଡ ଧାରାରେ ବର୍ଷା । ସେହି ନିଆଁ ହଠାତ୍ ଲିଭିଗଲା କୁଆଡ଼େ ।

''ଅର୍ଜୁନ ଆଗ୍ନେୟାସ୍ତ୍ର ଛାଡ଼ିଲେ । ତାହା ପରେ ପୁଣି ବାରୁଣାସ୍ତ୍ର ଛାଡ଼ିଲେ ।'' ଅଶ୍ୱତ୍ଥାମାଙ୍କୁ ଲକ୍ଷ୍ୟକରି କହିଲି ।

''ହଁ ।'' ଗମ୍ଭୀର ଭାବରେ ଉତ୍ତର ଦେଲେ ସେ । ନିର୍ମଳ ଜ୍ୟୋତ୍ସ୍ନାଲୋକରେ ଦେଖିପାରିଲି ତାଙ୍କ କପାଳରେ ଚିନ୍ତାର ଭାଙ୍ଗ । କ୍ଷଣକ ପୂର୍ବର ହସ ହସ ମୁହଁରେ ଅଭାବନୀୟ ଜଡ଼ିମା । କଳିପାରିଲି ନାହିଁ କ'ଣ ଭାବୁଛନ୍ତି ସେ ? ହଠାତ୍ କାହିଁକି ମୁଖମଣ୍ଡଳରେ ଏଭଳି ଚିନ୍ତାଭରା ଗାମ୍ଭୀର୍ଯ୍ୟ ? ବ୍ରହ୍ମଜ୍ଞାନର ଅଧିକାରୀ ସେ । ସାଂସାରିକ ସମସ୍ତ କାମନା-ବାସନା, ଦୁଃଖ-ଜଞ୍ଜାଳ, ଆଶା-ନିରାଶାର ଊର୍ଦ୍ଧ୍ୱରେ । ହଠାତ୍ କାହିଁକି ଅର୍ଜୁନଙ୍କ ବାଣାଭ୍ୟାସର ସିଦ୍ଧିରେ ଏଭଳି ଚିନ୍ତାନ୍ୱିତ ? କ'ଣ କ୍ରୋଧରେ ନା ଈର୍ଷାରେ ? ପୁଣି ଭାବିଲି ନା, ତାଙ୍କ ପକ୍ଷରେ କ୍ରୋଧ କିମ୍ବା ଈର୍ଷା ଆଦୌ ସମ୍ଭବ ନୁହେଁ । ବୋଧହୁଏ ଆଉ କିଛି ଭାବୁଛନ୍ତି । ପଚାରିଲି, ''କ'ଣ ଭାବୁଛ ଏତେ ମିତ୍ର ?''

''ତୁମେ ଦେଖିପାରୁଛ ତ ଅର୍ଜୁନଙ୍କ ଧନୁର୍ବାଣର ସିଦ୍ଧି ?''

''ହଁ, ମିତ୍ର । ସେ ବି ଆଚାର୍ଯ୍ୟଙ୍କ ପ୍ରିୟତମ ଶିଷ୍ୟ ହୋଇଉଠିଛନ୍ତି ।''

''ଆଉ ପିତା ତାଙ୍କୁ ଅସ୍ତ୍ର ସଂପର୍କରେ ସମସ୍ତ ଶ୍ରେଷ୍ଠ ଜ୍ଞାନ ଅର୍ପଣ କରୁଛନ୍ତି ।

''ହଁ, ମିତ୍ର ।''

''କାହିଁକି କରୁଛନ୍ତି ଜାଣ ?''

''କାହିଁକି ?''

''ପିତା ଚାହାନ୍ତି, ସେ ଜଗତରେ ଜଣେ ସର୍ବଶ୍ରେଷ୍ଠ ଧନୁର୍ଦ୍ଧର ହୋଇ ବାହାରନ୍ତୁ ।''

''ଯୋଗ୍ୟ ଶିଷ୍ୟ ଯୋଗ୍ୟ ଜ୍ଞାନର ଅଧିକାରୀ ହେବାରେ କ୍ଷତି କ'ଣ ?''

''ଅର୍ଜୁନଙ୍କ ଯୋଗ୍ୟତା ବିଷୟରେ ପ୍ରଶ୍ନ କରୁ ନାହିଁ ମିତ୍ର ।''

''ଆଉ ?''

''ଏହି ଯୋଗ୍ୟତାର ପରିଣତି ବିଷୟରେ ।''

''କିଛି ବୁଝିପାରୁ ନାହିଁ ମିତ୍ର ।'' କଣ୍ଠସ୍ୱର ମୋର ନିରୀହ । ଚିତ୍ତ-ମନ ଆନ୍ଦୋଳିତ ସନ୍ଦେହରେ ।

''ପାଣ୍ଡବ-କୌରବମାନଙ୍କ ମଧ୍ୟରେ ଥିବା ସଂପର୍କ କଥା କ'ଣ ଦେଖିପାରୁ ନାହଁ ମିତ୍ର କର୍ଣ୍ଣ ? ଏଇ ଯୋଗ୍ୟତାକୁ ନେଇ ଉଭୟ ପକ୍ଷ ମଧ୍ୟରେ କିପରି ବଢ଼ି ବଢ଼ି ଚାଲିଛି ଶତ୍ରୁତା ଓ ଈର୍ଷାଭାବ ? କେବଳ ଯୁଧିଷ୍ଠିର ହିଁ ସେତୁଟିଏ ହୋଇ ଦୁଇ ପକ୍ଷର ବନ୍ଧୁତା ଓ ଶାନ୍ତିଭାବକୁ ରଖିପାରିଛନ୍ତି ଅକ୍ଷୁଣ୍ଣ ।''

''ହଁ, ମିତ୍ର ! ମୁଁ ନିଜେ ତ ସାକ୍ଷୀ । ସେଦିନ ମୁଁ ନ ଥିଲେ ଭୀମସେନ ହୁଏତ ଦୁର୍ଯ୍ୟୋଧନଙ୍କୁ ଗଙ୍ଗାଜଳକୁ ଠେଲିଦେଇଥାନ୍ତେ । ଆଉ ସେ କୁମ୍ଭୀରମୁହଁରେ ପଡ଼ିଥାନ୍ତେ ।''

''ଏଇ ଶତ୍ରୁତାର ନିଆଁକୁ ପବନ ଭଳି ପ୍ରସାରିତ ଦେବାକୁ ଅଛନ୍ତି କୌରବମାନଙ୍କ ମାତୁଳ ଗାନ୍ଧାରରାଜ ଶକୁନି । ସେ ମହାରାଜ ଧୃତରାଷ୍ଟ୍ରଙ୍କୁ ଓ ରାଜକୁମାର ଦୁର୍ଯ୍ୟୋଧନଙ୍କୁ ବାରମ୍ବାର ଦେଇଚାଲିଛନ୍ତି କୁମନ୍ତ୍ରଣା । ପାଣ୍ଡବମାନଙ୍କୁ ରାସ୍ତାରୁ ଦୂରେଇ ନ ଦେଲେ ଦୁର୍ଯ୍ୟୋଧନଙ୍କ କୌରବ ରାଜଗାଦି ପାଇବା ସମ୍ଭବ ନୁହେଁ ।''

''ଗାନ୍ଧାରରାଜ ନିଜ ରାଜ୍ୟକୁ ନ ଯାଇ ଏଠି ରହିଛନ୍ତି କାହିଁକି ଯେ ?'' ମୋର ଜିଜ୍ଞାସାଭରା ପ୍ରଶ୍ନ । ତାଙ୍କ କପଟାଚାରର ତୀବ୍ର ପ୍ରତିକ୍ରିୟା ।

''ସେଇ ତ ରହସ୍ୟ । ମୋର ମନେହେଉଛି, କିଛି ଗୋଟିଏ ବଡ଼ ଧରଣର ଖରାପ ଉଦ୍ଦେଶ୍ୟ ନେଇ ଏଠି ରହୁଛନ୍ତି ସେ । ଅଥଚ ଏ କଥା ମହାରାଜ ଧୃତରାଷ୍ଟ୍ର କିମ୍ବା ତାଙ୍କ ଭଗିନୀ ଗାନ୍ଧାରୀ ବୁଝିପାରୁ ନାହାନ୍ତି ଆଦୌ । ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନେ ତ ପିଲା ଲୋକ । ସହଜରେ ଭଳି ଯାଇପାରିବେ । ସେମାନଙ୍କ ବୁଝିବା କଥା ଉଠୁଛି କୁଆଡୁ ?''

ଅଶ୍ୱତ୍ଥାମା ଆଉ ଯାହା କହିଲେ ସେଥିରେ ଖୁବ୍ ବ୍ୟଥିତ ହୋଇଉଠିଲି । ମତେ ଲାଗିଲା, ସାରା ହସ୍ତିନାପୁର ଓ ତାହାକୁ ନିୟନ୍ତ୍ରିତ କରୁଥିବା ସମଗ୍ର ରାଜକୁଳ ଯେମିତି କରିଛନ୍ତି ଏକ ପ୍ରଚଣ୍ଡ ଓ ପ୍ରଚ୍ଛନ୍ନ ଆଗ୍ନେୟଗିରି ଉପରେ । କେତେବେଳେ ଯେ ତାହା ଆଗ୍ନେୟ ଗରଳ ଢାଳିଦେବ ତାହା କହିହେବ ନାହିଁ । ସେତେବେଳେ ସାରା ହସ୍ତିନାପୁର ହୋଇଯିବ ଧ୍ୱସ୍ତ-ବିଧ୍ୱସ୍ତ । ଖାଲି ପଡ଼ିରହିବ ହସ୍ତିନାପୁର ନାଁର ବିରାଟ ପାଉଁଶ-ଗଦାଟିଏ । ଏହାର ଛିଟିକା ଯେ ଭୀଷ୍ମଦେବ, ଦ୍ରୋଣାଚାର୍ଯ୍ୟ ଆଦିଙ୍କୁ ଧରି ଆମ୍ଭମାନଙ୍କ ଉପରେ ନ ପଡ଼ିବ ସେ କଥା କିଏ କହିବ ? ମହାରାଜ ହସ୍ତୀଙ୍କ ଦାୟାଦମାନଙ୍କ ଉପରେ ଏଇ ଯେଉଁ ପ୍ରଚଣ୍ଡ ଅଭିଶାପର ଝଞ୍ଜା ବହିବାର ପୂର୍ବାଭାସ ଦେଉଛି, ତାହା ତ ବହିବ ହିଁ ବହିବ । ଦିନେ ନା ଦିନେ ନିଶ୍ଚୟ ବହିବ । ମନେ ମନେ ପୁଣି ବାରମ୍ବାର ପ୍ରଶ୍ନ – ଏହାକୁ କ'ଣ ଏଡ଼ାଇଦେଇ ହେବ ନାହିଁ ? ବକୁଳବୃକ୍ଷଟିର ତାଳପତ୍ରକୁ କମ୍ପିତ କରି ବହିଯାଉଥିବା ନୈଶ ପବନ ଯେମିତି କହି ଯାଉଥିଲା ନାହିଁ, ଆଦୌ ଏଡ଼ାଇ ଦେଇ ହେବ ନାହିଁ । ଏହି ଝଞ୍ଜା ଭୀଷଣ ଏକ ଚକ୍ରବାତର ରୂପ ନେବା କାହାକୁ ରଖିବ, କାହାକୁ ଉଡ଼ାଇଦେବ, ଇୟତ୍ତା ନାହିଁ ତାହାର ।

ମୋରି ଆଖି ଆଗରେ ଏତେ ବଡ଼ ବିରାଟ ପରମ୍ପରାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏଇ କୁରୁବଂଶ ଏବେ ଧୂଳିସାତ୍ ହୋଇଯିବ ସିନା ! ଅଥଚ ପୁରୁଷ ପୁରୁଷ ଧରି ତାହାରି ପ୍ରସାଦରେ ବଞ୍ଚି ଆସିଥିବା ଆମେ କିଛି କରିବାକୁ ଅକ୍ଷମ । ଖାଲି ଜଳକା ଆଖିରେ ଚାହିଁ ରହିଥିବା । ଦୀର୍ଘଶ୍ୱାସ ପକାଇଲି । ଦୁର୍ଦ୍ଦମନୀୟ ଓ ଅସହ୍ୟ ସେ ପୀଡ଼ା ! ଛାତିତଳ କୋରି ହୋଇଯାଉଥାଏ ।

ମହାରାଜ ଧୃତରାଷ୍ଟ୍ର ପୁତ୍ରସ୍ନେହରେ ଅନ୍ଧ । ତେଣେ ମହାମାନୀ ଦୁର୍ଯ୍ୟୋଧନ ସ୍ୱୟଂ ରାଜ୍ୟଲାଭ ଲାଗି ପାଗଳ । ସେ ଯୁବରାଜ ହେବାକୁ ଚାହାନ୍ତି । ମହାରାଜଙ୍କର ମଧ ସେଥି ପ୍ରତି ଆନ୍ତରିକ ସମର୍ଥନ । ଭୀଷ୍ମଦେବଙ୍କୁ ଭୟ କରି ତାଙ୍କରି ଖାତିରରେ ହିଁ କିଛି କହିପାରୁ ନାହାନ୍ତି ମୁହଁ ଖୋଲି । ଅଧିକାଂଶ ଲୋକ ଚାହାନ୍ତି ଯୁଧିଷ୍ଠିର ହୁଅନ୍ତୁ ଯୁବରାଜ । କାରଣ ସେ ବୟସରେ ବଡ଼ ଦୁର୍ଯ୍ୟୋଧନଙ୍କଠାରୁ ଓ ସ୍ୱର୍ଗତ ରାଜା ପାଣ୍ଡୁଙ୍କ ଜ୍ୟେଷ୍ଠପୁତ୍ର । ମହାମନ୍ତ୍ରୀ ବିଦୁରଙ୍କର ମଧ ଇଚ୍ଛା ଅନୁରୂପ । ଦୁର୍ଯ୍ୟୋଧନ ତେଣୁ ଚାହାନ୍ତି ପାଣ୍ଡବମାନଙ୍କୁ ଶେଷ କରିଦେବା ପାଇଁ, ବିଶେଷକରି ଭୀମସେନଙ୍କୁ । ଭୀମସେନଙ୍କ ଉପରେ ତାଙ୍କର ବେଶି ରାଗ । କାରଣ ପଦେ ପଦେ ତାଙ୍କଦ୍ୱାରା ଅପଦସ୍ଥ ସେ । ଏହି ଶତ୍ରୁତାର ନିଆଁକୁ ତେଜାଇ ଦେବାପାଇଁ ଅଛନ୍ତି ମାତୁଳ ଶକୁନି । ମଝିରେ ମଝିରେ ସେ ଆସୁଛନ୍ତି ଶିକ୍ଷାୟତନକୁ ଭଣଜାମାନଙ୍କ ଭଲ-ମନ୍ଦ ଖବର ବୁଝିବାପାଇଁ । ଏହାରି ସୁଯୋଗ ନେଇ ଗୁପ୍ତ ଆଲୋଚନା କରୁଛନ୍ତି ଦୁର୍ଯ୍ୟୋଧନଙ୍କ ସହିତ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ସମସ୍ତଙ୍କ ଅଲକ୍ଷ୍ୟରେ ।

ବଡ଼ ଆଶ୍ଚର୍ଯ୍ୟ ହେଉଥାଏ ରାଜକୁଳର ଚଳଣି ଦେଖି । ଏପର୍ଯ୍ୟନ୍ତ ରାଜକୁମାରମାନଙ୍କ ଶିକ୍ଷା ଶେଷ ହୋଇ ନାହିଁ । ସେମାନେ କୈଶୋରର ଦେହଳି ଡେଇଁ ନାହାନ୍ତି । ତଥାପି ଏହା ଭିତର ଆଲୋଚନା ଚାଲିଛି କିଏ ହେବେ ଯୁବରାଜ ? ମନ୍ତ୍ରଣା ଚାଲିଛି କିଏ ହେବେ ରାଜା ? ବଡ଼ ବିଚିତ୍ର ଓ ଅଦ୍ଭୁତ ଏ ଚଳଣି ! ଘୋଡ଼ା ଆଗରେ ରଥ ଚକକୁ ଗଡ଼ାଇଦେବାର ଅପଚେଷ୍ଟା ! ପ୍ରକୃତରେ ସବୁ କିଛି ଚଳେ ରାଜକୁଳରେ । କାହାର ସାହସ ଅଛି ପ୍ରତିବାଦ କରିବାକୁ ?

ଅଶ୍ୱତ୍ଥାମାଙ୍କ କଥା ଅନୁସାରେ ଆଜି ସଂଧ୍ୟାରେ ମହାମନ୍ତ୍ରୀ ବିଦୁର କୁଆଡ଼େ ଆସିଥିଲେ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ । ସେ କୁଆଡ଼େ ଗୁପ୍ତଚର ମାଧ୍ୟମରେ ଜାଣିପାରିଛନ୍ତି ଶକୁନିଙ୍କ ସମସ୍ତ କାର୍ଯ୍ୟକଳାପ, ବିଶେଷକରି ବିଦ୍ୟାୟତନକୁ ଆସି ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଦୁର୍ଯ୍ୟୋଧନଙ୍କୁ ଦେଉଥିବା କୁପରାମର୍ଶର ବିଷୟବସ୍ତୁ । ସେ ଆଚାର୍ଯ୍ୟଙ୍କୁ ପ୍ରାର୍ଥନା କରି କହିଲେ, ''ହେ ଆଚାର୍ଯ୍ୟ ! ଆପଣ ସାବଧାନ ଥିବେ । କୌରବମାନଙ୍କ ପକ୍ଷରୁ ପାଣ୍ଡବମାନଙ୍କ ଜୀବନ ପ୍ରତି ବିପଦ ଅଛି ।''

ଆଚାର୍ଯ୍ୟ ଖୁବ୍ ବ୍ୟଥିତ ହେଲେ । ଉତ୍‌କ୍ଷିପ୍ତ ହୋଇ କହିଲେ, ''ଏଣିକି ମୁଁ ମନା କରିଦେବି ଶକୁନିଙ୍କୁ ଶିକ୍ଷାୟତନକୁ ଆସିବାପାଇଁ ।''

''ସେପରି ଭୁଲ କରିବେ ନାହିଁ ଆଚାର୍ଯ୍ୟ । ମହାରାଜ କ୍ରୋଧ କରିବେ ।'' ସାବଧାନୀ ବାଣୀ ଶୁଣାଇଲେ ସୁଚତୁର ମହାମନ୍ତ୍ରୀ ବିଦୁର ।

"ପାଣ୍ଡବମାନଙ୍କ ଜୀବନ ନେବାଟାକୁ କ'ଣ ମହାରାଜ ସମର୍ଥନ କରୁଛନ୍ତି ?" ଆଚାର୍ଯ୍ୟଙ୍କ ବିସ୍ମୟଭରା ପ୍ରଶ୍ନ ।

"ନା, ସେପରି ଆରୋପ ମୁଁ କରୁ ନାହିଁ । କେବଳ ଏତିକି ଜାଣେ ଯେ ସେ ଚାହାନ୍ତି ଦୁର୍ଯ୍ୟୋଧନ ହୁଅନ୍ତୁ ଯୁବରାଜ । ଆଉ ଶକୁନି ଚାହାନ୍ତି..." ତାଙ୍କ କଥା ଶେଷ ହେବା ପୂର୍ବରୁ ଆଚାର୍ଯ୍ୟ ବାକିତକ ପଦ ଯୋଡ଼ିଦେଲେ, "ପାଣ୍ଡବମାନଙ୍କୁ ଶେଷ କରିଦେବାପାଇଁ । କଣ୍ଟାଗୁଡ଼ିକୁ ମୂଳରୁ ଉପାଡ଼ି ଦେବାପାଇଁ । ଏଇଆ ନା ?"

"ହଁ, ଆଚାର୍ଯ୍ୟ । ଆପଣ ତେଣୁ ଟିକିଏ ସାବଧାନ ଥାଆନ୍ତୁ । ପାଣ୍ଡବମାନଙ୍କ ନିରାପତ୍ତା ପ୍ରତି ଆଖି ରଖିଥାନ୍ତୁ । ମୁଁ ମଧ ଏ କଥା ଜ୍ୟେଷ୍ଠତାତ ଭୀଷ୍ମଙ୍କ କାନରେ ପକାଇଦେଇଛି ।"

"ସେ କ'ଣ କହିଲେ ?"

"କେବଳ ସାବଧାନ ହେବାପାଇଁ କହିଲେ । ପାଣ୍ଡବମାନଙ୍କ ନିରାପତ୍ତା ବ୍ୟବସ୍ଥାକୁ ଦୃଢ଼ତର କରିବାପାଇଁ ପରାମର୍ଶ ଦେଲେ ।"

"ଆପଣ ନିଶ୍ଚିନ୍ତ ରହନ୍ତୁ ମହାମନ୍ତ୍ରୀ ।" ଆଚାର୍ଯ୍ୟ ଆଶ୍ୱସନା ଦେଇ କହିଲେ ।

"ଧନ୍ୟବାଦ ।" ଏହା କହି ମହାମନ୍ତ୍ରୀ ବିଦୁର ତାଙ୍କୁ ଅଭିବାଦନ କରି ବିଦାୟ ଦେଲେ ।

ଅଶ୍ୱତ୍ଥାମା ପ୍ରଚ୍ଛନ୍ନରେ ଥାଇ ଶୁଣୁଥିଲେ ଏହି କଥା । ମୋ'ଭଳି ଜଣେ ଅନ୍ତରଙ୍ଗ ମିତ୍ର ଆଗରେ ସବୁ କଥା ନିବେଦନ କରିବା ଲାଗି ମନ ତାଙ୍କର ହେଉଥିଲା ଛକପକ । ସୁଯୋଗ ଦେଖି ବିଳମ୍ବିତ ରାତ୍ରିରେ ବି ଅନ୍ୟମାନଙ୍କ ଅଲକ୍ଷ୍ୟରେ ଆସିଛନ୍ତି ମୋ'ପାଖକୁ । ସରଳ ହୃଦୟରେ ଏତେ ବଡ଼ ସତ୍ୟକୁ ପାରି ନାହାନ୍ତି ଚାପିରଖି ।

ବକୁଳ ଶାଖାରେ ନିଶାଚର ପକ୍ଷୀଟିର ଡେଣା ଫଡ଼ ଫଡ଼ ଶବ୍ଦ । ପାଚିଲା ପତ୍ର କେତୋଟି ଝଡ଼ିପଡ଼ିଲା ଆସି ଆମ ମୁଣ୍ଡରେ ।

ଅଶ୍ୱତ୍ଥାମା କଥାର ମୋଡ଼ ବଦଳାଇବାକୁ ଯାଇ ଧୀରେ ଧୀରେ ଗମ୍ଭୀର ହୋଇଉଠୁଥିଲେ । ସେ ତ ମହାଜ୍ଞାନୀ । ଶସ୍ତ୍ରବିଦ୍ୟାରେ ଯେମିତି ଧୁରନ୍ଧର, ଠିକ୍ ସେମିତି ଅଥବା ତାହାଠାରୁ ଅଧିକ ଧୁରନ୍ଧର ବେଦ-ବେଦାନ୍ତ, ଆୟୁର୍ବିଦ୍ୟା, ଜ୍ୟୋତିର୍ବିଦ୍ୟା ଆଦି ସକଳ ଶାସ୍ତ୍ରରେ । ଏତେ ବିଦ୍ୟାର କିପରି ଅଧିକାରୀ ହୋଇପାରିଲେ ଏ କମ୍ ବୟସରେ ଭାବିଲେ ମତେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ସବୁ କିଛି ଅଦ୍ଭୁତ । ସବୁ କିଛି ଅନନ୍ୟ ତାଙ୍କ ପାଇଁ । ତାଙ୍କ ଜନ୍ମକାଳୀନ ପ୍ରଥମ ଚିତ୍କାର ବି କୁଆଡ଼େ ଥିଲା ବଡ଼ ବିଚିତ୍ର ଓ ଅଦ୍ଭୁତ । ସେତେବେଳେ ସେ କୁଆଡ଼େ ଅଶ୍ୱଟିଏ ଭଳି ଚିତ୍କାର କରିଉଠିଥିଲେ । ପିତାମହ ଋଷି ଭରଦ୍ୱାଜ ବଞ୍ଚିଥାନ୍ତି ସେତେବେଳେ । ଆନନ୍ଦରେ ସେ ବଡ଼ କଉତୁକିଆ ନାଁଟିଏ ରଖିଥିଲେ ତାଙ୍କର । ଅଶ୍ୱତ୍ଥାମା । ସେହିଦିନୁ ଅଶ୍ୱତ୍ଥାମା ବୋଲି ପରିଚିତ ସେ । ସେଇ ଅଶ୍ୱତ୍ଥାମା ଏବେ ଗମ୍ଭୀର ହୋଇଉଠୁଥିଲେ । ସେ ଗମ୍ଭୀର ହୋଇଉଠିଲେ ସର୍ବଦା କହିଥାନ୍ତି ଦର୍ଶନର କଥା – ଗଭୀର ତତ୍ତ୍ୱଜ୍ଞାନର କଥା । ଦାର୍ଶନିକତା ଓ ତତ୍ତ୍ୱଜ୍ଞାନ ଯେମିତି

ତାଙ୍କର ସ୍ୱାଭାବିକ ପ୍ରବୃତ୍ତି । ଯାହା କିଛି କହନ୍ତି ତାହା ଅତୀବ ଶିକ୍ଷଣୀୟ– ଅତ୍ୟନ୍ତ ମହାନ୍ । ତେଣୁ କ'ଣ କହୁଛନ୍ତି ଶୁଣିବାପାଇଁ ଆଗ୍ରହୀ ହୋଇଉଠିଲି ।

''ମିତ୍ର କର୍ଣ୍ଣ !'' କଣ୍ଠସ୍ୱର ସଜଳ-ଗମ୍ଭୀର ବୃଷ୍ଟିର ପୂର୍ବାଭ୍ୟାସର ସୂଚନା ଦେଲା ଭଳି ଲାଗିଲା ।

''ହଁ, ମିତ୍ର ଅଶ୍ୱତ୍ଥାମା ।''

''ଈଶାବାସ୍ୟୋପନିଷଦର ସେଇ ମହନୀୟ ପଦଟି କଥା ତ ତୁମେ ଜାଣିଥିବ ।''

''କେଉଁ ପଦଟି କଥା ?'' ମୋର ସତୃଷ୍ଣ ପ୍ରଶ୍ନବାଚୀ ।

''ପ୍ରଥମ ମନ୍ତ୍ରର ଦ୍ୱିତୀୟ ପଦଟି କଥା । 'ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍' । ତୁମେ ସମସ୍ତ ଜିନିଷକୁ ତ୍ୟାଗମୁଖୀ ହୋଇ ଭୋଗ କର । କାହାରି ଧନ ପ୍ରତି ଲୋଭ କର ନାହିଁ ।''

''ହଠାତ୍ ଏ କଥା କାହିଁକି ଉଠାଇଲ ମିତ୍ର ?''

''ରାଜକୁମାର ଦୁର୍ଯ୍ୟୋଧନଙ୍କ କାରଣରୁ । ସେ ଏବେ ଅତ୍ୟଧିକ ଲୋଭୀ ହୋଇଉଠିଛନ୍ତି । ପାଣ୍ଡୁଙ୍କ ଦାୟାଦ ଭାବରେ ପାଣ୍ଡବମାନଙ୍କର ମଧ୍ୟ କୁରୁରାଜ୍ୟରେ ଅଧିକାର ଅଛି । ଅଥଚ ସେ ତାହା ସେମାନଙ୍କ ହାତରୁ ଛଡ଼ାଇ ନେବାପାଇଁ ଚାହୁଁଛନ୍ତି । ଏହା ଅନୁଚିତ କଥା । ଶାସ୍ତ୍ରର ବିରୋଧୀ । ଆମ ସଂସ୍କୃତିର ବିରୋଧୀ । ପରମ୍ପରାର ବିରୋଧୀ । ଭୀଷ୍ମଦେବ ଆଜୀବନ ବ୍ରହ୍ମଚାରୀ ଥାଇ ମହାରାଣୀ ସତ୍ୟବତୀଙ୍କ ସନ୍ତାନମାନଙ୍କ ପାଇଁ ରାଜ୍ୟଭାର ଛାଡ଼ିଦେବା ଦ୍ୱାରା କୁରୁବଂଶର ଯେଉଁ ତ୍ୟାଗର ପରମ୍ପରାଟିକୁ ସୃଷ୍ଟି କରିଯାଇଛନ୍ତି ତାହାର ମଧ୍ୟ ବିରୋଧୀ ।'' ଅଧିକ କିଛି ଦାର୍ଶନିକ କଥା କହିଲେ ଅଶ୍ୱତ୍ଥାମା ହୋଇଉଠିଥାନ୍ତି ଭାବପ୍ରବଣ । ସେଦିନ ମଧ୍ୟ ଠିକ୍ ସେମିତି ହୋଇଉଠୁଥିଲେ ଭାବପ୍ରବଣ । ରୁପେଲି ଜ୍ୟୋତ୍ସ୍ନାଲୋକରେ ଲକ୍ଷ୍ୟ କଲି, ତାଙ୍କ ମୁହଁ ଓ ଆଖି ଦିଓଟିରେ ଝଲମଲ ହୋଇଉଠୁଛି କି ଏକ ଅପୂର୍ବ ତେଜ ! ଗଭୀର ସମୁଦ୍ର ପରି ଶାନ୍ତ ଥିବା ତାଙ୍କ ସୌମ୍ୟ ଦେହମୂର୍ତ୍ତିଟି ଥରିଉଠୁଛି କି ଏକ କମ୍ପନରେ !

''ହଁ ମିତ୍ର । କଥାଟା ପ୍ରକୃତରେ ସେଇଆ । ଏହାର ଫଳ କିନ୍ତୁ ଭଲ ହେବ ନାହିଁ ।'' କଣ୍ଠସ୍ୱର ମୋର ନିଷ୍ପ୍ରଭ-ମଳିନ । ଭବିଷ୍ୟତ୍‌ର କି ଏକ ଅଜ୍ଞାତ ଦୁଃଖଦ ପରିସ୍ଥିତି ଲାଗି ସମବେଦନାରେ ଉଚ୍ଛଳ ।

''ଫଳ ତ ଆଖିକୁ ଜଳ ଜଳ ହୋଇ ଦିଶୁଛି । ଲୋଭରୁ ପାପ । ଆଉ ପାପରୁ ମୃତ୍ୟୁ । ଏଥିପାଇଁ ଯେଉଁ ଘୋର ସଂଘର୍ଷ ହେବ, ସେଥିରେ ଦୁର୍ଯ୍ୟୋଧନଙ୍କ ମୃତ୍ୟୁ ହିଁ ସୁନିଶ୍ଚିତ । ମାତୁଳ ଶକୁନି ତ କାଳ ଭଳି ତାହାକୁ ଶୀଘ୍ର ଶୀଘ୍ର ଡାକି ଆଣୁଛନ୍ତି ।''

''ଅଥଚ ବିଚରା ମିତ୍ର ଦୁର୍ଯ୍ୟୋଧନ । କିଛି ବୁଝିପାରୁ ନାହାନ୍ତି ସେ ।'' ମିତ୍ରଙ୍କ ଲାଗି ସମବେଦନାରେ ଜର୍ଜରିତ ମୋର ଭାଷା । କିଛି ସମୟ ପରେ ପୁନର୍ବାର ପ୍ରଶ୍ନ କଲି, ''ଭାଇ ଅଶ୍ୱତ୍ଥାମା ! ମୋର ଗୋଟିଏ ବିଷୟରେ ସନ୍ଦେହ ଆସୁଛି ।

''କେଉଁ କଥା ?'' ଅଶ୍ୱତ୍ଥାମାଙ୍କ କୌତୂହଳପୂର୍ଣ୍ଣ ପ୍ରତିପ୍ରଶ୍ନ ।

''ଏଇ ତୁମେ ଯେଉଁ କହିଲ, ତ୍ୟାଗ ଓ ଭୋଗ ଉଭୟର କଥା ।''

''ଏଥିରେ ସନ୍ଦେହ ରହୁଛି କେଉଁଠି ?''

''ତ୍ୟାଗ ଓ ଭୋଗ ପରସ୍ପରର ବିରୋଧୀ ନୁହେଁ କି ?''

''ନିଶ୍ଚୟ, ନିଶ୍ଚୟ ।'' ଅଳ୍ପ ଅଳ୍ପ ହସୁଥାନ୍ତି ଅଶ୍ୱତ୍ଥାମା ।

''ତେବେ ମଣିଷ ଗୋଟିଏ ଜିନିଷକୁ ତ୍ୟାଗ କରିବ କେମିତି ? ପୁଣି ତାହାକୁ ଭୋଗ କରିବ ବା କେମିତି ?'' ଅଶ୍ୱତ୍ଥାମାଙ୍କ କଥାର ଜାଲ ମଧ୍ୟରେ ଛନ୍ଦି ହୋଇଯାଇଥିଲି । ତହିଁରୁ ମୁକୁଳି ନ ପାରି ଏଇ ପ୍ରଶ୍ନ ପଚାରିଲି । ସେ ଆହୁରି ଅଧିକ ଜୋର୍‌ରେ ହସି-ଉଠିଲେ । କିନ୍ତୁ ତାହା ଥିଲା କ୍ଷଣକପାଇଁ ମାତ୍ର ଠିକ୍ ବିଜୁଳିର ଝଟକ ଭଳି । ପରେ ପରେ ଗମ୍ଭୀରତାର ସହିତ କହିଲେ, ''ବୁଝିଲ ବନ୍ଧୁ, ତ୍ୟାଗ ଓ ଭୋଗ ଗୋଟିଏ ମୁଦ୍ରାର ଦୁଇ ପାଖ ଭଳି । ମଣିଷକୁ ଉଭୟର ସେବା କରିବାକୁ ହେବ । ତା'କୁ ତ୍ୟାଗମୁଖୀ ହୋଇ ଭୋଗ କରିବାକୁ ହେବ । ସେ କର୍ମ କରିଯିବ । ଅଥଚ ତାହାର ଫଳଭୋଗ ପାଇଁ ଆଶାୟୀ ହେବ ନାହିଁ ।'' ମୋ' ବୁଝିବାଟା ତଥାପି ଥିଲା ଅସ୍ପଷ୍ଟ । ଏ କଥା ଜାଣିପାରିଲେ ସେ ବୋଧହୁଏ । କଥାଟାକୁ ଆହୁରି ସ୍ପଷ୍ଟତର କରିଦେବାକୁ ଯାଇ କହିଲେ,

''ସେହି ଉପନିଷଦ ପୁଣି ଆଉ ଠାଏ କ'ଣ କହିଛି ଜାଣ ?''

''କ'ଣ ?'' ମୋର ଜିଜ୍ଞାସାଭରା ପ୍ରତି ପ୍ରଶ୍ନ । କୌତୂହଳ ବି ବଢ଼ି ଉଠୁଥିଲା ।

'କୁର୍ବେନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ'— ଏଇ ମନ୍ତ୍ରଟିର ଉଦାହରଣ ଦେଇଥିଲେ ସେ । ମଣିଷର କର୍ମ କରି କରି ଶହେ ବର୍ଷ ବଞ୍ଚିରହିବା ଉଚିତ । ଏ କିନ୍ତୁ ସେହି କର୍ମ ଯେଉଁଥିରେ କାମନା ନ ଥିବ, ବାସନା ନ ଥିବ । ସଂପୂର୍ଣ୍ଣ ନିଷ୍କାମ କର୍ମ । ତା'କୁ କର୍ମ କରିବାକୁ ହେବ; କିନ୍ତୁ ଫଳର ଆଶା ରଖିବାକୁ ହେବ ନାହିଁ । ତା'ହେଲେ ସେ ହୋଇଉଠିବ ଚିରଂଜୀବୀ । ମରିକରି ବି ହୋଇଉଠିବ ଅମର । ଅମୃତର ପୁତ୍ର ବୋଲି କହିବାର ଏହାହିଁ ତ ତାତ୍ପର୍ଯ୍ୟ । ବେଦାନ୍ତରେ ଆହୁରି କେତୋଟି ଅନୁରୂପ ବାଣୀ ସଂପର୍କରେ ବୁଝାଇ କହିଲେ ମତେ । ବଡ଼ ଅଦ୍ଭୁତ ତାଙ୍କର ପାଣ୍ଡିତ୍ୟ । ସତେଯେମିତି ବିଦ୍ୟାରେ ଏକ ବିରାଟ ସମୁଦ୍ର । ଖାଲି ଚକିତ ବିସ୍ମୟରେ ଚାହିଁ ରହିଥାଏ ତାଙ୍କ ମୁହଁକୁ । ଆବେଗର ପାଟଳିମାରେ ପରିଶୀଳିତ ସେଇ ସୌମ୍ୟ ମୁହଁକୁ । ଏମିତି କଥାବାର୍ତ୍ତାରେ ଯେ କେତେ ସମୟ ବିତିଗଲା ତାହା ଆଦୌ ଜାଣିପାରି ନ ଥିଲି । ସେ ମଧ୍ୟ ଜାଣିପାରି ନ ଥିଲେ ।

ଦାର୍ଶନିକତାରେ ଜର୍ଜରିତ ଏହି ବାତାବରଣ ଉପରେ ହଠାତ୍ ପାଣି ପଡ଼ିଗଲା ରାଜପ୍ରାସାଦର ମହାଦ୍ୱାରରେ ଥିବା ବିରାଟ ଘଣ୍ଟାର ମନ୍ଦ୍ର ଧ୍ୱନିରେ । ରାତ୍ରିର ପ୍ରଥମ ପ୍ରହରଟି ଶେଷ ହେବାର ସୂଚନା । ଚମକିପଡ଼ିଲୁ ଆମେ ଦୁହେଁ ।

''ଆରେ, ଏତେ ରାତି ହୋଇଗଲାଣି ।'' ଆମ ଦୁହିଁଙ୍କ କଣ୍ଠରୁ ଏକାବେଳେ ବାହାରୁଥିବା ଚକିତ ବାଣୀ ମିଶିଗଲା ଘଣ୍ଟା ଧ୍ୱନିରେ ମୂର୍ଚ୍ଛନା ସହିତ ।

ଅଶ୍ୱତ୍ଥାମା ବିଦାୟ ନେଲେ । ବକୁଳମଣ୍ଡପ ଛାଡ଼ି ମୁଁ ବି ଘରକୁ ଗଲି । ସେ ଦିନ ଆଉ ବାଣାଭ୍ୟାସ କରିପାରି ନ ଥିଲି ରାତିରେ । ଏକେ ତ ସମୟର ଅଭାବ । ଦ୍ୱିତୀୟରେ ଚିତ୍ତତଳେ ଉତ୍ତେଜନା ଓ ଭାବାବେଗର ପ୍ରବାହ ।

ରାତ୍ରି ଧୀରେ ଧୀରେ ଗଭୀରତର ହୋଇ ଉଠୁଥିଲା । ଗଙ୍ଗାତୀରରୁ ରହି ରହି ଭାସି ଆସୁଥିଲା କେଉଁ ଏକ ସାଥୀହୀନ ଚକୋରର କରୁଣ ଚିତ୍କାର !

## ଉଣେଇଶ

ଆଚାର୍ଯ୍ୟଙ୍କ ଶିକ୍ଷାୟତନରେ ଚାଲିଛି ମୋର ଷଷ୍ଠ ବର୍ଷ । ଏହା ପରେ ଶିକ୍ଷା ଶେଷ ହେବ । ଆମ୍ଭେମାନେ ନିଜ ନିଜ ଘରକୁ ଫେରିଯିବୁ ଯିଏ ଯାହାର ସାମର୍ଥ୍ୟ ଅନୁସାରେ ସଂସାରକ୍ଷେତ୍ରରେ ଲଢ଼ିବାପାଇଁ । ରାଜକୁମାରମାନେ ଫେରିଯିବେ ରାଜପ୍ରାସାଦକୁ ଐଶ୍ୱର୍ଯ୍ୟପୂର୍ଣ୍ଣ ପରିବେଶରେ ପହଁଚିବା ପାଇଁ । ଜୀବନର ସକଳ ସମ୍ଭୋଗକୁ ପ୍ରାଣ ମନ ଭରି ଉପଭୋଗ କରିବାପାଇଁ । ଆଉ ମୁଁ ଫେରିଯିବି ମୋ' ପିତୃଗୃହକୁ । ଚମ୍ପାପୁରୀ ବୋଲି ଅଜ୍ଞାତ — ଅଖ୍ୟାତ ଏକ ପଲ୍ଲୀଗ୍ରାମକୁ । ସେଠି ଲଢ଼ିବି ଦାରିଦ୍ର୍ୟ ସହିତ, ଅଭାବ ସହିତ, ଅନଟନ ସହିତ । ମୁଣ୍ଡ ଝାଳକୁ ତୁଣ୍ଡରେ ମାରି ଲଢ଼ିବି ଦିନରାତି । ଅଥବା ଯଦି ଭାଗ୍ୟବାନ୍ ଥାଏ, ତେବେ କୁରୁରାଜ୍ୟର କିମ୍ବା ଅନ୍ୟ କୌଣସି ରାଜ୍ୟର ସେନାବାହିନୀରେ ପାଇବି ନିଯୁକ୍ତି । କିନ୍ତୁ ମୋ' ଯୋଗ୍ୟତାକୁ ଚାହିଁ କୌଣସି ଅଧିକାରୀ ଭାବରେ ନୁହେଁ । ବରଂ ଜଣେ ସାଧାରଣ ସୈନିକ ଭାବରେ । ପଦାତିକ, ଅଶ୍ୱାରୋହୀ, ଗଜାରୋହୀ କିମ୍ବା ସେହିଭଳି କିଛି ଭାବରେ । ତାହା ମଧ୍ୟ ସନ୍ଦେହଜନକ, କାରଣ ଜନ୍ମ ମୋର ସୂତକୁଳରେ । ଆମ ସମାଜରେ ତ କୁଳର ବିଚାର ଆଗ । ସାମର୍ଥ୍ୟ କଥା ପଛ । ଏଇ ଦୀର୍ଘଦିନ ଧରି ଯେଉଁମାନଙ୍କ ସାଥିରେ ଥାଇ ପାଠ ପଢୁଥିଲି, ସେମାନଙ୍କ ଠାରୁ ଦୂରେଇଯିବି । ଖୁବ୍ ଦୂରେଇଯିବି । ଆମ୍ଭମାନଙ୍କ ମଧ୍ୟରେ ରହିବ ଯୋଜନ-ଯୋଜନ ଧରି ଦୂରତାର ବ୍ୟବଧାନ । ଆଉ ପୁଣି ଜୀବନରେ ସତୀର୍ଥମାନଙ୍କ ସହିତ କେବେ ଦେଖା ହେବ କି ନାହିଁ କେଜାଣି ? ଦେଖା ହେଲେ ସେମାନେ ମତେ ଚିହ୍ନିବେ କି ନାହିଁ କେଜାଣି ? ଏଇ ମିତ୍ର ଦୁର୍ଯ୍ୟୋଧନ ଯେତେବେଳେ ରାଜା ହେବେ, ସେତେବେଳେ କ'ଣ ତାଙ୍କ ପାଠପଢ଼ା ଦିନର ପରମ ମିତ୍ର କର୍ଣ୍ଣକୁ ଚିହ୍ନିବେ ? ତା'କୁ ଆଦରରେ ଆଲିଙ୍ଗନ କରିବେ ?

ଏହିସବୁ ଚିନ୍ତା ବେଳେବେଳେ ବ୍ୟଥିତ କରୁଥାଏ ମତେ । ଆହୁରି ବେଶି ବ୍ୟଥିତ କରୁଥାଏ ଗୁରୁଦେବଙ୍କ ଶେଷ ବାଣୀ ଯେତେବେଳେ ସେ ମତେ ମନା କରିଦେଇଥିଲେ ବ୍ରହ୍ମାସ୍ତ୍ରର ଜ୍ଞାନଟିକୁ ଦେବାପାଇଁ । ଅଥଚ ପୁତ୍ର ଅଶ୍ୱତ୍ଥାମାଙ୍କୁ ଓ ପ୍ରିୟ ଶିଷ୍ୟ ଅର୍ଜୁନଙ୍କୁ ଏହି ଜ୍ଞାନ ଦେଇଥିଲେ । ତାଙ୍କ ରୋକଠୋକ କଥା ହେଲା, ମୁଁ ସୂତପୁତ୍ର । ନୀଚକୁଳରେ ମୋର ଜନ୍ମ । ତେଣୁ ବ୍ରହ୍ମାସ୍ତ୍ର ଶିଖିବାର ଅଧିକାର ନାହିଁ । ହସ୍ତିନାପୁରରେ ଏହି ଜ୍ଞାନ କେବଳ ଭୀଷ୍ମଦେବ ହିଁ ପାଇଛନ୍ତି ପରଶୁରାମଙ୍କଠାରୁ । ଆଚାର୍ଯ୍ୟଙ୍କ ବ୍ରହ୍ମାସ୍ତ୍ର ସଂପର୍କରେ ଜ୍ଞାନଗୁରୁ ମଧ୍ୟ ସେହି ପରଶୁରାମ । ବହୁ ଅନୁରୋଧ, ବହୁ ପ୍ରାର୍ଥନା ପରେ ସେ ମତେ ଗୋଟିଏ ବାଟ ବତାଇଛନ୍ତି ତାହାର ପ୍ରାପ୍ତି ପାଇଁ । ପରଶୁରାମଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ହେବ । ସେଥିରେ ବି ଗୋଟିଏ ସର୍ତ୍ତ ଅଛି । ଅତୀତରେ ଥରେ ସ୍ୱୟଂ ନିଜେ ଶିଷ୍ୟ ଭୀଷ୍ମଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ସେ । ସେହିଦିନୁ ସେ ପଣ କରିଛନ୍ତି ବ୍ରାହ୍ମଣସନ୍ତାନ ଛଡ଼ା ଆଉ

କାହାକୁ ଅସ୍ତ୍ରଶିକ୍ଷା ଦେବେ ନାହିଁ ବୋଲି । କହିଛନ୍ତି ତାଙ୍କ ପାଖକୁ ଯାଇ ନିଜ ଭାଗ୍ୟପରୀକ୍ଷା କରିବା ନିମିତ୍ତ ।

ଭାବୁଥାଏ, ଆଚାର୍ଯ୍ୟଙ୍କର ଏ କଥା କହିବା, ନ କହିବା ସଙ୍ଗେ ସମାନ । ଖାଲି ଯାହା ନିଜ ମୁଣ୍ଡ ଉପରୁ ବୋଝଟାକୁ ଖଲାସ କରିଦେବାର ଉଦ୍ୟମ । ସେ ତ ଜାଣିଛନ୍ତି ମୁଁ ବ୍ରାହ୍ମଣ ନୁହେଁ ବୋଲି । ତା'ହେଲେ ମତେ ଯାଇ ପରଶୁରାମଙ୍କ ପାଖରେ ଭାଗ୍ୟ ପରୀକ୍ଷାଲାଗି ଠିଆହେବାକୁ ପରାମର୍ଶ ଦେବାର ଅର୍ଥ ବା କ'ଣ ? ଏହା ମଧ୍ୟ ଏକପ୍ରକାର ମନା କରିବା ସହିତ ସମାନ । କଥାଟାକୁ ସିଧାସଳଖ ନ କହି ବଙ୍କେଇ କରି କହିବାର ଭଙ୍ଗୀ ଯାହାକି ଏବେ ଚଳଣି ହୋଇଯାଇଛି ସମାଜରେ ।

ଅଥଚ ଆଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମା କେତେ ସରଳ ସତେ ! କେତେ ଶୁଦ୍ଧ ପବିତ୍ର ସତେ ! ସବୁଥିରେ ଶୁଦ୍ଧ । ଚିନ୍ତାରେ, କଥାରେ ଓ କର୍ମରେ । ପିତା ଓ ପୁତ୍ରଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ସିନା ! ଜଣେ ଖଳ ଖଳ ନିର୍ମଳ ନିର୍ଝରିଣୀର ଜଳ ହେଲେ ଅପରଜଣକ ଗୁରୁଗମ୍ଭୀର ମହାସମୁଦ୍ର ସମାନ । ଲବଣାକ୍ତ ଜଳରେ ଭରପୂର । ନିତାନ୍ତ ସାରହୀନ । ତୃଷା ମେଣ୍ଟାଇବା ପାଇଁ ସଂପୂର୍ଣ୍ଣ ଅଯୋଗ୍ୟ । ସେଇ ଅଶ୍ୱତ୍ଥାମାଙ୍କ ସାନ୍ନିଧ୍ୟ ମୋ'ପାଇଁ ଥିଲା ଅତ୍ୟନ୍ତ ସୁଖଦ । ତାହାହିଁ ବାରମ୍ବାର ଆଶା ଓ ଆତ୍ମବିଶ୍ୱାସର ଚାରାଗଛଟିକୁ ପାଣି ଦେଇ ବଞ୍ଚାଇ ରଖିଥିଲା ମୋ' ହୃଦୟରେ ।

ତା'ହେଲେ କ'ଣ ମୋର ବ୍ରହ୍ମାସ୍ତ୍ର ଶିଖିବାର ଅଭିଳାଷ ପୂର୍ଣ୍ଣ ହେବ ନାହିଁ ? ବ୍ୟଥିତ ହୃଦୟରେ ବାରମ୍ବାର ପ୍ରଶ୍ନ କରୁଥାଏ ମନକୁ । ସଂଧ୍ୟାପୂଜା ସମୟରେ ମୋ' ଆଦ୍ୟ ଗୁରୁ ସୂର୍ଯ୍ୟଦେବଙ୍କୁ ବି ପ୍ରଶ୍ନ କରୁଥାଏ । ମତେ ଲାଗୁଥାଏ, ସୂର୍ଯ୍ୟଦେବ ଯେମିତି ମତେ ବାରମ୍ବାର କହୁଥାନ୍ତି ହସି ହସି – ତୁମ ଅଭିଳାଷ ପୂର୍ଣ୍ଣ ହେବ ବତ୍ସ କର୍ଣ୍ଣ ! ନିଶ୍ଚୟ ପୂର୍ଣ୍ଣ ହେବ । କିନ୍ତୁ ଭାବୁଥାଏ ପରକ୍ଷଣରେ, ମୁଁ ତ ବ୍ରାହ୍ମଣ ନୁହେଁ । ତା'ହେଲେ କେମିତି ବା ହୋଇପାରିବି ପରଶୁରାମଙ୍କ ଶିଷ୍ୟ । କିଛି ଥଳକୂଳ ଦିଶୁ ନ ଥାଏ । ଏମିତି ଆଶା ନିରାଶାରେ କଟି ଯାଉଥାଏ ଦିନ ।

ଦିନେ ତରବର ହୋଇ ଯାଉଥାଏ ବିଦ୍ୟାୟତନକୁ । ସୂର୍ଯ୍ୟଦେବ ଉଇଁଆସୁଥାନ୍ତି । ରାସ୍ତାରେ ପଡୁଥିବା ବୃକ୍ଷମାନଙ୍କରେ ପକ୍ଷୀମାନଙ୍କ କଳରବ । କେଉଁଠି କେଉଁଠି ଖୋଲା ଜାଗା ଦେଖି କେତେକ ପକ୍ଷୀ ଖାଦ୍ୟ ସଂଗ୍ରହ କରୁଥାନ୍ତି । ଲଢ଼େଇ କରୁଥାନ୍ତି । ଉଡୁଥାନ୍ତି । ପୁଣି ବସୁଥାନ୍ତି । ସେମାନଙ୍କ ଶାବକମାନେ ଖଣ୍ଡିଉଡ଼ା ଦେଇ ଚାଲିଥାନ୍ତ ପଛେ ପଛେ । ବିଦ୍ୟାୟତନ ପାଖ ହୋଇଯିବାରେ ଗତି ମୋର ତୀବ୍ରତର ହୋଇ ଉଠୁଥାଏ ସ୍ୱାଭାବିକ ଭାବରେ । ମନେ ମନେ ଭାବୁଥାଏ, ମୁଁ ଗାଁକୁ ଯେଉଁ ସାତ ଦିନ ଚାଲିଯାଇଥିଲି ତାହା ଭିତରେ ଶିକ୍ଷାଦାନ ହୁଏତ ବହୁତ କିଛି ଯାଇଥିବ ଆଗେଇ । ତଥାପି କଠିନ ପରିଶ୍ରମ କରି ଏହା ଭିତରେ ସେଇ ଅଭାବ ଟିକକ ପୂରଣ କରିପାରିବି ବୋଲି ଥାଏ ଆତ୍ମବିଶ୍ୱାସ ।

ମାଆଙ୍କ ଦେହ ଭଲ ନ ଥିଲା । ଖବର ପାଇ ବାପା ମତେ ଗାଁକୁ ନେଇଯାଇଥିଲେ ସାଥିରେ ଆଚାର୍ଯ୍ୟଙ୍କ ଅନୁମତିରେ । ସେ ସୁସ୍ଥ ହୋଇଯିବା ପରେ ଏଇ ଆଜି ପାହାନ୍ତା ପହରରେ ହିଁ ହସ୍ତିନାପୁରରେ ଆସି ପହଞ୍ଚିଛି । ବାପା କହୁଥିଲେ ଆଜି ଦିନଟା ବିଶ୍ରାମ

ନେବାପାଇଁ । ମୁଁ କିନ୍ତୁ ମନା କଲି । କାରଣ ଦିନକର ବ୍ୟବଧାନ ବି ଅସ୍ତ୍ରଶିକ୍ଷା ପାଇଁ ବହୁତ କିଛି । ସାତଦିନର ବ୍ୟବଧାନ ପରେ ଆଉ ଅଧିକ ବ୍ୟବଧାନ ଚାହୁ ନ ଥିଲି ।

''ଆରେ, ମିତ୍ର କର୍ଣ୍ଣ ଯେ ! ଏତେ ତର ତର କାହିଁକି ? ରହ, ରହ । ମତେ ସାଙ୍ଗରେ ନିଅ ।'' ଚମକି ପଡ଼ିଲି ଏଇ ଡାକରେ ।

ଡାକଟି ଆସୁଥିଲା ଚଲାରାସ୍ତାଠାରୁ ଅଳ୍ପ ଦୂରରେ ଥିବା ଗୋଟିଏ ଘଞ୍ଚ ମଲ୍ଲୀବୁଦା ମୂଳରୁ । ଦେଖିଲି, ରାଜକୁମାର ଦୁର୍ଯ୍ୟୋଧନ ମୋ' ଆଡ଼କୁ ହସି ହସି ଆଗେଇ ଆସୁଛନ୍ତି । ଆଉ ବି ଦେଖିଲି, ରାଜପୁରୁଷ-ବେଶଧାରୀ କେହି ଜଣେ ମଲ୍ଲୀବୁଦା ମୂଳରୁ ବିପରୀତ ଦିଗରେ ଆଗେଇଲେ । ପୁଣି କିଛି ସମୟ ଛାଡ଼ି ଆଉ ଜଣେ ବ୍ୟକ୍ତି ଲୁଚି ଲୁଚି ତାଙ୍କ ପଛେ ପଛେ ଗଲେ । ମନେପଡ଼ିଲା ସେ ଦିନର ଅଶ୍ୱତ୍ଥାମାଙ୍କ କଥା । ଅନୁମାନ କରିନେଲି, ଏଇ ରାଜପୁରୁଷ ଜଣକ ଆଉ କେହି ନୁହନ୍ତି । ସ୍ୱୟଂ ମାତୁଳ ଶକୁନି । ଆଉ ଅପର ବ୍ୟକ୍ତି ଜଣକ ମହାମନ୍ତ୍ରୀଙ୍କ ଦ୍ୱାରା ପ୍ରେରିତ କୌରବ ଗୁପ୍ତଚର । ସେ ବିଷୟରେ ଆଉ ଅଧିକ କିଛି ମୁଣ୍ଡ ଖେଳାଇବା ପାଇଁ ସମୟ ନ ଥିଲା ମୋର । ଚାଲିବା ବାଟରେ କିଛି ସମୟ ପାଇଁ ଅଟକିଯାଇ ହସି ହସି ସ୍ୱାଗତ କଲି ଦୁର୍ଯ୍ୟୋଧନଙ୍କୁ ଓ କହିଲି, ''ଆସ ମିତ୍ର ଦୁର୍ଯ୍ୟୋଧନ, ଆସ । ମୁଁ ଠିଆ ହୋଇଛି ।''

ଏହା ଭିତରେ ଆମ ଦୁହିଁଙ୍କ ମଧ୍ୟରେ ମିତ୍ରତା ଗଢ଼ିଉଠିଥାଏ ଆହୁରି ଘନିଷ୍ଠତର ଭାବରେ ।

ସେ ପାଖକୁ ଆସିଲେ ଓ ମତେ ଆଲିଙ୍ଗନ କଲେ ଆଦରରେ । ଦୁହେଁ କଥାବାର୍ତ୍ତା ହୋଇ ଆଗେଇଲୁ ବିଦ୍ୟାୟତନ ଆଡ଼େ ।

ସେ ପଚାରିଲେ, ''ମିତ୍ର ! ଶୁଣିଲି, ତୁମ ମାଆଙ୍କ ଦେହ କୁଆଡ଼େ ଖରାପ ଥିଲା । ସେଥିପାଇଁ ତୁମେ ଗାଁକୁ ଯାଇଥିଲ । ଅଧିରଥ କକା ମଧ୍ୟ ଯାଇଥିଲେ ।''

''ହଁ, ସତ କଥା ! ଆମେ ଯାଇଥିଲୁ । ସାତ ଦିନ ପରେ ଏଇତ ଆଜି ପାହାନ୍ତା ପହରରେ ଆସି ହସ୍ତିନାପୁରରେ ପହଞ୍ଚିଛୁ ।''

''ମାଆଙ୍କ ଦେହ କେମିତି ଅଛି ?''

''ଭଲ ମିତ୍ର । ସେ ସୁସ୍ଥ ହେବା ପରେ ହିଁ ଆମକୁ ଫେରିବାକୁ ପଡ଼ିଲା ।''

''ତୁମ ଗାଁର ଆଉ ସବୁ ଖବର କ'ଣ ? ସବୁ କୁଶଳ-ମଙ୍ଗଳ ତ ?''

''ହଁ, ସବୁ କୁଶଳ-ମଙ୍ଗଳ ମିତ୍ର ।''

କିଛି ସମୟ ନୀରବ ରହିବା ପରେ ସେ ମୁହଁ ଖୋଲିଲେ, ''ମିତ୍ର ! ତୁମେ ତ ନ ଥିଲ ସାତଦିନ ଧରି । ଏହାରି ଭିତରେ ବଡ଼ କିଛି ଗୋଟାଏ ଘଟଣା ଘଟିଗଲା ।'' ତାଙ୍କ କଣ୍ଠସ୍ୱର ଗମ୍ଭୀର ହୋଇଉଠୁଥିଲା ଧୀରେ ଧୀରେ ।

''କ'ଣ ସେ ଘଟଣା ?'' ମୋର ସତୃଷ୍ଣ ପ୍ରଶ୍ନ । ଉଦଗ୍ର ଆଗ୍ରହ ।

''ଏଇ ନିଷାଦ ଏକଲବ୍ୟ କଥା । ଯେଉଁ ଏକଲବ୍ୟ ଆଜିକୁ ପ୍ରାୟ ଚାରିବର୍ଷ ତଳେ ଆଚାର୍ଯ୍ୟଙ୍କ ଶିକ୍ଷାୟତନକୁ ଆସିଥିଲା ଅସ୍ତ୍ରଶିକ୍ଷା ପାଇବା ଉଦ୍ଦେଶ୍ୟରେ ।''

"ଆଉ ଆଚାର୍ଯ୍ୟ ତା'କୁ ଶିଷ୍ୟ ରୂପେ ଗ୍ରହଣ କରିବା ପାଇଁ ମନା କରିଦେଇଥିଲେ । ସେଇ ଏକଲବ୍ୟ ନା ?" ଅତୀତର ସେଇ ଘଟଣାଟିକୁ ମନେପକାଇ କହିଲି ତା'ର ଅସ୍ତ୍ରଶିକ୍ଷା ପାଇବାପାଇଁ ଆତୁର ପ୍ରାର୍ଥନା । ଆଚାର୍ଯ୍ୟଙ୍କ ଘୃଣାଭରା ଓ ତାଚ୍ଛଲ୍ୟପୂର୍ଣ୍ଣ କଥା । ଶେଷରେ ବ୍ୟଥାତୁର ହୃଦୟ ଧରି ତା'ର ନିରାଶ ହୋଇ ଫେରିଯିବା କଥା । ସବୁ କିଛି ମନେପଡ଼ିଗଲା ମୋର । ଆଉ ମନେ ବି ପଡ଼ିଲା ଆଚାର୍ଯ୍ୟଙ୍କୁ ଗୁରୁ ବୋଲି ଗ୍ରହଣ କରିସାରିଛି ଓ ଆଉ କାହାଙ୍କୁ ଗୁରୁ ଭାବରେ ମାନିବ ନାହିଁ ବୋଲି ତା'ର ଶେଷ କଥା । ସେଇ ଶେଷ କଥା କେଇପଦରେ ଯେଉଁ ଆତ୍ମବିଶ୍ୱାସ, ଛଳ ଛଳ ହୋଇ ଉଠୁଥିଲା, ତାହା ବି ମନେପଡ଼ିଲା ।

"ହଁ, ସେଇ ଏକଲବ୍ୟ ।" ଦୁର୍ଯ୍ୟୋଧନ ମୋ' ପ୍ରତିପ୍ରଶ୍ନର ଉତ୍ତର ଦେଇ କହିଲେ ।

"କ'ଣ ହେଲା ତା'ର ?" କୌତୂହଳ ମୋର ଧୀରେ ଧୀରେ ବଢ଼ିଉଠୁଥିଲା । ଏଇ ଚାରି ବର୍ଷ ମଧ୍ୟରେ କ'ଣ କରିପାରିଛି ସେ ଜାଣିବାପାଇଁ ହୋଇଉଠୁଥିଲି ଉତ୍ସାହୀ ।

"ଘୋର ଅନ୍ୟାୟ । ଘୋର ଅନ୍ୟାୟ କରିଛନ୍ତି ତା'ପ୍ରତି ଆଚାର୍ଯ୍ୟ । ବ୍ରାହ୍ମଣ ହୋଇ ତାଙ୍କ ପକ୍ଷରେ ଏଭଳି ନୃଶଂସତା ଶୋଭା ପାଏନା ।"

"ହେ ମିତ୍ର । ମୁଁ ଜାଣେନା ଆଚାର୍ଯ୍ୟ କ'ଣ କହିଛନ୍ତି । ଆମ ପକ୍ଷରେ କିନ୍ତୁ ତାଙ୍କର ଦୋଷ ବାଛିବା ଉଚିତ ନୁହେଁ । କାରଣ ଆମେ ତାଙ୍କର ଶିଷ୍ୟ । ଛତ୍ର ଭଳି ସମସ୍ତ ଦୋଷ ତାଙ୍କର ରଖିବୁ ଘୋଡ଼ାଇ । ତା'ହେଲେ ହେବୁ ଛାତ୍ର ।" ମୋର ରାଜକୁମାର ଦୁର୍ଯ୍ୟୋଧନଙ୍କୁ ଉପଦେଶ ଦେବାଟା ଥିଲା ଧୃଷ୍ଟତା । କେବଳ ମିତ୍ର ହିସାବରେ ପରାମର୍ଶ ଦେବାକୁ ଯାଇ ଏତକ କହିଦେଲି । ତାହା ପରେ ପଚାରିଲି, "ଆଚ୍ଛା ମିତ୍ର, କହ ତ କ'ଣ କଲେ ଆଚାର୍ଯ୍ୟ ?"

"କ'ଣ ଆଉ ନ କଲେ ?"

"କହନା ମିତ୍ର କ'ଣ କଲେ ?" କଣ୍ଠସ୍ୱରରେ ମୋର ଅଧୈର୍ଯ୍ୟର ସନ୍ତରଣ । ଦୁର୍ଯ୍ୟୋଧନଙ୍କ ଏଇ ଦୀର୍ଘ ଭୂମିକା ମୋ' କୌତୂହଳକୁ ବଢ଼ାଇ ଦେଉଥିଲା ବହୁଗୁଣରେ ।

"ତା'ହେଲେ ଶୁଣ ମିତ୍ର ! ଏଇ ତିନିଦିନ ତଳର କଥା ।" ଏହା କହି ଘଟଣାଟିକୁ ଆମୂଳଚୂଳ ବର୍ଣ୍ଣନା କଲେ ସେ ।

ଏଇ ତିନିଦିନ ତଳେ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ରାଜକୁମାରମାନେ ନିଷାଦରାଜ୍ୟର ଘଞ୍ଚ ଅରଣ୍ୟକୁ ଯାଆନ୍ତି ଶିକାର କରି । ଦୁଇଟି ଉଦ୍ଦେଶ୍ୟ ଥାଏ ଆଚାର୍ଯ୍ୟଙ୍କର ଏଇ ଶିକାର କାର୍ଯ୍ୟକ୍ରମରେ । ପ୍ରଥମେ ରାଜକୁମାରମାନଙ୍କ ତୀର ସନ୍ଧାନର ସଫଳତା ପରୀକ୍ଷା କରାଯିବ । ଦ୍ୱିତୀୟରେ ପଶୁପକ୍ଷୀମାନଙ୍କ ରକ୍ତଲିପ୍ତ ଦେହ ଦେଖି ସେମାନଙ୍କ ମନରୁ ରକ୍ତର ଭୟ ଦୂର ହୋଇଯିବ । ତା'ହେଲେ ଭବିଷ୍ୟତରେ ପ୍ରକୃତ ରଣକ୍ଷେତ୍ରରେ ରକ୍ତ ଦେଖି ଭୟ କରିବେ ନାହିଁ । ଯୁଦ୍ଧ କଲା ବେଳେ ବୀରତା ସହିତ ଯେଉଁ ନିଷ୍ଠୁରତା ଆବଶ୍ୟକ, ତାହା ସେମାନଙ୍କର ବିକଶିତ ହେବ । ତେଣୁ ମଝିରେ ମଝିରେ ଆଚାର୍ଯ୍ୟ ଶିକାରର ଏଭଳି କାର୍ଯ୍ୟକ୍ରମମାନ ନେଇଥାନ୍ତି ହାତକୁ । ସେ ଦିନର ସେହି ଶିକାରକୁ ସମସ୍ତ କୌରବ ଓ ପାଣ୍ଡବ ରାଜକୁମାର ଯାଆନ୍ତି । ସମସ୍ତେ ଧନୁର୍ବାଣ, କୁନ୍ତ, ଶୂଳ, ଖଡ଼୍‌ଗ ଆଦି ଅସ୍ତ୍ରଶସ୍ତ୍ରରେ

ସଜ୍ଜିତ । ସାଥିରେ ଯାଆନ୍ତି ଯଥାସଂଖ୍ୟକ ଅନୁଚର ଓ ବାଦ୍ୟକାର । କେତେକ ଶିକାରୀ କୁକୁର ବି ଯାଇଥାନ୍ତି । ବାଦ୍ୟନାଦରେ ପଶୁମାନଙ୍କୁ ଘଉଡ଼ାଇ ଆଣିବାକୁ ହୁଏ ଏକ ନିର୍ଦ୍ଦିଷ୍ଟ ଜାଗାକୁ ଶିକାରର ସୁବିଧା ଲାଗି । ତାହା ପରେ ରାଜକୁମାରମାନେ କରନ୍ତି ଶିକାର । କେତେବେଳେ ବାଣ ବିନ୍ଧି ତ ଆଉ କେତେବେଳେ ଶୂଳ, କୁନ୍ତ ଆଦି ନିକ୍ଷେପ କରି । ଶିକାର ହିଂସ୍ର ହୋଇଥିଲେ ତା'ର ମୁହାଁମୁହିଁ ହୋଇ ଖଡ଼୍‌ଗାଘାତରେ ବି ତା'କୁ ମାରନ୍ତି । ସବା ପଛରେ ଆସୁଥାଏ ଜଣେ ସେବକ । ସାଥିରେ ତା'ର ଗୋଟିଏ ପୋଷାକୁକୁର । କ'ଣ ଦେଖିଲା କେଜାଣି ସେ ଭୋ ଭୋ କରି ଭୁକିଉଠିଲା ଓ ଗୋଟିଏ ନିର୍ଦ୍ଦିଷ୍ଟ ଦିଗକୁ ଧାଇଁବାକୁ ଲାଗିଲା । କିନ୍ତୁ ଆଗକୁ ଗୋଟିଏ ଦୁଇଟି ପାଦ ଯାଇଛି କି ନାହିଁ, ହଠାତ୍ ତା'ର ଭୁକିବା ବନ୍ଦ ହୋଇଗଲା ଓ ସଙ୍ଗେ ସଙ୍ଗେ ସେବକଜଣକ ପାଖକୁ ଧାଇଁ ଫେରିଆସିଲା । ଆଶ୍ଚର୍ଯ୍ୟ ହୋଇଗଲା ସେବକ । କୁକୁରଟିର ମୁହଁକୁ ସୂଚୀବାଣରେ ବିନ୍ଧି କିଏ ବନ୍ଦ କରିଦେଇଛି । କିଛି ବୁଝି ନ ପାରି ସେ ଯାଇ ଆଚାର୍ଯ୍ୟଙ୍କୁ ନିବେଦନ କଲା । କୁକୁରଟିର ଏଭଳି ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ସେ । ତାକୁ ପରୀକ୍ଷା କରି କହିଲେ, "ଆରେ, ଏତ ସୂଚୀବାଣ ? ଏଠି ନିଷାଦରାଜ୍ୟରେ କିଏ ପୁଣି ଜାଣିଛି ସୂଚୀବାଣର ପ୍ରୟୋଗ ? କିଏ ତା'ର ଶିକ୍ଷାଗୁରୁ ?"

ରାଜକୁମାରମାନେ ମଧ୍ୟ ଆଶ୍ଚର୍ଯ୍ୟଚକିତ । ଅର୍ଜୁନଙ୍କର ଏକାକୀ ସୂଚୀବାଣର ଜ୍ଞାନ ଅଛି ବୋଲି ଯେଉଁ ଗର୍ବ ଥିଲା, ତାହା ଏବେ ଖର୍ବ । ବୀରତ୍ୱର ଅଭିମାନ ମିଳାଇଗଲା ପାଣିଫୋଟକା ପରି । ସେ ଲାଜରଙ୍ଗା ମୁହଁଟିକୁ କରିନେଲେ ତଳକୁ ।

ଆଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ତାଙ୍କ ସହିତ ମିଶି ସମସ୍ତେ ଖୋଜିବାକୁ ଲାଗନ୍ତି ସୂଚୀବାଣର ପ୍ରହାରକାରୀକୁ ଅରଣ୍ୟର ଆଖପାଖ ଅଞ୍ଚଳରେ । ଶେଷରେ ପାଆନ୍ତି କୃଷ୍ଣକାୟ ବଳିଷ୍ଠବପୁ ଏକଲବ୍ୟକୁ । ନବୀନ ଯୁବକ । କୈଶୋର ଅତିକ୍ରମ କରି ଯୌବନରେ ଏଇ ମାତ୍ର ପାଦ ଦେଇଛି । ବ୍ୟାଘ୍ରଚର୍ମର ଅଙ୍ଗବାସ । ଆଚାର୍ଯ୍ୟ ଭାବିଲେ, ଏହାର ଏଇ ଅପୂର୍ବ ରୂପଟିକୁ ଦେଖି କୁକୁରଟି ଭୁକିଉଠିଥିଲା ହୁଏତ । ଆହୁରି ଆଗେଇ ଆସିଲେ ପାଖକୁ । ଦେଖିଲେ, ଯୁବକଟି ବସିଛି ଧ୍ୟାନମଗ୍ନ ହୋଇ ଗୋଟିଏ ବଟବୃକ୍ଷର ଛାୟାଶୀତଳ ଭୂମିରେ ପଦ୍ମାସନ ବିଛାଇଦେଇ । ତା'ର ଡାହାଣପଟେ ରଖାଯାଇଛି ଧନୁର୍ବାଣ । ଆଗରେ କୋଟର ମଧ୍ୟରେ ସ୍ଥାପିତ ଗୋଟିଏ ମୂର୍ତ୍ତି । ନିରେଖି ଚାହିଁଲେ । ଆଶ୍ଚର୍ଯ୍ୟ ହୋଇଗଲେ ମୂର୍ତ୍ତିଟିକୁ ଦେଖି । ସମସ୍ତ ଶିଷ୍ୟ ମଧ୍ୟ ଆଶ୍ଚର୍ଯ୍ୟ-ଚକିତ । ଏଇଟି ଥିଲା ତାଙ୍କ ନିଜ ପ୍ରତିମୂର୍ତ୍ତି ।

ସମସ୍ତଙ୍କର ପରସ୍ପରକୁ ପ୍ରଶ୍ନ, "କିଏ ଏହି ଯୁବକ ? ଯେ କେମିତି ପୂଜା କରୁଛି ଆମ ଆଚାର୍ଯ୍ୟଙ୍କୁ ? ଯେ କ'ଣ ଆଚାର୍ଯ୍ୟଙ୍କ ଶିଷ୍ୟ ? ଯଦି ଶିଷ୍ୟ ହେଲା, ତେବେ କେତେବେଳେ ? କେଉଁଦିନଠାରୁ ?"

କାହାରି ତୁଣ୍ଡରେ ଉତ୍ତର ନାହିଁ । କେବଳ ଯାହା ରହି ରହି ଆସୁଥିବା ବନ୍ୟ ପଶୁପକ୍ଷୀମାନଙ୍କ ଚିତ୍କାର ଭାଙ୍ଗି ଦେଉଥାଏ ଅରଣ୍ୟର ନିର୍ଜନତାକୁ । ଦ୍ରୋଣାଚାର୍ଯ୍ୟଙ୍କ

ମୁହଁକୁ ଚାହିଁଥାନ୍ତି ସମସ୍ତେ ପ୍ରଶ୍ନିଳ ଆଖିରେ । ସେ ମଧ୍ୟ ନୀରବ-ବିମୂଢ଼ । କପାଳରେ ତାଙ୍କର ଚିନ୍ତାର ଭାଙ୍ଗ ।

ଏଇ ପାଟିତୁଣ୍ଡରେ ଯୁବକଟିର ଧ୍ୟାନ ଭାଙ୍ଗିଗଲା । ସେ ଚାହିଁଲା ଆଖି ଖୋଲି । ଦେଖିଲା, ଶିଷ୍ୟମାନଙ୍କ ଗହଣରେ ତା' ଆଗରେ ଠିଆ ହୋଇଛନ୍ତି ଗୁରୁଦେବ ଦ୍ରୋଣାଚାର୍ଯ୍ୟ ନିଜେ । ଚକିତ ସୁଖରେ ମୁହଁ ତା'ର ଉଜଳି ଉଠୁଥିବା ଭଳି ଲାଗୁଥାଏ । ସେ ହଠାତ୍ ଉଠିଯାଇ ସାଷ୍ଟାଙ୍ଗ ପ୍ରଣାମ କଲା ଆଚାର୍ଯ୍ୟଙ୍କୁ । ଭକ୍ତିର ଉତ୍ତରଳ ଧାରା ତା'ର ହୃଦୟ, ମନ ଓ ପ୍ରତିଟି ଅଙ୍ଗପ୍ରତ୍ୟଙ୍ଗକୁ ଧୋଇଦେଇ ଯାଉଥାଏ ଯେମିତି । ଭକ୍ତି- ଗଦ୍‌ଗଦ କଣ୍ଠରେ କହିଲା, ''ଏଇ ଗରିବ ଶିଷ୍ୟଟିର ପ୍ରଣାମ ଗ୍ରହଣ କରନ୍ତୁ ଗୁରୁଦେବ ।''

''ତୁମେ କେବେଠାରୁ ମୋର ଶିଷ୍ୟ ହେଲ ? କେବେ ତୁମକୁ ଗ୍ରହଣ କରିଥିଲି ଶିଷ୍ୟଭାବରେ ?'' ଆଚାର୍ଯ୍ୟଙ୍କ ବିସ୍ମୟଭରା ପ୍ରଶ୍ନ ।

''ଆଜିକୁ ପ୍ରାୟ ଚାରି ବର୍ଷ ତଳେ ।''

''କାହିଁ, ମୋର ତ ତୁମକୁ ଶିଷ୍ୟ ଭାବରେ ଗ୍ରହଣ କରିଥିବା କଥା ମନେପଡୁ ନାହିଁ । ଚାରିବର୍ଷ ତଳେ ତ ମୁଁ ଥିଲି ହସ୍ତିନାପୁରର ରାଜକୁମାରମାନଙ୍କ ଆଚାର୍ଯ୍ୟ । ଆଉ ଏବେ ବି ଅଛି ।'' ବିସ୍ମୟ ଆହୁରି ବଢ଼ିଉଠୁଥାଏ । ଏହା ଭିତରେ ସେ ଯୁବକଟିକୁ ଉଠିବା ପାଇଁ କହିଥାନ୍ତି । ସେ ଆଦେଶ ମାନି ଉଠିପଡ଼ି ଆଚାର୍ଯ୍ୟଙ୍କ ଆଗରେ ହାତ ଯୋଡ଼ି ଠିଆ ହୋଇଥାଏ ଓ ତାଙ୍କୁ ପାଖରେ ଥିବା ଗୋଟିଏ ପଥର-ଆସନରେ ନେଇ ବସାଇଥାଏ ।

''ସେହି ହସ୍ତିନାପୁର କଥା କହୁଛି ଆଚାର୍ଯ୍ୟ । ମୁଁ ସେତେବେଳେ ଆପଣଙ୍କ ପାଖକୁ ଯାଇଥିଲି ଅସ୍ତ୍ରବିଦ୍ୟା ଶିଖିବାର ଇଚ୍ଛା ନେଇ । ଶିଷ୍ୟ ହେବାପାଇଁ ପ୍ରାର୍ଥନା କରିଥିଲି । ଆପଣ ଶିଷ୍ୟ ବୋଲି ମତେ ଗ୍ରହଣ କରିବାକୁ ମନା କରିଦେଇଥିଲେ । ନିରାଶ ହୋଇ ଫେରିଆସିଥିଲି । ମନେ ମନେ କିନ୍ତୁ ଆପଣଙ୍କୁ ଗୁରୁ ବୋଲି ଗ୍ରହଣ କରିସାରିଥିଲି ସେତେବେଳକୁ ।''

''ତୁମ ନାଁ ଏକ...'' ଆଚାର୍ଯ୍ୟ କିଛିଟା କଷ୍ଟରେ ପୂର୍ବ କଥାକୁ ମନେ ପକାଇ କହିଲେ । କିନ୍ତୁ ଯୁବକଟିର ନାଁ ତାଙ୍କର ମନେ ନ ପଡ଼ିବାରୁ ଅଧାରୁ ଅଟକିଗଲେ ।

''ଏକଲବ୍ୟ ।'' ବିନୟୀ କଣ୍ଠରେ ନିଜ ନାଁଟିକୁ ପ୍ରକାଶ କଲା ଯୁବକଟି । କୃତଜ୍ଞତାରେ ପରିସ୍ନାତ ମୁହଁ । ଆଚାର୍ଯ୍ୟ ତା' ନାଁର କିଛି ଅଂଶ ତ ମନେ ରଖିଛନ୍ତି । କୃତକୃତ୍ୟ ସେ ସେଇଥିରେ ।

''ହଁ, ମନେ ପଡ଼ିଲା । ଏକଲବ୍ୟ । ଏକଲବ୍ୟ । ତୁମେ ଏକଲବ୍ୟ । ଜନ୍ମ ତୁମର ନିଷାଦକୁଳରେ ।'' ଅତୀତର ସେଇ ଘଟଣାଟି ସଂପୂର୍ଣ୍ଣ ଭାବରେ ତାଙ୍କ ଆଖି ଆଗରେ ନାଚିଉଠିଲା ଯେମିତି । ସେ ପୁଣି ପଚାରିଲେ, ''ଆଚ୍ଛା, ଏକଲବ୍ୟ ! ତୁମେ କ'ଣ ଏଇ କୁକୁରକୁ ସୂଚୀବାଣ ମାରିଥିଲ ?''

''ହଁ, ପ୍ରଭୋ !''

''କାହିଁକି ?''

''ମୁଁ ଗୁରୁଦେବଙ୍କ ପାଦପୂଜା କରୁଥିବା ସମୟରେ ସେ ଭୁକିଲା । ମୋ' ପୂଜାରେ ବାଧା ଦେଲା । ତେଣୁ ତା'କୁ ନ ମାରି ତା' ମୁହଁଟାକୁ ସୂଚୀବାଣରେ ସିଇଁଦେଲି ମାତ୍ର ।''

''ଆଚ୍ଛା, ଏଇ ବାଣ ବିଷୟରେ ଶିକ୍ଷା କଲ କେଉଁ ଗୁରୁଙ୍କଠାରୁ ?''

''ଆପଣଙ୍କଠାରୁ ଗୁରୁଦେବ । ଥରେ ତ ଆପଣଙ୍କୁ ଗୁରୁ ବୋଲି ମାନିନେଇଛି । ଆଉ ଦ୍ୱିତୀୟ ଗୁରୁ କରିଥାନ୍ତି ବା କେମିତି ?''

''ମୋ'ଠାରୁ ? ମତେ ପାଇଲ କେମିତି ?'' ଆଚାର୍ଯ୍ୟ ଛନ୍ଦି ହୋଇଯାଉଥାନ୍ତି ଯେମିତି ଅଧିକରୁ ଅଧିକ ବିସ୍ମୟ-ଜାଲରେ । ମୋହିତ ହୋଇଯାଉଥାନ୍ତି ସ୍ୱପ୍ନର କୁହୁକରେ !

''କାହିଁକି ? ଗୁରୁଦେବ ତ ସର୍ବଦା ମୋ' ନିକଟରେ । ମୋ' ଅନ୍ତର ଭିତରେ । ଆଉ ଏଇ ସେଠି ବି ।'' ଶେଷ ପଦଟି କହି ତର୍ଜନୀ ନିର୍ଦ୍ଦେଶ କଲା ସେ ବଟବୃକ୍ଷର କୋଟର ମଧ୍ୟରେ ସ୍ଥାପିତ ଆଚାର୍ଯ୍ୟଙ୍କ ମୂର୍ତ୍ତିଟି ପ୍ରତି ।

ଏଥରକ ସବୁ କଥା ପରିଷ୍କାର ହୋଇଗଲା ଆଚାର୍ଯ୍ୟଙ୍କ ନିକଟରେ । ତା'ହେଲେ ଏକଲବ୍ୟ ତାଙ୍କରି ମୂର୍ତ୍ତି ଆଗରେ ସାଧନା କରି ଏଭଳି ସିଦ୍ଧି ପାଇଛି । ନିରଳସ ଉଦ୍ୟମ ଓ ଅଭ୍ୟାସ । ଆଉ ତା'ର ମନର ଦୃଢ଼ତା । ପୁଣି ତାହା ଉପରେ ଗଭୀର ଆତ୍ମବିଶ୍ୱାସ । ଏହିସବୁ ମିଶି ଆଣିଦେଇଛି ତା'କୁ ଏଭଳି ସିଦ୍ଧି । ତାଙ୍କ ନିଜ ପ୍ରତିମୂର୍ତ୍ତିଟି ତା'ର ଆତ୍ମବଳ ବଢ଼ାଇବାରେ ସାହାଯ୍ୟ କରିଛି ମାତ୍ର । କିନ୍ତୁ ତା'ର ଗୁରୁ ସେଇ ହିଁ ନିଜେ । ଆନନ୍ଦ ଓ ବିସ୍ମୟରେ ବିଚଳିତ ଆଚାର୍ଯ୍ୟ ।

ସୂଚୀବାଣରେ ବିଦ୍ଧ ହୋଇଥିବା କୁକୁରଟି ଯେ ବ୍ୟଥାରେ ଅଧୀର ହୋଇ ଉଠୁଥିଲା ଓ ଖାଲି ଅସ୍ପଷ୍ଟ ଦୂରରେ କୁଁ କୁଁ କରୁଥିଲା ଏ କଥା ସମସ୍ତେ ଭୁଲିଯାଇଥିଲେ ଇତି ମଧ୍ୟରେ । ସମସ୍ତେ ଯେମିତି ଏକଲବ୍ୟର କାହାଣୀ ଶୁଣି ହୋଇଉଠିଥିଲେ ମନ୍ତ୍ରମୁଗ୍ଧ । ହତଚକିତ !! କୁକୁରଟି ଆଡ଼େ ଆଖି ପଡ଼ିବା ମାତ୍ରେ ତା'ର ଅବସ୍ଥା ଦେଖି ସେବକକୁ ଆଦେଶ ଦେଲେ ଆଚାର୍ଯ୍ୟ, ''ୟାର ସୂଚୀବାଣ ଗୁଡ଼ିକୁ କାଢ଼ି ଦିଆଯାଉ ।''

ସେବକ ଜଣକ ଆଗେଇଲା ବାଣଗୁଡ଼ିକୁ କାଢ଼ିଦେବା ଉଦ୍ଦେଶ୍ୟରେ । ତା'କୁ ବାରଣ କରି କହିଲା ଏକଲବ୍ୟ, ''ରହ, ମୁଁ ଏଇ ମୁହୂର୍ତ୍ତରେ କାଢ଼ିଦେଉଛି ବାଣଗୁଡ଼ିକୁ ।''

ତାହା ପରେ ସେ ଛାଡ଼ିଲା ବିସୂଚୀବାଣ । ସଙ୍ଗେ ସଙ୍ଗେ ସୂଚୀବାଣଗୁଡ଼ିକ ଗଲା ବାହାରି । କୁକୁରଟିର ଲାଙ୍ଗୁଳ ହଲାଇ କୁଁ କୁଁ ଶବ୍ଦ ବେଦନାର ଉପଶାନ୍ତିରେ କୃତଜ୍ଞତାର ସ୍ୱୀକାର ।

''ତୁମେ ତା'ହେଲେ ବିସୂଚୀବାଣର ପ୍ରୟୋଗ ବି ଜାଣିଛ !'' ଆଚାର୍ଯ୍ୟଙ୍କର ଆହୁରି ଅଧିକ ବିସ୍ମୟଭରା ମନ୍ତବ୍ୟ ! ଅବହେଳିତ ଶିଷ୍ୟର ସିଦ୍ଧିରେ ଆଖି ଦୁଇଟିରେ ତାଙ୍କର ଆନନ୍ଦର ଝଲକ ! ହୁଏତ ଭାବୁଛନ୍ତି ସେ – ଯେତେହେଲେ ବି ଏକଲବ୍ୟ ତାଙ୍କରି ଶିଷ୍ୟ ତ !

"ହଁ, ଆଚାର୍ଯ୍ୟ ! ଜାଣିଛି । ସବୁ କିଛି ଆପଣଙ୍କ ପ୍ରସାଦରୁ ।" ଲାଜକୁଳୀ ଲତାଟି ଭଳି ଏକଲବ୍ୟ ଅଧିକରୁ ଅଧିକ ନଇଁ ଯାଉଥିଲା ବିନୟରେ ।

ଆଚାର୍ଯ୍ୟଙ୍କ ସହିତ ସମସ୍ତଙ୍କ ମୁହଁରେ ଚକିତ-ବିସ୍ମୟର ଖେଳ କେବଳ ଅର୍ଜୁନଙ୍କ ଛଡ଼ା । ତାଙ୍କ ମୁହଁ ଝାଉଁଳି ପଡ଼ିଥାଏ ଶିଶିରଧୁଆ ପଦ୍ମଫୁଲଟି ଭଳି । ଅଥବା ଠିକ୍ ଯେମିତି କଳା କାଠ । ଆଚାର୍ଯ୍ୟ ଲକ୍ଷ୍ୟ କରିପାରିଲେ ଏ କଥା । ଜାଣି ବି ପାରିଲେ ଏହାର କାରଣ । କାରଣ ଆଉ କିଛି ନୁହେଁ, କେବଳ ଈର୍ଷା । ଅର୍ଜୁନ ଏକଲବ୍ୟ ପ୍ରତି ଈର୍ଷାଳୁ ହୋଇଉଠିଛନ୍ତି । ତାକୁ ବିଚାରୁଛନ୍ତି ଜଣେ ପ୍ରତିଦ୍ୱନ୍ଦ୍ୱୀ ଭାବରେ । କିଛି ସମୟ ଚିନ୍ତା କରି କହିଲେ ଆଚାର୍ଯ୍ୟ, "ବାବୁ ଏକଲବ୍ୟ ! ତୁମେ ମୋର ଶିଷ୍ୟ, ମୋ' ଅଲକ୍ଷ୍ୟରେ ହେଉ ପଛକେ ।"

"ଏ କଥା ଆଉ ପଚାରିବାକୁ ଅଛି ଗୁରୁଦେବ ? ଆପଣଙ୍କ ଛଡ଼ା ଆଉ କାହାଙ୍କ ଶିଷ୍ୟ ନୁହେଁ ମୁଁ । ଆପଣ ହିଁ ମୋର ଗୁରୁ । ଆପଣ ହିଁ ମୋର ଆଚାର୍ଯ୍ୟ । ବାପା-ମାଆ ସବୁ କିଛି ।"

"ତୁମର ଶିକ୍ଷା ପୂର୍ଣ୍ଣାଙ୍ଗ ହୋଇ ନାହିଁ; କାରଣ ଗୁରୁଦକ୍ଷିଣା ଏ ପର୍ଯ୍ୟନ୍ତ ଦେଇ ନାହଁ ।" ସ୍ୱର ତାଙ୍କର ଗମ୍ଭୀର ଠିକ୍ ସମୁଦ୍ର ଭଳି । କେତେ ଉଞ୍ଚା ଜୁଆର କୂଳକୁ କେମିତି ଆଘାତ କରିବ ଅଜଣା ।

"ମାନୁଛି ଗୁରୁଦେବ । ଗୁରୁଦକ୍ଷିଣା ଦେଇ ନାହିଁ । କହନ୍ତୁ କ'ଣ ଦେବି ଦକ୍ଷିଣା ? ପ୍ରାଣପର୍ଯ୍ୟନ୍ତ ବି ଦକ୍ଷିଣା ହିସାବରେ ଆପଣଙ୍କୁ ଟେକିଦେଇପାରେ ।" ଏକଲବ୍ୟର ସହଜ-ସରଳ ଓ ଅକୃତ୍ରିମ କଣ୍ଠସ୍ୱର । ଏଥିରେ ଅବିଶ୍ୱାସ କରିବାର ନ ଥିଲା କିଛି । ତଥାପି ଆଚାର୍ଯ୍ୟ ଦୃଢ଼ନିଶ୍ଚୟ ହେବା ଉଦ୍ଦେଶ୍ୟରେ ପୁଣି ପଚାରିଲେ, "ଭାବିଚିନ୍ତି ଦେଖ । ଦେଇପାରିବ ତ ? ଅତି ମୂଲ୍ୟବାନ୍ ସେ ଦକ୍ଷିଣା ।"

"କହିଲି ପରା, ପ୍ରାଣ ପର୍ଯ୍ୟନ୍ତ ବି ଦେଇପାରିବି । ତାହାଠାରୁ କ'ଣ ଆଉ କିଛି ଅଧିକ ଦାମିକା ଜିନିଷ ଥାଇପାରେ ?" କଥାରେ ତା'ର ଗଭୀର ଆତ୍ମବିଶ୍ୱାସର ଝଲକ । ଗୁରୁଭକ୍ତିରେ ପରିସ୍ନାତ ।

"ତୁମ ଡାହାଣହାତର ବୁଢ଼ାଆଙ୍ଗୁଠି । ତାହାହିଁ ଗୁରୁଦକ୍ଷିଣା ହିସାବରେ ଚାହେ । ଦେଇପାରିବ ?" କ୍ଷଣକ ପୂର୍ବର ଗମ୍ଭୀର ସମୁଦ୍ର ଏବେ ଗର୍ଜିଉଠିଲା ଫଣା ଟେକି । ତୀବ୍ର ବିଷାକ୍ତ ଫୁତ୍କାର !

ହସି ହସି ଉତ୍ତର ଦେଲା ଏକଲବ୍ୟ, "କାହିଁକି ନୁହେଁ ? ଏଇ ଦେଉଛି ।" ଅତି ନିର୍ବିକାର କଣ୍ଠର ଭାଷା । ଅତି ପ୍ରସନ୍ନ ମୁଖର ଶୋଭା । ସତେ ଯେମିତି ହୃଦୟ-ମନରେ ଥିବା ପ୍ରସନ୍ନତାର ଅବିକଳ ପ୍ରତିବିମ୍ବ । ସମସ୍ତେ ବିସ୍ମିତ । ଆଚାର୍ଯ୍ୟ ମଧ୍ୟ । ଅବନତ ଶିର ଟେକି ଅର୍ଜୁନ ବି ଚାହିଁଲେ ତା' ଆଡ଼େ । ତାଙ୍କ ମୁଖରେ ବି ବିସ୍ମୟ ଓ ଦ୍ୱନ୍ଦ୍ୱର ଏକ ମିଶ୍ରିତ ଝଲକ । କି ଉଦାର, କି ମହାନ୍ ସତେ ଏ ଏକଲବ୍ୟ ! କି ଯେ ତା'ର ଗୁରୁଭକ୍ତିର ପରାକାଷ୍ଠା ! ଭାବୁଥାନ୍ତି ସମସ୍ତେ ।

ପରେ ପରେ ସେ ତୀକ୍ଷ୍ଣ ଛୁରୀଟିରେ ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳିଟି କାଟିଦେଲା ଓ ତାହାକୁ ଶାଳପତ୍ରରେ ରଖି ଆଚାର୍ଯ୍ୟଙ୍କ ପାଦତଳେ ନିବେଦନ କଲା ।

''ସାଧୁ, ସାଧୁ ଏକଲବ୍ୟ । ସାଧୁ । ଏ ଗୁରୁଭକ୍ତି ତୁମର ଅମର ହୋଇ ରହିବ ।'' ପ୍ରସନ୍ନ ମୁଖରେ ଆଶୀର୍ବାଦ ଦେଇ କହିଲେ ଆଚାର୍ଯ୍ୟ । ସେଠାରେ ସମବେତ ଶିଷ୍ୟଗଣ ଓ ସେବକଗଣ ସ୍ତମ୍ଭିତ-ଚକିତ ହୋଇ ଚାହିଁ ରହିଥାନ୍ତି ଏ ଦୃଶ୍ୟକୁ ।

ମିତ୍ର ଦୁର୍ଯ୍ୟୋଧନଙ୍କର ଏହି କଥା ଶୁଣି ମନେ ମନେ ଭାବୁଥାଏ, ଆଗମୀ ଦିନର ଇତିହାସ କାଳର ଚକ୍ରବାଳ-ସୀମାରେ ଥାଇ ଏଇ ମହନୀୟ ତ୍ୟାଗର ମହିମାକୁ ଯେମିତି ଉଦ୍‌ଘୋଷଣା କରୁଛି ବଜ୍ରନିନାଦ ସ୍ୱରରେ । ଆଚାର୍ଯ୍ୟ କୂଟ-କପଟ କରି ଛଳନାର ଖେଳ ଖେଳିଲେ । ଗୁରୁଭକ୍ତିର ଦ୍ୱାହି ଦେଲେ । ଖର୍ବ କରିଦେଲେ ଏକଲବ୍ୟର ବୀରତ୍ୱକୁ । କିନ୍ତୁ ସତରେ କ'ଣ ସେ ପାରିଲେ ତା'ର ବୀର୍ଯ୍ୟକୁ ଖର୍ବ କରି ? ସତରେ କ'ଣ ତାକୁ ମ୍ରିୟମାଣ କରିଦେଇପାରିଲେ ପ୍ରିୟ ଶିଷ୍ୟ ଅର୍ଜୁନଙ୍କ ଆଗରେ ? ଚିରଦେଦୀପ୍ୟପାନ ସୂର୍ଯ୍ୟଙ୍କଠାରୁ ମୁଠା ମୁଠା କରି କେତେ ମୁଠା କିରଣ ଚାଲିଗଲେ ଜ୍ୟୋତି କ'ଣ ତାଙ୍କର ମଳିନ ପଡ଼ିଯିବ ? ମୋର ବିଶ୍ୱାସ, ଶାଶ୍ୱତ ଦୀପ୍ତିର ପୁଞ୍ଜୀଭୂତ ବିଗ୍ରହ ଧରି ନିଷାଦପୁତ୍ର ଏକଲବ୍ୟ ରହିବ ଅମର ହୋଇ । ଆଉ ଚିରଦିନ ଉପହାସ କରୁଥିବ ନିହିତ ସ୍ୱାର୍ଥର ବିଷାକ୍ତ ଆଘାତକୁ ।

କାହାଣୀଟି ଶେଷ କରିଦେଇ ଦୁର୍ଯ୍ୟୋଧନ ମତେ ପୁଣି କହିଲେ, ''ଜାଣିଲ ମିତ୍ର କର୍ଣ୍ଣ, ଆଚାର୍ଯ୍ୟ କାହିଁକି ଏପରି କଲେ ?''

''କଥାଟା ତ ପରିଷ୍କାର ଜଣାପଡୁଛି । ନିଜ ପ୍ରିୟ ଶିଷ୍ୟ ଅର୍ଜୁନଙ୍କୁ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ବୀର ଭାବରେ ଠିଆ କରାଇବାର ଇଚ୍ଛା ରଖି ସେ ଏହା କରିଛନ୍ତି ।'' ସ୍ପଷ୍ଟ ଭାବରେ କହିଦେଲି ।

''ମୁଁ କିନ୍ତୁ ତାହା କରିବାକୁ ଦେବି ନାହିଁ । ମୁଁ ଚାହେ, ତୁମେ ତାଙ୍କର ଉପଯୁକ୍ତ ପ୍ରତିଦ୍ୱନ୍ଦ୍ୱୀ ହୁଅ ।'' ମତେ ଉତ୍ସାହ ଦେବାକୁ ଯାଇ କହିଲେ ସେ ।

''କିନ୍ତୁ ତାହା କଣ ସମ୍ଭବ ? ଆଚାର୍ଯ୍ୟଙ୍କର ଅର୍ଜୁନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଆଶୀର୍ବାଦ । ବେଳେବେଳେ ଜାଣିହୁଏ ନା ସେ କାହାଙ୍କୁ ଶ୍ରେଷ୍ଠ ବୀରରୂପେ ଗଢ଼ିବାକୁ ଚାହାନ୍ତି ? ନିଜ ପ୍ରିୟ ପୁତ୍ର ଅଶ୍ୱତ୍ଥାମାଙ୍କୁ ନା ପ୍ରିୟ ଶିଷ୍ୟ ଅର୍ଜୁନଙ୍କୁ ।'' ମୋ' କଣ୍ଠର ଭାଷାରେ ଆଶା ଓ ନିରାଶାର ଦ୍ୱନ୍ଦ୍ୱ । ଅର୍ଜୁନଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବାର ଇଚ୍ଛା ଥିଲେ ବି ତାହା ସମ୍ଭବ ହେଲା ଭଳି ଲାଗୁ ନ ଥାଏ । ନୀଚକୁଳରେ ଜନ୍ମକୁ ନେଇ ଥିବା ପାହାଡ଼ଟି ଗୁରୁ ବାଧା ଦେଉଥାଏ ସେଇ ଇଚ୍ଛା ନଦୀର ସ୍ୱଚ୍ଛନ୍ଦ ପ୍ରବାହକୁ ।

''ମୋ' ଭଳି ମିତ୍ରଙ୍କର ସେଥିପାଇଁ ସଦିଚ୍ଛା ଅଛି ତୁମ ପ୍ରତି । ଆମେ ବି ଭଗବାନ୍‌ଙ୍କୁ ପ୍ରାର୍ଥନା କରୁଛୁ ତୁମ ଲାଗି । ତାହାର କ'ଣ କିଛି ମୂଲ୍ୟ ନାହିଁ ?''

''ଅଛି ମିତ୍ର, ଅଛି । ଅବଶ୍ୟ ଅଛି । ଭଗବାନ୍‌ଙ୍କ ଆଶୀର୍ବାଦରେ ସବୁ କିଛି ସମ୍ଭବ । ମୁଁ ଚେଷ୍ଟା କରିବ ମୋ' ପୌରୁଷ ମାଧ୍ୟମରେ ଦୈବକୁ ବଦଳାଇ ଦେବାପାଇଁ । କିନ୍ତୁ ଫଳ ଭଗବାନ୍‌ଙ୍କ ହାତରେ ।''

"ତୁମ ତୁଣ୍ଡ ସୁତୁଣ୍ଡ ହେଉ ମିତ୍ର ।" ସେ ପୁଣି ଉତ୍ସାହ ଦେଇ କହିଲେ । ବାସ୍ତବରେ ଅକୃତ୍ରିମ ଶ୍ରଦ୍ଧା ତାଙ୍କର ମୋ'ପ୍ରତି ।

ସେତେବେଳକୁ ଆମେ ଚାଲି ଚାଲି ପହଞ୍ଚିଯାଇଥିଲୁ ବିଦ୍ୟାୟତନର ପରିସର ମଧ୍ୟରେ । ଆପେ ଆପେ ବନ୍ଦ ହୋଇଗଲା ଆମ କଥାବାର୍ତ୍ତା ଉଷାର ଆଗମନରେ ନିଶାର ଅଭିସାର ବନ୍ଦ ହୋଇଗଲା ଭଳି ।

## କୋଡ଼ିଏ

ନିଶାଚର ପକ୍ଷୀ ଡେଣା ଫଡ଼ ଫଡ଼ କରି ଉଠିଯାଏ ଛପିଛପିକା ଗତିରେ ସମସ୍ତଙ୍କ ଅଲକ୍ଷ୍ୟରେ । କେବଳ ଜାଗ୍ରତ ଲୋକ କେଇଜଣ ଯାହା ଶୁଣିପାରନ୍ତି ସେଇ ଶବ୍ଦ । ଜହ୍ନରାତି ହୋଇଥିଲେ ଯଦି କେହି ଶୂନ୍ୟ ଆକାଶକୁ ଚାହିଁଥାଏ, ତେବେ ସେ ଦେଖିପାରେ ସେ ପକ୍ଷୀକୁ ଓ ଶୁଣି ବି ପାରେ ତାହାର ଶବ୍ଦକୁ । ଅଥଚ ସମୟର ପକ୍ଷୀ । କେତେବେଳେ ଯେ ସେ ନିଃଶବ୍ଦରେ ଉଡ଼ି ଚାଲିଯାଏ, କେହି ଜାଣିପାରନ୍ତି ନାହିଁ । ଦିନଟିଏ, ମାସଟିଏ ଅଥବା ବର୍ଷଟିଏ ହେଲେ ଜାଣିପାରନ୍ତି । କିନ୍ତୁ ସେତେବେଳେ ପକ୍ଷୀଟି ଯାଇ କାହିଁ କେଉଁ ଦୂର ଚକ୍ରବାଳରେ ହୋଇଯାଏ ବିଲୀନ । ବଡ଼ ଅଦ୍ଭୁତ ଓ ବିଚିତ୍ର ତାହାର ଗତି । ସେହି ସମୟର ପକ୍ଷୀଟି ଯେ ଆମ ସମସ୍ତଙ୍କର ଅଲକ୍ଷ୍ୟରେ ଉଡ଼ିଯାଇ ଆମକୁ ନେଇ ଅସ୍ତ୍ରଶିକ୍ଷାର ଶେଷ ଷଷ୍ଠ ବର୍ଷର ମଧ୍ୟଭାଗରେ ପହଞ୍ଚାଇ ଦେଇଥିଲା, ତାହା ଆମେ ଜାଣିପାରି ନ ଥିଲୁ । ଖାଲି ସ୍ୱପ୍ନ ଦେଖିଲା ଭଳି ଲାଗୁଥାଏ ଏତେଗୁଡ଼ାଏ ସମୟ ।

ସେଦିନ ସମୟ ଅପରାହ୍ନ । ସୂର୍ଯ୍ୟକିରଣ ମଉଳି ମଉଳି ଆସୁଥାଏ । ଶୀତଦିନରେ ଶୀତୁଆ ଦେହକୁ ଭାରି ଭଲ ଲାଗୁଥାଏ । ମୋ' କୋଠରିର ଛୋଟ ଗବାକ୍ଷଟି ଦେଇ ତିର୍ଯ୍ୟକ୍ କିରଣ ପଡୁଥାଏ ଶେଯ ଉପରେ । ସୂର୍ଯ୍ୟକିରଣ ଆଡ଼କୁ ପିଠିକରି ବସିଥାଏ ମୁଁ । ସେ ଦିନ କୌଣସି କାରଣରୁ ଶିକ୍ଷାୟତନର ଅବକାଶ ଥାଏ । ତେଣୁ ନିଜ କୋଠରିରେ ରହିଥାଏ । ପ୍ରାୟ ସାରା ଦିନ ନିଜେ ନିଜେ ଅଧ୍ୟୟନରତ । ଅବକାଶର ଟିକିଏ ସୁଯୋଗ ପାଇ ହାଲୁକା ମନ ନେଇ ବସିଥାଏ ଶେଯରେ । ମନଟା କାହିଁକି ବେଳେବେଳେ ଉଦାସିଆ-ଉଦାସିଆ ଲାଗୁଥାଏ । ଏକ ବିଚିତ୍ର ଅନୁଭୂତି ମୋର ଥାଏ ଏ ସଂପର୍କରେ । ପ୍ରାୟ ପ୍ରତିଟି ଥର ଉଦାସୀ ଥିଲା ବେଳେ ମୋର ଅଶ୍ୱତ୍ଥାମା କିମ୍ବା ଦୁର୍ଯ୍ୟୋଧନଙ୍କ ମଧ୍ୟରୁ ଜଣେ କୌଣସି ମିତ୍ରଙ୍କ ସହିତ ହୁଏ ଭେଟ । ତାଙ୍କ ସହିତ ଆଳାପ ଆଲୋଚନା କରେ । ଆଶା-ଭରସା ପାଏ । ଉତ୍ସାହ ପାଏ । ମନର ଉଦାସ-ଭାବଟା କଟିଯାଏ । ମନ ପୁଣି ହୋଇଯାଏ ପ୍ରସନ୍ନ ।

ସେଦିନ ସେମିତି ଭାବୁଥିଲି – ଆଜି ଦୁହିଁଙ୍କ ମଧ୍ୟରୁ ଜଣେ କାହାଙ୍କ ସହିତ ଭେଟ ହୋଇଯିବ ବୋଧହୁଏ । ବ୍ୟତିକ୍ରମ ହେବ ନାହିଁ ।

ଭାବନା ମୋର ସରିଛି କି ନାହିଁ କୋଠରିର ପାହାଚରେ ଶୁଣିପାରିଲି କାହାର ପଦଧ୍ୱନି । କଠୋର ଶବ୍ଦରୁ ଜାଣିପାରିଲି ଆଉ କେହି ନୁହନ୍ତି ଯେ । ନିଜେ ମିତ୍ର

ଅଶ୍ୱତ୍‌ଥାମା । ଶେଯରୁ ହଠାତ୍ ଉଠିପଡ଼ିଲି ଓ ଘର ଭିତରୁ ସ୍ୱାଗତ ସଂବର୍ଦ୍ଧନା କରି ଡାକିଲି, ‘‘ଆସ ମିତ୍ର ଅଶ୍ୱତ୍‌ଥାମା, ଆସ । ତୁମକୁ ସ୍ୱାଗତ କରୁଛି ।’’

‘‘ଖାଲି କଥାରେ କଥାରେ ସ୍ୱାଗତ-ସଂବର୍ଦ୍ଧନା । ମୁଁ କେବଳ ମିତ୍ର ନୁହେଁ । ଜଣେ ବ୍ରାହ୍ମଣ ଅତିଥି ବି । କ’ଣ ମଧୁପର୍କ ଦେଇ ଅତିଥିସତ୍କାର କରିବ ନାହିଁ ?’’ ସେ ପରିହାସ କରି କହିଲେ ବାହାରୁ ବାହାରୁ । ଭାରି ମିଠା ପରିହାସ । ଆଦୌ ନାହିଁ କୃତ୍ରିମତା ଅଥବା ଛଳନା । ଏକାନ୍ତ ହୃଦ୍ୟ । ଅତ୍ୟନ୍ତ ସ୍ୱାଦ୍ୟ । ମୁହଁ ଯେମିତି ପ୍ରସନ୍ନ ଚିତ୍ତ ବି ଠିକ୍ ସେମିତି ନିର୍ମଳ । ଅଳକାନନ୍ଦାର ନିର୍ମଳ ଜଳଧାର ଯେମିତି ।

ସେତେବେଳକୁ ମୁଁ ଦ୍ୱାରଦେଶକୁ ଚାଲିଆସିଥିଲି । ତାଙ୍କୁ ଆଦରରେ ଆଲିଙ୍ଗନ କରି ଘର ଭିତରକୁ ନେଇଗଲି ଓ କହିଲି, ‘‘ସେ ସୌଭାଗ୍ୟ ଦରିଦ୍ର କର୍ଣ୍ଣର କାହିଁ ? ସେ ଯେ ସୂତପୁତ୍ର ।’’

ସେ ଶେଯରେ ମୋ’ ସାଥିରେ ବସୁ ବସୁ କହିଲେ, ‘‘ଏ କଥା କେବେହେଲେ କହିବ ନାହିଁ ମିତ୍ର କର୍ଣ୍ଣ । ତୁମେ ଦରିଦ୍ର ନୁହଁ । ଅତି ଧନୀ ତୁମେ । ଅତି ହିଁ ଐଶ୍ୱର୍ଯ୍ୟବାନ୍ । ହୃଦୟ ତୁମର ଅତି ବିଶାଳ ଓ ଉଦାର । ତୁମଠାରେ ଏଇ ଯେଉଁ ଐଶ୍ୱର୍ଯ୍ୟ ଭରପୂର ଅଛି, ଅନେକ ବଡ଼ ବଡ଼ ରାଜାମହାରାଜାଙ୍କର ତାହା ନାହିଁ ।’’ ତାଙ୍କ ଉତ୍ସାହପୂର୍ଣ୍ଣ କଥା ଛୋଟ କୋଠରିଟିର ପ୍ରତିଟି କୋଣ-ଅନୁକୋଣକୁ ଗୁଞ୍ଜରିତ କରିଦେଲା । ବାସ୍ତବିକ, ସେ ସର୍ବଦା ହିଁ ମତେ ଏହିଭଳି ଉତ୍ସାହ ଦେଇଥାନ୍ତି । ଏହିଭଳି ମୋ’ ପୌରୁଷର ସୁପ୍ତ ସିଂହଟିକୁ ଜଗାଇ ଦେଇଥାନ୍ତି ।

ସେ ତାହା ପରେ କହିଲେ, ‘‘ତୁମେ ଏଇ ସୂତକୁଳରେ ଜନ୍ମ କଥା ଏତେ ଭାବୁଛ କାହିଁକି ? ଏତେ କହୁଛ କାହିଁକି ? ସେଥିପାଇଁ ଏତେ ବିଚଳିତ କାହିଁକି ? ଏତେ ଲଜ୍ଜିତ ବା କାହିଁକି ?’’

‘‘ସମାଜର ମୋ’ ପ୍ରତି ଯେଉଁ ବ୍ୟବହାର, ଏପରିକି ଏଇ ବିଦ୍ୟାୟତନରେ ବି, ସେ କଥା କ’ଣ ଲକ୍ଷ୍ୟ କରିପାରୁ ନାହଁ ମିତ୍ର ?’’ ମୋର ଅଭିଯୋଗଭରା କଟାକ୍ଷ ।

‘‘ହଁ, ଦେଖିପାରୁଛି । ବୁଝିପାରୁଛି । ତାହା କିନ୍ତୁ ଠିକ୍ ନୁହେଁ । ସେଥିପାଇଁ ଗଭୀର ଭାବରେ ବ୍ୟଥିତ ମୁଁ ।’’

‘‘ଖାଲି ଦୁଃଖ କଲେ ତ ମୋ’ ଦୁଃଖ ସରିଯିବ ନାହିଁ । ହୀନମ୍ମନ୍ୟତାରୁ ମୁକ୍ତି ମିଳିବ ନାହିଁ ମତେ । ଚିରଦିନ ରହିଯିବ ମୋର ପରିଚୟ ସୂତପୁତ୍ର କର୍ଣ୍ଣ ବୋଲି ।’’ କଣ୍ଠସ୍ୱର ମୋର ଧୀରେ ଧୀରେ ଗଦ୍‌ଗଦ ହୋଇଉଠୁଥିଲା ଭାବପ୍ରବଣତାରେ । କିଏ ଦୋଷୀ ? ବିଧାତା ନା କୁଳ ନା ସମାଜ ନା ଆଉ କେହି କିଛି ଠିକ୍ କରିପାରୁ ନ ଥିଲି । ଆଖିରେ ଯିଏ ପଡୁଥିଲା, ତା’କୁ ହିଁ ଦୋଷ ଦେଉଥିଲି ।

‘‘ତୁମର କିନ୍ତୁ ଏଇ ଗୋଟିଏ ପରିଚୟ ପୂର୍ଣ୍ଣାଙ୍ଗ ନୁହେଁ ।’’

‘‘କ’ଣ ତୁମେ କହିବାକୁ ଚାହ ମିତ୍ର ?’’ ମୋର ପ୍ରତିପ୍ରଶ୍ନ ।

"ତୁମର ଆଉ ଏକ ବିଶେଷ ପରିଚୟ ଅଛି ଯେଉଁ କଥା ତୁମେ ବି ବାରମ୍ବାର କହିଥାଅ । ଅଥଚ ଆଜି ଭୁଲିଯାଉଛ ।"

"ମାନେ ?" କିଛି ବୁଝି ନ ପାରି ତାଙ୍କ ଆଡ଼େ ଚାହିଁଲି ସୋତ୍କଣ୍ଠ ଦୃଷ୍ଟିରେ ।

"ପୌରୁଷ । ଏହା ତୁମର ବିଶେଷ ପରିଚୟ । ସମସ୍ତଙ୍କର ବି ସେଇ ଦୁଇଟି ପରିଚୟ— କୁଳ ଓ ପୌରୁଷ । ପୌରୁଷ ହିଁ ମଣିଷର ଦୋଷ-ଗୁଣ ବିଚାରିବାର ପ୍ରକୃତ ମାପକାଠି ।" ସେ ଧୀରେ ଧୀରେ ଗମ୍ଭୀର ହୋଇ ଉଠୁଥିଲେ । ତାଙ୍କ ସ୍ୱାଭାବିକ ଦାର୍ଶନିକ ପ୍ରବୃତ୍ତି ଉଠୁଥିଲା ଚେଇଁ । ପ୍ରକୃତରେ ଦର୍ଶନର କଥା କହିଲାବେଳେ ସେ ଦେଖାଯାଆନ୍ତି ଭାରି ଶାନ୍ତ-ସୁନ୍ଦର । ସେ ଦିନ ବି ସେମିତି ଦିଶୁଥିଲେ ।

ସେ ଆହୁରି ବୁଝାଇ କହିଲେ, "ଜନ୍ମରୁ ଜଣେ ଥାଏ ଶୂଦ୍ର । ସଂସ୍କାର କର୍ମ ହେଲେ ଯାଇ ହୁଏ ଦ୍ୱିଜ । ବେଦପାଠ କଲେ ହୁଏ ବିପ୍ର । ଆଉ ବ୍ରହ୍ମଜ୍ଞାନ ପାଇଲେ ଯାଇ ହୁଏ ବ୍ରାହ୍ମଣ । ସମସ୍ତ ବ୍ରାହ୍ମଣପୁତ୍ର ଯେ ବ୍ରାହ୍ମଣ ହୋଇପାରିବେ ସେଥିରେ କିଛି ଠିକ୍ ନାହିଁ । କ୍ଷତ୍ରିୟ, ବୈଶ୍ୟ ଆଦି ସବୁ ବର୍ଣ୍ଣର ଲୋକଙ୍କ ପାଇଁ ମଧ୍ୟ ଏହି ନିୟମ ପ୍ରଯୁଜ୍ୟ । ଶୂଦ୍ର ବି କର୍ମବଳରେ କ୍ଷତ୍ରିୟ, ବ୍ରାହ୍ମଣ ସବୁ କିଛି ହୋଇପାରିବେ । ତେଣୁ କୁଳକୁ ନେଇ ବଡ଼-ସାନର ବିଚାର ହେବା ଆଦୌ ଉଚିତ ନୁହେଁ ।

"ବୁଝିଛି ମିତ୍ର ଅଶ୍ୱତ୍ଥାମା । ସବୁ ବୁଝିଛି । ଏହା ଖାଲି ଶାସ୍ତ୍ରର କଥା ସିନା । କିନ୍ତୁ କାର୍ଯ୍ୟରେ କ'ଣ କରାଯାଉଛି ? ସେଦିନ ପରା ଏକଲବ୍ୟକୁ ତା'ର ଦକ୍ଷିଣହସ୍ତର ବୃଦ୍ଧାଙ୍ଗୁଳିକୁ ହରାଇବାକୁ ପଡ଼ିଲା ଖାଲି ଗୋଟିଏ କାରଣରୁ । ତା'ର ଜନ୍ମ ନିଷାଦ-କୁଳରେ । ସେ ତେଣୁ ଜଣେ ବିଶିଷ୍ଟ ବୀର ହେବାର ଅଧିକାରୀ ହେବାପାଇଁ ଅଯୋଗ୍ୟ ।" ମୋର ଅଭିଯୋଗ ଆହୁରି ଦୃଢ଼ତର ହୋଇଉଠୁଥିଲା । ଆଖିକଣରେ ଅଗ୍ନିର ସ୍ଫୁଲିଙ୍ଗ ! ସଂବେଗରେ ଥରିଉଠୁଥିଲି ।

"ଶାନ୍ତ ହୁଅ ମିତ୍ର, ଶାନ୍ତ ହୁଅ । କିଏ କ'ଣ କଲା ବା ନ କଲା ସେଥିରେ ବିଚଳିତ ହୁଅନା । ବରଂ ନିଜ କର୍ତ୍ତବ୍ୟ କରିଯାଅ । କେଉଁଟା ଠିକ୍ କଥା ତାହା ନିଜେ ଜାଣିନିଅ ।" ସେ ସାନ୍ତ୍ୱନା ଦେଇ କହିଲେ ।

ତାହା ପରେ ତାଙ୍କ କଣ୍ଠରୁ ନିଃସୃତ ହେବାକୁ ଲାଗିଲା ଅବାରିତ ଦାର୍ଶନିକ ଚିନ୍ତାଧାରାର ସ୍ରୋତ । ବେଦାନ୍ତ-ବାଣୀରେ ଶାଶ୍ୱତ ମାନବୀୟ ଚେତନାର ଝଙ୍କାର । 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' । ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ଅଛି ସର୍ବତ୍ର ବ୍ରହ୍ମଙ୍କର ସମାନ ଭାବରେ ସ୍ଫୁରଣ । ତେଣୁ ବଡ଼ ବା କିଏ ? ଅଥବା ସାନ ବା କିଏ ? ସମସ୍ତେ ତ ସମାନ । ମଣିଷ-ମଣିଷ ମଧ୍ୟରେ ସମାନତା ଦେଖିବା ପୂର୍ଣ୍ଣାଙ୍ଗ ଜ୍ଞାନ । ଅସମାନତା ଦେଖିବା ଆଂଶିକ ଜ୍ଞାନ । ଖାଲି ତ ଆଂଶିକ ଜ୍ଞାନ ନୁହେଁ, ମୂର୍ଖତା । କେବଳ ହିଁ ମୂର୍ଖତା ।

ସେ ଦୋହରାଇଲେ ଆଉ ଏକ ବେଦାନ୍ତ ବାଣୀ— 'ଯସ୍ତୁ ସର୍ବାଣି ଭୂତାନି ଆତ୍ମନ୍ୟେବା ନୁପଶ୍ୟତି/ସର୍ବଭୂତେଷ୍ଟୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ' । ସକଳ ଜୀବଙ୍କୁ ନିଜଠାରେ

ଦେଖିବାକୁ ହେବ । ପୁଣି ସକଳ ଜୀବଙ୍କଠାରେ ନିଜକୁ ଦେଖିବାକୁ ହେବ । ଏଭଳି ଦେଖିଲେ ମଣିଷର ଆଉ କାହାରି ପ୍ରତି ଘୃଣାଭାବ ରହିବ ନାହିଁ । ସେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବ । ସେତେବେଳେ ସାନ-ବଡ଼ର ବିଚାର ତା' ମନରୁ ଆପେ ଆପେ ଯିବ ଦୂରେଇ ।

କଥା କହୁ କହୁ ଭାବାବେଗରେ ଆଖିଦୁଇଟି ତାଙ୍କର ବୁଜି ହୋଇଯାଉଥାଏ । ଝର ଝର ହୋଇ ବହିଯାଉଥାଏ ଲୁହର ଧାରା । ସାରା ବିଶ୍ୱର ମଙ୍ଗଳ ଆକାଙ୍‌କ୍ଷା କରି ଲୁହ ବହିଯାଉଥାଏ ଯେମିତି ।

ପରିବେଶର ଗୁରୁତ୍ୱକୁ ଲାଘବ କରିବାକୁ ଚାହିଁ ମୁଁ ସହଜ ପ୍ରଶ୍ନଟିଏ ପଚାରିଲି, ''ଏ ତ ଗଲା ଦର୍ଶନର ବାଣୀ । ଆମ ଏଠାକାର ଖବର ସବୁ କ'ଣ ?''

ତାଙ୍କ ଦାର୍ଶନିକତାର ସ୍ୱପ୍ନ ହଠାତ୍ ଗଲା ଭାଜି । ସେ ପୁଣି ଫେରିଆସିଲେ ପୂର୍ବାବସ୍ଥାକୁ । ମୁଖମଣ୍ଡଳରେ ଝଟକିଉଠିଲା ଶିଶୁସୁଲଭ ସରଳତା । ଆଉ ଅପରାଧବୋଧ ବି ।

ସେ କହିଲେ, ''ଦେଖିଲ ମିତ୍ର, ମୁଁ ଆସିଥିଲି ଗୋଟିଏ କଥା କହିବାକୁ । ଗୋଟିଏ ଖବର ଦେବାକୁ । ଅଥଚ କହିବସିଲି ଆଉ ଗୋଟିଏ କଥା ।''

ବାସ୍ତବିକ ଅନେକ ସମୟରେ ତାଙ୍କର ହୋଇଥାଏ ଏଭଳି ଅବସ୍ଥା । ମାଟି-ଗୋଡ଼ିର ସଂସାରରେ ଥାଇ ମଧ୍ୟ ସେ ଥାଆନ୍ତି ତାହାର ଊର୍ଦ୍ଧ୍ୱରେ — ବହୁତ ଊର୍ଦ୍ଧ୍ୱରେ । କ୍ଷଣଭଙ୍ଗୁର ତନୁଟି ଧରିଥିଲେ ବି ନିରତ ପହଁରୁଥାନ୍ତି ଊର୍ଦ୍ଧ୍ୱଚେତନାର କଳ କଳ ଛଳ ଛଳ ଶାଶ୍ୱତ ଧାରାରେ । ଧରଣୀର ଧୂଳି ବୋଳି ହୋଇଥାନ୍ତି ଦେହସାରା । ଅଥଚ ବିଚରଣ କରୁଥାନ୍ତି ସ୍ୱର୍ଗରେ । ବଡ଼ ବିଚିତ୍ର ଯେ ଅଶ୍ୱତ୍ଥାମା । ମହାଜ୍ଞାନୀ ଅଶ୍ୱତ୍ଥାମା । ଭରଦ୍ୱାଜ ଋଷିଙ୍କ ପୌତ୍ର ବ୍ରହ୍ମବାଦୀ ଅଶ୍ୱତ୍ଥାମା ।

ସେ ସହଜ ହୋଇ ଉଠିଥିଲେ ମୋ' ପ୍ରଶ୍ନରେ । ଫେରିଆସିଥିଲେ ଧରଣୀର ଧୂଳିକୁ । କହିଲେ, ''ତୁମେ ଜାଣିଛ ନା ମିତ୍ର ଭୀମସେନଙ୍କ କଥା ?''

''କେଉଁ କଥା ମିତ୍ର ?'' ପ୍ରଶ୍ନ ମୋର ସତୃଷ୍ଣ ।

'' ସେ ହଜିଯାଇଥିଲେ କାଲି ସନ୍ଧ୍ୟାବେଳଠାରୁ । କଥାଟାକୁ ଗୁପ୍ତ ରଖାଯାଇଥିଲା । ପିତାଙ୍କ ଆଦେଶରେ ଆମେ ରାତିସାରା ତାଙ୍କୁ ଖୁବ୍ ଖୋଜା-ଖୋଜି କଲୁ । ସେ କିନ୍ତୁ ଆପେ ଆପେ ଆସି ଆଜି ପୂର୍ବାହ୍ନରେ ଦେଖାଦେଇଛନ୍ତି ବିଦ୍ୟାଳୟରେ । ସମସ୍ତେ ସେଥିପାଇଁ ଆଶ୍ୱସ୍ତ ।''

ଭୀମସେନ ପିଲା ନୁହନ୍ତି । କୈଶୋର ଅତିକ୍ରମ କରିସାରିଛନ୍ତି । ଯୌବନର ଦେହଳିରେ ପାଦ ଦେଇଛନ୍ତି । ପୁଣ ମହାବୀର ସେ । ତାଙ୍କ ହଜିଯାଇଥିବା କଥାଟା କାହିଁକି ବିଶ୍ୱାସ ଗଲା ନାହିଁ ମୋର । ଅଧରତଳେ ମୋର ପରିହାସର ମୃଦୁ ମୃଦୁ ହାସ୍ୟରେଖା ।

କହିଲି, ''ତାଙ୍କ ହଜିଯିବାଟା ମିଛ ମିତ୍ର । ସେ ନିଜେ ପଳାଇଯାଇଥିବେ କେଉଁଠାକୁ । ସେ ଯେମିତି ଲୋକ ତାଙ୍କୁ କିଏବା ହରିନେବ ? ପୁଣି ଏ ବୟସରେ ହଜିଯିବେ ବା କେମିତି ?''

"କଥାଟା ମିଛ ନୁହେଁ । ନିରାଟ ସତ ମିତ୍ର । ତାଙ୍କୁ ବିବଶ ଅବସ୍ଥାରେ ଅପହରଣ କରାଯାଇଥିଲା । ବିଷ ଦେଇ ମୂର୍ଚ୍ଛିତ କରାଯାଇଥିଲା । ସେହି ଅବସ୍ଥାରେ ହିଁ ଗଙ୍ଗାଜଳରେ ପକାଇ ଦିଆଯାଇଥିଲା ।"

ଆଶ୍ଚର୍ଯ୍ୟ ହେଲି ତାଙ୍କ କଥାରେ । ପଚାରିଲି, "ଆଚ୍ଛା, କିଏ ଏ ସବୁ କାଣ୍ଡର କର୍ତ୍ତା ।"

"ଆଉ କେହି ନୁହନ୍ତି, ରାଜକୁମାର ଦୁର୍ଯ୍ୟୋଧନ ନିଜେ ।"

"ଏଁ, ମିତ୍ର ଦୁର୍ଯ୍ୟୋଧନ ? ଏଭଳି ଆତତାୟୀ କାମ କରିବାରେ କିପରି ହାତ ଦେଲେ ?" ଘନୀଭୂତ ହୋଇଉଠୁଥାଏ ମୋ' ବିସ୍ମୟଭଣ୍ଡାର ।

"କେବଳ କୂଟବୁଦ୍ଧି ଗାନ୍ଧାରରାଜ ଶକୁନିଙ୍କ ପ୍ରରୋଚନାରେ । ଭୀମସେନଙ୍କୁ କୌଣସି ମତେ ଶେଷ କରିଦେବାକୁ ଚାହାନ୍ତି ଦୁର୍ଯ୍ୟୋଧନ ।"

"ଏ କଥା ଆଉ କିଏ ଜାଣନ୍ତି ?"

"ନା, ଆଉ କେହି ଜାଣି ନାହାନ୍ତି । ପିତା ଭୀମସେନଙ୍କୁ ପ୍ରଶ୍ନ ପଚାରି ଏହି ନିର୍ଣ୍ଣୟରେ ପହଞ୍ଚିଛନ୍ତି । କେବଳ ଭୀଷ୍ମଦେବ ଓ ମହାମନ୍ତ୍ରୀ ବିଦୁରଙ୍କୁ କହିଛନ୍ତି ଏ କଥା କାଳେ କୁନ୍ତୀଦେବୀ ଜାଣିଯିବେ ସେଥିପାଇଁ କଥାଟାକୁ ଗୋପନ ରଖାଯାଇଛି ଭୀଷ୍ମଦେବଙ୍କ ନିର୍ଦ୍ଦେଶରେ ।"

"କିନ୍ତୁ ସେ ତ ଦିନେ ନା ଦିନେ ଜାଣିବେ ଏ କଥା ।"

"ପରେ ଜାଣିବେ । ସେତେବେଳକୁ ରାଜକୁମାରମାନଙ୍କ ଶିକ୍ଷା ସରିଯାଇଥିବ । ଭୀଷ୍ମଦେବଙ୍କ ଇଚ୍ଛା, ସେମାନଙ୍କ ଶିକ୍ଷାଟା ଆଗ ସରିଯାଉ । ପରେ କୁନ୍ତୀଦେବୀ ଜାଣିଲେ ଜାଣନ୍ତୁ ।"

"କିନ୍ତୁ ପାଣ୍ଡବମାନେ ତ ମାଆଙ୍କୁ ଏ କଥା କହିଦେବେ ।"

"ସେଥିପ୍ରତି ମଧ୍ୟ ପିତା ସାବଧାନ । ସେ ଯୁଧିଷ୍ଠିରଙ୍କୁ କହିଦେଇଛନ୍ତି କଥାର ସତ୍ୟାସତ୍ୟ ଜଣା ନ ପଡ଼ିବା ପର୍ଯ୍ୟନ୍ତ ତାହାକୁ ଗୋପନ ରଖିବା ପାଇଁ । ତାଙ୍କ କଥା ମାନି ଅନୁଜ ପାଣ୍ଡବମାନେ ନିଶ୍ଚୟ ନୀରବ ରହିବେ ।"

"ଆଚ୍ଛା, ଘଟଣାଟି ଘଟିଲା କେମିତି ?" ମୋର ଉଦଗ୍ର ପ୍ରଶ୍ନ ।

ଅଶ୍ୱତ୍ଥାମା ଯାହା କହିଲେ, ସେଥିରେ ବିସ୍ମିତ ହେବା ଅପେକ୍ଷା ଅଧିକ ବ୍ୟଥାତୁର ହୋଇଉଠିଥିଲି । କାରଣ ପାଣ୍ଡବମାନେ ଓ କୌରବମାନେ ଉଭୟ ମୋର ସତୀର୍ଥ । ସୁଦୀର୍ଘ ଛଅବର୍ଷର ସହପାଠୀ ।

ଗତକାଲି ରାଜକୁମାରମାନେ ଯାଆନ୍ତି ଗଙ୍ଗାତୀରକୁ । ପ୍ରମାଣକୋଟି ଘାଟରେ ସ୍ନାନ କରିବେ । ଭୋଜିଭାତ କରିବେ । ଜଳକ୍ରୀଡ଼ା କରିବେ ଓ ସଂଧ୍ୟାକୁ ଫେରିଆସିବେ । ସେଥିପାଇଁ ଆଚାର୍ଯ୍ୟ ଗତକାଲିଟିକୁ ଘୋଷଣା କରିଥାନ୍ତି ଅବକାଶ । କେବଳ ରାଜକୁମାରମାନେ ଯାଇଥାନ୍ତି ଏଇ ବିଶେଷ ତୀର୍ଥ-ସ୍ନାନ ଲାଗି । ସାଥିରେ ଯାଇଥାନ୍ତି କୃପାଚାର୍ଯ୍ୟ । ଏତିକିପର୍ଯ୍ୟନ୍ତ ଜ୍ଞାନ ଥାଏ ମୋର । ମତେ ସାଥିରେ ଯିବାକୁ ମନା

କରାଯାଇଥାଏ । ତେଣୁ ରହିଯାଇଥାଏ ନିଜ କୋଠରିରେ । ପରବର୍ତ୍ତୀ ଘଟଣାଗୁଡ଼ିକ ସଂପର୍କରେ ଜ୍ଞାନ ଯାଏ ଅଶ୍ୱତ୍ଥାମାଙ୍କଠାରୁ । ଏଇ ଜଳକ୍ରୀଡ଼ା ସମୟରେ ଭୀମସେନଙ୍କୁ କୌରବମାନେ ଅନ୍ୟ ପାଣ୍ଡବମାନଙ୍କ ଅଜ୍ଞାତରେ ଡାକିନିଅନ୍ତି ଗୋଟିଏ ନିଭୃତ ସ୍ଥାନକୁ । ଖାଇବାର ଲୋଭ ଦେଖାନ୍ତି । ତେଣୁ ମନା କରିବାର ଜୁ ନ ଥାଏ ତାଙ୍କର । ଦୁର୍ଯ୍ୟୋଧନଙ୍କ ନିର୍ଦ୍ଦେଶରେ ତାଙ୍କୁ ଦିଆଯାଏ ବିଷଗୋଳା ଖାଦ୍ୟ । କିଛି ସମୟ ପରେ ତାଙ୍କ ଚେତା ବୁଡ଼ିଯାଏ । ସଂଧ୍ୟା ହେବା ପର୍ଯ୍ୟନ୍ତ ତାଙ୍କ ଅଚେତ ଦେହକୁ ଲୁଚାଇ ରଖନ୍ତି ସେମାନେ । ସନ୍ଧ୍ୟା ହେବାରେ ଦଉଡ଼ିରେ ବନ୍ଧାବନ୍ଧି କରି ତାଙ୍କୁ ନେଇ ପକାଇଦେଇ ଆସନ୍ତି ଗଙ୍ଗାଜଳରେ । ବିଳମ୍ବିତ ସଂଧ୍ୟାସୁଦ୍ଧା ବି ସେ ଫେରନ୍ତି ନାହିଁ । କୃପାଚାର୍ଯ୍ୟ ଓ ପାଣ୍ଡବ ଭାଇମାନେ ବ୍ୟସ୍ତ ହୋଇଉଠନ୍ତି । ତାଙ୍କୁ ଖୁବ୍ ଖୋଜାଖୋଜି କରନ୍ତି; କିନ୍ତୁ ପାଆନ୍ତି ନାହିଁ । ସେ ତ ଭାରି ମନୁଆ ଲୋକ । ଯାହା ବୁଝିଥିବେ ସେଇଆ । ହୁଏତ ଆଗତୁରା ଚାଲି ଯାଇଥିବେ ବିଦ୍ୟାୟତନକୁ । ଏଇଆ ଭାବନ୍ତି ସେମାନେ । ଏଇ ଭାବନାକୁ ଦୃଢ଼ ଭାବରେ ସମର୍ଥନ କରନ୍ତି ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନେ ।କୃପାଚାର୍ଯ୍ୟ ବ୍ୟର୍ଥମନୋରଥ ହୋଇ ଭୀମସେନଙ୍କ ଛଡ଼ା ଅନ୍ୟ ରାଜକୁମାରମାନଙ୍କୁ ସାଥିରେ ଧରି ଫେରନ୍ତି ବିଦ୍ୟାୟତନକୁ । ସେଠାରେ କିନ୍ତୁ ପାଆନ୍ତି ନାହିଁ ତାଙ୍କୁ । ସେତେବେଳେ ଯାଇ ଛନକା ପଶେ ସମସ୍ତଙ୍କ ମନରେ । ଖୁବ୍ ବ୍ୟଥିତ ଓ ବିଚଳିତ ଆଚାର୍ଯ୍ୟ । ଆଉ ପାଣ୍ଡବ ଭାଇମାନେ ବି । ପାଣ୍ଡବମାନେ ଓ ବିଦ୍ୟାୟତନର ଅନ୍ୟାନ୍ୟ ଅନ୍ତେବାସୀମାନେ ତାଙ୍କୁ ଖୋଜାଖୋଜି କରନ୍ତି ରାତିସାରା । କିନ୍ତୁ କେଉଁଠି ପାଆନ୍ତି ନାହିଁ । ଏଭଳି ଚିନ୍ତିତ ଥିଲା ବେଳେ ହଠାତ୍ ତାଙ୍କର ପରବର୍ତ୍ତୀ ଦିନ ପୂର୍ବାହ୍ନରେ ହୁଏ ଆବିର୍ଭାବ । ସମସ୍ତଙ୍କ ମୁହଁର ହଜିଲା ହସ ପୁଣି ଫେରିଆସେ ।

''ବିଷଜ୍ୱାଳାରୁ କେମିତି ମୁକ୍ତି ପାଆନ୍ତି ସେ ?'' ମୋର ବିସ୍ମୟବୋଳା ପ୍ରଶ୍ନ ।

''ବଡ଼ ଆଶ୍ଚର୍ଯ୍ୟ ମିତ୍ର, ବଡ଼ ଆଶ୍ଚର୍ଯ୍ୟ । ଜଳସର୍ପମାନଙ୍କ ଦଂଶନରେ ତାଙ୍କ ବିଷ କଟିଯାଏ । ସେ ଦେହର ବନ୍ଧକୁ ଛିଣ୍ଡାଇଦେଇ ପହଁରି ପହଁରି ଆସି କୂଳରେ ଲାଗନ୍ତି । ସେଠାରୁ ଚାଲି ଚାଲି ଆସନ୍ତି ଶିକ୍ଷାୟତନକୁ ।''

''ସତରେ ବଡ଼ ଆଶ୍ଚର୍ଯ୍ୟ କଥା । ଆଉ ଖୁବ୍ ଦୁଃଖଦ ବି ।''

''ହଁ ମିତ୍ର । କିନ୍ତୁ ପିତା ଯେତେ ପଚାରିଲେ ବି ଦୁର୍ଯ୍ୟୋଧନ ଦୋଷକୁ ସ୍ୱୀକାର କରୁ ନାହାନ୍ତି । ପରିସ୍ଥିତି ଯାହା, ତହିଁରୁ ପିତାଙ୍କ ନିର୍ଣ୍ଣୟ ଦୃଢ଼ ହୋଇଯାଇଛି ଯେ ଦୁର୍ଯ୍ୟୋଧନ ହିଁ ଅପରାଧୀ ।''

''ଭୀମସେନ ଦିନେ ଦୁର୍ଯ୍ୟୋଧନଙ୍କୁ ଗଙ୍ଗାଜଳରେ ପକାଇଦେବା ପାଇଁ ଚାହିଁଥିଲେ । ମୁଁ ତାଙ୍କୁ ରକ୍ଷା କରିଥିଲି । ଆଜି ଦୁର୍ଯ୍ୟୋଧନ ଭୀମସେନଙ୍କୁ ଗଙ୍ଗାଜଳରେ ପକାଇଦେଇ ପ୍ରତିଶୋଧ ନେଲେ । ଭାଗ୍ୟ ହିଁ ତାଙ୍କୁ ରକ୍ଷା କଲା ।''

''କେବଳ ଭାଗ୍ୟ ନୁହେଁ ମିତ୍ର । ପୌରୁଷ । ପୌରୁଷ ହିଁ ପ୍ରାଣରକ୍ଷା ଲାଗି ହେଉଥିବା ଯୁଦ୍ଧରେ ବିଶେଷ ସହାୟକ ହେଲା । ନିଷ୍ପତ୍ତିମୂଳକ ସେ ସହାୟତା । ସେଥିପାଇଁ ତ ମୁଁ ତୁମକୁ କହିଆସିଛି, ପୌରୁଷ ଉପରେ ବିଶ୍ୱାସ ରଖ ।'' ତାଙ୍କ ସ୍ୱରରେ ଧୀରେ ଧୀରେ

ଗମ୍ଭୀରତା ଦାନା ବାନ୍ଧୁଥିଲା । ପୌରୁଷର ମାହାତ୍ମ୍ୟର ବର୍ଣ୍ଣନାରେ ହୋଇଉଠୁଥିଲେ ପ୍ରଗଲ୍‌ଭ ।

"ହଁ, ମିତ୍ର ! ସେ ବିଶ୍ୱାସ ମୁଁ ରଖିଛି । ତାହା ନ ହେଲେ ଏତେ ବାଧାବିଘ୍ନ ମଧ୍ୟରେ ସମ୍ମୁଖୀନ ହୋଇପାରନ୍ତି ନାହିଁ ଜୀବନସଂଗ୍ରାମକୁ ।"

"ମୋର ସଦିଚ୍ଛା ଅଛି । ଆଉ ଅଛି ବି ବିଶ୍ୱାସ । ତୁମେ ଜୀବନସଂଗ୍ରାମରେ ବିଜୟୀ ହେବ ।" ହସି ହସି କହିଲେ ଅଶ୍ୱତ୍‌ଥାମା ।

ସାଧୁବାଦ ଜଣାଇ କହିଲି, "ଧନ୍ୟବାଦ ମିତ୍ର ।"

ଏତିକିବେଳେ ସଂଧ୍ୟାପୂଜାର ସୂଚକ ଘଣ୍ଟି ବାଜିଉଠିଲା । ଦୁହେଁ ବିଦାୟ ନେଲୁ ପରସ୍ପରଠାରୁ ।

ହଠାତ୍ କଳାମେଘଟାଏ ଆସି ଆକାଶକୁ ଦେଲା ଘୋଡ଼ାଇ । ତାହାର କଳା କାଉଁରୀ କାଠିଟି ସନ୍ଧ୍ୟାର ଅନ୍ଧକାରକୁ ଆହୁରି କରିଦେଲା ଘନୀଭୂତ । ମତେ ଲାଗିଲା, ସାରା ହସ୍ତିନାପୁରରେ ଯେମିତି ସକଳ ସଦାଚାର, ସକଳ ସତ୍‌ପ୍ରବୃତ୍ତି ମୁହଁ ଲୁଚାଇ ଦେଇଛନ୍ତି ଲାଜରେ । ଆଉ ସେମାନଙ୍କ ଜାଗାରେ ଦୁରାଚାର, ଦୁଷ୍ପ୍ରବୃତ୍ତି ସକଳ ନାଚୁଛନ୍ତି ଦାନବୀୟ ନାଚ ! କରୁଛନ୍ତି ଆତଙ୍କର ବୃଷ୍ଟି । ଆଉ ହସୁଛନ୍ତି ଭୀମ ଅଟ୍ଟହାସ – ହାଃ ! ହାଃ ! ହାଃ !

ଏମିତି ଏକ ଆତଙ୍କିତ ବାତାବରଣ ମଧ୍ୟରେ ସନ୍ଧ୍ୟାପୂଜା ସାରିଲି ।

## ଏକୋଇଶ

କିଛି ସମୟ ପାଇଁ ଆକାଶର ନୀଳ ବୁକୁ ଉପରେ କଳା ମେଘ ବିଛାଇଦିଏ ଘଞ୍ଚ ଏକ ଆସ୍ତରଣ । ନୀଳ ସୁଷମା ଲୁଚି ଯାଏ ରାତ୍ରିକୋଳର ଦିବସରେ ତେଜସ୍ୱିତା ଲୁଚିଗଲା ଭଳି । କିନ୍ତୁ ଏହା କେତୋଟି କ୍ଷଣ ପାଇଁ ମାତ୍ର । ପବନ ମେଘଖଣ୍ଡକୁ ଉଡ଼ାଇନେବା ପରେ ଆକାଶ ଯେଉଁ ନୀଳକୁ ସେହି ନୀଳ । ଯେଉଁ ନିର୍ମଳକୁ ସେହି ନିର୍ମଳ । ଅଥଚ ମନର ଆକାଶ । ତାହା କଥା କିନ୍ତୁ ବିପରୀତ । ଥରେ ତହିଁରେ କାଳିମାର ଦାଗ ଲାଗିଲେ ତାହା ଆଉ ଲିଭେନା । ବରଂ ହେଉଥାଏ ଗାଢ଼ରୁ ଗାଢ଼ତର । ମଳିନରୁ ମଳିନତର । ଏଇ ବହଳିଆ ମନର କାଳିମାକୁ ନେଇ ମଣିଷ ଗଢ଼ିତୋଳେ ତା'ର ଦ୍ୱନ୍ଦ୍ୱମୟ ଭଙ୍ଗାଗଢ଼ାର ସଂସାର । କେତେ ହିଂସା । କେତେ ଦ୍ୱେଷ । କେତେ ମାନ-ଅଭିମାନ । କେତେ ଦମ୍ଭ ଓ ସ୍ପର୍ଦ୍ଧା । କେତେ ବାହୁସ୍ଫୋଟ । ସବୁ କିଛି ମନର ମଳିନତାକୁ ନେଇ । ଶେଷରେ ଏହା ସୃଷ୍ଟି କରେ ଏକ ଏଭଳି ପ୍ରଳୟଙ୍କର ପରିସ୍ଥିତି ଯହିଁରୁ ମୁକୁଳିବା ମଣିଷ ପାଇଁ ହୋଇଉଠେ ଅସମ୍ଭବ । ସେ ବିବଶ ଅବସ୍ଥାରେ ମୁକାବିଲା କରିଥାଏ ତାହାକୁ । ଏହାହିଁ ତ ମଣିଷ ଭାଗ୍ୟର ବିଡ଼ମ୍ବନା ।

ଠିକ୍ ସେମିତି କୌରବ-ପାଣ୍ଡବମାନଙ୍କ ମଧ୍ୟରେ ଥିବା ମନର ମଳିନତା ଦିନକୁ ଦିନ ଅଧିକରୁ ଅଧିକ ଘଞ୍ଚ ହେବାକୁ ଲାଗିଲା । କଳା କିଟି କିଟି ଉଆଁସ ଅନ୍ଧାରର ରୂପ ନେବାକୁ

ଅଧିକ ଡେରି ନ ଥାଏ । ହସ୍ତିନାପୁରର ରାଜପୁରୁଷଗଣଙ୍କ ସମେତ ସାରା ପ୍ରଜାଗଣ ଏହାର କିଛିଟା ଆଭାସ ପାଉଥିଲେ । ଆମେ ବିଦ୍ୟାୟତନର ସତୀର୍ଥମାନେ କିନ୍ତୁ ଏହାର ଅଭାସ ପାଉଥିଲୁ ପଦେ ପଦେ ସକଳ କ୍ଷେତ୍ରରେ । ବାର୍ତ୍ତାଳାପ ସମୟରେ ହେଉ, ଭୋଜନ ସମୟରେ ହେଉ, କ୍ରୀଡ଼ା ସମୟରେ ହେଉ ଅଥବା ଆଉ ଯେକୌଣସି ଅବସରରେ ହେଉ, ପ୍ରତିଟି ମୁହୂର୍ତ୍ତରେ ଆମେ ପାଉଥିଲୁ ଏହାର ଆଭାସ । କେତେବେଳେ ପ୍ରକାଶ୍ୟ ଭାବରେ ତ ଆଉ କେତେବେଳେ ପ୍ରଚ୍ଛନ୍ନ ଭାବରେ ।

ଏଭଳି ବାତାବରଣ ମଧ୍ୟରେ ମୋର ବିଦ୍ୟାୟତନରେ ବିତିଗଲା ଛଅ ବର୍ଷ । ମୋର ଶିକ୍ଷା ଶେଷ ହେଲା ଓ ମୁଁ ବିଦ୍ୟାୟତନରୁ ବିଦାୟ ନେଲି । କିନ୍ତୁ ରାଜକୁମାରମାନଙ୍କ ଶିକ୍ଷା ସରି ନ ଥାଏ । ସେମାନଙ୍କୁ ଆଉ ଛଅ ମାସ ବିଦ୍ୟାୟତନରେ ରହିବାକୁ ହେବ । ରାଜକୁମାର ହିସାବରେ ରାଷ୍ଟ୍ରନୀତି ସଂପର୍କୀୟ କେତେକ ସ୍ୱତନ୍ତ୍ର ଶିକ୍ଷା ଦିଆଯିବ । ମୁଁ ସୂତପୁତ୍ର । ତେଣୁ ସେଭଳି ଶିକ୍ଷାର ଅଧିକାରୀ ନୁହେଁ । ତେଣୁ ମତେ ଶିକ୍ଷାୟତନ ଛାଡ଼ିବାକୁ ପଡ଼ିଲା ।

ଯାହା କିଛି ବା ଶିକ୍ଷା କଲି ସେଥିରେ ନିଜକୁ ମଣୁଥିଲି ଖୁବ୍ ଭାଗ୍ୟବାନ୍ ବୋଲି । ସାମାନ୍ୟ ଜଣେ ସୂତପୁତ୍ର ମୁଁ । ତାହା ସତ୍ତ୍ୱେ ରାଜକୁମାରମାନଙ୍କ ସତୀର୍ଥ ହୋଇପାରିଲି । ପୁଣି ଦ୍ରୋଣ ଓ କୃପଙ୍କ ଭଳି ଆଚାର୍ଯ୍ୟଦ୍ୱୟ ପାଇଲି । ସଯତ୍ନବର୍ଦ୍ଧିତ ଉପବନର ଫୁଲଗୁଡ଼ିକ ସାଥିରେ ଘାସଫୁଲଟିଏ ଯଦି ଫୁଟିଲା ତାହାର ଜୀବନ ତ ବ୍ୟର୍ଥ ନୁହେଁ । ମୁଁ କହିବି, ତାହା ବରଂ ସାର୍ଥକ; କାରଣ ଉପବନର ଫୁଲଗୁଡ଼ିକ ସହିତ ଏକାଠି ମିଶି ପ୍ରଭାତୀ ସମୀରଣରେ ଦୋହଲି ଦୋହଲି ଟିକିଏ ହସିପାରିବାର ସୁଯୋଗ ତା'କୁ ମିଳିଲା ତ ।

ଏହିସବୁ କିଛିର ମୂଳ କାରଣ ଥିଲେ ମୋ' ବାପା । ମହାରାଜାଙ୍କର ସେ ଶ୍ରଦ୍ଧାର ପାତ୍ର ନ ଥିଲେ ଏହା ସମ୍ଭବ ହୋଇପାରିଥାନ୍ତା ବା କେଉଁଠୁ ?

ମନେ ମନେ ତାଙ୍କ ଉଦ୍ଦେଶ୍ୟରେ ଶତ ଶତ କୃତଜ୍ଞତାର ପ୍ରଣତି ଡାଳୁଥିଲି ।

ଏତେ ସିଦ୍ଧି ସତ୍ତ୍ୱେ, ଏତେ ସଫଳତା ସତ୍ତ୍ୱେ କିନ୍ତୁ ମନ ମୋର ଶାନ୍ତ ନ ଥାଏ । ଶସ୍ତ୍ରବିଦ୍ୟା ଶିକ୍ଷା କରିବାର ବାସନା ଲିଭି ନ ଥାଏ ତଥାପି । ମହତ୍ତ୍ୱାକାଙ୍‌କ୍ଷାର କଳସଟି ପୂରି ନ ଥାଏ । ଅର୍ଜୁନ ମୋର ପ୍ରତିସ୍ପର୍ଦ୍ଧୀ । ଏ ପର୍ଯ୍ୟନ୍ତ ତାଙ୍କର ସମକକ୍ଷ ହୋଇପାରି ନାହିଁ । ଏ ପର୍ଯ୍ୟନ୍ତ ବ୍ରହ୍ମାସ୍ତ୍ରର ଜ୍ଞାନ-କୌଶଳ ହାସଲ କରିପାରି ନାହିଁ । ଦ୍ରୋଣାଚାର୍ଯ୍ୟ ସ୍ପଷ୍ଟ ଭାବରେ ମନା କରିଦେଇଛନ୍ତି । ମୋର ଏକମାତ୍ର ଅପରାଧ, ମୁଁ ଜନ୍ମିଛି ସୂତକୁଳରେ । ଆଉ ଯେତେ ଯୋଗ୍ୟତା ମୋର ଥାଉ ଅଥବା ନ ଥାଉ, ଏଇ ସୂତକୁଳର ଜନ୍ମ ହିଁ ରହିଛି ଏକାନ୍ତ ପ୍ରତିବନ୍ଧକ ହୋଇ । କୁଳ ଜନ୍ମ ତ ମୋ' ହାତରେ ନାହିଁ । ଏଥିପାଇଁ ମୁଁ ଦଣ୍ଡିତ ହେବି କାହିଁକି ? ଏହି କଥା ଭାବି ଭାବି ହୃଦୟ ତଳେ ଯେତେ ବିଦ୍ରୋହର ନିଆଁ ଜଳାଇଲେ ମଧ୍ୟ ସବୁ ହୋଇଛି ନିଷ୍ଫଳ ।

ଓଃ । କି ନିବିଡ଼ ଦୁଃଖଦ ଏଇ ଅନ୍ତର୍ବେଦନା ! ଭାବିଲା ବେଳକୁ ଲାଗୁଥାଏ, ସତେ ଅବା ସାରା ଦେହ ମୋର ମୃତ୍ୟୁର ଆଲିଙ୍ଗନରେ ହୋଇଯାଇଛି ଶୀତଳ !

କିନ୍ତୁ ତଥାପି ଚିନ୍ତାରୁ ବିରତ ହୋଇ ନ ଥିଲି । ଦ୍ରୋଣାଚାର୍ଯ୍ୟଙ୍କ କହିବା ମତେ ଭାର୍ଗବ ପରଶୁରାମଙ୍କୁ ମନେ ମନେ ଆଚାର୍ଯ୍ୟ ବୋଲି କହି ନେଇଥିଲି । ତାଙ୍କ ଛଡ଼ା ଯେ ଆଉ କେହି ମତେ ବ୍ରହ୍ମାସ୍ତ୍ରର ଜ୍ଞାନକୌଶଳ ଶିଖାଇବେ ନାହିଁ ଏ ବିଷୟରେ ଥିଲି ସ୍ଥିରନିଶ୍ଚୟ । କିନ୍ତୁ କେମିତି ଯିବି ତାଙ୍କ ପାଖକୁ ? କି ପରିଚୟ ଦେବି ମୋର ? ସେ ତ ବ୍ରାହ୍ମଣଙ୍କ ଛଡ଼ା ଆଉ କାହାଙ୍କୁ ଶିଷ୍ୟରୂପରେ ଏଣିକି ଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିସାରିଛନ୍ତି । କ'ଣ ଉପାୟ କଲେ ତାଙ୍କର ଶିଷ୍ୟ ହୋଇପାରିବି ?

ଦୀର୍ଘ ତିନି ଦିନ ଧରି ଦିନରାତି ଏଇ ଚିନ୍ତା କରିବସିଲି । ଖୋଜି ବସିଲି ଗୋଟିଏ ନିରାପଦ ଉପାୟ ।

## ବାଇଶ

ଶେଷରେ ଉପାୟଟି ପାଇଲି । ଅନ୍ଧାରିଆ ଗୁହାଟିରେ ଦୀର୍ଘସମୟ ଧରି ଯାତ୍ରା କରିବା ପରେ ପାଇଲି ବାହାରର ଆଲୋକ ଓ ପବନ । ଉଲ୍ଲସିତ ହୋଇଉଠିଲି ନୂଆ ଆଶା ଓ ନୂଆ ଉତ୍ସାହ ନେଇ । ସ୍ଥିର କଲି ଅବିଳମ୍ବେ ମହେନ୍ଦ୍ରଗିରି ଅଭିମୁଖରେ ଯାତ୍ରା କରିବାପାଇଁ । ସେଇଠି ସ୍ଥିର କରିବି ଭାର୍ଗବ ପରଶୁରାମଙ୍କ ଆଶ୍ରମ । ପିତାଙ୍କଠାରୁ ପାଥେୟ ହିସାବରେ ସାମାନ୍ୟ କେତେ ନିଷ୍କ ନେଇ ବାହାରିପଡ଼ିଲି ବହୁ ଆକାଙ୍‌କ୍ଷିତ ଯାତ୍ରାପଥରେ । ସାଥିରେ ସହଚର ଧନୁର୍ବାଣ ଯାହା ଆତ୍ମରକ୍ଷା ଲାଗି ଏକାନ୍ତ ଆବଶ୍ୟକ । ଆର୍ଯ୍ୟାବର୍ତ୍ତରୁ ଦକ୍ଷିଣାପଥ । ପୁଣି ତହିଁରେ ନିବିଡ଼ ଅରଣ୍ୟସଂକୁଳ ପରିବେଶରେ ଅବସ୍ଥିତ ମହେନ୍ଦ୍ରଗିରି । ଶହ ଶହ ଯୋଜନର ଯାତ୍ରାପଥ । ହିଂସ୍ରଜନ୍ତୁ ଓ ଡାକୁମାନଙ୍କ ଆତଙ୍କ ପୁଣି ଅଛି ପଦେ ପଦେ । ତେଣୁ ଧନୁର୍ବାଣ ଏକାନ୍ତ ଆବଶ୍ୟକ । ଏତେଦୂର ପଥ ଯିବା ଲାଗି ଏକ ତ୍ୱରିତଗାମୀ ଅଶ୍ୱର ଆବଶ୍ୟକତା ବି ଥିଲା । ବାଛି ବାଛି ସେହିଭଳି ଏକ ସୈନ୍ଧବ ଅଶ୍ୱ ନେଲି । ବ୍ରାହ୍ମମୁହୂର୍ତ୍ତରୁ ନିତ୍ୟକର୍ମ ସାରିଦେଇ ଅମୃତଲଗ୍ନ ଦେଖି ଦିନେ ଆରମ୍ଭ କଲି ମୋର ଶୁଭ ଯାତ୍ରା । ପିତା ଅଶ୍ରୁପୂର୍ଣ୍ଣ ନେତ୍ରରେ ମତେ ବିଦାୟ ଦେଇ କହିଲେ, "ତୁମ ଯାତ୍ରାପଥରେ ଫୁଲ ବରଷୁ ବାପା ।" ଅଳ୍ପ କେତୋଟି ମୁହୂର୍ତ୍ତରେ ପାରିହୋଇଗଲି ହସ୍ତିନାପୁରର ସୀମା ।

ପବନବେଗରେ ଛୁଟିଚାଲିଥାଏ ମୋ' ତ୍ୱରିତଗାମୀ ଅଶ୍ୱ । ତାରାଠାରୁ ଅଧିକ ବେଗରେ ଧାଇଁ ଚାଲିଥାଏ ମୋ' ମନର ଅଶ୍ୱ । କେବେ ପହଞ୍ଚିବ ଯାଇ ମହେନ୍ଦ୍ରଗିରିରେ ? କିପରି ପାଇବି ଆଚାର୍ଯ୍ୟ ପରଶୁରାମଙ୍କ ଦର୍ଶନ ? ଆତ୍ମପରିଚୟ ପଚାରିଲେ କ'ଣ କହିବି ତାଙ୍କୁ ? ଯଦି ଭାଗ୍ୟବଳରେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରେ, ତେବେ କେମିତି କାଟିବି ସେଠାକାର ଆଶ୍ରମଜୀବନ ? ଏମିତି ଅଗଣିତ ଚିନ୍ତା ଆକୁଳିତ କରୁଥାଏ ମନ-ପ୍ରାଣକୁ । ଗୋଟିଏ ଚିନ୍ତା ଅପସରି ନ ଯାଉଣୁ ମନ ଧାଉଁଥାଏ ଆଉ ଏକ ଚିନ୍ତା ଆଡ଼କୁ । ଚିନ୍ତା ସରେ ନାହିଁ । ଆଉ ଘଟେ ବି ନାହିଁ ମନର ଧାଇଁବାରେ ବିରତି । ସତେ ଯେମିତି ଧାଁଦଉଡ଼ରେ

ଦୁହିଁଙ୍କ ମଧ୍ୟରେ ଲାଗିଥାଏ ପ୍ରତିଦ୍ୱନ୍ଦ୍ୱିତା ! କେହି କାହାକୁ ଜିଣିପାରନ୍ତି ନାହିଁ କିମ୍ବା ହରାଇ ବି ପାରନ୍ତି ନାହିଁ ।

ଧାଇଁଚାଲିଛି ଆଗକୁ ଓ ଆଗକୁ । ଉତ୍ତରାପଥରୁ ଦକ୍ଷିଣାପଥକୁ । ଜନାକୀର୍ଣ୍ଣ ହସ୍ତିନାପୁରରୁ ନିର୍ଜନ ହିଂସ୍ରଜନ୍ତୁସଂକୁଳ ମହେନ୍ଦ୍ରଗିରିକୁ । ନଗରର କୃତ୍ରିମ ସାଜସଜ୍ଜାର ଘନଘଟାରୁ ଆରଣ୍ୟକ ପରିବେଶର ଚିରଶାନ୍ତ କାନ୍ତ ହରିତବଳୟକୁ । ଆଗରେ ମୋର ନବୀନ ଆଶାର ଝଲକ । ରହି ରହି ବାଜିଉଠୁଛି ଉଷା କନକ ଶଙ୍ଖ ମୋ' ଚିତ୍ତ-ମନରେ ଉତ୍ସାହ ଓ ଉଦ୍ଦୀପନାର ଉସ୍ମ ଭରିଦେଇ । ମନ ମୋର ବାରମ୍ବାର ଯେମିତି କହୁଛି– ଆଗେଇ ଚାଲ୍ କର୍ଣ୍ଣ । ଦ୍ରୁତଗତିରେ ଆଗେଇ ଚାଲ୍ । ତୋ' ଯାତ୍ରାପଥ ନିଶ୍ଚୟ ହେବ କୁସୁମିତ । ତୁ ନିଶ୍ଚୟ ବ୍ରହ୍ମାସ୍ତ୍ରର ଅଧିକାରୀ ହେବୁ । ଆଉ ହୋଇପାରିବୁ ପାଣ୍ଡବ ଅର୍ଜୁନଙ୍କର ଜଣେ ସୁଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ! ଏତେବେଳେ ବାରମ୍ବାର ଅନ୍ତରତଳେ ପ୍ରତିଧ୍ୱନିତ ହୋଇଉଠୁଥାଏ ସେଇ ଆପ୍ତବାଣୀ – ଚରୈବେତି ଚରୈବେତି । ଆଗେଇ ଚାଲ, ଆଗେଇ ଚାଲ । ପଛକୁ ଫେରି ଚାହଁନା । ଫେରି ଚାହିଁବାରେ ପଶ୍ଚାଦ୍‌ଗତି । ଆଗେଇ ଚାଲିବାରେ ଅଗ୍ରଗତି ଓ ସିଦ୍ଧିର ଆନନ୍ଦ । ପଛେଇ ଯିବାରେ ଖାଲି ଦୁଃଖ, ଅନୁତାପ ଓ ଦହନ । ମୁଁ ତେଣୁ ଆଗେଇ ଚାଲିଥିଲି । ପଛରେ ପଡ଼ିରହିଲା ମୋର ବିଗତ ଦିନଗୁଡ଼ିକର ଦୁଃଖ, ନିର୍ଯାତନା ଓ ଅବହେଳାର କାହାଣୀ । ହୀନମ୍ମନ୍ୟତାର ବିଷାକ୍ତ ଦଂଶନ । ଆଗେଇ ଚାଲିବାରେ ସେଥିରୁ ଅନ୍ତତଃ ନିଷ୍କୃତି ମିଳୁଥିଲା କିଛିଟା ।

ଭବିଷ୍ୟତ୍‌ର ସମ୍ଭାବ୍ୟ ସିଦ୍ଧିର ଆନନ୍ଦ ଉଲ୍ଲସିତ କରିଦେଉଥିଲା ମତେ ! ଆଉ ଟେକି ବି ଦେଉଥିଲା କାହିଁ ରସାତଳରୁ ଗଗନଚୁମ୍ବୀ ଶିଖରିଶିଖରକୁ ! ଦରିଦ୍ର କର୍ଣ୍ଣକୁ ସତେଯେମିତି ମିଳିଯାଉଥିଲା କୁବେର-ସମ୍ପତ୍ତି !

ହସ୍ତିନାପୁରରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଯାତ୍ରା ଏକ ସାଧାରଣ ଅଶ୍ୱ ପାଇଁ ଲାଗେ ଦଶ ଦିନ । କିନ୍ତୁ ମୋ' ଅଶ୍ୱଟି ଥିଲା ଅସାଧାରଣ ଭାବରେ ତୁରିତଗାମୀ । ପିତା ଥିଲେ ଅଶ୍ୱବିଦ୍ୟାରେ ଧୁରନ୍ଧର ଏବଂ ସେଇଟିକୁ ବାଛି ବାଛି ମତେ ଦେଇଥିଲେ । ତାହା ଛଡ଼ା ଅରଣ୍ୟସଂକୁଳ ପଥରେ ଯାତ୍ରା କରିବା ପାଇଁ ବିଶେଷ ଶିକ୍ଷା ପାଇଥିଲା ସେ । ତେଣୁ ସେ ମତେ ନେଇ ଛଅ ଦିନ ମଧ୍ୟରେ ମହେନ୍ଦ୍ରଗିରିର ପାଦଦେଶରେ ପହଞ୍ଚାଇଦେଲା ।

ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରେ ସ୍ୱସ୍ତିର ନିଃଶ୍ୱାସ ମାରିଲି । ସେତେବେଳକୁ ସୂର୍ଯ୍ୟଦେବ ବୁଡ଼ିବା ଉପରେ । ପାଖରେ ଗିରିନିର୍ଝରୀଟିଏ ବହିଯାଉଥାଏ କଳ କଳ ଛଳ ଛଳ ହୋଇ । ନିର୍ଝରୀକୁ ଲାଗିକରି ଥିବା ଖୋଲା ପଡ଼ିଆରେ ଦଳକୁ ଦଳ ହୋଇ ମୟୂର-ମୟୂରୀମାନେ ଖାଦ୍ୟ ସଂଗ୍ରହ କରୁଥାନ୍ତି ଓ ମଝିରେ ମଝିରେ ନିଜ ନିଜ ମଧ୍ୟରେ ଦ୍ୱନ୍ଦ୍ୱ-ଯୁଦ୍ଧରେ ମାତି ଉଠୁଥାନ୍ତି । ପଡ଼ିଆର ଛନଛନିଆ ଘାସ ଉପରେ ଅସ୍ତଗାମୀ ସୂର୍ଯ୍ୟ ଯେମିତି ସୁନାର ଚାଦରଟିଏ ବିଛାଇ ଦେଇଥାନ୍ତି । ସେଇ ଚାଦର ଉପରେ ଅପୂର୍ବ ଲୀଳାଖେଳା ଦେଖାଇ ନାଚୁଥାନ୍ତି କେତେକ ମୃଗଶାବକ । ସେମାନଙ୍କ ମାଆମାନେ ଘାସ ଖାଉଥିବା ମଧ୍ୟରେ ମଝିରେ ମଝିରେ ଚାହୁଁଥାନ୍ତି ଚାରିଆଡ଼େ ବିଶେଷକରି ନିଜ କ୍ରୀଡ଼ାରତ ଶାବକମାନଙ୍କୁ ।

ସେଇ ଚାହାଣି ମଧ୍ୟରେ ହୃଷ୍ଟ ମନରେ ଲକ୍ଷ୍ୟ କରୁଥାନ୍ତି ନିଜ ଶାବକମାନଙ୍କ ଦୁଷ୍ଟାମି । ମୁଁ ମଧ୍ୟ ଧୀରେ ଧୀରେ ସେଇ ଶେଯ ଉପରେ ଗଡ଼ିବାକୁ ଲାଗିଲି । ଅବସାଦ ମେଣ୍ଟାଇଲି । ଅଶ୍ୱଟିକୁ ଛାଡ଼ିଦେଲି କିଛି ସମୟ ଲାଗି ଚରିବାପାଇଁ ଓ ଝରଣାର ପାଣି ପିଇବାପାଇଁ । ପରେ ପରେ ସଂଧ୍ୟା ଆସିଗଲା ତାହାର ଗୋପନ ଅଭିସାର କରି । ମୟୂର-ମୟୂରୀମାନେ ଉଡ଼ିଯାଇ ଉଚ୍ଚ ବୃକ୍ଷଶାଖାଗୁଡ଼ିକରେ ଆଶ୍ରୟ ନେବାକୁ ଲାଗିଲେ । ମୃଗ-ମୃଗୁଣୀମାନେ ମଧ୍ୟ କିଏ କୁଆଡ଼େ ଯାଇ ଆଶ୍ରୟ ନେଲେ । ଏହା ମଧ୍ୟରେ ମୁଁ ଝରଣାରେ ଗାଧୁଆ ପାଧୁଆ ଓ ସନ୍ଧ୍ୟା-କର୍ମ ସାରିଦେଇଥିଲି । ତାହା ପରେ ଘୋଡ଼ାକୁ ଧରି ଚାଲି ଚାଲି ଖୋଜିବାକୁ ଲାଗିଲି ରାତିର ଆଶ୍ରୟସ୍ଥଳ । ମହେନ୍ଦ୍ରର ପାଦଦେଶରେ କୌଣସି ଜାଗାରେ ରାତିଟା ବିତାଇ ପରଦିନ ଋଷିଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କରିବାକୁ ହେବ ।

ସେଦିନ ଥିଲା ଭାଦ୍ର ଶୁକ୍ଳା ଦଶମୀ । ସନ୍ଧ୍ୟା ନଇଁ ଆସିବା ସଙ୍ଗେ ସଙ୍ଗେ ଚନ୍ଦ୍ର- କିରଣର ଚହଟ ଖେଳିଯିବାକୁ ଲାଗିଲା ଧରଣୀରେ । ଅରଣ୍ୟସଂକୁଳ ଜାଗା । ତେଣୁ ତୋଫା ଚନ୍ଦ୍ରକିରଣ ପରିଷ୍କାର ଭାବରେ ଦେଖାଯିବାର ନ ଥିଲା ଅବକାଶ । ଖାଲି ଯାହା ଛାଇ ଓ ଆଲୁଅର ଲୁଚକାଳି ଖେଳ । ତଥାପି ସେଇ ଲୁଚକାଳି ଖେଳ ମଧ୍ୟରେ ଜଙ୍ଗଲି ରାସ୍ତା ଚିହ୍ନିବାରେ କିଛି ଅସୁବିଧା ନ ଥିଲା । ସରୁ ସର୍ପିଳ ରାସ୍ତାଟିଏ ଲମ୍ବି ଆସିଥିଲା ଝରଣାକୂଳରୁ । ଅଦୂରରେ ସେହି ଦିଗକୁ ଲକ୍ଷ୍ୟକରି ଚାଲିଲି ଗତିକୁ ଟିକିଏ ତ୍ୱରାନ୍ୱିତ କରି ।

କ୍ରମେ ସବୁ କଥା ହୋଇଉଠିଲା ସ୍ପଷ୍ଟ । ମୋ' କାନରେ ବାଜିଲା ମର୍ଦ୍ଦଳ ଓ ଚାଙ୍ଗୁର ମିଶ୍ରିତ ମନ୍ଦ୍ରମଧୁର ଧ୍ୱନି । ତାହା ସଙ୍ଗେ ସଙ୍ଗେ ଏକାଧିକ ନରନାରୀଙ୍କ ମନଚହଲା ସଂଗୀତର ଝଙ୍କାର । ତାହାର ଭାଷା ଅବଶ୍ୟ ଥିଲା ଅବୋଧ ମୋ' ନିକଟରେ । ତଥାପି ତାହାର ଝଙ୍କାର କେମିତି ଗୋଟାଏ ଚକିତ ଚମକ ସୃଷ୍ଟି କରୁଥିଲା ମନରେ । ଚିତ୍ତତଳ ଥରି ଉଠୁଥିଲା ଉନ୍ମାଦନାରେ । ଆରଣ୍ୟକ ପବନରେ ବନକୁସୁମର ଗନ୍ଧ ସହିତ ମେଦକସୁରାର ମିଶ୍ରିତ ଗନ୍ଧ । ଭାବିନେଲି ଏହା ଏକ ନିଷାଦ ଗ୍ରାମ ନିଶ୍ଚୟ । ନିଷାଦ ନରନାରୀମାନେ ଏବେ ହୁଏତ ବୃନ୍ଦନୃତ୍ୟରେ ବିଭୋଳ । ଏଇଠି ନିଶ୍ଚୟ ରାତିଟା ବିଶ୍ରାମ କରିପାରିବି । ଏଇ ଆଶା ନେଇ ଛୁଟିଲି ଆଗକୁ ।

ଅଳ୍ପ କିଛି ବାଟ ଚାଲିବା ପରେ ପହଞ୍ଚିଲି ଗାଁ ମୁଣ୍ଡରେ । ବିରାଟ ଏକ କଦମ୍ବଗଛ । ଶାଖାଗୁଡ଼ିକ ଲମ୍ବିଯାଇଛି ଚାରିଆଡ଼କୁ । ଗୋଟିଏ ଶାଖା ଛୁଇଁଛି ପତ୍ରକୁଡ଼ିଆଟିର ଚାଳକୁ । ଚାଳକୁ ଭେଦି ଆସୁଥିବା ଧୂଆଁ କୁଣ୍ଡଳିତ ଗତିରେ କଦମ୍ବ ଶାଖାକୁ ଚୁମି ଚୁମି ଉଠିଯାଉଛି ଆକାଶକୁ । ଦଳ ବାନ୍ଧି ପାରାମାନେ ଉଡ଼ିଯାଉଥିବା ଭଳି ଦିଶୁଛି । ଆଖି ବୁଲାଇ ଆଣିଲି ଚାରିଆଡ଼କୁ । ସତରେ ଛୋଟ ନିଷାଦ ଗାଁଟିଏ । ଦଶ-ବାରଟି କୁଡ଼ିଆ ଘରର ସମଷ୍ଟି । ଚାନ୍ଦିନୀର ଆଲୁଅରେ ଧୁଆ ହୋଇ ସବୁ କୁଡ଼ିଆ ଦିଶୁଥାଏ ରୁପା ଜକ ଜକ । ଗାଁର ଆର ମୁଣ୍ଡରୁ ଭାସିଆସୁଥାଏ ବୃନ୍ଦନୃତ୍ୟର ସଙ୍ଗୀତଲହରୀ । ବାଦ୍ୟ ଧ୍ୱନି ଆହୁରି ସ୍ପଷ୍ଟତର ଏବଂ ଆହୁରି ମନମତାଣିଆ ହୋଇ । ନୃତ୍ୟ ଓ ବାଦ୍ୟର ମିଶ୍ରିତ ଛନ୍ଦ ଥରାଇ ଦେଉଥାଏ ଯେମିତି ଗାଁଟିର କ୍ଷୁଦ୍ର ଦରିଦ୍ର ପରିବେଶକୁ କି ଏକ ଉନ୍ମଦ ସ୍ପର୍ଶରେ ! ଯଦି ମୋ' ଆଗରେ

କର୍ତ୍ତବ୍ୟର ନିଷ୍ଠୁର ଆହ୍ୱାନ ନ ଥାନ୍ତା, ତେବେ ମୁଁ ହୁଏତ ସେଇ ସ୍ୱର୍ଗରେ ହୋଇଉଠିଥାନ୍ତି ମୁଗ୍ଧ ପାଗଳ, କେତୋଟି ମୁହୂର୍ତ୍ତପାଇଁ ହେଉ ପଛକେ । କିନ୍ତୁ ନାଚାର ଥିଲି । ଆସନ୍ତା କାଲିର କର୍ତ୍ତବ୍ୟପାଇଁ ଥିଲି ଦୃଢ଼ ସଚେତନ । ମତେ କୌଣସିମତେ ଯଥାଶୀଘ୍ର ପହଞ୍ଚିବାକୁ ହେବ ବ୍ରହ୍ମର୍ଷି ପରଶୁରାମଙ୍କ ପାଖରେ ଏବଂ ଯାଚନା କରିବାକୁ ହେବ ତାଙ୍କ ଶିଷ୍ୟତ୍ୱ । ତେଣୁ ସ୍ୱପ୍ନର ଶିଶିରରେ ସିକ୍ତ ହେବାପାଇଁ ସମୟ ବା କାହିଁ ? ଅଥବା କାହିଁ ବା ଅଭିଳାଷ ?

କୁଡ଼ିଆର ଦ୍ୱାରଦେଶ ପାଖକୁ ଯାଇ ମୃଦୁ ମୃଦୁ କରାଘାତ କଲି । ନୃତ୍ୟଗୀତର ମନ୍ଦ୍ର ଝଙ୍କାର ମଧ୍ୟରେ ମୋ' କରାଘାତର ଧ୍ୱନି ହଜିଗଲା ବୋଧହୁଏ । କେହି ଉତ୍ତର ଦେଲେ ନାହିଁ ।

''ମାଆ-ମାଉସୀ କିଏ ଘରେ ଅଛନ୍ତି ?'' ଟିକିଏ ବଡ଼ପାଟିରେ ଡାକିଲି ।

''କିଏ ?'' ଏଥରକ ଉତ୍ତର ଆସିଲା ଭିତରୁ । ଥର ଥର ନାରୀକଣ୍ଠର ଉତ୍ତର । ଭାବିନେଲି, ଜଣେ ବୃଦ୍ଧା ନିଷାଦରମଣୀ ହେବେ ବୋଧହୁଏ ।

''ଜଣେ ଅତିଥି ମାଉସୀ ।''

ମାଉସୀ ଡାକ ଶୁଣିକରି କି କ'ଣ ସେ ହଠାତ୍ ଆସି ଖୋଲିଦେଲେ କବାଟ । ହାତରେ ଦୀପଟିଏ ଧରି ଥରି ଥରି ଆଗେଇ ଆସିବାକୁ ଲାଗିଲେ ମୋ' ଆଡ଼କୁ । ମତେ ଚାହିଁଦେଇ ହସି ହସି କହିଲେ, ''ଆସ ପୁଅ, ଭିତରକୁ ଆସ । ତୁମେ କେଉଁଠୁ ଆସିଲ ? କ'ଣ କାମ ଏ ଗାଁରେ ?''

''ହସ୍ତିନାପୁରରୁ ଆସିଛି ମାଉସୀ ।'' ତାଙ୍କ ଥରିଲା ଥରିଲା ହାତ ଧରି ତାଙ୍କୁ ଘର ଭିତରକୁ ନେଇଯିବାରେ ସାହାଯ୍ୟ କରିବା ଅବସରରେ କହିଲି ।

''ହସ୍ତିନାପୁରରୁ ? ଆମ ମହାରାଜାଙ୍କ ରାଜଧାନୀରୁ ?''

''ହଁ ମାଉସୀ ।''

ଏହି ନିଷାଦ ଅଧ୍ୟୁଷିତ ଅଞ୍ଚଳଟି ସ୍ୱାଧୀନ ଥିଲେ ମଧ୍ୟ ହସ୍ତିନାପୁରର ସମ୍ରାଟଙ୍କୁ ସାର୍ବଭୌମ ସମ୍ରାଟ୍ ବୋଲି ସ୍ୱୀକାର କରୁଥିଲା । ତେଣୁ ନିଷାଦରମଣୀଜଣକ କୁରୁ ସମ୍ରାଟଙ୍କୁ ମାନୁଥିଲେ ମହାରାଜା ବୋଲି । ତାଙ୍କୁ ନ ଦେଖିଥିଲେ ବି ତାଙ୍କ କର୍ତ୍ତୃତ୍ୱ ବିଷୟରେ ଥିଲେ ସମ୍ପୂର୍ଣ୍ଣ ପରିଚିତା ।

ମୁଁ କାହିଁକି ଆସିଛି ସେ କଥା ଖୋଲିକରି କହିଦେଲି । ସେ ଉତ୍ତର ଦେବାକୁ ଯାଇ କହିଲେ, ''ସବୁ ଠିକ୍ ଯେ ପୁଅ, ହେଲେ ଋଷି ପରଶୁରାମଙ୍କ ଶିଷ୍ୟ ହେବା ସହଜ କଥା ନୁହେଁ ।''

''ଏ କଥା କାହିଁକି କହୁଛନ୍ତି ମାଉସୀ ?''

''ମୁଁ ପରା ଏଇସବୁ କଥା ଦେଖି ଦେଖି ବୁଢ଼ୀ ହେଲିଣି ।''

"କେଉଁ କଥା ମାଉସୀ ?"

"ପ୍ରତି ବର୍ଷ ଅନେକ ଲୋକ ଆସନ୍ତି ତାଙ୍କ ଶିଷ୍ୟ ହେବାପାଇଁ । କିନ୍ତୁ ମନଦୁଃଖରେ ଫେରିଯାଆନ୍ତି । ଗଲା ପାଞ୍ଚ ବର୍ଷ ଭିତରେ କେହି ଜଣେ ହେଲେ ଆସି ନାହାନ୍ତି । ଆଜି ତୁମକୁ ପ୍ରଥମଥର ଏଇ କାମପାଇଁ ଆସିବାର ଦେଖୁଛି ପୁଅ । ଭାବୁଛି ତୁମେ ବି ସେମିତି ମନଦୁଃଖରେ ଫେରିଯିବ ।" ତାଙ୍କ ଆଖିରେ ଲୁହ ଡବ ଡବ । ନିଷାଦରମଣୀ ସ୍ୱାଭାବିକ ଭାବରେ ସରଳା ଆଉ ଅତିଥିବତ୍ସଳା ମଧ୍ୟ । ତାଙ୍କ ଅବସ୍ଥାରୁ ଅନୁମାନ କରିନେଲି ସେ ବିଧବା ଓ ରହୁଛନ୍ତି ଏକାକିନୀ । ପରେ ତାଙ୍କ ସହିତ କଥାବାର୍ତ୍ତାରୁ ବୁଝିଲି ମୋ' ଅନୁମାନ ସତ୍ୟ । ମୋ' ପ୍ରତି ପୁତ୍ରସ୍ନେହରେ ତାଙ୍କ ହୃଦୟ ବୋଧହୁଏ ହୋଇଉଠୁଥିଲା ବ୍ୟାକୁଳିତ । ମୋ' ସାମ୍ଭାବ୍ୟ ବିଫଳତାକୁ ସହିପାରୁ ନ ଥିଲେ । ହେଉଥିଲେ ମନେ ମନେ ବ୍ୟଥିତା । "ନା, ମାଉସୀ । ମୁଁ କିନ୍ତୁ ଫେରିବି ନାହିଁ । ନିଶ୍ଚୟ ତାଙ୍କର ଶିଷ୍ୟ ହେବି । ଆପଣ ମତେ ସେଥିପାଇଁ ଆଶୀର୍ବାଦ ଦିଅନ୍ତୁ ।" ଏହା କହି ତାଙ୍କ ପାଦ ଛୁଇଁବାର ପ୍ରୟାସ କଲି । ସେ କିନ୍ତୁ ପଛକୁ ଘୁଞ୍ଚିଯାଉଥିବା ଅବସରରେ ମତେ ଧରିପକାଇଲେ ଓ ବାରଣ କରି କହିଲେ, "ଛି ପୁଅ, ଥାଉ । ମୁଁ ପରା ଜାତିରେ ନିଷାଦ । ତୁମେ ପୁଅ ମୋ' ପାଦ ଛୁଇଁଲେ ମତେ ପାପ ଲାଗିବ ଯେ ।"

"ଆପଣ ମୋ' ନିକଟରେ ମାଆ ସମାନ । ନିଷାଦୀ କିମ୍ବା ଆଉ କେହି ନୁହନ୍ତି । ମାଆ-ପୁଅ ଜାତି ଦେଖାଦେଖି ହୁଅନ୍ତି ନାହିଁ । ପୁଅ ବୋଲି ମତେ କ'ଣ କୋଳେଇନେବେ ନାହିଁ ମାଉସୀ ?" ଆବେଗଭରା କଣ୍ଠରେ କହିଲି । ତାଙ୍କ ବାତ୍ସଲ୍ୟମମତା ମତେ ମୁଗ୍ଧ କରିଦେଇଥିଲା । ତାହାରି ଉର୍ଜସ୍ୱଳ ପ୍ରବାହରେ ମନୁଷ୍ୟକୃତ ଜାତିର ପାଚିରି ଭାଙ୍ଗି ଚୂନା ହୋଇଯାଇଥିଲା ।

"କାହିଁକି ନୁହେଁ ? କାହିଁକି ନୁହେଁ ? ମୋ' ପୁଅକୁ କୋଳେଇ ନେବି ନାହିଁ ତ ଆଉ ନେବି କାହାକୁ ?" ମୁହୂର୍ତ୍ତକ ମଧ୍ୟରେ ତାଙ୍କ ଥର ଥର ଜୀର୍ଣ୍ଣ ବାହୁ ଦୁଇଟି ବାନ୍ଧି ରଖିଲା ମତେ ନିବିଡ଼ ଆଲିଙ୍ଗନରେ । ସେଇ ଆଲିଙ୍ଗନ ମଧ୍ୟରେ ଅନୁଭବ କରିପାରିଲି ଚମ୍ପାପୁରର ଜୀର୍ଣ୍ଣ କୁଟୀରରେ ଲୁହ ଝରାଉଥିବା ପୁତ୍ରବିରହିଣୀ ରାଧାମା'ଙ୍କର ଚିତ୍ତଥରା ଓ ପ୍ରାଣପୂରା ଆଲିଙ୍ଗନର ସ୍ପର୍ଶ । ଏଇ ଆଲିଙ୍ଗନଟିକକ ପାଇ ଦୀର୍ଘଯାତ୍ରାର ସକଳ କ୍ଲାନ୍ତି, ସକଳ ଅବସାଦ ମୋର ଦୂର ହୋଇଗଲା ଯେମିତି ! ଆଃ ! କି ପ୍ରଶାନ୍ତି ! କି ସୁଖ ! ମନକୁ ମନ କହି ହେଉଥାଏ ।

ପରେ ବୁଝିଲି ଗାଁଟିର ନାଁ କୁମୁଦପୁର । ଆଉ ନିଷାଦରମଣୀଙ୍କ ନାଁ ସରସ୍ୱତୀ । ପରଶୁରାମଙ୍କ ମହେନ୍ଦ୍ରଗିରିରେ ଅବସ୍ଥାନ ପରଠାରୁ ତାହାର ପାଦଦେଶରେ ଥିବା ଗାଁ-ଗଣ୍ଡାଗୁଡ଼ିକର ଘଟିଛି ବିରାଟ ଏକ ପରିବର୍ତ୍ତନ । ତାଙ୍କୁ ଅନୁସରଣ କରି ଅନେକ ଋଷି-ବ୍ରାହ୍ମଣ ଆସି ରହୁଛନ୍ତି ପର୍ବତର ବିଭିନ୍ନ ଅଞ୍ଚଳରେ । ସେମାନଙ୍କର ସ୍ଥାନୀୟ ଅଧିବାସୀମାନଙ୍କ ସହିତ ମିଳାମିଶା ଘଟିଆସୁଛି ବାରମ୍ବାର । ତାହା ଛଡ଼ା ବୈଦିକ ଧର୍ମରେ ଅନୁପ୍ରାଣିତ ହୋଇ ସେମାନେ ସ୍ଥାନୀୟ ଅଧିକାରୀମାନଙ୍କୁ ଦୀକ୍ଷିତ କରାଇବାରେ ଲାଗିଛନ୍ତି

ଆର୍ଯ୍ୟଧର୍ମରେ । ଫଳରେ ନିଷାଦ ଓ ଆର୍ଯ୍ୟସଂସ୍କୃତିରେ ପରସ୍ପର ସହିତ ଘଟିଛି ବିବାହ । ଏହାର ପ୍ରଭାବ ଗଭୀର ଭାବରେ ପଡ଼ିଛି ନିଷାଦମାନଙ୍କ ଚାଲିଚଳନରେ ଓ ସାମାଜିକ କାର୍ଯ୍ୟକଳାପରେ । ଗାଁମାନଙ୍କର ନାଁ ବଦଳିଯାଇଛି । ଆଉ ବଦଳି ବି ଯାଇଛି ଲୋକମାନଙ୍କ ନାଁ । ତାହାର ଫଳଶ୍ରୁତିର ସାକ୍ଷାତ୍ ପ୍ରମାଣ ମୋର ଆଶ୍ରୟସ୍ଥଳୀ କୁମୁଦପୁର ଗାଁ ଓ ତାହାର ଅଧିବାସିନୀ ନିଷାଦରମଣୀ ସରସ୍ୱତୀ । ଅଥଚ ଏତେ ମିଳାମିଶା ଓ ତଜ୍ଜନିତ ପରିବର୍ତ୍ତନ ସତ୍ତ୍ୱେ ନିଷାଦ ସଂସ୍କୃତିର ମୌଳିକ ପ୍ରକୃତି ଓ ପ୍ରବୃତ୍ତି ରହିଛି ଅପରିବର୍ତ୍ତିତ । ଧର୍ମ ଓ ଈଶ୍ୱରବିଶ୍ୱାସ ମଧ୍ୟ ଅନୁରୂପ ଭାବରେ ରହିଛି ଅପରିବର୍ତ୍ତିତ । ଗୋଟିଏ ସଂସ୍କୃତି ଅପର ସଂସ୍କୃତିକୁ ଗ୍ରାସ କରି ନାହିଁ, ବରଂ କରିଛି ସୁଷ୍ଟୁସୁନ୍ଦର ଓ ମହିମାନ୍ୱିତ । କହିବାକୁ ଗଲେ ନିଷାଦମାନେ ହୋଇଉଠିଛନ୍ତି ଆର୍ଯ୍ୟ ଦୃଷ୍ଟିକୋଣରୁ ଅଧିକତର ସଂସ୍କୃତ ।

ଯଥାବିଧି ଫଳମୂଳରେ ଅତିଥିସତ୍କାର କରିବା ପରେ ନିଷାଦୀ ମାଉସୀ ତାଙ୍କ ବ୍ୟକ୍ତିଗତ ଜୀବନର କେତେକ ପୃଷ୍ଠା ଉନ୍ମୋଚନ କରିବାକୁ ଲାଗିଲେ ମୋ' ଆଗରେ । ଏହା କରୁଥିବା ଅବସ୍ଥାରେ ତାଙ୍କ ଆଖିକଣରେ ଭରିଉଠୁଥିଲା ଲୁହ ଓ କଣ୍ଠସ୍ୱର ହୋଇଉଠୁଥିଲା ବାଷ୍ପରୁଦ୍ଧ । ପୂର୍ବେ ତାଙ୍କର ସବୁ କିଛି ଥିଲା । ଥିଲା ଏକ ସୁଖୀ ପରିବାର । ପତି ଥିଲେ । ଆଉ ଥିଲା ବି ଜଣେ ଭେଣ୍ଡା ପୁଅ । ଘରକୁ ବୋହୂଟିଏ ଆଣିବା ପାଇଁ ସବୁ ହୋଇଥିଲା ଠିକ୍ ଠାକ୍ । ଆଜିକୁ ପ୍ରାୟ ଦଶ ବର୍ଷ ତଳେ ତାଙ୍କ ଘରକୁ ମୋରି ଭଳି ଆସିଲେ ଜଣେ ଅତିଥି । ପରଶୁରାମଙ୍କ ଶିଷ୍ୟ ହେବା ଉଦ୍ଦେଶ୍ୟରେ ଯାତ୍ରା କଲେ ତାଙ୍କ ଆଶ୍ରମକୁ । କହିଯାଇଥିଲେ ଛଅ ମାସ ମଧ୍ୟରେ ଫେରିଆସିବେ ବୋଲି । କିନ୍ତୁ ଛଅ ମାସ ଯାଇ ବର୍ଷେ ବିତିଲା । ଫେରିଲେ ନାହିଁ । ସେମାନଙ୍କ ମନକୁ ପାପ ଛୁଇଁଲା । ତାଙ୍କ ପତି ଗଲେ ଋଷିଙ୍କ ଆଶ୍ରମକୁ ଅତିଥିକୁ ଖୋଜି-ଖୋଜି । ସେ ମଧ୍ୟ ଫେରିଲେ ନାହିଁ । ତିନି ଦିନ ପରେ ତାଙ୍କ ଭେଣ୍ଡିଆ ପୁଅ ଗଲା ବାପାଙ୍କୁ ଓ ଅତିଥିଙ୍କୁ ଖୋଜିବା ପାଇଁ । ସେ ମଧ୍ୟ ଫେରିଲା ନାହିଁ । ଖବର ମିଳିଲା ତାଙ୍କ ପତି ଓ ପୁତ୍ର ମଣିଷଖିଆ ବାଘର ହୋଇଛନ୍ତି ଶିକାର । ସେମାନଙ୍କ ପିନ୍ଧା ଲୁଗାର ଛିଣ୍ଡା ଅଂଶ ଓ ରକ୍ତର ଦାଗ ଦେଖି ଏହି ନିର୍ଣ୍ଣୟରେ ପହଞ୍ଚିଥିଲେ ସମସ୍ତେ । ହୁଏତ ଅତିଥିଙ୍କର ସେହିଭଳି କିଛି ଦଶା ହୋଇଥିବ । ସେହିଦିନୁ ନିଷାଦୀ ମାଉସୀ ରହିଛନ୍ତି ଏକାକିନୀ । କାଳ କାଟୁଛନ୍ତି ଦୁଃଖରେ ।

ଏହି କାହାଣୀ କହିଲା ବେଳେ ସେ ମୋ' ହାତକୁ ଚାପି ଧରି କହିଲେ, ''ପୁଅ ! ତୁମେ କାହିଁକି ସେଠାକୁ ଯିବାକୁ ଚାହୁଁଛ ? ପଦେ ପଦେ ବିପଦ । ଏବେ ଆମ ଗାଁରେ ହୋ' ଉଠିଛି ଯେ ବାଟରେ ଦୁଇ ଦୁଇଟା ମଣିଷଖିଆ ବାଘ ମାତିଛନ୍ତି ।'' ମୋ' ପ୍ରତି ତାଙ୍କର କିଛିଟା ମମତା ଆସିଯାଇଥିଲା ଏଇ ଅଳ୍ପ ସମୟର ପରିଚିତି ଭିତରେ ମଧ୍ୟ । ତେଣୁ ମତେ ଯିବାକୁ ବାରଣ କରୁଥିଲେ ।

ତାଙ୍କୁ ସାନ୍ତ୍ୱନା ଦେଇ କହିଲି, ''ମୋର କିଛି ହେବ ନାହିଁ ମାଉସୀ । ମୁଁ ଜଣେ ବୀର । ମୋ' ପାଖରେ ଧନୁର୍ବାଣ ଅଛି ।''

‘‘ହଉ ବାପା, ତୁମର ଯାହା ଇଚ୍ଛା । କିନ୍ତୁ ଗଲାବେଳେ ଭାରି ସାବଧାନ ଥିବ । ମଣିଷଖିଆ ବାଘ ଭାରି ଚାଲାକ । କେତେବେଳେ କେଉଁଠି ଯେ ଲୁଚିଛପି ମଣିଷ ଉପରକୁ ଝାମ୍ପ ମାରିବ ତାହା ଜାଣିବା ଅସମ୍ଭବ ।’’ ତାଙ୍କ ସମ୍ମତିସୂଚକ ବାଣୀରେ ଛଳ ଛଳ ଆଶଙ୍କା !

‘‘ମୁଁ ତ ବାଘକୁ ନ ଦେଖି ବି ତା’କୁ ମାରିଦେଇପାରିବି ଖାଲି ତା’ର ଚାଲିବାର ପତ୍ର ଖସ୍ ଖସ୍ ଶବ୍ଦ ଶୁଣି ।’’ ଅଧରତଳର ମୃଦୁ ମୃଦୁ ହାସରେ ତାଙ୍କ ମନରେ ଦୃଢ଼ବିଶ୍ୱାସ ଜନ୍ମାଇବାର ଚେଷ୍ଟା କଲି ।

‘‘କେମିତି ?’’ ତାଙ୍କର ସରଳ ଓ ନିରୀହ ପ୍ରଶ୍ନ ଜୀର୍ଣ୍ଣ କୁଟୀରର ଚାରିକୋଣକୁ ଆକୁଳିତ କରିଦେଲା ।

‘‘ଶବ୍ଦବେଧୀ ବାଣଦ୍ୱାରା । ଏହାଦ୍ୱାରା କେବଳ ଶବ୍ଦ ଶୁଣି ଲକ୍ଷ୍ୟ ବିନ୍ଧି ହୁଏ ।’’ ସହଜ କଣ୍ଠରେ ଉତ୍ତର ଦେଲି ।

‘‘ସତେ ନା ?’’ ତାଙ୍କ ମନରେ ତଥାପି ଅବିଶ୍ୱାସ । ଶବ୍ଦବେଧୀ ବାଣ କଥା ସେ ପ୍ରଥମ କରି ଶୁଣିଲେ ବୋଧହୁଏ ।

‘‘ହଉ, ଏଥରକ ବିଶ୍ରାମ ନିଅ । କାଲି ସକାଳୁ ସକାଳୁ ବାହାରିଯିବ ।’’

‘‘ହଁ, ମାଉସୀ ।’’

ସେ ମୋ’ ପାଇଁ ବିଛଣା କରିଦେଲେ । ଖଟ ନୁହେଁ କି ପଲଙ୍କ ନୁହେଁ । ଅଥବା ନୁହେଁ ତୁଳାର ଶେଯ । କଅଁଳିଆ ପତ୍ରର ଶେଯ । କିନ୍ତୁ ତାହା ତିଆରି କରିବାରେ ଯେଉଁ ମମତା ଓ ଆତିଥେୟତା ଭରିଥିଲା, ତାହା ତୋଳିଥିଲା ଶେଯକୁ ଆହୁରି କୋମଳତର କରି । ସତେ ଯେମିତି ତୁଳିତଳ୍ପଠାରୁ ଆହୁରି କୋମଳତର ! ସେ ନିଜେ ଯାଇ ଘରକୁ ଲାଗିକରି ଥିବା ଛାଗଶାଳାରେ ରାତିଟି ବିତାଇଲେ ।

ନିଷାଦମାନେ ସ୍ୱଭାବତଃ ଅତିଥିପରାୟଣ । ତାହା ଉପରେ ପୁଣି ଆର୍ଯ୍ୟଧର୍ମର ପ୍ରଭାବ ସେମାନଙ୍କ ଉପରେ ପଡ଼ିଆସିଛି ବର୍ଷ ବର୍ଷ ଧରି । ଫଳରେ ସେମାନେ ହୋଇଉଠିଛନ୍ତି ଅତି ମାତ୍ରାରେ ଅତିଥିପରାୟଣ । ଅତିଥି ସେମାନଙ୍କ ନିକଟରେ ଦେବତା ଭଳି । ସବୁ କିଛି ସେମାନେ ତାଙ୍କପାଇଁ ଅର୍ପଣ କରିଦେବାଲାଗି ପ୍ରସ୍ତୁତ । ଏହାର ଏକ ଜ୍ୱଳନ୍ତ ନିଦର୍ଶନ ଥିଲେ ନିଷାଦୀ ମାଉସୀ ।

ଆତିଥେୟତା ପାଇଁ ଧନର ଆବଶ୍ୟକତାଠାରୁ ମନର ଆବଶ୍ୟକତା ବେଶି । ମନ ନ ଥିଲେ ଯେତେ ଧନ ଥିଲେ ବି ମଣିଷ ଅତିଥିସତ୍କାର କରିପାରେନା । ‘ଅତିଥିଦେବୋ ଭବ’ ବୋଲି ଯେଉଁ ଶାସ୍ତ୍ରର ବାଣୀ, ତାହା କେବଳ ପୋଥିବାଇଗଣ ହୋଇ ରହିଯାଏ ତା’ ନିକଟରେ । ବାସ୍ତବିକ୍ ବିଶାଳ ଓ ଉଦାର ମନର ଅଧିକାରିଣୀ ଥିଲେ ନିଷାଦୀ ମାଉସୀ । ସେହି କଥା ଓ ଆଗାମୀ ଦିନର ଯାତ୍ରା କଥା ଚିନ୍ତା କରୁ କରୁ ମତେ କେତେବେଳେ ଯେ ନିଦ ଆସିଯାଇଥିଲା ତାହା ଆଦୌ ଜାଣିପାରି ନ ଥିଲି ।

## ତେଇଶ

ପରଦିନ ସକାଳୁ ସକାଳୁ ନିତ୍ୟକର୍ମ ସାରି ବାହାରିଲି ଯାତ୍ରାପଥରେ । କୁମୁଦପୁର ଗାଁରୁ ଲମ୍ୱିଯାଇଛି ପାଦଚଲା ରାସ୍ତାଟିଏ । ମତେ ସେହି ରାସ୍ତା ଧରିବାକୁ ହେବ । ସାଥିରେ ଘୋଡ଼ାକୁ ନେବାର ପ୍ରଶ୍ନ ହିଁ ନ ଥିଲା । ତେଣୁ ତାହାକୁ ଛାଡ଼ିଦେଲି ନିଷାଦୀ ମାଉସୀଙ୍କ ପାଖରେ । ତାହାର ରକ୍ଷଣାବେକ୍ଷଣ ଲାଗି ଆବଶ୍ୟକ ନିଷ୍କ ଦେଲି ତାଙ୍କ ହାତରେ । ତାଙ୍କଠାରୁ ସାମାନ୍ୟ କିଛି ଫଳମୂଳର ପାଥେୟ ନେଇ ବାହାରିପଡ଼ିଲି । ହିଂସ୍ରଜନ୍ତୁସଂକୁଳ ରାସ୍ତା । ପୁଣି ବାଘ ମାତିଛି ବୋଲି ଖବର । ତେଣୁ ଧନୁର୍ବାଣ ହାତରେ ନେବାକୁ ଭୁଲି ନ ଥିଲି ।

ମହେନ୍ଦ୍ରଗିରିକୁ ଆରୋହଣ କରିବା ପୂର୍ବରୁ ଦେଖିନେଲି ତାହାର ସୁଷମିତ ଦୃଶ୍ୟ । ଖୁବ୍ ଚମତ୍କୃତ ହେଲି । ଆକାଶଛୁଆଁ ଗିରିର ତୁଙ୍ଗିମା । ଶ୍ୟାମଳ ଚୂଡ଼ାକୁ ଅତିକ୍ରମ କରି ଉଇଁ ଆସୁଥିବା ସୂର୍ଯ୍ୟଙ୍କୁ ପ୍ରଣାମ କଲି ଓ ମନେ ମନେ ତାଙ୍କୁ ପ୍ରାର୍ଥନା କଲି ମତେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେବାପାଇଁ । ମୋ' ଉଦ୍ଦେଶ୍ୟକୁ ସିଦ୍ଧ କରାଇବାପାଇଁ । ଅନୁଭବ କଲି, ସତେ ଯେମିତି ମୋର ଆଦ୍ୟ ଗୁରୁ ଡାକୁଛନ୍ତି ମତେ, ଆସ ବତ୍ସ, ଆସ । ଗିରିଶିଖରକୁ ଆସ । ଆଚାର୍ଯ୍ୟ ପରଶୁରାମଙ୍କ ଶ୍ୟାମାୟିତ ଆଶ୍ରମକୋଳକୁ ଆସ । ସେଠି ତୁମ ଲାଗି ଫୁଟିବା ଅବସ୍ଥାରେ ଅଛି ସିଦ୍ଧିର ଶତଦଳ ! ଏଇ ଅନୁପ୍ରେରକ ବାଣୀରେ ମନରେ ମୋର ଅଦମ୍ୟ ଉତ୍ସାହ ।

ଧୀରେ ଧୀରେ ବେଳା ହେଉଥାଏ ଅତିକ୍ରାନ୍ତ । ତାହା ସହିତ ଗତି ମୋର ବଢ଼ି ଉଠୁଥାଏ । ମନରେ ଉଦ୍‌ବେଗ । ମତେ କୌଣସିମତେ ସଂଧ୍ୟା ପୂର୍ବରୁ ଗିରିର ଶିଖରଦେଶରେ ପହଞ୍ଚିବାକୁ ହେବ । ତାହାହିଁ ମୋ' ଲକ୍ଷ୍ୟସ୍ଥଳ । ସେଇଠି ଆଚାର୍ଯ୍ୟ ପରଶୁରାମଙ୍କ ଆଶ୍ରମ । ଭାଗ୍ୟରେ ଥିଲେ ସେଇଠି ବିତାଇବି ଆଗାମୀ କେତୋଟି ମାସ ।

ନିଷାଦୀ ମାଉସୀ ଯେଉଁ ବାଘ ମାତିଥିବା ସମ୍ୱାଦ ଦେଇଥିଲେ, ସେଥିପାଇଁ ଖୁବ୍ ସତର୍କ ଭାବରେ ଚାଲୁଥାଏ । ସୌଭାଗ୍ୟକୁ କିଛି ଦୁର୍ଘଟଣାର ସମ୍ମୁଖୀନ ହୋଇ ନ ଥିଲି । ଭଲରେ ଭଲରେ ମଧ୍ୟାହ୍ନ ସୁଦ୍ଧା ପହଞ୍ଚିଗଲି ଶିଖରଦେଶର ବିସ୍ତୃତ ଏକ ସମତଳ ଅଞ୍ଚଳରେ । ତାହାର ପାଖେ ପାଖେ ବହିଯାଉଥାଏ କ୍ଷୁଦ୍ର ଏକ ନିର୍ଝରିଣୀ । ତାହାରି ଜଳରେ ମଧ୍ୟାହ୍ନ ସଂଧ୍ୟା କରିବାର ଠିକ୍ କଲି ।

ହଁ, ଆଉ ଗୋଟିଏ କଥା କହିବାକୁ ଭୁଲିଯାଇଛି । ପ୍ରାନ୍ତରଦେଶରେ ପହଞ୍ଚିବା ପୂର୍ବରୁ ମୋ' ଧନୁର୍ବାଣକୁ ଲୁଚାଇ ରଖିଦେଇ ଆସିଥିଲି ଏକ ଗିରିଗୁହାରେ । ବେଶଭୂଷା ମଧ ବଦଳାଇ ଦେଇଥିଲି । ସେହିଠାରୁ ଧରିଥିଲି ବ୍ରାହ୍ମଣବେଶ । ହାତରେ କୁଶ ଓ ଯଜ୍ଞସମିଧ । ଗୁରୁଙ୍କ ଚରଣରେ ତାହାକୁ ହିଁ ଅର୍ପଣ କରି ପ୍ରାର୍ଥନା କରିବି ତାଙ୍କ ଶିଷ୍ୟତ୍ୱ । ସେ ତ ଅତି କ୍ରୋଧୀ । ଜାଣେନା କିପରି ଭାବରେ ଗ୍ରହଣ କରିବେ ମୋ' ପ୍ରାର୍ଥନାକୁ । ଆଶାନିରାଶାର ଦ୍ୱନ୍ଦ୍ୱ ମଧ୍ୟରେ ଆଗେଇ ଚାଲିଥିଲି । ଗଲାବେଳେ କିନ୍ତୁ ଗୁଡ଼ିଏ ଶୁଭ ଶକୁନ ଦେଖିଥିଲି । ସେହି ଶକୁନମାନ ହିଁ ମୋ' ଆଶାର ଦୀପଟିକୁ ରଖିଥିଲେ ଚିରପ୍ରଜ୍ୱଳିତ କରି ଠିକ୍ ଉଦିତ

ମେଘର ମୋ’ ଘନଘଟା ଅପେକ୍ଷମାଣ ଚାତକ ପ୍ରାଣରେ ଆସନ୍ନ ବାରିପାତର ଆଶା ଭରିଦେଲା ଭଳି ।

ଝରଣାଜଳରେ ପଶି ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ସଂଧ୍ୟାପୂଜା କରିବା ଅବସରରେ ମୋ’ କଣ୍ଠରୁ ନିର୍ଗତ ହେଲା ତାଙ୍କ ଉଦ୍ଦେଶ୍ୟରେ ସମର୍ପିତ ଈଶୋପନିଷଦର ଭକ୍ତିପୂତ ସେଇ ମୋର ଅତି ପ୍ରିୟ ମନ୍ତ୍ର

ପୂଷନ୍ନେକର୍ଷେ ଯମ ସୂର୍ଯ୍ୟ ପ୍ରାଜାପତ୍ୟ
ବ୍ୟୂହ ରଶ୍ମିନ୍ ସମୂହ ।
ତେଜୋ ଯତ୍ତେ ରୂପଂ କଲ୍ୟାଣତମଂ
ତତ୍ ତେ ପଶ୍ୟାମି ।
ଯୋଽସାବସୌ ପୁରୁଷଃ ସୋଽହମସ୍ମି ।

ହେ ପୋଷଣକର୍ତ୍ତା ! ହେ ଏକମାତ୍ର ଦ୍ରଷ୍ଟା ! ହେ ସର୍ବନିୟାମକ ! ହେ ସୂର୍ଯ୍ୟ ! ହେ ମହାପିତୃଭକ୍ତି ! ତୁମ କିରଣରାଶିକୁ ପକାଇଦିଅ । ଜ୍ୟୋତିଃପୁଞ୍ଜକୁ ସଂକୁଚିତ କରିଦିଅ । ସେଇ ଯେଉଁ ତୁମ ଖୁବ୍ କଲ୍ୟାଣମୟ ରୂପ, ତାହାକୁ ତୁମର ପ୍ରାସାଦରୁ ଦେଖିନିଏଁ । ଯିଏ ସେହି ପୁରୁଷ ମୁଁ ହେଉଛି ସେହି । ଅର୍ଦ୍ଧମୁଦ୍ରିତ ଚକ୍ଷୁରେ ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ଜଳତର୍ପଣ କଲା ବେଳେ ଅଙ୍ଗେ ଅଙ୍ଗେ ଅନୁଭବ କରୁଥାଏ ପ୍ରେମ ଓ ଭକ୍ତିର ଏକ ପୂତପବିତ୍ର ଓ ମଦନୀୟ ସ୍ପର୍ଶ । ସାରା ତନୁ ପୁଲକିତ । ଗିରିନିର୍ଝରୀର କଳତାନ ସହିତ ସମତାଳ ଦେଇ ମୋ’ ହୃଦୟତଳେ ଭକ୍ତିନିର୍ଝରୀର କଳ କଳ ଛଳ ଛଳ ପ୍ରବାହ ।

ଜାଣେନା ସୂର୍ଯ୍ୟଦେବଙ୍କ ସହିତ ମୋର କି ସଂପର୍କ ? ଲକ୍ଷ୍ୟ କରିଛି, ତାଙ୍କୁ ପ୍ରାର୍ଥନା କଲାବେଳେ ମତେ ଲାଗେ, ସତେ ଯେମିତି କୌଣସି ଆତ୍ମୀୟଜନଙ୍କ ନିକଟରେ ପ୍ରାର୍ଥନା କରୁଛି ! ମୋ’ ଆଗରେ ଠିଆ ହୋଇଯାଆନ୍ତି ସେ ଏକ ମୂର୍ତ୍ତିମାନ୍ ଆଶୀର୍ମୟ ମାନବ ବିଗ୍ରହ ଧରି ! ବାସ୍ତବିକ ବଡ଼ ଆଚମ୍ବିତ ଲାଗେ ମତେ ସେକଥା ! ଯେତେ ଚେଷ୍ଟା କଲେ ବି ଏ ରହସ୍ୟକୁ ଭେଦ କରିପାରେନା ।

ଆଖି ଖୋଲିବା ପରେ ଦେଖିଲି ମୋ’ ନିକଟରେ ଥିବା ଆଉ ଏକ ତୁଠରେ ଜଣେ ଋଷି ସନ୍ଧ୍ୟାପୂଜାରେ ମଗ୍ନ । କେଶ, ଶ୍ମଶ୍ରୁ ସବୁ କିଛି ଶୁଭ୍ର । ଗୋରା ତକ ତକ ମୁହଁରେ ଜ୍ୟୋତିଃର ଝଲକ । ଯାହା ଜଣାପଡୁଛି, ଖୁବ୍ ବୃଦ୍ଧ ହେବେ । କିନ୍ତୁ ମୁହଁସାରା ଯୌବନସୁଲଭ ଦୀପ୍ତି । ଜଣେ ମନସ୍ୱୀ ପ୍ରବୃଦ୍ଧ ଋଷି ନିଶ୍ଚୟ । ମହେନ୍ଦ୍ରଗିରିର ଶିଖରଦେଶରେ ତ ପହଞ୍ଚି ସାରିଥିଲି । ତେଣୁ ତାଙ୍କୁ ହିଁ ପଚାରି ଆଚାର୍ଯ୍ୟ ପରଶୁରାମଙ୍କ ଆଶ୍ରମର ସ୍ଥିତି ବିଷୟ ବୁଝିନେବି ବୋଲି ଭାବିଲି । ତାଙ୍କ ସଂଧ୍ୟାପୂଜା ସରିବା ପର୍ଯ୍ୟନ୍ତ ଅପେକ୍ଷା କଲି । ସେ ତୁଠ ଉପରକୁ ଉଠିବା ପରେ ତାଙ୍କ ପାଖକୁ ଯାଇ ସଭକ୍ତି ପ୍ରଣାମ କଲି ।

‘‘ଦୀର୍ଘାୟୁର୍ଭବ ବତ୍ସ ।’’ ସେ ଆଶୀର୍ବାଦର ମୁଦ୍ରା ଦେଖାଇ କହିଲେ । ଓଠତଳେ ଚହଟି ଉଠୁଥିବା ମୃଦୁ ହାସ୍ୟରେଖାରେ ସମଧିକ ଆଶିଷର ଆଲିଙ୍ଗନ । ଲକ୍ଷ୍ୟ କଲି, ଶୁଭ୍ର ଦନ୍ତପଙ୍କ୍ତିରୁ କୌଣସି ଗୋଟିଏ ହେଲେ ଦନ୍ତ କ୍ଷୟ ହୋଇ ନାହିଁ । ବଳିଷ୍ଠ ପେଶଳ ବାହୁ ଓ

ପ୍ରଶସ୍ତ ବକ୍ଷ ଅସୀମ ତେଜଃ, ଓଜଃ ଓ ଶୌର୍ଯ୍ୟର ଦେଉଛି ପରିଚୟ । ସେ ପଚାରିଲେ, ''ତୁମେ ସେଇ ଯୁବକ ନା ଯେ ଏଇ କିଛି କ୍ଷଣ ତଳେ ନିକଟରେ ସଂଧ୍ୟାପୂଜା କରୁଥିଲା ?''

''ହଁ ପ୍ରଭୋ !'' ମୋ'ର ବିନୟଭରା ଉତ୍ତର ।

''ବାଃ ! ବଡ଼ ଚମତ୍କାର ତୁମର ଉଚ୍ଚାରଣ ! ତୁମେ କ'ଣ ବ୍ରାହ୍ମଣ ?''

''ହଁ, ପ୍ରଭୋ !'' ହଠାତ୍ ଏଇ ଉତ୍ତର ବାହାରିପଡ଼ିଲା ମୋ' କଣ୍ଠରୁ । ତାଙ୍କରି ଧାରଣା, ବ୍ରାହ୍ମଣ ଯେମିତି ସଂସ୍କୃତ ଭାଷାର ଶୁଦ୍ଧପୂତ ଉଚ୍ଚାରଣ କରିପାରିବେ, ଆଉ କେହି ସେମିତି ନୁହନ୍ତି । ନ ହେଲେ ସେ ଏଭଳି ପ୍ରଶ୍ନ ପଚାରିଥାନ୍ତେ କାହିଁକି ? ମୋର କିନ୍ତୁ ଚିନ୍ତାଧାରା ଥିଲା ବିପରୀତ । ଏବେ ମଧ ତାହା ରହିଛି । ସାରା ଜୀବନ କରି ତାହା ହିଁ ରହିଥିଲା । ଖାଲି ତ ରହିଥିଲା ନୁହେଁ, କାର୍ଯ୍ୟାନ୍ୱିତ ବି ହୋଇଥିଲା । ଯେ କୌଣସି ଜ୍ଞାନ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବର୍ଣ୍ଣକୁ ଅନୁସରଣ କରେ ନାହିଁ । କୁଳଜନ୍ମ ତାହାର କାରଣ ନୁହେଁ । ପୌରୁଷ, ହଁ, ପୌରୁଷ ହିଁ ତାହାର ଏକମାତ୍ର କାରଣ । ଏଇ ପୌରୁଷର ଚାବିକାଠିଟି ଅଛି ମଣିଷର ନିଜ ହାତରେ । ତାହାରି ସାହାଯ୍ୟରେ ସେ ସକଳ ଜ୍ଞାନଭଣ୍ଡାରର ଗନ୍ତାଘରକୁ ଖୋଲିଦେଇପାରେ । ମୁଁ କିନ୍ତୁ ଏ ସବୁ କଥା କିଛି ମୁନିଙ୍କ ଆଗରେ କହିବା ପାଇଁ ଚେଷ୍ଟା କରି ନ ଥିଲି । କହିଥିଲେ ତାହା ହୁଏତ ହୋଇଥାନ୍ତା ଅଶାଳୀନ । ଦେଇଥାନ୍ତା ଅଯଥା ଦାମ୍ଭିକତାର ପରିଚୟ । ମୁନି ବିରକ୍ତ ଅଥବା କ୍ରୁଦ୍ଧ ହୋଇଥାନ୍ତେ । ହୁଏତ ଅଭିଶାପ ଦେଇଥାନ୍ତେ ମତେ ।

ତାଙ୍କ ପାଖରେ ଅବନତ ଶିରରେ ସେମିତି ଠିଆ ହୋଇ ରହିଲି । ତାଙ୍କର ପରବର୍ତ୍ତୀ ପ୍ରତିକ୍ରିୟା ପାଇଁ ଅପେକ୍ଷା । ନିର୍ଝରିଣୀର ଜଳପ୍ରବାହ ସେମିତି ବହି ଚାଲିଥାଏ କଳ କଳ ସ୍ୱରରେ । ତାହାର କଳସ୍ୱନ ସହିତ ସ୍ୱର ମିଳାଇ ରାବି ଉଠୁଥାନ୍ତି ଦଳ ଦଳ ହୋଇ କେତୋଟି ହଂସମିଥୁନ ।

ମୁନିବର ମତେ ନିରୀକ୍ଷଣ କରୁଥାନ୍ତି ଗଭୀର ଭାବରେ । ଆପାଦମସ୍ତକ ବୁଲାଇ ଆଣୁଥାନ୍ତି ଆଖି । ଚିତ୍ତତଳେ ମୋର ଆଶଙ୍କା । ଏଇ ଯେଉଁ ମିଥ୍ୟା ବ୍ରାହ୍ମଣ ପରିଚୟଟି ଦେଲି, ସେଥିରେ ଧରା ପଡ଼ିଗଲି କି ? ଧୂର୍ତ୍ତତା ମୋର ପ୍ରକାଶ ପାଇଗଲା କି ? ମୁଁ ତ ଆସିଥିଲି ଆଚାର୍ଯ୍ୟ ପରଶୁରାମଙ୍କ ନିକଟରେ ବ୍ରାହ୍ମଣ ବୋଲି ନିଜର ପରିଚୟ ଦେବାପାଇଁ । ତେବେ ଆଉଜଣେ ଅପରିଚିତ ଋଷିଙ୍କ ଆଗରେ ଏ ମିଥ୍ୟାପରିଚୟ ଦେଲି କାହିଁକି ? ଏଥିପାଇଁ ଅପରାଧୀ ମନେକରୁଥିଲି ନିଜକୁ । କିନ୍ତୁ କଥାଟା ଯେତେବେଳେ ଖସିଯାଇଛି ତୁଣ୍ଡରୁ, ଆଉ ରକ୍ଷା ନାହିଁ । ଆଦୌ ଫେରାଇ ଆଣିହେବ ନାହିଁ ତାହାକୁ । ମତେ ଦୃଢ଼ ଭାବରେ ଠିଆ ହେବାକୁ ପଡ଼ିବ ତାହା ପଛରେ । ଯେତେ ମୂଲ୍ୟ ଦେବାକୁ ପଡୁ ପଛକେ । ଆଉ ଯେତେ ମିଥ୍ୟାଭାଷଣ ଦେବାକୁ ପଡୁ ପଛକେ ।

ସତ କହୁଛି, ଏଇ ଉତ୍ତର ଦେବାପାଇଁ କିଛି ହିଁ ଚେଷ୍ଟା କରି ନ ଥିଲି । ତାହା ଆପେ ଆପେ ବାହାରି ଯାଇଥିଲା । ସେତେବେଳେ ଚିତ୍ତସାରା ମୋର ଆଚାର୍ଯ୍ୟ ପରଶୁରାମଙ୍କ ଅଦୃଷ୍ଟ ମୂର୍ତ୍ତି ହିଁ ନାଚୁଥିଲା । ମହେନ୍ଦ୍ରଗିରିର ଶିଖରଦେଶରେ ତ ପହଞ୍ଚିଯାଇଛି । ତେଣୁ କାଳେ ଏଇ ଋଷିଜଣକ ହୋଇଥିବେ ମୋର ଆକାଙ୍କ୍ଷିତ ଆଚାର୍ଯ୍ୟ, ସେଇ ଆଶାରେ

ଏଭଳି କଥା ବାହାରିପଡ଼ିଥିଲା ତୁଣ୍ଡରୁ । ପରବର୍ତ୍ତୀ ଘଟଣା ଯାହା ଘଟିଲା, ତହିଁରୁ ପ୍ରମାଣିତ ହେଲା ଯେ ମୁଁ ଠିକ୍ ହିଁ କରିଥିଲି । ନ ହେଲେ ସକଳ ଉଦ୍ୟମ ମୋର ହୋଇଯାଇଥାନ୍ତା ପଣ୍ଡ । ଆଶାର ସୌଧ ମିଶିଯାଇଥାନ୍ତା ମାଟିରେ । ଅର୍ଜୁନଙ୍କର ପ୍ରତିସ୍ପର୍ଦ୍ଧି ହେବାଟା କେବଳ ରହିଯାଇଥାନ୍ତା ଶୁଷ୍କ ନିରର୍ଥକ କଳ୍ପନାରେ !

ଝରଣାକୂଳରୁ ଆସୁଛି ଡେଣା ଫଡ଼ ଫଡ଼ ଶବ୍ଦ । ଆଖି ସାମାନ୍ୟ ଟେକି ଚାହିଁଲି । ଝରଣାକୂଳରେ ଥିବା ଥୁଣ୍ଟା ଗଛଟିରୁ ଉଡ଼ିଯାଉଛି ଶୁଭ ଭଦାଳିଆ ଚଢ଼େଇଟିଏ । ଆଶ୍ୱସ୍ତ ହେଲି ଏ ଶୁଭ ଶକୁନରେ । ଛାତିର ଧକ ଧକ ଗତି କିଛିଟା କମିଲା ଭଳି ଲାଗିଲା ।

ମୁନି ପୁଣି ଗମ୍ଭୀର ସ୍ୱରରେ ପଚାରିଲେ, ''ଆଚ୍ଛା, ତୁମର ଗୋତ୍ର କ'ଣ ଯୁବକ ?''

''ଭାର୍ଗବ ।''

''ଏଁ, ଭାର୍ଗବ ? ତୁମ ନାମ ? ପିତାଙ୍କ ନାମ ? ନିବାସ ?'' ଗୋଟିକ ପରେ ଗୋଟିଏ କରି ବାଟୁଳି ବାଜିଲା ଭଳି ତାଙ୍କର ବିସ୍ମୟଭରା ପ୍ରଶ୍ନ ।

''ମୋ' ନାମ ବସୁ ଶର୍ମା । ପିତାଙ୍କ ନାମ ଅଧିରଥ ଶର୍ମା । ନିବାସ ଅଙ୍ଗରାଜ୍ୟର ଚମ୍ପାପୁରୀ ।'' ନିର୍ବିକାର ଚିତ୍ତରେ ଉତ୍ତର ଦେଲି । ଏତେବେଳକୁ ସଞ୍ଚିତ ହୋଇଯାଇଥିଲା ଯଥେଷ୍ଟ ସାହସ । ସବୁ କିଛି ସତ ସତ କହିଥିଲି । କେବଳ ଶର୍ମା ଶବ୍ଦଟି ଥିଲା ମିଛ । ତାଙ୍କର ବାରମ୍ବାର ଏଭଳି ପ୍ରଶ୍ନ ପଚାରିବା ଢଙ୍ଗରୁ ମନରେ ମୋର ସନ୍ଦେହ, ଏ ହୁଏତ ନିଜେ ହୋଇପାରନ୍ତି ଆଚାର୍ଯ୍ୟ ପରଶୁରାମ । ବିଶେଷ କରି ତାଙ୍କ ବଳିଷ୍ଠ ଓ ତେଜସ୍ୱୀ ବପୁ ଦୃଢ଼ୀଭୂତ କରୁଥିଲା ଏ ସନ୍ଦେହକୁ । ତେଣୁ ଆତ୍ମରକ୍ଷାଲାଗି ଆହୁରି ଅଧିକ ସତେଜ ହୋଇଉଠୁଥିଲି ମୁଁ । ଭାବୁଥିଲି, ମିଥ୍ୟାଭାଷଣ ସତେ କେତେ ଭୟଙ୍କର । ଗୋଟିଏ ମିଥ୍ୟାକୁ ଲୁଚାଇବା ପାଇଁ ଶହେଟି ମିଥ୍ୟା କହିବାକୁ ପଡ଼ିଥାଏ । ମଣିଷ ବିଚରା ବିବଶ ହୋଇ ମିଥ୍ୟାଭାଷଣର ବ୍ୟଥା ଓ ବେଦନାକୁ ସହିଯାଉଥାଏ । ଥରେ ଖୁଣ୍ଟରେ ବନ୍ଧା ହେଲେ ଗାଈର ମୁକ୍ତି ନ ଥାଏ । ଯେତେ ଚେଷ୍ଟା କଲେ ବି ତା'ର ଖୁଣ୍ଟ ଚାରିପାଖରେ ବୁଲିବା ହିଁ ହେଉଥାଏ ସାର । ମୋର ଅବସ୍ଥା ଥିଲା ଅନୁରୂପ ।

''ଆଚ୍ଛା, ଅଙ୍ଗରାଜ୍ୟରେ ତୁମ ପୂର୍ବଜ କେଉଁ ଭାର୍ଗବ ବ୍ରାହ୍ମଣ ଯାଇ ପ୍ରଥମେ ରହିଥିଲେ ଜାଣ ?'' ତାଙ୍କର ପୁନର୍ବାର ଅନ୍ତର୍ଭେଦୀ ପ୍ରଶ୍ନ । ସେ ମୋ' ପରିଚୟ ନେଇ ସଂପୂର୍ଣ୍ଣ ସନ୍ଦେହମୁକ୍ତ ହେବାକୁ ଚାହୁଁଥିଲେ । ସେ କିନ୍ତୁ ଯେତେ ଯେତେ ଏଭଳି ଅନ୍ତର୍ଭେଦୀ ପ୍ରଶ୍ନମାନ ପଚାରୁଥାନ୍ତି, ସେତେ ସେତେ ଅଧିକ ସାବଧାନ ହୋଇଯାଉଥାଏ ମୁଁ । ଗୋଟିଏ ପରେ ଗୋଟିଏ ନୂଆ ନୂଆ ଉପାୟ ଆଣି ଠୁଳ କରୁଥାଏ ଆତ୍ମରକ୍ଷା ଲାଗି । ଆମ ଦୁହିଁଙ୍କ ମଧ୍ୟରେ ହେଉଥିବା ଏଇ ଚତୁର ବାର୍ତ୍ତାଳାପ ହୋଇଉଠୁଥାଏ ଖୁବ୍ କୌତୂହଳମୟ ଓ ଉପଭୋଗ୍ୟ, ଯଦିଓ ମଝିରେ ମଝିରେ ମତେ ଝୁଲିବାକୁ ପଡୁଥାଏ ଆଶଙ୍କାର ଦୋଳିରେ ଓ ଜଳିବାକୁ ହେଉଥାଏ ମିଥ୍ୟାଭାଷଣର ଅନ୍ତର୍ଦାହରେ ।

''ନା, ଜାଣେନା ମୁନିବର । କିନ୍ତୁ ପୁରୁଷ ପୁରୁଷ ଧରି ଆମ ପରିବାରରେ ଭୃଗୁ ଋଷିଙ୍କ ନାମକୀର୍ତ୍ତନ ହୋଇଆସୁଛି ।''

''ତୈତ୍ତିରୀୟ ଉପନିଷଦରେ ଭୃଗୁ ଋଷିଙ୍କର ଯେଉଁ ଆଧ୍ୟାତ୍ମବିଦ୍ୟାର ଉଦ୍‌ଘୋଷଣା କରାଯାଇଛି, ତାହା ତୁମେ ଜାଣ ଯୁବକ ?''

''ମୁନିବର ଭୃଗୁବଲ୍ଲୀ କଥା ପଚାରୁଛନ୍ତି ତ ?'' ମୋ'ର ଜିଜ୍ଞାସାଭରା ପ୍ରତିପ୍ରଶ୍ନ । ଲକ୍ଷ୍ୟ କଲି, ତାଙ୍କ ଗମ୍ଭୀର ମୁଖମଣ୍ଡଳର ଭାବ ଏହା ମଧ୍ୟରେ ଯାଇଛି ବଦଳି । ତହିଁରେ ପହଁରୁଛି କୌତୂହଳର ଲହରୀ । ମୋ' ଉତ୍ତର ଶୁଣିବାପାଇଁ ସତେ ଯେମିତି ଖୁବ୍ ଉତ୍କଣ୍ଠିତ ସେ !

''ହଁ, ସେଇ କଥା । ତୁମେ ଭୃଗୁବଲ୍ଲୀ କ'ଣ ଜାଣିଛ ?''

ଏ ପ୍ରଶ୍ନର ଉତ୍ତର କିଛି ହିଁ କଷ୍ଟ ନ ଥିଲା ମୋ' ପାଇଁ । ଆଚାର୍ଯ୍ୟ ଦ୍ରୋଣ ବେଦାନ୍ତ ବିଷୟରେ ଯାହା କିଛି ମୌଳିକ ଶିକ୍ଷା ଦେଇଥିଲେ ତାହା ଏଥିପାଇଁ ଥିଲା ଯଥେଷ୍ଟ । ତାହାଛଡ଼ା ବ୍ରହ୍ମବିତ୍ ବନ୍ଧୁ ଅଶ୍ୱତ୍ଥାମାଙ୍କ ସହିତ ଅନେକବାର ବେଦାନ୍ତ ସଂପର୍କରେ ଆଲୋଚନାରତ ରହିବାକୁ ପଡ଼ିଥିଲା । ତାହାଦ୍ୱାରା ଜ୍ଞାନର ସୀମା ମୋର ଆହୁରି ଅଧିକ ହୋଇଥିଲା ପ୍ରସାରିତ । ତେଣୁ ଅତି ସହଜ କଣ୍ଠରେ ଉତ୍ତର ଦେଲି, ''ଜାଣେ ପ୍ରଭୋ ! ତାହା ତ ମୋ'ର ନିତ୍ୟ ପାଠ୍ୟ ।''

''ସତେ ନା କ'ଣ ? ଆଚ୍ଛା, ପଦଟିଏ ବୋଲିଲ ଦେଖି ।'' ମୋ'ର ବ୍ରାହ୍ମଣତ୍ୱ ଓ ଭାର୍ଗବତ୍ୱ ନେଇ ତଥାପି ତାଙ୍କ ମନରେ ସନ୍ଦେହ ଥିଲା ବୋଧହୁଏ । ସେ ଚାହୁଁଥିଲେ ତାହାକୁ ଦୂର କରିଦେବାପାଇଁ । ତେଣୁ ଥରକୁଥର ବଡ଼ କଠିନ କଷଟି ପଥରର ପରୀକ୍ଷା ରଖୁଥିଲେ ମୋ' ପାଇଁ । ମୋ' ଆଦିଗୁରୁ ସବିତାଦେବଙ୍କ ଆଶୀର୍ବାଦବଳରେ ସବୁ କିଛି ପରୀକ୍ଷାରେ ହୋଇଉଠିଥିଲି ଉତ୍ତୀର୍ଣ୍ଣ । ବର୍ତ୍ତମାନର ପରୀକ୍ଷାରେ ମଧ୍ୟ ଉତ୍ତୀର୍ଣ୍ଣ ହେବାର ଆଶା ଧରିରଖିଥିଲି ଦୃଢ଼ ଭାବରେ । କହିଲି, ''ଏଇ ଶୁଣନ୍ତୁ ପ୍ରଭୋ ।'' ପରେ ପରେ ଭୃଗୁବଲ୍ଲୀର ଏଇ ପଙ୍‌କ୍ତିଟି ଠିକ୍ ଛନ୍ଦଲୟ ରଖି ଗାଇଉଠିଲି ଅତି ଲଳିତ କଣ୍ଠରେ

ଆନନ୍ଦୋ ବ୍ରହ୍ମେତି ବ୍ୟଜାନାତ୍ ।
ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ ।
ଆନନ୍ଦେନ ଜାତାନି ଜୀବନ୍ତି ।
ଆନନ୍ଦଂ ପ୍ରୟନ୍ତ୍ୟଭିସଂବିଶନ୍ତି ।
ସୈଷା ଭାର୍ଗବୀ ବାରୁଣୀ ବିଦ୍ୟା ।

ଖାଲି ତ ପଙ୍‌କ୍ତିଟି ବୋଲିଦେଲି ନାହିଁ । ତାହାର ଅର୍ଥ ମଧ୍ୟ କହିଦେଲି । ବରୁଣଙ୍କ ପୁତ୍ର ଭୃଗୁ ଜାଣିନେଲେ ଯେ ଆନନ୍ଦ ହିଁ ବ୍ରହ୍ମ । ଆନନ୍ଦରୁ ହିଁ ଏ ସମସ୍ତ ଜୀବଙ୍କର ସୃଷ୍ଟି । ଆନନ୍ଦରେ ସେମାନେ ଜୀବନଧାରଣ କରନ୍ତି । ଆନନ୍ଦ ପ୍ରତି ସେମାନଙ୍କର ଗତି ଏବଂ ସେମାନେ ସେଇଥିରେ ହିଁ ଲୀନ ହୋଇଥାନ୍ତି । ଏହା ସେହି ବରୁଣପୁତ୍ର ଭୃଗୁଙ୍କ ପ୍ରଖ୍ୟାପିତ ବିଦ୍ୟା ।

''ବାଃ ! ଅତି ଚମତ୍କାର ! ଅତି ଚମତ୍କାର ! ତୁମେ ତ କେବଳ ଭୃଗୁବଲ୍ଲୀ କଣ୍ଠସ୍ଥ କରିନାହଁ । ତାହାର ଅର୍ଥ ମଧ୍ୟ ଜାଣିଛ । ତାହାର ଉପଲବ୍ଧି ହିଁ ବ୍ରହ୍ମବିଦ୍ୟା । ଏଇ ଉପଲବ୍ଧି

ଲାଗି ଉଦ୍ୟମରତ ହୁଅ ବତ୍ସ । ତୁମେ ପ୍ରକୃତରେ ଭାର୍ଗବ ବଂଶର ଜଣେ ଯୋଗ୍ୟ ଦାୟାଦ ।'' ମୁନିବର ମୋ'ପାଇଁ ହୋଇଉଠିଲେ ପ୍ରଶଂସାମୁଖର ଗିରିଗହ୍ୱରରୁ ପଡୁଥିବା ଧ୍ୱନିମୁଖର ଜଳପ୍ରପାତ ଭଳି ! ତାହା ପରେ ପୁଣି ପଚାରିଲେ, ''ଆଚ୍ଛା ଯୁବକ, ତୁମେ କାହିଁକି ଏଠାକୁ ଆସିଛ ? କ'ଣ ତୁମର କାମ ?''

''ଆଚାର୍ଯ୍ୟ ପରଶୁରାମଙ୍କ ପାଖକୁ ଆସିଛି । ତାଙ୍କ ଆଶ୍ରମ କେଉଁଠି ଦେଖି ନାହିଁ । ଆପଣ ଯଦି ଜାଣନ୍ତି, ତେବେ ଦୟାକରି କହିବେ କି ?'' ମୋ' କଣ୍ଠସ୍ୱରରେ ଆକୁଳ ପ୍ରାର୍ଥନାର ଗୁଞ୍ଜରଣ ।

ହଠାତ୍ ତାଙ୍କ ପ୍ରସନ୍ନ ମୁଖମଣ୍ଡଳରେ ଖେଳିଗଲା ମୃଦୁହାସ୍ୟର ଝଲକ ଶାରଦୀୟ ପ୍ରଭାତର ବିକଶିତ କୁନ୍ଦକୁସୁମ ଭଳି । ସେ ପୁଣି ମୁହଁ ଖୋଲିଲେ, ''ତାଙ୍କଠାରେ କି କାମ ତୁମର ?''

''ତାଙ୍କୁ ଶିଷ୍ୟତ୍ୱ ପ୍ରାର୍ଥନା କରିବାପାଇଁ ଆସିଛି ।'' ଏତିକିରେ ତାଙ୍କ ତରଳିତ ଗାମ୍ଭୀର୍ଯ୍ୟରୁ ଯାହା କିଛି ବା ଅବଶିଷ୍ଟ ଥିଲା ତାହା ହଠାତ୍ କୁଆଡ଼େ ଉଭେଇଗଲା ସୂର୍ଯ୍ୟରଶ୍ମିର ସମ୍ପାତରେ ଘାସ-ବୁକୁରୁ ଶିଶିରମୁକ୍ତା ଉଭେଇଗଲା ଭଳି । ସେ ହୋଇଉଠିଲେ ଅତି ମାତ୍ରାରେ ପ୍ରଗଲ୍ଭ ଓ ସଂବେଗରେ ପରିସ୍ନାତ । ଆବେଗକମ୍ପିତ ବାହୁଦ୍ୱୟକୁ ମୋ' ଆଡ଼କୁ ପ୍ରସାରିତ କରି ଆଗେଇ ଆସିଲେ ଏବଂ ନିବିଡ଼ ଭାବରେ ମତେ ଆଲିଙ୍ଗନ କରି କହିଲେ ''ଆସ ବତ୍ସ ବସୁ, ଆସ । ଜଣେ ଭାର୍ଗବ ଆଉ ଜଣେ ଭାର୍ଗବଙ୍କୁ ବାନ୍ଧିରଖୁ ନିବିଡ଼ ବାହୁବନ୍ଧନରେ । ତୁମେ ଯାହାଙ୍କୁ ଖୋଜି ଖୋଜି ଆସିଛ, ମୁଁ ସେହି ଭାର୍ଗବ ପରଶୁରାମ ।''

ତାଙ୍କ ନିବିଡ଼ ଆଲିଙ୍ଗନ । ବିଶାଳ ଭୁଜଦ୍ୱୟର ଅଭୟଦ ଆଶ୍ରୟ । ମାଆଙ୍କ ପଣତ କାନିର ଆଶ୍ରୟ ଯେମିତି, ପକ୍ଷିଶାବକପାଇଁ ମାତାପକ୍ଷର ଛାୟା ଯେମିତି । ଅଙ୍ଗେ ଅଙ୍ଗେ ମୋର ଅଭିନବ ପୁଲକ ! ପ୍ରାଣେ ପ୍ରାଣେ ଅପୂର୍ବ ଆବେଗମୟ ହର୍ଷ ! ମତେ ଲାଗୁଥାଏ, ବାଟ ଖୋଜୁ ଖୋଜୁ ହଠାତ୍ ଲକ୍ଷ୍ୟସ୍ଥଳରେ ପହଞ୍ଚିଗଲି ଯେମିତି ଅତି ଆକସ୍ମିକ ଭାବରେ । ତାଙ୍କ ବାହୁବନ୍ଧନ ଶିଥିଳ ହେବା ମାତ୍ରେ ଭୂମିଷ୍ଠ ପ୍ରଣାମ କଲି ତାଙ୍କ ଚରଣତଳେ । ନେତ୍ରର ଅଶ୍ରୁରେ ପଖାଳିଦେଲି ପାଦୁକାଯୁଗଳ । ଆବେଗଭରା ସ୍ୱରରେ କହିଲି, ''ମୋ' ଧୃଷ୍ଟତା ମାର୍ଜନା କରନ୍ତୁ ପ୍ରଭୋ । ଆଚାର୍ଯ୍ୟବରଙ୍କୁ ଚିହ୍ନି ନ ପାରି ଏତେ କଥା ଯାହା ତାଙ୍କ ଆଗରେ କହିଗଲି । ସମସ୍ତ ଦୋଷ କ୍ଷମା କରି ମତେ ଶିଷ୍ୟ ଭାବରେ ଗ୍ରହଣ କରନ୍ତୁ ପ୍ରଭୋ ।''

ସେ ମତେ ହାତ ଧରି ଉଠାଇନେଲେ ଓ ପୁନର୍ବାର ଆଲିଙ୍ଗନ କରି କହିଲେ, ''ଉଠ ବତ୍ସ ବସୁ । ତୁମେ ଯାହା କହିଛ, ଠିକ୍ କହିଛ । କିଛି ଲୁଚାଇ ନାହଁ । ନିର୍ଭୀକ ଓ ବିଶ୍ୱାସଭରା କଣ୍ଠରେ ମୋ'ର ସବୁ ପ୍ରଶ୍ନର ଉତ୍ତର ଦେଇଛ । ଏହା ହିଁ ତ ଜଣେ ଯୋଗ୍ୟ ଭାର୍ଗବ ଦାୟାଦଙ୍କୁ ସାଜେ ।''

''ଆଉ ମୋ' ଶିଷ୍ୟତ୍ୱ କଥା ?'' ଦୋହରାଇଲି ମୋର ସବିନୟ ଉଦ୍‌ବେଗଭରା ପ୍ରଶ୍ନ ।

''ସେ କଥା ଆଉ ପଚାରିବାର ନାହିଁ । ମୁଁ ମନେ ମନେ ଗ୍ରହଣ କରିନେଇଛି ତୁମକୁ ଶିଷ୍ୟଭାବରେ । ମୋ' ସାଥିରେ ଚାଲ ଆଶ୍ରମକୁ । ସେଇଠି ଆନୁଷ୍ଠାନିକ ଭାବରେ ଶିଷ୍ୟତ୍ୱର ଦୀକ୍ଷା ପାଇବ ।'' ଆଚାର୍ଯ୍ୟଙ୍କ ମୁଖମଣ୍ଡଳ ପ୍ରସନ୍ନତାରେ ଉଜ୍ଜ୍ୱଳ । ପ୍ରଭାତୀ ସୂର୍ଯ୍ୟ-କିରଣର ସ୍ପର୍ଶରେ ସଦ୍ୟ ବିକଶିତ କମଳପୁଷ୍ପଟିଏ ଯେମିତି ।

ମୁଁ ମଧ ସମଧିକ ପ୍ରସନ୍ନ । ସମଧିକ ଆନନ୍ଦବିହ୍ୱଳ । କାୟା ସହିତ ଛାୟା ଭଳି ତାଙ୍କୁ ଅନୁସରଣ କଲି ଠିକ୍ ବତ୍ସାଟି ମାତା ଧେନୁକୁ ଅନୁସରଣ କଲା ଭଳି ।

ଅଳ୍ପ କିଛି ଦୂର ଯିବା ପରେ ପଡ଼ିଲା ତାଙ୍କ ଆଶ୍ରମ । ପତ୍ରନିର୍ମିତ କୁଟୀର । ତିନୋଟି ବଖରା ମାତ୍ର ଘର । ଟିକିଏ ଦୂରରେ ଆଉ ଏକ ପ୍ରଶସ୍ତ ପର୍ଣ୍ଣକୁଟୀର । ଆଶ୍ରମର ଗୋଶାଳା । ତିନି ବଖରାରୁ ଗୋଟିଏ ଆଚାର୍ଯ୍ୟଙ୍କ ଶୋଇବା ଘର । ଆଉ ଗୋଟିଏ ଅଗ୍ନିଶାଳା । ତୃତୀୟଟି ଅତିଥିଶାଳା । ତାଙ୍କର ବର୍ତ୍ତମାନ କେହି ଶିଷ୍ୟ ନ ଥାନ୍ତି । ତେଣୁ ଶିଷ୍ୟଙ୍କ ଲାଗି ସ୍ୱତନ୍ତ୍ର କୁଟୀରର ନ ଥାଏ ଆବଶ୍ୟକତା । ସେଦିନ ଅତିଥିଶାଳା ଥାଏ ଶୂନ୍ୟ । ଅଙ୍ଗନରେ ଏକ ବିରାଟ ବଟବୃକ୍ଷ । ତାହାକୁ ଘେରି ତିଆରି ହୋଇଛି ଏକ ମାଟିର ମଣ୍ଡପ । ବୃକ୍ଷର କେତୋଟି ଶାଖାରେ ଟଙ୍ଗା ହୋଇଛି ବଲ୍‌କଳ-ବସ୍ତ୍ର । ଅନେକ ସମୟ ସେହିଠାରେ ବସି ଆଚାର୍ଯ୍ୟ ଉପଦେଶ ଦେଇଥାନ୍ତି । ଏଭଳି ଦୀନହୀନ ଓ କୃଚ୍ଛ୍ର ପରିବେଶରେ ରହିଛନ୍ତି ଭୃଗୁକୁଳତିଳକ ଆଚାର୍ଯ୍ୟ ପରଶୁରାମ । ଅତୀତର ସେହି ପରଶୁରାମ ଯେ ଥରେ ନୁହେଁ, ଦୁଇ ଥର ନୁହେଁ, ଏକୋଇଶ ଥର କହିଥିଲେ ପୃଥିବୀକୁ କ୍ଷତ୍ରିୟହୀନ ଏବଂ ରକ୍ଷା କରିଥିଲେ ସମାଜକୁ କ୍ଷତ୍ରିୟମାନଙ୍କ ଅତ୍ୟାଚାରରୁ । ଏ ସେଇ ତ୍ୟାଗବୀର ପରଶୁରାମ ଯାହାଙ୍କ ପାଦତଳେ ଦିନେ ଗଡୁଥିଲା ଶତ ଶତ ଓ ସହସ୍ର ସହସ୍ର ରତ୍ନଖଚିତ ରାଜମୁକୁଟ ଏବଂ ଯେଉଁଗୁଡ଼ିକୁ ଠେଲିଦେଇଥିଲେ ସେ ଅତ୍ୟନ୍ତ ଅନାସକ୍ତ ଭାବରେ । ଚାହିଁଥିଲେ ସାରା ଜଗତର ଅଖଣ୍ଡ ଶାସକ ହୋଇପାରିଥାନ୍ତେ । ତାଙ୍କ ଶୋଇବାଘରର ଅଳିନ୍ଦର କାଛରୁ ଝୁଲୁଛି ବିଗତ ଦୀର୍ଘଦିନର ସାଥୀ ମହାଭୟଙ୍କର ପରଶୁ । କାହିଁ କେତେ ବର୍ଷ ହେଲା ଆଉ ତାହାର ବ୍ୟବହାର ନାହିଁ । ତଥାପି ତୀକ୍ଷ୍ଣ ଧାର ତାହାର ଜଳିଉଠୁଛି ଦାଉ ଦାଉ ହୋଇ । ମନେ ମନେ ଖୁବ୍ ଚମତ୍କୃତ ହୋଇଉଠୁଥିଲି ।

ମତେ ବଟବୃକ୍ଷର ମଣ୍ଡପରେ ବସାଇଦେଇ ଆଚାର୍ଯ୍ୟ ଗଲେ ଭିତରକୁ । ଅଗ୍ନିଶାଳାରେ ଅଗ୍ନିଦେବ ଚିରପ୍ରଜ୍ୱଳିତ । ସେଠାରେ ଥାଇ କିଛି ମନ୍ତ୍ର ଜପ କଲେ ଓ ତାହା ପରେ ମତେ ଡାକିଲେ ଭିତରକୁ । ଆଦେଶ ମାନି ଗଲି । ପବିତ୍ର ଅଗ୍ନିଦେବଙ୍କୁ ସାକ୍ଷୀ ରଖି ତାଙ୍କ ପାଦତଳେ କୁଶ ଓ ସମିଧ ଥୋଇଦେଇ ଶିଷ୍ୟତ୍ୱ ପାଇଁ ପ୍ରାର୍ଥନା ଅବସରରେ ଭୂମିଷ୍ଠ ପ୍ରଣାମ କଲି । କହିଲି, ''ଗୃହ୍ୟତାଂ ଆଚାର୍ଯ୍ୟବର୍ଯ୍ୟ ।''

ସେ ହାତ ଟେକି ମତେ ଆଶୀର୍ବାଦ କଲେ ଓ କହିଲେ, ''ସାଦରଂ ଗୃହ୍ଣାମି ।'' ତାହା ପରେ କହିଲେ ''ଆତ୍ମା ବୈ ଶିଷ୍ୟନାମାସି ।'' ଏହା କହି ସେ ଦୁଇ ହାତ ଦେଲେ ମୋ' ଛାତିରେ । ମୁଁ ମଧ ତାଙ୍କୁ ଅନୁକରଣ କରି କହିଲି, ''ଆତ୍ମା ବୈ ଗୁରୁନାମାସି ।'' ଏହା କହି ତାଙ୍କ ଛାତିରେ ଦୁଇ ହାତ ଦେଲି ଅନୁରୂପ ଭାବରେ । ସେହି ସମୟରୁ ଆମ ଦୁହିଁଙ୍କ ଆତ୍ମା

ହୋଇଗଲା ଏକ ଓ ଅଭିନ୍ନ । ଚମତ୍କାର ଏ ଗୁରୁ-ଶିଷ୍ୟ ସଂପର୍କର ପରମ୍ପରା । ଏହାର ସୃଷ୍ଟିକାରୀ ମୁନି-ଋଷିମାନଙ୍କ ହୃଦୟ କି ବିଶାଳ ଓ ମହାନ୍ ସତେ !

ତାହା ପରେ ମୋ' କର୍ଣ୍ଣମୂଳରେ ମନ୍ତ୍ର ଦେଇ ମତେ ଶିଷ୍ୟଭାବରେ ଦୀକ୍ଷିତ କରାଇଲେ । ସେ କ'ଣ କହିଲେ ତାହା ପ୍ରକାଶ କରିବାକୁ ଅକ୍ଷମ । କାରଣ ତାହା ଗୁରୁମନ୍ତ୍ର ଏବଂ ସର୍ବଥା ଗୋପନୀୟ । ତେବେ ଏତିକି କହିବି ଯେ ସେହି ମନ୍ତ୍ରକୁ ମୁଁ ଜପ କରିଛି ନିରନ୍ତର ଏବଂ ପାଇଛି ଅଶେଷ ସୁଫଳ । ସେଇ ମନ୍ତ୍ରକୁ ଜପ କରିବାରେ ପଦେ ପଦେ ପାଇପାରିଛି ଗୁରୁଦେବଙ୍କ ସାନ୍ନିଧ । ନିଜକୁ ସିକ୍ତ କରାଇପାରିଛି ତାଙ୍କ ଆଶୀର୍ବାଦ – ଜଳରେ ।

ସେହି ସମୟରୁ ହିଁ ଆମେ ଦୁହେଁ ହୋଇଗଲୁ ଗୁରୁ ଓ ଶିଷ୍ୟ ।

ଉନ୍ମୁକ୍ତ ଦ୍ୱାରଦେଶ ଦେଇ ତିର୍ଯ୍ୟକ୍ ସୂର୍ଯ୍ୟକିରଣ ପଡୁଥିଲା ଅଗ୍ନିଶାଳା ମଧ୍ୟରେ । ମତେ ଲାଗୁଥିଲା ସତେଯେମିତି ମୋ' ଆଦ୍ୟଗୁରୁ ହସୁଛନ୍ତି ଖଳ ଖଳ ହୋଇ । ଆଉ ଦେଉଛନ୍ତି ମତେ ଉତ୍ସାହ ଓ ଉନ୍ମାଦନା ।

ଆଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ଆମେ ଦୁହେଁ ବିଭୁ-ଆଶୀର୍ବାଦ କାମନା କରି ଏକତ୍ର ହୋଇ ବସିଲୁ । ସେଇ ଚିରଚର୍ଚ୍ଚିତ ମନ୍ତ୍ରଟି ଯାହା ସହିତ ମୋର ଦ୍ରୋଣାଚାର୍ଯ୍ୟଙ୍କ ଆଶ୍ରମରେ ହୋଇଥିଲା ପ୍ରଥମ ପରିଚୟ ।

ଓଁ ସହନାଭବତୁ ।
ସହ ନୌ ଭୁନକ୍ତୁ ।
ସହବୀର୍ଯ୍ୟଂ କରବାବହୈ ।
ତେଜସ୍ୱୀନାଂବଧୀତମସ୍ତୁ ।
ମା ବିଦ୍ୱିଷାବହୈ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ମଧ୍ୟାହ୍ନ ଲଗ୍ନ ଗଡ଼ି ଯାଇଥିଲେ ମଧ୍ୟ ଭାଦ୍ରବ ତପନଙ୍କ ଉଷ୍ଣତା ତଥାପି କିଛିଟା ଥିଲା । ହଠାତ୍ କିନ୍ତୁ ଅସରାଏ ଅଦିନ ମେଘ ବରଷି ଆରଣ୍ୟକ ବାତାବରଣକୁ କରିଦେଲା ସ୍ନିଗ୍ଧଶୀତଳ । ମତେ ଲାଗୁଥାଏ, ସତେଅବା ମୋର ଶିଷ୍ୟତ୍ୱଗ୍ରହଣ ଅବସରରେ ଏଇ ଦୈବ ଆଶୀର୍ବାଦ ଝର ଝର ହୋଇ ଝରିପଡ଼ିଲା ଆକାଶରୁ ।

ସେଦିନ ପାଇଁ ମୋ' ଆଶ୍ରୟସ୍ଥଳ ଥିଲା ଆଶ୍ରମର ଅତିଥିଶାଳା ।

## ଚବିଶ

ପରଦିନ ତାଳପତ୍ର ଆଣି ଏକ ପତ୍ରକୁଟୀର ନିର୍ମାଣ କରିଦେଲି ମୋ' ପାଇଁ । ବିଶେଷ କିଛି ସମୟ ଲାଗିଲା ନାହିଁ । ସବୁ ସାମଗ୍ରୀ ତ ହାତ-ପାଆନ୍ତାରେ । ଦୁଇ ଘଡ଼ି ସମୟ

ମଧ୍ୟରେ ହୋଇଗଲା ପ୍ରସ୍ତୁତ । ଆବଶ୍ୟକ ବାସ୍ତୁପୂଜା ପରେ ଗୃହପ୍ରବେଶ କଲି । କାହିଁ ରହିଗଲା ହସ୍ତିନାପୁରର ପିତାଙ୍କ ବାସସ୍ଥାନ ? ପୁଣି କାହିଁ ରହିଗଲା ଚମ୍ପାପୁରର କ୍ଷୁଦ୍ର ଆମ ପର୍ଣ୍ଣକୁଟୀର ? ସବୁ କିଛି ମଧୁର ସ୍ମୃତିରେ ଭରପୂର । ଗଙ୍ଗାକୂଳ । ସାଙ୍ଗ-ସାଥୀ ମେଳ । ଗଙ୍ଗାକୂଳର ଚମ୍ପାବନରୁ ବହିଆସୁଥିବା ଚମ୍ପାଫୁଲର ମହକଭରା ପବନ । ସବୁ କିଛି ଥିଲା ସାତ ସପନ ଏଠି । ଆକାଶରେ ମଝିରେ ମଝିରେ ଦେଖାଦେଉଥିବା ପିଞ୍ଜା ବାଦଲ ଭଳି ସବୁ କିଛି ପରିଷ୍କାର ଦେଖାପଡ଼େ ମନୋରାଜ୍ୟରେ । କିନ୍ତୁ ପର ମୁହୂର୍ତ୍ତରେ ବାଉଳା ପବନର ଆଘାତରେ ଅପସରିଯାଏ । ଆଶ୍ରମର କର୍ତ୍ତବ୍ୟକର୍ମ ମଧ୍ୟରେ ଦିନରେ ପ୍ରାୟ ସବୁ କିଛି ଲିଭିଯାଏ ସ୍ମୃତିପଟରୁ । କେବଳ ରାତିରେ ଶୋଇଲାବେଳେ ସେହି ସ୍ମୃତି ଯାହା ଅଧିକ ସମୟଯାଏ ମଥା ପିଟେ ମନର ଫଳକରେ । ବ୍ୟଥା ଓ ବେଦନାରେ ଅଧୀର କରିଦିଏ । କେମିତି ଗୋଟାଏ ଭୟଙ୍କର ନିଃସଙ୍ଗତା ଆଁ କରି ଧାଇଁଆସେ ମତେ ଗ୍ରାସ କରିବାପାଇଁ । ଆରଣ୍ୟକ ଶୀତଳ ପବନ ବାଜି ନିଦ ଆସିଗଲେ ଆପେ ଆପେ ଭୁଲିଯାଏ ସବୁ କିଛି । ଶୋଇଯାଏ ନିଘୋଡ଼ ନିଦରେ । କର୍ମକ୍ଲାନ୍ତ ଦିବସର ଶ୍ରାନ୍ତି ପରେ ନିଦ୍ରାଦେବୀ ଶାନ୍ତିଦେବୀ ରୂପରେ ଆସି କୋଳେଇ ନିଅନ୍ତି ମତେ ।

ଏକ ଧରାବନ୍ଧା ନୀତିନିୟମରେ ଚାଲେ ଆଶ୍ରମଜୀବନ । ଦିନେହେଲେ ବି ବିଚ୍ୟୁତି ନାହିଁ । ସବୁ କାମପାଇଁ ସମୟ ବନ୍ଧା । ଆଳସ୍ୟ ପ୍ରଦର୍ଶନର ଅବକାଶ ହିଁ ନାହିଁ । କେହି ଲକ୍ଷ୍ୟ କରୁ ନ ଥାନ୍ତି ମୋ' କାମକୁ । ହୁଏତ ପ୍ରଚ୍ଛନ୍ନରେ ଆଚାର୍ଯ୍ୟ କରୁଥିବେ କି ନା ଜାଣେନା । ତଥାପି କର୍ମରତ ମଧୁମକ୍ଷିକା ଭଳି ଅବିରତ ମାତିଥାଏ ମୁଁ କାମରେ । ଆଚାର୍ଯ୍ୟଙ୍କ ମହିମା ହେଉ ଅଥବା ଯୁଗ ଯୁଗ ଧରି ଗଢ଼ିଆସୁଥିବା ଆଶ୍ରମଜୀବନର ଶୃଙ୍ଖଳାବୋଧ ହେଉ କିମ୍ବା ମୋର ସହଜାତ କର୍ତ୍ତବ୍ୟବୋଧ ହେଉ, ଯାହା କିଛି କାରଣ ହେଉ, କି ଏକ ସମ୍ମୋହିତ ଅବସ୍ଥାରେ ଥାଇ ନିରନ୍ତର କର୍ମତତ୍ପର ରହୁଥାଏ ଶେଯ ଛାଡ଼ିବାଠାରୁ ପୁଣି ଥରେ ଶେଯ ଧରିବା ପର୍ଯ୍ୟନ୍ତ ।

ପ୍ରତିଦିନ ବ୍ରାହ୍ମମୁହୂର୍ତ୍ତରୁ ଉଠେ । କିଛିଟା ଯୋଗାଭ୍ୟାସ କରେ । ଆଶ୍ରମର ଚାରିପଟେ ପଡ଼ିଥାଏ ଅଣଓସାରିଆ ରାସ୍ତାଟିଏ । ନାଁଟି ତାହାର ଚଂକ୍ରମଣପଥ । ତାହାରି ଉପରେ ବୁଲିଆସେ ତିନିଥର । କେତେବେଳେ ଦ୍ରୁତଗତିରେ ଚାଲେ ତ ପୁଣି କେତେବେଳେ ଧାଏଁ । ଚଂକ୍ରମଣ ପଥରେ ବୁଲି ଆସିବା ପରେ ଦେହ ହୋଇଯାଏ ସଂପୂର୍ଣ୍ଣ ରୂପେ ସ୍ୱେଦକ୍ଳିନ୍ନ ଓ କିଛିଟା ଅବସନ୍ନ ମଧ୍ୟ । ସାମାନ୍ୟ କିଛି ସମୟ ବିଶ୍ରାମ ନେବା ପରେ ନିକଟସ୍ଥ ନିର୍ଝରିଣୀକୁ ଯାଇ ସ୍ନାନାଦି ନିତ୍ୟକର୍ମ କରେ । ତାହା ପୂର୍ବରୁ ଅବଶ୍ୟ ଗୋଶାଳାରେ ଗୋସେବା କାର୍ଯ୍ୟଟି ସାରିଦେଇଥାଏ । ଆସି ଆଶ୍ରମରେ ପହଞ୍ଚିଲା ବେଳକୁ ଆଚାର୍ଯ୍ୟ ପ୍ରସ୍ତୁତ ହୋଇଯାଇଥାନ୍ତି ସ୍ନାନ ଓ ସଂଧ୍ୟାକର୍ମ ଲାଗି । ବଲ୍‌କଳ ବସ୍ତ୍ର ଓ କମଣ୍ଡଳୁ ଧରି ତାଙ୍କୁ ଅନୁସରଣ କରେ ନିର୍ଝରିଣୀ ତଟ ପର୍ଯ୍ୟନ୍ତ । ତାଙ୍କ ସଂଧ୍ୟା ପୂଜା ପରେ ପୁଣି ଫେରିଆସେ ଆଶ୍ରମକୁ । ତାଙ୍କ ଅଗ୍ନିପୂଜା ଲାଗି ସମସ୍ତ ସାମଗ୍ରୀ ସଜାଡ଼ିଦିଏ । ଆଶ୍ରମ ଉପବନରୁ ତୋଳିଆଣେ ଫୁଲ । ସେ ଅଗ୍ନିପୂଜା କରି ବସନ୍ତି । ସେହି ଅବସରରେ ମୁଁ ମଧ୍ୟ ମୋର ବାକିତକ କର୍ତ୍ତବ୍ୟ-କର୍ମ ସାରିଦିଏ । ବେଳ ଦୁଇ ଘଡ଼ି ହେଲେ ଗୋଧନ ଧରି ଚାଲିଯାଏ

ଅରଣ୍ୟକୁ । ଫଳମୂଳ ସଂଗ୍ରହ କରେ । ଅଗ୍ନିପୂଜା ଲାଗି ସମିଧ ସଂଗ୍ରହ କରେ । ଖାଇବା ପାଇଁ ଫଳମୂଳ ମିଳୁଥାଏ ପ୍ରଚୁର । ତାହା ଛଡ଼ା ଆଶ୍ରମକୁ ଲାଗି ପ୍ରାୟ ଦୁଇ କର୍ଷ ଭୂମିରେ ଆଚାର୍ଯ୍ୟ ତିଆରି କରିଥାନ୍ତି ଏକ ଫଳପୁଷ୍ପର ଉଦ୍ୟାନ । ସେଠାରୁ ମଧ ସାରା ବର୍ଷ ଫଳ ମିଳୁଥାଏ । ତେଣୁ ଆଶ୍ରମରେ ଆବଶ୍ୟକତା ନ ଥାଏ ଅନ୍ନ-ପାଚନର । ମତେ ତେଣୁ ଜାଳେଣି କାଠ ସଂଗ୍ରହ କରିବାକୁ ପଡ଼ି ନ ଥାଏ । ମଧ୍ୟାହ୍ନର ପୂର୍ବରୁ ମତେ ଫେରିଆସିବାକୁ ପଡ଼େ ଆଶ୍ରମକୁ । ଗାଈମାନେ କିନ୍ତୁ ନିର୍ବାଧରେ ଚରୁଥାନ୍ତି ଅରଣ୍ୟରେ । ସଂଧ୍ୟା ପୂର୍ବରୁ ଆପେ ଆପେ ଫେରିଆସନ୍ତି ଆଶ୍ରମକୁ । ମଧ୍ୟାହ୍ନର ସଂଧ୍ୟାପୂଜା ହୁଏ । ଠିକ୍ ସକାଳର ସଂଧ୍ୟାପୂଜାର କାର୍ଯ୍ୟବିଧି ଅନୁସରଣ କରେ । ତାହା ପରେ ଭୋଜନ । ଆଚାର୍ଯ୍ୟଙ୍କ ଲାଗି ନିର୍ମଳ ପତ୍ରଥାଳିରେ ପରଷିଦିଏ ଫଳାହାର । ତାଙ୍କ ଖାଇବା ପରେ ନିଜେ ଖାଏ । ଆଶ୍ରମରେ ସୂର୍ଯ୍ୟାସ୍ତ ପୂର୍ବରୁ ଦିନରେ କେବଳ ଥରଟିଏ ଖିଆଯାଏ । ଆଉ ଦ୍ୱିତୀୟ ଥର ନୁହେଁ । ଅବଶ୍ୟ ଜଳାହାରରେ କିଛି ବାଧା ନ ଥାଏ । ଅପରାହ୍ଣ ବେଳାଟି ମୋର ପ୍ରାୟ କଟିଯାଏ ଆଶ୍ରମ-ଉପବନରେ ବୃକ୍ଷ-ଲତାଗୁଡ଼ିକର ପରିଚର୍ଯ୍ୟା କରିବାରେ । ଆଚାର୍ଯ୍ୟ ନିଜ ଚେଷ୍ଟାରେ ଅରଣ୍ୟ ସଫା କରି ଏତେ ବଡ଼ ଉପବନଟିଏ ତିଆରି କରିଛନ୍ତି । କିଛି ହିଁ ଅସୁବିଧା ନାହିଁ ଜଳସେଚନର । ଗୋଟିଏ କ୍ଷୁଦ୍ର ଗିରନୀରା ଝରଣାକୁ ବାନ୍ଧି ଦିଆଯାଇଛି ଉପରମୁଣ୍ଡରେ । ସେହି ଜଳଭଣ୍ଡାରର ଜଳ ବହିଯାଉଛି ଉପବନର କୃତ୍ରିମ ସେଚନାଳୀଗୁଡ଼ିକ ମଧ ଦେଇ । ଅଧିକାଂଶ ସମୟ ମୋର ଉପବନରେ ବ୍ୟତୀତ ହୁଏ ଜଳସେଚନ କର୍ମରେ । ସୂର୍ଯ୍ୟାସ୍ତ ହେବାକୁ ବସନ୍ତି । ପୁଣି ଆସେ ସଂଧ୍ୟାପୂଜାର ବେଳ । ବିଗତ ଦୁଇ ସଂଧ୍ୟାପୂଜାର କର୍ମଗୁଡ଼ିକୁ ଦୋହରାଏ । ପ୍ରତିଦିନ ଆଚାର୍ଯ୍ୟ ସଂଧ୍ୟାବେଳେ ବଟମୂଳର ମାଟି ମଣ୍ଡପରେ ବସନ୍ତି ଓ ଧ୍ୟାନ କରନ୍ତି । କେତେବେଳେ କେମିତି କେହି ଶିଷ୍ୟ ଥିଲେ କିମ୍ବା ଆଗନ୍ତୁକ ଥିଲେ ତାଙ୍କ ଆଗରେ ଦିଅନ୍ତି ଶାସ୍ତ୍ରୋପଦେଶ । ଏହିଭଳି ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟ ମଧରେ କଟିଯାଉଥିାଏ ମୋର ଆଶ୍ରମଜୀବନ । ସଂପୂର୍ଣ୍ଣ ଏକ ନୂଆ ଧରଣର ଜୀବନ । ଏକାନ୍ତ ନିର୍ଜନ । ଅଥଚ ଅତ୍ୟନ୍ତ ଶାନ୍ତ ଓ କାନ୍ତ । ଭଲ ଭାବରେ ନିଜକୁ ଖାପ ଖୁଆଇ ନେଇଥାଏ ଏହି ଜୀବନ ସହିତ । କାରଣ ମୋର ଥାଏ ଆଉ ଏକ ମହତ୍ତର ଲକ୍ଷ୍ୟ । ଆଚାର୍ଯ୍ୟଙ୍କଠାରୁ ବ୍ରହ୍ମାସ୍ତ୍ରର ଜ୍ଞାନ ପାଇବାକୁ ହେବ । ଆଶ୍ରମର ଏହି କୃଚ୍ଛ୍ର ଜୀବନକୁ ଧରିନେଇଥାଏ ତପସ୍ୟା ଭାବରେ । ବାସ୍ତବିକ ତପସ୍ୟା ହିଁ ତ ସିଦ୍ଧିର ସୋପାନ । ତପସ୍ୟା ନ ଥିଲେ ସିଦ୍ଧି କାହିଁ ? ବିନା କଷ୍ଟରେ କୃଷ୍ଟି କାହିଁ ? ପୃଥିବୀ ଦାରୁଣ ଗ୍ରୀଷ୍ମତାପରେ ସିଝି ସିଝି ନ ରହିଲେ କେମିତି ବା ଯାଇପାରିବ ଶୀତଳ ବୃଷ୍ଟିଧାରାର ଆଶୀର୍ବାଦ ?

ଏହିପରି ଭାବରେ ବିତିଗଲା ପ୍ରାୟ ଦୀର୍ଘ ଏକ ମାସ ସମୟ । ଦିନକର କଥା । ସଂଧ୍ୟାଲଗ୍ନ । ସଂଧ୍ୟାପୂଜା ସରିଯାଇଥାଏ । ଆଶ୍ରମର ପାଳିତ ମୟୂର-ମୟୂରୀଯୁଗଳ ବଟବୃକ୍ଷର ଶୀର୍ଷତମ ଶାଖାରେ ନେଇଥାନ୍ତି ଆଶ୍ରୟ । ଆଶ୍ରମର ଅଗଣାରେ ବସି ମୁଁ ପୂଜାଲାଗି ସମିଧ ପ୍ରସ୍ତୁତ କରୁଥାଏ ଯତ୍ନ ସହକାରେ । ଆଚାର୍ଯ୍ୟ ମଣ୍ଡପ ଉପରେ କୁଶାସନରେ ବସିଥାନ୍ତି ଧ୍ୟାନଲଗ୍ନ । କିଛି ସମୟ ପରେ ସେ ଆଖି ଖୋଲିଲେ ଓ ମୋ' ଆଡ଼େ ପକାଇଲେ ତାଙ୍କ ଆଶୀର୍ମୟ ଦୃଷ୍ଟି । ସେ ଅତି କ୍ରୋଧୀ ବୋଲି ସାରା ଜଗତରେ

ଜଣାଶୁଣା । ଅଥଚ ଏଇ ସୁଦୀର୍ଘ ସମୟ ମଧ୍ୟରେ ମୁଁ ତାଙ୍କ କ୍ରୋଧର ସାମାନ୍ୟତମ ପ୍ରଦର୍ଶନ ବି ଦେଖି ନାହିଁ । ବରଂ ତାଙ୍କୁ ଦେଖିଛି ସବୁବେଳେ ପ୍ରସନ୍ନ ଓ ହସ ହସ ମୁଖ ଧରିଥିବା ଅବସ୍ଥାରେ । ଅହେତୁକ ଭାବରେ ସେ ହୁଏତ ଜିତିଯାଇଛନ୍ତି କ୍ରୋଧକୁ ଅଥବା ମୋ' ସେବା-ଯତ୍ନରେ ଅଛନ୍ତି ସନ୍ତୁଷ୍ଟ । ତେଣୁ କ୍ରୋଧ କରିବାର କିମ୍ବା ବିରକ୍ତ ହେବାର ପାଇ ନାହାନ୍ତି ଅବକାଶ ।

ମତେ କର୍ମରତ ଦେଖି ସେ କହିଲେ, "ଶୀଘ୍ର ଶୀଘ୍ର କାମ ସାରିଦେଇ ମୋ' ପାଖକୁ ଆସ ତ ବତ୍ସ ବସୁ ।" ତାଙ୍କ ନିକଟରେ ମୁଁ ଥିଲି ବସୁ ନାମରେ ପରିଚିତ । ମୋର କର୍ଣ୍ଣ ନାମ ତାଙ୍କୁ ଥିଲା ଅଜଣା । ତାଙ୍କ ନିର୍ଦ୍ଦେଶରେ ଶୀଘ୍ର ଶୀଘ୍ର କାମ ସାରିଦେଲି ଏବଂ ସମିଧକୁ ଯଥାସ୍ଥାନରେ ରଖିଦେଇ ତାଙ୍କ ପାଖକୁ ଆସି ବିନୀତ ଭାବରେ ଠିଆହେଲି ।

"ବସ ବତ୍ସ ବସୁ, ବସ ! ମୋ' ପାଖରେ ବସ ।" ସେ ମତେ ମଣ୍ଡପ ଉପରେ ବସିବାପାଇଁ ଡାକୁଥିଲେ । ମୁଁ କିନ୍ତୁ ଶିଷ୍ଟାଚାର ମାନି ତାଙ୍କ ପାଦତଳେ ଭୂମିରେ କୁଶାସନଟିଏ ବିଛାଇଦେଇ ବସିଲି ।

"ବତ୍ସ ବସୁ, ମୁଁ ତୁମ ସେବାଧର୍ମରେ ଖୁବ୍ ସନ୍ତୁଷ୍ଟ ।" ସେ ମୁହଁ ଖୋଲିଲେ । ସ୍ନେହଭରା ବଚନ । ଶ୍ମଶ୍ରୁଳ ମୁଖମଣ୍ଡଳ ତଳେ ଦର ଦର ହାସର ସ୍ନିଗ୍ଧମଧୁର ଛଟା । ଏ ଦୃଶ୍ୟ ଦେଖିଲେ କିଏ ବା ବିଶ୍ୱାସ କରିବ ଏହି ଆଚାର୍ଯ୍ୟ ପୁଣି ଦିନେ ଅତୀତରେ କରାଳ ମୂର୍ତ୍ତି ଧରି କ୍ଷତ୍ରିୟକୁଳକୁ ନିଧନ କରିଥିଲେ ବୋଲି ? ଧରଣୀକୁ କ୍ଷତ୍ରିୟ ରକ୍ତରେ ଏକୋଇଶ ବାର ଧୋଇଦେଇଥିଲେ ବୋଲି ? ବାସ୍ତବିକ ବଡ଼ ବିଚିତ୍ର ଏ ଆଚାର୍ଯ୍ୟ ପରଶୁରାମ ! ଅତି ବିଡ଼ମ୍ବନାମୟ ଯାଙ୍କ ପ୍ରକୃତି ଓ ପ୍ରବୃତ୍ତି !! କ୍ଷଣକ ପାଇଁ ମୋହିତ ଦୃଷ୍ଟିରେ ତାଙ୍କୁ ଚାହିଁଦେଇ ଉତ୍ତର ଦେଲି ବିନୟଭରା କଣ୍ଠରେ, "ତାହା ତ ଆପଣଙ୍କ କୃପା ଓ ଆଶୀର୍ବାଦବଳରୁ ଗୁରୁଦେବ ।'

"ନା, କେବଳ ସେହି ବଳରୁ ନୁହେଁ । ତୁମ ପୌରୁଷବଳରୁ । ପୌରୁଷଲବ୍ଧ ଅଧିକାରବଳରୁ ।"

ଏଭଳି ପ୍ରଶଂସାରେ ଲାଜରେ ମରିଗଲି ମୁଁ । ଆଉ କିଛି ଉତ୍ତର ଦେଇପାରିଲି ନାହିଁ । ନୀରବ ରହିଲି ।

କ୍ଷଣିକ ନୀରବତା ପରେ ସେ ପୁଣି ମତେ ପଚାରିଲେ, "ଆଚ୍ଛା, ତୁମେ ତ ଏଠାରେ ଏକ ମାସ ଧରି ରହିଲଣି । କି ବିଦ୍ୟା ମୋ'ଠାରୁ ପାଇବାକୁ ଚାହଁ, ତାହା ତ କହିଲ ନାହିଁ । ଯାହା ଦେଖୁଛି, ତୁମେ ତ ବେଦ, ବେଦାନ୍ତ ଆଦି ସକଳ ଶାସ୍ତ୍ରରେ ଧୁରୀଣ । ତେବେ କେଉଁ ବିଦ୍ୟା ମୋ'ଠାରୁ ଶିକ୍ଷା କରିବାକୁ ଚାହୁଁଛ ?"

"ଅଭୟ ଦେଲେ କହିବି ।" ମୋ'ର ଦ୍ୱନ୍ଦ୍ୱଭରା ଉତ୍ତର ଚକିତ କରିଦେଲା ତାଙ୍କୁ ।

"ବିଦ୍ୟାକ୍ଷେତ୍ରରେ ଭୟ-ଅଭୟର ପ୍ରଶ୍ନ ଉଠୁଛି କାହିଁକି ? ତୁମେ ନିର୍ଭୀକ ଭାବରେ ମନର କାମନା ବ୍ୟକ୍ତ କରିପାର । ତୁମକୁ ଶିଷ୍ୟରୂପରେ ଗ୍ରହଣ କରିବା ଦିନଠାରୁ ହିଁ ଆମ ଦୁହିଁଙ୍କ ଆତ୍ମା ହୋଇଯାଇଛି ଅଭିନ୍ନ । ତୁମକୁ ଅଭୟ ଦେଲି । କ'ଣ କହିବାକୁ ଚାହୁଁଛ କହ ।" ନିର୍ବିକାର ଚିତ୍ତରେ କହିଲେ ସେ ।

''ହେ ଆଚାର୍ଯ୍ୟବର । ଆପଣଙ୍କ ପାଖରୁ ଦିବ୍ୟାସ୍ତ୍ର ବିଷୟରେ ଶିକ୍ଷା ପାଇବାକୁ ଚାହେ । ଆଉ ମଧ୍ୟ ଚାହେ ବ୍ରହ୍ମାସ୍ତ୍ରର ଅଧିକାରୀ ହେବାପାଇଁ । ସେ ଜ୍ଞାନ ଦୟା କରି ମତେ ଦିଅନ୍ତୁ ।'' ଅନୁନୟ-ବିନୟ କରି ତାଙ୍କ ଆଗରେ ନିବେଦନ କଲି ।

ଚମକିପଡ଼ିଲେ ଆଚାର୍ଯ୍ୟ । ଅଦିନ ମେଘ ଘୋଟିଆସି ହଠାତ୍ ବଜ୍ର ପଡ଼ିଲା ଯେମିତି । କ୍ଷଣକ ପୂର୍ବରୁ ଥିବା ପ୍ରସନ୍ନୋଜ୍ଜ୍ୱଳ ମୁଖମଣ୍ଡଳରେ ଅତଳ ମହାସାଗରର ଗମ୍ଭୀରତା । କୁଟିଳ ଭ୍ରୂଭଙ୍ଗୀରେ ମୋ' ପ୍ରତି ତୀକ୍ଷ୍ଣ ଦୃଷ୍ଟି । ପୁଣି ଥରେ ମତେ କରିନେଉଥିଲେ ଆପାଦମସ୍ତକ ପରୀକ୍ଷା ? ମୋ' ପ୍ରଶସ୍ତ ବୃକ୍ଷୋଦେଶ ଓ ବଳିଷ୍ଠ ପେଶଳ ବାହୁଯୁଗଳ ତାଙ୍କ ମନରେ ସମ୍ଭବତଃ ସୃଷ୍ଟି କରୁଥିଲା ସନ୍ଦେହର ଦ୍ୱନ୍ଦ୍ୱ । ତହିଁରେ ହୁଏତ ଭ୍ରମିତ ହୋଇଯାଉଥିଲେ ସେ । ମତେ ଗମ୍ଭୀର ସ୍ୱରରେ ପ୍ରଶ୍ନ କଲେ, ''ତୁମେ ଠିକ୍ ପରିଚୟ ଦେଇଛ ତ ? ତୁମେ ବ୍ରାହ୍ମଣ ତ ?''

''ହଁ ପ୍ରଭୋ ! ମୁଁ ବ୍ରାହ୍ମଣସନ୍ତାନ । ଜଣେ ଭାର୍ଗବ ବ୍ରାହ୍ମଣ ।''

''ତୁମର ପୁଣି ଅସ୍ତ୍ରଶିକ୍ଷାର କି ଆବଶ୍ୟକତା ଅଛି ? ପୁଣି ବ୍ରହ୍ମାସ୍ତ୍ରର ଜ୍ଞାନ କେଉଁଥିପାଇଁ ?'' ପ୍ରଶ୍ନ ତାଙ୍କର ତୀକ୍ଷ୍ଣତର ଓ ଅନୁସନ୍ଧିତ୍ସାଭରା । ସାନ୍ଧ୍ୟ ପବନ ହଠାତ୍ କେଉଁ କାରଣରୁ ଥମିଯାଇ ପତ୍ରକମ୍ପନର ଶବ୍ଦ ବନ୍ଦ ହୋଇଯାଇଥିଲା । ଆଶ୍ରମର ନିର୍ଜନତାକୁ ତାହା ବଢ଼ାଇ ଦେଉଥିଲା ଅନେକାଂଶରେ । ଏଭଳି ଅସ୍ୱସ୍ତିକର ପରିବେଶ ମଧ୍ୟରେ ତାଙ୍କ ମୁଖମଣ୍ଡଳ ହୋଇଉଠୁଥିଲା ଗମ୍ଭୀରରୁ ଗମ୍ଭୀରତର । ଏକ ବିରାଟ ଝଡ଼ର ପୂର୍ବସୂଚନା ଯେମିତି ।

'' କେବଳ ଆତ୍ମରକ୍ଷା ପାଇଁ ଆଚାର୍ଯ୍ୟବର । କେବଳ ଆତ୍ମରକ୍ଷା ପାଇଁ । କାହାକୁ କିନ୍ତୁ ଆକ୍ରମଣ କରିବାପାଇଁ ନୁହେଁ ।'' କିଛି ହେଲେ ଦବି ନ ଯାଇ ସାହସଭରା କଣ୍ଠରେ ଉତ୍ତର ଦେଲି । ମହାବୀର ଓ ମହାମନସ୍ୱୀ ଆଚାର୍ଯ୍ୟ ପରଶୁରାମ । ତାଙ୍କ ସମ୍ମୁଖୀନ ହେବାପାଇଁ ବୁଦ୍ଧି ଯେତିକି ଦରକାର ତାହାଠାରୁ ଅଧିକ ଦରକାର ସାହସ । ଭଗବାନ୍‌ଙ୍କ ଦୟାରୁ ସେ ବୁଦ୍ଧି ଓ ସାହସ ଧରିରଖିଥିଲି ମୁଁ । ଆଉ ଧରି ବି ରଖିଥିଲି ଅପାର ଧୈର୍ଯ୍ୟ । ଯେ ସାରା ଜୀବନ ଧରି ସମାଜର ଅନାଦର, ଅବହେଳା, ଅତ୍ୟାଚାର ଓ ଅବିଚାର ସହିଆସିଛି, ସେ ଏଇ ସାମାନ୍ୟ ପ୍ରଶ୍ନବାଣରେ ଧୈର୍ଯ୍ୟ ହରାଇବସିବ ବା କାହିଁକି ?

ମୋ' ଉତ୍ତର ଦେବା ଭଙ୍ଗୀରୁ ଯଥେଷ୍ଟ ନିରୀହତା ଓ ଆତ୍ମପ୍ରତ୍ୟୟ ହେଉଥିଲା ପ୍ରକଟିତ । ହୁଏତ ଆଚାର୍ଯ୍ୟ ଅନୁଭବ କରୁଥିଲେ ମୁଁ ହୃଦୟର ଖୋଲା ଭୂର୍ଜପତ୍ରଟି ତାଙ୍କ ଆଗରେ ଖୋଲିଦେଇଛି ଯେମିତି । ସେ ଟିକିଏ ନରମିଯାଇ ପଚାରିଲେ, ''ଆତ୍ମରକ୍ଷାର କି ଆବଶ୍ୟକତା ଅଛି ବ୍ରାହ୍ମଣମାନଙ୍କର ? ରାଜାମାନେ ତ ଅଛନ୍ତି । ଅଛନ୍ତି ସେମାନଙ୍କ ବୀର କ୍ଷତ୍ରିୟବାହିନୀ । ସେମାନେ କ'ଣ ସୁରକ୍ଷା ଦେଇପାରିବେ ନାହିଁ ?''

ପ୍ରଶ୍ନର ଏଇ ମୋଡ଼ଟିକୁ କରିଥିଲି ଅପେକ୍ଷା । ଏକ ଯୁକ୍ତିଯୁକ୍ତ ଓ ଯଥାର୍ଥ ପ୍ରତିକ୍ରିୟା ପ୍ରକାଶ କରିବାର ସୁଯୋଗ ମିଳିଗଲା ମତେ । ହଠାତ୍ ଅନ୍ଧ ବିଚରା ତଳେ ପଡ଼ିଯାଇଥିବା ତା'ର ଆଶ୍ରା-ବାଡ଼ିଟିକୁ ଖୋଜିପାଇଲା ଯେମିତି ।

"ସେ ପରିସ୍ଥିତି ନାହିଁ ଏବେ । କ୍ଷତ୍ରିୟ ରାଜାମାନେ ମଧ୍ୟ ଅତ୍ୟାଚାରୀ ହୋଇଉଠିଛନ୍ତି । ଋଷି-ବ୍ରାହ୍ମଣମାନଙ୍କୁ ମାନୁ ନାହାନ୍ତି । ନିରସ୍ତ୍ର ପ୍ରଜାମାନେ ଖୁବ୍ ଭୀତତ୍ରସ୍ତ । କାହାରି ଧନ-ଜୀବନ ନିରାପଦ ନୁହେଁ ।" ଧନୁର ଗୋଟିକ ପରେ ଗୋଟିଏ ବାଣ ଛୁଟିବା ଢଙ୍ଗରେ କହିଲି । ଏହାର ଅନେକ କିଛି ପ୍ରଭାବ ଲକ୍ଷ୍ୟ କରିପାରିଲି ଆଚାର୍ଯ୍ୟଙ୍କ ମୁଖମଣ୍ଡଳରେ । ଅନେକ ବର୍ଷ ଧରି ତାଙ୍କର ଲୋକସମାଜ ସହିତ ସଂପର୍କ ନାହିଁ । ନାହିଁ ବି ମିଳାମିଶା । ଅତୀତ ଦିନମାନଙ୍କରେ ନିଜେ ହିଁ ଅନୁଭବ କରିଛନ୍ତି କ୍ଷତ୍ରିୟମାନଙ୍କ ଏହି ଅତ୍ୟାଚାରର ଭୟଙ୍କର ତାଣ୍ଡବଲୀଳାର ଭୟାବହତା । ଏହାର ତୀବ୍ର ପ୍ରତିକ୍ରିୟାରେ କରିଛନ୍ତି ପୃଥିବୀକୁ କ୍ଷତ୍ରିୟହୀନ । ଥରେ ନୁହେଁ । ଦୁଇ ଥର ନୁହେଁ । ପାଞ୍ଚ ଥର ନୁହେଁ । ଗଣି ଗଣି ଏକୋଇଶ ଥର । ତାଙ୍କର ଏହିଭଳି ମାନସିକ ଦ୍ୱନ୍ଦ୍ୱ ଥିବା ଅବସରରେ ପୁଣି କହିଲି, "ଜଣେ ଭାର୍ଗବ ବ୍ରାହ୍ମଣ ହିସାବରେ ମୋର ମଧ୍ୟ କିଛି କର୍ତ୍ତବ୍ୟ ଅଛି । ସମାଜ ପ୍ରତି ଅଛି ପ୍ରତିବଦ୍ଧତା । ତାହାକୁ ନିଭାଇବାକୁ ଚାହେଁ ଆଚାର୍ଯ୍ୟବର । ମତେ କୃପା କରନ୍ତୁ ।"

ଆଚାର୍ଯ୍ୟ ଭଲିଗଲେ ମୋ' କଥାରେ । ପୁଣି ଓଠତଳେ ପରିତୃପ୍ତିର ମିଠା ମିଠା ମୃଦୁ ହସ । ତାଙ୍କ ହସ ସହିତ ସମତାଳ ଦେଇ ଆଶ୍ରମ ଉପବନରେ ହସିଉଠିଲା ନୈଶ କୁସୁମରାଶି । ମୋ' ଚିତ୍ତ ଆକାଶର ଜହ୍ନ ବି ହସିଉଠିବାକୁ ଲାଗିଲା ମୁରୁକି ମୁରୁକି ।

ଆଚାର୍ଯ୍ୟ ସଂପୂର୍ଣ୍ଣ ଭାବରେ ଯାଇଥିଲେ ତରଳି ପୂର୍ଣ୍ଣିମାର ଚନ୍ଦ୍ରମାଙ୍କୁ ଦେଖି ସମୁଦ୍ରର ତୁଙ୍ଗ ତରଙ୍ଗ ତରଳିଯାଏ ଯେମିତି । ତରଙ୍ଗ ତରଳିତ ଭଙ୍ଗୀରେ ଲୋଟିପଡ଼େ ବେଳାଭୂମିରେ । ସେ କହିଲେ "ତୁମେ ଠିକ୍ କହିଛ ବତ୍ସ ବସୁ, ଠିକ୍ କହିଛ । ପରିବର୍ତ୍ତିତ ପରିସ୍ଥିତିକୁ ନେଇ ବ୍ରାହ୍ମଣଙ୍କୁ ମଧ୍ୟ ତାଙ୍କ ଜୀବନଧାରାରେ କିଛିଟା ପରିବର୍ତ୍ତନ ଅଣାଇବାକୁ ହେବ ।"

"ତାହା ନ କଲେ ଆତ୍ମସଂରକ୍ଷଣ ଅସମ୍ଭବ । ଆଉ ସମାଜ ପ୍ରତି ତାଙ୍କ କର୍ତ୍ତବ୍ୟ କରିବାର ସୁଯୋଗ ବା ରହିବ କେଉଁଠି ?" ବିନୀତ କଣ୍ଠରେ କହିଲି

"ଠିକ୍ କଥା । ମୁଁ ତୁମକୁ ଦିବ୍ୟାସ୍ତ୍ର ଶିକ୍ଷା ଦେବାପାଇଁ ପ୍ରସ୍ତୁତ । ଆଉ ପ୍ରସ୍ତୁତ ବି ବ୍ରହ୍ମାସ୍ତ୍ର ଶିକ୍ଷା ଦେବାପାଇଁ । କିନ୍ତୁ ଗୋଟିଏ ସର୍ତ୍ତରେ ।"

"କ'ଣ ସେ ସର୍ତ୍ତ ଆଚାର୍ଯ୍ୟବର ?"

"ତୁମକୁ କେହି ଦିବ୍ୟାସ୍ତ୍ର ଅଥବା ବ୍ରହ୍ମାସ୍ତ୍ରଦ୍ୱାରା ଆଘାତ କରିବାକୁ ନ ଆସିବା ପର୍ଯ୍ୟନ୍ତ ତୁମେ ସେହି ଅସ୍ତ୍ରଗୁଡ଼ିକୁ ପ୍ରୟୋଗ କରିବ ନାହିଁ । ତୁମେ ଏହି ସର୍ତ୍ତ ପାଳିପାରିବ ?"

"ପାରିବି ଆଚାର୍ଯ୍ୟବର, ପାରିବି । ଆପଣଙ୍କ କୃପାବଳରେ ସବୁ କିଛି କରିପାରିବି ।" ମୋର ସବିନୟ ଉତ୍ତର ।

"କିନ୍ତୁ ବ୍ରାହ୍ମଣମାନେ ତ କ୍ଷଣକୋପୀ । ସହଜରେ ଧୈର୍ଯ୍ୟ ଧରି ରହିପାରନ୍ତି ନାହିଁ । ତୁମେ ଏଭଳି ଅସ୍ତ୍ରର ଅଧିକାରୀ ଥାଇ ଧୈର୍ଯ୍ୟ ଧରି ରହିପାରିବ ତ ? ଆତ୍ମସଂଯମ ରଖିପାରିବ ତ ?" ସେ ମୋ'ଠାରୁ ତଥାପି କିଛିଟା ଦୃଢ଼ ପ୍ରତିଶ୍ରୁତି ଆଶା କରୁଥିଲେ ।

''ନିଶ୍ଚୟ ପାରିବି । ଶପଥ କରି କହୁଛି ନିଶ୍ଚୟ ପାରିବି । ତାହା ନ କଲେ ହେବି ଗୁରୁଦ୍ରୋହୀ । ପଡ଼ିବି ରୌରବ ନରକରେ ।'' କଣ୍ଠର ଭାଷା ମୋର ଆବେଗମୟ । ।

''ମୋର ସେ ବିଶ୍ୱାସ ଅଛି ତୁମ ଉପରେ ବାପା ବସୁ । ତୁମେ ଜୀବନରେ ସଫଳତା ପାଅ ।'' ତାହା ପରେ ପୁଣି କହିଲେ, ''ତୁମ ଅସ୍ତ୍ରଶିକ୍ଷା କାଲିଠାରୁ ଆରମ୍ଭ ହେବ ।''

''ଆପଣଙ୍କ ଯାହା କୃପା ଆଚାର୍ଯ୍ୟବର ।'' ଏହା କହି ତାଙ୍କ ପାଦତଳେ ଭୂମିଷ୍ଠ ପ୍ରଣାମ କଲି । ସେ ହାତଟେକି ମତେ ସ୍ନେହସଜଳ ଚକ୍ଷୁରେ ଚାହିଁଲେ ଓ କଲେ ଆଶୀର୍ବାଦ ।

ତାଙ୍କଠାରୁ ବିଦାୟ ନେଇ ଆଶ୍ରମର ଅନ୍ୟାନ୍ୟ କାମରେ ଲାଗିଗଲି ।

ଏତେ ଦିନ ପରେ ମୋର ସ୍ୱପ୍ନ ଯେ ସଫଳ ହେବାକୁ ଯାଉଛି ସେଥିପାଇଁ ନିଜକୁ ମଣିଲି କୃତକୃତ୍ୟ । ଆଶ୍ରମର ଏଇ କୃଚ୍ଛ୍ର ଜୀବନ ମଧ୍ୟରେ ଏଇ ଯେଉଁ ସଫଳତା ହାସଲ କରିବାକୁ ଯାଉଛି, ତାହାର ବାସନା ଯେ କେତେ ମନମତାଣିଆ ହେବ ସେ କଥା ଚିନ୍ତା କରି କରି ହୋଇଉଠୁଥିଲି ବିହ୍ୱଳିତ । ସେଦିନର ନିଶୀଥନିଦ୍ରାଟି ମୋ'ପାଇଁ ଥିଲା ଅତ୍ୟନ୍ତ ସୁଖକର ଓ ଶାନ୍ତିପ୍ରଦ ।

## ପଚିଶ

ଆଚାର୍ଯ୍ୟଙ୍କ କହିବା ଅନୁସାରେ ମୋ' ଅସ୍ତ୍ରଶିକ୍ଷା ଆରମ୍ଭ ହୋଇଗଲା ପରଦିନ ଠାରୁ । ବିଗତ ପ୍ରାୟ ଏକ ମାସ ଧରି ଯେଉଁ କର୍ତ୍ତବ୍ୟକର୍ମ କରିଆସୁଥିଲି ଆଶ୍ରମରେ ସେଥିରୁ ଯେ କିଛିଟା ଅବ୍ୟାହତି ମଳିଲା ଅଥବା କୌଣସି କର୍ତ୍ତବ୍ୟରୁ ମିଳିଲା ନିଷ୍କୃତି, ତାହା ନୁହେଁ । ସବୁ ଚାଲୁଥାଏ ପୂର୍ବ ଭଳି ଠିକ୍ ଠିକ୍ କାୟା ସହିତ ଛାୟାର ଶାଶ୍ୱତ ଗତି ଭଳି । ଆଶ୍ରମଜୀବନର ଶୃଙ୍ଖଳିତ ଧାରା ଚାଲିଥାଏ ଚିରପ୍ରବହମାନ ପରମ୍ପରାର ଶଗଡ଼ଗୁଳାରେ । ଗଙ୍ଗାର କଳ କଳ ଛଳ ଛଳ ଧାରା ଯେମିତି । ସହସ୍ର ସହସ୍ର ବର୍ଷ ତଳେ ଶିଷ୍ୟମାନେ ଯାହା କରୁଥିଲେ ମତେ ସେହି କର୍ତ୍ତବ୍ୟକର୍ମମାନ କରିବାକୁ ପଡୁଥିଲା । ମୋ' ଅନ୍ତେ ସହସ୍ର ସହସ୍ର ବର୍ଷ ଧରି ଆଉ ଯେଉଁ ଶିଷ୍ୟମାନେ ଆସିବେ ସେମାନେ ମଧ୍ୟ ଚାଲିବେ ସେଇ ଚିରଶୃଙ୍ଖଳିତ ପଥକୁ ଆଶ୍ରା କରି । ତେଣୁ ମତେ ସମୟକୁ ଭାଗ ଭାଗ କରି ପଡୁଥିଲା କିଛିଟା ସମୟ ବଞ୍ଚାଇବାକୁ ଯେମିତି ତାହା ଆଚାର୍ଯ୍ୟଙ୍କ ପାଇଁ ହୁଏ ସୁବିଧାଜନକ । ସେହି ସମୟ ମଧ୍ୟରେ ହିଁ ପାଉଥିଲି ଅସ୍ତ୍ରଶିକ୍ଷା ।

ଆଶ୍ରମରେ ଏକମାତ୍ର ଶିଷ୍ୟ ମୁଁ । ବହୁ ଦାୟିତ୍ୱର ଭାର । ଆଉ ପରଶୁରାମଙ୍କ ଭଳି ଜଣେ ଆଚାର୍ଯ୍ୟ । କ୍ରୋଧ ତାଙ୍କର ଭୁବନବିଦିତ । ଆଉ ଭୁବନବିଦିତ ବି ପ୍ରତିଶୋଧପରାୟଣତା । କ୍ଷମା ବୋଲି ଗୋଟିଏ ଜିନିଷ ଯେମିତି ନାହିଁ ତାଙ୍କ ପାଖରେ । ଅବଶ୍ୟ ବର୍ତ୍ତମାନ ବଦଳିଯାଇଛନ୍ତି ଅନେକାଂଶରେ । ଏ ପର୍ଯ୍ୟନ୍ତ ତାଙ୍କର କ୍ରୋଧ ଅଥବା ପ୍ରତିଶୋଧପରାୟଣତା କିମ୍ବା କ୍ଷମାହୀନତାର ପ୍ରମାଣ ପାଇ ନାହିଁ ମୁଁ ଆଶ୍ରମରେ । ଆଉ ମୋ' ପ୍ରତି ତ ଅଖଣ୍ଡ ବିଶ୍ୱାସ ଓ ଅନନ୍ୟ ପ୍ରେମ । ତଥାପି ଭାବୁଥିଲି ମନେ ମନେ ଯେତେ

ହେଲେ ଯେ ତ ପରଶୁରାମ । ଯାଙ୍କର ଉପମା ହିଁ ନାହିଁ । ପରଶୁରାମ ହିଁ ପରଶୁରାମ । ବାଘ ଥରେ ମଣିଷଖିଆ ହୋଇ ପରେ ମଣିଷ-ମାଂସ ଛାଡ଼ିଦେଲେ କ'ଣ ମଣିଷ ତାକୁ ଦେଖିଲେ ଡରିବ ନାହିଁ ? ତେଣୁ ପଦେ ପଦେ ମୋର ତାଙ୍କ ପ୍ରତି ଭୟ । ଅତି ସନ୍ତର୍ପଣରେ ଓ ଯତ୍ନସହକାରେ ପାଳୁଥିଲି ତାଙ୍କ ଆଦେଶମାନ ।

ଗୋଟିକ ପରେ ଗୋଟିଏ କରି ଦିବ୍ୟାସ୍ତ୍ର ଚାଳନର କୌଶଳ ଶିଖି ଚାଲିଥାଏ । ବ୍ରହ୍ମାସ୍ତ୍ରର ଶିକ୍ଷା ତଥାପି ପାଇ ନ ଥାଏ । ମୋ' ଶିକ୍ଷାର ଅଗ୍ରଗତି ନେଇ ଆଚାର୍ଯ୍ୟ ଖୁବ୍ ସନ୍ତୁଷ୍ଟ । ଅନ୍ତତଃ ସେମିତି ଜଣାପଡୁଥାନ୍ତି ମତେ । ମତେ ଲାଗୁଥାଏ, ଯଥାସମୟରେ ବ୍ରହ୍ମାସ୍ତ୍ର ସଂପର୍କରେ ଶିକ୍ଷା ଦେବେ । ତାହା ପାଇ ହୋଇଉଠିବି ବ୍ରହ୍ମାସ୍ତ୍ରର ଅଧିକାରୀ । ମୋ' ପ୍ରତିସ୍ପର୍ଦ୍ଧୀ ଅର୍ଜୁନଙ୍କ ସମକକ୍ଷ । ଖାଲି ତ ଅର୍ଜୁନଙ୍କର ନୁହେଁ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଓ ପିତାମହ ଭୀଷ୍ମଙ୍କର ମଧ୍ୟ ସମକକ୍ଷ । ସାରା ହସ୍ତିନାପୁରରେ ଆମେ ଏଇ ଛଅଜଣ ମାତ୍ର ରହିବୁ ବ୍ରହ୍ମାସ୍ତ୍ରର ଅଧିକାରୀ ହୋଇ । ଏହା କ'ଣ କମ୍ ବଡ଼ ସୌଭାଗ୍ୟ ? କମ୍ ବଡ଼ ମର୍ଯ୍ୟାଦାଜନକ ? ମୁଁ ସୂତପୁତ୍ର ବୋଲି ବର୍ଷ ବର୍ଷ ଧରି ସହିଆସିଛି ଯେଉଁ ଅବହେଳା ଓ ନିର୍ଯାତନା, ତାହା ପ୍ରତି ଏହା କ'ଣ କମ୍ ବଡ଼ ପଦାଘାତ ? ବିନା ଅପରାଧରେ ବିଧାତା ମୋ' ଉପରେ ଲଦିଦେଇଛନ୍ତି କେଉଁ ନୀଚଜନ୍ମର ପାହାଡ଼ଟି ତାହା ଉପରେ କ'ଣ କମ୍ ବଡ଼ ପ୍ରହାର ?

ଆନନ୍ଦରେ କୁରୁଳି ଉଠୁଥିଲି ମନେ ମନେ ପବନର ହିଲ୍ଲୋଳିତ ପରଶ ପାଇ ମଲ୍ଲୀ-କୁସୁମ ପୁଲକିତ ହୋଇଉଠେ ଯେମିତି । ଏଇଭଳି ଚିନ୍ତା ମନକୁ ଆସୁଥିବା ଅବସରରେ ଦକ୍ଷିଣ ବାହୁ ଓ ଦକ୍ଷିଣ ନେତ୍ର ମୋର ଥରିଉଠେ ବାରମ୍ବାର । ଆସନ୍ନ ସିଦ୍ଧିର ଶୁଭ ସୂଚନା ଦିଏ । ନବୀନ ଉଷାର ଆଗମନୀ ସଙ୍ଗୀତର ସୂଚନା ଦେଇ କନକ ଶଙ୍ଖଟିକୁ ଦିଏ ବଜାଇ !

ପ୍ରତ୍ୟେକଟି ଦିବ୍ୟାସ୍ତ୍ର ବିଷୟରେ ଶିକ୍ଷା ଦେବା ଅବସରରେ ତାହାର ପ୍ରୟୋଗ ଓ ସମ୍ବରଣ କଳାକୌଶଳଟି ଶିଖାଇଦିଅନ୍ତି ଆଚାର୍ଯ୍ୟ । ଆଉ ସାବଧାନ କରିଦେଇ ବାରମ୍ବାର କହନ୍ତି ଗୋଟିଏ କଥା ଯାହାକୁ ପାଳିବାକୁ ହେବ ଏକନିଷ୍ଠ ଭାବରେ । ପ୍ରୟୋଗ ଓ ସଂହାର ଉଭୟ କଳାକୌଶଳ ଜାଣି ନ ଥିଲେ କୌଣସି ଦିବ୍ୟାସ୍ତ୍ରର ପ୍ରୟୋଗ କରିବାକୁ ହେବ ନାହିଁ । ସଂହାରବିଦ୍ୟା ପାସୋରଗଲେ ଦିବ୍ୟାସ୍ତ୍ରର ପ୍ରୟୋଗ ନିଷିଦ୍ଧ । ତାହା ମହାପାପ ହିସାବରେ ଗଣ୍ୟ । ଶତ୍ରୁପକ୍ଷରୁ ଯଦି ଆଗ ଦିବ୍ୟାସ୍ତ୍ରର ପ୍ରୟୋଗ ନ ହୁଏ, ତା' ହେଲେ ତାହା ପ୍ରୟୋଗ କରିବା ମଧ୍ୟ ନିଷିଦ୍ଧ । ମୂଳତଃ ଏହା ଆତ୍ମରକ୍ଷା ଲାଗି ଉଦ୍ଦିଷ୍ଟ । ସାଧାରଣ ମନୁଷ୍ୟ କ୍ଷେତ୍ରରେ ପାରମ୍ପରିକ ଅସ୍ତ୍ରସମୂହ ହିଁ ଯଥେଷ୍ଟ । ଦେବତା, ଯକ୍ଷ, ଗନ୍ଧର୍ବ, କିନ୍ନର, ରାକ୍ଷସ ଆଦିଙ୍କ କ୍ଷେତ୍ରରେ ଏହାକୁ ପ୍ରୟୋଗ କରିବାକୁ ହେବ । ଅନ୍ୟ କ୍ଷେତ୍ରରେ କିନ୍ତୁ ନୁହେଁ । ଦିବ୍ୟାସ୍ତ୍ର ବଳରେ ବଳୀୟାନ୍ ମନୁଷ୍ୟ ଉପରେ ଏହାର ପ୍ରୟୋଗ କରିବାକୁ ହେବ ସେତିକିବେଳେ ଯେତେବେଳେ ତା' ପକ୍ଷରୁ କରାଯାଇଥିବ ଦିବ୍ୟାସ୍ତ୍ରଦ୍ୱାରା ଆକ୍ରମଣ । ଆଉ ବ୍ରହ୍ମାସ୍ତ୍ର କଥା । ତାହାର ପ୍ରୟୋଗବିଧି ମଧ୍ୟ ଅନୁରୂପ । ବରଂ ଆହୁରି ଅଧିକ କଡ଼ା

କହିଲେ ଠିକ୍ ହେବ । ଅତି ସଙ୍କଟଜନକ ପରିସ୍ଥିତି ନ ଥିଲେ ତାହାର ପ୍ରୟୋଗ ନିଷିଦ୍ଧ । ଏମିତି କେତେ ଉପଦେଶ ଦେଇଥିଲେ ଆଚାର୍ଯ୍ୟ ।

ସବୁ ଶୁଣିସାରିବା ପରେ କହିଥିଲି, ''ଆପଣଙ୍କ ସକଳ ଉପଦେଶ ମାନିବି ଆଚାର୍ଯ୍ୟବର ।''

''ମୋର ସେ ବିଶ୍ୱାସ ତୁମ ଉପରେ ଅଛି ।'' ଆତ୍ମସନ୍ତୋଷ ଓ ପ୍ରସନ୍ନତାରେ ମୁଖ ତାଙ୍କର ଉଜ୍ଜ୍ୱଳ ହୋଇଉଠୁଥିଲା । ସମ୍ଭବତଃ ସେ ଭାବୁଥିଲେ ଯେ ମୁଁ ଜଣେ ଉପଯୁକ୍ତ ଶିଷ୍ୟ । ତାଙ୍କ ପ୍ରଦତ୍ତ ସକଳ ଗୂଢ଼ ବିଦ୍ୟାକୁ ରଖିବାରେ ଏକାନ୍ତ ସମର୍ଥ ।

ଦିନକର କଥା । ମଧ୍ୟାହ୍ନ ସଂଧ୍ୟାପୂଜା ସାରି ଆଚାର୍ଯ୍ୟ ବସିଥାନ୍ତି ମଧ୍ୟାହ୍ନ ଭୋଜନରେ । ମୁଁ ପରଷୁଥାଏ ଫଳମୂଳ ଓ ପାଖରେ ବସି ତାଳପତ୍ର ପଙ୍ଖାରେ କରୁଥାଏ ବ୍ୟଜନ । ଅତି ତୃପ୍ତ ହୋଇ ଖାଉଥାନ୍ତି ସେ । ଖାଇସାରି ହାତମୁହଁ ଧୋଇ ଅଳ୍ପ ସମୟ ପାଇଁ ବିଶ୍ରାମ ନେବାକୁ ବାହାରିଲେ । ଆଗରୁ କୁଶଶଯ୍ୟା ବିଛାଇ ଦେଇଥାଏ । ସେ ବିଶ୍ରାମ ନେଇସାରିଲେ ମୁଁ ଯିବି ଖାଇବାକୁ । ଶଯ୍ୟାକୁ ଯିବା ପୂର୍ବରୁ ମତେ ସ୍ନେହଭରା କଣ୍ଠରେ ଡାକିଲେ, ''ବତ୍ସ ବସୁ !'' ମୁଖମଣ୍ଡଳରେ ତାଙ୍କର ଦର ଦର ପରିତୃପ୍ତିର ହସ । ଆନନ୍ଦର ରସରେ ମଜିଯାଇଛି ଯେମିତି ।

''ଆଜ୍ଞା ।'' ବିନୟୀ କଣ୍ଠରେ ଦେଲି ଉତ୍ତର ।

''ତୁମ ଅସ୍ତ୍ରଶିକ୍ଷାର ଅଗ୍ରଗତିରେ ଖୁବ୍ ସନ୍ତୁଷ୍ଟ ମୁଁ । ଅତି ପ୍ରସନ୍ନ । ତୁମେ ଜଣେ ମହାବୀର ହେବ । ତୁମେ ତ ଅନେକ କିଛି ଶସ୍ତ୍ରବିଦ୍ୟା ଆଗରୁ ଜାଣିଛ । ତେଣୁ ଧାର୍ଯ୍ୟ ସମୟ ପୂର୍ବରୁ ତୁମ ଶିକ୍ଷା ସରିଯିବ । ହୁଏତ ଆଉ ଦୁଇ ମାସ ସମୟ ଲାଗିପାରେ ।''

''ମୁଁ କୃତକୃତ୍ୟ ପ୍ରଭୋ ! ସବୁ ତ ମୋ' ପରମ ଆରାଧ୍ୟ ଆଚାର୍ଯ୍ୟଙ୍କ ଆଶୀର୍ବାଦର ଫଳ ।'' କଣ୍ଠ ମୋର ଆହୁରି ଅଧିକ ବିନୟଭରା । ଆତ୍ମପ୍ରଶଂସାରେ କିଛିଟା ଅପ୍ରତିଭ ଓ ଲଜ୍ଜିତ ମୁଁ । ଆପେ ଆପେ ମୁଣ୍ଡ ମୋର ନଇଁ ଆସିଲା ତଳକୁ । ଗଣିବାକୁ ଲାଗିଲି ତାଙ୍କ ପବିତ୍ର ଚରଣର ଅଙ୍ଗୁଳିଗୁଡ଼ିକୁ ।

ସେ ପୂର୍ବର ଅଭ୍ୟାସକୁ ଦୋହରାଇବାକୁ ଯାଇ କହିଲେ, ''କେବଳ ତ ମୋର ଆଶୀର୍ବାଦ ନୁହେଁ ଅଥବା କେଉଁ ଭାଗ୍ୟର ଫଳ ନୁହେଁ । ଏହା ତୁମ ପୌରୁଷର ଫଳ । ନିରନ୍ତର ଉଦ୍ୟମର ଫଳ ।''

ଖୁବ୍ ଭଲ ଲାଗିଲା ତାଙ୍କର ଏଇ ଉତ୍ସାହଭରା ବାଣୀ । ପୁତ୍ରପ୍ରତିମ ଶିଷ୍ୟ ପ୍ରତି ଅନୁପ୍ରେରଣାରେ ପରିସ୍ନାତ ବାଣୀ । ନବୀନ ବୃଷ୍ଟିଜଳର ସ୍ପର୍ଶରେ ନିଦାଘଦଗ୍ଧ ମୋ' ଚିତ୍ତର ପ୍ରାନ୍ତର ଶ୍ୟାମଳ ହସରେ ଫାଟିପଡ଼ିଲା ଯେମିତି ! ତାହାରି ସୁଅରେ ମୋ' ହୀନମ୍ମନ୍ୟତାର ବାଲିବନ୍ଧ ଏଭଳି ଭାବରେ କୁଆଡ଼େ ଭାସିଗଲା ଯେ ତାହାର ପତ୍ତା ହିଁ ରହିଲା ନାହିଁ ।

ମନେ ମନେ ତୁଳନା କରୁଥାଏ ମୋର ଦୁଇ ଆଚାର୍ଯ୍ୟଙ୍କୁ । ଜଣେ ଆଚାର୍ଯ୍ୟ ଦ୍ରୋଣ ଓ ଅପରଜଣକ ଆଚାର୍ଯ୍ୟ ପରଶୁରାମ । କେତେ ପ୍ରଭେଦ ଦୁହିଁଙ୍କ ମଧ୍ୟରେ ସତେ ! ଆକାଶ-ପାତାଳର ପ୍ରଭେଦ । ପୂର୍ଣ୍ଣିମା-ଅମାବାସ୍ୟାର ପ୍ରଭେଦ । ଦିନ-ରାତିର ପ୍ରଭେଦ ।

ପ୍ରତ୍ୟୁଷ-ପ୍ରଦୋଷର ପ୍ରଭେଦ । ବିଷ ଓ ଅମୃତର ପ୍ରଭେଦ । ଜଣେ ମୋ' ପୌରୁଷରୁ ନବଜାତ ପକ୍ଷିଶାବକଟିର ଚଞ୍ଚୁମୂଳରେ ଆହାର ଭରିଦେଲାବେଳେ ଆଉ ଜଣେ ତାହାକୁ କରିଛନ୍ତି ଅର୍ଦ୍ଧମୃତ ନିରନ୍ତର ଆଘାତଦ୍ୱାରା । ଆଘାତ ନୁହେଁ ତ ଆଉ କ'ଣ ? ଆଚାର୍ଯ୍ୟ ଦ୍ରୋଣ ମତେ ଦିନେହେଲେ ନାଁ ଧରି ଶ୍ରଦ୍ଧାରେ ଡାକି ନାହାନ୍ତି କର୍ଣ୍ଣ ବୋଲି । ବରଂ ସୂତପୁତ୍ର ବୋଲି ଡାକି ବାରମ୍ବାର ଚେତାଇ ଦେଇଥନ୍ତି ମୋ' ନୀଚକୁଳକୁ । ମତେ ଫିଙ୍ଗିଦେଇଛନ୍ତି ଅବହେଳାର ଅଳିଆଗଦାକୁ । ଅଥଚ ଆଜି ଆଚାର୍ଯ୍ୟ ପରଶୁରାମ ମତେ ଆଣି ଦେଇଛନ୍ତି ସେଇ ଅଳିଆଗଦାରେ ଫୁଟିଥିବା ଏକ ପଦ୍ମଫୁଲର ସୌଭାଗ୍ୟ । ଖାଲି ତ ସେତିକି ନୁହେଁ । ମତେ ତାଙ୍କ ନିଜ ଆତ୍ମା ବୋଲି ବିଚାରୁଛନ୍ତି । ଏହା କ'ଣ କମ୍ ବଡ଼ ମହାନତା ?

ପ୍ରାଣମନ ମୋର ଉଚ୍ଛଳ ହୋଇଉଠୁଥିଲା ଆଚାର୍ଯ୍ୟ ପରଶୁରାମଙ୍କ ପ୍ରତି କୃତଜ୍ଞତାରେ । ସତେ କେତେ ଭାଗ୍ୟବାନ୍ ମୁଁ । ଭାବୁଥିଲି ମନେ ମନେ ।

''ଆସନ୍ତା ବୃହସ୍ପତିବାର ମହେନ୍ଦ୍ର ଲଗ୍ନ ଦେଖି ତୁମର ବ୍ରହ୍ମାସ୍ତ୍ର ଶିକ୍ଷା ଆରମ୍ଭ ହେବ । ସେଥିପାଇଁ ପ୍ରସ୍ତୁତ ଥାଅ ।'' ଆଚାର୍ଯ୍ୟ ପୁଣି କହିଲେ ହସି ହସି । ଗଙ୍ଗାର ତୁଙ୍ଗ ଫେନିଳ ଲହରୀ ପରି ଶୁଭ୍ର ସରସ ହସ । ଶିଷ୍ୟ ଲାଗି ଆଶୀର୍ବାଦରେ କଳ କଳ ଓ ଛଳ ଛଳ ।

ଗୁରୁ-ଶିଷ୍ୟ ପରମ୍ପରା । କେତେ ମଧୁର ଓ ପବିତ୍ର ସତେ ଏଇଟି । ଠିକ୍ ପିତାପୁତ୍ରଙ୍କ ସଂପର୍କ ଯେମିତି । ଖାଲି ଦେବା ହିଁ ଗୁରୁଙ୍କ ଧର୍ମ । ସେଇଥିରେ ତାଙ୍କର ଗଭୀର ଆନନ୍ଦ । ଶିଷ୍ୟକୁ ବିଦ୍ୟା ଦେବେ, ଜ୍ଞାନ ଦେବେ, ପ୍ରଜ୍ଞା ଦେବେ । ଆଉ ଦେବେ ମଧ ମଣିଷ ହେବାର ଚାବିକାଠିଟି । ତାହାର ପ୍ରତିବଦଳରେ ନେବେ ବା କ'ଣ ? କିଛିଟା ଭକ୍ତି । କିଛିଟା ସେବା । କିଛିଟା ଆନ୍ତରିକତାରେ ଭରପୂର କୃତଜ୍ଞତା । ଏହାଠାରୁ ଶିଷ୍ୟ ବିଚରା ଆଉ କ'ଣ ବା ଦେଇପାରିବ ? ପ୍ରତିଦାନକୁ କିନ୍ତୁ ଅପେକ୍ଷା ନାହିଁ ଗୁରୁଙ୍କର । ସେ ଦେବାପାଇଁ ଆସିଛନ୍ତି । ଦେଇଚାଲିବେ ନିରନ୍ତର । ନେବାପାଇଁ କିନ୍ତୁ ଆସି ନାହାନ୍ତି । ଏଇ ଯେଉଁ ମହାନ୍ ପରମ୍ପରା ଗଢ଼ିଉଠିଛି ଯୁଗ ଯୁଗ ଧରି ଆର୍ଯ୍ୟାବର୍ତ୍ତରେ, ତାହାକୁ ମୋର ବାରମ୍ବାର ପ୍ରଣାମ !

''ଯେ ଆଜ୍ଞା ଆଚାର୍ଯ୍ୟବର ।'' ମଥା ଅବନତ କରି କହିଲି ।

ସେତେବେଳେ ଆଶ୍ରମ-ଅଙ୍ଗନରେ ଥିବା ବୃକ୍ଷଶାଖାରେ ପକ୍ଷିଣୀଟିଏ ତା'ର ଅସହାୟ ଶାବକର ଚଞ୍ଚୁମୂଳରେ ଭରିଦେଉଥିଲା ଆହାର । ଆଉ କ୍ଷୁଧାର୍ତ୍ତ ଶାବକଟି ଶ୍ରଦ୍ଧାଭରା ପ୍ରାଣରେ ତାହାକୁ ଗ୍ରହଣ କରୁଥିବା ଅବସରରେ ଚିତ୍କାର କରିଉଠୁଥିଲା ଚିଁ...ଚିଁ...ଚିଁ...

ମୋ' ପ୍ରାଣଶାବକଟି ବି କି ଏକ ଦିବ୍ୟ ଆହାର ଲାଗି ଚଞ୍ଚୁ ମେଲାଇ କରୁଥିଲା ଚିତ୍କାର !

## ଛବିଶ

ତହିଁ ଆରଦିନ । ଆଚାର୍ଯ୍ୟ ମଧାହ୍ନ ଭୋଜନ ପରେ ଯାଉଥାନ୍ତି ବିଶ୍ରାମ ନେବାକୁ । ମୋର ଭୋଜନ ତଥାପି ବାକି । ଏହି ଅବସରରେ ତାଙ୍କ ପାଖକୁ ଯାଇ ହାତ ଯୋଡ଼ି କହିଲି, ‘‘ଆଚାର୍ଯ୍ୟବର ।’’

‘‘କ’ଣ ବସ୍ତ ବସୁ ?’’ ତାଙ୍କର ପ୍ରତିପ୍ରଶ୍ନ ।

‘‘ଆଶ୍ରମରୁ ଲୁଣ ସରିଯାଇଛି ।’’

‘‘ତୁମେ କ’ଣ କହୁଛ ?’’

‘‘ଲୁଣ ପାଇଁ ପାହାଡ଼ତଳେ ବସୁଥିବା ହାଟକୁ ଯିବି ଭାବିଛି ।’’

‘‘କେବେ ?’’

‘‘ଏଇ ଆଜି । ସାପ୍ତାହିକ ହାଟ । ଉପରବେଳା ବସେ ।’’

‘‘ହଉ ଯାଅ । ସଂଧ୍ୟା ପୂର୍ବରୁ ଫେରିଆସିବ ।’’

‘‘ଯେ ଆଜ୍ଞା ପ୍ରଭୋ ।’’ ଏହା କହି ତାଙ୍କଠାରୁ ବିଦାୟ ନେଲି ଏବଂ ଖାଇସାରି ସାମାନ୍ୟ କିଛି ସମୟ ବିଶ୍ରାମ ନେବା ଉତ୍ତାରୁ ବାହାରିଲି ହାଟକୁ । ଏଠାକାର ହାଟରେ ଚାଲେ ବସ୍ତୁ ବିନିମୟରେ କିଣାବିକା । ସାଥିରେ କିଛି ସୁସ୍ୱାଦୁ ବନ୍ୟଫଳ ନେଲି । ଆଚାର୍ଯ୍ୟଙ୍କ ଉପବନର କଦଳୀ ଓ ଆତଫଳର ଭାରି ନାଁ । ସେଥିରୁ ବି କିଛି ଧରିଲି ।

ମୁନି-ଆଶ୍ରମମାନ ପ୍ରାୟ ସ୍ୱୟଂସମ୍ପୂର୍ଣ୍ଣ । ଖାଦ୍ୟପାନୀୟ, ପରିଧାନ ଆଦି ସବୁ କିଛି ମିଳେ ଅରଣ୍ୟରୁ । ମୃଗାଜିନ ହେଉ ଅଥବା ବଲ୍‌କଳ ବସ୍ତ୍ର ହେଉ, ମହେନ୍ଦ୍ରଗିରି ତାହା ସବୁ ଯୋଗାଇଥାଏ ଅତି ଉଦାର ଭାବରେ । ଏଥିପାଇଁ ନିର୍ଭର କରିବାକୁ ପଡ଼େନା ଲୋକାଳୟମାନଙ୍କ ଉପରେ । ତପସ୍ୱୀଜୀବନରେ ଲୋକାଳୟକୁ ଯେତେ କମ୍ ଗଲେ ଭଲ । କେବଳ ମିଳେ ନାହିଁ ଲୁଣ । ତାହାକୁ ସଂଗ୍ରହ କରିବାକୁ ହୁଏ ଲୋକାଳୟମାନଙ୍କରୁ । ଫଳମୂଳର ଅଥବା ମୃଗାଜିନର ବିନିମୟ କରି ତାହା ସଂଗ୍ରହ କରିବାକୁ ହୋଇଥାଏ ହାଟବଜାରରୁ । ଆମ ପାଇଁ ଖୁବ୍ ସୁବିଧାଜନକ ପର୍ବତର ପାଦଦେଶରେ ଥିବା ମଦିରାଲ୍ ଗାଁର ସାପ୍ତାହିକ ହାଟଟି । ଏକାବେଳକେ ମାସେ ଦୁଇ ମାସ ପାଇଁ ଆମକୁ ଲୁଣ ସଂଗ୍ରହ କରିବାକୁ ହୋଇଥାଏ । ଏହିପରି ଭାବି ଲୋକାଳୟକୁ ଯାଇଥାଉ ବର୍ଷକୁ ତିନି-ଚାରି ଥର ମାତ୍ର ।

ମଦିରାଲ୍ ନିଷାଦମାନଙ୍କର ଗାଁ । ତିରିଶି-ଚାଳିଶ ଘର ନିଷାଦ ପରିବାର ରହନ୍ତି । ନାଁଟି ବଡ଼ ବିଚିତ୍ର । କାହିଁକି ଏପରି ହେଲା ବୋଲି ଅନୁସନ୍ଧାନ କରିଛି । ବୁଝିପାରିଛି ଯେ ଏଠାରେ ନାନା ପ୍ରକାର ମଦିରାର ପ୍ରାଚୁର୍ଯ୍ୟ ଦେଖି ଦୂର ଅତୀତରେ କେହି ଜଣେ ଆର୍ଯ୍ୟ ବ୍ୟକ୍ତି ଏହାର ନାଁ ରଖିଥିଲେ ମଦିରାଳୟ । ମଦିରାର ଭଣ୍ଡାର । ଏହି ନାଁଟି ଏବେ ଅବଲୁପ୍ତ କାଳର ବିସ୍ମୃତି ଗର୍ଭରେ । ନିଷାଦମାନଙ୍କ କଣ୍ଠରେ ଏହା ରୂପ ନେଇଛି ମଦିରାଲ୍ ନାଁରେ ।

ଆର୍ଯ୍ୟ-ଆର୍ଯ୍ୟେତର ବ୍ୟକ୍ତିମାନେ ସମସ୍ତେ ଏବେ ଡାକୁଛନ୍ତି ଏହାକୁ ମଦିରାଲ୍ ନାଁରେ । ଆର୍ଯ୍ୟ ଓ ନିଷାଦ ସଂସ୍କୃତିର ମିଶ୍ରିତ ପ୍ରଭାବର ନିଦର୍ଶନ ।

ହାଟକୁ ଯାଇ ଜାଣିପାରିଲି ଏହି ନାଁଟିର ଯଥାର୍ଥତା କେତେ । ଏହା ପ୍ରକୃତରେ ଯେମିତି ମଦିରାର ଏକ ପ୍ରଶସ୍ତ ଭଣ୍ଡାର । ସମୁଦ୍ର କହିଲେ ହେବ ନାହିଁ ଅତ୍ୟୁକ୍ତି । ଘରେ ଘରେ ତିଆରି ହୁଏ ବିଭିନ୍ନ ପ୍ରକାର ମଦିରା । କେଉଁଠି ଜଙ୍ଗଲୀ ଚାଉଳରେ ତିଆରି ମେଦକ ମଦିରା ବିକ୍ରି ହେଉଛି ତ ଆଉ କେଉଁଠି ବିକ୍ରି ହେଉଛି ଜଙ୍ଗଲୀ ଗହମର ଅଥବା ମକ୍‌କା କିମ୍ଵା ବାଜରାରେ ତିଆରି ପ୍ରସନ୍ନା । ପିଇଦେଲେ କୁଆଡ଼େ ଚିତ୍ତ ହଠାତ୍ ହୋଇଯାଏ ପ୍ରସନ୍ନ । ସେଥିପାଇଁ ଏଭଳି ନାଁ ପୁଣି କେଉଁଠି ବିକ୍ରି ହେଉଛି ଆତରସରେ ତିଆରି ଆଶ୍ଵ ମଦିରା । ଏହି ମଦିରାର ପ୍ରାଚୁର୍ଯ୍ୟ ଏଠି; କାରଣ ସ୍ଥାନୀୟ ଅରଣ୍ୟଭୂମିରେ ଆତଫଳର ପ୍ରାଚୁର୍ଯ୍ୟ । ଅପେକ୍ଷାକୃତ କମ୍ ସ୍ଥଳରେ ବିକ୍ରି ହେଉଛି ଆମ୍ରୀ ମଦିରା ଯାହା ଅଦିନ ଆମ୍ରରସରେ ତିଆରି । ଶୁଣିଲି, ଖରାଦିନେ କୁଆଡ଼େ ଆମ୍ରୀ ମଦିରାର କାରବାର ଚାଲେ ଖୁବ୍ ପ୍ରଚୁର ଭାବରେ । ବିକ୍ରି ପାଇଁ କିଛି ମୂଲ୍ୟ ଅର୍ଥ ଆକାରରେ ଦେବାକୁ ପଡ଼େନା । ସବୁ କିଛି କାରବାର ବସ୍ତୁ ବିନିମୟରେ । ନର, ନାରୀ, ଯୁବକ, ଯୁବତୀ, କିଶୋର, କିଶୋରୀ ସମସ୍ତେ ମଦିରାରେ ଭୋଳ । ବାଟସାରା ବିଭିନ୍ନ ପ୍ରକାର ମଦିରାର ଉତ୍କଟ ମିଳିତ ଗନ୍ଧ । ମୋ' ପାଇଁ ଅସହ୍ୟ ଥିଲେ ମଧ୍ୟ ବାଧ୍ୟ ହୋଇ ସହିଗଲି । କାରଣ ଲୁଣ ସଂଗ୍ରହ ପାଇଁ ଏଇ ହାଟଟି ଛଡ଼ା ଆମ ଆଶ୍ରମରୁ ଆଉ କୌଣସି ନିକଟତର ସ୍ଥାନ ନ ଥିଲା । ତାହା ଛଡ଼ା ଯେଉଁଠାକୁ ଗଲେ ବି ଅଳ୍ପ ବହୁତ ସେଇ କଥା ।

ଲୁଣ କାରବାର ପ୍ରାୟ ଏକଚାଟିଆ । ସେଦିନ ଜଣେ ମାତ୍ର ସାର୍ଥବାହ ଆସିଥିଲେ ସୁଦୂର କଳିଙ୍ଗରାଜ୍ୟର ରାଜଧାନୀରୁ । ଗାଁଟିର ଅବସ୍ଥିତି ମଧ୍ୟ ସେହି ରାଜ୍ୟରେ । ରାଜଧାନୀର ଆଖପାଖ ଗାଁ ମାନ ଲାଗିଛି ସମୁଦ୍ରକୂଳକୁ । ଲୁଣ ମାରିବାର ପ୍ରଶସ୍ତ କ୍ଷେତ୍ର ଏଠି । ସେହିଠାରୁ ବଣିକମାନେ ସାର୍ଥବାହ ସାଜି ରାଜ୍ୟର ବିଭିନ୍ନ ଅଞ୍ଚଳକୁ ଏପରିକି ରାଜ୍ୟ ବାହାରକୁ ଗୋରଥମାନଙ୍କରେ ନେଇଯାଆନ୍ତି ଲୁଣ ଓ ସେହି ଗୋରଥମାନଙ୍କରେ ପୁଣି ବିନିମୟ ହୋଇଥିବା ଦ୍ରବ୍ୟମାନ ଧରି ଫେରିଆସନ୍ତି ରାଜଧାନୀକୁ ।

ଆଗରୁ କହିଛି, ଆଚାର୍ଯ୍ୟଙ୍କ ନିର୍ଦ୍ଦେଶ, ମତେ ଶୀଘ୍ର ଫେରିଯାଇ ଆଶ୍ରମରେ ପହଞ୍ଚିବାକୁ ହେବ । ତେଣୁ ସୂର୍ଯ୍ୟାସ୍ତର ବହୁ ପୂର୍ବରୁ ହାଟରୁ ବାହାରିଲି ଆଶ୍ରମ ଅଭିମୁଖରେ ଏକପଦୀ ପଥ ଧରି ଆରୋହଣ କରି ମହେନ୍ଦ୍ରଗିରି । ଯେତେ ସୂର୍ଯ୍ୟାସ୍ତ ପାଖେଇ ଆସୁଥାଏ, ସେତେ ମୋ' ଗତି ହୋଇଉଠୁଥାଏ କ୍ଷିପ୍ରତର । ହିଂସ୍ରଜନ୍ତୁମାନଙ୍କ ଆକ୍ରମଣର ଆଶଙ୍କା । ତେଣୁ କୌଣସିମତେ ସୂର୍ଯ୍ୟାସ୍ତ ସୁଦ୍ଧା ଆଶ୍ରମର ସୀମାକୁ ଛୁଇଁବାକୁ ହେବ ।

ଏଥିପାଇଁ ଅବଶ୍ୟ ପୂର୍ବରୁ ଥିଲି ସାବଧାନ । ଗିରିଗୁହାରେ ଲୁଚାଇ ରଖିଥିବା ଧନୁର୍ବାଣ ସାଙ୍ଗରେ ଆଣିବାକୁ ଭୁଲି ନ ଥିଲି । ଫେରିବା ବାଟରେ ତାହାକୁ ପୁଣି ଯଥାସ୍ଥାନରେ ଲୁଚାଇ ରଖିବାର ବିଚାର ଥିଲା ମନରେ ।

ଅଧାରୁ ଅଧିକ ଉଚ୍ଚତା ଅତିକ୍ରାନ୍ତ । ହଠାତ୍ ଏକ ଘଟଣା ଘଟିଲା ଯାହା ଦୋହଲାଇ ଦେଲା ମୋ' ଭାଗ୍ୟକୁ । ତାହାର ଫଳ ଏବେ ଭୋଗୁଛି । ରଥଚକ୍ର ମୋ'ର ପଶିଯାଇଛି

ଭୂମିତଳେ । ତାହା ତ ଘଟଣା ନୁହେଁ । ବରଂ ଏକ ଦୁର୍ଘଟଣା । ନିତାନ୍ତ ଦୁଃଖଦ ଓ ମର୍ମନ୍ତୁଦ । ମହାପାପଟାଏ କରିବସିଲି, ଯଦିଓ ଅଜ୍ଞାତରେ । ତଥାପି ତାହାର ଫଳଶ୍ରୁତି ସ୍ୱରୂପ ପାଇଲି ଦଣ୍ଡ ହିସାବରେ ବ୍ରାହ୍ମଣଙ୍କ ପ୍ରଚଣ୍ଡ ଅଭିଶାପ । ଓଃ । ସେ କଥା ଭାବିଲା ବେଳକୁ ଭୟାର୍ତ୍ତ ସୀତ୍କାର ଭରିଉଠେ ତନୁରେ ।

ଚଲାପଥରେ ଗୋଟିଏ ବିରାଟ କଦମ୍ବବୃକ୍ଷ । କଦମ୍ବଫୁଲ ଆସିଲାଣି ସରି ସରି । ଅଳ୍ପ କେତୋଟି ମାତ୍ର ଫୁଲର ଜୀର୍ଣ୍ଣ ଶୋଭା । ସେହିଠାରୁ ରାସ୍ତା ମୋଡ଼ ନେଇଛି ଡାହାଣକୁ । ହଠାତ୍ ବୁଲିପଡ଼ିବା ମାତ୍ରେ ଶୁଣିଲି ଏକ ବିଚିତ୍ର ଶବ୍ଦ । ଶବ୍ଦଟି ଆସୁଥିଲା ବୁଦାମୂଳରୁ । ଶବ୍ଦଟି ବାରି ଜାଣିଲି ତାହା ପତ୍ର ଖସ୍ ଖସ୍ ଶବ୍ଦ । କୌଣସି ଜନ୍ତୁ ଯେମିତି ଗତି କରୁଛି ଅତି ସତର୍କରେ । ଝାପ୍‌ସା-ଝାପ୍‌ସା ସୂର୍ଯ୍ୟକିରଣରେ ବୁଦାମୂଳ ଦିଶୁ ନ ଥାଏ ଭଲ କରି । ସେହି ଅସ୍ପଷ୍ଟ ଆଲୋକରେ କିନ୍ତୁ ଦେଖିପାରିଲି ଜନ୍ତୁଟିର ରଙ୍ଗ । ତାହା ଥିଲା ଲାଲ୍ ଠିକ୍ ମହାବଳ ବାଘର ରଙ୍ଗ ଭଳି । ସେହି ଦିଗରୁ ବହିଆସୁଥିବା ପବନ ବି ଭରିଥିଲା ଏକ ଉତ୍କଟ ପଚା-ସଢ଼ା ମାଂସର ଗନ୍ଧରେ । ବାଘ ପାଟି ମେଲା କରି ହାଇ ମାରିବାର ଗନ୍ଧ ଯେମିତି । ଛପି ଛପି ଆସୁଥିବା ଜନ୍ତୁଟି ବାଘ ବୋଲି ହୋଇଗଲି ସ୍ଥିରନିଶ୍ଚୟ । ପୁଣି ସେହି ପତ୍ର ଖସ୍ ଖସ୍ ଶବ୍ଦ ଓ ପଚାସଢ଼ା ମାଂସର ଗନ୍ଧ । କିନ୍ତୁ ହଠାତ୍ ଲାଲରଙ୍ଗର ଜନ୍ତୁଟି ଅଦୃଶ୍ୟ । ଭାବିଲି, ହୁଏତ ବାଘଟା ଲୁଚିଯାଇଛି ଏବଂ ଆଉ କେତୋଟି ମୁହୂର୍ତ୍ତରେ ଆକ୍ରମଣ କରିବ ମତେ । ତାହା ପୂର୍ବରୁ ଆଶୁ ପ୍ରତିକାର ଆବଶ୍ୟକ । ତେଣୁ ଅଭିମନ୍ତ୍ରିତ କରି ସଙ୍ଗେ ସଙ୍ଗେ ପ୍ରହାର କଲି ଶବ୍ଦବେଧୀ ଅବ୍ୟର୍ଥ ଜିହ୍ମବାଣ । ଅଙ୍କେଇ-ବଙ୍କେଇ ଯାଇ ତାହା ତୁରନ୍ତ ଭେଦକଲା ଲକ୍ଷ୍ୟସ୍ଥଳକୁ ।

କିନ୍ତୁ ଏ କ'ଣ ? ବାଘ କାହିଁ ? ଏ କି ଯାଦୁକରର ମାୟା ? ବାଘର ଗର୍ଜନ ପରିବର୍ତ୍ତେ ଏକ ଶରବିଦ୍ଧ ଧେନୁର ଆର୍ତ୍ତ ଚିତ୍କାର । ବାଣାଘାତର ଶବ୍ଦ ଓ ଧେନୁର ଆର୍ତ୍ତଚିତ୍କାର ଶୁଣି ବାଘଟା ଡିଆଁ ମାରି ଚାଲିଗଲା ଆରପଟ ପାହାଡ଼କୁ । ସେ ହୁଏତ ମତେ କିମ୍ବା ଧେନୁଟିକୁ ଆକ୍ରମଣ କରିବାକୁ ଥିଲା ଚେଷ୍ଟିତ । ହଠାତ୍ ଏଭଳି ଆକସ୍ମିକ ପରିସ୍ଥିତିରେ ଚମକି ପଳାଇଯାଇ ଆତ୍ମଗୋପନ କଲା ।

ସଙ୍ଗେ ସଙ୍ଗେ ଧାଇଁଲି ବୁଦାମୂଳକୁ । ଧେନୁର ଆର୍ତ୍ତନାଦ ଶୁଣି ପାଖରେ ଥିବା ମୁନି-ଆଶ୍ରମରୁ ଧାଇଁଲେ ଜଣେ ମୁନିକୁମାର । ଦେଖିଲି, ଲାଲ ରଙ୍ଗର ଧେନୁଟି ପ୍ରାଣହୀନ ହୋଇ ଲୋଟୁଛି ଧରଣୀରେ ।

''ଏ ତୁମେ କଣ କଲ ଧନୁର୍ଦ୍ଧର ? ଖାଲି ତ ଗୋବଧ କଲ ନାହିଁ । ମୁନିଙ୍କ ଯଜ୍ଞ-ଧେନୁଟିକୁ ମାରିଦେଲ ।'' ମୁନିକୁମାରଙ୍କ ମୋ' ପ୍ରତି ଭର୍ତ୍ସନା ଓ ତାଚ୍ଛଲ୍ୟଭରା ଦୃଷ୍ଟି । ସାରା ମୁଖମଣ୍ଡଳ ଘୃଣାରେ କୁଞ୍ଚିତ ।

''ମୁଁ ମହାପାପୀ ମୁନିକୁମାର । କିନ୍ତୁ ଏସବୁ ଯାହା ଘଟିଗଲା ତାହା ମୋ' ଅଜ୍ଞାତରେ । ଜ୍ଞାତସାରରେ କିଛି କରି ନାହିଁ ।'' ମୋ' ଦୁଃଖ ଓ ଅନୁତାପର ଅଶ୍ରୁ ସିକ୍ତ କରିଦେଲା ଧରଣୀକୁ । ସବୁ କଥା ବୁଝାଇ କହିଲି ତାଙ୍କୁ ।

"ଚାଲ ଧନୁର୍ଦ୍ଧର, ମୁନିଙ୍କ ପାଖକୁ ଯିବା । ତାଙ୍କୁ ସବୁ କଥା କହିବା ।"

"ନିଶ୍ଚୟ, ନିଶ୍ଚୟ । ମୁଁ ମୁନିଙ୍କ ପାଦ ଧରି କ୍ଷମା ମାଗିବି ।"

"କିନ୍ତୁ ସେ ତ ଅତି କ୍ରୋଧୀ ମୁନୀ । ଯାଙ୍କ ପାଖରୁ କ୍ଷମା ପାଇବା ଦୁରାଶା ମାତ୍ର ।"

"ତଥାପି ମୁଁ ଯିବି ମୁନିକୁମାର । ଦୋଷ ମାର୍ଜନା କରିବାପାଇଁ ପ୍ରାର୍ଥନା କରିବି ।" ଅଶ୍ରୁ- ଗଦ୍‌ଗଦ କଣ୍ଠରେ କହିଲି ।

କିନ୍ତୁ ମୁନି ମତେ କ୍ଷମା ଦେଇ ନ ଥିଲେ । କେମିତି ବା ଦେଇଥାନ୍ତେ ? ମୋର କ'ଣ କମ୍ ବଡ଼ ଅପରାଧ ? କମ୍ ବଡ଼ ପାପ ? ନିଚ୍ଛକ ଗୋହତ୍ୟା । ମାତୃହତ୍ୟା ସହିତ ସମାନ । ପୁଣି ଯଜ୍ଞଧେନୁର ହତ୍ୟା । ଦେବତାମାନଙ୍କ ପ୍ରତି ଅପରାଧ । ଯଜ୍ଞପୁରୁଷଙ୍କ ପ୍ରତି ଅପରାଧ । ଏହାର କ୍ଷମା କାହିଁ ? ନିଆଁରେ ଆଙ୍ଗୁଠି ଦେଲେ ତାହା ଜଳିବ ହିଁ ଜଳିବ । ଜ୍ଞାତସାରରେ ହେଉ ଅଥବା ଅଜ୍ଞାତରେ ହେଉ ମତେ ତେଣୁ ଦଣ୍ଡ ଭୋଗିବାକୁ ହିଁ ହେବ ।

ମୋ' କଥା ଶୁଣି ମୁନି କହିଲେ, "ତୁମେ ସବୁ କଥା ସତ ସତ କହିଦେଇଛ । କିଛି ଲୁଚାଇ ନାହଁ । ଏଭଳି ଅପରାଧ ପାଇଁ ପ୍ରାଣଦଣ୍ଡ ହିଁ ଉଚିତ ଦଣ୍ଡ । ତୁମକୁ ଅଭିଶାପ ଦେଇ ଭସ୍ମ କରିଦେଇଥାନ୍ତି । ତଥାପି ତାହା କରୁ ନାହିଁ । କିନ୍ତୁ ଏଇ ଦଣ୍ଡ ଦେଉଛି ଯେ ଯୁଦ୍ଧକ୍ଷେତ୍ରରେ ଦ୍ୱୈରଥ ସମରରେ ତୁମ ରଥଚକ୍ର ଭୂମିସାତ୍ ହେବ ।"

ମୁଣ୍ଡ ପାତି ସହିନେଲି ସେଇ ଅଭିଶାପକୁ । ଆଜି ଅର୍ଜୁନଙ୍କ ସହିତ ଦ୍ୱୈରଥ ସମରରେ ରଥଚକ୍ର ମୋର ପଶିଯାଇଛି ଭୂମିରେ ଏବଂ ମତେ କରିଦେଇଛି କିଂକର୍ତ୍ତବ୍ୟ-ବିମୂଢ଼ । କରିଦେଇଛି ହୀନବୀର୍ଯ୍ୟ । ମଳିନ-ନିଷ୍ପ୍ରଭ ଦୀପଶିଖାଟିଏ ମୁଁ ଯେମିତି । ରଥ ଥାଇ ମଧ ବିରଥ । ଅସ୍ତ୍ର ଥାଇ ମଧ ଅସ୍ତ୍ରହୀନ । ଏଭଳି ଦୁଃସ୍ଥିତି କ'ଣ କମ୍ ବଡ଼ ଭୟଙ୍କର ଓ ଦୁଃଖଦ ? କମ୍ ବଡ଼ ମର୍ମାନ୍ତକ ? ଋଷିଙ୍କ ଅଭିଶାପ ଯଦି ମତେ ଭସ୍ମୀଭୂତ କରିଦେଇଥାନ୍ତା, ତେବେ ଖୁବ୍ ଭଲ ହୋଇଥାନ୍ତା । ଚିରଦିନ ପାଇଁ ଚାଲିଯାଇଥାନ୍ତି ଏ ଧରାବକ୍ଷରୁ । ଚିରଦିନ ପାଇଁ ମୋ' ବୀର ହେବାର ଆଶା ଯାଇଥାନ୍ତା ଲିଭି ଠିକ୍ ସଂଧ୍ୟାର ଅନ୍ଧକାରରେ ଗୋଧୂଳିର ସ୍ୱର୍ଣ୍ଣାଭ ଆଲୋକ ଲିଭିଗଲା ଭଳି । ଏବେ ତ ମୁଁ ମରୁଛି ତିଳ ତିଳ କରି । ବୀର ଥରେମାତ୍ର ମରିବାକୁ ଚାହେ । ବାରମ୍ବାର କିନ୍ତୁ ନୁହେଁ । ନୁହେଁ ମଧ ତିଳ ତିଳ କରି । ବୀର ପକ୍ଷରେ ଅତି ଅସହ୍ୟ ଏ ମରଣ । ହାୟ ସବୁ ମୋର ଭାଗ୍ୟ !

ଆରେ, ଏ କ'ଣ କରୁଛି ମୁଁ ? କହୁ କହୁ ବର୍ଷ ବର୍ଷ ଡେଇଁ ଚାଲିଆସିଲିଣି କୁରୁକ୍ଷେତ୍ରର ସମରଭୂମିକୁ । ଏବେ ପୁଣି ଦେଇଯାଉଛି ମୋ' ପୂର୍ବ ସ୍ଥିତିକୁ ।

ବିଷଣ୍ଣ ବଦନ ଧରି ଫେରିଲି ଆଚାର୍ଯ୍ୟଙ୍କ ଆଶ୍ରମକୁ । ଫେରିବା ପୂର୍ବରୁ ଗିରିଗୁହାର ଯଥାସ୍ଥାନରେ ଲୁଚାଇ ରଖିଆସିଲି ମୋ' ଧନୁର୍ବାଣ ।

ସେଦିନ ରାତିରେ କିନ୍ତୁ ମତେ ଭଲ ନିଦ ହୋଇ ନ ଥିଲା । ଚିତ୍ତ-ମନ ମୋର ହୋଇଉଠୁଥାଏ ଅଥୟ । ହୋଇଉଠୁଥାଏ ବ୍ୟଥାରେ ଅଧୀର । ଭାବୁଥାଏ, ଏଇ ଅସ୍ତ୍ରଶିକ୍ଷାରେ କିବା ଲାଭ ? କାଲି ହୁଏତ ଆଚାର୍ଯ୍ୟଙ୍କ କୃପା ହେଲେ ପାଇବି ବ୍ରହ୍ମାସ୍ତ୍ରର ଜ୍ଞାନ । ସେଥିରେ ବି କିବା ଲାଭ ? ଚିରଦିନ ପାଇଁ ଅଭିଶାପଦଗ୍ଧ ବୀର ପୁରୁଷ ଭାବରେ

ବଞ୍ଚିରହିବାରେ କିବା ସାର୍ଥକତା ? ଅର୍ଜୁନଙ୍କ ସହିତ ଆଉ କିପରି ବା ହୋଇପାରିବି ପ୍ରତିଦ୍ୱନ୍ଦ୍ୱୀ । ଦ୍ୱୈରଥ ସମରରେ ରଥଚକ୍ର ମୋର ଭୂତଳଗାମୀ ହେଲେ କିପରି ବା କରିପାରିବି ଅସ୍ତ୍ରଚାଳନା ? ଆଜି ଏ କି ବିଡ଼ମ୍ବନା ଦେଖାଦେଇଛି ମୋ' ଭାଗ୍ୟରେ ? ନୀଚକୁଳରେ ହୋଇଥିବା ଜନ୍ମକୁ ପୌରୁଷଦ୍ୱାରା ଜିଣିଯିବି ବୋଲି ଭାବିଥିଲି । କିନ୍ତୁ ମୁନିଙ୍କ ଅଭିଶାପକୁ କେଉଁଥିରେ ଜିଣିବି ? କାହାଦ୍ୱାରା ଖଣ୍ଡିତ କରିବି ? ତାହା ତ ଅମୋଘ ଓ ଅଲଂଘନୀୟ । ନିଶ୍ଚୟ ଫଳିବ ହିଁ ଫଳିବ । ଅଟଳ ତାହାର ପ୍ରଭାବ ।

ଏହିଭଳି ଚିନ୍ତାରେ ମ୍ରିୟମାଣ ଥିଲାବେଳେ କେତେବେଳେ ଯେ ଶୋଇଗଲି ତାହା ଥିଲା ମତେ ଅଜଣା ।

## ସତେଇଶ

ଗିରିନିର୍ଝରୀର ଗତି ଭଳି ସମୟର ଗତି । ବହିଚାଲିଥାଏ ଆଗକୁ ଆଗକୁ । ଅବାରିତ ଗତି । ତର ନାହିଁ ଅପେକ୍ଷା କରିବାକୁ କିମ୍ବା ପଛକୁ ଫେରିବାକୁ । ମଣିଷ ଜୀବନର ଗତି ମଧ ଠିକ୍ ଅନୁରୂପ, ଅବଶ୍ୟ କିଛିଟା ଫରକ ଥାଇ ଜୀବନରେ ସୁଖ, ଦୁଃଖ, ହାସ୍ୟ, ବିଳାପ, ଆଶା, ନିରାଶା, ସବୁ କିଛିର ମୁହାଁମୁହିଁ ହେବାକୁ ପଡ଼େ ତାକୁ । କେତେବେଳେ ସେ କ୍ଳାନ୍ତ ହୋଇ ଅଟକିଯାଏ ତ ଆଉ କେତେବେଳେ ପଛକୁ ଫେରିଚାହେଁ । ବିଗତ ଦିନଗୁଡ଼ିକର ସ୍ମୃତିକୁ ରୋମନ୍ଥନ କରେ । ଯେତେ ଚାହିଁଲେ ବି ପାରେନା ଏଇ ସ୍ମୃତିଗୁଡ଼ିକୁ ଏଡ଼ାଇ । ଯଦି ସ୍ମୃତିଗୁଡ଼ିକ ଥାଏ ଦୁଃଖଦ, ତେବେ ହତାଶାରେ ମଉଳିପଡ଼େ ସେ । ଏଇ ସ୍ମୃତିର ଦଂଶନ କେତେ ତୀବ୍ର ତାହା ଜାଣିଥିଲି । ଜ୍ୱାଳାମୟ ଜୀବନପାଇଁ କେତେ ପରିମାଣରେ ଅଧିକ ବିଷାକ୍ତ ଜ୍ୱାଳା ଆଣି ତାହା ଭରିଦିଏ ସେ କଥା ବୁଝିଥିଲି । ତେଣୁ ଅତୀତର ସ୍ମୃତିକୁ ଭୁଲିଯିବା ପାଇଁ ଚେଷ୍ଟା କରୁଥିଲି । କିଛି ପରିମାଣରେ ସଫଳ ଯେ ହୋଇ ନ ଥିଲି ତାହା ନୁହେଁ । କିନ୍ତୁ ସଂପୂର୍ଣ୍ଣ ରୂପରେ ନୁହେଁ । ଅର୍ଜୁନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା ଦେଖାଇବାବେଳେ ଓ ଦ୍ୱୈରଥ ସମର କଥା ଚିନ୍ତା କଲା ବେଳେ ହଠାତ୍ ତାହା ଆସିଯାଉଥିଲା ମନକୁ । ଉଦାସ ହୋଇଉଠୁଥିଲି । ଆଉ ହୋଇ ବି ଉଠୁଥିଲି ନିରାଶ । ଦୋଷ ଦେଉଥିଲି ଦୁର୍ଭାଗ୍ୟକୁ ଦୁର୍ଦ୍ଦୈବକୁ ।

ଏହିଭଳି ସ୍ମୃତିଦଂଷ୍ଟ ଦିନଗୁଡ଼ିକ ମଧ୍ୟରେ ଆଚାର୍ଯ୍ୟଙ୍କ ନିକଟରେ ଶିକ୍ଷା ପାଇବାର କାର୍ଯ୍ୟକ୍ରମଟି ମୋର ପ୍ରାୟ ସମାପ୍ତ । ଏବେ ଆସିଯାଇଛି ବିଦାୟ ନେବାର ସମୟ । ପକ୍ଷିଶାବକଟିର ଲାଗିଯାଇଛି ଡେଣା । ଆସିଯାଇଛି ତା'ର ଡେଣା ଝାଡ଼ିବାର ଶକ୍ତି । ମନ ତା'ର ଅଥୟ । ଉଡ଼ିବୁଲିବ ଖୋଲା ଆକାଶରେ । ହେବ ଆତ୍ମନିର୍ଭର ଓ ଚାଖିବ ମୁକ୍ତିର ସ୍ୱାଦୁ । ତା'ର ଅପେକ୍ଷା ଖାଲି ଗୋଟିଏ ମୁହୂର୍ତ୍ତକୁ । ମାତା ପକ୍ଷିଣୀଟି ଉଡ଼ିଗଲାବେଳେ ସେ ଉଡ଼ିଯବ ତା' ସାଥିରେ ଓ ଆରମ୍ଭ କରିବ ତା'ର ମୁକ୍ତ ଜୀବନ । ମୁଁ ମଧ ଅନୁରୂପ ଭାବରେ ଅପେକ୍ଷା କରିଥାଏ ଗୋଟିଏ ସଂକେତକୁ । ଆଚାର୍ଯ୍ୟ ସଂକେତ ଦେବେ ଆଶ୍ରମ ଛାଡ଼ିବାକୁ ଓ ତାହା ପରେ ହେବି ମୁକ୍ତ ।

ବାହାରକୁ ଦେଖିଲା ଭଳି ସିନା ମୁକ୍ତ ମୁଁ । କିନ୍ତୁ ସତରେ କ'ଣ ହେବି ମୁକ୍ତ ? ଗୋଟିଏ ବନ୍ଧନରୁ ଯାଇ ଆଉ ଗୋଟିଏ ବନ୍ଧନରେ ପଡ଼ିବି । କର୍ମମୟ ବନ୍ଧନର ନିଗଡ଼ ବନ୍ଧନରେ । ସୁଖ-ଦୁଃଖ, ଆଶା-ନିରାଶାର ଜାଲରେ । ପଡ଼ିବି ଯାଇ ବିବଶତାର ମହାସମୁଦ୍ରରେ । ସବୁ ମଣିଷଙ୍କର ଏଇ ଦଶା । ସବୁବେଳେ ବନ୍ଧନ ଓ ବନ୍ଧନ । ମୁହୂର୍ତ୍ତେ ମାତ୍ର ରକ୍ଷା ନାହିଁ ତହିଁରୁ । ମଣିଷ ଜନ୍ମ ହୋଇଥାଏ ମୁକ୍ତ ହୋଇ । ଅଥଚ ଆଖି ବୁଜେ ବନ୍ଧନକୁ ନେଇ । କେତେବେଳେ ମଣିଷଗଢ଼ା ତ ଆଉ କେତେବେଳେ ଦୈବଗଢ଼ା । ଆଚାର୍ଯ୍ୟଙ୍କ ଭଳି ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଜୁଟେ ବନ୍ଧନହୀନ ମୁକ୍ତ ଜୀବନ । କିନ୍ତୁ ମୋ' ପାଇଁ ଯେ ଏଭଳି ମୁକ୍ତ ଜୀବନ ଦୁର୍ଲଭ ସେ କଥା ବୁଝିଥିଲି । ହାୟ ରେ ଦୁର୍ଭାଗା କର୍ଣ୍ଣ ! ହାୟ ରେ ବିବଶ କର୍ଣ୍ଣ !! ଏହିଭଳି ଦାର୍ଶନିକ ଚିନ୍ତାଧାରାରେ ବୁଡ଼ିରହିଥିବା ବେଳେ ଶୁଣିଲି, "ବତ୍ସ ବସୁ ।" ଏକ ମୌନ-ମଧୁର ଅପରାହ୍ଣରେ ଆଚାର୍ଯ୍ୟଙ୍କ ଶ୍ରଦ୍ଧାମୟ ଡାକ । ସେ ଅଙ୍ଗନସ୍ଥ ମଣ୍ଡପରେ ଏକ କୁଶାସନରେ ବସି ମତେ ଡାକୁଥିଲେ । ସୂର୍ଯ୍ୟକିରଣର ଗଛ ଛାଇ ସହିତ ଲୀଳାୟିତ ଲୁଚକାଳି ଖେଳ । ଏଇ ଛାଇ ଓ ଆଲୁଅର ଖେଳ ମଧ୍ୟରେ ଆଚାର୍ଯ୍ୟଙ୍କ ମୁଖମଣ୍ଡଳରେ କିଛିଟା ଅବସାଦର ଚିହ୍ନ ଲକ୍ଷ୍ୟ କଲି । କିଛିଟା କ୍ଳାନ୍ତି ବି ।

"ଯାଉଛି ଆଚାର୍ଯ୍ୟବର ।" ଏହା କହି ତାଙ୍କ ପାଖରେ ଆସି ଠିଆହେଲି ହାତ ଯୋଡ଼ି । ଅପେକ୍ଷା କଲି ପରବର୍ତ୍ତୀ ଆଦେଶକୁ ।

"ତୁମେ ତ ଜାଣ ବସୁ, ତୁମର ଅସ୍ତ୍ରଶିକ୍ଷା ଏଠାରେ ଶେଷ ହୋଇଛି । ସକଳ ଦିବ୍ୟାସ୍ତ୍ର ଓ ବ୍ରହ୍ମାସ୍ତ୍ରର ପ୍ରୟୋଗ ଓ ସଂହାରବିଧି ତୁମକୁ ଶିଖାଇ ଦେଇଛି ।"

"ଜାଣେ ପ୍ରଭୋ ।" ମୋର ବିନୀତ ଉତ୍ତର ।

"ଆଚାର୍ଯ୍ୟ ମୁଷ୍ଟି ହିସାବରେ କୌଣସି ଗୁପ୍ତ ବିଦ୍ୟା ରଖି ନାହିଁ ନିଜ ପାଖରେ । ସବୁତକ ଦେଇଦେଇଛି ତୁମକୁ ।" ଓଠକଣରେ ତାଙ୍କର ପରିତୃପ୍ତିର ହସ । ଶିଷ୍ୟବତ୍ସଳ ଆଚାର୍ଯ୍ୟଙ୍କର ଶିଷ୍ୟର ସିଦ୍ଧି ଅବସରରେ ସ୍ପୃହଣୀୟ ଆଶୀର୍ମୟ ହସ । ଛାଇ-ଆଲୁଅର ଯାଦୁଖେଳ ଚାଲିଥିବା ଅଙ୍ଗନଟିରେ ବିଜୁଳିର ଚମକ ଆଣିଦେଉଥାଏ ଯେମିତି ।

"ମୋର ଅହୋଭାଗ୍ୟ ପ୍ରଭୋ ।" ମୋ' କଣ୍ଠସ୍ୱରରେ କୃତଜ୍ଞତାର ଝଲକ ।

"ତୁମେ ଜଣେ ଜଗତ ବିଖ୍ୟାତ ବୀର ହେବ ।"

"ଆଚାର୍ଯ୍ୟଙ୍କ ଆଶୀର୍ବାଦ ଓ କୃପାର ଫଳ ।"

"ଖାଲି ସେତିକି ନୁହେଁ । ଆଗରୁ କହିଛି । ଆଉ ଏବେ ବି କହୁଛି । ସବୁ ତୁମ ପୌରୁଷ ଓ ଉଦ୍ୟମର ଫଳ । କୌଣସି ଉଦ୍ୟମ ବ୍ୟର୍ଥ ଯାଏନା । ଏଇ କଥାଟିକୁ ମନେ ରଖିଥିବ ।" ଆଚାର୍ଯ୍ୟ ବିଗତ ଦିନଗୁଡ଼ିକ ଭଳି ମୋ' ପୌରୁଷ ବିଷୟରେ ସୂଚନା ଦେବାପାଇଁ ଭୁଲି ନ ଥିଲେ । ବାସ୍ତବିକ ଜଣେ ଅତି ସୁଯୋଗ୍ୟ ଆଚାର୍ଯ୍ୟ ସେ । ଶିଷ୍ୟକୁ ଉତ୍ସାହ-ଉଦ୍ଦୀପନା ଦେବାର ସକଳ କୌଶଳ ତାଙ୍କୁ ଜଣା ।

"ହଁ ପ୍ରଭୋ ! ଆଚାର୍ଯ୍ୟଙ୍କ ଉପଦେଶ ମୋର ଶିରୋଧାର୍ଯ୍ୟ ।" ଏହା କହି ଶିର ଅବନତ କଲି । ଆତ୍ମପ୍ରଶଂସାରେ ଲାଜେଇ ଯାଉଥିଲି ।

"ତୁମକୁ ଅସ୍ତ୍ରଶିକ୍ଷା ଦେଇସାରିବା ପରେ ହଠାତ୍ ମତେ ଆଜି କିପରି ଶୂନ୍ୟ ଶୂନ୍ୟ ଲାଗୁଛି । ଚିତ୍ତ ଅବସନ୍ନ । ମୁଣ୍ଡଟା ବି ବିନ୍ଧୁଛି ।"

ଚମକିପଡ଼ିଲି ଆଚାର୍ଯ୍ୟଙ୍କ ସ୍ୱାସ୍ଥ୍ୟ ଅବସ୍ଥାର ସଂବାଦ ପାଇ । ସଙ୍ଗେ ସଙ୍ଗେ ମଣ୍ଡପ ଉପରକୁ ଉଠିଗଲି ଓ କହିଲି, "ଆଚାର୍ଯ୍ୟବର ! ଆପଣ କିଛି ସମୟ ପାଇଁ ମୋ' କୋଳରେ ବିଶ୍ରାମ ନିଅନ୍ତୁ । ମୁଁ ମୁଣ୍ଡ ଚିପି ଦେଉଛି ।"

ଆଚାର୍ଯ୍ୟଙ୍କ ପାଖରୁ ଉତ୍ତର ପାଇବା ପୂର୍ବରୁ ଗୋଡ଼ ଲମ୍ବାଇ ଦେଇଥିଲି ଓ ତିଆରି କରିଦେଇଥିଲି କ୍ରୋଡ଼-ଶଯ୍ୟା ।

ବାଧ୍ୟ ଶିଶୁଟି ଭଳି ଆଚାର୍ଯ୍ୟ କହିଲେ, "ହେଉ ।" ତାହା ପରେ ସେ ନିଶ୍ଚିନ୍ତରେ ବିଶ୍ରାମ ନେଲେ ମୋ' କୋଳରେ । ଧୀରେ ଧୀରେ ଚିପିଦେବାକୁ ଆରମ୍ଭ କଲି ତାଙ୍କ ମୁଣ୍ଡକୁ । ଆରଣ୍ୟକ ଶୀତଳ ପବନ ବାଜି ତାଙ୍କୁ ନିଦ ହୋଇଗଲା । ଶୋଇପଡ଼ି ଘୁଙ୍ଗୁଡ଼ି ମାରିବାକୁ ଲାଗିଲେ । ଶାନ୍ତିର ନିଦ ! ପୁତ୍ରକୋଳରେ କ୍ଲାନ୍ତ ଅବସନ୍ନ ପିତାଙ୍କର ନିଦ ଯେମିତି !

ପ୍ରକୃତରେ ସେ ଥିଲେ ମୋର ପିତୃସମାନ । ଆଉ ମୁଁ ବି ଥିଲି ତାଙ୍କର ପୁତ୍ରକଳ୍ପ । ସେଥିପାଇଁ ତ ସେ ମତେ ଶିଷ୍ୟଭାବରେ ଗ୍ରହଣ କଲାବେଳେ ଆବେଗଭରା କଣ୍ଠରେ କହିଥିଲେ – 'ଆତ୍ମା ବୈ ଶିଷ୍ୟ ନାମାସି' । ହେ ଶିଷ୍ୟ ! ତୁମେ ମୋ'ର ଆତ୍ମା । ସେଥିପାଇଁ ତ ଶ୍ରଦ୍ଧାମନ୍ତ ବୋଲିବା ଅବସରରେ ଆମେ ଦୁହେଁ ପରସ୍ପରଙ୍କ ଛାତି ଛୁଇଁ ପାଇଥିଲୁ ନିଜ ଆତ୍ମାର ଏକ ପ୍ରତିରୂପର ପରିଚୟ । ହିମାଳୟର ଶୃଙ୍ଗ ପରି ଚିରଉନ୍ନତ ଚିରଅବନୀତ ଆଚାର୍ଯ୍ୟ ମୋ' କୋଳରେ । ଅସୀମ ସୁଷୁପ୍ତିରେ ମଗ୍ନ । ଭାରି ଭଲ ଲାଗୁଥିଲା ମତେ । ଭକ୍ତି ପରିବର୍ତ୍ତେ ତାଙ୍କର ଏଇ ନିରୀହ ସୁଷୁପ୍ତି ଦେଖି କେମିତି ଗୋଟିଏ ବାତ୍ସଲ୍ୟ ମମତା ଅଙ୍କୁରିତ ହୋଇଉଠୁଥିଲା ମନରେ । ଭାବୁଥିଲି, ସବୁ ବୃଦ୍ଧ ପିତା ଅଥବା ଆଚାର୍ଯ୍ୟଙ୍କ ଅବସ୍ଥା ବୋଧହୁଏ ଏମିତି । ସେମାନେ ଖୋଜୁଥିବେ ପୁତ୍ର ଅଥବା ଶିଷ୍ୟର ଶାନ୍ତିମୟ କୋଳର ଆଶ୍ୱାସନା । ଜଞ୍ଜାଳମୟ ଜୀବନର କର୍ମବହୁଳତା ମଧ୍ୟରେ ଟିକିଏ ବିଶ୍ରାମ ।

ଆଦରରେ ତାଙ୍କ ଶିରରେ ବୁଲାଇଆଣିଲି ହାତ । ଆଶ୍ୱସ୍ତିର କି ଏକ ନବୀନ ଶିହରଣ ତାଙ୍କ ମୁଖମଣ୍ଡଳରେ । ମହାପ୍ରାଜ୍ଞ ଭାର୍ଗବ ପରଶୁରାମ ନିରୀହ ମେଷଶାବକଟି ଭଳି ପଡ଼ି ରହିଛନ୍ତି । କେତେବେଳେ ନିଶ୍ଚେତନ ତ ଆଉ କେତେବେଳେ ଚେତନ-ନିଶ୍ଚେତନର ମଝିରେ । ଆଃ ! କି ବିଚିତ୍ର ଦୃଶ୍ୟ !

ଅପରାହ୍ନ ଧୀରେ ଧୀରେ ଯାଉଥାଏ ଗଡ଼ି । ଅନେକ ସମୟ ଧରି ଶୋଇରହିଥାନ୍ତି ସେ । ଭାବିଲି, ଖୁବ୍ ଅବସନ୍ନ ହୋଇପଡ଼ିଥିଲେ ବୋଧହୁଏ । ତାଙ୍କ ପକ୍ୱକେଶ ଓ ଶ୍ମଶ୍ରୁରାଶି ମୃଦୁକମ୍ପିତ ପବନର ସ୍ପର୍ଶରେ । ଉପବନରୁ ଭାସିଆସୁଥାଏ ପକ୍ଷୀମାନଙ୍କ କାକଳି । ଅଦୂରରେ ବାନରଶିଶୁଟି ସହିତ ଧାଇଁ ଧାଇଁ କ୍ରୀଡ଼ା-ବିନୋଦରେ ମାତିଥାଏ ଗୋଟିଏ ମୃଗଶାବକ । ଏଣେ ଦୀର୍ଘାୟତନ ଆଚାର୍ଯ୍ୟଙ୍କ ବପୁ ଆଶ୍ରୟ ନେଇଥାଏ ମୋ' ଭଳି ଜଣେ କ୍ଷୁଦ୍ର ଓ ଅକ୍ଷମଧେୟ ଶିଷ୍ୟର କୋଳରେ । ସତେ ମୋର କେଡ଼େ ଭାଗ୍ୟ !

ହଠାତ୍ ଅନୁଭବ କଲି ସାମାନ୍ୟ ଟିକିଏ ଯନ୍ତ୍ରଣା ଜଂଘ ତଳେ । ଜଂଘ ଉଠାଇବାର ଅବକାଶ ନ ଥିଲା । ତାହା କରିଥିଲେ ଆଚାର୍ଯ୍ୟଙ୍କ ସୁଷୁପ୍ତି ହୋଇଥାନ୍ତା ବିଘ୍ନିତ । ମୋ' ସେବାରେ ହୋଇଥାନ୍ତା ତ୍ରୁଟି । ଯନ୍ତ୍ରଣାଟା କିନ୍ତୁ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଶେଷକୁ ହୋଇଉଠିଲା ନିତାନ୍ତ ଅସହ୍ୟ । ଅନୁଭବ କଲି, ଦେହଭେଦୀ କୀଟଟିଏ ଜଂଘକୁ ଭେଦି ଭେଦି ଚାଲିଛି । ବଜ୍ର ଭଳି ଟାଣ ତାହା ଭେଦନ ଶକ୍ତି । ସେଥିପାଇଁ ନାଁ ବଜ୍ରକୀଟ । ଆଉ କିଛି ସମୟ ପରେ ବଜ୍ରକୀଟଟି ହୁଏତ ଭେଦିଦେବ ମୋ' ସଂପୂର୍ଣ୍ଣ ଜଂଘଟିକୁ ଓ ଚାଲିଯିବ ଖୁସି ମନରେ ଆକଣ୍ଠ ରକ୍ତପାନ କରିସାରି । ସହିନେଲି ସେହି ଯନ୍ତ୍ରଣାକୁ । ଚାହିଁ ନ ଥିଲି ଆଚାର୍ଯ୍ୟଙ୍କ ନିଦ୍ରାଭଙ୍ଗ କରିବାକୁ । ବାସ୍ତବିକ ତାହା ହିଁ ଘଟିଲା । ବଜ୍ରକୀଟଟି ଜଂଘ ଭେଦି ଚାଲିଗଲା କିଛି କ୍ଷଣ ପରେ । ମୋ' ଜଂଘସମେତ ସାରା ଧରଣୀରେ ଉଷ୍ଣ ରକ୍ତର ପ୍ଲାବନ । ସେଇଥିରେ ତର୍ପଣ କରି ମୁଁ ଯେମିତି କରି ଚାଲିଥିଲି ଆଚାର୍ଯ୍ୟଙ୍କ ସେବା ।

ସେଇ ଉଷ୍ଣ ରକ୍ତର ସ୍ପର୍ଶ ତାଙ୍କ ଗଣ୍ଡଦେଶରେ ବାଜିଲା କି କ'ଣ, ସେ ହଠାତ୍ ଚେଇଁ ଉଠିଲେ ନିଦରୁ । ଦେଖିଲେ ମୋ' ସାରା ଜଂଘ ଓ ବସ୍ତ୍ର ରକ୍ତସ୍ନାତ । ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ମୋ' ମୁହଁକୁ । ଏହାର କାରଣ ବତାଇଦେଲି ତାଙ୍କୁ ।

''ମତେ କାହିଁକି ଉଠାଇଦେଲ ନାହିଁ ଆଗରୁ ?'' ତାଙ୍କର ଅନୁସନ୍ଧିତ୍ସାଭରା ପ୍ରଶ୍ନ । ମୋ' ଧୈର୍ଯ୍ୟ ଦେଖି କିଛିଟା ଦ୍ୱିଧାର ଲହରୀ ଖେଳୁଥାଏ ତାଙ୍କ ମୁଖମଣ୍ଡଳରେ । ବିଶ୍ୱାସ ଓ ଅବିଶ୍ୱାସ ମଧ୍ୟରେ ଦ୍ୱନ୍ଦ୍ୱ । ଶୁଣିଥିବା କଥା ଓ ବାସ୍ତବ କଥା ମଧ୍ୟରେ ଦ୍ୱନ୍ଦ୍ୱ । ସତ୍ୟବଚନ ଓ ମିଥ୍ୟାବଚନ ମଧ୍ୟରେ ଦ୍ୱନ୍ଦ୍ୱ ।

''ଆଚାର୍ଯ୍ୟଙ୍କ ନିଦ ଭାଙ୍ଗିଯାଇଥାନ୍ତା । ସେଇ ଭୟରେ ଉଠାଇ ନ ଥିଲି ।'' ଅପରାଧୀ ଭଳି କହିଲି ।

ବାନରଶିଶୁଟି ମୃଗଶାବକର ପିଠିରେ କୁଦା ମାରି ଉଠିଯିବାରେ ତାହାର ବିକଳ ଚିତ୍କାର । ମାତା ମୃଗୁଣୀଟି ଧାଇଁଆସିଲା ବିକ୍ରମଭରା ଗତିରେ ବାନରଶିଶୁକୁ ଆକ୍ରମଣ କରିବାପାଇଁ । ମୁଁ ବି ସେମିତି କିଛି ଗୋଟାଏ ଆସନ୍ନ ଝଞ୍ଜାର ଆକ୍ରମଣର ଆଶଙ୍କା କରୁଥିଲି ।

ଆଚାର୍ଯ୍ୟ କିଛି ସମୟ ପାଇଁ କ'ଣ ଭାବିଲେ ଏବଂ ତାହା ପରେ ପଚାରିଲେ ଗମ୍ଭୀର ଭାବରେ, ''ତୁମେ କ'ଣ ସତରେ ବ୍ରାହ୍ମଣ ? ସତ କଥା କହ ।''

''ସତ କହୁଛି ଆଚାର୍ଯ୍ୟବର । ମୁଁ ବ୍ରାହ୍ମଣ । ଜଣେ ଭାର୍ଗବ ବ୍ରାହ୍ମଣ ।'' ସତ୍ୟର ଅପଳାପ କରି କହିଲି । ସତ କଥା କହିଲେ ବର୍ଷିବ ଆଚାର୍ଯ୍ୟଙ୍କ କୋପାଗ୍ନି । କ'ଣ ପରିଣତି ହୋଇପାରେ କିଏ କହିବ ? ଏକୋଇଶବାର ଧରଣୀକୁ ନିକ୍ଷତ୍ରିୟ କରିଥିବା ବ୍ୟକ୍ତିଙ୍କ କ୍ରୋଧ ତ କିଛି କମ୍ ନୁହେଁ । ସେଥିପାଇଁ ଜାଣିଶୁଣି ପୁଣି କରିଥିଲି ଏଭଳି ମିଥ୍ୟାଭିନୟ ।

ଆଚାର୍ଯ୍ୟଙ୍କ ମୁଖଭଙ୍ଗୀରେ ହଠାତ୍ ପରିବର୍ତ୍ତନ । ଗମ୍ଭୀରତା କୁଆଡ଼େ ଚାଲିଗଲା ପବନର ଆଘାତରେ ଆକାଶରୁ ମେଘ ଚାଲିଯିବା ଭଳି । ତାହା ସ୍ଥାନରେ ଏକ ହିଂସ୍ର ଚାହାଣି । ଆଖି ଦୁଇଟିରେ ଦପ ଦପ କ୍ରୋଧର ନିଆଁ । ମତେ ମୁହୂର୍ତ୍ତକ ମଧ୍ୟରେ ଜାଳିପୋଡ଼ି ଭସ୍ମ କରିଦେବ ଯେମିତି ।

ଆକାଶରେ ଅଦିନିଆ ମେଘର ଆକସ୍ମିକ ଘନଘଟା । ଆଶ୍ରମ ଅଙ୍ଗନକୁ ଚମକିତ ବିଜୁଳିର ଚମକ । ମେଘର ଘଡ଼ଘଡ଼ି । ଉପରେ ଆକାଶ ଓ ତଳେ ଆଶ୍ରମ । ଦୁଇ ଜାଗାରେ ଦୁଇଟି ମେଘର ଗର୍ଜନ । ଆଚାର୍ଯ୍ୟଙ୍କ ଗର୍ଜନ ମେଘର ଗର୍ଜନକୁ ବଳିଗଲା ଯେମିତି । ସେ ଗରଜି ଗରଜି କହିଲେ, ‘‘ଆରେ ଧୂର୍ତ୍ତ ଯୁବକ ! କହ ତୁ କିଏ ? ବ୍ରାହ୍ମଣସନ୍ତାନ ପକ୍ଷରେ କୋମଳ ଅଙ୍ଗ ଧରି ଏଭଳି କଷ୍ଟ ସହିବା ଅସମ୍ଭବ । କ୍ଷତ୍ରିୟ-ସନ୍ତାନ ପକ୍ଷରେ ହିଁ ସମ୍ଭବ । କହ ତୁ କପଟାଚାରୀ କ୍ଷତ୍ରିୟ କିଏ ମୋ’ ପାଖରୁ ଦିବ୍ୟାସ୍ତ୍ର ଓ ବ୍ରହ୍ମାସ୍ତ୍ରର ଜ୍ଞାନ ଶିଖିନେଲୁ ? ସତ କଥା ନ କହିଲେ ଅଭିଶାପ ଦେବି ।’’ ଉଦ୍ୟତଫଣ ନାଗସାପ ଭଳି ତାଙ୍କର ବିଷାକ୍ତ ଫୁତ୍କାର ।

ଅଭିଶାପ । ଅଭିଶାପ ଓ ଅଭିଶାପ । କର୍ଣ୍ଣ ବୋଲି ଯେଉଁ ମଣିଷଟି ତା’ର ଜୀବନଟା ଯେମିତି ଖାଲି ଅଭିଶାପରେ ହିଁ ଗଢ଼ା । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଖାଲି ଅଭିଶାପ । ନୀଚ କୁଳରେ ଜନ୍ମ ନେଇ ଅଭିଶାପ । ଉଚ୍ଚବର୍ଣ୍ଣର ଲୋକମାନଙ୍କ ଅବହେଳା ଓ ଉପେକ୍ଷାର ଅଭିଶାପ । ବିଦ୍ୟାୟତନରେ ଆଚାର୍ଯ୍ୟ ଦ୍ରୋଣ ଓ ଆଚାର୍ଯ୍ୟ କୃପଙ୍କ ବାଛବିଚାରର ଅଭିଶାପ । ଅଜ୍ଞାତରେ ଗୋହତ୍ୟା କରିଥିବାରୁ ବ୍ରାହ୍ମଣଙ୍କ ଅଭିଶାପ । ପୁଣି ବିବଶତା ହେତୁ ନିଜକୁ ବ୍ରାହ୍ମଣ ଭାବରେ ପରିଚୟ ଦେଇଥିବାରୁ ଆଚାର୍ଯ୍ୟଙ୍କଠାରୁ ପାଇବାକୁ ଯାଉଛି ଆଉ ଏକ ଅଭିଶାପ । ଜାଣେନା ତାହାର ଭୟାବହତା କେତେ ? ରକ୍ତ-ମାଂସର ଦେହ ଧରି ଏଇ କର୍ଣ୍ଣ ତାହାକୁ ସହିପାରିବ କି ନାହିଁ ? ଭାବି ଭାବି ଭୟରେ ଶିହରି ଉଠୁଥିଲି । ଆସନ୍ନ ଏକ ଭୀଷଣ ଝଡ଼ର ସୂଚନା । ଜୀବନ-ବୃକ୍ଷର ମୂଳଟିକୁ ମୋର ଦୋହଲାଇଦେବ ଯେମିତି !

ଶେଷରେ ସବୁ କଥା ଖୋଲି କହିଲି । କିପରି ଅର୍ଜୁନଙ୍କ ପ୍ରତିସ୍ପର୍ଦ୍ଧୀ ହେବା ନିମିତ୍ତ ବ୍ରାହ୍ମଣଭାବରେ ଦେଇଥିଲି ମିଥ୍ୟାପରିଚୟ ତାହା ବି କହିଲି । କହିଲି, ‘‘କ୍ଷମା କରନ୍ତୁ ଆଚାର୍ଯ୍ୟବର । ମୁଁ ସୂତପୁତ୍ର କର୍ଣ୍ଣ । ମୋର ଆଉ ଗୋଟିଏ ନାଁ ବି ବସୁ । ପିତା ଅଧିରଥ ହସ୍ତିନାପୁରର ସମ୍ରାଟ୍‌ଙ୍କ ପଟ୍ଟସୂତ । ମାତା ରାଧା । ରହୁଛନ୍ତି ଅଙ୍ଗଦେଶର ଚମ୍ପାପୁର ଗ୍ରାମରେ । ମୁଁ ବ୍ରାହ୍ମଣ ନୁହେଁ । ଆପଣଙ୍କଠାରୁ ଅସ୍ତ୍ରବିଦ୍ୟା ଶିଖିବା ପାଇଁ ଏଭଳି ମିଥ୍ୟାପରିଚୟର ଅଭିନୟ କରିଛି ।’’

‘‘ତଥାପି ମିଥ୍ୟା କହୁଛୁ ତୁ ? କାହିଁକି ଏମିତି କ୍ରୋଧିତ କରାଉଛୁ ମତେ ?’’ ମୋ’ କଥାରେ ବିଶ୍ୱାସ ନ ଥିଲା ତାଙ୍କର । ମୁଁ ସୂତପୁତ୍ର ବୋଲି ମନରେ ଘୋର ସନ୍ଦେହ । ଗର୍ଜି ଉଠୁଥିଲେ ଆହୁରି ହିଂସ୍ର ଭାବରେ । ଆହୁରି ଭୀଷଣ ଭାବରେ ।

‘‘ଯେଉଁ ବିଦ୍ୟା ଆଚାର୍ଯ୍ୟଙ୍କ ପାଖରୁ ପାଇଛି, ତାହାରି ନାମରେ ଶପଥ ନେଇ କହୁଛି, ସୂତପୁତ୍ର ମୁଁ । ଏଥିରେ ଟିକିଏ ହେଲେ ମିଛ ନାହିଁ ।’’ ମୋର ନିରୀହ, ନିର୍ବିକାର ଅଟଳ ଉତ୍ତର । ଲକ୍ଷ୍ୟ କଲି, ଆଚାର୍ଯ୍ୟ ମୋ’ କଥାକୁ ବିଶ୍ୱାସ କରୁଥାନ୍ତି; ଆଉ ନ କରୁଥାନ୍ତି ବି । ପଡ଼ିଯାଉଥାନ୍ତି ଦ୍ୱନ୍ଦ୍ୱରେ । ବିବ୍ରତ ହୋଇଉଠୁଥାନ୍ତି ଗୋଲକଧନ୍ଦାରେ ।

ସେ କିଛି ସମୟ ପାଇଁ ଧ୍ୟାନମଗ୍ନ ହେଲେ । ତ୍ରିକାଳଦର୍ଶୀ ସେ । ସାକ୍ଷାତ୍ ଭଗବାନ୍ ବିଷ୍ଣୁଙ୍କ ଅବତାର । ଅମରତ୍ୱର ବରରେ ବଳୀୟାନ୍ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁ

କଥା ଦେଖିପାରିଲେ ହୁଏତ । ମୁଖର ଭଙ୍ଗୀ ତାଙ୍କର ହେଲା ପରିବର୍ତ୍ତିତ । କ୍ରୋଧ ଜାଗାରେ ତହିଁରେ ଦେଖାଦେଲା ଗାମ୍ଭୀର୍ଯ୍ୟ । କହିଲେ, ''ଯୁବକ ! ତୁ ଉଭୟ ଶୂଦ୍ର ଓ କ୍ଷତ୍ରିୟ ।''

''ମାନେ ?'' ଆଶ୍ଚର୍ଯ୍ୟ ହୋଇ ପଚାରିଲି ପ୍ରତିପ୍ରଶ୍ନ । ପାଇଲି ଏକ ସଂକ୍ଷିପ୍ତ ଉତ୍ତର, ''ଯଥାସମୟରେ ଜାଣିପାରିବୁ ।''

ଅନେକ ବର୍ଷ ତଳେ ଚମ୍ପାବନର ସନ୍ନ୍ୟାସୀ ବି ମତେ କହିଥିଲେ ଠିକ୍ ଅନୁରୂପ କଥା । ମୁଣ୍ଡ ମୋ'ର ଘୂରିବାକୁ ଲାଗିଲା ବାତଚକ୍ର ଭଳି । କିଛି ସ୍ଥିର କରିପାରିଲିନି । ମଣିଷ ସବୁ କିଛି ସହିପାରେ ଧୈର୍ଯ୍ୟର ସହିତ । କିନ୍ତୁ ପିତାମାତାଙ୍କୁ ନେଇ ସନ୍ଦେହ ତା' ପାଇଁ ଅସହ୍ୟ । ଅତି ହିଁ ପୀଡ଼ାଦାୟକ । ସେହି ପୀଡ଼ା ପ୍ରାଣେ ପ୍ରାଣେ ଅନୁଭବ କରୁଥିବାବେଳେ ଆଚାର୍ଯ୍ୟଙ୍କ ମୁଖରୁ ବାହାରିଲା ବଜ୍ରନିର୍ଘୋଷ, ''ଆରେ ଯୁବକ ! ତୁ ମିଥ୍ୟା ପରିଚୟ ଦେଇ ମୋ'ଠାରୁ ଶିଖିନେଲୁ ଦିବ୍ୟାସ୍ତ୍ର ଓ ବ୍ରହ୍ମାସ୍ତ୍ରର ବିଦ୍ୟା । ସେଥିପାଇଁ ତୁ ଅବଶ୍ୟ ଦଣ୍ଡର ଯୋଗ୍ୟ । ମୁଁ ତତେ ଅଭିଶାପ ଦେଉଛି, ଜୀବନର ସଙ୍କଟ ସମୟରେ ଏଇ ବିଦ୍ୟା ତୋର ବିସ୍ମୃତ ହୋଇଯିବ ।'' ଏହା କହି ସେ ଅଭିମନ୍ତ୍ରିତ ଜଳ ଛିଞ୍ଚିଦେଲେ ମୋ' ଉପରେ । ଦାରୁଣ ଶାପରେ ଝାଉଁଳିପଡ଼ିଲି ଦୟନୀୟ ଭାବରେ । ପାଟିରୁ ମୋର କଥା ବାହାରିଲା ନାହିଁ । ଶିଳାର ବାଧା ପାଇଥିବା ନିର୍ଝରୀଟି ଭଳି ହୋଇଗଲି ସ୍ତବ୍ଧ-ଚକିତ । ରହିପାରିଲି ନାହିଁ କି ଯାଇ ବି ପାରିଲି ନାହିଁ । ନୀରବ ହୋଇପାରିଲି ନାହିଁ କିମ୍ବା ପାଟି ବି ଖୋଲିପାରିଲି ନାହିଁ । ଅବ୍ୟକ୍ତ ବେଦନାରେ ଓଷ୍ଠାଧର ମୋର ଥର ଥର ! ଚିତ୍ତ-ପକ୍ଷୀ ଛଟ ପଟ !!

ସେ ପୁଣି ଗର୍ଜିଉଠିଲେ, ''ଏଭଳି ଶିଷ୍ୟର ଆଉ ମୁହଁ ଚାହିଁବି ନାହିଁ । ତୁ ଏଇ ମୁହୂର୍ତ୍ତରେ ଚାଲିଯା' ଏଠୁ ।''

ଉପାୟହୀନ ହୋଇ ବିଦାୟ ନେଲି ତାଙ୍କଠାରୁ । ଭୂମିଷ୍ଠ ପ୍ରଣାମ କଲାବେଳେ ସେ ଘୁଞ୍ଚାଇ ଦେଇଥିଲେ ପବିତ୍ର ପାଦ ଦିଓଟିକୁ ଏବଂ ଅନ୍ୟ ଦିଗକୁ ଫେରାଇ ନେଇଥିଲେ ଘୃଣା ଓ ଉପେକ୍ଷାରେ ଜର୍ଜରିତ ମୁହଁଟିକୁ । ଖୁବ୍ କଷ୍ଟ ପାଇଲି ମନେ ମନେ । ଆମ ଦୁହିଁଙ୍କ ମଧ୍ୟରେ ଥିବା ଏତେ ଦିନର ଘନିଷ୍ଠତା କୁଆଡ଼େ ମିଳାଇଗଲା ପାଣିଫୋଟକା ପରି ।

ବିଷଣ୍ଣ ମନ ନେଇ ଫେରିଲି ଆଶ୍ରମରୁ । ଫେରିଲା ବେଳେ ବହିଆଣିଥିଲି ଦୁଇଟି ଅଭିଶାପର ବୋଝ ଦୁଇ କାନ୍ଧରେ । ନିତାନ୍ତ ଅସହ୍ୟ ଓ ଦୁଃଖଦ ବୋଝ ! ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବହିଚାଲିଛି ସେଇ ଦିଓଟିକୁ ସମସ୍ତଙ୍କ ଅଜ୍ଞାତରେ ନୀରବ ବେଦନାରେ !

## ଅଠେଇଶ

ପରୀକ୍ଷା ଓ ପରୀକ୍ଷା । ମଣିଷ ଜୀବନଟା ଖାଲି ପରୀକ୍ଷାମୟ । ପରୀକ୍ଷା ହିଁ ଜୀବନ ଓ ଜୀବନ ହିଁ ପରୀକ୍ଷା । ଯେଉଁ ଜୀବନରେ ପରୀକ୍ଷା ନାହିଁ ତାହା ଜୀଇଁବାର ଯୋଗ୍ୟ ନୁହେଁ । କର୍ମବୀର ମଣିଷ ଚାହେଁ, ବାରମ୍ବାର ସେ ଦେଉଥିବ ପରୀକ୍ଷା । ହେଉଥିବ ବିଭିନ୍ନ ସଂଘର୍ଷର ସମ୍ମୁଖୀନ । ସାମୟିକ କ୍ଷତବିକ୍ଷତ ହେଉ ପଛକେ । କେତେବେଳେ ପଡୁଥିବ ତ

ଆଉ କେତେବେଳେ ଉଠୁଥିବ । ଜୀବନ-ସଂଘର୍ଷର ସମୂହରେ କେତେବେଳେ ବୁଡୁଥିବ ତ ଆଉ କେତେବେଳେ ନିଜ ପୌରୁଷବଳରେ ତାହାକୁ ପହଁରି ପହଁରି କରୁଥିବ ଅତିକ୍ରମ । ପିଲାଟିଏ ନୂଆ କରି ଚାଲି ଶିଖିଲା ବେଳେ ବାରମ୍ବାର ପଡ଼େ, ଉଠେ । ଶେଷରେ ଉଦ୍ୟମ ତା'ର ସଫଳ ହୁଏ । ସେ ସିଧା-ସଳଖ ଭାବରେ ଚାଲି ଶିଖେ । ଏଇ ପଡ଼ା-ଉଠା ମଧ୍ୟରେ ସେ ଶିଖି ବି ଯାଏ ଦଉଡ଼ିବା । ମୋ' ଜୀବନଟା ସେମିତି ନିରତ ପରୀକ୍ଷାର ଏକ କେନ୍ଦ୍ରଭୂମି ହୋଇଉଠିଥିଲା । ଶୈଶବ-କୈଶୋର କ୍ରୀଡ଼ାଚପଳ ଜୀବନଠାରୁ ଆରମ୍ଭ କରି ଆଚାର୍ଯ୍ୟ ପରଶୁରାମଙ୍କ ଆଶ୍ରମରେ ଦିବ୍ୟାସ୍ତ୍ର-ବ୍ରହ୍ମାସ୍ତ୍ରର ଶିକ୍ଷାପର୍ଯ୍ୟନ୍ତ ଖାଲି ପରୀକ୍ଷା ହିଁ ଦେଇଆସିଥିଲି । ଏଇ ପରୀକ୍ଷାଗୁଡ଼ିକରେ କେତେଦୂର ଉତ୍ତୀର୍ଣ୍ଣ ହୋଇଛି କି ନାହିଁ, କହିପାରିବି ନାହିଁ ଠିକ୍ ଭାବରେ । ବାହାରକୁ ତ ଜଣାପଡୁଛି ଉତ୍ତୀର୍ଣ୍ଣ ହୋଇଛି ବୋଲି । ପୌରୁଷବଳରେ ଦୈବର ଅଭିଶାପକୁ ଖଣ୍ଡନ କରିଛି ବୋଲି । କିନ୍ତୁ ପ୍ରକୃତ ସଫଳତା ଅଥବା ବିଫଳତା କଥା ବିଚାର କରିବ ମୋର ଭବିଷ୍ୟତ ଜୀବନ । ବିଭିନ୍ନ ପରୀକ୍ଷା-ନିରୀକ୍ଷା ପରେ ବିଚାର କରିବ କାଳ । ଆକଳନ କରିବ ଇତିହାସ । ଆକଳନ କରିବେ ମୋ' ଉତ୍ତରପୁରୁଷମାନେ । ପୁଣି ଆକଳନ କରିବେ ମୋର ଆତ୍ମଜୀବନୀ ପଢୁଥିବା ପାଠକମାନେ । ସେଇଥିପାଇଁ ତ ଜୀବନର ବାକି କେତେଟା ମୁହୂର୍ତ୍ତକୁ ସାର୍ଥକ କରିବାଲାଗି କହିଯାଉଛି ଏଇ ଆତ୍ମଜୀବନୀ– ଦୈବ ଓ ପୌରୁଷ ମଧ୍ୟରେ ଅବିରତ ସଂଘର୍ଷରତ ଏଇ ଜୀବନକାହାଣୀ । ଜୀବନରେ ଅନେକ କିଛି ଭୁଲ ଯେ କରିଛି ଏ କଥା ମାନୁଛି । ସାଧାରଣ ଦୃଷ୍ଟିରେ ପାପ-ଅଧର୍ମ ବି କରିଛି ଅନେକଟା । ଦୈବ ମୋ' ପାଇଁ ଯେଉଁ ଅଭିଶପ୍ତ ଜୀବନ ଆଣିଦେଇଛି, ତାହାରି ସଫଳ ପ୍ରତିରୋଧ ପାଇଁ ଏ ସବୁ ଯାହା କିଛି କରିଛି ମୁଁ । ସେଥିପାଇଁ କ'ଣ ଅନୁତାପ କରି ନାହିଁ ନା କରୁ ନାହିଁ ? ଏବେ ମଧ ଜଳୁଛି ଘୋର ଅନୁତାପର ନିଆଁରେ । ସେଇଥିରେ ଜଳି ଜଳି ହୁଏତ ଶେଷ ନିଃଶ୍ୱାସ ଛାଡ଼ିବି । ଏସବୁର କାରଣ ମୋର ବିବଶତା । ଯଦି ମୋ' ସାରା ଜୀବନକାହାଣୀ ଶୁଣିସାରିବା ପରେ ଜଣେ କେହି ଲୋକ ମୋ'ପାଇଁ ବିନ୍ଦୁଏ ମାତ୍ର ସମବେଦନାର ଲୁହ ଝରାଇଲା, ତା'ହେଲେ ହେବି କୃତାର୍ଥ ! ତା' ହେଲେ ସାରା ଜୀବନ ଧରି ମତେ ଯେଉଁ ଅନ୍ତର୍ବେଦନାର ତାତିଲା ନିଆଁ ବ୍ୟଥିତ କରିଆସିଛି ତାହା ହେବ ଉପଶାନ୍ତ ! ସେଇ ଭସ୍ମର ଧୂସର ବୁକୁ ଚିରି ଫୁଟିଉଠିବ ଚିର ସନ୍ତୋଷର ଶତଦଳ କମଳ !!

କହୁ କହୁ ବହୁତ କିଛି କହିଦେଲିଣି । କ'ଣ କରିବି ? ସକଳ କର୍ମ ଓ ସକଳ ଚିନ୍ତାରେ ତ ମୋର ସେ ସେଇ ଗୋଟିଏ ଫଟା ନୂପୁରର ଗୁଞ୍ଜରଣ ! ସେଇ ଗୋଟିଏ ଭଗ୍ନବୀଣାର ଆକୁଳ ଚିତ୍କାର ! ଆଃ ! ବିବଶତାର କବଳରେ ପଡ଼ି ଦୈବ ସହିତ ସଂଘର୍ଷ କରିବାକୁ ଯାଇ ଯେ ମୁଁ କ'ଣ କଲି ? ସତରେ କ'ଣ କଲି ?

ଏବେ ଫେରିଯାଉଛି ମୋ' ବାସ୍ତବ ଜୀବନକୁ । ଆଚାର୍ଯ୍ୟଙ୍କ ଦ୍ୱାରା ଅଭିଶପ୍ତ ହୋଇ ତାଙ୍କ ଆଶ୍ରମରୁ ଫେରିଆସିବା ମୁହୂର୍ତ୍ତକୁ ।

କାଳବିଳମ୍ବ ନ କରି ଅବତରଣ କଲି ମହେନ୍ଦ୍ରଗିରିରୁ । ଲକ୍ଷ୍ୟ କୁମୁଦପୁର ନିଷାଦ ଗ୍ରାମ । ସେଠାରୁ ମୋ' ତ୍ୱରିତଗାମୀ ଅଶ୍ୱଟିକୁ ଧରି ଫେରିଯିବି ହସ୍ତିନାପୁର । ଗିରିଗୁହାରେ

ଲୁଚାଇ ରଖିଥିବା ମୋ' ଧନୁର୍ବାଣ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରକୁ ସଂଗ୍ରହ କରିନେଲି । ତାହା ପରେ କ୍ଷିପ୍ର ଗତିରେ ଚାଲିଲି ପର୍ବତର ପାଦଦେଶ ଅଭିମୁଖରେ । ଏକପଦିଆ ଚଲାପଥଟି ସହିତ ଥିଲା ମୋର ଘନିଷ୍ଠ ପରିଚୟ । ତେଣୁ ଆଶଙ୍କା ନ ଥିଲା ବାଟ ଭୁଲିବାର । କିନ୍ତୁ ସେଇ ବେଳାଟି ଥିଲା ଗିରି ଅବତରଣ ଲାଗି ନିତାନ୍ତ ଅନୁପଯୁକ୍ତ । ଆଉ ଅଳ୍ପ କିଛି ସମୟ ମଧ୍ୟରେ ସୂର୍ଯ୍ୟ ବୁଡ଼ିଯିବେ । ଘୋଟିଆସିବ ଅନ୍ଧାର । ହିଂସ୍ରଜନ୍ତୁସଂକୁଳ ଅରଣ୍ୟଭୂମିରେ ଘନଘୋର ଅନ୍ଧାର ସନ୍ଧ୍ୟାର ଯଥେଷ୍ଟ ପୂର୍ବରୁ ହିଁ ନଇଁ ଆସିଥାଏ ଏଠି । ସେଦିନ ଥିଲା ଅମାବାସ୍ୟା ତିଥି । ତେଣୁ ଚାନ୍ଦିନୀହୀନ ରାତିର ଅନ୍ଧାର ଖୁବ୍ ଆଗରୁ ହିଁ ତା'ର କଳା ମଚ ମଚ ରୂପ ଧରି ଠିଆ ହୋଇଗଲା । ବନ୍ୟଜନ୍ତୁମାନଙ୍କ ଦାରୁଣ-ହିଂସ୍ର ଚିତ୍କାର । ପଦେ ପଦେ ମଣିଷ ପାଇଁ ବିପଦ । ତେଣୁ ଅର୍ଦ୍ଧପଥ ଅତିକ୍ରମ କରିବା ପରେ ଅଟକିଗଲି । ସାହସ ହେଲା ନାହିଁ ଆଗେଇବାକୁ ।

ଗୋଟିଏ କଦମ୍ବ ଗଛର ଶାଖାରେ ରାତିଟା କଟାଇଲି ।

ରାତି ପ୍ରାୟ ଅଧକରୁ ଟିକିଏ ବେଶି ହେବ । ଶୋଇଛି ନିଘୋଡ଼ ନିଦରେ । ଖସି ପଡ଼ିବାର ଆଶଙ୍କା ନେଇ ଉତ୍ତରୀୟ ସାହାଯ୍ୟରେ ଦେହକୁ ବାନ୍ଧିଦେଇଛି ନିବିଡ଼ ଭାବରେ ବୃକ୍ଷଶାଖାରେ । ଗଭୀର ନିଦ ମୋର ହଠାତ୍ ଭାଙ୍ଗିଗଲା କାହାର କୋମଳ ଉଷ୍ଣ ଆଲିଙ୍ଗନରେ । ଆଲିଙ୍ଗନଟି ଧୀରେ ଧୀରେ ହୋଇଉଠୁଥିଲା ନିବିଡ଼ତର ଓ କିଛିଟା ପୀଡ଼ାପ୍ରଦ ବି । ଆଖି ଖୋଲି ଚାହିଁଲି । ଆଶ୍ଚର୍ଯ୍ୟ । ମୋ' ପ୍ରଶସ୍ତ ବକ୍ଷଟି ଗୋଟାଏ ବିରାଟ ଅଜଗରସାପର ତନୁବନ୍ଧନରେ ନିପୀଡ଼ିତ । ସାପଟା ଖୁବ୍ ଚେଷ୍ଟିତ ମୋ' ହାଡ଼କୁ ଚୂନା କରିଦେବା ପାଇଁ । କିନ୍ତୁ ପାରୁ ନାହିଁ । ମୋ' ଜନ୍ମଜାତ ବଜ୍ର ସମାନ କବଚ ଦେଉଛି ବାଧା । କିନ୍ତୁ ତା'ର ଉଦ୍ୟମରେ ନାହିଁ ବିରତି । ସେ ଅଧିକରୁ ଅଧିକ ବଳପ୍ରୟୋଗ କରି ମତେ ଚାପିଚାଲିଛି ବିବଶ କରିଦେବା ପାଇଁ । ମୁଁ କିନ୍ତୁ ହରାଇ ନ ଥିଲି ଧୈର୍ଯ୍ୟ କିମ୍ବା ମନର ସ୍ଥିରତା । ବୀରର କର୍ତ୍ତବ୍ୟ ଉପସ୍ଥିତ ବିପଦର ମୁହାଁମୁହିଁ ହେବା । ସଫଳ ଭାବରେ ତାହାର ପ୍ରତିରୋଧ କରିବା ଓ ପ୍ରତିକାର ଖୋଜିବସିବା । ପଛଘୁଞ୍ଚା ଦେଇ ପଳାଇଯିବା ଅଥବା ଧୈର୍ଯ୍ୟ ହରାଇବା କିନ୍ତୁ ନୁହେଁ ।

ସାପଟାର ଆଖି ଦୁଇଟା ଜଳୁଛି । ଫଁ ଫଁ ନିଶ୍ୱାସ । ମୁହଁଟା ଭୟାନକ ଭାବରେ ମେଲା । କେତୋଟି ମୁହୂର୍ତ୍ତରେ ମୁଣ୍ଡଟାକୁ ଗିଳିଦେବ ହୁଏତ । ପ୍ରତିଟି ମୁହୂର୍ତ୍ତର ବିଳମ୍ବ ମୋ' ଆତ୍ମରକ୍ଷାକୁ କରିବ ବିଘ୍ନିତ । ଜୀବନର ଏକ ସ୍ୱପ୍ନ ହୁଏତ ସମାଧି ଲଭିବ ଅଜଗରଟାର ଗର୍ଭରେ ।

ହଠାତ୍ ସ୍ଥିର କରିନେଲି କର୍ତ୍ତବ୍ୟ । ଆକସ୍ମିକ ବିପଦରୁ ଆତ୍ମରକ୍ଷା ନିମିତ୍ତ କଟିବଦ୍ଧ କରି ରଖିଥିଲି ଶାଣିତ ଖଡ଼୍ଗଟିକୁ । ଅବଶ୍ୟ ଧନୁର୍ବାଣ ବି ଥିଲା ପାଖରେ । କିନ୍ତୁ ଏତେ ପାଖରୁ ତାହାର ପ୍ରୟୋଗ ଅସମ୍ଭବ । ଗୋଟିଏ ଖଡ଼୍ଗାଘାତରେ ତା'ର ମୁଣ୍ଡ ଗଣ୍ଡିକୁ ଅଲଗା କରିଦେଲି । ଧୀରେ ଧୀରେ ଶିଥିଳ ହୋଇଆସିଲା ତା'ର ବନ୍ଧନ ଓ ଛଟ-ପଟ ହୋଇ ସେ ପଡ଼ିଗଲା ଭୂଇଁରେ । କିଛି ସମୟ ପରେ ତା'ର ପ୍ରାଣ ଗଲା ।

ନିଶ୍ଚିନ୍ତ ହେଲି ଶାନ୍ତିରେ ନିଃଶ୍ୱାସ ମାରିଲି ଏଥର । କୃତଜ୍ଞତାପୂର୍ଣ୍ଣ ସ୍ୱରରେ ଭଗବାନ୍ ଶିବଙ୍କ ଉଦ୍ଦେଶ୍ୟରେ ଉଚ୍ଚାରଣ କଲି ''ଶିବ ! ଶିବ ! ଶିବ !''

ଅବଶିଷ୍ଟ ରାତିଟିରେ ନିଦ ହେଲା ନାହିଁ ଜମା । ବୃକ୍ଷଶାଖାରେ ବସି ବସି କଟାଇଦେଲି ବାକିତକ ସମୟ ।

ମହେନ୍ଦ୍ରଗିରି ଅରଣ୍ୟର ରାତି । ବଡ଼ ଭୀମ । ଅତି ଭୟଙ୍କର ! ଜଳବାସୀ କୁମ୍ଭୀର ଶିକାରକୁ ହିଂସ୍ର ମୁଖବନ୍ଧନରେ ଚାପିଧରିଲା ଭଳି ଏଇ ରାତି ଭୟାବହତାକୁ ଦୃଢ଼ ଭାବରେ ଜାବୁଡ଼ି ଧରିଛି ଯେମିତି । ଚାରିଆଡ଼େ ବନ୍ୟଜନ୍ତୁମାନଙ୍କ ଚିତ୍କାର । କାହାର ଆର୍ତ୍ତଚିତ୍କାର ତ ଆଉ କାହାର ଭୟାକୁଳ ଚିତ୍କାର ! ପୁଣି କାହାର ଗର୍ଜନମୁଖର ଆକ୍ରମକ ଚିତ୍କାର । ମୁଁ ବସିଥିବା ଗଛର ଅଳ୍ପ ଦୂରରେ ଆଉ ଗୋଟିଏ ଗଛରେ ବସି ଅଶୁଭ ପେଚାଟାଏ ରାବୁଛି ହୁଟ୍ ହୁଟ୍ ଧ୍ୱନି କରି । ତାହାର ପ୍ରତ୍ୟୁତ୍ତର ହେଉଛି ଆଉ ଗୋଟିଏ ପେଚା ସେହିଭଳି ଅଶୁଭ ଧ୍ୱନି ମାଧ୍ୟମରେ ଅଳ୍ପ କିଛି ଦୂରରେ । କାହାପାଇଁ ଅଶୁଭ ଶଙ୍ଖ ଫୁଙ୍କୁଛନ୍ତି ଏମାନେ ଜାଣେନା । ସଙ୍ଗେ ସଙ୍ଗେ ଶୁଣିପାରିଲି ମୁଁ ବସିଥିବା ଗଛତଳେ ଦୁଇଟା ବାଘର ଆକ୍ରମକ ଗର୍ଜନ । ସେମାନେ ଗୋଟିଏ ଶିକାରର ପଛେ ପଛେ ଧାଉଁଥିବା ଅବସ୍ଥାରେ ଗରଜୁଥାନ୍ତି ଏଭଳି । ଏହା ଭିତରେ ସୁଯୋଗ ପାଇ ଖସି ପଳାଇଥାଏ ଶିକାର । ହଠାତ୍ ପରସ୍ପର ମୁହାଁମୁହିଁ ହୋଇ ସଂଘର୍ଷରେ ମାତିଗଲେ ଦୁଇ ବାଘ । ତୀବ୍ର ଭୟଙ୍କର ଗର୍ଜନ କିଛି କ୍ଷଣ ପରେ କ୍ଷୀଣତର । ତାହା ଜାଗାରେ ଆର୍ତ୍ତ-ମୁମୂର୍ଷୁ ଚିତ୍କାର । ପରେ ପରେ ଚିତ୍କାର ନୀରବିତ । ହୁଏତ ଦୁଇଟିଯାକ ବାଘ ପରସ୍ପରକୁ ଆକ୍ରମଣ କରି ମାରିଦେଇଛନ୍ତି । ସେତେବେଳକୁ ପେଚାର ଶବ୍ଦ ବି ବନ୍ଦ ।

ଭାବିଲି, ମଣିଷ ଓ ବାଘ । ଏମାନଙ୍କ ମଧ୍ୟରେ କ'ଣ ଆଉ ବା ଫରକ ? ବାଘ ବାଘକୁ ମାରେ । ମଣିଷ ମଣିଷକୁ ମାରେ । ଫରକ ଏତିକି ଯେ ମଣିଷର ବୁଦ୍ଧି ଅଛି । ପ୍ରତ୍ୟେକଟି କାମପାଇଁ କିଛି ଗୋଟାଏ କାରଣ ଦେଖାଇପାରିବାର ଶକ୍ତି ଅଛି । ସେ ଅନ୍ୟ ମଣିଷକୁ ମାରେ ଶାନ୍ତିପାଇଁ ଅଥବା ଧର୍ମର ସୁରକ୍ଷା ପାଇଁ । ତା'ର ଯୁକ୍ତି ହେଲା, ଯୁଦ୍ଧ ନ ହେଲେ ଶାନ୍ତି ଆସିବ ନାହିଁ କିମ୍ବା ହେବ ବି ନାହିଁ ଧର୍ମର ସୁରକ୍ଷା । ରାଜଧର୍ମ ହେଉ, ଯଜ୍ଞଧର୍ମ ହେଉ ଶୀଳଧର୍ମ ହେଉ, ନୀତିଧର୍ମ ହେଉ ଅଥବା ଯେଉଁ ଧର୍ମ ହେଉ । ବୀର ଅସ୍ତ୍ରଶିକ୍ଷା କରେ । ନାନା ପ୍ରକାର ଶକ୍ତିସଞ୍ଚୟ କରେ । ଦିବ୍ୟାସ୍ତ୍ର, ବ୍ରହ୍ମାସ୍ତ୍ର ଆଦିରେ ହୁଏ ପାରଙ୍ଗମ । କେବଳ ଯୁଦ୍ଧପାଇଁ ନୁହେଁ ତ ଆଉ କ'ଣ ? କେବଳ ମଣିଷକୁ ମାରିବାପାଇଁ ନୁହେଁ ତ ଆଉ କ'ଣ ? କୁହାଯାଏ ଯେ ଯୁଦ୍ଧରେ ଶତ୍ରୁକୁ ମାରିଲେ ଅଥବା ବୀରଗତି ପାଇଲେ ମଣିଷ ହୁଏ ଅମର । ମୋର ମଧ୍ୟ ସେଇ ଧାରଣା । ଧର୍ମଗୁରୁମାନେ ଓ ଆଚାର୍ଯ୍ୟମାନେ ସେଇ ଧାରଣା ପୂରାଇଛନ୍ତି ମୁଣ୍ଡରେ । ବେଳେ ବେଳେ ଭାବେ, ସତରେ କ'ଣ ମୁଁ ଏଇ କାମ କରି ହେବି ଅମର ? ଏଇ ତ, ଗଛମୂଳେ ମରଣ ଓ ଜୀବନ ଉଭୟର ନିଦର୍ଶନ ମୃତ ବାଘ ଦିଓଟି । ପ୍ରଥମେ ଖୁବ୍ ବୀରତ୍ୱର ସ୍ପର୍ଦ୍ଧା କେତେ ତାହା ଦେଖାଉଥିଲେ । କିନ୍ତୁ ଶେଷରେ କ'ଣ ହେଲା ? କ'ଣ ଧରିରଖି ପାରିଲେ ଅମୂଲ୍ୟ ଜୀବନକୁ ? ଶେଷରେ ଉଭୟ ମଲେ । ତେଣୁ

ମଣିଷ ବାହାରକୁ ଦେଖାଇ ହେଉଥାଏ ଯାହାକୁ ଜୀବନ ବୋଲି ତାହା ମରଣ ହିଁ ମରଣ । ହିମଶୀତଳ ମରଣ । ଜୀବନର ଠିକ୍ ବିପରୀତ । ଅଥଚ ମୂର୍ଖ ମଣିଷ ଏଇ ମୂର୍ଖ ବାଘ ଦିଓଟି ଭଳି ତାହା ବୁଝିପାରି ନ ଥାଏ । ତାହାକୁ ଜୀବନ ଭାବି ଧାଇଁଥାଏ ତାହା ପଛରେ । ତୃଷାର୍ତ୍ତ ବ୍ୟକ୍ତି ମାୟାମୟ ମରୀଚିକା ପଛରେ ଧାଇଁଥାଏ ଯେମିତି । ହାୟ ରେ ଅବୋଧ ଅଜ୍ଞାନ ମଣିଷ !

ଏଇ ଚିନ୍ତାର ବୁଢ଼ିଆଣୀ-ଜାଲ ମଧ୍ୟରେ ଛନ୍ଦି ହୋଇଥିବା ବେଳେ ହଠାତ୍ ମନେପଡ଼ିଲା ବ୍ରହ୍ମବିତ୍ ବନ୍ଧୁ ଅଶ୍ୱତ୍ଥାମାଙ୍କ କଥା । ଦ୍ରୋଣାଚାର୍ଯ୍ୟଙ୍କ ଶିକ୍ଷାୟତନରେ ଅଧ୍ୟୟନ ଅବସରରେ ବାରମ୍ବାର ସୁଯୋଗ ଦେଖି ଏଇ କଥା କହୁଥିଲେ ସେ । ଆଉ ଦୁଃଖ ବି କରୁଥିଲେ ମଣିଷର ଅବୁଝାପଣିଆ ଲାଗି । ପଣ୍ଡିତମ୍ମନ୍ୟ ସମାଜବିତ୍ ଓ ଧର୍ମବିତ୍‌ମାନଙ୍କର କୂଟ-କପଟ କରି ବିଭିନ୍ନ ନୀତି ନିୟମ ଆଦିର ପ୍ରଚଳନ ଲାଗି । ମଣିଷ କିପରି ଏବେ ବୈଦିକ ଚିନ୍ତାଧାରାର ମହାନ୍ ଆସନରୁ ଖସିପଡ଼ିଛି ତଳକୁ ସେଥିପାଇଁ କରୁଥିଲେ ଅନୁଶୋଚନା । ଗୋଟିଏ ପବିତ୍ର ବେଦମନ୍ତ୍ରର ଉଦାହରଣ ଦେଇ କହୁଥିଲେ – 'ଯସ୍ୟ ଛାୟାମୃତଂ ଯସ୍ୟ ମୃତ୍ୟୁଃ' । ମଣିଷର ଦୁଇଟି ଛାୟା । ଗୋଟିଏ ଅମୃତର । ଆଉ ଗୋଟିଏ ମୃତ୍ୟୁର । ଫରକ ଏତିକି ଯେ ସାଧାରଣ ଛାୟା ଅନୁସରଣ କରେ କାୟାକୁ । କିନ୍ତୁ ମଣିଷକ୍ଷେତ୍ରରେ ଏଇ ଅନୁସରଣ ପଦ୍ଧତି ବିପରୀତ । ସେ ଅନୁସରଣ କରେ ଏଇ ଛାୟା ଦିଓଟିକୁ । ଅତି ବିବଶ ସେ ଅନୁସରଣ । ସହଜାତ ପ୍ରବୃତ୍ତିର ଫଳଶ୍ରୁତି । ସେ ଯଦି ଅମୃତକୁ ଅନୁସରଣ କରେ, ତେବେ ପାଇବ ଅମୃତ । ଯଦି ମୃତ୍ୟୁକୁ ଅନୁସରଣ କରେ, ତେବେ ପାଇବ ମୃତ୍ୟୁ । କାହାକୁ ଅନୁସରଣ କରିବ, ଏହା ତା'ରି ଉପରେ ନିର୍ଭରଶୀଳ । ଆମେ ସାଧାରଣ ଭାବରେ ଯାହାକୁ ଜୀବନ ବୋଲି ଭାବି ଧାଇଁଛୁ ତାହା ପଛେ ପଛେ, ତାହା ଜୀବନ ନୁହେଁ । ତାହା ମୃତ୍ୟୁ । କେବଳ ହିଁ ମୃତ୍ୟୁ । ବୀରତ୍ୱ, ଯଶଃ, କୀର୍ତ୍ତି, ଅଭିମାନ, ରାଜସମ୍ପତ୍ତି ଆଦି ଯାହା କିଛି ଭୌତିକ ସିଦ୍ଧି, ତାହା ମୃତ୍ୟୁ ନାମକ ଯେଉଁ ଛାୟା, ତାହାର ଗୋଟିଏ ଗୋଟିଏ ନାମ । ତାହାର ବିପରୀତ ଯେଉଁ ଆତ୍ମିକ ଆନନ୍ଦ, ତାହା ହିଁ ଅମୃତ । ତାହାରି ପଛରେ ଆମକୁ ଧାଇଁବାକୁ ହେବ । କିନ୍ତୁ ହାୟ ! କମ୍ ଲୋକ ବୁଝନ୍ତି ଏ କଥା ।

ଯେତେ ଏ ବିଷୟରେ ଭାବୁଥାଏ, ଯେତେ କରୁଥାଏ ଚିନ୍ତନ ମନ୍ଥନ, ସେତେ ବୁଝିପାରୁଥାଏ, କି ନିରାଟ ସତ କଥା କହୁଥିଲେ ସତେ ସେ !

ଏତିକିବେଳେ ପୁଣି ବି ମନେପଡ଼ିଲା ଅର୍ଜୁନଙ୍କ ପ୍ରତି ଥିବା ମୋର ପ୍ରତିସ୍ପର୍ଦ୍ଧା କଥା । ତାହା ଜାଳିଦେଉଥିଲା ମୋ' ଅନ୍ତସ୍ତଳକୁ । ବୁଝିପାରୁଥିଲି ତାହା ଜାଳି ଦେଉଥିଲା ବୋଲି ଏବଂ ଜୀବନର ସ୍ୱଚ୍ଛ ନୀରଧାରଠାରୁ ମତେ ଦୂରେଇ ନେଉଥିଲା ବୋଲି । ତଥାପି ନାଚାର ମୁଁ । ନିଆଁ-ଶିଖାରେ ଆତ୍ମାହୁତି ଦେଉଥିବା ପତଙ୍ଗ ଭଳି ବିବଶ-ବିହ୍ୱଳ ମୁଁ ।

ଜାଣିଶୁଣି ବନ୍ଧୁ ଅଶ୍ୱତ୍ଥାମାଙ୍କ ଉପଦେଶବାଣୀଠାରୁ ଦୂରେଇ ରଖିଲି ନିଜକୁ । ଗୋଟିଏ ମାତ୍ର ଚିନ୍ତା ଆକୁଳିତ କରିବାକୁ ଲାଗିଲା ମତେ । କିପରି ରାତି ପାହିଲେ ଯିବି ନିଷାଦଗ୍ରାମ କୁମୁଦପୁରକୁ ଓ ସେଠାରୁ ହସ୍ତିନାପୁରକୁ । ଆଉ ଦେଖାଇଦେବି ମୋ' ପ୍ରତିସ୍ପର୍ଦ୍ଧୀ ଅର୍ଜୁନଙ୍କୁ,

କର୍ଣ୍ଣ ମଧ୍ୟ ପୌରୁଷବଳରେ ପିନ୍ଧିପାରେ ସିଦ୍ଧିର ଜାଜ୍ୱଲ୍ୟମାନ ମୁକୁଟ । ହଁ, ସେଇ ମୁକୁଟ ଯାହାଠାରୁ ନୀଚକୁଳରେ ଜନ୍ମ ହେତୁ ସେ ସମାଜଦ୍ୱାରା ଚିରବଞ୍ଚିତ !

## ଅଣଚିରିଶ

ଯୌବନ....ଯୌବନ ଓ ଯୌବନ । ମଣିଷପାଇଁ ବିଧାତାଙ୍କର ଏକ ଅପୂର୍ବ ଓ ଅନନ୍ୟ ଦାନ । ଗିରି-ନିର୍ଝରୀ ପରି ଉଦ୍ଦାମ ଓ ପ୍ରଖର ଧାରା । ବରଂ ତାହାଠାରୁ ଆହୁରି କିଛି ଅଧିକ । ଗିରିନିର୍ଝରୀ ଶିଳାବନ୍ଧର ବାଧା ପାଇ ଅଟକିଯାଏ ଓ ବହିଯାଏ ଗତି ପରିବର୍ତ୍ତନ କରି । କିନ୍ତୁ ଯୌବନର ଧାରା । ଯାହା ମାନେନା କୌଣସି ବନ୍ଧନ । କୌଣସି ବାଧା । ହିମାଳୟ ସମାନ ଯେତେ ଯାହା ଉଚ୍ଚ ଓ ଦୃଢ଼ ବାଧା ଥିଲେ ବି ତାହାକୁ ଲଂଘିଯାଏ । ଗତି ପରିବର୍ତ୍ତନ କରି ନୁହେଁ । ବରଂ ତାହାକୁ ଫୁଟାଇଦେଇ ଅଥବା ତାହାର ଶିଖରକୁ ଡେଇଁଯାଇ । ଅଥବା ଯଦି ବନ୍ଧନ କିଛିଟା କ୍ଷୁଦ୍ର ଓ ଅଦୃଢ଼, ତେବେ ତାହାକୁ ଚୂର୍ଣ୍ଣ କରିଦେଇ ।

କୈଶୋରକୁ ଅତିକ୍ରମ କରି ଯେତେବେଳେ ଯୌବନରେ ପଦାର୍ପଣ କରିଥିଲି, ସେତେବେଳେ ତାହାର ଏହି ରୂପଟିକୁ ହିଁ ଦେଖିଥିଲି । ତାହା ପ୍ରାଣ-ମନରେ ମୋର ଭରି ଦେଇଥିଲା ଉଦ୍ଦାମତା । ହଁ, ଏକ ତୀବ୍ର ଉଦ୍ଦାମତା । ତାହାର ଯେ ଆଉ କିଛି ଗୋଟାଏ ଭିନ୍ନ ରୂପ ଅଛି ଓ ଅଛି ବି ମନମତାଣିଆ ମହକ, ତାହା ଅନୁଭବ କରିପାରି ନ ଥିଲି । ଚିରନିର୍ଯାତିତ ଓ ଚିରଅବହେଳିତ ଜୀବନରେ ଦେଖିଥିଲି କେବଳ ସଂଘର୍ଷର ତାଣ୍ଡବ ଲୀଳା ଏବଂ ତହିଁରେ ବିଜୟୀ ହେବାପାଇଁ ଦେଖାଇଥିଲି ନିଜର ଶୌର୍ଯ୍ୟଭରା ଉଦ୍ଦାମ ସ୍ୱରୂପ । ଅତ୍ୟନ୍ତ ଦୁର୍ଦ୍ଦମନୀୟ ସ୍ୱରୂପ ! ଭାବି ନେଇଥିଲି, ଏହାହିଁ ଜୀବନ । ଏହାହିଁ ଯୌବନ । ଯିଏ ଯାହା କହୁ ପଛକେ, ଏହାହିଁ ବାସ୍ତବିକତା । ସରଳତରଳ ଅଥବା ସ୍ୱପ୍ନିଳ ନୁହେଁ ! ବରଂ ଅତ୍ୟନ୍ତ ଶୁଷ୍କ-କଠୋର । ଅତ୍ୟନ୍ତ ନିଷ୍ଠୁର ।

କୁମୁଦପୁରରୁ ନିଷାଦମାଉସୀଙ୍କଠାରୁ ବିଦାୟ ନେଇ ଆସୁଥିବା ଅବସରରେ ପଥ ମଧ୍ୟରେ ଦେଖିପାରିଲି ଯୌବନର ଆଉ ଏକ ଭିନ୍ନ ରୂପକୁ । ହଁ, ଯୌବନର ସେଇ ରୂପ ଯେ ଅନ୍ୟର ଆଖିରେ ନିଜ ମନର ଫଗୁଣକୁ ଦୋଳି ଖେଳୁଥିବାର ଦେଖାଇଦିଏ । ମୁଁ କିନ୍ତୁ ଜାଣିପାରୁ ନ ଥିଲି କିଏ ସେଇ ଅନ୍ୟଜଣକ ? କାହାର କଳା-କଳା ଆଖି ଦିଓଟି ତୃଷ୍ଣାର ବୀଣା ବଜାଇ ମତେ ଅପେକ୍ଷା କରିଛି ଦୀର୍ଘଦିନ ଧରି ? ଏମିତି କ'ଣ କିଏ ଜଣେ ଅଛି ? କିଛି ସ୍ଥିର କରିପାରୁ ନ ଥିଲି ମନେ ମନେ । ଖାଲି ଭାବି ହିଁ ଚାଲିଥିଲି । ଦିନକୁ ନୂଆ ଆଲୁଅରେ ମୁହଁ ମାଜିବାପାଇଁ ଅପେକ୍ଷା କରିବାକୁ ପଡ଼ିଥାଏ ଆକୁଳ ଚିତ୍ତରେ ଘନଘୋର ଅନ୍ଧାର ରାତିର ସମାପ୍ତି ଯାଏ ବେଶ୍ କିଛି ଲମ୍ୱା ସମୟ ଧରି । ଭାବିଲି, ହୁଏତ ଯୌବନର ଏଇ ନୂଆ ଆଲୁଅରେ ପଖାଳି ହେବାପାଇଁ ମତେ ବି ଯେମିତି ପ୍ରତୀକ୍ଷା କରିବାକୁ ପଡ଼ିଛି ସଂଘର୍ଷମୟ ଅତୀତ ଦିନଗୁଡ଼ିକରେ !

ସେ ଦିନ ଥାଏ ଶରତ୍‌ର ମଧ୍ୟାହ୍ନ । ବାହାରେ ହୁଏତ ଉଷ୍ଣତା ଥିବ । କିନ୍ତୁ ଆରଣ୍ୟକ ପରିବେଶ ଥାଏ ଶୀତଳ-କୋମଳ । କେଉଁଠି କେମିତି ପତ୍ର ଫାଙ୍କ ଦେଇ ପଡୁଥାଏ ସୂର୍ଯ୍ୟକିରଣ । ଚାରିଆଡ଼େ ଛାପି-ଛାପିକିଆ ଛାଇ ଓ ଆଲୁଅର ଖେଳ । ଦୀର୍ଘ ପଥ ଘୋଡ଼ା ପିଠିରେ ଝପଟି ଝପଟି କିଛିଟା ଅବସନ୍ନ ଲାଗୁଥାଏ । ଆଉ କ୍ଳାନ୍ତି ବି । ପଥଶ୍ରମ ମେଣ୍ଟାଇବାପାଇଁ ଗୋଟିଏ ମହୁଲଗଛମୂଳେ ବିଶ୍ରାମ ନେଉଥାଏ । ଆଗରେ ଖଳ ଖଳ ଧାରାରେ ପ୍ରବାହିତ ଛୋଟ ଝରଣାଟିଏ । ଘୋଡ଼ାକୁ ଚରିବାପାଇଁ ଓ ପାଣି ପିଇବାପାଇଁ ତାହାରି କୂଳରେ ଛାଡ଼ିଦେଇଥାଏ । ତାହା ଉପରେ କିନ୍ତୁ ଦୃଷ୍ଟି ଥାଏ ସତର୍କ । କାଳେ ଅକସ୍ମାତ୍ କୌଣସି ହିଂସ୍ରଜନ୍ତୁର ଶିକାର ହେବ ।

ମନରେ ଅସୁମାରି ଚିନ୍ତା ଓ ଉଦ୍‌ବେଗ । ଖାଲି ତ ଶୀଘ୍ର ଯାଇ ହସ୍ତିନାପୁରରେ ପହଞ୍ଚିବାପାଇଁ ନୁହେଁ । ବରଂ ତାହା ପରର ଜୀବନ ମୋର କ'ଣ ହେବ, କିପରି ବିତିବ ସେଇଥିନେଇ । ଭବିଷ୍ୟତ୍ ସଂପର୍କରେ ଚିନ୍ତା କରିବାର ବୟସ ମୋର ଆସିଯାଇଥାଏ । ଏଇ ଚିନ୍ତାର ଜୁଆରରେ ଅଭିଶାପର ଯେଉଁ ଶୁଖିଲା କାଠଗଣ୍ଡି ଦୁଇଟିକୁ ମୁଣ୍ଡରେ ବହି ଆଣିଥିଲି ତାହା ଭାସିଯାଇଥାଏ କୁଆଡ଼େ ଦୂରକୁ । ଅତି ଦୂରକୁ । ସତ କହୁଛି ମୁଁ । ତାହା ତ ଖାଲି ସେ ଦିନ ଭୁଲିଯାଇ ନ ଥିଲି । ସାରା ଜୀବନ ଭୁଲିଯାଇଥିଲି ମଧ୍ୟ । ତାହା ନ ହୋଇଥିଲେ, ଯାହା କିଛି ସିଦ୍ଧି ପାଇଛି ଜୀବନରେ ତାହା ହୋଇପାରି ନ ଥାନ୍ତା ସମ୍ଭବ । ଆଜି କିନ୍ତୁ ପ୍ରତ୍ୟକ୍ଷ ଭାବରେ ତାହାର ଫଳଶ୍ରୁତି ଦେଖି ହଠାତ୍ ରୋମନ୍ଥନ କରିବସିଛି ସେଇ ଅତୀତ ସ୍ମୃତିକୁ । କି ବିକଳ ଦୁଃଖଦ ସ୍ମୃତି ସତେ ! ସମସ୍ତ ଅଭିମାନକୁ ମୋର ଭାଙ୍ଗିଦେଇ କରିଦେଇଛି ଚୂର୍ଣ୍ଣବିଚୂର୍ଣ୍ଣ । ଶୌର୍ଯ୍ୟର କିରୀଟଟିକୁ କରିଦେଇଛି ଭୂଲୁଣ୍ଠିତ, ଧୂଳିଧୂସରିତ !!

ହଠାତ୍ ଶୁଭିଲା ପତ୍ର ଖସ୍ ଖସ୍ ଶବ୍ଦ । ମନରେ ସନ୍ଦେହ । କ'ଣ ହିଂସ୍ରଜନ୍ତୁ ? ପୁଣି ଦିନ ଦି' ପହରରେ ? କିଛି ଅସମ୍ଭବ ନୁହେଁ । ବାଘ କିମ୍ବା ସିଂହ ଭୋକିଲା ଥିଲେ ସବୁ କିଛି ସମ୍ଭବ । ବିଶେଷକରି ପାଖରେ ଘୋଡ଼ା । ଘୋଡ଼ାମାଂସ ସେମାନଙ୍କର ଭାରି ପ୍ରିୟ । ଆହୁରି ଅଧିକ ସତର୍କ ହୋଇଗଲି । ଧନୁର୍ବାଣ ଧରି ପ୍ରସ୍ତୁତ ହୋଇ ରହିଲି ଆକ୍ରମଣକାରୀ ଜନ୍ତୁର ଆକ୍ରମଣକୁ ପ୍ରତିହତ କରିବାପାଇଁ । ମୋ' ପାଖରେ ଅବଶ୍ୟ ଶବ୍ଦବେଧୀ ବାଣ ଥିଲା । ଶବ୍ଦକୁ ଲକ୍ଷ୍ୟକରି ବିନ୍ଧିପାରିଥାନ୍ତି ବାଣ । କିନ୍ତୁ ପାଇଲା ନାହିଁ ସାହସ । ଦ୍ୱିଧାଭରା ମନ । କାଳେ ହିଂସ୍ରଜନ୍ତୁ ହୋଇ ନ ଥିବ । ଥରେ ତ ଭୁଲ କରିବସିଛି ଯେଉଁଥିପାଇଁ ବ୍ରାହ୍ମଣଙ୍କ ଦାରୁଣ ଅଭିଶାପର ଅଗ୍ନିସ୍ଫୁଲିଙ୍ଗକୁ ବହିଚାଲିଛି କାନ୍ଧରେ । ଦ୍ୱିତୀୟବାର ସେଭଳି ଭୁଲ କରିବାପାଇଁ ଚାହିଁଲି ନାହିଁ । ଏକଲୟ, ଏକମନରେ କାନ ଡେରି ଶୁଣିଲି । ପତ୍ର ଖସ୍ ଖସ୍ ଶବ୍ଦ ସହିତ ଏକାଧିକ ମନୁଷ୍ୟଙ୍କ କଥାବାର୍ତ୍ତାର ଶବ୍ଦ ଓ ତାହା ସହିତ ହାସ୍ୟର କଳଗୁଞ୍ଜନ । ଗୋଟିଏ ପୁରୁଷ କଣ୍ଠ ଓ ଅପରଟି ନାରୀକଣ୍ଠ । କ୍ରମେ ସବୁ ହୋଇଗଲା ପରିଷ୍କାର । ଦେଖିଲି, ବୃକ୍ଷ ଅନ୍ତରାଳରୁ ଆସୁଛନ୍ତି ଯୁଗଳମୂର୍ତ୍ତି । ତରୁଣ ଓ ତରୁଣୀ । ଚେହେରାରୁ ଜଣାପଡୁଛି ଆର୍ଯ୍ୟ ନୁହନ୍ତି । ବ୍ରାତ୍ୟ ମଧ୍ୟ ନୁହନ୍ତି । ନିଷାଦ ନିଶ୍ଚୟ । ପ୍ରାୟ ଅର୍ଦ୍ଧନଗ୍ନ ରୂପ । ଉଭୟଙ୍କ ଅଣ୍ଟାରୁ ଝୁଲିପଡ଼ିଛି ପତ୍ର ସିଆଁ ଯାଇ ତିଆରି ହୋଇଥିବା ବସ୍ତ୍ର । ଆଣ୍ଠୁ ଲୁଚୁ ନାହିଁ । ଅଣ୍ଟାର ସାମାନ୍ୟ କିଛି ତଳ ପର୍ଯ୍ୟନ୍ତ ଦେହକୁ ଘୋଡ଼ାଇ ରଖିଛି ମାତ୍ର ।

ଦେହର ଉପରିଭାଗ ସଂପୂର୍ଣ୍ଣ ଅନାବୃତ । ତରୁଣୀଟିର କଣ୍ଠରୁ ଲମ୍ବିଆସିଛି ସରି ସରି କରି ଅନେକ ସରି ପୋହଳାର ମାଳ । ବକ୍ଷୋଦେଶର ସୁଷମାକୁ ରଖିଛି ସଂପୂର୍ଣ୍ଣ ରୂପେ ଆବୃତ କରି ! ତରୁଣଟିର ଗୋଟିଏ କାନ୍ଧରେ ଧନୁ ଓ ଅନ୍ୟ କାନ୍ଧରେ ତୂଣୀର । ଦୁହେଁ ହସି ହସି କଥାବାର୍ତ୍ତା ହେଉଛନ୍ତି । ନିଷାଦ ଭାଷା । ଅବୋଧ ମୋ'ପାଇଁ । କିନ୍ତୁ ସେମାନଙ୍କ କହିବାର ଭଙ୍ଗୀ, ଢଳ ଢଳ ଚାହାଣିର ଲାଳିତ୍ୟ ଓ ପରସ୍ପରଠାରେ ନିଜକୁ ଆବିଷ୍କାର କରିବାର ଚେଷ୍ଟା ସୂଚାଇ ଦେଉଛି ଯେ ସେମାନଙ୍କ ଆଳାପ ଅତି ହିଁ ଅନ୍ତରଙ୍ଗ । ଅତି ହିଁ ମନଛୁଆଁ । ଦୁହେଁ ଯେମିତିକି ଏକ ନିଶାରେ ଆତ୍ମବିଭୋର !

ଆଗରେ ଫୁଲଭରା ଅଶୋକଗଛଟିଏ । ବନଭୂମିର ଶ୍ୟାମଳ ଯଜ୍ଞବେଦୀମୂଳରେ ଲାଲ ଟହ ଟହ ମୁରୁଜର ଚିତା ପଡ଼ିଛି ଯେମିତି । ଉଭୟ ଆସି ଅଟକିଗଲେ ତାହାରି ମୂଳରେ । ଧନୁ ହୁଳରେ ତାହାର ଅବନମିତ ଶାଖାଟିଏ ଟାଣି ଆଣି ତରୁଣଜଣକ ସଂଗ୍ରହ କଲା ସୁନ୍ଦର ଏକ ସ୍ତବକ ଗୁଚ୍ଛ । ଆଦରରେ ଗୁଞ୍ଜିଦେଲା ନେଇ ତରୁଣୀର ବିପୁଳ କବରୀରେ । ତରୁଣୀଟି ଫାଟିପଡ଼ିଲା ହସରେ । ତା'ର ବୁକୁତଳର ପୋହଳା ମାଳଟିମାନ ଥରିବାକୁ ଲାଗିଲା କି ଏକ ମଧୁର କମ୍ପନରେ ! ତରୁଣଟିର ତୃଷିତ ଆଖି ଥରେ କୁସୁମଶୋଭିତ କବରୀ ଆଡ଼କୁ ଗଲେ ଆଉ ଥରେ ଯାଉଥାଏ ଥର ଥର କମ୍ପିତ ପୋହଳାମାଳମାନଙ୍କ ଆଡ଼କୁ । କିଏ କାହାକୁ ନିମନ୍ତ୍ରଣ କରୁଥିଲା ଏବଂ କେଉଁ ମୌନ ମୁଖର ଭାଷାରେ ତାହା ବୋଧହୁଏ ଜାଣିପାରୁଥିଲେ କେବଳ ସେହି ଦୁହେଁ । ଦୁହେଁ ଧୀରେ ଧୀରେ ନିକଟତର ହୋଇଆସୁଥିଲେ ପରସ୍ପରର ପରସ୍ପର ସହିତ ଆତ୍ମଲୀନ ହେବାପାଇଁ ନଦୀଟି ସାଗରରେ ଲମ୍ଫ ଦେଲା ଭଳି !

ଅଦୂରରେ ଝରଣାର କଳ କଳ ଶବ୍ଦ । ଛଳ ଛଳ ପ୍ରବାହ । ଚଞ୍ଚଳ ଚାଲି । ମୋ' ବାଁ ପାଖରେ ଥିବା ଆମ୍ବଗଛ ଉହାଡ଼ରୁ ଏକ ସାଥୀହୀନ ପକ୍ଷୀର ଉଦାସ କାକଳି ! ପ୍ରୀତିଭରା ଗୁଞ୍ଜନରେ ନିଜ ଅନ୍ତସ୍ତଳକୁ ପଖାଳିଦେଇ ତରୁଣ-ତରୁଣୀ ଦୁହେଁ ଅପସରିଗଲେ ମୋ' ନେତ୍ରପଥରୁ । ହଜିଗଲେ ଅରଣ୍ୟର ଘଞ୍ଚ ଶ୍ୟାମଳିମା ଭିତରେ । ପକ୍ଷୀଟି ବି ଉଡ଼ି ଚାଲିଗଲା ହୁଏତ ତା'ର ହଜିଲା ସାଥୀକୁ ଖୋଜି ଖୋଜି ।

ଯେଉଁ ସ୍ୱପ୍ନ ମତେ ଆତ୍ମଲୀନ କରିଦେଇଥିଲା, ତାହା ତଥାପି ତୁଟି ନ ଥାଏ । ତଥାପି ତାହାର ନୂପୁର ଗୁଞ୍ଜରିତ ହୋଇଉଠୁଥାଏ ଚିତ୍ତ-ମନ-ପ୍ରାଣ ଧରି !

ମତେ ଲାଗୁଥାଏ, ମୋ' ମନର ପକ୍ଷୀ ଯେମିତି ଉଦାସ କଣ୍ଠରେ ଝୁରି ଝୁରି ବାହୁନି-ଉଠୁଛି । ଆଉ ଖୋଜୁଛି ତା'ର ହଜିଲା ସାଥୀକୁ । ବୁଝିପାରୁ ନ ଥାଏ ଏଇ ହଜିଲା ସାଥୀ ମୋର ଜଣା କି ଅଜଣା ? ଅତୀତର ପୁରୁଣା ସାଥୀ ନା ଆଗାମୀ ଭବିଷ୍ୟତର ନୂଆ ସାଥୀ ? ପୁରୁଷ ନା ନାରୀ ? ତରୁଣ ନା ତରୁଣୀ ? ମୁଁ ଖାଲି ଖୋଜୁଥାଏ ଏବଂ ଖୋଜୁଥାଏ । ଦୂର ଅତୀତର ବିଗତ ଦିନଗୁଡ଼ିକର ସ୍ମୃତିର ସୌରଭକୁ ଆଘ୍ରାଣ କରି କରି ଖୋଜୁଥାଏ । ହଜିଲା ଦିନଗୁଡ଼ିକର ଲିଭିଲା ସ୍ମୃତିଗୁଡ଼ିକୁ ମନ୍ଥନ କରି କରି ଖୋଜୁଥାଏ । ଆପଣାର ନାଭିଗନ୍ଧରେ ପାଗଳ ହୋଇଉଠିଥିବା କସ୍ତୁରିମୃଗ ଭଳି ଗନ୍ଧର ଆକରକ୍ଷେତ୍ରଟିକୁ ଖୋଜୁଥାଏ । କିନ୍ତୁ କିଛି ଥଳ-କୂଳ ପାଉ ନ ଥାଏ । ଯୌବନର ଏଇ ମୁଗ୍ଧ ମଧୁର ଅନୁଭୂତି ବିହ୍ୱଳିତ କରିଦେଉଥାଏ ମତେ । କରି ବି ଦେଉଥାଏ ଉଚ୍ଚକିତ ।

ମୁଁ ଏବେ ବିପୁଳ ଶୌର୍ଯ୍ୟର ଅଧିକାରୀ । ବ୍ରହ୍ମାସ୍ତ୍ରସମେତ ଅନେକ ଦିବ୍ୟାସ୍ତ୍ର ମୋର କରାୟତ୍ତ । ଏବେ ସମାଜ ଆଗରେ ମୁଣ୍ଡ ଟେକି ମଣିଷଟିଏ ଭଳି ଚାଲିପାରିବି । ମହାବୀର ବୋଲି ଗର୍ବ କରିପାରିବି — ଅଭିମାନ କରିପାରିବି । ଆତ୍ମଶ୍ଲାଘା ଯେତେ ନିନ୍ଦନୀୟ ହେଲେ ବି ଏଇ ଗର୍ବ ଓ ଅଭିମାନର ସ୍କନ୍ଧରେ ଚଢ଼ି ଏ ପର୍ଯ୍ୟନ୍ତ ମତେ ହତାଦର କରିଆସିଥିବା ସମାଜକୁ ଦେଖାଇଦେଇପାରିବି ମୋ' ପୌରୁଷ । ମୁଁ କେବଳ ସୂତପୁତ୍ର ନୁହେଁ । ଜଣେ ବୀର ମଧ୍ୟ । ଅନ୍ୟାନ୍ୟ କ୍ଷତ୍ରିୟବୀରମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱୀ ହେବାରେ ଏକାନ୍ତ ସମର୍ଥ ।

ଏତେ ସାମର୍ଥ୍ୟ ସତ୍ତ୍ୱେ ମତେ ଲାଗୁଥାଏ, ଜୀବନଟା ମୋର ଯେମିତି ରହିଯାଇଛି ଅପୂର୍ଣ୍ଣ । ମନେ ମନେ ତୁଳନା କରୁଥାଏ ନିଷାଦ ଯୁବକ-ଯୁବତୀଙ୍କ ସୁଖମୟ ସ୍ଥିତିକୁ । ସୁଖ-ଶାନ୍ତିଭରା ସ୍ୱଚ୍ଛନ୍ଦ ଜୀବନ । ନାହିଁ ବଡ଼ ହେବାର ଆଶା-ଆକାଙ୍‌କ୍ଷା ଅଥବା ତଳେ ପଡ଼ିଯିବାର ଭୟ । ଅଯତ୍ନବର୍ଦ୍ଧିତ ବନାଶ୍ରମ ଭଳି ପ୍ରକୃତିର ଶାନ୍ତିମୟ କୋଳରେ ବଢ଼ି ଚାଲିଛନ୍ତି ତରୁଣ-ତରୁଣୀ ଦୁହେଁ । ପ୍ରକୃତିର ପ୍ରେମମୟ କୋଳରେ ପ୍ରେମର ଦେବାଳୟ ଗଢ଼ିତୋଳିଛନ୍ତି । ପ୍ରେମର ପ୍ରତିମାକୁ ପୂଜା କରିଚାଲିଛନ୍ତି । ସାରା ଜୀବନ ଧରି ପ୍ରେମର ସ୍ରୋତସ୍ୱିନୀକୁ ବୁହାଇ ଚାଲିଛନ୍ତି ଗିରିନିର୍ଝରୀର ମୁକ୍ତ ସ୍ୱଚ୍ଛନ୍ଦ ପ୍ରବାହ ସହିତ ପ୍ରତିଦ୍ୱନ୍ଦ୍ୱୀ କରି ଯେମିତି ! ଆଃ ! କି ସୁଖୀ ସତେ ସେ ଦୁହେଁ । ତାହା ତୁଳନାରେ କର୍ଣ୍ଣର ଏ ଶୌର୍ଯ୍ୟ, ଏ ଯଶଃ-କୀର୍ତ୍ତି ସବୁ ତୁଚ୍ଛ ସିନା ।

ପ୍ରେମ । ହଁ, ପ୍ରେମ । କେବଳ ପ୍ରେମ ହିଁ ଦୁହିଁଙ୍କ ଜୀବନକୁ କରିପାରିଛି ମଧୁମୟ ଓ ଅମୃତଭରା । ପ୍ରେମ ହିଁ ଦୁହିଁଙ୍କୁ ରଖିଛି ଜୀଆଁଇ । ଜୀବନ ଆଉ କ'ଣ କି ? ପ୍ରେମ ହିଁ ତ ଜୀବନ । ପ୍ରେମହୀନତା ମୃତ୍ୟୁ । ଯେଉଁଠି ପ୍ରେମ ନାହିଁ ଏବଂ ଅଛି କେବଳ ଦ୍ୱେଷ, ହିଂସା, ଅସୂୟା, ସେଠି ପ୍ରତିଟି ମୁହୂର୍ତ୍ତରେ ମଣିଷ ମରେ । ଅଥଚ ଯେଉଁଠି ପ୍ରେମ ଅଛି, ସେଠି ପ୍ରତିଟି ମୁହୂର୍ତ୍ତରେ ସେ ହୁଏ ନବୀନ ରୂପଶ୍ରୀ ନେଇ ପଲ୍ଲବିତ, ପୁଷ୍ପିତ । ଚିରଜୀବନ ଜୀଏଁ । ଅମର ହୁଏ ।

ବିଧାତାଙ୍କର କି ରମଣୀୟ ସୃଷ୍ଟି ଏଇ ପ୍ରେମ ସତେ ! ଯଦି ପ୍ରେମ ନ ଥାନ୍ତା, ତେବେ ସାରା ସୃଷ୍ଟି ପାଲଟି ଯାଇଥାନ୍ତା ମରୁଭୂମି । ଏଇ ପ୍ରେମ ପୁଣି ଏମିତି ଯେ ଯେତେ ଦେଲେ ସରେ ନାହିଁ । ଆହୁରି ଦେବାକୁ ଇଚ୍ଛା ହୁଏ । ଏହି ଦାନ ଯେତେ କଠିନ ଥାଏ, ସେତେ ଅଧିକ ସାର୍ଥକ ଥାଏ ପ୍ରେମ । ପ୍ରେମର ଜନ୍ମ କେବଳ ଦେବାପାଇଁ, ପ୍ରତିଦାନରେ କିଛି ନେବାପାଇଁ ନୁହେଁ । ପୁଣି ପୁରୁଷ ଓ ନାରୀ ମଧ୍ୟରେ ପ୍ରେମ । ଅତି ବିଚିତ୍ର ଓ ଅଦ୍ଭୁତ ସେ । ସ୍ୱଭାବଜ ହେଲେ ବି ହଠାତ୍ ଆସେ ନାହିଁ । ବୀଜ ମଧ୍ୟରେ ଅଙ୍କୁରଟି ଥାଏ ସୁପ୍ତ ଓ ଲୁକ୍କାୟିତ ଭାବରେ । ଉପଯୁକ୍ତ ପାଣି, ପବନ ଓ ଉତ୍ତାପର ପରଶ ପାଇଲେ ହିଁ ତାହାର ଉଦ୍‌ଗମ ହୁଏ ଓ ତାହା ଧୀରେ ଧୀରେ ବଢ଼ି ହୁଏ ବୃକ୍ଷରେ ପରିଣତ । ମଣିଷ ଜୀବନରେ ଠିକ୍ ସେମିତି ଉପଯୁକ୍ତ ସମୟ ଆସିଲେ ହୁଏ ସେଇ ପ୍ରେମର ଉଦ୍‌ଗମ । ନାରୀ ପୁରୁଷକୁ ପ୍ରେମ କରେ ଏବଂ ପୁରୁଷ ନାରୀକୁ । ମୋ' ଜୀବନରେ ସେହି ସମୟ ଆସିଯାଇଥିଲା । ମୁଁ ଯୁବକ ହୋଇଯାଇଥିଲି ଯଦିଓ ମୋର ପ୍ରେମାସ୍ପଦ କିଏ ସେ ବିଷୟରେ ଥିଲି ସମ୍ପୂର୍ଣ୍ଣ ଅଜ୍ଞ ।

ପ୍ରକୃତରେ ମୁଁ ଏ ପର୍ଯ୍ୟନ୍ତ କୌଣସି ନାରୀକୁ ପ୍ରେମ କରି ନ ଥିଲି । କାହାରି କବରୀ-କୁସୁମର ଗନ୍ଧକୁ ଆଘ୍ରାଣ କରି ନ ଥିଲି । କେହି ମଧ୍ୟ ମତେ ନିଜର ବୋଲି ଭାବି ପଲକର ଛାଇତଳେ ଚିରଦିନ ରଖିବାପାଇଁ ହୋଇ ନ ଥିଲା ଉଦ୍‌ବିଗ୍ନା । ପରାକ୍ରମର ସାଗରରେ ଅବଗାନ କରିଥିବା ମୋର ସାରା ତନୁ ଯେମିତି ଥିଲା ଅସ୍ୱାଦ୍ୟ ଲବଣାକ୍ତ । କଳ୍ପନାରେ ହେଲେ ବି ଆଜି ପ୍ରେମର ମଧୁର ଜଳର ପରଶ ପାଇ ତାହା ଯେମିତି ହଠାତ୍ ହରାଇ ବସିଲା ଲବଣିମା ଓ ଧରି ରଖିଲା ଏକ ସୁସ୍ୱାଦ୍ୟ ମଧୁରିମା । ଆଃ ! କି ବିଚିତ୍ର ଏ ଅନୁଭୂତି ! କି ସ୍ୱାଦ୍ୟ ଓ ହୃଦ୍ୟ ! କି ମଧୁର ସୁଗନ୍ଧିରେ ଉଚ୍ଛଳ !

ଏହିଭଳି ଏକ ମନଃସ୍ଥିତିରେ ଆକୁଳିତ ଥିବା ଅବସ୍ଥାରେ କିଛି ସମୟ ପରେ ଉଠିଲି ଏବଂ ଚାଲିଲି ମୋ' ଯାତ୍ରାପଥରେ । ହସ୍ତିନାପୁରକୁ ନା ଆଉ କେଉଁଠାକୁ ଜାଣିପାରୁ ନ ଥିଲି । ଆପେ ଆପେ ମନ ଯୁଆଡ଼କୁ ଟାଣୁଥିଲା ଧାଉଁଥିଲି ସେହି ଦିଗକୁ କି ଏକ ମୁଗ୍ଧ ଆବେଗ ଧରି । ସତେଯେମିତି କ'ଣ ଗୋଟାଏ ଖୋଜି ଖୋଜି ।

କ'ଣ ଖୋଜୁଛି ? କାହାକୁ ବା ଖୋଜୁଛି ? ଏଭଳି ବିଫଳ ପ୍ରଶ୍ନ ନିଜକୁ ନିଜେ ପଚାରୁଥିଲି ବାରମ୍ବାର । କିନ୍ତୁ କିଛି ହେଲେ ଉତ୍ତର ପାଉ ନ ଥିଲି । ବନାଶ୍ରମର ଶ୍ୟାମଳ ହୋମାନଳରେ ଖାଲି ଯାହା ଜଳିଉଠୁଥିଲା ମୋ' ଆକୁଳ ମନଃପ୍ରାଣ । ମୋର କ'ଣ କେହି ଜଣେ ସାଥୀ ଅଛି ? ଯଦି ଅଛି, ତେବେ ସେ କିଏ ? କ'ଣ ନାଁ ତା'ର ? ଅଛି କେଉଁଠି ? ଧୂସର ଅପରାହ୍ଣକୁ ବିଧୁରାୟିତ କରିଦେଇ ସତେ କ'ଣ କିଏ ମୋ' ଲାଗି ଛାଡୁଛି ଦୀର୍ଘଶ୍ୱାସ ?

ସତେ ଏଭଳି କ'ଣ କିଏ ଜଣେ ଅଛି ?

ଝରା ଶେଫାଳୀରେ ଛାଡିଥରା ଦୀର୍ଘଶ୍ୱାସ ସତେ ଯେମିତି ମୋ' କାନେ କାନେ ଗୋପନରେ କହିଯାଉଥିଲା – ହଁ ଗୋ ହଁ । ଜଣେ ଅଛି, ନିଶ୍ଚୟ ଅଛି ।

## ତିରିଶ

ଦୀର୍ଘପଥର ଯାତ୍ରା । ତୀବ୍ର ଗତିରେ ଛୁଟି ଚାଲିଥାଏ ମୋ' ଦ୍ରୁତଗାମୀ ଅଶ୍ୱ । ଯାତ୍ରାର ଅଧିକାଂଶ ଭାଗ ଅରଣ୍ୟସଂକୁଳ । କଦବା କେଉଁଠି ପଡ଼େ ଜନବସତି । ଗ୍ରାମରୁ ଗ୍ରାମାନ୍ତର ଅତିକ୍ରମ କରିବାର ପଥ ପ୍ରାୟ ନିର୍ଜନ ଓ ଦୀର୍ଘ । କେଉଁଠି କେମିତି ଗ୍ରାମକୁ ଗ୍ରାମ ଲାଗିଥାଏ । ପଥଦସ୍ୟୁମାନଙ୍କର ଆତଙ୍କ ବି କିଛି କମ୍ ନ ଥାଏ । ସବୁ ବାଧା-ବିଘ୍ନକୁ ଅତିକ୍ରମ କରି ଛୁଟି ଚାଲିଥାଏ ମୁଁ ଉଚ୍ଚକିତ ମନ ଧରି । ମଝିରେ ମଝିରେ ପାନ୍ଥଶାଳାମାନଙ୍କରେ ଅଥବା ବୃକ୍ଷଛାୟା ତଳେ ବିଶ୍ରାମ । ବିଶ୍ରାମ ପରେ ପୁଣି ଯାତ୍ରା । କଳିଙ୍ଗ, ଅଙ୍ଗ, ମତ୍ସ୍ୟ, ବଙ୍ଗ ଆଦି ଦେଶ ଅତିକ୍ରମ କଲି । ବଙ୍ଗଦେଶରୁ ଉତ୍ତର-ପଶ୍ଚିମ ଦିଗକୁ ପଡ଼ିଛି ହସ୍ତିନାପୁରକୁ ଯିବାର ରାଜପଥ । ଆଉ ଗୋଟିଏ ପଥ ପୂର୍ବମୁଖୀ । ତାହା ଲମ୍ବିଯାଇଛି ମଗଧ ଆଡ଼କୁ । କେଜାଣି କାହିଁକି ମନ ମୋର ଟାଣି ହୋଇଗଲା ପୂର୍ବଦିଗକୁ । ହସ୍ତିନାପୁରର ରାଜପଥକୁ ଛାଡ଼ିଦେଇ ପୂର୍ବଦିଗର ରାଜପଥକୁ ଧରିଲି । ନିଷଧ ରାଜ୍ୟକୁ

ଅତିକ୍ରମ କରି ଅଙ୍ଗରାଜ୍ୟରେ ପ୍ରବେଶ କଲି ଏବଂ ସେଠାରୁ ଉତ୍ତରମୁଖୀ ହୋଇଗଲି ବିଦେହ ଆଡ଼େ ।

ଅପରାହ୍ଣ ଗଡ଼ି ଯାଇଛି । ଗୋଧୂଳି ଲଗ୍ନ । ସୂର୍ଯ୍ୟରଶ୍ମି ନିଷ୍ପ୍ରଭ-ମଳିନ । ସୂର୍ଯ୍ୟାସ୍ତ ତଥାପି ଡେରି । ଏତିକିବେଳେ ଯାଇ ପହଞ୍ଚିଲି ସଦାନୀରା ଗଣ୍ଡକର ତୀରଦେଶରେ । ସ୍ଥାନଟି ସହିତ ମୋର ପୂର୍ବପରିଚିତି ଥିଲା । ତାହା ମୋ' ମାମୁଘର ଗାଁ । ଅନେକଥର ପିଲାଦିନେ ସେଠାକୁ ଆସିଛି । କେତେବେଳେ ମାଆଙ୍କ ସାଙ୍ଗରେ ତ କେତେବେଳେ ବାପାଙ୍କ ସାଙ୍ଗରେ । ଥରେ-ଦୁଇ ଥର ଏକାକୀ ବି ଆସିଛି । ବଡ଼ ବିଚିତ୍ର ଏ ଗାଁଟିର ନାଁ, ବିଦେଘପ୍ରସ୍ଥ । ରାଜଧାନୀ ମିଥିଳାଠାରୁ ଜମା କୋଶେ ଦୂର । ବଡ଼ବଡ଼ିଆମାନେ କହନ୍ତି, ଗାଁଟିର ଏଭଳି ନାମକରଣ ମୂଳରେ ଅଛି ଏକ ଗୌରବମୟ ଇତିହାସ । ହଜାର ହଜାର ବର୍ଷ ତଳେ ଘଟିଥିବା ଏକ କାହାଣୀ । ବିଦେଘମାଥବ ବୋଲି ଥିଲେ ଜଣେ ଆର୍ଯ୍ୟ ରାଜା । ସେ କୁଆଡ଼େ ସରସ୍ୱତୀ ନଦୀତୀରରୁ ଅଗ୍ନିଦେବଙ୍କୁ ଆଣି ଗଣ୍ଡକତୀରରେ କରିଥିଲେ ସଂସ୍ଥାପିତ ଆଉ କରିଥିଲେ ଗୋଟିଏ ବିରାଟ ଯଜ୍ଞର ଆୟୋଜନ ଯାହାର ମୂକ ସାକ୍ଷୀ ହୋଇ ରହିଛି ଏକ ବେଦୀର ଅବଶେଷ । ବେଦୀର ଚିହ୍ନ-ବର୍ଣ୍ଣ ତ ନାହିଁ । ଅଛି କେବଳ ମୃଣ୍ମୟ ସ୍ତୂପଟିଏ ମାତ୍ର । ଯଜ୍ଞବେଦୀ ବୋଲି ଲୋକେ କହନ୍ତି । ଏହା ସେତିକିବେଳର କାହାଣୀ ଯେତେବେଳେ ଆର୍ଯ୍ୟମାନେ ମୂଳଭୂମି ସପ୍ତସିନ୍ଧୁ ଅଞ୍ଚଳକୁ ଛାଡ଼ି କ୍ରମେ କ୍ରମେ ଅତିକ୍ରମ କରୁଥିଲେ ପୂର୍ବ ଦିଗକୁ । ସେହି ସ୍ୱନାମଧନ୍ୟ ରାଜାଙ୍କ ନାମ ଅନୁସାରେ ରାଜ୍ୟଟିର ନାମ ହୋଇଛି ବିଦେହ ଓ ଗ୍ରାମଟିର ନାମ ବିଦେଘପ୍ରସ୍ଥ । ଆମ ଚମ୍ପାପୁର ଭଳି ଏଇଟି ଗୋଟିଏ ବଡ଼ ସୂତଗ୍ରାମ । ପ୍ରାୟ ଦୁଇଶହ ସୂତ ପରିବାର ରହନ୍ତି । ଅତି ଅଳ୍ପ କେତେ ଘର ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ପରିବାର । ବାପାଙ୍କଠାରୁ ଶୁଣିଛି ଆମର କେହି ଜଣେ ପୂର୍ବଜ କୁଆଡ଼େ ଏହି ଗାଁରୁ ଯାଇ ପ୍ରଥମେ ଚମ୍ପାପୁରରେ ବସତି ସ୍ଥାପନ କରିଥିଲେ । ଏହାରି ମାଟି, ଏହାରି ପାଣି ପବନ ସହିତ ତେଣୁ ଆମର ନାଭିଗତ ସମ୍ବନ୍ଧ !

ମନ ମୋର ଆପେ ଆପେ ମତେ ଟାଣି ଆଣିଥିଲା ଏଇ ଗାଁକୁ । ଶୈଶବ-କୈଶୋର ଦିନଗୁଡ଼ିକର ଚିରପରିଚିତ ଏଇ ଗାଁକୁ । ହସ୍ତିନାପୁର ରାସ୍ତାକୁ ଛାଡ଼ି ଦେଇଥିଲି । ଜାଣିଶୁଣି କିନ୍ତୁ ନୁହେଁ । ବରଂ ଅବଚେତନ ମନର କେଉଁ ଏକ ସୁପ୍ତ ଅନୁପ୍ରେରଣାଦ୍ୱାରା ନିର୍ଦ୍ଦେଶିତ ହୋଇ । ସେତେବେଳେ ମୋର ହସ୍ତିନାପୁରକୁ ଯିବାର ଦୃଢ଼ ନିଷ୍ପତ୍ତି ପାଣିଫୋଟକା ଭଳି ମିଳାଇଯାଇଥିଲା କାହାର ଅଜଣା ନିର୍ଦ୍ଦେଶରେ । ଅଥବା କାହାର ଦୃଢ଼ ଆକର୍ଷଣ ଶକ୍ତିବଳରେ !

ଗାଁମୁଣ୍ଡରେ ବିରାଟ ଏକ ଆମ୍ବତୋଟା । ଚିର ପରିଚିତ ମୋର । ଅନେକ ଥର ଏଇଠି ଖେଳାଖେଳି କରିଛି ମାମୁଘର ଗାଁର ସାଥୀପିଲାମାନଙ୍କ ସହିତ । ତିନି ପଟକୁ ଘେରାଇ ରଖିଛି ତୀବ୍ରସ୍ରୋତା ଗଣ୍ଡକ ନଦୀ । ନୀଳ ଜଳବେଣୀର ଖଳ ଖଳ ପ୍ରବାହ । ଜଣାପଡୁଛି ଥର ଥର କମ୍ପିତ ରମଣୀକଣ୍ଠର ଇନ୍ଦ୍ରନୀଳମଣିର ମାଳାଟିଏ ଯେମିତି । ଘୋଡ଼ାର ଲଗାମକୁ ହଠାତ୍ ଟାଣିଦେଲି ଜୋର୍ କରି । ସେ ଅଟକିଗଲା । ଚାରିଆଡ଼କୁ ଚାହିଁନେଲି ନିରୀକ୍ଷକ

ଦୃଷ୍ଟିରେ । ତା' ପିଠରୁ ଓହ୍ଲାଇ ଚାଲି ଚାଲି ଆଗେଇଲି । ମାମୁଘର ଗାଁର ଶେଷ ମୁଣ୍ଡରେ । ଅଳ୍ପ ଦୂରରେ ମାତ୍ର ।

ଦୁଇ-ଚାରି ପାଦ ଆଗେଇଛି କି ନାହିଁ ହୋଇଗଲି ସ୍ତମ୍ଭିତ । ଶୁଣିଲି କାହାର ଆର୍ତ୍ତ ଚିତ୍କାର, 'ରକ୍ଷାକର ! ରକ୍ଷାକର !' ସ୍ୱର ବାରିଲି । ତାହା ଥିଲା ଏକ ବିପନ୍ନା ନାରୀର ସ୍ୱର । ସଙ୍ଗେ ସଙ୍ଗେ ଘୋଡ଼ାରେ ବସି ଧାଇଁଲି ସେହି ଦିଗକୁ । ଦେଖିଲି, ଜଣେ ସଶସ୍ତ୍ର ଲୋକ ଘୋଡ଼ାରେ ବସି କୌଣସି ଏକ ନାରୀକୁ ଅପହରଣ କରିନେଉଛି । ତା'ର ଆଗରେ ଓ ପଛରେ ସହାୟତା ଦେବାଲାଗି ଆଉ ଦୁଇ ଜଣ ସଶସ୍ତ୍ର ଲୋକ ଘୋଡ଼ା ଛୁଟାଇ ଚାଲିଛନ୍ତି । ଆଖ-ପାଖ ଜନମାନବଶୂନ୍ୟ । ଗାଁର ଜନବସତି ଏତେ ପାଖରେ ଥାଇ କିପରି ଏତିକିବେଳୁ ଜାଗାଟି ଏପରି ନିର୍ଜନ ହୋଇଯାଇଛି ବୁଝିପାରୁ ନ ଥାଏ । ଏଭଳି ପରିସ୍ଥିତିରେ ବିଚାରୀ ଅସହାୟା ନାରୀଟି ଆତ୍ମରକ୍ଷା ଲାଗି ବାରମ୍ବାର କରୁଥାଏ ବିଫଳ ଆର୍ତ୍ତ ଚିତ୍କାର । ଆମ୍ବତୋଟାର ପ୍ରତିଟି ପଲ୍ଲବ ଧରି କରୁଣିମାର ଏକ ଗୁଞ୍ଜରଣ !

ନିମିଷକରେ ଠିକ୍ କରିନେଲି କର୍ତ୍ତବ୍ୟ । ଘୋଡ଼ାର ଗତିକୁ ବଢ଼ାଇଦେଲି । ଅପହର୍ତ୍ତା ତିନିଜଣଙ୍କ ପାଖରେ ପହଞ୍ଚିଗଲି କେତୋଟି ମାତ୍ର ମୁହୂର୍ତ୍ତରେ । ସେମାନଙ୍କ ପଥରୋଧ କରି ଘୋଡ଼ା ପିଠିରେ ବସିଥିବା ଅବସ୍ଥାରେ ହିଁ ଡାକ ଦେଲି, ''ରହିଯାଅ । ଆଉ ପାଦେ ଆଗେଇଲେ ମୋ' ଶାଣିତ ଖଡ଼୍‌ଗରେ ମୁଣ୍ଡ-ଗଣ୍ଡି ଅଲଗା କରିଦେବି ।'' ଆଖିରେ ମୋର କ୍ରୋଧର ଅଗ୍ନି-ସ୍ଫୁଲିଙ୍ଗ । ଉତ୍ତୋଳିତ ହସ୍ତରେ ଉଦ୍ୟତ କୃପାଣ । ଏଭଳି ଅପ୍ରତ୍ୟାଶିତ ଅବରୋଧ ଲାଗି ପ୍ରସ୍ତୁତ ନ ଥିଲେ ସେମାନେ ଯେମିତି । ସେମାନଙ୍କ ହୃଦୟ ଏଇ ଆକସ୍ମିକତାରେ ଚକିତ-ବିମୂଢ଼ । ଗତି ସ୍ତବ୍ଧ । କିନ୍ତୁ କ୍ଷଣକପାଇଁ ମାତ୍ର । ମଧ୍ୟଭାଗରେ ଥିବା ଅପହର୍ତ୍ତାଜଣକ ବୋଧହୁଏ ସେମାନଙ୍କ ନେତା । ଅଧିକ ବୀର ଓ ସାହସୀ ଜଣା ପଡୁଥାଏ । ମୁହୂର୍ତ୍ତକର ବିମୂଢ଼ ଭାବ ଚାଲିଯିବା ପରେ ସେ ଆଗକୁ ମାଡ଼ିଆସିଲା । ମୋର ମୁହାଁ-ମୁହିଁ ହୋଇ ପଚାରିଲା, ''କିଏ ରେ ତୁ ଅର୍ବାଚୀନ ଯୁବକ ?''

''ତୋର ଯମ ।'' ଦୃପ୍ତ କଣ୍ଠରେ ଉତ୍ତର ଦେଲି । ସାରା ଅଙ୍ଗ ମୋର ଥରି ଉଠୁଥାଏ କ୍ରୋଧ ଓ ଘୃଣାରେ । ଛି ! ଛି ! ନିରୀହ ଅସହାୟା ଅବଳା ପ୍ରତି ପୁଣି ଏଭଳି ଅତ୍ୟାଚାର ! ନୀତି-ଅନୀତିର୍ ବିଚାର କ'ଣ ନାହିଁ ଏ ସଂସାରରେ ? ପାପପୁଣ୍ୟର ପ୍ରଭେଦ କ'ଣ କୁଆଡ଼େ ଉଭେଇ ଗଲା ? କେଉଁ ରାଜାଙ୍କର କେଉଁ ଶାସନ ବା ଚାଲିଛି ଏଠି ? ନାରୀମାନଙ୍କୁ ନ୍ୟୂନତମ ସୁରକ୍ଷା ଦେବାର ବ୍ୟବସ୍ଥା ବି ନାହିଁ । କାହିଁ ବିଦେହର ସେହି ଅତୀତ ପ୍ରଶାସନ ଯେତେବେଳେ ରାଜା ଜନକ ସ୍ୱକନ୍ୟା ସୀତାଙ୍କ ଗୌରବରକ୍ଷା କରିବାକୁ ଯାଇ ଏକାଧିକ ରାଜାଙ୍କ ଦ୍ୱାରା ନିଜ ରାଜଧାନୀକୁ ଶତ୍ରୁକବଳରୁ ରକ୍ଷା କରିଥିଲେ ? ଏଥିରେ ତ ଖାଲି ନିଜ କନ୍ୟାର ସୁରକ୍ଷା ନିହିତ ନ ଥିଲା; ବରଂ ଥିଲା ସମଗ୍ର ନାରୀଜାତିର ସୁରକ୍ଷା । ଅଥଚ ସେଇ ବିଦେହରାଜ୍ୟରେ ଆଜି ଏ କି ଅବକ୍ଷୟ ! ତାଙ୍କ ଦାୟାଦମାନଙ୍କର ଏ କି ଦୁର୍ବଳତା ! ଏଇ ଚିନ୍ତା ଆକ୍ରମଣକାରୀ ଦସ୍ୟୁ ପ୍ରତି ମୋର ଯେତିକି କ୍ରୋଧ ଓ ଘୃଣାଭାବ ସୃଷ୍ଟି କରାଉ ନ ଥାଏ, ତାହାଠାରୁ ଅଧିକ ସୃଷ୍ଟି କରାଉଥାଏ ବର୍ତ୍ତମାନର

ବିଦେହ-ପ୍ରଶାସନ ପ୍ରତି । ଉନ୍ନତି-ଅବକ୍ଷୟର ଚକ୍ରଟି ବାସ୍ତବିକ ଅତି ଦାରୁଣ ଠିକ୍ ସମୟର ଚକ୍ର ଭଳି । କେତେବେଳେ ଗଢ଼ା ଚାଲିଥାଏ ତ ଆଉ କେତେବେଳେ ଭଙ୍ଗା ଚାଲିଥାଏ । ଏଇ ଭଙ୍ଗାଗଢ଼ାର ପ୍ରକ୍ରିୟା ମଧ୍ୟରେ ମଣିଷ ବିଚରା ଚୂରିହୋଇ ଯାଉଥାଏ । ସମାଜର ବ୍ୟବସ୍ଥାରେ ପେଷିହୋଇ ଯାଉଥାଏ । ଖାଲି ଯାହା ଦରମଲା ଅତୀତର ସୁକୁ ସୁକୁ ନିଃଶ୍ୱାସ ଛୁଟୁଥାଏ ହାହାକାରର ଗୁଞ୍ଜନ ଖେଳାଇଦେଇ !

ମୋ' ପ୍ରତ୍ୟୁତ୍ତର ଅସହ୍ୟ ହୋଇଉଠିଲା ଅପହର୍ତ୍ତା ନେତା ନିକଟରେ । ଗୋଟିଏ ହାତରେ ନାରୀଟିକୁ ଜାବୁଡ଼ି ଧରି ଅନ୍ୟ ହାତରେ ମୋ' ଉପରେ କଲା ଖଡ୍‌ଗପ୍ରହାର । ସଦର୍ପରେ ହସି ହସି ଦେଖାଇଦେଲି ତାକୁ ଛାତି । ଖଡ୍‌ଗର ଶାଣିତ ଧାର ଛାତିରେ ବାଜି ଟାଇଁ ଟାଇଁ ଶବ୍ଦ ହେଲା ସିନା, ମୋର କିଛି ହେଲା ନାହିଁ । ମୋ' ଅଭେଦ୍ୟ କବଚକୁ ଫୁଟାଇ ଦେବାର ଶକ୍ତି ଖଡ୍‌ଗର ବା କାହିଁ ? ତିନିଜଣଯାକ ମିଶି ମୋ' ଉପରେ ଆଘାତ ଉପରେ ଆଘାତ କଲେ । ସବୁ କିନ୍ତୁ ନିଷ୍ଫଳ । ମୁଁ ଖାଲି ହସୁଥାଏ ଠୋ ଠୋ ହୋଇ । ଚକିତ ବିସ୍ମୟରେ ଚାହିଁ ରହିଥାନ୍ତି ସେମାନେ ।

''ଏଇ ନେ ତୋ' ଆଘାତର ଉତ୍ତର ।'' ଏହା କହି ଖୁବ୍ ଜୋରରେ ତା'ର କାନ୍ଧକୁ ଲକ୍ଷ୍ୟ କରି କଲି ଖଡ୍‌ଗାଘାତ । ସେଇ ଗୋଟିଏ ମାତ୍ର ଆଘାତ ଥିଲା ଯଥେଷ୍ଟ । ତା'ର ଦକ୍ଷିଣହସ୍ତଟି ହେଲା ସ୍କନ୍ଧ-ଚ୍ୟୁତ ।

''ଓଃ !'' କ୍ଷତସ୍ଥାନଟିକୁ ଉତ୍ତରୀୟଟିରେ ଚାପିରଖି ବିକଳ ଆର୍ତ୍ତଚିତ୍କାର କରିଉଠିଲା ସେ । ନାରୀମୂର୍ତ୍ତିକୁ ଧରିରଖିଥିବା ହସ୍ତବନ୍ଧନ ଆପେ ଆପେ ହୋଇଗଲା ଶିଥିଳ । ସେ ଏବେ ସଂପୂର୍ଣ୍ଣ ମୁକ୍ତ ହୋଇ ଭୂମିରେ ଦଣ୍ଡାୟମାନା ।

ଏତିକିରେ ସବୁ ଶେଷ । ଅପହରଣ ନାଟକର ପରିସମାପ୍ତି । ତିନିଜଣଯାକ ଅପହର୍ତ୍ତା ଆତଙ୍କିତ ଅବସ୍ଥାରେ ଏଭଳି ପ୍ରତ୍ୟାକ୍ରମଣ ଆଶା କରି ନ ଥିଲେ ମୋ'ଠାରୁ । ପ୍ରାଣରକ୍ଷା ଲାଗି ତୁରନ୍ତ ପଳାଇଗଲେ ସେଇ ଜାଗା ଛାଡ଼ି । ସେମାନଙ୍କ ଘୋଡ଼ାମାନଙ୍କ କ୍ଷୁରାଘାତରେ ଉଡୁଥିବା ଧୂଳିପଟଳ ଯାହା କିଛି ସମୟ ପାଇଁ ଦେଖାଯାଉଥିଲା ପଛେ ପଛେ । ସେମାନେ କିନ୍ତୁ କ୍ରମେ ଅବଲୀନ ହୋଇଗଲେ ଦୂର ଦିଗ୍‌ବଳୟର ଅନ୍ତରାଳରେ ! ଧୀରେ ଧୀରେ ଧୂଳିପଟଳ କି ଶାନ୍ତ ।

ପରେ ଅନୁସନ୍ଧାନ କରି ବୁଝିଲି ଏମାନଙ୍କର ବୃତ୍ତି କୁଆଡ଼େ ଏମିତି ନାରୀ ଅପହରଣ କରିବା । ଏହାହିଁ ଜୀବନଧାରଣର ଅବଲମ୍ବନ । ସୁନ୍ଦରୀ ଯୁବତୀ ଦେଖି ଅପହରଣ କରନ୍ତି । ନାରୀ- ବ୍ୟବସାୟୀମାନଙ୍କୁ ବିକନ୍ତି ମୋଟା ଅଙ୍କରେ । ଏମାନଙ୍କ ବିକା-କିଣା ବେଶି ଚାଲେ ଉତ୍ତରକୁରୁର ଦାସହାଟରେ କିମ୍ବା ସାକେତର ଗଣିକାମାର୍ଗରେ । ଦାସହାଟର ବିଚିତ୍ର ବ୍ୟବସ୍ଥା । ଦାସ ବ୍ୟବସାୟଠାରୁ ଦାସୀ ବ୍ୟବସାୟ ଏଠି ବେଶି ଚଳେ । ବିପତ୍ନିକ ବ୍ୟକ୍ତିମାନେ ସାଧାରଣତଃ ଏଇଠୁ ସହଜରେ ବାଛିନିଅନ୍ତି ପତ୍ନୀ । ଗାଈ-ଗୋରୁ କିମ୍ବା ଅନ୍ୟାନ୍ୟ ପଶୁମାନଙ୍କ ଭଳି ଚାଲେ ଏମାନଙ୍କ ବିକାକିଣା । ବେଳେ ବେଳେ ତାହାଠାରୁ ବି ଆହୁରି ହୀନ । ନାରୀ ନିଷ୍ପ୍ରାଣ ପଣ୍ୟ ଦ୍ରବ୍ୟ ଯେମିତି । କିଛି କିନ୍ତୁ ଗୋପନରେ ନୁହେଁ ।

ବରଂ ସମସ୍ତଙ୍କ ଆଗରେ ପ୍ରକାଶ୍ୟରେ । ସମାଜର ସ୍ୱୀକୃତିରେ । ରାଜକର୍ମଚାରୀମାନଙ୍କୁ ମୋଟା ଅଙ୍କର ଶୁଳ୍କ ଦେଇ । ଆଉ ସାକେତର ଗଣିକାମାର୍ଗ କଥା । ତାହା ତ ଆହୁ ଭୟାନକ । ଆହୁରି ଅମାନୁଷିକ । ନାଗରିକମାନଙ୍କର କିମ୍ବା ଦୂର ଦେଶରୁ ଆସିଥିବ ସାର୍ଥବାହମାନଙ୍କର ଦେହର କ୍ଷୁଧା ମେଣ୍ଟାଇବାପାଇଁ ଏମାନେ ହୁଅନ୍ତି ନିୟୋଜିତ । କିଶୋରୀ ଜୀବନର ସରଳ-ତରଳ ଆଶା ଆକାଙ୍‌କ୍ଷା ମିଳାଇଯାଏ । ଯୁବତୀଜୀବନର ସ୍ୱପ୍ନ ତୁଟିଯାଏ । କାହାର ଯଦି କେହି ମନର ମଣିଷ ଥାଆନ୍ତି, ତେବେ ତାଙ୍କୁ ପାଇବା ହୁଏ ସାତ ସ୍ୱପ୍ନ । ଅନ୍ୟମାନଙ୍କୁ ସୁଖ ଦେଇ ନିଜେ ଜଳିଯାଆନ୍ତି ଏମାନେ ସଳିତା ପରି । ଲୋକମାନଙ୍କୁ ନିଶିଯାପନର ଏଇ ଯେଉଁ ସୁଖ ମିଳେ, ସେଥିପାଇଁ ନଗରୀଟିର ନାମ ପ୍ରସିଦ୍ଧି ଲାଭକରେ ସାୟଂକେତ ବୋଲି । ହଁ, ସାୟଂକେତ । ସଂଧ୍ୟାଯାପନର ଉପଯୁକ୍ତ ସ୍ଥାନ । ରମ୍ୟ ଆଳୟ । ଏଇ 'ସାୟଂକେତ' ନାଁରୁ କ୍ରମେ କ୍ରମେ ଭଦ୍ର ନାଁଟିଏ ବାହାରେ 'ସାକେତ' ବୋଲି । ପାପ, ଅନ୍ୟାୟ, ଅତ୍ୟାଚାର ଆଦିକୁ ଘୋଡ଼ାଇ ରଖିବାର ଏକ ଭଦ୍ର ଖୋଳ । ବାସ୍ତବିକ ଏବର ଏଇ କ୍ଷୟିଷ୍ଣୁ ସାମାଜିକ ବ୍ୟବସ୍ଥାରେ ସବୁ କିଛିର ଏମିତି ଗୋଟିଏ ଗୋଟିଏ ଭଦ୍ର ଖୋଳ ମିଳେ ଦେଖିବାକୁ । ମହାକାଳ ଫଳ ବାହାରକୁ ସୁନା ଭଳି ଜକ ଜକ । ଭିତରଟା ଖାଲି ଅଙ୍ଗାର ଓ ଅଙ୍ଗାର ! ଏ ଛଳ ସଂସ୍କୃତି, ଛଳ ସଭ୍ୟତା କେତେ ଦିନ ଧରି ଚାଲିବ କେଜାଣି ? ଏଇ ବ୍ୟବସ୍ଥାମାନଙ୍କ କଥା ଯେତେ ଭାବୁଥିଲି, ଯୁବକ ମନ ମୋ'ର ସେତେ ବିଦ୍ରୋହୀ ହୋଇଉଠୁଥିଲା । ଭାବୁଥାଏ, ଯଦି କୌଣସି ମହାବାଣର ପ୍ରୟୋଗରେ ଏଇ ବ୍ୟବସ୍ଥାମାନଙ୍କୁ ନଷ୍ଟ କରିଦେଇହୁଅନ୍ତା, ତେବେ ସର୍ବପ୍ରଥମେ ସେଇ ବାଣଟିର ପ୍ରୟୋଗ କରନ୍ତି ମୁଁ । ଯୁବରକ୍ତ ମୋର ଖାଲି ଯାହା ବିଫଳ ଭାବରେ ଫୁଟିଉଠୁଥିଲା ଟକ ମକ ହୋଇ !

ଧେତ୍ ! ନାରୀଜଣକର କଥା କହୁ କହୁ ବୁଲିଆସିଲିଣି କେତେ ଆଡ଼େ । କହି ବସିଲିଣି କେତେ କଥା । ଏବେ ପୁଣି ଫେରିଯାଉଛି ପୂର୍ବ ସ୍ଥିତିକୁ । ମୋର ଦରକୁହା କାହାଣୀକୁ ।

ଅପହର୍ତ୍ତା ଦସ୍ୟୁମାନେ ଚାଲିଯାଇଛନ୍ତି । ନାରୀଜଣକ ଏବେ ସଂପୂର୍ଣ୍ଣ ମୁକ୍ତ । ତଥାପି ଥରୁଥାନ୍ତି ଭୟରେ । ବିମୂଢ଼ଭାବ ତଥାପି ଆଚ୍ଛନ୍ନ କରି ରଖିଥାଏ ତାଙ୍କୁ । ଛିନ୍ନ-ଭିନ୍ନ କେଶବାସକୁ ସଂଯତ କରୁଥିବା ଅବସ୍ଥାରେ ଲୁହ ଢାଳି ଢାଳି ଠିଆ ହୋଇଥାନ୍ତି ଅବନତ ଶିରରେ ।

''ଦେବି ! ତୁମେ ଏବେ ସଂପୂର୍ଣ୍ଣ ମୁକ୍ତ । ଆଉ କୌଣସି ବିପଦ ନାହିଁ । ଭୟ କର ନାହିଁ । କହ, କେଉଁଠି ନେଇ ଛାଡ଼ିଦେଇଆସିବି ?''

ଲୁହଭରା ମୁହଁଟିକୁ ଟେକିଲେ ସେ । ଆଖିରେ ଛଳ ଛଳ ଢଳ ଢଳ ସକରୁଣ ଚାହାଣି । କୃତଜ୍ଞତାରେ ସମୁଜ୍ଜ୍ୱଳ । ଓଷ୍ଠାଧର ବି ଥର ଥର । କିଛି କହିବାକୁ ଚେଷ୍ଟା କରୁଥାନ୍ତି । କିନ୍ତୁ କହିପାରୁ ନ ଥାନ୍ତି । ଅର୍ଦ୍ଧଚେତନା ଓ ଅର୍ଦ୍ଧମୋହରେ ପୀଡ଼ିତା ଯେମିତି । ଲୁହବୁହା କଜଳରେ ବୋଳି ହୋଇଥିଲେ ବି ସୁନ୍ଦର ଟଟ୍ଟୁଳ ମୁହଁଟି ଦିଶୁ ନ ଥାଏ ସେତେଟା ବିଶ୍ରୀ । ନାରୀ ଜଣେ ସୁନ୍ଦରୀ ତରୁଣୀ ନିଶ୍ଚୟ ।

ତାଙ୍କ ଆଖିରେ ଆଖି ପଡ଼ିବା ମାତ୍ରେ ହଠାତ୍ କି ଏକ ଚମକ ପଶିଗଲା ମୋ' ପ୍ରାଣମନରେ । ଉଲ୍ଲାସର ଚମକ । ଖୋଜୁଥିବା ଧନଟି ମିଳିଯାଇଥିବାର ହର୍ଷଭରା ଚମକ । ଆରେ ! ଏ ତ ପଦ୍ମା । ସୂତ ଗତସେନଙ୍କ କନ୍ୟା । ମୋ' ମାମୁଙ୍କ ଘରଠାରୁ ସାତ-ଆଠ ଘର ଛାଡ଼ି ଗତସେନଙ୍କ ଘର । ବାପାଙ୍କ ଭଳି ସେ ବି ଏହି ଗ୍ରାମର ଗ୍ରାମଭୋଜକ ଗ୍ରାମମୁଖ୍ୟ । ଶୈଶବ ଓ କୈଶୋର ଜୀବନର ଛାଇତଳେ କେତେଥର ଏଇ ପଦ୍ମା ସାଥିରେ ଖେଳାଖେଳି କରିଛି । ଏଇ ସାତବର୍ଷ ମଧ୍ୟରେ ଯେ ଏଡୁଟିଏ ହୋଇଗଲାଣି ! ଯୁବତୀ ପାଲଟିଗଲାଣି । ଆଖିକୁ ଜମା ବିଶ୍ୱାସ କରିହେଉ ନାହିଁ । ମନର ସନ୍ଦେହ ତଥାପି ତୁଟି ନ ଥାଏ । ତାହା ମୋଚନ କରିବା ଉଦ୍ଦେଶ୍ୟରେ ପଚାରିଲି, ''ଦେବି ! ତୁମ ନାଁ ପଦ୍ମା ନା ?''

''ହଁ, ହଁ, ପଦ୍ମା । ଆପଣ କେମିତି ଜାଣିଲେ ମୋ' ନାଆଁ ।'' ଚକିତ-ବିସ୍ମୟରେ ମୁହଁ ଟେକି ଉତ୍ତର ଦେଲେ ସେ ଓ ମତେ ପ୍ରତିପ୍ରଶ୍ନ କଲେ ।

''ମତେ ଚିହ୍ନିପାରୁ ନାହିଁ ? ମୋ' ମାମୁଘର ପରା ଏଇ ଗାଁରେ । ଆଉ ମୁଁ....''

''ବସୁ ଭାଇ ନା ?'' ମୋ'ର ଅସଂପୂର୍ଣ୍ଣ ବାକ୍ୟକୁ ପୂରଣ କରିଦେଇ ପଚାରିଲେ ସେ । ଲକ୍ଷ୍ୟ କଲି, ହଠାତ୍ କି ଏକ ମୁଗ୍ଧ ଅନୁଭୂତିରେ ସେ ଯେମିତି ଥରିଉଠୁଛନ୍ତି ଆନନ୍ଦରେ ! ମନରେ ନାହିଁ ଭୟ ଅଥବା ଦ୍ୱନ୍ଦ୍ୱ । ଚିର ପରିଚିତ ଲୋକଜଣକ ପାଖରେ ସୁରକ୍ଷିତା ବୋଧ କରୁଛନ୍ତି ଯେମିତି ।

''ହଁ, ହଁ, ବସୁ ଭାଇ ।'' ମୋର ସଂକ୍ଷିପ୍ତ ଉତ୍ତର । ମତେ ବି କେମିତି କେମିତି ଲାଗୁଥାଏ ଉଲ୍ଲସିତ । ପଦ୍ମା ମୋର ପିଲାଦିନର ଖେଳସାଥୀ । ଦୀର୍ଘଦିନର ପରିଚିତା । କିନ୍ତୁ ମତେ ଲାଗୁଥାଏ, ସେ ଯେମିତି ଆଜି ନୂତନ ବୈଭବ ନେଇ ଠିଆ ମୋ' ଆଗରେ । ଖୁବ୍ ଭଲ ଲାଗୁଥାଏ ମତେ ଏଇ ସାନ୍ନିଧ୍ୟ ଅଳ୍ପ ସମୟପାଇଁ ହେଲେ ବି । ମତେ ଆହୁରି ବି ଲାଗୁଥାଏ ଚିରବାଞ୍ଛିତ ଏଇ ମନର ମଣିଷଟି ଲାଗି ମୁଁ ଯେମିତି ଆଜି ଧାଇଁ ଆସିଛି ଏତେ ଦୂର ! ହସ୍ତିନାପୁରର ରାସ୍ତାକୁ ଆପେ ଆପେ ହୁଡ଼ିବସି ଧରିଛି ଏଇ ବିଦେହରାଜ୍ୟର ରାସ୍ତାକୁ । କିନ୍ତୁ ମନର ଏଇ ଭାବନାକୁ ବ୍ୟକ୍ତ କରିପାରୁ ନ ଥାଏ । ଜାଣି ନ ଥାଏ ପଦ୍ମାଙ୍କ ହୃଦୟରେ ଅନୁରୂପ ଭାବନା ଅଛି କି ନାହିଁ । ବୀର ମୁଁ । ମର୍ଯ୍ୟାଦା ଓ ଶୀଳର ଜ୍ଞାନରେ ପରିଶୀଳିତ । ପଦ୍ମା ଅନୂଢ଼ା ତରୁଣୀ । ଜାଣେନା କାହାଙ୍କ ଭବନକୁ ଉଜାଇଦେବେ ? କାହାଙ୍କ ହାତ ଧରିବେ ? ସଂଭ୍ରମର ବାରମ୍ବାର ଚାବୁକମାଡ଼ରେ ସଂଯତ ହୋଇଉଠୁଥାଏ ମୁଁ । ଏହାକୁ ପାପଚିନ୍ତା ଭାବି ଦୂରେଇ ଦେବାର କରୁଥାଏ ବିଫଳ ଉଦ୍ୟମ । କିନ୍ତୁ ପାରୁ ନ ଥାଏ ।

ବାସ୍ତବିକ ପ୍ରେମ ଏକ ଅଗ୍ନିର ସ୍ଫୁଲିଙ୍ଗ । ସାଧାରଣ ଅଗ୍ନି ଭଳି ମଣିଷକୁ କିନ୍ତୁ ଏହାକୁ ସୃଷ୍ଟି କରିବାକୁ ପଡ଼େ ନାହିଁ । ଏହା ଆପେ ଆପେ ଜନ୍ମ ନିଏ । ନିଜକୁ ଜାଳିପୋଡ଼ି ଦେବା ସଙ୍ଗେ ସଙ୍ଗେ ଅନ୍ୟର ପ୍ରାଣମନକୁ ଜାଳିଦେବାପାଇଁ ବି ଅସ୍ଥିର ହୋଇଉଠେ । ଅନ୍ୟପାଇଁ ନିବେଦିତ ଫୁଲମାଳାଟିଏ ହେବାପାଇଁ ହୋଇଉଠେ ବ୍ୟଗ୍ର ଓ ଉଚ୍ଛନ୍ନ । ଏ ଅଗ୍ନିରେ ନ ଥାଏ ଉତ୍ତାପ । ଥାଏ ଖାଲି ସୁଖଦ ଶୀତଳତା । ସତେ ଯେମିତି ବନଭୂମିର ଶ୍ୟାମଳ

ହୋମାନଳ ! ସେଇ ହୋମାନଳରେ ନିଜକୁ ଆହୁତି ଦେଉଥିଲି ମୁଁ ବାରମ୍ବାର । କିନ୍ତୁ ଅତି ଗୋପନରେ । ପ୍ରେମାସ୍ପଦର ଅଜ୍ଞାତରେ ।

ଶୌର୍ଯ୍ୟ, ବୀର୍ଯ୍ୟ, ଦମ୍ଭ ମୋର ଟଳି ଯାଉଥାଏ । ତପସ୍ୟା ମୋର ଭାଙ୍ଗିଗଲା ଭଳି ଲାଗୁଥାଏ । ଏଇ ବିଚିତ୍ର ସ୍ଥିତିର କାରଣ କ'ଣ କିଛି ଜାଣିପାରୁ ନ ଥାଏ । ଭାବୁଥାଏ, ସତରେ କ'ଣ ମୁଁ ପଦ୍ମାଙ୍କ ପ୍ରେମରେ ପଡ଼ିଯାଇଛି ? ତାଙ୍କୁ ମନେ ମନେ ବାଛିନେଇଛି ଆଗାମୀ ଦିନଗୁଡ଼ିକରେ ଜୀବନସାଥୀ ବୋଲି ? କେଜାଣି ? ହୁଏତ ହୋଇଥିବ ।

କିନ୍ତୁ ବିବାହ ପୂର୍ବରୁ ତାଙ୍କ ନିକଟରେ ପ୍ରେମନିବେଦନ କରିବା ମହାପାପ । ଆର୍ଯ୍ୟମର୍ଯ୍ୟାଦାର ବିରୋଧୀ । ତାହା ମୁଁ କଦାପି କରି ନ ପାରେ । କଦାପି ନୁହେଁ । ହୃଦୟକୁ ତେଣୁ ସଂଯତ କରି ରଖିଲି ଯେତେ ଅମାନିଆ ହେଲେ ମଧ୍ୟ । ପଦ୍ମା କି ଏକ ବିଚିତ୍ର ଅନୁଭୂତିରେ ଅଧୀରା ହୋଇ ଧୀରେ ଧୀରେ ଆଗେଇ ଆସୁଥିଲେ ମୋ' ଆଡ଼କୁ । ଭାବିଲି, ମତେ ପ୍ରିୟ ପରିଚିତ ମଣିଷଟିଏ ଭାବି ହୁଏତ ମୁହୂର୍ତ୍ତକରେ ମୁହଁ ଲୁଚାଇଦେବେ ମୋ' ଛାତିରେ ଓ ତାହାଙ୍କ ପ୍ରତିଟି ଲୋମକୂପକୁ ଧୋଇଦେବେ ଆନନ୍ଦ ଓ ଅଭିମାନର ଲୁହରେ । କିନ୍ତୁ ପାଦେ ଦୁଇ ପାଦ ଆଗେଇଛନ୍ତି କି ନାହିଁ ହଠାତ୍ ଅଟକିଗଲେ । ସଲଜ୍ଜ ଅଧାହସଟିଏ ହସି ମୁହଁ ତଳକୁ କରି ଠିଆ ହେଲେ । ଦେହ ସାରା ଥରୁଥାଏ । ଭୟରେ ନୁହେଁ । ବୋଧହୁଏ କି ଏକ ମୁଗ୍ଧ ପୁଲକରେ ।

''ଏମିତି ତୁମେ ତୁମେ ବୋଲି ମତେ କ'ଣ ଡାକୁଛ ମ ବସୁ ଭାଇ ?'' ହସି ହସି ପଚାରିଲେ ମତେ ।

''ତୁମେ ଡାକିବି ନାହିଁ ତ ଆଉ କ'ଣ ଆଗ ଭଳି ତୁ ବୋଲି ଡାକିବି ? ଆଉ ତୁମେ ବି ମତେ ଆପଣ ବୋଲି ଡାକିବ ନାହିଁ ।

''କାହିଁକି ନୁହେଁ ?'' ତାଙ୍କର ଲୀଳାୟିତ ପ୍ରଶ୍ନ । ଆଉ ଆଖି ତଳେ ଅପୂର୍ବ ଚପଳ ଭଙ୍ଗିମାରେ ନୃତ୍ୟ ଯାହା କେହି ଶିଖାଇ ନ ଥାଏ ନାରୀକୁ । ବୟସ ଛୁଇଁଲେ ଆପେ ଆପେ ଆସିଥାଏ । ସମୟ ଆସିଲେ ଆମ୍ବଗଛରେ ବଉଳ ଧରେ ଯେମିତି । ଏତେବେଳକୁ ସେ ମୋ' ଆଡ଼କୁ ମଝିରେ ମଝିରେ ଚାହିଁବାର ସାହସ ସଞ୍ଚୟ କରିସାରିଥାନ୍ତି ।

''ଆମେ ପରା ବଡ଼ ହୋଇଗଲେଣି ।'' ଉତ୍ତର ଦେଲି ହସି ହସି ।

''ଏତିକିରେ ଲାଜରେ ମରିଗଲେ ସେ । ଲାଜକୁଳୀ ଲତାଟିଏ ଯେମିତି । ଅଥବା ମେଘକୋଳରେ ଲାଜୁଆ ମୁହଁଟିକୁ ଲୁଚାଇ ଦେଇଥିବା ଶଶିରେଖା ଯେମିତି !

ବୀଜରୁ ଅଙ୍କୁର ହୁଏ । ଅଙ୍କୁରରୁ ଚାରା ଗଛ । ସେହି ଗଛ ପୁଣି ଧୀରେ ଧୀରେ ବଢ଼େ ଓ ପରିଣତ ହୁଏ ବଡ଼ ଗଛରେ । ତହିଁରେ ଫଳ-ପୁଷ୍ପ ଧରେ । କ୍ରମେ କ୍ରମେ ସେ ବୁଢ଼ା ହୁଏ ଓ ତାହା ପରେ ମରିଯାଏ । ମଣିଷ ଜୀବନ ଠିକ୍ ସେମିତି । ଶୈଶବ, କୈଶୋର, ଯୌବନ, ବାର୍ଦ୍ଧକ୍ୟ ଓ ଶେଷରେ ମୃତ୍ୟୁ । ଏ ସବୁ ଜୀବନର ଗୋଟିଏ ଗୋଟିଏ ପାହାଚ । ସମସ୍ତଙ୍କୁ ଏଇ ପାହାଚଗୁଡ଼ିକୁ ଅତିକ୍ରମ କରିବାକୁ ପଡ଼ିଥାଏ । ଯୌବନ ମଧ୍ୟ ସେମିତି ଗୋଟିଏ ପାହାଚ । ଖାଲି ଫରକ ଏତିକି ଯେ ସେଥିରେ ସ୍ୱପ୍ନର ମଣି, ମୁକ୍ତା, ବୈଦୁର୍ଯ୍ୟ, ମାଣିକ୍ୟ

ଆଦି ରତ୍ନ ଖଞ୍ଜା । ତେଣୁ କିଛି ହିଁ ବିଚିତ୍ରତା ନାହିଁ ଯୌବନରେ । କିନ୍ତୁ ନାରୀକୁ ଯଦି ତା'ର ଯୌବନ ବିଷୟରେ, ଯୁବତୀ ହେବା ବିଷୟରେ ସଜାଗ କରି ଦିଆଯାଏ, ସେ ଚମକି ଉଠେ କି ଏକ ମଧୁର ପୁଲକରେ ! ପାରଦ ପରି ଢଳ ଢଳ ଭାବନାରେ ହୋଇଉଠେ ଉଚ୍ଛଳ ! ଯୌବନର ଅନାଗତ ସ୍ୱପ୍ନସମୂହ ଅଧୀର କରିଦିଏ । କାହିଁ କୁଆଡୁ ଭାର-ଭାର କରି ଲାଜ ଆସି ମାଡ଼ିବସେ । ଆଉ ଯଦି ଏଇ ସଜାଗତାର ସ୍ରଷ୍ଟା ଥାଆନ୍ତି କେହି ଜଣେ ଚିରିପରିଚିତ ଯୁବକ ତା'ହେଲେ ତା'କୁ ଅଧିକ ଲାଜ ଲାଗେ । ବଡ଼ ବିଚିତ୍ର ଓ ଅଦ୍ଭୁତ ଏଇ ନାରୀ ବୋଲି ମଣିଷଟି । ବିଚିତ୍ରତାର ସୀମା ହିଁ ନାହିଁ ଯଦି ସେ ଥାଏ ନୂଆ ନୂଆ ଯୌବନମଦିରାର ସ୍ୱାଦୁ ଚାଖିବାକୁ ଉତ୍କଣ୍ଠିତା ଥିବା ଯୁବତୀ । ଉଦଗ୍ର ପିପାସାଜଳରେ ଉବୁଟୁବୁ ହେଉଥିବା ଯୁବତୀ ।

ପଦ୍ମାଙ୍କର ତାହାହିଁ ଘଟିଲା । ମୋ' କଥା ଶୁଣି ସରମରେ ମୁଣ୍ଡ ତଳକୁ କରିଦେଲେ । ତାହା ପରଠାରୁ ଆଉ ମତେ ଆଖି ଟେକି ଚାହିଁ ନାହାନ୍ତି । ଅପହର୍ତ୍ତାମାନଙ୍କ ବଳପ୍ରୟୋଗ ଫଳରେ ତାଙ୍କ କବରୀ ଫିଟିଯାଇଥିଲା । ଉତ୍ତରୀୟ ଉଡ଼ିଯାଇଥିଲା । କେବଳ ଚୋଳକ ହିଁ ଆବୃତ କରି ରଖିଥିଲା ଉର୍ଦ୍ଧାଙ୍ଗକୁ । ତାହା ଯେତେଟା ଆବୃତ କରୁ ନ ଥିଲା ତାହାଠାରୁ ଅଧିକ ଅନାବୃତ କରି ଦେଉଥିଲା ରୂପବୈଭବକୁ । ସେ ନିଜ ହାତରେ କବରୀକୁ ବାନ୍ଧିଦେଲେ । ଉତ୍ତରୀୟ ବିନା ଅସହାୟା ହୋଇ ଦୁଇ ହାତରେ ଚାପି ରଖିବାର ଚେଷ୍ଟା କଲେ ବୁକୁ-ବୈଭବକୁ । ବୁଝିପାରିଲି ତାଙ୍କ ଅସହାୟତା । ମର୍ଯ୍ୟାଦାଜ୍ଞାନରେ ନିଜ ଶିରକୁ ଅବନତ କରିଦେଲି । ତାଙ୍କୁ ଅପ୍ରସ୍ତୁତଭାବରୁ ବଞ୍ଚାଇବାର ଚେଷ୍ଟା । ଉର୍ଦ୍ଧାଙ୍ଗକୁ ଆବୃତ କରିବାପାଇଁ ମୋ' ନିଜ ଉତ୍ତରୀୟଟି ତାଙ୍କୁ ଦେଲି । ପ୍ରଥମେ ନେବା ପାଇଁ ଦ୍ୱିଧାବୋଧ କରୁଥିଲେ । ଲାଜ ଲାଗୁଥିଲା ନିଶ୍ଚୟ । ମୁଁ ବାଧ କରି କହିଲି, ''ନିଅ ପଦ୍ମା, ନିଅ । ଏଥିରେ ଲାଜ କରିବାର କିଛି ନାହିଁ । ପ୍ରଥମେ ନିଜ ଲଜ୍ଜା ନିବାରଣ କର ।''

ବାଧ କରିବାରୁ ଉତ୍ତରୀୟଟି ନେଲେ । ନିଜ ଅଙ୍ଗକୁ ଆବୃତ କରି ସ୍ୱଚ୍ଛ ହେଲେ । ତାହା ପରେ କୃତଜ୍ଞତା ପ୍ରକାଶ କରି କହିଲେ, ମୋ'ର ମାନ, ମହତ ଆଜି ରଖିଲ ବସୁ ଭାଇ ।''

''ବଡ଼ କଥାଟାଏ କ'ଣ ବା କରିଛି ? ଏହା ତ ମୋର କର୍ତ୍ତବ୍ୟ । ଧନୁର୍ଦ୍ଧର ବୀର ମୁଁ । ମୋର କର୍ତ୍ତବ୍ୟ ଦୁର୍ବଳକୁ ରକ୍ଷା କରିବା ।''

ସେ ହସିଲେ । ମଲ୍ଲୀଫୁଲିଆ ହସ । ଅଦିନରେ ମଲ୍ଲୀ ଫୁଟି ସାରା ଆମ୍ବତୋଟାକୁ ଚହଟାଇଦେଲା ଯେମିତି । ମୁଁ ମଧ୍ୟ ସମତାଳ ଦେଇ ହସିଲି ତାଙ୍କ ସାଥିରେ ।

ତାଙ୍କୁ ପଚାରି ବୁଝିଲି, ସେଦିନ ଗାଁରେ ଚାଲିଥାଏ ଗୋଟିଏ ଧର୍ମସଭା । କେହି ଜଣେ ବଡ଼ ସନ୍ନ୍ୟାସୀ ଆସିଥାନ୍ତି ଗାଁକୁ । ସନାତନ ଧର୍ମର ଗୌରବ ବିଷୟରେ କହୁଥାନ୍ତି । ସଭାଟି ଚାଲିଥାଏ ଗାଁର ସେ ମୁଣ୍ଡରେ । ଗାଁଟାଯାକର ଲୋକ ସେଇଠି ହିଁ ଠୁଳ । ଏଣୁ ଏ ମୁଣ୍ଡ ପ୍ରାୟ ଜନମାନବଶୂନ୍ୟ । ଏତିକିବେଳେ ପଦ୍ମା ଗଣ୍ଡକତୀରକୁ ଯାଆନ୍ତି ପାଣି ଆଣିବାପାଇଁ । ସାଙ୍ଗରେ କେହି ନ ଥାନ୍ତି । ଅପହର୍ତ୍ତାମାନେ ଲୁଚିଛପି ରହିଥାନ୍ତି ଗୋଟିଏ ବୁଦାମୂଳେ । ସୁଯୋଗ ପାଇ ହଠାତ୍ ଝାମ୍ପ ମାରନ୍ତି ତାଙ୍କ ଉପରେ ଓ ତାଙ୍କୁ ଅପହରଣ କରନ୍ତି । ତାଙ୍କ କାତର ଚିତ୍କାରକୁ କେହି ଶୁଣିବା ଅବସ୍ଥାରେ ନ ଥାନ୍ତି । ସମସ୍ତେ ଧର୍ମସଭାରେ ମଗ୍ନ ।

ଧର୍ମବାଣୀ ଶୁଣିବାରେ ଲୀନ । ଅଥଚ ଗାଁର ଏ ମୁଣ୍ଡରେ ଚାଲିଥାଏ ପାପଲୀଳାର ଅଭିନୟ । ସେଥିପ୍ରତି କାହାର ଲକ୍ଷ୍ୟ ନ ଥାଏ । ବାସ୍ତବିକ ବଡ଼ ବିଡ଼ମ୍ବିତ ଏ ପରିସ୍ଥିତି ।

ପଦ୍ମାଙ୍କୁ ସାଥିରେ ଧରି ଗାଁ ଆଡ଼େ ଚାଲିଲି ମାମୁଘରକୁ । ମାମୁଘରୁ ପରେ ତାଙ୍କ ପିତା ଆସି ତାଙ୍କୁ ନେଇଗଲେ ନିଜ ଘରକୁ । ଗଲାବେଳେ ମତେ ବହୁତ ସାଧୁବାଦ ଜଣାଇ ଦେଇଗଲେ ।

ସେତେବେଳେ ଖୁବ୍ ଲାଜେଇ ଯାଇଥିଲି ମୁଁ । ବିନୀତ କଣ୍ଠରେ କହିଥିଲି, "କେବଳ ମୋର କର୍ତ୍ତବ୍ୟ କରିଛି ମାତ୍ର । କିଛି ହିଁ ବଡ଼ କାମ କରି ନାହିଁ । ଆପଣ ଆଶୀର୍ବାଦ କରନ୍ତୁ, ଯେପରି ସାରା ଜୀବନ ଧରି ଏହିପରି ମୋ'କର୍ତ୍ତବ୍ୟମାନ ତୁଲାଉଥାଏ ।"

ଜଣେ ବୟସ୍ୟ ହିସାବରେ ସେ ଆଶୀର୍ବାଦର ମୁଦ୍ରାରେ ହାତ ଟେକିଥିଲେ ଏବଂ କହିଥିଲେ, "ଭଲ ମଣିଷଟିଏ ହୁଅ ବାପା । ସଦା ବିଜୟୀ ହୁଅ । ଭଗବାନ୍ ତୁମର ମଙ୍ଗଳ କରନ୍ତୁ ।"

## ଏକତିରିଶ

ମଣିଷ ଭାବିଥାଏ ଗୋଟାଏ କାମ କରିବାକୁ । କିନ୍ତୁ ପରିସ୍ଥିତି ତା'କୁ ବାଧ୍ୟ କରେ ଆଉ ଗୋଟିଏ କାମ କରିବାକୁ । ପୂର୍ବ କାମ ପାଇଁ କରିଥିବା ଚିନ୍ତା, ପ୍ରତିଜ୍ଞା ସବୁ କିଛି ତା'ର ଟଳିଯାଏ । ଏଇ ତ ମୁଁ ଭାବିଥିଲି, ଆଚାର୍ଯ୍ୟ ପରଶୁରାମଙ୍କ ଆଶ୍ରମରୁ ସିଧା-ସଳଖ ହସ୍ତିନାପୁର ଯିବି ବୋଲି । ନୂଆ କରି ପାଇଥିବା ବ୍ରହ୍ମାସ୍ତ୍ର ଓ ଅନ୍ୟାନ୍ୟ ଦିବ୍ୟାସ୍ତ୍ର-ସମୂହର ଜ୍ଞାନକୁ ମୋ' ପ୍ରିୟଜନମାନଙ୍କ ଆଗରେ ଶୁଣାଇବି ବୋଲି । କିନ୍ତୁ କରିବସିଲି କ'ଣ ? ପରିସ୍ଥିତିରେ ବିବଶ ହୋଇ ଚାଲିଆସିଲି ବିଦେହରାଜ୍ୟର ବିଦେଘପ୍ରସ୍ଥକୁ । ସେଠାରେ ପୁଣି ନୂତନ ପରିସ୍ଥିତି ଓ ତଜ୍ଜନିତ ନୂତନ ବିବଶତା । ଭାବିଥିଲି ମାମୁଘରେ ଗୋଟିଏ ମାତ୍ର ଦିନ ରହି ପରଦିନ ଯାତ୍ରା କରିବି ହସ୍ତିନାପୁର ଅଭିମୁଖରେ । ରାଜକୁମାରମାନଙ୍କ ଶିକ୍ଷାର ପରିସମାପ୍ତି ପରେ ଅସ୍ତ୍ରପରୀକ୍ଷା ହେବ ନିଶ୍ଚୟ । ଆଗେଇ ଆସୁଥାଏ ସେଇ ଦିନଟି । ପରୀକ୍ଷାରେ ଯୋଗ ଦେବାପାଇଁ ମତେ ଅନୁମତି ମିଳିବ କି ନାହିଁ ଜାଣେନା । ତଥାପି ସେହି ଦୃଶ୍ୟକୁ ଦେଖିବାପାଇଁ ମନ ହୋଇଉଠୁଥିଲା ଉଦ୍‌ବିଗ୍ନ । ପ୍ରାଣ ଉଦଗ୍ର ବ୍ୟାକୁଳ ! କିନ୍ତୁ ମାମୁଘର ଗାଁରେ ଯେଉଁ ନୂତନ ପରିସ୍ଥିତି ହେଲା, ତାହା ସବୁକିଛିକୁ କରିଦେଲା ଓଲଟ-ପାଲଟ । ରହୁ ରହୁ ପାଞ୍ଚ ଦିନ ରହିଗଲି ମାମୁଘରେ । ଯେତେ ଚେଷ୍ଟା କଲେ ବି ମୁକୁଳିପାରିଲି ନାହିଁ ଏଇ ବିବଶତାରୁ । ବିବଶତା ସତେ ମଣିଷକୁ କିଭଳି ମୋହରେ ପକାଇ ନ ଦିଏ !

ମତେ ଯେ ରହିବାକୁ ଭଲ ଲାଗୁ ନ ଥିଲା କିମ୍ବା ଏଠାରେ ଆତିଥେୟତାର କିଛି ଅଭାବ ଥିଲା ତାହା ନୁହେଁ । ଆତିଥେୟତା ସୁପ୍ରଚୁର ଖାଲି ତ ମାମୁଘରେ ନୁହେଁ; ସାହିପଡ଼ିଶା ଅନ୍ୟାନ୍ୟ ଘରମାନଙ୍କରେ ବି । ଲେଖା-ଯୋଖାରେ ଅନେକ ମାମୁ-ମାଇଁ, ଅଜା-ଆଈ । ସମସ୍ତେ ମତେ ଆଦର ଅଭ୍ୟର୍ଥନା କରିବାଲାଗି ମୁକ୍ତହସ୍ତ । ଆଉ ଗ୍ରାମଭୋଜକ

ରତସେନଙ୍କ ଘର । ସେଠି ତ ମତେ ପୂରା ଦୁଇ ଦିନ ଅତିଥି ହେବାକୁ ପଡ଼ିଥିଲା । ଏ ସବୁ ଆଦର-ଯତ୍ନ, ମାନ-ସମ୍ମାନ କେବଳ ଗାଁର ଝିଅ ପଦ୍ମାଙ୍କୁ ଦସ୍ୟୁକବଳରୁ ମୁକ୍ତ କରିଥିଲି ବୋଲି ନୁହେଁ । ମୁଁ ଜଣେ ବୀର । ପରଶୁରାମଙ୍କଠାରୁ ବ୍ରହ୍ମାସ୍ତ୍ରର ଜ୍ଞାନ ପାଇ ଏଇ ସଦ୍ୟ ଫେରିଛି । ଅନେକ ଦିବ୍ୟାସ୍ତ୍ରର ଅଧିକାରୀ । ହସ୍ତିନାପୁରର କ୍ଷତ୍ରିୟବୀରମାନଙ୍କ ସମକକ୍ଷ । ଏପର୍ଯ୍ୟନ୍ତ ଏପରି ଉଚ୍ଚାସନର ଅଧିକାରୀ କେହି ହୋଇ ନ ଥିଲେ ସୂତକୁଳରେ । ସମସ୍ତଙ୍କ ଦୃଢ଼ ଧାରଣା, ମୁଁ କୁଆଡ଼େ ସୂତକୁଳର ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ । ରତ୍ନମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହାରତ୍ନଟିଏ ! ଏମିତି କେତେ କ'ଣ ପ୍ରଶଂସା କରି କହୁଥିଲେ ମତେ । ଏଥିରେ ମାମୁଙ୍କର କିଛି ପ୍ରଚାରମୁଖୀ କାର୍ଯ୍ୟକଳାପ ବି ଥିଲା ଦାୟୀ । ମୋ ସିଦ୍ଧି ସଂପର୍କରେ ଅନେକ କିଛି ବଢ଼େଇ କରି କହୁଥିଲେ ସେ । କହିବାରେ ପାଉଥିଲେ ଆନନ୍ଦ । ମୋର ମାମୁ ବୋଲି ହୋଇଉଠୁଥିଲେ ଯଥେଷ୍ଟ ଗର୍ବିତ । ବାରମ୍ବାର ଛାତି ଫୁଲାଇ ହସି ହସି କହୁଥିଲେ, ''ବସୁ ଏମିତି ହେବେ ନାହିଁ କେମିତି ? ସେ ମୋ' ଭଣଜାଟି ।'' ନିଜ ଲୋକ ପାଇଁ ଗର୍ବ କରିବାରେ ନ ଥିଲା କିଛି ବିଚିତ୍ରତା ଅଥବା ଅସ୍ୱାଭାବିକତା ।

ଭାବୁଥାଏ, ବିଚିତ୍ର ଏ ସଂସାରର ଗତି । ଆଉ ବିଚିତ୍ର ଓ ଅଦ୍ଭୁତ ପୁଣି ମଣିଷର ଆଚରଣ । ଋତୁପରିବର୍ତ୍ତନ ଭଳି ବଦଳୁଥାଏ ତା'ର ଆଚରଣ ପରିସ୍ଥିତିକୁ ଦେଖି । ପୂର୍ବରୁ ଅନେକ ବାର ଆସିଛି ମାମୁଘରକୁ । ମିଶିଛି ଗାଁ ଲୋକମାନଙ୍କ ସହିତ । କିନ୍ତୁ ଆଜିର ଏଇ ଆଦର-ଯତ୍ନରୁ କାଣିଚାଏ ବି ପାଇ ନାହିଁ । କାହିଁକି ଏଭଳି ଆଦର-ଅଭ୍ୟର୍ଥନା ? ଏହାର ଏକମାତ୍ର କାରଣ ମୋ' ଜୀବନର ଅଭିନବ ସିଦ୍ଧି । ମହାବୀର ବୋଲି ଖ୍ୟାତି । ସମସ୍ତେ ଚାହାନ୍ତି ମତେ ନିଜର କରିନେବାପାଇଁ । ମୋ'ର ନିକଟତର ହେବାପାଇଁ । କେବଳ ନିଜ ସ୍ୱାର୍ଥସାଧନ ଲାଗି ନୁହେଁ ତ ଆଉ କ'ଣ ? ସଂସାରରେ ମହାନତାର ଆଦର । କ୍ଷୁଦ୍ରତାର ଆଦର ନାହିଁ । ମହାନ୍ ବ୍ୟକ୍ତି କୌଣସି କାରଣରୁ ଯଦି ତଳକୁ ଖସିଯାଆନ୍ତି, ହୋଇଯାଆନ୍ତି କ୍ଷୁଦ୍ର-ସଂକୁଚିତ, ତେବେ ସେ ପଡ଼ିଯାନ୍ତି ଅନାଦରର ଅଳିଆଗଦାରେ । ନିଜ ଲୋକମାନେ ପୁଣି ପର ହୋଇଉଠନ୍ତି । ସେଇଥିପାଇଁ ତ ବଡ଼ବଡ଼ିଆମାନଙ୍କର ଆଦର-ସମ୍ମାନ ସମାଜରେ । ଆଉ ଗରିବ ଲୋକମାନେ ଚିର ଅବହେଳିତ । ଚିର ଅନାହୃତ । ଚିର ଉପେକ୍ଷିତ । ଗରିବ ଯଦି କୌଣସି ଉପାୟରେ ଧନର ଅଧିକାରୀ ହୋଇଗଲା, ତା'ହେଲେ ବସିଲା ଯାଇ ଆଦର-ସମ୍ମାନର ସ୍ୱର୍ଣ୍ଣସିଂହାସନରେ ! ମତେ ଭାରି ହସ ଲାଗୁଥାଏ ମଣିଷର ଏଇ ଆଚରଣ କଥା ଭାବି ଭାବି । ସଂସାରରେ ସମସ୍ତଙ୍କୁ ଚିହ୍ନିହେବ । ସଂପୂର୍ଣ୍ଣ ନ ହେଲେ ବି ଅଳ୍ପ ବହୁତ ଯାହା କିଛି । କିନ୍ତୁ ମଣିଷ ବୋଲି ଏଇ ଦୁଇଗୋଡ଼ିଆ ଜୀବଟି । ତା'କୁ ଚିହ୍ନିବା ଭାରି କଷ୍ଟକର । ଦେବତାଙ୍କ ପକ୍ଷରେ ଚିହ୍ନିବା ବି କଷ୍ଟକର ।

ହଁ, ରତସେନଙ୍କ ଘରେ ଦୁଇ ଦିନ ପାଇଁ ଅତିଥି ହେବା କଥା କହୁଥିଲି ପରା । ସତ କହୁଛି, ସେଇ ଦୁଇ ଦିନ ପାଇଥିଲି ଖୁବ୍ ସୁଖାନୁଭୂତି । ଦେହମନରେ ଉଲ୍ଲାସର ସ୍ପର୍ଶ, ପ୍ରାଣେ ପ୍ରାଣେ ପୁଲକର ଚମକ । ସ୍ୱାଭାବିକ ଲଜ୍ଜା ମତେ ମୁଖର ହେବାକୁ ବାଧା ଦେଇଥିଲା ସିନା । ପଦ୍ମାଙ୍କ ସାନ୍ନିଧ୍ୟର ସୁଯୋଗ ପାଇ ତାଙ୍କ ପ୍ରତି ହୋଇଯାଇଥିଲି ଆକୃଷ୍ଟ

ଅତି ନିବିଡ଼ ଭାବରେ । ମତେ ଲାଗୁଥିଲା, ଆମ ଦୁହିଁଙ୍କର ସଂପର୍କ ଯେମିତି ବନ୍ଧା ହୋଇଛି ଏକ ଶାଶ୍ୱତ ସୁବର୍ଣ୍ଣ ଶୃଙ୍ଖଳରେ ! ଚିରଦୃଢ଼ ! ଚିର ଅବିଚ୍ଛେଦ୍ୟ । ଚିର ଅଖଣ୍ଡ ! ସେଭଳି ସଂପର୍କ ପତି ପତ୍ନୀଙ୍କର କି ନୁହେଁ ତାହା ଥିଲା ଅଜଣା । କାରଣ ସେ ପର୍ଯ୍ୟନ୍ତ ସେଭଳି ପ୍ରସ୍ତାବ ଉଠି ହିଁ ନ ଥିଲା କୌଣସି ପକ୍ଷରୁ । କନ୍ୟାଘର ପକ୍ଷରୁ ଅଥବା ବରଘର ପକ୍ଷରୁ । ଆଉ ବି ଆମ ଦୁହିଁଙ୍କ ମଧ୍ୟରେ ପ୍ରେମର ପ୍ରକାଶ୍ୟ ଆଦାନ ପ୍ରଦାନ ହୋଇ ନ ଥିଲା ।

ଯେଉଁ ଦୁଇ ଦିନ ରତସେନଙ୍କ ଆତିଥ୍ୟ ଗ୍ରହଣ କରିଥିଲି, ସେଇତକ ସମୟ ପଦ୍ମାଙ୍କୁ ପାଇଥିଲି ଖୁବ୍ ନିକଟରେ । ଲକ୍ଷ୍ୟ କରୁଥିଲି, ପଦ୍ମା କିପରି ଚଞ୍ଚଳ ଗିରିନିର୍ଝରୀଟି ଭଳି ଚଳଚଞ୍ଚଳ ଗୃହରୁ ଅଙ୍ଗନକୁ ଓ ଅଙ୍ଗନରୁ ଗୃହକୁ । କକ୍ଷରୁ କକ୍ଷାନ୍ତର ଯିବା ଅବସରରେ ବାରମ୍ବାର ଯାଉଥାନ୍ତି ରନ୍ଧନଶାଳାକୁ । ମାତାଙ୍କୁ ସାହାଯ୍ୟ କରୁଥାନ୍ତି ପାକକର୍ମରେ । କିଛି ଗୋଟାଏ ଜିନିଷ ଖୋଜିବାପାଇଁ ହେଉଥାନ୍ତି କକ୍ଷରୁ କକ୍ଷାନ୍ତର । ବଡ଼ ବିଚିତ୍ର ତାଙ୍କର ଗତି । ମୁଁ ଯେଉଁ କକ୍ଷରେ ବିଶ୍ରାମ ନେଉଥାଏ, ସେଠାକୁ ଆସୁଥାନ୍ତି ବାରମ୍ବାର । କେତେବେଳେ ଜିନିଷ ଗୋଟିଏଦୁଇଟା ନେଉଥାନ୍ତି ତ ଆଉ କେତେବେଳେ ନୁହେଁ । ଆସନ୍ତି । ପୁଣି ଖାଲି ହାତରେ ଫେରିଯାଆନ୍ତି । ସ୍ତବକଶୋଭିତ ଦୀର୍ଘ ବେଣୀଟି ଝୁଲୁଥାଏ ପୃଷ୍ଠଦେଶରେ । ବେଳେବେଳେ ଜାଣି ଜାଣି ସେଇଟିକୁ ମୋ' ଆଗରେ ପ୍ରଲମ୍ବିତ କରାଇ ଦେଉଥାନ୍ତି ନିଜ ବୁକୁଦେଶରେ । ମତେ ଆକୃଷ୍ଟ କରିବାର ଅଦମ୍ୟ ଚେଷ୍ଟା । ମଧ୍ୟେ ମଧ୍ୟେ ବଡ଼ ବଡ଼ ଡୋଳା ଟେକି ମତେ ଚାହିଁ ଦର ଦର ହସୁଥାନ୍ତି । କିନ୍ତୁ କିଛି କଥା କହୁ ନ ଥାନ୍ତି । ଅଥଚ ନ କହି ନ କହି ଯେ ସେ ଅନେକ କିଛି କହି ଦେଉଥାନ୍ତି, ଏ ହୁଏତ ବୁଝିପାରୁ ନ ଥାନ୍ତି । ଯଦିଓ ବୁଝୁଥିବେ, ତା'ହେଲେ ନ ବୁଝିବାର ଅଭିନୟ କରୁଥାନ୍ତି ହୁଏତ ।

ବେଳେବେଳେ କିଛି କାମ ନ ଥିଲେ ବି ଅଟକିଯାଉଥାନ୍ତି ମୋ' କକ୍ଷରେ । ହୁଏତ କିଛି ଗୋଟାଏ ପ୍ରଶ୍ନ ଆଶା କରୁଥାନ୍ତି ମୋ'ଠାରୁ । ତାହା ଶୁଣିଲେ ଉତ୍ତର ଦେବାକୁ ଅବସର ପାଇବେ । ବାକ୍‌ଚାତୁରୀ ଦେଖାଇବାର ସୁଯୋଗ ପାଇବେ । ମୁଁ କିନ୍ତୁ ଥାଏ ନୀରବ । ମତେ ଲାଗୁଥାଏ, ମୁଁ ଯେମିତି ତାଙ୍କଠାରୁ ଅଧିକ ଲଜ୍ଜାଶୀଳ । କିଛି ହିଁ କଥା କହିପାରୁ ନ ଥାଏ । କହିବାକୁ ଚାହିଁଲେ ବି ପାଟି ଫିଟୁ ନ ଥାଏ । ସରମରେ ମୁହଁ ରଙ୍ଗା ପଡ଼ିଯାଉଥାଏ । ରାତ୍ରିର ପଣତ-ଆଢୁଆଳରେ ସଂଧ୍ୟା ମୁହଁ ଲୁଚାଇଦେଲା ଭଳି ନିଜ ଉତ୍ତରୀୟର ଆଢୁଆଳରେ ମୁହଁ ଲୁଚାଇ ଦେଉଥାଏ । ପରିସ୍ଥିତି ମୋ'ପାଇଁ ଖୁବ୍ ଅସ୍ୱସ୍ତିକର । ଭାରି ଅସହନୀୟ । ଇଚ୍ଛା ହେଉଥାଏ ଉଠିଆସିବାକୁ କକ୍ଷରୁ । କିନ୍ତୁ ପାରୁ ନ ଥାଏ । ଆତିଥ୍ୟ ପରମ୍ପରାର ମର୍ଯ୍ୟାଦାଜ୍ଞାନ ବାଧା ଦେଉଥାଏ । ମୁଁ ଅତିଥି । ଏମାନଙ୍କ ନିକଟରେ ଦେବତା ସମାନ । କିଛି ହିଁ ତ୍ରୁଟି ନାହିଁ ଏମାନଙ୍କ ଆଦର-ଅଭ୍ୟର୍ଥନାରେ । ଉଠିଗଲେ କ'ଣ ଭାବିବେ ? ନୀରବରେ ବସି ହିଁ ରହିଥାଏ । ପ୍ରତୀକ୍ଷା କରି ହିଁ ରହିଥାଏ । ନୀରବ-ନିଶ୍ଚଳ ସ୍ତିମିତନୟନ ଯଜ୍ଞପଶୁଟିଏ ଯେମିତି ।

ଆହୁରି ଲାଜରେ ସଢ଼ିଗଲି ଯେତେବେଳେ ପଦ୍ମା ଲୀଳାୟିତ ଭଙ୍ଗୀରେ ଗ୍ରୀବା ଟେକି ପଚାରିଲେ, "ମତେ କ'ଣ କିଛି କହୁଥିଲେ ବସୁ ଭାଇ ?"

''ନାଇ ତ ।'' ମୋ'ର ସଂକ୍ଷିପ୍ତ ଉତ୍ତର ।

କକ୍ଷ ସାରା ହସଫୁଲର ପାଖୁଡ଼ାଟିମାନ ଝରାଇଦେଇ ଚାଲିଗଲେ ସେ । ଲୀଳାୟିତ ଗତି । ପ୍ରତିଟି ପାଦପାତରେ ଛଳକମଳ ଫୁଟିଉଠୁଥାଏ ଯେମିତି ।

ବଡ଼ ବିଚିତ୍ର ଲାଗୁଥାଏ ଏ ଅନୁଭୂତି । ଯେତେ ଅସ୍ୱସ୍ତିକର ଓ ଅସହ୍ୟ ଲାଗିଲେ ବି ସୁଖଦ ଥାଏ ନିଶ୍ଚୟ । ଯଦି ସୁଖଦ ବୋଲି ନ କହୁଛି, ତେବେ ହେବି ମିଥ୍ୟାବାଦୀ । କିନ୍ତୁ ଆହୁରି ଅଧିକ ବିଚିତ୍ର ଲାଗୁଥାଏ ମୋର ବିମୂଢ଼ତା । ମୋର ଦୁର୍ବଳତା । ଭାବୁଥାଏ, ଏଭଳି ଦୁର୍ବଳ ହେଲି କେବେଠାରୁ ? ମୋର ସକଳ ବୀରତା, ବଳ ଓ ସାହସ ଗଲା କୁଆଡ଼େ ? ଯେଉଁ ବୀରତ୍ୱକୁ ନେଇ ମୋର ଏତେ ଅଭିମାନ, ଯେଉଁ ଶକ୍ତି ଅର୍ଜନ ଲାଗି ଏତେ କଷଣ ସହିଆସିଛି, ଯେଉଁଥିପାଇଁ ଏକାଧିକ ଅଭିଶାପର ଅଗ୍ନିକୁଣ୍ଡକୁ ମୁଣ୍ଡାଇଛି ମୁଣ୍ଡରେ, ସେ ସବୁ ତ କାହିଁ ମତେ ସହାୟତା କରିପାରିଲେ ନାହିଁ । ସାମାନ୍ୟ ଦୁର୍ବଳା ନିରସ୍ତ୍ରା ରମଣୀ ହାତରୁ ପାଇଲି ପରାଭବ ! ବର୍ଷ ବର୍ଷ ଧରି ପାଳିଆସୁଥିବା ବ୍ରହ୍ମଚର୍ଯ୍ୟର ପ୍ରଚଣ୍ଡ ତପସ୍ୟା ହାର ମାନିଗଲା । ସଂସାର-କ୍ଷେତ୍ରର ଦେହଳୀରେ ପାଦ ଦେଉ ଦେଉ ପ୍ରଖର ସ୍ରୋତରେ ବାଲିବନ୍ଧଟି ଭାଙ୍ଗିଯାଏ ଯେମିତି ! ଗୁରୁ ଆଶ୍ରମରୁ ସଦ୍ୟ ଫେରନ୍ତା ମୁଁ ନିଜକୁ ମନେ କରୁଥିଲି ଖୁବ୍ ଅସହାୟ ! ଭାରି ଏକାକୀ ! କାନ୍ତାରର ନିର୍ଜନ ପଥରେ ପଥହରା ପଥିକଟିଏ ଯେମିତି ।

ମୁଁ ତ ଆଗରୁ କହିଛି କୌଣସି ନାରୀକୁ ପ୍ରେମ କରି ନାହିଁ ବୋଲି । ପ୍ରକୃତରେ ନାରୀ-ପୁରୁଷର ସଂପର୍କ ନେଇ ସଂପୂର୍ଣ୍ଣ ଅନଭିଜ୍ଞ ମୁଁ । ଆଦୌ ପୂର୍ବାନୁଭୂତି ନାହିଁ । ଏ ସଂପର୍କକୁ କେବଳ ଯାହା ଦେଖୁଛି ବହୁତ ଦୂରରୁ । ସ୍ୱଳ୍ପ ଜ୍ଞାନର ଛାପିଛାପିକିଆ ଆଲୁଅ ସାହାଯ୍ୟରେ ଯାହା କିଛି ବା ଦେଖିଛି, ତହିଁରେ ଆଶ୍ଚର୍ଯ୍ୟ ହୋଇଯାଇଛି ନାରୀର ବୈଚିତ୍ର୍ୟ ନେଇ । ଜଳପ୍ରପାତ ଭଳି ନିମ୍ନମୁଖୀ ତା'ର ଗତି । ଚାହୁଁଥାଏ ପୁରୁଷର ଶିଳାଭୂମିରେ କଚାଡ଼ିହୋଇ ପଡ଼ିବାପାଇଁ । ଚୂର୍ଣ୍ଣିଭୂତ ହେବାଟା ଯେ ନିଶ୍ଚିତ ପରିଣତି ତାହା ସେ ଜାଣେ । ତଥାପି ଜାଣି-ଶୁଣି କଚାଡ଼ି ହୋଇପଡ଼େ । ହୁଏତ ଭାବୁଥାଏ ସେତେବେଳେ ଜଳପ୍ରପାତ ଚୂର୍ଣ୍ଣିଭୂତ ହୋଇ ତା'ର ସତ୍ତା ହରାଇଦେଲେ ବି ପର ମୁହୂର୍ତ୍ତରେ ପୁଣି ବହିଯିବ କଳ କଳ ଛଳ ଛଳ ଧାରାରେ । ସେମିତି ନାରୀଜୀବନରେ ସାଂସାରିକ କ୍ଷେତ୍ରରେ ଉଚ୍ଛଳ ଧାରାଟିଏ ହୋଇ ବହିଯିବାର ଥାଏ ବିପୁଳ ସମ୍ଭାବନା । ଅନାମିକା ନଈଟିଏ ହୋଇଥାଉ ପଛକେ, ନଈ ତ ! ତେଣୁ ସେ ସକଳ ଭୟ, ସକଳ ଆଶଙ୍କାକୁ ଆଦରରେ ଠେଲିଦେଇ ଲୋଟିଯାଏ ପୁରୁଷର ଶିଳାଭୂମିରେ । ସଂସାରଯାକର ରହସ୍ୟର ପୁଞ୍ଜୀଭୂତ ବିଗ୍ରହ ଏଇ ନାରୀ ।

ପଦ୍ମା ନାମକ ଏଇ ଯେଉଁ ଜଳପ୍ରପାତଟି ଆଜି କେଉଁ ପୁରୁଷର ଶିଳାଭୂମିରେ ମଥା କଚାଡ଼ି ଦେବାକୁ ତେବେ ଚାହୁଁଛି ? ସତେ କ'ଣ ମୁଁ ସେଇ ଶିଳାଭୂମିର ଗୌରବ ପାଇବାର ଅଧିକାରୀ ହୋଇପାରିବି ? କେଜାଣି ? କିଛି ସ୍ଥିର କରିପାରୁ ନ ଥାଏ ମନେ ମନେ । ଯେତେ ଯେତେ ନିଜକୁ ବାରମ୍ବାର ପଚାରିଲେ ବି କିଛି ହିଁ ମିଳୁ ନ ଥାଏ ଉତ୍ତର ।

ଏହିଭଳି ମନଃସ୍ଥିତିରେ ଅନୁତ୍ତରିତ ପ୍ରଶ୍ନକୁ ବୁକୁତଳେ ଧରି ରଖିଥିବା ଅବସ୍ଥାରେ ମାମୁଘର ଗାଁରେ ମୋର କଟିଗଲା ଚାରି ଦିନ । ଶିଥିଳ ଚିନ୍ତା ଓ ଅନୁଚିନ୍ତାରେ ପରିଶୀଳିତ ଚାରୋଟି ସୁଖମୟ ଦିନ !

## ବତିଶ

ଆଜି ମାମୁଘରେ ଅବସ୍ଥାନର ପଞ୍ଚମ ଦିବସ । ପ୍ରତିଟି ଦିବସ ପରି ତାହା ଥିଲା ଗୋଟିଏ ସାଧାରଣ ଦିବସ । କିନ୍ତୁ ପୂର୍ବରୁ ଘଟିଥିବା ଗୋଟିଏ ଅସାଧାରଣ ଘଟଣାର ସ୍ମୃତି ମତେ ସଜାଗ କରିଦେଇଥିଲା ବିଶେଷ ଭାବରେ । ଦୂରେଇ ଦେଇଥିଲା ବିଗତ ଚାରିଦିନର ଆଳସ୍ୟକୁ । ମଣିଷ ଜୀବନର ଅନନ୍ତ ସମ୍ଭାବନା ବିଷୟରେ ହୋଇଉଠିଥିଲି ସଚେତନ । ନିଜକୁ ଏକ ନୂତନ ପ୍ରତିଶ୍ରୁତିରେ ପରିସ୍ନାତ କରାଇ ଆଗେଇ ଯାଇଥିଲି କର୍ତ୍ତବ୍ୟ ପଥରେ । ବିଦେଘପ୍ରଷ୍ଠରେ ସ୍ୱପ୍ନର ସାଗରରେ ଡୁବି ଡୁବି କମଳଦଳ ଭକ୍ଷଣ କରିବାର ଅନୁଚିନ୍ତାକୁ ପରିହାର କରିଥିଲି ମନରୁ ।

ବିଗତ ଦିନଗୁଡ଼ିକରେ ଘଟିଥିବା ଅନେକ ଘଟଣା ମଧ୍ୟରୁ ଏ ସେମିତି ଗୋଟାଏ ଅବିସ୍ମରଣୀୟ ଘଟଣାର ସ୍ମୃତି । ଜୀବନରେ ତ ଅନେକ କିଛି ଘଟଣା ଘଟେ । କିନ୍ତୁ ସବୁ ଘଟଣା ମନେ ରହେନା । ଏଭଳି କିଛି ଘଟଣା ଥାଏ ଯାହାକୁ ଭୁଲିଯିବାପାଇଁ ଚେଷ୍ଟା କଲେ ବି ମଣିଷ ଭୁଲି ପାରେନା । ମନର ପେଡ଼ି ମଧ୍ୟରେ ଅନେକ ଜକଜକିଆ ପାଟ ବସ୍ତ୍ର ଥାଏ । ଆଉ ଥାଏ ବି ତାହା ସାଥିରେ ମୋଟା ସୋଟା ବସ୍ତ୍ରଟିମାନ । ଅନେକ ଦିନ ପରେ ପେଡ଼ିଟିକୁ ଖୋଲିଦେଲେ ପାଟବସ୍ତ୍ରଟିମାନ ସେମିତି ପୂର୍ବଭଳି ଜକଜକ କରୁଥାଏ । ତେଜସ୍ୱିତାରେ ଟିକିଏ ହେଲେ ବି ଉଣା ପଡ଼ି ନ ଥାଏ । ସେଦିନ ଠିକ୍ ସେମିତି ମନ-ପେଡ଼ିଟିକୁ ଖୋଲୁ ଖୋଲୁ ଏଇଭଳି ଗୋଟିଏ ଘଟଣାର ପାଟବସ୍ତ୍ର ପଡ଼ିଗଲା ମୋ' ଆଖିରେ ।

ରାତି ପାହି ସକାଳ ହେଲା । ସକାଳର ସଂଧ୍ୟାପୂଜା କରିବାପାଇଁ ଗଲି ଗଣ୍ଡକତୀରକୁ । ପୀତ-ଲୋହିତର ବିପୁଳ ରୂପଶ୍ରୀ ଧରି ଆକାଶରୁ ଝୁଲି ପଡ଼ିଥାନ୍ତି ସୂର୍ଯ୍ୟଦେବ । କିରଣ-ଦୋଳାରେ ଖେଳୁଥାନ୍ତି ଦୋଳି । ଗଣ୍ଡକର ସ୍ୱଚ୍ଛ ନୀରରେ ତାଙ୍କ ପ୍ରତିବିମ୍ବର ଅପୂର୍ବ ଲୋଭନୀୟ ଝଟକ । ଶ୍ୟାମଳୀ ତରୁଣୀର ଲଲାଟ ସୀମାରେ ସିନ୍ଦୂରବିନ୍ଦୁ ଯେମିତି । ଯଥାସମୟରେ ସ୍ନାନ ଓ ସନ୍ଧ୍ୟାପୂଜା ସାରି ଫେରୁଥାଏ । ଗଣ୍ଡକତୀରରେ ଥିବା ଶିଶିରଭିଜା ତୃଣପ୍ରାନ୍ତରରେ ପାଦ ପରେ ପାଦ ପକାଇ ଚାଲୁଥାଏ । ଆକାଶର ବିପରୀତ ଦିଗରେ ପ୍ରାଭାତିକ ଶୀର୍ଣ୍ଣ ଶଶିକଳା ଯାଉଥାଏ ମଉଳି । ମ୍ଳାନ ଶେଷ ହସ ହସି ହସି । ଶିଶିରମୁକ୍ତିତ ତୃଣପର୍ଣ୍ଣଗୁଡ଼ିକରେ ପଡ଼ିଥିବା ସୂର୍ଯ୍ୟଦେବଙ୍କ ପ୍ରତିମୂର୍ତ୍ତି ବିମ୍ବିତ ହୋଇଥିବାର ଦେଖି ହଠାତ୍ ମୋର ମନେ ପଡ଼ିଗଲା ଅତୀତର ଘଟଣାଟିଏ । ହସ୍ତିନାପୁରରେ ଅବସ୍ଥାନ କାଳରେ ଗଙ୍ଗାତୀରରେ ଘଟିଥିବା ଘଟଣାଟିଏ ।

ଆଜିଭଳି ସେ ଦିନ ବି ଯାଇଥିଲି ନଦୀତୀରକୁ ସନ୍ଧ୍ୟାସ୍ନାନ କରି । ହଠାତ୍ ଦେଖା ହୋଇଗଲା ଦାର୍ଶନିକ ବନ୍ଧୁ ଅଶ୍ୱତ୍ଥାମାଙ୍କ ସହିତ । ସେ ମଧ୍ୟ ସେହି ଉଦ୍ଦେଶ୍ୟରେ ଯାଉଥିଲେ ଗଙ୍ଗାତୀରକୁ । ଉଭୟ ଚାଲିଲୁ ସାଙ୍ଗ ହୋଇ ପଥ ମଧ୍ୟରେ ଆଳାପ କରି କରି । ଚଲାପଥର ଉଭୟ ପାର୍ଶ୍ୱରେ ତୃଣପର୍ଣ୍ଣଗୁଡ଼ିକରେ ଶୋଭା ପାଉଥିବା ସୂର୍ଯ୍ୟଦେବଙ୍କ ଅସଂଖ୍ୟ ପ୍ରତିବିମ୍ବ ଦେଖି କ୍ଷଣକପାଇଁ ସ୍ତବ୍ଧ ହୋଇଗଲେ ସେ । ଆଳାପ-ଆଲୋଚନା ବି ସ୍ତବ୍ଧ । ତାଙ୍କ ଚିତ୍ତପଟରେ କି ଏକ ଭାବାନ୍ତରର ଝଲକ । ମୁଖମଣ୍ଡଳରେ ଶାନ୍ତ ସୁନ୍ଦର ଭାବମୁଦ୍ରା । ଆଖିରେ ଦୀପ୍ତିର ଚମକ ! ସେ ମତେ ହସି ହସି କହିଲେ, ''ଦେଖିପାରୁଛ ମିତ୍ର କର୍ଣ୍ଣ, ତୃଣପର୍ଣ୍ଣଗୁଡ଼ିକରେ ପଡ଼ିଥିବା ସୂର୍ଯ୍ୟଙ୍କ ପ୍ରତିବିମ୍ବସମୂହକୁ ?

''ହଁ, ଦେଖୁଛି ।'' ସହଜ କଣ୍ଠରେ ମୋର ଉତ୍ତର । ଏ ପ୍ରଶ୍ନର କିଛି ଗୋଟାଏ ଯେ ଗମ୍ଭୀର ଅର୍ଥ ଅଛି, ସେ ଧାରଣା ମୋର ନ ଥିଲା । କିନ୍ତୁ ମନରେ ମୋର କୌତୂହଳ । କାରଣ ଅଶ୍ୱତ୍ଥାମା ଏମିତି ଗୋଟିଏ ଗୋଟିଏ ଛୋଟିଆ କଥା ନେଇ ତହିଁରୁ ବିରାଟ କିଛି ଅର୍ଥ ବାହାର କରିଥାନ୍ତି । କ୍ଷୁଦ୍ର ବୀଜଟି ମଧ୍ୟରେ ବିରାଟ ବଟବୃକ୍ଷର ସମ୍ଭାବନା ଦେଖିପାରିଥାନ୍ତି । କୌତୂହଳୀ ହୋଇ ପ୍ରତିପ୍ରଶ୍ନ କଲି, ''କାହିଁକି ? କ'ଣ ହେଲା ?''

''ଏହାର ଅର୍ଥ କିଛି ବୁଝିପାରୁଛ ?''

''ହଁ, ବୁଝିଛି ଯାହା ସାଧାରଣ ଲୋକେ ବୁଝିଥାନ୍ତି । କିନ୍ତୁ ଦାର୍ଶନିକ ବନ୍ଧୁଙ୍କ ଭଳି ମୋର ତ ଅନ୍ତର୍ଦର୍ଶନ ନାହିଁ । ତାଙ୍କ ବୁଝିବା ହିଁ ପ୍ରକୃତ ବୁଝିବା । ତାଙ୍କ ମୁହଁରୁ ଏହାର ଅର୍ଥ କ'ଣ ଶୁଣେ ?''

''ମୋରି ପ୍ରଶ୍ନବାଣରେ ତୁମେ ମତେ ପ୍ରତିବାଣ ମାରିଲ ବନ୍ଧୁ ।'' ଅଧରତଳେ ତାଙ୍କର ମୃଦୁ ମୃଦୁ ହାସ୍ୟରେଖା ।

ମୁଁ ମଧ୍ୟ ସେମିତି ହସି ହସି କହିଲି, ''ରକ୍ତାକ୍ତ କରିବାପାଇଁ କିନ୍ତୁ ନୁହେଁ । କେବଳ ଅର୍ଥର ମଧୁର ନିର୍ଯ୍ୟାସ ବାହାର କରାଇବାପାଇଁ ମାତ୍ର । ବିନା ଆଘାତରେ କ'ଣ କଦମ୍ବବୃକ୍ଷରୁ କାଦମ୍ବରୀ ବାହାରେ ?''

ଆମେ ଦୁଇବନ୍ଧୁ ଠୋ ଠୋ ହୋଇ ହସିଉଠିଲୁ ଏତିକିରେ । ପାଖ ଗଛରେ ବସିଥିବା ପକ୍ଷିଯୁଗଳ ହଠାତ୍ ଉଡ଼ିଗଲେ ଡେଣା ଫଡ଼ ଫଡ଼ କରି । ଆକସ୍ମିକ ଶବ୍ଦରେ ଭୟ ପାଇଲେ ବୋଧହୁଏ ।

ସେ ତାହାପରେ ଭାବଗମ୍ଭୀର ମୁଖ ତୋଳି ପ୍ରଶ୍ନଟିର ସମାଧାନ କରିବାକୁ ଲାଗିଲେ । କହିଲେ, ''ଦେଖ୍ ଭାଇ କର୍ଣ୍ଣ, ଏଇ ଶିଶିରବିନ୍ଦୁଗୁଡ଼ିକ କେଉଁଠୁ ଆସେ, ପୁଣି କେଉଁଠିକି ଯାଏ ତାହା କେହି କହିପାରିବେ ନାହିଁ । ମଣିଷର ଦଶା ମଧ୍ୟ ଠିକ୍ ସେମିତି । ସେ କେଉଁଠୁ ଆସେ ଓ ପୁଣି କେଉଁଠିକୁ ଯାଏ, ତାହା ମଧ୍ୟ କାହାରିକୁ ଜଣା ନାହିଁ । ଆଉ ପୁଣି ଦେଖ ଏଇ ତୃଣପର୍ଣ୍ଣଗୁଡ଼ିକୁ । ସବୁଥିରେ ସୂର୍ଯ୍ୟଙ୍କ ପ୍ରତିବିମ୍ବ ଜଣାଯାଉଛି, ସତେଯେମିତି ପ୍ରତ୍ୟେକଟି ବିନ୍ଦୁ ଗୋଟିଏ ଗୋଟିଏ ପୃଥକ୍ ସୂର୍ଯ୍ୟ । କିନ୍ତୁ ସୂର୍ଯ୍ୟ ରହିଛନ୍ତି ଗୋଟିଏ । ମଣିଷମାନେ ବି ଠିକ୍ ସେମିତି । ଏକ ପରମେଶ୍ୱରଙ୍କର ଭିନ୍ନ ଭିନ୍ନ ରୂପ ନେଇ ଏମାନେ ଘୂରିବୁଲୁଛନ୍ତି

ସଂସାରରେ । ଅଥଚ ଭାବୁଛନ୍ତି ନିଜକୁ ଜଣେ ଜଣେ ସ୍ୱତନ୍ତ୍ର ସତ୍ତା ବୋଲି । ଖାଲି ତ ମଣିଷମାନେ ନୁହନ୍ତି ସମସ୍ତ ଜୀବ ଓ ଜଡ଼ ମଧ୍ୟରେ ସେଇ ଏକ ପରମେଶ୍ୱରଙ୍କ ସତ୍ତା ହିଁ ବିଦ୍ୟମାନ ।'' ସେ ଯେତେ ଦର୍ଶନର କଠିନ ତତ୍ତ୍ୱମାନ ବଖାଣୁଥାନ୍ତି, ସେତେ ସେତେ ମୁଖ ତାଙ୍କର ଗମ୍ଭୀରରୁ ହୋଇଉଠୁଥାଏ ଗମ୍ଭୀରତର । ସୌମ୍ୟରୁ ସୌମ୍ୟତର । ପ୍ରସନ୍ନରୁ ପ୍ରସନ୍ନତର ।

''ଏଭଳି ଘଟେ କାହିଁକି ? ଜାଣି ଜାଣି ମଣିଷ ଏପରି ଭୁଲ କରେ କାହିଁକି ?''

''ଏକମାତ୍ର ଗୋଟିଏ କାରଣ । ଦ୍ୱିତୀୟତ୍ୱର ଧାରଣା । ଜଣେ ନିଜକୁ ଅନ୍ୟଠାରୁ ପୃଥକ୍ ବୋଲି ଭାବେ । ଅନ୍ୟର ସିଦ୍ଧି, ଋଦ୍ଧି ଆଦିକୁ ନିଜର ବୋଲି ଭାବେ ନାହିଁ । ଅନ୍ୟ ପ୍ରତି ଈର୍ଷା କରେ ଠିକ୍ ଯେମିତି କୌରବମାନେ ପାଣ୍ଡବମାନଙ୍କୁ ଈର୍ଷା କରୁଛନ୍ତି । ସେଥିପାଇଁ ତ ବେଦାନ୍ତ ବହୁପୂର୍ବରୁ ସାବଧାନ କରିଦେଇଛି ମଣିଷସମାଜକୁ ଏଇ ଆର୍ଷ ବାକ୍ୟରେ, ଆପ୍ତ ବଚନରେ ଦ୍ୱିତୀୟାଦ୍ୱୈ ବିଭେତି ।''

''ଅର୍ଥାତ୍ ?'' ମୋ'ର ଉଦଗ୍ର ପ୍ରଶ୍ନ । କଥାରେ କଥାରେ ଏମିତି ବେଦାନ୍ତର ଜଟିଳ ତତ୍ତ୍ୱ ଉପସ୍ଥାପିତ ହେବ ବୋଲି ଭାବି ନ ଥିଲି ।

''ଦ୍ୱିତୀୟତ୍ୱର ଧାରଣାରୁ ଭୟ ଆସେ । ଜଣେ ଆଉ ଜଣକୁ ଡରେ ଠିକ୍ ଏଇ ଅଳ୍ପ ସମୟ ଆଗରୁ ଆମକୁ ଡରି ପକ୍ଷିଯୁଗଳ ଉଡ଼ି ପଳାଇଗଲା ଭଳି ।'' ତାଙ୍କ ଭାଷା ଅତି ସହଜ ଓ ସରଳ । ସତେ ଅବା ବନାଶ୍ରମରେ ଆଚାର୍ଯ୍ୟ ନବାଗତ ଶିଷ୍ୟକୁ କଠିନ ତତ୍ତ୍ୱମାନ ବୁଝାଇ ଦେଉଛନ୍ତି ସରଳ ଭାଷାରେ । ଅବଲୀଳା କ୍ରମରେ ।

''ତା' ହେଲେ, ମନୁଙ୍କ ଦାୟାଦ ସାରା ମଣିଷଜାତି କ'ଣ ଚିର ଅଭିଶପ୍ତ ? ନିତିଦିନ ଏମିତି ଅବିଦ୍ୟା ଓ ଅଜ୍ଞାନର ନିଆଁରେ ପଡ଼ି ଜଳି ମରୁଥିବ ପତଙ୍ଗ ଭଳି ?'' ଆଶଙ୍କାପୂର୍ଣ୍ଣ ପ୍ରଶ୍ନ ପଚାରିଲି । ମୋ' କଥାରେ ବ୍ୟଥାର ଗୁଞ୍ଜନ !

''ନା, କଦାପି ନୁହେଁ ।'' କଣ୍ଠସ୍ୱରରେ ତାଙ୍କର ଦୃଢ଼ତା । ତା'ପରେ ପୁଣି ଆଗେଇଲେ, ''ବନ୍ଧୁ କର୍ଣ୍ଣ ! ସାରା ମଣିଷଜାତିର ନାଁ ଧରିବା ତୁମର ଅନୁଚିତ । ସମସ୍ତେ ସମାନ ନୁହନ୍ତି । ଏଇ ଦେଖୁନ, ଏବେବି ସମାଜରେ ଦୁର୍ଯ୍ୟୋଧନ, ଦୁଃଶାସନ, ଜରାସନ୍ଧ ଆଦି ଦୁଷ୍ଟ ଲୋକମାନେ ଅଛନ୍ତି । ଆଉ ଅଛନ୍ତି ବି ପରାଶର, ବ୍ୟାସ ଆଦି ସାଧୁ ମହର୍ଷିମାନେ । ପୁଣି ଅଛନ୍ତି ବି ଭୀଷ୍ମଦେବଙ୍କ ଭଳି ତ୍ୟାଗପୂତ ମହିମାମୟ ଜୀବନ ବିତାଉଥିବା ମହନୀୟ ଯୋଦ୍ଧା ।''

''ଏହାର ପ୍ରଭାବ କ'ଣ ପଡୁଛି ସମାଜ ଉପରେ ? ମାନବଜାତି ଉପରେ ?''

''ପଡୁଛି । ପ୍ରଚଣ୍ଡ ଭାବରେ ପଡୁଛି । ନିଶ୍ଚୟ ପଡୁଛି ।'' ନିଶ୍ଚୟାତ୍ମକ ଭାବ ପ୍ରକାଶ କରିବା ଅବସରରେ ଦକ୍ଷିଣ ହସ୍ତର ଦୃଢ଼ମୁଷ୍ଟିକୁ ଥରାଇ ଥରାଇ କହିଲେ ସେ ।

''କିପରି ?'' ମୋର ସନ୍ଦେହଭରା ପ୍ରଶ୍ନ ।

ମୋ' ସନ୍ଦେହକୁ ମୋଚନ କରିବା ଉଦ୍ଦେଶ୍ୟରେ କହିଲେ, ''ଏଇ ଦେଖ, ପରାଶର, ବ୍ୟାସ, ଭୀଷ୍ମ ଆଦି ମହା ମହା ବ୍ୟକ୍ତିମାନେ ଅଛନ୍ତି ବୋଲି ତ ଆଗରୁ କହିଛି । ଯାହା

ଚିରନ୍ତନ ସତ୍ୟ, ସେମାନେ ତାହାର ପଛରେ ଧାଇଁଥାନ୍ତି । ଦିବ୍ୟ ଜୀବନ ବିତାଇଥାନ୍ତି । ସୁଖ, ଆନନ୍ଦ ପାଇଥାନ୍ତି । ଶାରୀରିକ ନୁହେଁ, ଆତ୍ମିକ । ସେହି ଆତ୍ମିକ ଶକ୍ତି ବଳରେ ହୋଇଉଠିଥାନ୍ତି ମହା ଶକ୍ତିମାନ୍ ।''

''ଶାରୀରିକବଳ ଓ ଆତ୍ମିକ ବଳ ମଧ୍ୟରେ କି ପ୍ରଭେଦ ? ମଣିଷପାଇଁ କ'ଣ ଶାରୀରିକ ବଳ ଗୋଟାଏ ଅଲୋଡ଼ା ଜିନିଷ ?''

''ତାହା ବି ଠିକ୍ ନୁହେଁ ବନ୍ଧୁ । ଉଭୟର ଆବଶ୍ୟକତା ଅଛି ଜୀବନରେ । ଶରୀର ରକ୍ଷା ପାଇଁ ଶାରୀରିକ ବଳ । ଆଉ ଆତ୍ମଜ୍ଞାନ ପାଇଁ ଆତ୍ମିକ ବଳ । ମଣିଷ ନିଜେ କ'ଣ ତାହା ଜାଣିବା ହିଁ ଆତ୍ମିକ ଜ୍ଞାନ । ଏହା ବିନା ମଣିଷ ପ୍ରାଜ୍ଞ ହୋଇପାରେନା । ସେ ଆଉ ଗୋଟିଏ ସତ୍ୟ ପଛରେ ଧାଏଁ ଯାହା କିନ୍ତୁ ନିକୃଷ୍ଟତର ।''

ମନରେ ମୋର ପୁନର୍ବାର ସନ୍ଦେହର ଘନ କୁହେଳିକା । ପଚାରିଲି, ''ସତ୍ୟ ତ ସତ୍ୟ । ତାହାର ପୁଣି ପ୍ରକାରଭେଦ ଅଛି ? ସେଥିରେ ପୁଣି ଉତ୍କୃଷ୍ଟ-ନିକୃଷ୍ଟର ବିଚାର ଅଛି ?''

''ନ ରହିବ କେମିତି ? ମଣିଷର ପ୍ରକାର ଭେଦରେ ସତ୍ୟର ମଧ୍ୟ ପ୍ରକାର-ବିଚାର ଅଛି ଯେମିତି ମଣିଷଜୀବନରେ ଅଛି ଦୁଇଟି ଛାୟା । ଗୋଟିଏ ଅମୃତର । ଅପରଟି ମୃତ୍ୟୁର ।'' ସେ ପୁଣି ଆଗେଇବାକୁ ଲାଗିଲେ, ''ଦିବ୍ୟ ପୁରୁଷମାନେ ଦିବ୍ୟ ଜୀବନ ବ୍ୟତୀତ କରିଥାନ୍ତି । ଅମୃତକୁ ଆଶ୍ରା କରିଥାନ୍ତି ଯାହା ଉତ୍କୃଷ୍ଟ ସତ୍ୟ । ଅନ୍ୟମାନେ ମୃତ୍ୟୁକୁ ଆଶ୍ରା କରିଥାନ୍ତି ଯାହା ନିକୃଷ୍ଟ ସତ୍ୟ । ସେମାନେ ଏମିତି ଜନ-ମୃତ୍ୟୁର ଚକ୍ରରେ ଘୂରୁଥାନ୍ତି ଦିବ୍ୟ ଜ୍ଞାନ ନ ଆସିବା ପର୍ଯ୍ୟନ୍ତ । ଆତ୍ମିକ ଶକ୍ତିରେ ଶକ୍ତିମାନ୍ ନ ହେବା ପର୍ଯ୍ୟନ୍ତ ।''

''ସେମାନେ କ'ଣ ଆତ୍ମିକ ଶକ୍ତି ପାଇପାରିବେ ? ଆତ୍ମିକ ବଳରେ ବଳବାନ୍ ହୋଇପାରିବେ ?''

''ନିଶ୍ଚୟ ପାରିବେ । ଏଥିରେ ଆଦୌ ସନ୍ଦେହ ନାହିଁ । ତେବେ ଏଭଳି ସୌଭାଗ୍ୟ କେବେ ଆସିବ ତାହା ସେମାନଙ୍କ ଉପରେ ହିଁ ନିର୍ଭରଶୀଳ ।'' ତାଙ୍କ କଣ୍ଠରେ ଆଶାବାଦୀ ବାଣୀର ଝଙ୍କାର । ଅନ୍ଧାରରେ ସଡ଼ି ମରୁଥିବା ମଣିଷଜାତି ପାଇଁ ଆଶ୍ୱାସଭରା ପ୍ରଦୀପର ଶିଖା ! ମୋ' ମନରେ ଏକ ନୂତନ ଦ୍ୱନ୍ଦ୍ୱ । ଯଦି ମୃତ୍ୟୁ ଆଉ ଏକ ସତ୍ୟ ଏବଂ ଜନ୍ମମୃତ୍ୟୁର ଚକ୍ରରେ ଘୂରି ଶେଷରେ ଯଦି ଚରମ ଉତ୍କୃଷ୍ଟ ସତ୍ୟ ନିକଟରେ ପହଞ୍ଚିବା ସମ୍ଭବ, ତା'ହେଲେ ମଣିଷ ଶୀଘ୍ର ଆତ୍ମହତ୍ୟା କରି ଦିବ୍ୟଜ୍ଞାନର ପ୍ରାପ୍ତିକୁ ତ୍ୱରାନ୍ୱିତ କରିଦେବ ନାହିଁ କାହିଁକି ? ପଚାରିଲି, ''ହେ ମିତ୍ର ! ତା'ହେଲେ ତ ମଣିଷର ଶୀଘ୍ର ଆତ୍ମହତ୍ୟା କରିଦେବା ଉଚିତ ହେବ । ନୁହେଁ କି ?''

''ମତେ ହସାଇଲ ବନ୍ଧୁ, ହସାଇଲ । ଏ କଥା କଦାପି ଠିକ୍ ନୁହେଁ ।'' ଠୋ ଠୋ ହୋଇ ହସିଉଠି କହିଲେ ସେ । ତାଚ୍ଛଲ୍ୟର ହସ ନୁହେଁ । ବରଂ ଜଣେ ଅବୋଧ ମିତ୍ରର ନିରୀହ ପ୍ରଶ୍ନ ଲାଗି କୌତୁକପୂର୍ଣ୍ଣ ହସ । ଲାଜରେ ମୁଣ୍ଡ ମୋର ହୋଇଗଲା ତଳକୁ । ଭାବିଲି, ସତେ କ'ଣ ଏମିତି ଗୋଟାଏ ନିର୍ବୋଧ ପ୍ରଶ୍ନ ପଚାରିଲି ଯାହା ଫଳରେ ଉପହସିତ ହେଲି ପ୍ରିୟ ମିତ୍ରଙ୍କ ନିକଟରେ ? ସେ ମତେ ସାନ୍ତ୍ୱନା ଦେବାପାଇଁ କହିଲେ, ''ତୁମେ ଯାହା

ପଚାରିଲ, ତାହା କିଛି ଅସ୍ୱାଭାବିକ ପ୍ରଶ୍ନ ନୁହେଁ । ବରଂ ସ୍ୱାଭାବିକ । ଆମେ ଜୀବନକୁ ସୀମିତ ଦୃଷ୍ଟିରେ ଦେଖିଲେ ଏଭଳି ପ୍ରଶ୍ନ ଛୁଇଁବ ମନକୁ । କିନ୍ତୁ ଜୀବନ ତ ଅସୀମ, ଅନନ୍ତ, ଅଖଣ୍ଡ । ତାହାକୁ ଖଣ୍ଡିତ କରିବାର ଅଥବା ଖଣ୍ଡିତ ଦୃଷ୍ଟିରେ ଦେଖିବାର ଅପଚେଷ୍ଟା ବୃଥା । ଏ ବିଷୟରେ ତୁମକୁ ବି ଗୋଟିଏ ପ୍ରଶ୍ନ ପଚାରୁଛି ।''

''ପଚାର ବନ୍ଧୁ ପଚାର । କିନ୍ତୁ ଦାର୍ଶନିକ ପ୍ରଶ୍ନ ପଚାରିଲେ ଉତ୍ତର ଦେବାକୁ ଅକ୍ଷମ ମୁଁ ।'' ହସି ହସି କହିଲି ।

''ଅତି ସାଧାରଣ ପ୍ରଶ୍ନଟିଏ । ଆଚ୍ଛା, କହିଲ ବନ୍ଧୁ, ଥରେ ଆତ୍ମହତ୍ୟା କଲେ ପର ମୁହୂର୍ତ୍ତରେ ଜୀବନକୁ ଫେରାଇ ଆଣିବାର କ୍ଷମତା ତୁମର ଅଛି ?''

''ତାହା କେମିତି ସମ୍ଭବ ? ମୃତ ବ୍ୟକ୍ତି ଜୀବନ ଫେରିପାଇବ କିପରି ?''

''ଯାହା ତୁମେ ଦେଇପାରିବ ନାହିଁ ତାହା ନେବାର କ୍ଷମତା ତୁମର ନାହିଁ । ଜୀବନର ଯେଉଁ ଅନନ୍ତ ସମ୍ଭାବନା, ତାହାକୁ ଏଇ ଜୀବନରେ ହିଁ ସାକାର କରିବାର କ୍ଷମତା ମଣିଷର ଅଛି । ସେଥିପାଇଁ ତା'ର ଉଦ୍ୟମଶୀଳ ହେବା ଉଚିତ ।'' ଗମ୍ଭୀର କଣ୍ଠରେ ତାଙ୍କର ପ୍ରଜ୍ଞାଭରା ବାଣୀ ।

''ଏଇ ସୂତପୁତ୍ର କର୍ଣ୍ଣ ଜୀବନରେ କ'ଣ ତାହା ସମ୍ଭବ ? ଅନନ୍ତ ଜୀବନର ଅର୍ଥ ବୁଝିବା କ'ଣ ସମ୍ଭବ ? ସେଇ ପଥରେ ସେ ପାରିବ କି ଆଗେଇ ?'' ମୋର ଦ୍ୱିଧାଭରା ପ୍ରଶ୍ନ । 'ନୀଚକୁଳସମ୍ଭବ ସଂପର୍କରେ ସଂପୂର୍ଣ୍ଣ ସଚେତନ ଥିଲି ମୁଁ' ।

''କାହିଁକି ନୁହେଁ ? କାହିଁକି ନୁହେଁ ? ତୁମେ ନିଶ୍ଚୟ ପାରିବ ବନ୍ଧୁ, ନିଶ୍ଚୟ ପାରିବ । ତୁମ ଜନ୍ମଜାତ କବଚ-କୁଣ୍ଡଳ ତୁମ ତେଜସ୍ୱିତାର ନିଦର୍ଶନ— ତେଜସ୍ୱୀ କୁଳର ପ୍ରମାଣ । ତୁମେ ବହୁତ କିଛି କରିପାରିବ ଜୀବନରେ ।'' ତାଙ୍କ ଆଶ୍ୱାସଭରା ହାତ ବୁଲି ଆସିଲା ମୋ' ପିଠିରେ । ସତ କହୁଛି, ଖୁବ୍ ଉତ୍ସାହିତ ହୋଇଉଠିଲି ତାଙ୍କ କଥାରେ । ପରେ ପରେ ଯାହା କିଛି ସିଦ୍ଧି ପାଇଛି ଜୀବନରେ, ସବୁର ମୂଳରେ ଅଛି ତାଙ୍କ ବନ୍ଧୁସୁଲଭ ଅନୁପ୍ରେରଣା ତଥା ଉତ୍ସାହ ।

ସେଦିନ ଗଣ୍ଡକୀତୀରରେ ପାଦଚାରଣ କଲା ବେଳେ ମନର ବାଛୁରୀଟି ମୋର ଏଇ ସ୍ମୃତିଧେନୁଟିର ପହ୍ନାରେ ବାରମ୍ବାର ମାରୁଥିଲା ମୁଣ୍ଡିଆ । ଭାବିଲି, ମୁଁ ଯେମିତି ବନ୍ଧୁ ଅଶ୍ୱତ୍ଥାମାଙ୍କ ଦର୍ଶିତ ପଥରୁ ଆଜି ଯାଇଛି ଦୂରେଇ । କକ୍ଷଚ୍ୟୁତ ଗ୍ରହଟି ଭଳି ଛାଡ଼ିଦେଇଛି ମୋ' ଚିରାଚରିତ ପଥଟିକୁ । ଘୂରିବୁଲୁଛି ଲକ୍ଷ୍ୟହୀନ ହୋଇ, ଅଳ୍ପ ସମୟ ପାଇଁ ହେଉ ପଛକେ । ଆଜି ବିଦେଘପ୍ରସ୍ଥରେ ଥାଇ ମନେ ମନେ ବହୁପରିଚିତା ପ୍ରିୟ ଖେଳସାଥିର ପଣତତଳେ ମୁହଁ ଲୁଚାଇବାର ଯେଉଁ ଅପଚେଷ୍ଟା କରୁଛି, ତାହା ମୋ' କ୍ଷୟମାନ ମନର ଫଳଶ୍ରୁତି । ତରୁଣ ମନର କ୍ଷଣିକ ଦୁର୍ବଳତା ମାତ୍ର । ମତେ ମୁକୁଳିବାକୁ ହେବ ମନଃସ୍ଥିତିକୁ ଦୁର୍ବଳ କରିଦେଉଥିବା ଏ ବନ୍ଧନରୁ । ମୋ'ପାଇଁ ରହିଛି ବିଶାଳ କର୍ମକ୍ଷେତ୍ର ହସ୍ତିନାପୁର । ମୋର ଚିର ଈପ୍ସିତ ତୀର୍ଥଭୂମି । ତାହା ମତେ ଚାହିଁରହିଛି ଉଦଗ୍ର ପିପାସା ନେଇ । ମତେ ସିଦ୍ଧିର ଫୁଲବନରେ ବୁଲାଇନେବା ପାଇଁ ଅପେକ୍ଷା କରିରହିଛି ଦ୍ୱାରଦେଶରେ ପ୍ରସାରିତ

ବାହୁ ତୋଳି । ଆଉ ଯାହା କିଛି ସିଦ୍ଧି ଅଛି ପାଇବାକୁ ତାହା ସେଇଠି ହିଁ ପାଇବି । ବିଦେଘପ୍ରସ୍ଥର ପଦ୍ମବନରେ ନୁହେଁ ଅଥବା ଚଞ୍ଚଳନୟନା ପଦ୍ମାଙ୍କ ପଲକ-ଛାଇ ତଳେ ନୁହେଁ । ମତେ ଶୀଘ୍ର ହିଁ ଫେରିଯିବାକୁ ହେବ ହସ୍ତିନାପୁର ।

ଏଇ ଦୃଢ଼ ଚିନ୍ତା ନେଇ ଫେରିଲି ମାମୁଘରକୁ । ସେ ଦିନ ଆଉ କିଛି ଚିନ୍ତା ନ ଥିଲା ମନରେ । କେବଳ ଗୋଟିଏ ମାତ୍ର ଚିନ୍ତା — କିପରି ଶୀଘ୍ର ଫେରିବି ହସ୍ତିନାପୁର । ସେହି ଦିନ ହିଁ ଫେରିଆସିଥାନ୍ତି । ମାମୁ ମାଇଁ ବାଧ କଲେ ରହିବାକୁ । ଗ୍ରାମଭୋଜକ ରତସେନ ମଧ୍ୟ ଅନୁରୋଧ କଲେ । ସେ ଦିନ ସଂଧ୍ୟାରେ ବିଦେଘପ୍ରସ୍ଥର ଗ୍ରାମବାସୀମାନଙ୍କର ମତେ ସଂବର୍ଦ୍ଧନା କରିବାର ବ୍ୟବସ୍ଥା ହୋଇଛି । ତେଣୁ ରହିବାକୁ ହେବ ।

ବାଧ ହୋଇ ରହିଲି । ସଂବର୍ଦ୍ଧନା ପାଇଲି । ସଂବର୍ଦ୍ଧନାସଭାର ସଭାପତି ସ୍ୱୟଂ ରତସେନ । ବୀର ଭାବରେ ବହୁତ କିଛି ପ୍ରଶଂସା ପାଇଲି । ଫୁଲମାଳା ପାଇଲି । ଗତାନୁଗତିକ ଭାବରେ ସବୁ କିଛି ଗ୍ରହଣ କଲି ବିନୟର ସହିତ । ସଭାରେ କିନ୍ତୁ ଜମା ମୋ' ମନ ନ ଥାଏ । ପ୍ରାଣ-ମନ ଲାଗି ରହିଥାଏ ହସ୍ତିନାପୁରଠାରେ । ସଦ୍ୟଫୁଟା ଫୁଲଟି ବୃନ୍ତରେ ଲାଗି ରହିଥାଏ ଯେମିତି ।

ପରଦିନ ସକାଳୁ ସକାଳୁ ଯାତ୍ରା କଲି ହସ୍ତିନାପୁର ଅଭିମୁଖରେ ।

## ତେତିଶ

ହସ୍ତିନାପୁର । କୁରୁବଂଶର ରାଜଧାନୀ ରମ୍ୟନଗରୀ ହସ୍ତିନାପୁର । ଅତୀତ ଓ ବର୍ତ୍ତମାନର ବହୁ ବୀରଙ୍କ ଶୌର୍ଯ୍ୟପ୍ରଖର ନିଃଶ୍ୱାସପବନରେ ସେବିତ ପ୍ରଖ୍ୟାତ ନଗରୀ । ମୋର ଅତୀତ ଓ ଆଗାମୀ ଦିନଗୁଡ଼ିକର କର୍ମଭୂମି । ଯଥାସମୟରେ ଆସି ପହଞ୍ଚିଗଲି ସେହି ନଗରୀରେ । ବାପାଙ୍କୁ ଭୂମିଷ୍ଠ ପ୍ରଣାମ କଲି ଓ ଆଚାର୍ଯ୍ୟ ପରଶୁରାମଙ୍କ ଆଶ୍ରମରେ ଅସ୍ତ୍ରବିଦ୍ୟାର ଯେଉଁ ସିଦ୍ଧି ପାଇଛି ସେ କଥା ଜଣାଇଲି । କହିଲାବେଳେ ମନରେ ମୋର ଗର୍ବ ଓ ଅଭିମାନ ଯେ ପହଁରୁ ନ ଥିଲା, ତାହା କହିଲେ ହେବି ମିଥ୍ୟାବାଦୀ । ବାସ୍ତବିକ ଖୁବ୍ ଗର୍ବିତ ଥିଲି । ଆଉ ଅଭିମାନୀ ବି । ଅନୁଭବ କଲି, ମୋ'ଠାରୁ ଯେମିତି ବେଶି ଗର୍ବ ଓ ଅଭିମାନରେ ଫୁଲିଉଠୁଥାନ୍ତି ବାପା । ବହୁ ଦିନ ଧରି ସେବା କରିଆସିଥିବା ତାଙ୍କ ସାଧନା ବୃକ୍ଷଟି ଆଜି ଯେମିତି ହୋଇଉଠିଛି ଫଳିତ-ପୁଷ୍ପିତ । ଚିର ଆକାଙ୍କ୍ଷିତ ଲକ୍ଷ୍ୟସ୍ଥଳଟି ତାଙ୍କର ଯେମିତି ଆସିଯାଇଛି ଅତି ହାତ-ପାଆନ୍ତାକୁ । ସୂତକୁଳରେ ଜନ୍ମ ହୋଇ ରାଜକୁମାରମାନଙ୍କ ଭଳି କରିଛି ଅସ୍ତ୍ରଶିକ୍ଷା । ପୁଣି ଏମିତି-ସେମିତି ଆଚାର୍ଯ୍ୟମାନଙ୍କ ପାଖରୁ ନୁହେଁ । ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଓ ପରଶୁରାମଙ୍କ ଭଳି ଭୁବନବିଦିତ ଆଚାର୍ଯ୍ୟମାନେ ମୋର ଅସ୍ତ୍ରଗୁରୁ । ଦିବ୍ୟାସ୍ତ୍ରଗୁଡ଼ିକର ଅଧିକାରୀ ହୋଇପାରିଛି । ସାଥେ ସାଥେ ବ୍ରହ୍ମାସ୍ତ୍ରର ମଧ୍ୟ । ସାରା ଜମ୍ବୁଦ୍ୱୀପରେ ହାତ ଗଣତିରେ ଅଳ୍ପ କେତେ ଜଣ କ୍ଷତ୍ରିୟ ଯୋଦ୍ଧା ଥିବେ ମାତ୍ର । ଏମିତି ସୁଯୋଗ କେତେ ଜଣ ବୀରଙ୍କ ଭାଗ୍ୟରେ ବା ଜୁଟେ ? ମୁଁ ଏବେ କୁରୁରାଜ୍ୟରେ କିମ୍ବା ଅନ୍ୟ ଯେ କୌଣସି ପ୍ରଖ୍ୟାତ ରାଜ୍ୟରେ ସୈନ୍ୟବାହିନୀରେ

ପାଇଯିବି ନିଯୁକ୍ତି । ସାଧାରଣ ସୈନିକ ଭାବରେ ନୁହେଁ । ବରଂ ଜଣେ ଅଧିକାରୀ ଭାବରେ । ଜଣେ ରଥୀ ଅଥବା ଅତିରଥୀ ଭାବରେ । ସମସ୍ତେ ମତେ ଡାକିବେ ଅଧିରଥନନ୍ଦନ ମହାରଥୀ କର୍ଣ୍ଣ ବୋଲି । ଏ କ'ଣ କମ୍ ବଡ଼ ସୌଭାଗ୍ୟ ବାପାଙ୍କ ପାଇଁ ? ଏଇ ଚିନ୍ତାରେ ହୁଏତ ଉଲ୍ଲସିତ ହୋଇଉଠୁଥିଲେ ସେ । ବର୍ଷାର ଆଗମନରେ କଦମ୍ବଫୁଲ ଯେମିତି !

ମତେ ଛାତିତଳେ ଜାକି ଧରି ବାରମ୍ବାର ଆଘ୍ରାଣ କରିବାକୁ ଲାଗିଲେ ମୋର ଶିର । ଆଃ । କି ଆଶ୍ୱାସଭରା ଲୋମଶ ବୁକୁତଳ ମାର୍ଜାର ଶିଶୁଟି ଲାଗି ଉଷ୍ଣକୋମଳ ମାର୍ଜାରୀ ମାତାର ବୁକୁତଳ ଯେମିତି ! ସ୍ନେହ ଓ ଆଶିଷରେ ଚିର ଉଚ୍ଛଳ । ଖୁବ୍ ସୁଖଦ ଲାଗୁଥାଏ ମତେ । ଭାବୁଥାଏ, ମୋର ସାମଗ୍ରିକ ସ୍ଥିତିକୁ ହରାଇଦେଇ ମିଶିଯାଆନ୍ତି ପବନରେ । ଆଉ ହିଲ୍ଲୋଳିତ ସ୍ପର୍ଶରେ ଚିରଦିନ କୁତୁ କୁତୁ କରିଦେଉଥାନ୍ତି ସେଇ ସ୍ଥିତିର ଲୋମଶ ଆସ୍ତରଣଟିକୁ !

ମୁଁ ପିତା ହୋଇ ନ ଥିଲେ ବି ଯୌବନର ଝରକା-ଫାଙ୍କ ଦେଇ ଛାପି-ଛାପିକିଆ ଆଲୁଅରେ କିଛିଟା ଦେଖିପାରୁଥାଏ ପିତୃହୃଦୟରେ ପ୍ରତିବିମ୍ବିତ ଛବିସମୂହକୁ । ଅନୁଭବ କରିପାରୁଥାଏ ତାହାର ଗୁରୁ ଗୁରୁ ସ୍ପନ୍ଦନ । ସନ୍ତାନର ଚିରସୁଖ କାମନା କରୁଥିବା ସେଇ ସ୍ପନ୍ଦନ । ପୂର୍ବାଚାର୍ଯ୍ୟମାନେ ଯେଉଁ କହିଛନ୍ତି, ପୁତ୍ର ପିତାଙ୍କ ଆତ୍ମା ବୋଲି ତାହା କେତେ ନିରାଟ ସତ ସତେ ! ଶରୀର ଆତ୍ମାକୁ ଜାବୁଡ଼ି ଧରିରଖିବା ପାଇଁ ଚିରଚେଷ୍ଟିତ । ଆଉ ଆତ୍ମା ବି ଶରୀରର ଗୁମ୍ଫା ମଧ୍ୟରେ ବସା ବାନ୍ଧି ରହିବାପାଇଁ ଅନୁରୂପ ଭାବରେ ଚେଷ୍ଟିତ । ସେଥିପାଇଁ ହୁଏତ ଆତ୍ମା ଯେତେବେଳେ ଅକସ୍ମାତ୍ ଶରୀରକୁ ଛାଡ଼ି ଚାଲିଯାଏ, ସେତେବେଳେ ଶରୀର ଖୁବ୍ କଷ୍ଟ ପାଏ । ଛଟ ପଟ ହୁଏ । କେହି କାହାରିକୁ ଛାଡ଼ିବାକୁ ଚିରଦିନ ଅରାଜି ଯେମିତି ।

ବେଳେବେଳେ ଭାବୁଥାଏ ମନେ ମନେ ଏବଂ ପ୍ରଶ୍ନ କରୁଥାଏ ନିଜକୁ ବାରମ୍ବାର— ପିତା-ପୁତ୍ରଙ୍କ ମଧ୍ୟରେ କିଏ ଆତ୍ମା ଓ କିଏ ଶରୀର ? ମୋର ତ ଏଇ ଧାରଣା ଯେ ଦୁହେଁ ହିଁ ଆତ୍ମା । ଦିଓଟି ନୁହେଁ, ଗୋଟିଏ । ବାହାରକୁ ଜଣା ପଡୁଥାନ୍ତି ପିତା-ପୁତ୍ର ବୋଲି । ଭିନ୍ନ ଭିନ୍ନ ରୂପ ଧରିଥିବା ବିଗ୍ରହ ବୋଲି । ଏଇଟି କେବଳ ମୋର ଅନୁଭବ । ଏଥିପାଇଁ କିଛି ଶାସ୍ତ୍ରୀୟ ପ୍ରମାଣ ଅଛି ନା ନାହିଁ ତାହା ମତେ ଅଜଣା । ହୁଏତ ଜାଣିଥିଲେ ଜାଣିଥିବେ ଦାର୍ଶନିକ ବନ୍ଧୁ ଦ୍ରୋଣପୁତ୍ର ଅଶ୍ୱତ୍ଥାମା । ଯାହା କିଛି ମୋର ଅନୁଭବ, ତାହାହିଁ ଥିଲା ମୋ'ପାଇଁ ଯଥେଷ୍ଟ । ଜୀବନର ଅନ୍ଧଗଳିରେ ତାହାହିଁ ଥିଲା ମୋ' ପାଇଁ ସୁଯୋଗ୍ୟ ଦୀପାଲୋକ ! ସେଇ ଅନୁଭବର ଆଲୁଅରେ ଚିରଦିନ ପଖାଳିହୋଇ ରହିବା କେତେ ସୁଖଦ ସତେ !

ବାପାଙ୍କ ବାହୁବନ୍ଧନରୁ ନିଜକୁ ମୁକ୍ତ କରି କହିଲି, ''ବାପା, ମୋର ମନ ହେଉଛି, ଗାଁକୁ ଟିକିଏ ଯାଆନ୍ତି ।''

''ମୋ' ମୁହଁରୁ କଥା ଛଡ଼ାଇନେଲ ବାପା ବସୁ । ମୁଁ ତ ସେଇ କଥା ତୁମକୁ ଏବେ କହିବାକୁ ଯାଉଥିଲି ।'' ତାଙ୍କର ହସ ହସ ଉତ୍ତର । ତାହା ପରେ ପଚାରିଲେ, ''କ'ଣ କାଲି ଯିବ ? ମାଆ ଭାରି ବ୍ୟସ୍ତ । ଆଉ ସାନଭାଇମାନେ ବି ।''

''କାଲି ନୁହେଁ ବାପା । ଟିକିଏ ପରେ ।''

''ଡେରି କାହିଁକି କରୁଛ ? ମାଆ ଆଦି ସମସ୍ତେ ଗାଁରେ ଖୁବ୍ ବ୍ୟାକୁଳ । ଚାହାନ୍ତି ତୁମକୁ ଦେଖିବାପାଇଁ । ଯେତେ ଶୀଘ୍ର ଯିବ ସେତେ ଭଲ ।'' ସେ ଉପଦେଶ ଦେବା ଛଳରେ କହିଲେ ।

ରାଜକୁମାରମାନଙ୍କ ଅସ୍ତ୍ରପରୀକ୍ଷା ହେବ । ଭାରି ମଜା ଲାଗିବ ଦେଖିବାକୁ । ତାହା ଦେଖିସାରିବା ପରେ ଯିବି । କେବେ ପରୀକ୍ଷା ହେଉଛି ?''

''କାଲି ଛାଡ଼ି ପଅରିଦିନ । ସେଥିପାଇଁ ତ ସମସ୍ତେ ଏଠି ବ୍ୟସ୍ତ । ମୁଁ ବି କିଛି ସମୟ ପରେ ରଙ୍ଗଭୂମି ସ୍ଥଳକୁ ଯିବି । ତୁମେ ଯଦି ଚାହୁଁଛ, ତେବେ ଦେଖିପାର । କିନ୍ତୁ ଗୋଟିଏ କଥା ମନେ ରଖିଥିବ ।'' ସେ ସମ୍ମତି ପ୍ରଦାନ କରି କହିଲେ । ତାହା ସାଥେ ସାଥେ ଶେଷ ପଦଟି କହି ମତେ ପ୍ରତିପ୍ରଶ୍ନ ପଚାରିବା ପାଇଁ କଲେ ଅନୁପ୍ରେରିତ ।

''କ'ଣ ବାପା ?''

''ତୁମର ସେଥିରେ ଭାଗ ନେବାର ଅଧିକାର ନାହିଁ । କାରଣ –''

''ମୁଁ ସୂତପୁତ୍ର । ଏଇଆ ନା ବାପା ?''

''ହଁ, ସେଇଆ ବସୁ । ସେଥିପାଇଁ ଖୁବ୍ ଦୁଃଖିତ ମୁଁ । କ'ଣ ବା କରାଯାଇପାରେ ? ଆମ ଭାଗ୍ୟ ତ ସେମିତି । ଜନ୍ମ ଆମର ସୂତକୁଳରେ । ତୁମେ ଯେତେ ବୀର ହେଲେ ବି ରାଜକୁମାରମାନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା ଦେଖାଇପାରିବ ନାହିଁ ।'' କଣ୍ଠସ୍ୱରରେ ତାଙ୍କର ଆହତ ଅଭିମାନ । ଅସ୍ତ୍ରସ୍ପର୍ଦ୍ଧାରୁ ମତେ ବଞ୍ଚିତ କରାଯାଉଥିବାରୁ ଖୁବ୍ ମନସ୍ତାପ । ପରମ୍ପରାର ନାଗପାଶ ବନ୍ଧନକୁ ଛିନ୍ନ କରିବାର ଅସାମର୍ଥ୍ୟ ହେତୁ ମୁଖମଣ୍ଡଳରେ ଅସହାୟଭାବ ।

''ଜାଣେ ବାପା, ସବୁ ଜାଣେ । ଅସ୍ତ୍ରସ୍ପର୍ଦ୍ଧାରେ ଯେ ଭାଗ ନେଇପାରିବି ନାହିଁ, ସେ କଥା ମତେ ଜଣା ଅଛି । କିନ୍ତୁ ପୌରୁଷ ତ ମୋର ସଂପୂର୍ଣ୍ଣ ନିଜସ୍ୱ । ତାହାରି ବଳରେ ଏ ପର୍ଯ୍ୟନ୍ତ ଯାହା କିଛି ସିଦ୍ଧି ହାସଲ କରିଛି । ଏ କଥାକୁ କିଏ ବା ଅସ୍ୱୀକାର କରିବ ?'' ମୋ' କଣ୍ଠରେ ମଧ୍ୟ ସମଧିକ ଆହତ ଅଭିମାନର ଝଙ୍କାର । ସାମାଜିକ ଉପେକ୍ଷା ଓ ଅବହେଳା ପ୍ରତି ତାଚ୍ଛଲ୍ୟଭରା ଔଦାସୀନ୍ୟ ।

ମତେ ଉତ୍ସାହିତ କରିବାକୁ ଯାଇ ସେ କହିଲେ, ''ବାପା ବସୁ ! କେହି ସ୍ୱୀକାର କରୁ କି ନ କରୁ ସେଥିରେ ଯାଏ ଆସେ ନାହିଁ କିଛି । ଯେଉଁ ପୌରୁଷବଳରେ ତୁମେ ଏତେ ଦୂର ଆଗେଇ ଆସିଛ, ତାହାରି ବଳରେ ପୁଣି ଆଗେଇଯିବ ଆହୁରି ଆଗକୁ । ବହୁତ ଆଗକୁ । ଏ ବିଶ୍ୱାସ ମୋର ଅଛି ।''

''ସବୁ ଆପଣଙ୍କ ଆଶୀର୍ବାଦ ବାପା ।'' ଶିର ଅବନତ କରି କହିଲି ।

"ଶତ ଆଶୀର୍ବାଦ ଦେଉଛି ତୁମକୁ । ଯଶସ୍ୱୀ ହୁଅ ।" ସେ ଆଶୀର୍ବାଦମୁଦ୍ରାରେ ହାତ ଟେକିଲେ ଏବଂ ପରେ ପରେ ଘରୁ ବାହାରିଗଲେ ନିଜ କାର୍ଯ୍ୟ ଉପଲକ୍ଷ୍ୟରେ ।

ମୁଁ ରହି ରହି ସେଇ ଗୋଟିଏ ମାତ୍ର କଥା ଭାବିବାକୁ ଲାଗିଲି ତପସ୍ୱୀ ପୁରୁଷ ଏକ ନିର୍ଦ୍ଦିଷ୍ଟ ମନ୍ତ୍ର ଜପ କରୁଥାନ୍ତି ଯେମିତି । କେତେବେଳେ ଅସ୍ତ୍ରସ୍ପର୍ଦ୍ଧାର ସେଇ ମୁହୂର୍ତ୍ତଟି ଆସିବ ? କେମିତି ଆସିବ ? ଅଭିସାରର ବଂଶୀ ନା ତାଣ୍ଡବର ଡମ୍ବରୁ ବଜାଇ ବଜାଇ ?

## ଚଉତିରିଶ

ହସ୍ତିନାପୁରରେ ଅନେକ କିଛି ଘଟଣା ଘଟିଛି ଅତୀତରେ । ଏବେବି ଘଟୁଛି । ସ୍ମୃତିର ରୋମନ୍ଥନ ଦେଇ ସେଗୁଡ଼ିକରୁ ଅଳ୍ପ କେତୋଟି ମାତ୍ର ଆସୁଛି ମାନସପଟକୁ । ସେଇ ଘଟଣାଗୁଡ଼ିକରୁ କେତୋଟି ବ୍ୟକ୍ତିଗତ ମନକୁ ଉଲ୍ଲସିତ କରୁଛି ତ ଆଉ କେତୋଟି ସାମୂହିକ ମନକୁ କରୁଛି ଉଲ୍ଲସିତ । ରାଜକୁମାରମାନଙ୍କ ଅସ୍ତ୍ରସ୍ପର୍ଦ୍ଧା ପ୍ରଦର୍ଶନର ଉତ୍ସବଟି ସେହିଭଳି ଏକ ବିଶିଷ୍ଟ ଘଟଣା ଯାହା ସହିତ କୁରୁରାଜ ପରିବାରର ସମସ୍ତ ସଭ୍ୟଙ୍କ ସହିତ ସାରା ନଗରବାସୀ ଓ ଜନପଦବାସୀ ସମସ୍ତେ ସଂପୃକ୍ତ । ସମସ୍ତେ ଏପର୍ଯ୍ୟନ୍ତ ରାଜକୁମାରମାନଙ୍କ ଅସ୍ତ୍ରବିଦ୍ୟାରେ ପାଇଥିବା ସିଦ୍ଧି ସଂପର୍କରେ କେବଳ ଶୁଣିଛନ୍ତି ମାତ୍ର । କିନ୍ତୁ ଦେଖି ନାହାନ୍ତି । ଅନୁଭବ କରି ନାହାନ୍ତି । ସେଇ ଦେଖିବା ଓ ଅନୁଭବ କରିବାର ସୁଯୋଗଟି ଆଜି ଉପସ୍ଥିତ । ବହୁ ପ୍ରତୀକ୍ଷିତ ରାଜକୁମାରମାନଙ୍କ ଅସ୍ତ୍ରପରୀକ୍ଷା ସମସ୍ତଙ୍କ ଉପସ୍ଥିତିରେ ଆଜି ହିଁ ହେବ । ଉପସ୍ଥିତ ବୀରମାନଙ୍କ ମଧ୍ୟରୁ ଚୟନ କରାଯିବ ଶ୍ରେଷ୍ଠ ବୀରଙ୍କୁ । ଗୁରୁ ଦ୍ରୋଣାଚାର୍ଯ୍ୟ ଶ୍ରେଷ୍ଠତ୍ୱର ଫୁଲମାଳା ପିନ୍ଧାଇବେ ତାଙ୍କୁ । ମହାରାଜ ଧୃତରାଷ୍ଟ୍ର ତାଙ୍କୁ ନିଜ ହାତରେ ଦେବେ ସ୍ୱର୍ଣ୍ଣକମଳର ଉପହାର । ସମସ୍ତଙ୍କ ମନରେ ତେଣୁ ଉଦଗ୍ର ଉତ୍କଣ୍ଠା କିଏ ହେବେ ଏତେ ବଡ଼ ସୌଭାଗ୍ୟର ଅଧିକାରୀ ?

ମତେ ଯେ ଏଇ ପରୀକ୍ଷାରେ ଭାଗ ନେବାପାଇଁ ସୁଯୋଗ ଦିଆଯାଇ ନାହିଁ ସେଥିପାଇଁ ମନେ ମନେ ହୋଇଉଠୁଥିଲି ବିଦ୍ରୋହୀ । ବୀରରକ୍ତ ମୋର ଟକମକ ହୋଇ ଫୁଟିଉଠୁଥିଲା ଭୂମିକୁ ବିଦାରି ଅଧୀର ପ୍ରବାହରେ ଉଠୁଥିବା ଉଷ୍ଣ ପ୍ରସ୍ରବଣ ଭଳି । କିନ୍ତୁ ଭାଗ୍ୟକୁ ଆଦରି ସହିଯାଉଥିଲି ସବୁ କିଛି । ସହିଯାଉଥିଲି ପରମ୍ପରାର ଶୃଙ୍ଖଳା ଖୋଳପା ଭିତରେ ଥିବା ପଚା-ସଢ଼ା ନୀତି-ନିୟମ, କୁସଂସ୍କାର ଆଦିକୁ । ତଥାପି ମନ ଚାହୁଁଥିଲା ସେଠାକୁ ଯାଇ ସେମାନଙ୍କ ଅସ୍ତ୍ରସ୍ପର୍ଦ୍ଧା ଦେଖିବାକୁ । ବିଶେଷକରି ଅର୍ଜୁନଙ୍କ ଅସ୍ତ୍ରଚାଳନର ସାମର୍ଥ୍ୟ ଦେଖିବାକୁ । ତା'ହେଲେ ମନେ ମନେ ଆକଳନ କରିପାରିବି ତାଙ୍କର ଶକ୍ତି କେତେ ? ଆଉ ମୋର ଶକ୍ତି କେତେ ? କେବେ ଯଦି ସୁଯୋଗ ଆସେ, ତେବେ ତାଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କରିପାରିବି କି ନାହିଁ ?

ସେଦିନ ବାପା କିନ୍ତୁ ପ୍ରାୟ ଦୁଇଘଡ଼ି ଆଗରୁ ଚାଲିଯାଇଥିଲେ ଅସ୍ତ୍ରସ୍ପର୍ଦ୍ଧାର ରଙ୍ଗଭୂମିକୁ । ମହାମନ୍ତ୍ରୀ ବିଦୁର ଯଦିଓ ସବୁ କଥା ବୁଝୁଥାନ୍ତି, ତଥାପି ତାଙ୍କ ଉପରେ କିଛି କମ୍ ଦାୟିତ୍ୱ ନ ଥାଏ । ସେ ଓ ସଂଜୟକକା ଦୁହେଁ ତ ମହାରାଜଙ୍କର ଅତି ପ୍ରିୟ । ତେଣୁ ମହାମନ୍ତ୍ରୀ ସେ

ଦୁହିଁଙ୍କୁ ନିଜ ସାଥିରେ ନେବାକୁ ଭୁଲି ନ ଥାନ୍ତି । ଯିବା ପୂର୍ବରୁ ମତେ ସେ କହିଗଲେ, "ବସୁ, ମୁଁ ଟିକିଏ ଆଗରୁ ଯାଉଛି । ତୁମେ ପଛରେ ଆସିବ ।"

"ଆଜ୍ଞା ।" ବିନୟୀ ଭାବରେ ଉତ୍ତର ଦେଲି ।

ପରେ ପରେ ପ୍ରସ୍ତୁତ ହେବାକୁ ଲାଗିଲି ରଙ୍ଗଭୂମିକୁ ଯିବାପାଇଁ ।

ଏଇ ଅବସରରେ ଅନେକ କଥା ଛୁଉଁଥାଏ ମନକୁ । ଅନେକ ସ୍ପନ୍ଦନ ଆସୁଥାଏ ପ୍ରାଣରେ । ଏ ଅସ୍ତ୍ରସ୍ପର୍ଦ୍ଧା କେଉଁଥିପାଇଁ ? କାହିଁକି ଏପରି ଏକ ବିରାଟ ଉତ୍ସବର ଆୟୋଜନ ? ଏଭଳି ଏକ ମହାର୍ଘ ରଙ୍ଗଭୂମିର ନିର୍ମାଣ ? ପାଣି ଭଳି ବହିଯାଉଛି ରାଜକୋଷରୁ ଅଜସ୍ର ଅର୍ଥ । ଅର୍ଥ ତ ନୁହେଁ ବରଂ ପ୍ରଜାମାନଙ୍କ ଲୁହ-ଲହୁର ଚରିସଞ୍ଚିତ ବିନ୍ଦୁଟିମାନ ଯାହା ରାଜଭାଗ ଆକାରରେ ଠୁଳ ହୋଇ ରହିଛି ରାଜକୋଷରେ । ତାହା କୁଆଡ଼େ ରାଜସ୍ୱ ଯହିଁରେ ପୂର୍ଣ୍ଣ ଅଧିକାର ରାଜାଙ୍କର । ତାହାର ବିନିମୟରେ ସେ ପ୍ରଜାମାନଙ୍କୁ ଦେବେ ସୁରକ୍ଷା । କରିବେ ସେମାନଙ୍କ ହିତସାଧନ । ନାନା କ୍ଷେତ୍ରରେ । ନାନା ଉପାୟରେ । ପ୍ରଶ୍ନ ଆସେ, ଏଭଳି ଉତ୍ସବଟିଏ କରିଦେଲେ କି ହିତ ସାଧିତ ହେବ ସେମାନଙ୍କର ? ନିର୍ଦ୍ଦିଷ୍ଟ କେତେକ ଲୋକଙ୍କ ସ୍ୱାର୍ଥ ସାଧିତ ହେବା ଛଡ଼ା ଏଥିରେ ଆଉ କ'ଣ ବା ଅଛି ? ଏହା ଲୁଣ୍ଠନ ଛଡ଼ା ଆଉ କ'ଣ ବା ହୋଇପାରେ ? ଏଇ ଉତ୍ସବରୂପୀ କଳାଭାଲୁଟି ରାଜକୋଷର ମହୁଫେଣାରୁ ଯେଉଁ ମହୁ ଆଜି ଶୋଷିବାରେ ଲାଗିଛି, ସେଥିରେ ବାଧା ଦେବାକୁ କିଏ ଅଛି ? ପ୍ରଜାମାନେ ବିଚରା ଅସହାୟ ମହୁମାଛିମାନଙ୍କ ଭଳି ଫେଣା ନିକଟରେ ଭଣ ଭଣ ହେଉଥିବା ଭଳି ନିରୀହ ଭାବରେ ଚାହିଁରହିଛନ୍ତି । ଆଖି ଅଛି । ଅଥଚ ସେମାନେ ଜଳକା । ବାଘରା ମହୁମାଛି ହୋଇଥିଲେ ଅବା ଭାଲୁଟିକୁ ଦାରୁଣ ଦଂଶନ କରି ତଡ଼ି ଦେଇଥାନ୍ତେ । ପ୍ରଜାମାନଙ୍କ ମଧ୍ୟରେ କ'ଣ ବାଘରା ମହୁମାଛିମାନଙ୍କ ଆବିର୍ଭାବ ହେବ ନାହିଁ ? ମତେ ଲାଗୁଛି, ଦିନେ ନା ଦିନେ ନିଶ୍ଚୟ ହେବ । ଆଉ ସେତେବେଳେ ରାଜକୀୟ ଥାଟବାଟ, ଆଦବକାଇଦା ଆଦି ସବୁ ଭୁଶୁଡ଼ିପଡ଼ିବ ଭୂର୍ଜପତ୍ରର ଘର ଭଳି । ଏଭଳି ଶୁଭଦିନ ହୁଏତ ନିକଟ ଭବିଷ୍ୟତରେ ଆସି ନ ପାରେ । କିନ୍ତୁ ନିଶ୍ଚୟ ଦିନେ ଆସିବ ହିଁ ଆସିବ । ରାତି ପରେ ଦିନ ନିଶ୍ଚୟ ଆସିବ । କହିପାରିବି ନାହିଁ କେବେ ?

ଏଇ ଯେଉଁ ଉତ୍ସବର ଆୟୋଜନ ଚାଲିଛି, ଏଥିରେ କେବଳ ଆଚାର୍ଯ୍ୟ ଦ୍ରୋଣଙ୍କର ଓ ରାଜପରିବାରର ସ୍ୱାର୍ଥ ନିହିତ । ସଫଳ ଭାବରେ ଏଇଟି ସମାହିତ ହେଲେ ଆଚାର୍ଯ୍ୟଙ୍କ ନାମରେ ଚାରିଆଡ଼େ ଡିଣ୍ଡିମ ବାଜିବ । ଜଣେ ସମର୍ଥ ଆଚାର୍ଯ୍ୟ ବୋଲି ସମସ୍ତେ ତାଙ୍କୁ ଜାଣିବେ । ଅନ୍ୟ କୌଣସି ରାଜପରିବାରରେ ରାଜକୁମାରଙ୍କ ଆଚାର୍ଯ୍ୟ ହେବାର ସୌଭାଗ୍ୟ ବି ମିଳିପାରେ । ରାଜକୁମାରମାନେ ନିଜ ବଳବୀର୍ଯ୍ୟ ଦେଖାଇବାଦ୍ୱାରା ସେମାନଙ୍କ ମନର ଗର୍ବ ଓ ଅଭିମାନକୁ କରିପାରିବେ ରୂପାୟିତ । ସମସ୍ତଙ୍କ ପାଖରୁ ପ୍ରଶଂସା ପାଇ ବଢ଼ାଇବେ ନିଜ ଆତ୍ମବିଶ୍ୱାସକୁ । ବୀର ଭାବରେ ହେବେ ସର୍ବଜନପରିଚିତ । ଏଥିରେ ସେମାନଙ୍କ ପିତାମାତା ଓ ଆତ୍ମୀୟସ୍ୱଜନମାନେ ବି ପାଇବେ ଯଥେଷ୍ଟ ଆନନ୍ଦ ଓ ଆତ୍ମସନ୍ତୋଷ । ଏଇତକ ଛଡ଼ା ଆଉ କୌଣସି ଉଦ୍ଦେଶ୍ୟ ସାଧିତ କରିପାରିବ ନାହିଁ ଏଇ ଉତ୍ସବ ।

ମୁଁ ଏମିତି ଭାବୁଥିଲି ସିନା, ରଙ୍ଗଭୂମିକୁ ଯିବାଲାଗି ପ୍ରସ୍ତୁତିକର୍ମକୁ ତେଣେ ତ୍ୱରାନ୍ୱିତ କରିଚାଲିଥିଲି । କାରଣ ଅସ୍ତ୍ରସ୍ପର୍ଦ୍ଧା ତ ନିଶ୍ଚୟ ହେବ ହିଁ ହେବ । ତାହାକୁ କେହି ବାଧା ଦେଇପାରିବେ ନାହିଁ । ଆଉ ମୋର ଏଇ ଭାବନା ଯେତେ ବିଦ୍ରୋହୀ ହେଲେ ବି ତାହାକୁ ବାଧା ଦେବ ବା କିପରି ? କାନ୍ତାରଭୂମିରେ ପଥ ହରାଇ ବସିଥିବା ପଥିକବଧୂର କାତର କ୍ରନ୍ଦନ ଭଳି ତାହା ମିଳାଇଯିବ ସିନା ସଂସାରର ଏଇ କାନ୍ତାରଭୂମିରେ ! କାଳ ହିଁ କେବଳ ତାହାକୁ ବାଧା ଦେଇପାରିବ । ଖାଲି ତ ବାଧା ଦେବ ନାହିଁ; ବରଂ କରିଦେବ ଚୂର୍ଣ୍ଣବିଚୂର୍ଣ୍ଣ । ପ୍ରଜାସମାଜକୁ ତେଣୁ ପ୍ରତୀକ୍ଷା କରିବାକୁ ହେବ ସେଇ କାଳକୁ । ଉତ୍‌କ୍ରାନ୍ତିର ଧ୍ୱଜା ଉଡ଼ାଇ ଉଡ଼ାଇ ଆସୁଥିବା ସେଇ କାଳକୁ ! ବରଫ ପାହାଡ଼କୁ ବିଦାରି ବିଦାରି ଆସୁଥିବା ସେଇ କାଳକୁ !

ହଠାତ୍ ଗୁଞ୍ଜରିତ ହୋଇଉଠିଲା ମନ୍ଦ୍ରଗମ୍ଭୀର ଶଙ୍ଖନାଦ । ରଙ୍ଗଭୂମି ଆଡୁ ଆସୁଥିଲା । ଅସ୍ତ୍ରସ୍ପର୍ଦ୍ଧା ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ହେଉଥିବା ପ୍ରଥମ ଶଙ୍ଖନାଦ । ଆଉ ଦୁଇ ଥର ଶଙ୍ଖ ବାଜିଲେ ଆରମ୍ଭ ହୋଇଯିବ ଉତ୍ସବ ।

ବାହାରିଲି ରଙ୍ଗଭୂମି ଆଡ଼େ । ବୀରବେଶରେ ସଜ୍ଜିତ ମୁଁ । କାନ୍ଧରେ ଧନୁ ଓ ବାଣଭରା ତୂଣୀର । ହାତରେ ଗୋଧି ଚମଡ଼ାରେ ତିଆରି ଅଙ୍ଗୁଳିତ୍ରାଣ । କଟିତଟରେ ଦୋଦୁଲ୍ୟମାନ କୋଷବଦ୍ଧ ଖଡ଼୍‌ଗ । ଜଣେ ବୀର ମୁଁ । ତେଣୁ ବୀରବେଶରେ ଯିବା କିଛି ହିଁ ନ ଥିଲା ଅସ୍ୱାଭାବିକ । ମନ କାହିଁକି ଡାକିଲା ସେଇ ବେଶରେ ଯିବାକୁ ।

ହସ୍ତିନାପୁରର ବିରାଟ ପ୍ରଶସ୍ତ ରାଜପଥ । ସେଇଥିରୁ ଗୋଟିଏ ପଥ ଲମ୍ବିଯାଇଛି ପ୍ରାନ୍ତରଭୂମିକୁ । ତାହାରି ବୁକୁରେ ଗଢ଼ିଉଠିଛି ମହାର୍ଘ ରମ୍ୟ ରଙ୍ଗଭୂମି । ରାଜପ୍ରାସାଦରୁ ରଙ୍ଗଭୂମିର ଦୂରତା ଅର୍ଦ୍ଧକ୍ରୋଶରୁ କମ୍ ହେବ । ଦର୍ଶକମାନେ ଆଗରୁ ଯାଇ ପ୍ରେକ୍ଷାଳୟରେ ବସିଯାଇଥାନ୍ତି । ମୁଁ ଗଲାବେଳକୁ ରାଜପଥ ପ୍ରାୟ ନିର୍ଜନ । କେହି ଆଗନ୍ତୁକ ଯଦି ହଠାତ୍ ଆସି ପହଞ୍ଚିବେ, ତେବେ ତାଙ୍କର ଧାରଣା ହେବ ଏହା ଯେମିତି ଏକ ପରିତ୍ୟକ୍ତ ନଗର । ଅର୍ଦ୍ଧପଥ ଅତିକ୍ରମ କରିଛି କି ନାହିଁ ଦ୍ୱିତୀୟ ଶଙ୍ଖଟି ବାଜିଉଠିଲା । ଏଥରକ କିନ୍ତୁ ତାହାର ଝଙ୍କାର ଥିଲା ଅଧିକ ସମୟ ପାଇଁ ପ୍ରଲମ୍ବିତ । ଦର୍ଶକମାନଙ୍କୁ ସତର୍କ ରହିବାପାଇଁ ସୂଚନା । ଗତିକୁ ମୋର ବଢ଼ାଇଦେଲି । ଆଉ ମାତ୍ର ତିରିଶ-ଚାଳିଶ ପାଦ ଆଗେଇଲେ ପଡ଼ିବ ରଙ୍ଗଭୂମି । ସୁଶୋଭିତ ମହାଦ୍ୱାରଟି ପରିଷ୍କାର ଦିଶୁଥାଏ । ଆଉ ଦିଶୁଥାନ୍ତି ସେହି ଦ୍ୱାର ଦେଇ ପ୍ରେକ୍ଷାଳୟରେ ପ୍ରବେଶ କରୁଥିବା ମୁଣ୍ଡମାଳ ।

ଏତିକିବେଳେ ଶୁଣିଲି ଏକ କାତର ଚିତ୍କାର, "କିଏ ଅଛ ବାବା ? ମୋ' ବାଡ଼ିଟି କୁଆଡ଼େ ପଡ଼ିଗଲା । ମତେ ଖୋଜିଦିଅ, ଡେରି ହୋଇଯାଉଛି । ତୃତୀୟ ଶଙ୍ଖଟି ଏବେ ବାଜିଉଠିବ । ସାହାଯ୍ୟ କର ବାପା ।"

ଥମିଗଲି ହଠାତ୍ । କାନ ଡେରି ଶୁଣିଲି । ଚିତ୍କାରଟି ଆସୁଥିଲା ମୋର ବାଁ ପଟ ରାସ୍ତା କଡ଼ରୁ । ଚିତ୍କାର କରୁଥିବା ବ୍ୟକ୍ତିଜଣକ ଅନ୍ଧ । ମୋ'ଠାରୁ ଯଥେଷ୍ଟ ଅଧିକ ବୟସର । ପ୍ରୌଢ଼ତ୍ୱକୁ ଅତିକ୍ରମ କରିଯାଇଛନ୍ତି । ତାଙ୍କର ମଧ ଗତି ରଙ୍ଗଭୂମି ଆଡ଼କୁ । ଅକସ୍ମାତ୍ ଆଶ୍ରାବାଡ଼ିଟିକୁ ହଜାଇ ଦେଇଛନ୍ତି । ତାହାକୁ ଖୋଜି ଖୋଜି ଚାଲିଯାଇଛନ୍ତି ରାସ୍ତା କଡ଼କୁ ।

ଆଣ୍ଡ୍ରାବାଡ଼ିଟିକୁ ଖୋଜି ଧରାଇଦେଲି ତାଙ୍କ ହାତରେ ଏବଂ ବାଡ଼ିଟିର ଅନ୍ୟ ମୁଣ୍ଡଟିକୁ ନିଜ ହାତରେ ଧରି ତାଙ୍କୁ କହିଲି, ''ଚାଲନ୍ତୁ ମଉସା, ମୁଁ ବାଡ଼ି ଧରିଛି । ରଙ୍ଗଭୂମିରେ ପହଞ୍ଚାଇଦେବି ।''

''ଦୀର୍ଘାୟୁ ଭବ ବତ୍ସ ! ଆଚ୍ଛା, ତୁମେ କ'ଣ ରଙ୍ଗଭୂମିକୁ ଯାଉଛ ?'' ସେ ମତେ ଆଶୀର୍ବାଦ କରି ପଚାରିଲେ ।

''ହଁ ମଉସା ।''

ମନର କୌତୂହଳ ମେଣ୍ଟାଇବାପାଇଁ ପଚାରିଲି, ''ଆଚ୍ଛା ମଉସା ! ଗୋଟିଏ ପ୍ରଶ୍ନ ପଚାରନ୍ତି । କିଛି ଭାବିବେ ନାହିଁ ତ ?''

''ଏଥିରେ ଭାବିବାର କ'ଣ ଅଛି ? ମୁଁ ଦେଖି ନ ପାରିଲେ ବି ସବୁ କିଛି ବୁଝିପାରୁଛି ତୁମ ବୟସ ବିଷୟରେ । ତୁମେ ମୋ'ଠାରୁ ବୟସରେ କନୀୟାନ୍ । ତାହା ଛଡ଼ା ତୁମେ ତ ମୋର ବନ୍ଧୁ ହୋଇଯାଇଛ ଏହା ଭିତରେ । ପଚାର, କ'ଣ ପ୍ରଶ୍ନ ପଚାରିବ ?''

''ବନ୍ଧୁ ?'' ଆଶ୍ଚର୍ଯ୍ୟ ହୋଇ କଲି ପ୍ରତିପ୍ରଶ୍ନ ।

''ବନ୍ଧୁ ନୁହେଁ ତ ଆଉ କ'ଣ ? ଦୁଇ ଜଣ ସାତ ପାଦ ଏକାଠି ଚାଲିଲେ ହୋଇଯା'ନ୍ତି ବନ୍ଧୁ । ଆମେ ଦୁହେଁ ତ ଏହା ଭିତରେ ପନ୍ଦର ପାଦ ଆଗେଇ ଆସିଲେଣି ଏକାଠି ।''

''ହଁ ଠିକ୍ କହିଛନ୍ତି ମଉସା ।''

ଭାବିନେଲି ଏ ସାମାନ୍ୟ ଜଣେ ଅନ୍ଧ ଭିକ୍ଷୁକ ନୁହନ୍ତି । ଶାସ୍ତ୍ରଜ୍ଞାନରେ ଅବଗାହୀ ମଧ୍ୟ । ଶୁଦ୍ଧଭାଷାର ପ୍ରୟୋଗରୁ ମନରେ ମୋର କିଛିଟା ସନ୍ଦେହ ଥିଲା । ଏବେ ଦୂର ହୋଇଗଲା ।

ପଚାରିଲି, ''ଆଚ୍ଛା ମଉସା, ଆପଣ ତ ଦେଖିପାରୁ ନାହାନ୍ତି । ରଙ୍ଗଭୂମିର ଅସ୍ତ୍ରସ୍ପର୍ଦ୍ଧା ଦେଖିବେ କେମିତି ?''

ସେ ହସି ହସି କହିଲେ, ''ଦେଖି ନ ପାରିଲେ କ'ଣ ହେଲା ? ଶୁଣିପାରିବି ତ ? ପାଖରେ ଥିବା ଲୋକଙ୍କୁ ପଚାରି ବୁଝିପାରିବି ତ ?'' ପରେ ପରେ ଭାବଗମ୍ଭୀର ହୋଇ କହିଲେ, ''ଆମ ମହାରାଜା ତ ଜନ୍ମାନ୍ଧ । ସେ ପୁଣି ଏଡ଼େ ବଡ଼ ରାଜ୍ୟଶାସନର ଭାର ସମ୍ଭାଳିଛନ୍ତି କେମିତି ?'' ନିଜ ପ୍ରଶ୍ନର ନିଜେ ହିଁ ଉତ୍ତର ଦେଇ କହିଲେ, ''କେବଳ ପ୍ରଜ୍ଞାଚକ୍ଷୁଦ୍ୱାରା । ପ୍ରଜ୍ଞାଚକ୍ଷୁର ଶକ୍ତି ଚର୍ମଚକ୍ଷୁର ଶକ୍ତିଠାରୁ ଖୁବ୍ ବେଶି ।''

''ସତ କଥା ମଉସା ।'' ତାଙ୍କ ସହିତ ସହମତି ପ୍ରକାଶ କରି କହିଲି ।

ଇତିମଧ୍ୟରେ ଆମେ ପହଞ୍ଚିଯାଇଥିଲୁ ରଙ୍ଗଭୂମିର ମହାଦ୍ୱାର ନିକଟରେ । ତାହାକୁ ଅତିକ୍ରମ କରି ଭିତରେ ପ୍ରବେଶ କରିଛୁ କି ନାହିଁ ତୃତୀୟ ଶଙ୍ଖଟି ବାଜିଉଠିଲା । ତରତର ହୋଇ ଅନ୍ଧ ବ୍ୟକ୍ତିଜଣଙ୍କୁ ନେଇ ବସାଇଦେଲି ସବା ପଛରେ । ତାଙ୍କ ପାଖରେ ଥିବା ଶୂନ୍ୟ ଆସନରେ ନିଜେ ବସିଲି । ସମସ୍ତ ଆସନ ଏବେ ପରିପୂର୍ଣ୍ଣ । ଦ୍ୱାରପାଳମାନେ ଏଣିକି ଆଉ କାହାଙ୍କୁ ଅନୁମତି ଦେଲେ ନାହିଁ ଭିତରକୁ ଆସିବାପାଇଁ ।

ସ୍ୱସ୍ଥ ହୋଇ ବସିବା ପରେ ମୁହୂର୍ତ୍ତକ ମଧ୍ୟରେ ଆଖି ବୁଲାଇଆଣିଲି ଚାରିଆଡ଼େ । ପରୀକ୍ଷା କରିନେଲି ରଙ୍ଗଭୂମି ଓ ଦର୍ଶକମାନଙ୍କ ସ୍ଥିତିକୁ । ଅର୍ଦ୍ଧଚନ୍ଦ୍ରାକାରରେ ସୁସଜ୍ଜିତ ଆସନସମୂହ । ରାଜଧାନୀର ପ୍ରାୟ ସମସ୍ତ ମାନ୍ୟଗଣ୍ୟ ନାଗରିକ ଉପସ୍ଥିତ । ଆମ ଆଗରେ ପଡ଼ିଛି ବିସ୍ତୀର୍ଣ୍ଣ ପ୍ରାନ୍ତର । ସେଇଠି ହେବ ଅସ୍ତ୍ରସ୍ପର୍ଦ୍ଧାର ପ୍ରଦର୍ଶନୀ । ଗୋଟିଏ ଭବ୍ୟ ମଞ୍ଚ ନିର୍ମିତ । ଆଚାର୍ଯ୍ୟମାନେ ଓ ରାଜପରିବାରର ସଭ୍ୟମାନେ ସେଠାରେ ସମାସୀନ ସୁସଜ୍ଜିତ ଆସନଗୁଡ଼ିକରେ । ସେଗୁଡ଼ିକ ମଧ୍ୟ ଅର୍ଦ୍ଧଚନ୍ଦ୍ରାକାରରେ ସଜ୍ଜିତ । ଆସନସଜ୍ଜା ଏପରି ଥାଏ ଯେ ଆମେ ସେମାନଙ୍କୁ ଦେଖିପାରୁଥାଉ ପରିଷ୍କାର ଏବଂ ସେମାନେ ମଧ୍ୟ ଆମକୁ । ଆଉ ମଧ୍ୟ ଆମର ଓ ସେମାନଙ୍କର ଦୃଷ୍ଟି ଭଲ ଭାବରେ ପଡୁଥାଏ ପ୍ରାନ୍ତରସ୍ଥ ଅସ୍ତ୍ରସ୍ପର୍ଦ୍ଧାର ସ୍ଥାନ ପ୍ରତି । ପ୍ରଥମେ ବସିଥାନ୍ତି କୁଳବୃଦ୍ଧ ପିତାମହ ଭୀଷ୍ମ । ଶୁକ୍ଳ କେଶବାସ ସହିତ ଶୁକ୍ଳ ଦୀର୍ଘ ଶ୍ମଶ୍ରୁ ଭାରି ମାନୁଥାଏ ତାଙ୍କୁ । ପ୍ରାନ୍ତର ଦେଇ ବହି ଆସୁଥିବା ସୁଲୁ ସୁଲୁ ପବନ ସେଇ ଶ୍ମଶ୍ରୁଗୁଚ୍ଛକୁ କୁତୁ କୁତୁ କରିଦେଇ ତହିଁରେ ଭରିଦେଉଥାଏ ହିଲ୍ଲୋଳିତ ସ୍ପର୍ଶ । ତାଙ୍କ ବାମପଟକୁ ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଓ ମହାମନ୍ତ୍ରୀ ବିଦୁର ବସିଥାନ୍ତି କ୍ରମାନ୍ୱୟରେ । ଆଚାର୍ଯ୍ୟ ଦୁହେଁ ମଧ୍ୟ ଅନୁରୂପ ଭାବରେ ଶୋଭା ପାଉଥାନ୍ତି ଶ୍ୱେତ ଅଧରୀୟ ଓ ଉତ୍ତରୀୟ ଦ୍ୱାରା । ମଝିରେ ମହାରାଜ ଧୃତରାଷ୍ଟ୍ର । ତାଙ୍କ ପଛରେ ସଞ୍ଜୟ ଜକା । ସେ ହାତରେ ସ୍ୱର୍ଣ୍ଣ କମଳଟିକୁ ଧରିଥାନ୍ତି । ଉପଯୁକ୍ତ ସମୟରେ ମହାରାଜଙ୍କ ହାତକୁ ବଢ଼ାଇଦେବେ ଶ୍ରେଷ୍ଠ ବୀରଙ୍କୁ ପୁରସ୍କାର ଦେବା ସମୟରେ । ମହାରାଜଙ୍କ ବାମ ପଟକୁ କ୍ରମାନ୍ୱୟରେ ବସିଥାନ୍ତି ବଡ଼ ରାଣୀମା ଓ ସାନ ରାଣୀମା – ଗାନ୍ଧାରୀଦେବୀ ଓ କୁନ୍ତୀଦେବୀ । ଗାନ୍ଧାରରାଜ ଶକୁନି ବଡ଼ ରାଣୀମାଙ୍କ ପଛରେ ଓ ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମା ତାଙ୍କ ପଛରେ ।

ପ୍ରେକ୍ଷାଳୟରେ ସଂପୂର୍ଣ୍ଣ ନୀରବତା । ଛୁଞ୍ଚିଟିଏ ତଳେ ପଡ଼ିଗଲେ ବି ଶବ୍ଦ କରିବ ।

ଦ୍ରୋଣାଚାର୍ଯ୍ୟ ଆସନରୁ ଉଠିଲେ ଓ ନୀରବତା ଭଙ୍ଗ କରି କହିଲେ, ‘‘ହେ ଦର୍ଶକବୃନ୍ଦ ! ଏଇ ବର୍ତ୍ତମାନ ଆରମ୍ଭ ହେଉଛି ରାଜକୁମାରମାନଙ୍କ ଅସ୍ତ୍ରସ୍ପର୍ଦ୍ଧା । ଆଜିର ସ୍ପର୍ଦ୍ଧାପ୍ରଦର୍ଶନରେ ଶ୍ରେଷ୍ଠ ବୀର ମୋ'ଦ୍ୱାରା ହେବେ ପୁଷ୍ପମାଳାଦ୍ୱାରା ଭୂଷିତ । ଆଉ ରାଜ୍ୟ ପ୍ରଶାସନ ପକ୍ଷରୁ ମହାରାଜା ସ୍ୱୟଂ ତାଙ୍କୁ ସଂବର୍ଦ୍ଧିତ କରିବେ ସ୍ୱର୍ଣ୍ଣ କମଳଟିଏ ଦେଇ । ଏଇ ଦେଖନ୍ତୁ, ପ୍ରଥମେ ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ଅଶ୍ୱପୃଷ୍ଠରେ ବସି ଧାଉଁଥିବା ଅବସ୍ଥାରେ ଭେଦ କରୁଛନ୍ତି ଗୋଟିଏ ଯନ୍ତ୍ରାଶ୍ୱର ବାମ ନେତ୍ରକୁ ।'' ଏହା କହି ଇଙ୍ଗିତ ଦେଲେ ସ୍ପର୍ଦ୍ଧାପ୍ରଦର୍ଶନ ଆରମ୍ଭ କରିବାକୁ । ତାଙ୍କ କହିବା ଶେଷ ହୋଇଛି କି ନାହିଁ ପରିଚାରକମାନେ ପ୍ରାନ୍ତର ମଧ୍ୟରେ ଚଳାଇଦେଲେ ଗୋଟିଏ ଯନ୍ତ୍ରାଶ୍ୱକୁ ।

ପ୍ରେକ୍ଷାଳୟ କରତାଳିରେ ଗୁଞ୍ଜରିତ । ଯନ୍ତ୍ରାଶ୍ୱଟି ଡେଇଁ ଡେଇଁ ଚାଲିଥାଏ । ହଠାତ୍ ଦୂରରୁ ଦେଖାଗଲା ଧୂଳିର ପଟଳ ଓ ଅଶ୍ୱକ୍ଷୁରର ଗୁରୁ ଗୁରୁ ଧ୍ୱନି । ଅଶ୍ୱାରୋହୀ ପାଖକୁ ଆସିବାରେ ଜଣାପଡ଼ିଲେ ଯୁଧିଷ୍ଠିର ବୋଲି । ଅଶ୍ୱପୃଷ୍ଠରେ ଥାଇ ସେ ନିକ୍ଷେପ କଲେ ତୀକ୍ଷ୍ଣ ଶୂଳ । ତାହା ଆସି ଧାବମାନ ଅଶ୍ୱଟିର ବାମନେତ୍ରକୁ ଫୁଟାଇଦେଲା ।

"ବାଃ ! କି ଚମତ୍କାର ଲକ୍ଷ୍ୟ ! ସାଧୁ ! ସାଧୁ !" ଅଳ୍ପ ସମୟ ପାଇଁ ପ୍ରେକ୍ଷାଳୟରେ ସାଧୁବାଦର କଳଗୁଞ୍ଜନ ଓ ପୁନର୍ବାର କରତାଳି । ଦ୍ରୋଣାଚାର୍ଯ୍ୟଙ୍କ ହସ୍ତ ସଂକେତରେ ସମସ୍ତେ ପୁଣି ନୀରବିତ । ପରବର୍ତ୍ତୀ କାର୍ଯ୍ୟକ୍ରମଟି ଦେଖିବାପାଇଁ ଅପେକ୍ଷା । ଗୋଟିକ ପରେ ଗୋଟିଏ କାର୍ଯ୍ୟକ୍ରମର ଘୋଷଣା କରୁଥାନ୍ତି ଆଚାର୍ଯ୍ୟ ଓ ତାହା ପରେ ସେଇଟି ହେଉଥାଏ ପ୍ରଦର୍ଶିତ । ତାହା ପରେ ଗତାନୁଗତିକ ଭାବରେ ସାଧୁବାଦ ସହିତ କରତାଳି ।

ଯଥାସମୟରେ ଆରମ୍ଭ ହେଲା ଭୀମସେନ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ଗଦାଯୁଦ୍ଧ ପ୍ରଦର୍ଶନ । ସମସ୍ତଙ୍କ ମନରେ ଉଦଗ୍ର ଆଲୋଡ଼ନ । ଏଇ ଯୁଦ୍ଧଟି କେମିତି ହେବ ? କିଏ ହେବେ ବିଜୟୀ ? ଦୁର୍ଯ୍ୟୋଧନ ନା ଭୀମ ? ଦୁହିଁଙ୍କର ତ ଭଲ ଗଦାଯୋଦ୍ଧା ବୋଲି ନାଁ । ଦୁହେଁ ଯେଉଁପରି ଢଙ୍ଗରେ ଆଖି ଲାଲ ଲାଲ କରି ଓ ଗଦା ଟେକି ଧାଇଁଆସିଲେ ପରସ୍ପର ନିକଟକୁ, ସେଥିରେ ସମସ୍ତେ ଭୟବିହ୍ୱଳ । ସମସ୍ତଙ୍କ ମନରେ ହୁଏତ ସେଇ ଗୋଟିଏ ଚିନ୍ତା, ଅଭିନୟ ନ କରି ସତକୁ ସତ ଗଦାଯୁଦ୍ଧ କରିବେ ନା କ'ଣ ? ତା'ହେଲେ ତ ମହା ବିପଦ ! କ'ଣ ହେବ କେଜାଣି ? ଉଭୟଙ୍କ ମଧ୍ୟରେ ଥିବା ସ୍ୱାଭାବିକ ଶତ୍ରୁତା ସଂପର୍କରେ ଆଚାର୍ଯ୍ୟଦୁହେଁ ଥିଲେ ସଂପୂର୍ଣ୍ଣ ଅବହିତ । ଆଉ ପିତାମହ ଭୀଷ୍ମ ବି । ପିତାମହ ଦ୍ରୋଣାଚାର୍ଯ୍ୟଙ୍କ କାନମୂଳରେ କିଛି କଥା କହିଲେ । ସଙ୍ଗେ ସଙ୍ଗେ ଆଚାର୍ଯ୍ୟ ଠିଆ ହୋଇ ଦୁହିଁଙ୍କୁ ବଡ଼ ପାଟିରେ ସାବଧାନୀ ବାଣୀ ଶୁଣାଇଲେ, "ଶୁଣ ବତ୍ସ ଦୁର୍ଯ୍ୟୋଧନ । ପୁଣି ଶୁଣ ବି ବତ୍ସ ଭୀମ ! ଏହା ପ୍ରକୃତ ଗଦା-ଯୁଦ୍ଧର କ୍ଷେତ୍ର ନୁହେଁ । ଅଭିନୟର କ୍ଷେତ୍ର । କେବଳ ଅଭିନୟ ହିଁ କର ।"

ଦୁହେଁ ପ୍ରାନ୍ତର ମଧ୍ୟରୁ ଏକ ସ୍ୱରରେ ଉତ୍ତର ଦେଲେ, "ହଁ, ଗୁରୁଦେବ ! ଆମେ ଅଭିନୟ ହିଁ କରୁଛୁ ।"

ଏଇ ଉତ୍ତର ଦେବାଟା ମାତ୍ର ହିଁ ଥିଲା ଅଭିନୟ । ଆଉ ସବୁ ବାସ୍ତବ । ଦୁହେଁ ଏଇ ସୁଯୋଗଟିକୁ ହାତଛଡ଼ା କରିଦେବାକୁ ଚାହୁଁ ନ ଥିଲେ । ପରସ୍ପରକୁ ମାରିଦେବା ପାଇଁ ଚାହୁଁଥିଲେ । ଦୁହେଁ ହିଂସ୍ର ଜିଘାଂସାରେ ଅଧୀର । ଅରଣ୍ୟରେ ସଂଗ୍ରାମରତ ସିଂହ ଦୁଇଟି ଯେମିତି । ଉଭୟ ବଳବାନ୍ । ଗଦାଯୁଦ୍ଧରେ ଅତ୍ୟନ୍ତ ପାରଙ୍ଗମ । ଦୁର୍ଯ୍ୟୋଧନଙ୍କ ହାତରେ ଚଉଷଠି ଭାର ଓଜନର ଗଦା । ଭୀମଙ୍କ ହାତରେ ବାଉନ ଭାର ଓଜନର ଗଦା । ଗଦା ଦୁଇଟିର ଚାରିପଟେ ଲାଗିଥିବା ତୀକ୍ଷ୍ଣ କର୍ଣ୍ଣକମାନ ଚିକ୍ ଚିକ୍ କରୁଥାଏ ସୂର୍ଯ୍ୟକିରଣରେ । ବିରୋଧୀର ରକ୍ତ ଲାଗି ହୋଇଉଠୁଥାଏ ତୃଷିତ ।

ଭୀମଙ୍କ ଶିରକୁ ଲକ୍ଷ୍ୟ କରି ପ୍ରବଳ ଗଦାଘାତ କଲେ ଦୁର୍ଯ୍ୟୋଧନ । ଭୀମଙ୍କର ମଧ୍ୟ ସମଧିକ ସଶକ୍ତ ପ୍ରତ୍ୟାଘାତ । ଗଦା ଦୁଇଟି ପରସ୍ପର ସହିତ ବାଜି ଅଗ୍ନିସ୍ଫୁଲିଙ୍ଗଟିମାନ ପଡ଼ିଲା ବିଛାଡ଼ି ହୋଇ । ସାମାନ୍ୟ ଟିକିଏ ଅସତର୍କ ଅବସ୍ଥାରେ ଭୀମସେନଙ୍କ ଶିରକୁ ଲକ୍ଷ୍ୟ କରି ପୁଣି ଥରେ ଦୁର୍ଯ୍ୟୋଧନ କଲେ ଆଘାତ । ଟାଇଁ ଟାଇଁ ଶବ୍ଦ କରି ଗଦା ଆଘାତ କଲା ତାଙ୍କ ଶିରସ୍ତ୍ରାଣକୁ । ମୂର୍ଚ୍ଛିତ ହୋଇ ପଡ଼ିଗଲେ ସେ । ଦୁର୍ଯ୍ୟୋଧନ ତାଙ୍କ ଛାତିରେ ବସିଯାଇ ଦୁଇ ହାତରେ ଚାପିଧରିଲେ କଣ୍ଠଦେଶକୁ । ଶ୍ୱାସପ୍ରଶ୍ୱାସ ରୁଦ୍ଧ ହୋଇଯିବାରେ ଭୀମଙ୍କ

ଆର୍ତ୍ତ ଚିତ୍କାର । ଚତୁର୍ଦ୍ଦିଗରେ ହାହାକାର । ମଞ୍ଚରୁ ତୀବ୍ର ବେଗରେ ଛୁଟିଆସିଲେ କୃପାଚାର୍ଯ୍ୟ ଓ ଧରିନେଲେ ଦୁର୍ଯ୍ୟୋଧନଙ୍କ ହାତକୁ । ତାଙ୍କୁ ଆକଟ କରି କହିଲେ, "ଏ ତୁମେ କ'ଣ କରୁଛ ଦୁର୍ଯ୍ୟୋଧନ ? ଏଇଟା ପରା ଖାଲି ଅଭିନୟର କ୍ଷେତ୍ର ।"

"ହୁଁ !" ତାଚ୍ଛଲ୍ୟଭରା ଚିତ୍କାର କରି ହସ୍ତ ଶିଥିଳ କରିଦେଲେ ଦୁର୍ଯ୍ୟୋଧନ ଓ ଉଠିଆସିଲେ ଭୀମଙ୍କ ବକ୍ଷୋଦେଶରୁ । କ୍ରୋଧ କିନ୍ତୁ ତାଙ୍କର ହୋଇ ନ ଥାଏ ଉପଶାନ୍ତ ! ଦୁଇ ଆଖି ଲାଲ ଲାଲ । ଘୂରୁଛି କୁରାଳଚକ୍ର ଯେମିତି । ନିଃଶ୍ୱାସପବନ ପ୍ରଖର । ଉତ୍‌ଫଣ ଅହିରାଜ ଯେମିତି ।

ଏତିକିରେ ମୂର୍ଚ୍ଛା ତୁଟିଗଲା ଭୀମଙ୍କର । ହଠାତ୍ ଉଠିପଡ଼ିଲେ । ପୂର୍ବଠାରୁ ଅଧିକ ପରାକ୍ରମ ଦେଖାଇ ଆକ୍ରମଣ କଲେ ଦୁର୍ଯ୍ୟୋଧନଙ୍କୁ । କିଛି ସମୟ ଧରି ନିରବଚ୍ଛିନ୍ନ ଭାବରେ ଦୁଇ ବୀରଙ୍କ ମଧ୍ୟରେ ଚାଲିଲା ଆକ୍ରମଣ-ପ୍ରତ୍ୟାକ୍ରମଣ ଓ ଆଘାତ-ପ୍ରତ୍ୟାଘାତ । ବିଚିତ୍ର ଦୁହିଁଙ୍କର ପାଦଚାଳନର ଶୈଳୀ । ମଣ୍ଡଳଗତିରେ କେହି କାହାଙ୍କଠାରୁ ବଡ଼ ନୁହନ୍ତି କି ସାନ ବି ନୁହନ୍ତି । ଦୁହେଁ ରକ୍ତସ୍ନାତ । ତଥାପି ଦୁହିଁଙ୍କ ଚିତ୍କାର ଅଧିକରୁ ଅଧିକ ବିଦୀର୍ଣ୍ଣ କରିଦେଉଥାଏ ଗଗନପବନକୁ । ସମସ୍ତେ ଆତଙ୍କିତ । ଅଭିନୟ ଜାଗାରେ ସତେକ'ଣ ବାସ୍ତବ ଗଦାଯୁଦ୍ଧ ଲାଗିଗଲା ? ସାଧୁବାଦ ଦେବା ପରିବର୍ତ୍ତେ ଦର୍ଶକମଣ୍ଡଳୀରୁ ରହି ରହି ଆସୁଥାଏ ଭୟାର୍ତ୍ତ ଚିତ୍କାର । ମଞ୍ଚାସୀନ ମାନ୍ୟଗଣ୍ୟ ଅତିଥିମାନଙ୍କ ମୁଖମଣ୍ଡଳରେ ଆତଙ୍କର ଛାଇ କେବଳ ଜଣଙ୍କ ଛଡ଼ା । ସେହି ଜଣକ ଥିଲେ ମାତୁଳ ଶକୁନି । ଅଧରତଳେ ତାଙ୍କର ମୃଦୁ ମୃଦୁ ହିଂସ୍ର ହସ । ମୁଁ ଭାବିପାରୁ ନ ଥାଏ ଏହାର କାରଣ କ'ଣ ? ଉଭୟ ବୀରଙ୍କ ଗ୍ଲାନି-ଅବସାଦ ଦେଖି ଆନନ୍ଦ ପାଉଥାନ୍ତି ସେ । ଏଇ ବିଚିତ୍ର ପୁରୁଷଜଣକ ତା'ହେଲେ କେଉଁ ପକ୍ଷର ? କାହାଙ୍କ ମଙ୍ଗଳାକାଙ୍‌କ୍ଷୀ ? ନିଜ ଭାଗିନେୟ ଦୁର୍ଯ୍ୟୋଧନଙ୍କର ନା ଭାଗିନେୟୋପମ ଭୀମଙ୍କର ? ରହସ୍ୟ ଓ କପଟର ଏକ ପ୍ରମୂର୍ତ୍ତ ବିଗ୍ରହ ରୂପେ ଜଣାପଡୁଥିଲେ ସେ ।

ଲକ୍ଷ୍ୟ କଲି, ଏତିକିବେଳେ ଆତଙ୍କିତ ମନ ନେଇ ପିତାମହ ଭୀଷ୍ମ ମହାରାଜଙ୍କୁ କିଛି କହିଲେ । ମହାରାଜ ତାଙ୍କ ଆଦେଶ ଶୁଣାଇଦେଲେ ଦ୍ରୋଣାଚାର୍ଯ୍ୟଙ୍କୁ । ଆଚାର୍ଯ୍ୟ ଠିଆ ହୋଇ ଉଚ୍ଚସ୍ୱରରେ କହିଉଠିଲେ, "ଏତିକିରେ ବନ୍ଦ କର ଗଦାଯୁଦ୍ଧର ପ୍ରଦର୍ଶନ ବତ୍ସ ଦୁର୍ଯ୍ୟୋଧନ ଓ ଭୀମସେନ । ଏହା ମହାରାଜଙ୍କ ଆଦେଶ ।"

ନିଆଁରେ ପାଣି ପଡ଼ିଲା ଭଳି ହଠାତ୍ ବନ୍ଦ ହୋଇଗଲା ଗଦାଯୁଦ୍ଧ । ତାହା ପରେ ଜଣଙ୍କ ପରେ ଜଣେ କରି ଆସିଲେ ଅନ୍ୟ ରାଜକୁମାରମାନେ । ନକୁଳ-ସହଦେବ ପାଣ୍ଡବ ଦୁଇ ଭାଇ ଆସିଲେ । ଦୁଃଶାସନଙ୍କ ସମେତ ଅନ୍ୟାନ୍ୟ କୌରବ ଭାଇମାନେ ବି ଆସିଲେ । ସମସ୍ତେ ନିଜ ନିଜର ଅସ୍ତ୍ରକୌଶଳ ଦେଖାଇଲେ । ବାରମ୍ବାର କରତାଳି ଧ୍ୱନିରେ ପ୍ରେକ୍ଷାଳୟ ମୁଖରିତ ହେବାକୁ ଲାଗିଲା । ମଧ୍ୟେ ମଧ୍ୟେ କେହି ଦର୍ଶକ ଠିଆ ହୋଇ ଆଚାର୍ଯ୍ୟ ଦ୍ରୋଣଙ୍କୁ ମଧ୍ୟ ସାଧୁବାଦ ଦେଉଥାନ୍ତି । ସୁଯୋଗ୍ୟ ଆଚାର୍ଯ୍ୟ ବୋଲି କହି ତାଙ୍କର ପ୍ରଶଂସା କରୁଥାନ୍ତି । ସେତେବେଳେ ଲକ୍ଷ୍ୟ କରୁଥାଏ, ଆତ୍ମପ୍ରସାଦରେ କିପରି ବିହ୍ୱଳ ହୋଇଉଠୁଥାନ୍ତି ଆଚାର୍ଯ୍ୟ !

କିନ୍ତୁ ଏପର୍ଯ୍ୟନ୍ତ ଆସି ନ ଥାନ୍ତି ଅର୍ଜୁନ । ଦେଖାଇ ନ ଥାନ୍ତି ତାଙ୍କ ଅସ୍ତ୍ରଚାଳନଗ ସାମର୍ଥ୍ୟ । ସମସ୍ତେ ଉଦଗ୍ର ଭାବରେ ତାଙ୍କୁ ହିଁ ରହିଥାନ୍ତି ଅପେକ୍ଷା କରି । ମୋର ମଧ ତାଙ୍କୁ ହିଁ ପ୍ରତୀକ୍ଷା । ତାଙ୍କ ସାମର୍ଥ୍ୟ ପ୍ରଦର୍ଶନରୁ ଜାଣିପାରିବି ମୁଁ ତାଙ୍କ ସମକକ୍ଷ କି ନୁହେଁ । ଅର୍ଜୁନ ହସ୍ତିନାପୁରର ଶ୍ରେଷ୍ଠ ବୀର ବୋଲି ଯେଉଁ ଧାରଣା ଏ ପର୍ଯ୍ୟନ୍ତ ରହିଆସିଛି ସମସ୍ତଙ୍କ ମୁହଁରେ, ଏହା ବାସ୍ତବ ନା କେବଳ ପ୍ରଚାରସର୍ବସ୍ୱ ତାହା ଦେଖିନେବି । ଯଦି ଆବଶ୍ୟକ ପଡ଼େ, ବାସ୍ତବତା କ'ଣ ତାହା ଦେଖାଇଦେବି ସର୍ବସମକ୍ଷରେ । ଅବଶ୍ୟ ସୁଯୋଗ ମିଳିଲେ ।

ଏଇଭଳି ଉତ୍କଣ୍ଠାଜଳରେ ଉବେଇ-ଟୁବେଇ ହେଉଥିବା ବେଳେ ପ୍ରେକ୍ଷାଳୟକୁ ମୁଖରିତ କରି ଶୁଣାଗଲା ଦ୍ରୋଣାଚାର୍ଯ୍ୟଙ୍କ ଉଦ୍‌ଘୋଷଣା, "ଏଇ, ବର୍ତ୍ତମାନ ଆସୁଛନ୍ତି ତୃତୀୟ ପାଣ୍ଡବ ଅର୍ଜୁନ । ଅସ୍ତ୍ରଚାଳନର କୌଶଳ ଦେଖାଇବେ ।"

ପ୍ରେକ୍ଷାଳୟରେ କରତାଳି ଦୀର୍ଘସମୟ ଧରି । ଆନନ୍ଦର ପ୍ରବଳ ଉଚ୍ଛ୍ୱାସ । ଏ ପର୍ଯ୍ୟନ୍ତ ଯେଉଁଥିପାଇଁ ପ୍ରତୀକ୍ଷା, ତାହା ଏବେ ଯାଉଛି ସାକାର ହେବାକୁ ।

ଅର୍ଜୁନ ଆସିଗଲେ । ଧନୁର୍ବାଣ ଧରି ଆସିଗଲେ ମଧ୍ୟମ ପାଣ୍ଡବ । ସିଂହଠାଣିରେ ଚାଲି ଚାଲି ଆସିଗଲେ । ପୂର୍ବଠାରୁ ଅଧିକ ସାବଧାନ ହୋଇ ଲକ୍ଷ୍ୟ କରିବାକୁ ଲାଗିଲି ତାଙ୍କ କାର୍ଯ୍ୟକଳାପକୁ ଓ ଦର୍ଶକମାନଙ୍କ ଉପରେ ପଡୁଥିବା ପ୍ରଭାବକୁ । ଅସ୍ତ୍ରଚାଳନର କୌଶଳ ଦେଖାଇବା ପୂର୍ବରୁ ମଞ୍ଚାସୀନ ଗୁରୁଜନମାନଙ୍କୁ ବୀରସୁଲଭ ପ୍ରଣତି ଜଣାଇଲେ ସେମାନଙ୍କ ପାଦତଳକୁ ଲକ୍ଷ୍ୟକରି ଗୋଟିଏ ଗୋଟିଏ ବାଣ ଛାଡ଼ି । ଆଶୀର୍ବାଦ-ମୁଦ୍ରାରେ ହସ୍ତ ଉତ୍ତୋଳନ କଲେ ସେମାନେ । ସେମାନଙ୍କ ମୁଖମଣ୍ଡଳରେ ପରିତୃପ୍ତି ଓ ପ୍ରସନ୍ନତାର ସ୍ନିଗ୍ଧ ପ୍ରଲେପ !

ଅର୍ଜୁନ ପ୍ରଣାମ କରିବା ଶୈଳୀରେ ଏଇ ଯେଉଁ ବାଣଗୁଡ଼ିକ ଛାଡ଼ିଲେ ସେଥିରେ ପ୍ରଶଂସାମୁଖର ଦର୍ଶକବୃନ୍ଦ । କରତାଳି ଉପରେ କରତାଳି । ବିଶେଷଭାବରେ ଲକ୍ଷ୍ୟ କଲି ସାନରାଣୀମାଙ୍କ ମୁହଁକୁ । ଆନନ୍ଦର ଲୁହରେ ଛଳ ଛଳ ତାଙ୍କ ଦୁଇ ଆଖି । ସ୍ତନମଣ୍ଡଳ ପୁତ୍ରସ୍ନେହରେ ଅଧୀର ପ୍ରକମ୍ପିତ । ହୁଏତ ଉଦଗ୍ର ହୋଇଉଠୁଥିବ ନିଜ ବିପୁଳ ପରିସରରେ ପୁତ୍ରଙ୍କୁ ଚାପିରଖିବା ପାଇଁ ବାତ୍ସଲ୍ୟ ମମତାରେ !

ହର୍ଷୋଲ୍ଲାସର ଧ୍ୱନି ଲାଗିରହିଲା ଅନେକ ସମୟ ଧରି । ତାହାପରେ ସବୁ କିଛି ଶାନ୍ତ । ଅର୍ଜୁନଙ୍କ ବାସ୍ତବ ଅସ୍ତ୍ରପରୀକ୍ଷା ଆରମ୍ଭ ହେଲା ।

ପ୍ରଥମେ ପ୍ରୟୋଗ କଲେ ଆଗ୍ନେୟାସ୍ତ୍ର । ଆକାଶରୁ ଖସିବାକୁ ଲାଗିଲା ପୁଞ୍ଜିତ ଅଗ୍ନିପିଣ୍ଡମାନ । ଶହ ଶହ ବୃହଦାକାର ଉଲ୍‌କାପାତ ହେଲା ଯେମିତି । ସତେଅବା ପ୍ରାନ୍ତରସ୍ଥ ସାରା ରଙ୍ଗଭୂମିକୁ ଦଗ୍ଧ କରିଦେବ ମୁହୂର୍ତ୍ତକ ମଧ୍ୟରେ । ସଙ୍ଗେ ସଙ୍ଗେ ପ୍ରୟୋଗ କଲେ ବାରୁଣାସ୍ତ୍ର । ହଠାତ୍ ମହାମେଘମାନଙ୍କର ଆବିର୍ଭାବ । ଗୁରୁ ଗୁରୁ ଗର୍ଜନ କରି ବୃଷ୍ଟିପାତ ପରେ ବୃଷ୍ଟିପାତ । ଜଳର ମହାସମୁଦ୍ର ଉଦ୍‌ବେଳିତ ତରଙ୍ଗମାଳାରେ । ସମସ୍ତଙ୍କୁ ଭସାଇଦେଇ ଗର୍ଭରେ ଧରି ରଖିବ ଯେମିତି । ଅଗ୍ନିର ଜ୍ୱାଳାମୟୀ ଶିଖାମାନ କି ଏକ ଯାଦୁକରର ସ୍ପର୍ଶରେ ହଠାତ୍ ନିର୍ବାପିତ । ଆରେ, ଏ ପୁଣି କ'ଣ ? ସହସା ପାଗର

ପରିବର୍ତ୍ତନ । ପ୍ରବଳ ଝଞ୍ଜା କୁଆଡ଼େ ଥିଲା ହଠାତ୍ ମାଡ଼ିଆସିଲା ସୁ ସୁ ଗର୍ଜନ କରି । ପଡୁଥାଏ, ଉଠୁଥାଏ ସାରା ରଙ୍ଗଭୂମି । ଆଉ ଟିକିଏ ବିଳମ୍ବରେ ମହାଦ୍ୱାରଟି ଉଡ଼ିଯାଇଥାନ୍ତା ବୋଧହୁଏ । ତାଙ୍କ ଦ୍ୱାରା ପ୍ରଯୁକ୍ତ ବାୟବ୍ୟାସ୍ତ୍ରର ଫଳଶ୍ରୁତି । ହଠାତ୍ ଝଞ୍ଜାପବନ କୁଆଡ଼େ ଗଲା ଉଭେଇ । ପୁଣି ଯେଉଁ ଶାନ୍ତିକୁ ସେଇ ଶାନ୍ତି । କେବଳ ଦର୍ଶକମାନଙ୍କ ସାଧୁବାଦ ମଝିରେ ମଝିରେ ଭଙ୍ଗ କରୁଥିଲା ଏଇ ଶାନ୍ତିକୁ । ଭୌମାସ୍ତ୍ର ପ୍ରୟୋଗ କରି ସେ ସୃଷ୍ଟି କଲେ ଗଦାକୁ ଗଦା ମୃତ୍ତିକାପିଣ୍ଡ । ସାରା ପ୍ରାନ୍ତର ଗଦା ଗଦା ମୃତ୍ତିକାପିଣ୍ଡରେ ହୋଇଉଠିଲା ଭରପୂର । ଅନୁରୂପ ଭାବରେ ପାର୍ବତାସ୍ତ୍ରଦ୍ୱାରା କଲେ ଅଗଣିତ ପର୍ବତର ସୃଷ୍ଟି । ଅନ୍ତର୍ଦ୍ଧାନାସ୍ତ୍ରଦ୍ୱାରା ସେଗୁଡ଼ିକୁ ଅଦୃଶ୍ୟ କରାଇଦେଲେ ଏବଂ ନିଜେ ବି ହୋଇଗଲେ ଅଦୃଶ୍ୟ । ମୋହିତ ଦର୍ଶକମାନଙ୍କୁ ଚକିତ-ବିମୂଢ଼ କରାଇ ଦେଖାଇବାକୁ ଲାଗିଲେ ଅଧିକରୁ ଅଧିକ ଅସ୍ତ୍ରସ୍ପର୍ଦ୍ଧା । ଏଭଳି ସ୍ପର୍ଦ୍ଧା ପୂର୍ବରୁ କୌଣସି ବୀର ଦେଖାଇପାରି ନ ଥିଲେ । ସବୁ କିଛି ଦର୍ଶକମାନଙ୍କୁ ଲାଗୁଥାଏ ମାୟାମୟ । କେଉଁ ଏକ ପାରଦର୍ଶୀ ଯାଦୁକରର କୁହୁକ ଯେମିତି ! କ୍ଷଣକରେ ଦୀର୍ଘାୟତନ ହୋଇଯାଉଥାନ୍ତି ତ ଅପରକ୍ଷଣରେ ହୋଇଯାଉଥାନ୍ତି ଅତି କ୍ଷୁଦ୍ରାୟତନ । ଶିଶୁଠାରୁ ବି କ୍ଷୁଦ୍ରତର ।

"ବାଃ ! ବାଃ ! କି ଅପୂର୍ବ ଏ ସିଦ୍ଧି ! ଖାଲି ତ ଅର୍ଜୁନ ଧନ୍ୟ ନୁହନ୍ତି । ଆଚାର୍ଯ୍ୟ ଦ୍ରୋଣ ବି ଧନ୍ୟ । ଗର୍ଭଧାରିଣୀ ମାତା କୁନ୍ତୀ । ସେ ତ ଆହୁରି ଧନ୍ୟା !" ଦର୍ଶକମାନଙ୍କ ମଧ୍ୟରେ କେହି ଜଣେ ଠିଆହୋଇ ସାଧୁବାଦ ଦେବା ଅବସରରେ ଉଚ୍ଚସ୍ୱରରେ କହିଉଠିଲେ । ତାଙ୍କ କଥାକୁ ସମର୍ଥନ କରି ଅନ୍ୟ ଦର୍ଶକମାନଙ୍କ କରତାଳି ବୃଷ୍ଟି । ଏକ ସାଥିରେ ଶହେ ବଜ୍ର ପଡୁଥାଏ ଯେମିତି । ଆଚାର୍ଯ୍ୟ ଦ୍ରୋଣ ଓ ମାତା କୁନ୍ତୀଙ୍କ ମୁଖମଣ୍ଡଳରେ ତୃପ୍ତିଭରା ଆନନ୍ଦର ଲହରୀ ପୂର୍ବଠାରୁ ଆହୁରି ଅଧିକ ଛଳ ଛଳ । କିନ୍ତୁ ଅର୍ଜୁନଙ୍କ ଭାବମୂର୍ତ୍ତି ପୂର୍ବଭଳି ଶାନ୍ତ । ତାଙ୍କର ଆହୁରି ଅନେକ କିଛି ଅସ୍ତ୍ରସ୍ପର୍ଦ୍ଧା ଦେଖାଇବାର ଥାଏ ।

ଅନୁଚରମାନେ ଏବେ ଲୌହନିର୍ମିତ ଶୂକରଟିଏ ନେଇଆସିଲେ । ତାହା ଥିଲା ଯନ୍ତ୍ରଚାଳିତ । ତାହା ଖାଲି ଚାଲୁ ବି ନ ଥିଲା; ତାହାର ମୁଖଟି ଥିଲା ଘୂର୍ଣ୍ଣାୟମାନ । ଯନ୍ତ୍ରରେ ଥରେ ଚାବି ଦେଲେ ତାହା ଘୂରିଯାଉଥିଲା ଚାରିଦିଗକୁ । ଏଇଟିର କ'ଣ ଆବଶ୍ୟକତା ଅଛି, ତାହା ବୁଝିପାରୁ ନ ଥିଲେ ଦର୍ଶକମାନେ । ନିଜ ନିଜ ମତଟିମାନ ପରସ୍ପର ସହିତ ଆଦାନ-ପ୍ରଦାନ ବେଳେ ସୃଷ୍ଟି ହେବାକୁ ଲାଗିଲା ମୃଦୁ ଗୁଞ୍ଜନ ।

"ସାବଧାନ ହୋଇ ଶୁଣନ୍ତୁ ଦର୍ଶକଗଣ ।" ଦ୍ରୋଣାଚାର୍ଯ୍ୟ ଠିଆ ହୋଇ ପୁନର୍ବାର ଉଦ୍‌ଘୋଷଣା କଲେ ଗମ୍ଭୀର ସ୍ୱରରେ । ଏହାର ତାତ୍‌ପର୍ଯ୍ୟ ବୁଝିବାପାଇଁ ହଠାତ୍ ନୀରବିତ ପରସ୍ପର ମଧ୍ୟରେ ହେଉଥିଲା ଗୁଞ୍ଜରଣ । ସମସ୍ତେ ଉଦ୍‌ଗ୍ରୀବ ଉତ୍‌କର୍ଣ୍ଣ ହୋଇ ଚାହିଁରହିଲେ ମଞ୍ଚସ୍ଥ ଆଚାର୍ଯ୍ୟଙ୍କ ପ୍ରତି । ଆଚାର୍ଯ୍ୟ କହିଲେ, "ଅର୍ଜୁନ ଏବେ ଏକାଥରକେ ପାଞ୍ଚଟି ଶର ମାରିବେ । ପାଞ୍ଚଟିଯାକ ଶର ପରସ୍ପରକୁ ନ ଛୁଇଁ କରିବ ସମାନ୍ତରାଳ ଗତି ଏବଂ ବାନ୍ଧିଦେବ ଶୂକରଟିର ଘୂର୍ଣ୍ଣାୟମାନ ମୁଖକୁ । ଆପଣମାନେ ଦେଖନ୍ତୁ ଏଇ ବିଚିତ୍ର ଅସ୍ତ୍ରଚାଳନର କୌଶଳ ।"

ଦର୍ଶକମାନଙ୍କ ମନରେ ସନ୍ଦେହର ଆଲୋଡ଼ନ । ଏହା ସମ୍ଭବ ବୋଲି ବିଶ୍ୱାସ ହେଉ ନ ଥାଏ । ଜଣେ ଦୁଇ ଜଣ ବି ସାହସ ସଞ୍ଚୟ କରି ଆଚାର୍ଯ୍ୟଙ୍କ କଥା ଉପରେ ମନ୍ତବ୍ୟ ଦେଇ କହିପକାଇଲେ, ''ଅସମ୍ଭବ । ଏହା ଏକାନ୍ତ ଅସମ୍ଭବ ।''

''ସମ୍ଭବ କି ଅସମ୍ଭବ ଦେଖିନିଅନ୍ତୁ ନିଜ ଆଖିରେ ।'' ମନ୍ତବ୍ୟର ପ୍ରତିକ୍ରିୟା ଜଣାଇଲାବେଳେ ଆଚାର୍ଯ୍ୟଙ୍କ ଅଧରତଳେ ମୃଦୁ ମୃଦୁ ହସ । ମୁଖମଣ୍ଡଳରେ ଭରା ବିଶ୍ୱାସ । କାରଣ ସେ ନିଜେ ହିଁ ଅର୍ଜୁନଙ୍କୁ ଏଇ କଳା-କୌଶଳ ବିଷୟରେ ଶିକ୍ଷା ଦେଇଛନ୍ତି । ମୁଁ ମଧ ଅନୁରୂପ ଭାବରେ ହସୁଥିଲି । ମତେ ବି ଏହା ଥିଲା ଜଣା । ଦେଖିଲି, ମଞ୍ଚସ୍ଥ ମହାବୀର ପିତାମହ ମଧ ହସୁଛନ୍ତି । ଆଚାର୍ଯ୍ୟଙ୍କ ଇଙ୍ଗିତରେ ଅର୍ଜୁନ ଆଗେଇଆସିଲେ ଅସ୍ତ୍ର ପ୍ରୟୋଗ କରିବାକୁ । ତୂଣୀରରୁ ପାଞ୍ଚଟି ବାଣ କାଢ଼ିଲେ ଏବଂ ସେଗୁଡ଼ିକୁ ଏକସମୟରେ ପ୍ରୟୋଗ କଲେ ଶୂକରଟିର ଦ୍ରୁତ ଘୂର୍ଣ୍ଣାୟମାନ ମୁଖଟିକୁ ଲକ୍ଷ୍ୟକରି । ସେଗୁଡ଼ିକ ସମାନ ଗତିରେ ଯାଇ ଏକ ସମୟରେ ଆଘାତ କଲା ଶୂକରର ମୁଖଟିକୁ । ସମସ୍ତେ ଚକିତ-ସ୍ତମ୍ଭିତ । ଯେଉଁମାନେ କିଛିଟା ଆଗରୁ ସନ୍ଦେହ ପୋଷଣ କରୁଥିଲେ ମନରେ, ସେମାନଙ୍କ ମୁଖଟିମାନ ଏବେ ଲଜ୍ଜାନମ୍ର ଓ ମଳିନ । ଅର୍ଜୁନଙ୍କ ଅପୂର୍ବ ସିଦ୍ଧିରେ ପୁନର୍ବାର ସାଧୁବାଦ ଓ ଘନ ଘନ କରତାଳି ।

ଆଚାର୍ଯ୍ୟଙ୍କ ପୁନର୍ବାର ଉଦ୍‌ଘୋଷଣା, ''ଏଇଟି ଅର୍ଜୁନଙ୍କ ଶେଷ ଅସ୍ତ୍ରସ୍ପର୍ଦ୍ଧା ପ୍ରଦର୍ଶନ । ସେ ବର୍ତ୍ତମାନ ଶବ୍ଦବେଧୀ ବାଣର ପ୍ରୟୋଗ କରିବେ ।''

ଶବ୍ଦବେଧୀ ବାଣ । ବଡ଼ ବିଚିତ୍ର ଏ ବାଣର ସାମର୍ଥ୍ୟ । ଶବ୍ଦର ଆକରକ୍ଷେତ୍ର ଯେଉଁଠି ଥାଉ ପଛକେ ତାହାକୁ ଭେଦ କରିବ । ସକଳ ବାଧାବିଘ୍ନକୁ ଏଡ଼ାଇ ବକ୍ରଗତିରେ ଯାଇପାରିବ । ଜିହ୍ମ ବାଣ ଭଳି ଏହାର ଗତି ତେଣୁ ବକ୍ର ବି ହୋଇପାରେ । କିନ୍ତୁ ସେ କ୍ଷେତ୍ରରେ ଏହାକୁ ଶବ୍ଦବେଧୀ ମନ୍ତ୍ରରେ ଅଭିମନ୍ତ୍ରିତ କରିବାକୁ ହେବ । ଆଗରୁ ତ କହିଛି, ହସ୍ତିନାପୁରରେ କେବଳ ଆମେ ପାଞ୍ଚଜଣ ଏଇ ବାଣର ପ୍ରୟୋଗରେ ସିଦ୍ଧହସ୍ତ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, ଅର୍ଜୁନ ଓ ମୁଁ ନିଜେ । ତେଣୁ ଅର୍ଜୁନଙ୍କ ଦ୍ୱାରା ଏଇ ଯେଉଁ କଳାକୌଶଳର ପ୍ରୟୋଗ ହେବାକୁ ଯାଉଥାଏ, ସେଥିରେ ମୋର କିଛି ହିଁ ନ ଥାଏ ଆଶ୍ଚର୍ଯ୍ୟ ହେବାର । ଅନ୍ୟମାନେ କିନ୍ତୁ ଚାହିଁରହିଥାନ୍ତି ଚକିତ ଉଦ୍‌ବେଗର ସହିତ ।

ଯନ୍ତ୍ରଶୂକରଟିକୁ ପୂର୍ବସ୍ଥାନରୁ କରାଗଲା ଅପସାରିତ । ପ୍ରାନ୍ତରର ଶେଷ ମୁଣ୍ଡରେ ବିରାଟ ଏକ କଦମ୍ବବୃକ୍ଷ । ତାହାର ଅନ୍ତରାଳରେ ରଖାଗଲା ତାହାକୁ । ତାହାର ମୁଖ ମଧରେ ଥିବା ଯନ୍ତ୍ରଟିକୁ ବନ୍ଧା ହେଲା ଗୋଟିଏ ରଜ୍ଜୁରେ । ରଜ୍ଜୁର ଅପର ପ୍ରାନ୍ତକୁ ଧରିଲା ଜଣେ ପରିଚାରକ । ତାହାର ବିପରୀତ ଦିଗକୁ ମୁଖ କରି ଧନୁର୍ବାଣ ଧରି ରହିଲେ ଅର୍ଜୁନ । ଆଚାର୍ଯ୍ୟଙ୍କ ସଂକେତ ପାଇ ପରିଚାରକଜଣକ ଟାଣିଦେଲା ରଜ୍ଜୁଟିକୁ । ସଙ୍ଗେ ସଙ୍ଗେ ଯନ୍ତ୍ରଶୂକର କଲା ବିଚିତ୍ର ଏକ ଶବ୍ଦ । ସେହି ଶବ୍ଦକୁ ଲକ୍ଷ୍ୟ କରି ଅର୍ଜୁନ ଛାଡ଼ିଲେ ଜିହ୍ମ ବାଣ ଆକାଶ ଉପରକୁ । ଅଳ୍ପ କିଛି ପଥ ଯିବା ପରେ ତାହା ଗତି ପରିବର୍ତ୍ତନ କରି ଆଘାତ କଲା ଲକ୍ଷ୍ୟସ୍ଥଳରେ ।

ସାଧୁବାଦ ଓ କରତାଳିରେ ପୁନର୍ବାର ଉଚ୍ଛଳ ପ୍ରେକ୍ଷାଳୟ । ଭୀମସେନଙ୍କୁ ଲକ୍ଷ୍ୟ କଲି । ଅନ୍ୟାନ୍ୟ ରାଜକୁମାରମାନଙ୍କ ସହିତ ଅସ୍ତ୍ରପରୀକ୍ଷା ଦେଇସାରିବା ପରେ ସେ ଆସି ବସିଥାନ୍ତି ନିଜ ଆସନରେ ଦର୍ଶକମାନଙ୍କ ଆଗଧାଡ଼ିରେ । ସେ ଚାଦର ହଲାଇ ଉଦ୍ଦଣ୍ଡ ନୃତ୍ୟ କରିବାକୁ ଲାଗିଲେ । ନିଜ ଅନୁଜଙ୍କ ସିଦ୍ଧିରେ ଫାଟିପଡୁଥାନ୍ତି ହର୍ଷୋଲ୍ଲାସରେ । ଆନନ୍ଦର ଚିତ୍କାର କରୁଥିବା ଅବସ୍ଥାରେ ସେ କ'ଣ ଯେ କହିଯାଉଥାନ୍ତି, ଭଲଭାବରେ ବୁଝାପଡୁ ନ ଥାଏ । ଉନ୍ମତ୍ତପ୍ରାୟ ହୋଇଯାଇଥାନ୍ତି । ପୁଣି ବେଳେବେଳେ ଶିଶୁଟିଏ ଭଳି ଆନନ୍ଦରେ ତାଳି ମାରି ଘୂରି ବୁଲୁଥାନ୍ତି । ଅନ୍ୟାନ୍ୟ ପାଣ୍ଡବମାନେ ମଧ୍ୟ ସମଧିକ ଆନନ୍ଦବିହ୍ୱଳ । ମାତା କୁନ୍ତୀଦେବୀଙ୍କ ନେତ୍ରପ୍ରାନ୍ତ ଅଶ୍ରୁସଜଳ । ଅଥଚ ଦୁର୍ଯ୍ୟୋଧନ ଆଦି କୌରବମାନେ । ସେମାନେ ବସିଥାନ୍ତି ଅବନତ ବଦନରେ ବିମର୍ଷ ପ୍ରାଣ-ମନ ଧରି ।

ମତେ କିନ୍ତୁ ଏସବୁ ଲାଗୁଥାଏ ବିରକ୍ତିକର ଓ ଅସହ୍ୟ । ଖୁବ୍ କ୍ରୋଧ ଆସୁଥାଏ । ଧମନୀର ପ୍ରତିଟି ଶୋଣିତବିନ୍ଦୁ ଫୁଟିଉଠୁଥାଏ ଟକମକ ହୋଇ । ଏଇ ସାମାନ୍ୟ ଟିକିଏ ସିଦ୍ଧିପାଇଁ ପୁଣି ଏଭଳି ହର୍ଷୋଲ୍ଲାସ ! ଇଚ୍ଛା ହେଉଥାଏ, ଠିଆ ହୋଇପଡ଼ି କରିବାକୁ ଉପହାସର ଅଟ୍ଟହାସ୍ୟ । କିନ୍ତୁ ସଂଭ୍ରମ ଦେଉଥାଏ ବାଧା । ଗୁରୁଜନମାନେ ଅଛନ୍ତି । ଏଭଳି ଆଚରଣ ଦେଖି କ'ଣ ଭାବିବେ ? ଏଇ ବିଚାରରେ କୌଣସିମତେ ସଂଯତ କରିନେଲି ନିଜକୁ ।

ଲକ୍ଷ୍ୟକଲି ଆଚାର୍ଯ୍ୟ ଦ୍ରୋଣଙ୍କୁ । ସେ, ପିତାମହ ଭୀଷ୍ମ, ମହାମନ୍ତ୍ରୀ ବିଦୁର ଓ କୃପାଚାର୍ଯ୍ୟ କିଛି ସମୟ ଧରି ପରସ୍ପର ମଧ୍ୟରେ ମୃଦୁ ମୃଦୁ କଥାବାର୍ତ୍ତା ହେଲେ । ତାହା ପରେ ମହାରାଜଙ୍କ ସହମତି ନେଇ ଉଠିଲେ ଘୋଷଣା କରିବାକୁ ନିର୍ବାଚିତ ଶ୍ରେଷ୍ଠ ବୀରଙ୍କ ନାମ । କହିଲେ "ହେ ସୁଧୀ ଦର୍ଶକବୃନ୍ଦ ! ଶୁଣନ୍ତୁ ଆଜିର ଅସ୍ତ୍ରସ୍ପର୍ଦ୍ଧାର ସର୍ବଶ୍ରେଷ୍ଠ ବୀରଙ୍କ ନାମ । ସେ ହେଉଛନ୍ତି—"

ତାଙ୍କ କଥାକୁ ସଂପୂର୍ଣ୍ଣ ହେବାକୁ ଦେଲି ନାହିଁ । ନିଷ୍ପତ୍ତି କ'ଣ ହେବ ତାହା ଜାଣିଗଲି । ଜାଣି ବି ଗଲି କିଏ ହେବେ ସର୍ବଶ୍ରେଷ୍ଠ ବୀର । ଯେ ଆଉ କେହି ନୁହନ୍ତି । ସ୍ୱୟଂ କୁନ୍ତୀପୁତ୍ର ଅର୍ଜୁନ ଯାହାଙ୍କ ନାମ ଆଚାର୍ଯ୍ୟ ଆଗରୁ ସ୍ଥିର କରି ରଖିଛନ୍ତି ମନେ ମନେ । ଅର୍ଜୁନ ତାଙ୍କର ସର୍ବପ୍ରିୟତମ ଶିଷ୍ୟ । ତାଙ୍କ ଛଡ଼ା ଆଉ କେହି ଜଣେ ଯେ ତାଙ୍କ ଆଗରେ ଶ୍ରେଷ୍ଠତ୍ୱର ଗୌରବ ପାଇପାରିବେ, ଏହା ତାଙ୍କପାଇଁ ଅସହ୍ୟ । ଖାଲି ତ ଅସହ୍ୟ ନୁହେଁ । ବିଶ୍ୱାସର ବାହାରେ । ଏଇ ମାନସିକ ନିଷ୍ପତ୍ତିକୁ ରାଜକୀୟ ସ୍ୱୀକୃତି ଦ୍ୱାରା ଭୂଷିତ କରିବାପାଇଁ ତାଙ୍କର ଏଇ ହୀନ ଉଦ୍ୟମ । ହୀନ ଉଦ୍ୟମ କହିଲେ ଠିକ୍ ହେବ ନାହିଁ । ବରଂ ହୀନଚକ୍ରାନ୍ତ । ବୀର ନିର୍ବାଚନ ଖାଲି ଗୋଟାଏ ପ୍ରହସନ । ସର୍ବସାଧାରଣ ଜଳକା ହୋଇ ସେଇ ପ୍ରହସନକୁ ଦେଖୁଛନ୍ତି ମାତ୍ର । ମୋହିତ ହୋଇ କରୁଛନ୍ତି ସାଧୁବାଦ । ମାରୁଛନ୍ତି କରତାଳି ଉପରେ କରତାଳି । ବାସ୍ତବିକ ସବୁ ପୁରସ୍କାର ଠିକ୍ ଏମିତି । ଆଗରୁ କିଏ ପାଇବେ ଠିକ୍ କରାଯାଏ । ପରେ ସର୍ବସାଧାରଣଙ୍କ ଉପରେ ଲଦିଦିଆଯାଏ ଏକ ଉପହସନୀୟ ନିର୍ବାଚନ ମାଧ୍ୟମରେ । ବାହାରକୁ ଜଣାପଡ଼େ ନିର୍ମଳ ଓ ନିଷ୍ପକ୍ଷ ବୋଲି । କିନ୍ତୁ ପ୍ରକୃତ ପକ୍ଷେ ଠିକ୍ ଏହାର ଓଲଟା । ଛି ! ଛି ! ବୀରତ୍ୱର ସ୍ୱୀକୃତି ନାମରେ ଏମିତି ଭଣ୍ଡାମି !

ମନ ମୋର ବିଦ୍ରୋହ କରିଉଠିଲା ଏଭଳି ଅନ୍ୟାୟ ଦେଖି । ଠିଆ ହୋଇଯାଇ ଉଚ୍ଚ ସ୍ୱରରେ କହିଲି, ''ବନ୍ଦ କରନ୍ତୁ ଆଚାର୍ଯ୍ୟବର । ବନ୍ଦ କରନ୍ତୁ ।''

''କାହିଁକି ?'' ଆଚାର୍ଯ୍ୟଙ୍କ କଣ୍ଠରେ କ୍ରୋଧଭରା ପ୍ରତିବାଦର ସ୍ୱର । ମଞ୍ଚସ୍ଥ ମାନ୍ୟଗଣ୍ୟ ଗୁରୁଜନ ଅତିଥିମାନେ ଚକିତ-ବିସ୍ମିତ । ଦର୍ଶକମାନେ ମଧ୍ୟ ତତୋଽଧିକ ଚକିତ-ବିସ୍ମିତ । ରାଜକୁମାରମାନେ ମୋ' ଆଡ଼କୁ ଚାହୁଁଥାନ୍ତି ମୁହଁ ଲେଉଟାଇ । କେହି କେହି ପ୍ରତିବାଦାତ୍ମକ ଭଙ୍ଗୀରେ ତ ଆଉ କେହି କେହି ସମର୍ଥନାତ୍ମକ ଭଙ୍ଗୀରେ ।

''କାରଣ ଅସ୍ତ୍ରସ୍ପର୍ଦ୍ଧା ଏ ପର୍ଯ୍ୟନ୍ତ ସରି ନାହିଁ ।'' ବିନୟ ଅଥଚ ଦୃଢ଼ ସ୍ୱରରେ କହିଲି ।

''ସରି ନାହିଁ କେମିତି ଯୁବକ ? ଅର୍ଜୁନ ତ ଥିଲେ ଶେଷ ସ୍ପର୍ଦ୍ଧାକାରୀ ବୀର । ତାଙ୍କ ସ୍ପର୍ଦ୍ଧା ସରିଯାଇଛି ।'' ଆଚାର୍ଯ୍ୟଙ୍କ କଣ୍ଠର ଦୃଢ଼ତା କିଛି କମ୍ ନ ଥାଏ ।

''ଏ ରଙ୍ଗଭୂମିରେ ଅର୍ଜୁନଙ୍କଠାରୁ ଆହୁରି ଅଧିକ ବଳବାନ୍ ବୀର ଅଛନ୍ତି । ତାଙ୍କ ଅସ୍ତ୍ରସ୍ପର୍ଦ୍ଧା ସରି ନାହିଁ । ତେଣୁ ଏବେ ଶ୍ରେଷ୍ଠ ବୀରଙ୍କ ନିର୍ବାଚନ ହେବ ବା କିପରି ?''

''କିଏ ସେ ବୀରଜଣକ ?''

''ମୁଁ ନିଜେ ଆଚାର୍ଯ୍ୟବର !''

''ତୁମକୁ ତ କେହି ନିମନ୍ତ୍ରଣ କରି ନାହିଁ ।'' କଣ୍ଠରେ ତାଙ୍କର ତାଚ୍ଛଲ୍ୟର ଭାଷା । ସେ ମତେ ଚିହ୍ନିପାରିଥିଲେ । ଏହିଭଳି କଥା କହି ମତେ ଅପମାନିତ କରିବାକୁ ଚାହୁଁଥିଲେ । ଅଥବା ହୁଏତ ଜାଣିଥିବେ ଆମ ଦୁହିଁଙ୍କ ମଧ୍ୟରେ କିଏ ଅଧିକ ବୀର ? ସେଥିପାଇଁ ହୁଏତ ମତେ ଅସ୍ତ୍ରସ୍ପର୍ଦ୍ଧାରୁ ଦୂରେଇ ରଖିବାକୁ ଚାହୁଁଥିଲେ । କିନ୍ତୁ ତାଙ୍କର ଧାରଣା ନ ଥିଲା ଯେ କର୍ଣ୍ଣର ଏହା ଭିତରେ ଘଟିଛି ଯଥେଷ୍ଟ ପରିବର୍ତ୍ତନ । ଅତ୍ୟାଚାର, ଅନ୍ୟାୟ, ଉପେକ୍ଷା ଆଦିର ମୁଦ୍‌ଗର-ପ୍ରହାର ଖାଇ ଖାଇ ବୁକୁ ତା'ର ହୋଇଯାଇଛି ଟାଣ । ଭଗବାନ୍‌ଙ୍କ ଆଶୀର୍ବାଦରୁ ସେ ବି ଆଜି ଅନ୍ୟ ରାଜକୁମାରମାନଙ୍କ ଭଳି ହୋଇପାରିଛି ଜଣେ ବୀରପୁରୁଷ । ବରଂ ଦିବ୍ୟାସ୍ତ୍ରସମୂହ ଓ ବ୍ରହ୍ମାସ୍ତ୍ରର ଜ୍ଞାନ ପାଇ ଅନ୍ୟମାନଙ୍କଠାରୁ କେତେକ କ୍ଷେତ୍ରରେ ହୋଇଉଠିଛି ଗରୀୟାନ୍ । ସେ ଆଜି ସୂତପୁତ୍ରର ପରିଚୟ ଧରି ନୂଆ କରି ବିଦ୍ୟାୟତନକୁ ଆସି ନାହିଁ ଶିକ୍ଷାର୍ଥୀ ହୋଇ । ବିଦ୍ୟାଦାନର ଭିକ୍ଷା ମାଗି । ସେ ତେଣୁ ଆଜି ଦବିଯିବ କାହିଁକି ? ଭୟ କରିବ କାହିଁକି ? ବୀରତ୍ୱର ସ୍ୱୀକୃତି ନାମରେ କରାଯାଉଛି ଯେଉଁ ଅନ୍ୟାୟ-ଅବିଚାର, ତାହାକୁ ସହିଯିବ କାହିଁକି ? ସେ ତ ଭିକ୍ଷୁକ ହୋଇ କାହାଠାରୁ ବୀରତ୍ୱର ଭିକ୍ଷା ମାଗିଆସି ନାହିଁ । ଯାହା ତା'ର ନିଜସ୍ୱ ସମ୍ପତ୍ତି ତାହାରି ଅଭିମାନ ନେଇ ଆସିଛି ।

ଆଚାର୍ଯ୍ୟ ମୋର ଗୁରୁ । ତେଣୁ ତାଙ୍କ ପ୍ରତି ତାଚ୍ଛଲ୍ୟର ପ୍ରତିଭାଷା ପ୍ରୟୋଗ କରିବା ଅଶିଷ୍ଟାଚାର, ଅସଦାଚାର । ତାହା କେମିତି ବା କରିଥାନ୍ତି ମୁଁ ? ତେଣୁ ବିନୟଭରା ଅଥଚ ଦୃଢ଼ ସ୍ୱରରେ କହିଲି, ''ହେ ଆଚାର୍ଯ୍ୟବର ! ବୀରତ୍ୱ ବୀରର ନିଜସ୍ୱ ସମ୍ପତ୍ତି । ତାହା କାହାଙ୍କ ନିମନ୍ତ୍ରଣକୁ ଅପେକ୍ଷା କରେ ନାହିଁ ।''

ପ୍ରକୃତରେ ପିତାମହ ଭୀଷ୍ମ ଜଣେ ନିଷ୍ପକ୍ଷ ବ୍ୟକ୍ତି । ସେ ମୋ' କଥାକୁ ସମର୍ଥନ କରି କହିଲେ, ''ଯୁବକ ଯାହା କହୁଛନ୍ତି ତାହା ଠିକ୍ କଥା । ବୀରତ୍ୱ ନିମନ୍ତ୍ରଣକୁ ଅପେକ୍ଷା କରେ ନାହିଁ । ମୁଁ ତ ନିଜେ ବିନା ନିମନ୍ତ୍ରଣରେ ବାରାଣସୀ ଯାଇ ସ୍ୱୟଂବର-ସଭାରୁ କାଶିରାଜଙ୍କ ଦୁଇ କନ୍ୟାଙ୍କୁ ଚିତ୍ରାଙ୍ଗଦ ଓ ବିଚୀତ୍ରବୀର୍ଯ୍ୟଙ୍କୁ ବିବାହ ଦେବା ଉଦ୍ଦେଶ୍ୟରେ ଅପହରଣ କରି ଆଣିଥିଲି ।''

ମହାମନ୍ତ୍ରୀ ବିଦୁର, ମାତୁଳ ଶକୁନି ମଧ୍ୟ ପିତାମହଙ୍କ ସହିତ ସହମତି ପ୍ରକାଶ କଲେ । ଦୁର୍ଯ୍ୟୋଧନଙ୍କୁ ଏତିକିରେ ମିଳିଗଲା ଅପୂର୍ବ ସୁଯୋଗ । ସେ ମଧ୍ୟ ଅର୍ଜୁନଙ୍କର ଶ୍ରେଷ୍ଠ ବୀରଙ୍କ ଗୌରବରେ ଭୂଷିତ ହେବାର ସମ୍ଭାବନାକୁ ସହିବା ଅବସ୍ଥାରେ ନ ଥିଲେ । ଦ୍ରୁତ ଗତିରେ ଆଗେଇ ଆସିଲେ ମଞ୍ଚ ଉପରକୁ ଏବଂ ଦୃଢ଼ସ୍ୱରରେ କହିଲେ, ''ସବୁ ବୀରଙ୍କ ସମାନ ଅଧିକାର ଅଛି ଏଇ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବାରେ । ତେଣୁ ଯୁବକଙ୍କୁ ନିଜ ବିଦ୍ୟାର ପ୍ରଦର୍ଶନୀ ଦେଖାଇବାପାଇଁ ଅନୁମତି ମିଳୁ ।''

ଭୀମସେନ ତଥା ଅନ୍ୟାନ୍ୟ ପାଣ୍ଡବମାନେ ବି ମତେ ଚିହ୍ନିପାରିଲେ । ତଥାପି ମତେ ଅପମାନିତ କରିବା ଉଦ୍ଦେଶ୍ୟରେ ଭୀମସେନ ପଚାରିଲେ, ''ତୁମ ପରିଚୟ ଯୁବକ ?''

''କର୍ଣ୍ଣ ।''

''ବଂଶ-ପରିଚୟ ?''

''ବୀରର ବଂଶ-ପରିଚୟ ନ ଥାଏ । ସବୁ ବୀରମାନଙ୍କର ଗୋଟିଏ ମାତ୍ର ପରିଚୟ । ସେମାନେ ବୀର । ତାହା ଛଡ଼ା ଅର୍ଜୁନ ଯାହା ଯାହାହା ଅସ୍ତ୍ରଚାଳନର କୌଶଳ ଦେଖାଇଛନ୍ତି, ମୁଁ ତାହା ସବୁ ଦେଖାଇପାରିବି ।'' ଦମ୍ଭର ସହିତ ଛାତି ଫୁଲାଇ କହିଲି ।

''କର୍ଣ୍ଣ ଠିକ୍ କହିଛନ୍ତି । ସେ ଜଣେ ବୀର । ସେହି ପରିଚୟ ବଳରେ ସେ ଅସ୍ତ୍ରସ୍ପର୍ଦ୍ଧା ଦେଖାଇପାରିବେ । ଏଥିରେ କୌଣସି ବାଧା ନାହିଁ ।'' ଦୁର୍ଯ୍ୟୋଧନ କହିଲେ ।

ପିତାମହ ଭୀଷ୍ମ ଆଦିଙ୍କ ସହମତି ବଳରେ ମହାରାଜ ଶୁଣାଇଲେ ନିଜର ନିଷ୍ପତ୍ତି । ମୁଁ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବି । ଅନିଚ୍ଛାସତ୍ତ୍ୱେ ଦ୍ରୋଣାଚାର୍ଯ୍ୟ ମତେ ଅନୁମତି ଓ ସୁଯୋଗ ଦେଲେ । ସେଥିପାଇଁ ଦୁର୍ଯ୍ୟୋଧନ ଓ ଭୀମସେନ ଶାନ୍ତ ହୋଇ ବସିଲେ ଯାଇ ନିଜ ନିଜ ଆସନରେ ।

ମୁଁ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବାକୁ ଆରମ୍ଭ କଲି । ଦର୍ଶକଗଣ ସମଧିକ ଉଚ୍ଚକିତ । ସମସ୍ତଙ୍କ ହୃଦୟରେ ହୁଏତ ଆଲୋଡ଼ନ । ପାଣ୍ଡବ ଅର୍ଜୁନଙ୍କ ସମକକ୍ଷ ଆଉ ଜଣେ କେହି ବୀର ଥାଇପାରନ୍ତି ଏ ସଂସାରରେ ? ପୁଣି ଏଇ ହସ୍ତିନାପୁରରେ ? ଆଖି ବୁଲାଇଆଣିଲି ମଞ୍ଚ ଉପରୁ । ସମାସୀନ ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମନରେ ଉତ୍କଣ୍ଠା – ମୁଁ କ'ଣ ସତରେ ସମକକ୍ଷ ହେବି ଅର୍ଜୁନଙ୍କର ? ଅଥବା ବଳିଯିବି ତାଙ୍କୁ ? ଆଚାର୍ଯ୍ୟ ଦ୍ରୋଣଙ୍କ ମନରେ ଥିବା ଉତ୍କଣ୍ଠା ଓ ବିଷଣ୍ଣତା ଅଧିକତର ଭାବରେ ପ୍ରକଟିତ ମୁଖମଣ୍ଡଳରେ । ଯାହା କିଛି କରୁଥାନ୍ତି ତାହା ସବୁ କିନ୍ତୁ ତାଙ୍କ ଅନିଚ୍ଛା ସତ୍ତ୍ୱେ । ଭାବୁଥାଏ, ସେ ହୁଏତ ଜାଣିପାରିଥିବେ ମୋର ସାମର୍ଥ୍ୟ । ତେଣୁ ତାଙ୍କ ସଯତ୍ନସେବିତ ଯୋଜନାଟି ହୁଏତ ସଫଳ ହୋଇ ନ ପାରେ । ଅର୍ଜୁନ ଶ୍ରେଷ୍ଠ ବୀର ବୋଲି ଘୋଷିତ ହୋଇ ନ ପାରନ୍ତି । ସେଥିପାଇଁ ଏମିତି ଉତ୍କଣ୍ଠାଭରା

ବିଷଣ୍ଣତା । କିନ୍ତୁ ସାନରାଣୀମା ପାଣ୍ଡୁମହିଷୀ କୁନ୍ତୀଦେବୀ । ସେ ଥିଲେ ସମସ୍ତଙ୍କଠାରୁ ଭିନ୍ନ । ଭାବମୂର୍ତ୍ତି ତାଙ୍କର ପ୍ରସନ୍ନ । ଆଖି-ଡୋଳାରେ ମମତା ଓ ଆଶୀର୍ବାଦର ଜଳ ଢଳ ଢଳ । ଠିକ୍ ଏଇଭଳି ଭାବମୂର୍ତ୍ତି ଲକ୍ଷ୍ୟ କରିଥିଲି ଅର୍ଜୁନଙ୍କ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବା ଅବସରରେ । ଭାବିଲି, ଏ ମହୀୟସୀ ମହିଳା ତେବେ ମତେ କରୁଛନ୍ତି ଅର୍ଜୁନଙ୍କ ସହିତ ସମୀକୃତ ? ସାମାନ୍ୟ ସୂତପୁତ୍ର ମୁଁ । ମୋ' ପ୍ରତି କାହିଁକି ତାଙ୍କର ଏଭଳି ଦରଦ ? ଏଭଳି ସ୍ନେହ ? ଏଭଳି ମମତା ? ମୁଁ ତାଙ୍କର କିଏ ? ଏଇସବୁ ଚିନ୍ତା ମନକୁ ମୋର କରିଦେଉଥିଲା ବିଚଳିତ । ବିରାଟ ଏକ ଘୂର୍ଣ୍ଣିରେ ପଡ଼ିଯାଇଥିଲି ଯେମିତି ।

କୌଣସିମତେ ମନକୁ ସେ ଦିଗରୁ ଫେରାଇ ଆଣି ଅସ୍ତ୍ରସ୍ପର୍ଦ୍ଧା ଦେଖାଇବା ପ୍ରତି ଦେଲି ଦୃଷ୍ଟି । ଅର୍ଜୁନ ଯାହା ଯାହା ଅସ୍ତ୍ରଚାଳନର କଳା-କୌଶଳ ଦେଖାଇଥିଲେ ସେ ସବୁ କିଛି ଦେଖାଇଲି ସଫଳ ଭାବରେ । ପାଇଲି ଖୁବ୍ କରତାଳି ଓ ସାଧୁବାଦ ଠିକ୍ ଅର୍ଜୁନଙ୍କ ଭଳି ।

କିନ୍ତୁ ଶେଷ ପରୀକ୍ଷାରେ ଏଭଳି ଏକ ଘଟଣା ଘଟିଲା, ଯାହା ମତେ ଲାଜରେ ଦେଲା ବୁଡ଼ାଇ । ମୋ' ଅଭିମାନର ପାହାଡ଼କୁ କରିଦେଲା ଚୂରମାର । ସାରା ଆକାଶ ଯେମିତି ଗ୍ରହ-ନକ୍ଷତ୍ରମାନଙ୍କୁ ଧରି ଏକାଥରକେ ଆସି ହଠାତ୍ ପଡ଼ିଗଲା ମୋ' ମୁଣ୍ଡରେ । ଶବ୍ଦବେଧୀ ବାଣପ୍ରୟୋଗରେ ବିଫଳ ହୋଇଗଲି । ଏହାର କାରଣ କ'ଣ ବୁଝିପାରୁ ନ ଥାଏ । ବାଣ ତ ଠିକ୍ ଠିକ୍ ପ୍ରୟୋଗ କରିଥିଲି । ଯନ୍ତ୍ରଶୂକରର ଶବ୍ଦ ପ୍ରତି ଲକ୍ଷ୍ୟକରି ଛାଡ଼ିଥିଲି । ସୂଚୀବାଣକୁ ଶବ୍ଦବେଧୀ ବାଣର ମନ୍ତ୍ରରେ ଅଭିମନ୍ତ୍ରିତ କରିଥିଲି । ତାହା ଶୂକରଟିର ମୁଖକୁ ବିନ୍ଧି କଲା ନାହିଁ କେମିତି ? ଏହା କ'ଣ ଦୈବର ଇଚ୍ଛା ? ବିଧାତାଙ୍କର ଇଚ୍ଛା ? ନୀଚକୁଳରେ ଜନ୍ମ ଦିଆଇ ଏତେଦିନ ଧରି ସେ ସତେ ସମାଜଦ୍ୱାରା କରାଇଆସିଲେ ଅପମାନିତ, ନିର୍ଯାତିତ ଓ ଉପହସିତ । ନିଜ ପୌରୁଷବଳରେ ମୁଁ ଯେତେବେଳେ ଆଜି ବୀରତ୍ୱର ଅଭିମାନ ନେଇ ସମାଜ ଆଗରେ ଠିଆ ହେବାପାଇଁ ଚେଷ୍ଟା କରୁଥିଲି, ସେତେବେଳେ ମୋ' ମୁଣ୍ଡରେ ଦେଲେ ପାହାର । କ'ଣ ବା ଭୁଲ କରିଥିଲି ମୁଁ ? କ'ଣ ମୋର ଅପରାଧ ? ସତ କହୁଛି, ମୋର ସେତେବେଳେ ମନେ ହେଉଥାଏ, ଏ ଚିର ଅଭିଶପ୍ତ ଜୀବନ ଧରିରଖିବି ନାହିଁ ଆଉ । ଆତ୍ମହତ୍ୟା କରିଦେବି ।

ଏତିକିବେଳେ ମୋ' ଛାତିତଳେ ଶତଶୂଳର ଆଘାତ ପହଞ୍ଚାଇ ଦ୍ରୋଣାଚାର୍ଯ୍ୟ ଘୋଷଣା କଲେ, ''ହେ ସଜ୍ଜନବୃନ୍ଦ ! ଆପଣମାନେ ତ ଦେଖିଲେ ନିଜ ଆଖିରେ କର୍ଣ୍ଣଙ୍କ ଶକ୍ତି-ସାମର୍ଥ୍ୟ । ସେ ଶବ୍ଦବେଧୀ ବାଣପ୍ରୟୋଗରେ ହାରିଗଲେ । ତାଙ୍କ ବାଣ ହେଲା ଲକ୍ଷ୍ୟଭ୍ରଷ୍ଟ । ତେଣୁ ମୁଁ ଘୋଷଣା କରି କହୁଛି ଯେ ପାଣ୍ଡୁପୁତ୍ର ଅର୍ଜୁନ....''

''ବନ୍ଦ କରନ୍ତୁ ଆଚାର୍ଯ୍ୟ । ବନ୍ଦ କରନ୍ତୁ । ଆପଣ ଅର୍ଜୁନଙ୍କୁ ଶ୍ରେଷ୍ଠ ବୀର ବୋଲି ଘୋଷଣା କରିବାକୁ ଚାହୁଁଛନ୍ତି । ଏଇଆ ତ ?'' ପିତାମହ ଭୀଷ୍ମ ତାଙ୍କୁ କଥା ମଝିରୁ ବାଧା ଦେଇ କହିଲେ ।

''ହଁ, ଗଙ୍ଗାନନ୍ଦନ । ଏଥିରେ ଭୁଲ ରହିଲା କେଉଁଠି ?'' ତାଙ୍କର ବିସ୍ମୟଭରା ପ୍ରତିପ୍ରଶ୍ନ ।

"ଖାଲି ଭୁଲ ନୁହେଁ । ବିରାଟ ଭୁଲ । ଅର୍ଜୁନ ଆପଣଙ୍କ ପ୍ରିୟ ଶିଷ୍ୟ । ତାଙ୍କ ପ୍ରତି ଥିବା ଅତ୍ୟଧିକ ସ୍ନେହ-ଶ୍ରଦ୍ଧା ହିଁ ଆପଣଙ୍କୁ ଏଭଳି ଭୁଲ କରିବାପାଇଁ କରିଛି ଅନୁପ୍ରେରିତ ।"

"ମାନେ ?" ଆଚାର୍ଯ୍ୟଙ୍କ ବିସ୍ମୟଭାବ ବଢ଼ିଉଠିଲା । ସମସ୍ତଙ୍କ ଆଗରେ ଏଭଳି ଭାବରେ ଅପ୍ରସ୍ତୁତ ହେବାଟାକୁ ସହିପାରୁ ନ ଥିଲେ ସେ । ତେଣୁ ମନେ ମନେ ପିତାମହଙ୍କ ଉପରେ ବିରକ୍ତ ଓ କ୍ରୋଧିତ ହେଉଥିଲେ । ତାଙ୍କ ମୁଖମଣ୍ଡଳର ଭାବମୂର୍ତ୍ତି ଜଣାଇ ଦେଉଥିଲା ସବୁ କିଛି । ତେବେ କଥାଟା କ'ଣ ପରିଷ୍କାର ଭାବରେ ଜାଣିବା ନିମିତ୍ତ ଉଦ୍‌ଗ୍ରୀବ ହୋଇ ଚାହିଁରହିଲେ ପିତାମହଙ୍କ ଉତ୍ତରକୁ ।

ପିତାମହ କଥାଟିକୁ ବୁଝାଇଦେବାକୁ ଯାଇ କହିବାକୁ ଲାଗିଲେ, "ଯନ୍ତ୍ରଶୂକରଟି ଶବ୍ଦ କରିବାର କ୍ଷଣକ ପୂର୍ବରୁ କଦମ୍ବବୃକ୍ଷରେ ବସିଥିବା ପକ୍ଷୀଟିଏ କ୍ଷୀଣ ସ୍ୱର କରିଛି । ଶବ୍ଦବେଧୀ ସୂଚୀବାଣ ଯାଇ ତାହାରି ଚଞ୍ଚୁ ଭେଦ କରିଛି । ଆପଣ ଏହାକୁ ଲକ୍ଷ୍ୟ କରିପାରି ନାହାନ୍ତି । ମୁଁ କିନ୍ତୁ ଲକ୍ଷ୍ୟ କରିଛି ।"

"ସତ୍ୟାସତ୍ୟ ଜାଣିବାପାଇଁ ପକ୍ଷୀଟିକୁ ଧରିଆଣି ପରୀକ୍ଷା କରିନେବା ଉଚିତ ।" ଭୀମସେନ ହଠାତ୍ ଉଠିପଡ଼ି କହିଲେ । ତାଙ୍କର ଧାରଣା ଥିଲା ଯେ ତାହାକୁ ଧରିବାର ଚେଷ୍ଟା କଲେ ସେ ସତର୍କ ହୋଇ ଉଡ଼ିଯିବ ଏବଂ ପରୀକ୍ଷାଟି ହୋଇପାରିବ ନାହିଁ । ଏହା ହେଲେ ପକ୍ଷୀର ଚଞ୍ଚୁ ମୋ' ବାଣଟି ବିଦ୍ଧ କରିଛି କି ନାହିଁ ତାହା ଅଜଣା ରହିଯିବ । ଫଳରେ ମୋ'ଦ୍ୱାରା ଶବ୍ଦବେଧୀ ବାଣର ସଫଳ ପ୍ରୟୋଗ ଆଉ ହୋଇପାରିବ ନାହିଁ ପ୍ରମାଣିତ । ଶେଷରେ ଅର୍ଜୁନ ହେବେ ଶ୍ରେଷ୍ଠ ବୀର ଭାବରେ ସ୍ୱୀକୃତ ।

ଭୀମସେନଙ୍କ ଚତୁରତା ବୁଝିପାରି ଦୁର୍ଯ୍ୟୋଧନ ହଠାତ୍ କହିଉଠିଲେ, "ସେଭଳି ଚେଷ୍ଟା କଲେ ପକ୍ଷୀଟି ଉଡ଼ିଯିବ । ତା'କୁ ତେଣୁ ବାଣବିଦ୍ଧ କରି ତଳକୁ ଖସାଇ ଦିଆଯାଉ ।"

"ଗୋଟିଏ ନିରୀହ ପକ୍ଷୀକୁ ଅଯଥା ହତ୍ୟା କରିବା ଉଚିତ ନୁହେଁ । ତାହା ବୀରଧର୍ମ ନୁହେଁ । ପକ୍ଷୀଟି କେମିତି ଆସିବ ସେ ଉପାୟ ମତେ ଜଣା ।" ମୁଁ କହିଲି ଆତ୍ମବିଶ୍ୱାସ ପ୍ରକାଶ କରି ।

ପିତାମହ ହସୁଥାନ୍ତି ମୃଦୁ ମୃଦୁ । ତାଙ୍କ ହାବଭାବରୁ ଜଣା ପଡୁଥାଏ, ସେ ଯେମିତି ଜାଣିଛନ୍ତି ଉପାୟଟି କ'ଣ ? ମତେ ପରୀକ୍ଷା କରିନେବା ପାଇଁ ଖୋଲୁ ନାହାନ୍ତି ମୁହଁ । ତେବେ ମୋ'ଠାରୁ ବୀରଧର୍ମର ମର୍ଯ୍ୟାଦା କଥା ଶୁଣି ସେ ମତେ ପ୍ରଶଂସା କରି କହିଲେ, "ସାଧୁ ! ସାଧୁ ବୀର କର୍ଣ୍ଣ ! ତୁମେ ଉପଯୁକ୍ତ ବୀରଧର୍ମ କଥା କହିଛ । ଏବେ ନିଜେ ହିଁ ନିର୍ଣ୍ଣୟ କର ପକ୍ଷୀଟିକୁ ତଳକୁ ଆଣିବାର ଉପାୟ ।"

ମୋ' ପରାମର୍ଶରେ ପରିଚାରକମାନେ ଜାଲଟିଏ ବିସ୍ତାରିତ କରି ଧରିଲେ କଦମ୍ବବୃକ୍ଷର ଚାରିଆଡ଼େ । ମୁଁ ନାଗପାଶ ବାଣ ପ୍ରୟୋଗ କଲି । ଅନାୟାସରେ ପକ୍ଷୀଟି ପାଶବଦ୍ଧ ହୋଇ ଅକ୍ଷତ ଭାବରେ ଖସିପଡ଼ିଲା ଜାଲରେ । ପରୀକ୍ଷା କରିବାରେ ଦେଖାଗଲା, ପ୍ରକୃତରେ ତାହାର ଚଞ୍ଚୁ ମୋ' ସୂଚୀବାଣରେ ବିଦ୍ଧ । ସିଦ୍ଧିର ଆନନ୍ଦରେ ଫୁଲିଉଠିଲି ସହର୍ଷ ପୁଲକରେ ।

ପିତାମହ କହିଲେ, ''ଧନ୍ୟ ବତ୍ସ କର୍ଣ୍ଣ । ଧନ୍ୟ ତୁମର ଲକ୍ଷ୍ୟଭେଦ । ଶବ୍ଦବେଧୀ ବାଣର ଏଭଳି ସଫଳ ପ୍ରୟୋଗ ଯୋଗୁଁ ତୁମେ ଅଶେଷ ଧନ୍ୟବାଦର ପାତ୍ର ।''

''ମୁଁ ତ ଆପଣଙ୍କ ଆଶୀର୍ବାଦର ପାତ୍ର । ଧନ୍ୟବାଦ ପାଇବାର ଅଧିକାର ମୋର କାହିଁ ?'' ବିନୟୀ ହୋଇ କହିଲି ।

ସେ ହସି ହସି ମତେ ଆଶୀର୍ବାଦ କଲେ । ତାହା ପରେ ଦ୍ରୋଣାଚାର୍ଯ୍ୟଙ୍କୁ ଲକ୍ଷ୍ୟ କରି କହିଲେ, ''କର୍ଣ୍ଣଙ୍କ ସଫଳତା ଦେଖିଲେ ତ ଆଚାର୍ଯ୍ୟ ? କୌଣସି ସ୍ୱୀକୃତି ଦେବା ପୂର୍ବରୁ ପ୍ରିୟ-ଅପ୍ରିୟ ବିଚାରକୁ ମନରେ ଆଣିବା ଉଚିତ ନୁହେଁ । ସ୍ୱୀକୃତି ନିଷ୍ପକ୍ଷ ହେବା ଉଚିତ ।''

''ହଁ, ଗଙ୍ଗାନନ୍ଦନ ।'' ଆଚାର୍ଯ୍ୟଙ୍କ ଶ୍ମଶ୍ରୁଳ ମୁଖମଣ୍ଡଳରେ ସଲଜ୍ଜ ପାଟଳିମା । ଏତେ ଲୋକଙ୍କ ଆଗରେ ଏମିତି ଅପ୍ରତିଭ ହେବେ ବୋଲି ଭାବି ନ ଥିଲେ ସେ ।

ଦର୍ଶକମଣ୍ଡଳୀରେ ପୁନର୍ବାର ଗୁଞ୍ଜରଣ । ମୃଦୁରୁ କ୍ରମେ କ୍ରମେ ହୋଇଉଠିଲା ପ୍ରବଳ । ଆଉ ବିବାଦାତ୍ମକ ମଧ୍ୟ ।

କେହି କେହି କହୁଥାନ୍ତି, ''ଅର୍ଜୁନ ଶ୍ରେଷ୍ଠ ବୀର ବୋଲି ଘୋଷିତ ହେବା ଉଚିତ ।''

ଆଉ କେହି କେହି କହୁଥାନ୍ତି, ''ଅର୍ଜୁନ ନୁହନ୍ତି, ବରଂ କର୍ଣ୍ଣ ଶ୍ରେଷ୍ଠ ବୀର ବୋଲି ଘୋଷିତ ହେବା ଉଚିତ ।''

ପୁଣି କେହି କେହି ଦୁଇ ବିବାଦୀ ଗୋଷ୍ଠୀ ମଧ୍ୟରେ ସମାଧାନର ସୂତ୍ରଟିଏ ବାହାର କରି କହୁଥାନ୍ତି, ''କର୍ଣ୍ଣ ଓ ଅର୍ଜୁନ ଦୁହେଁ ସମାନ ବୀରତ୍ୱ ଦେଖାଇଛନ୍ତି । ତେଣୁ ଉଭୟ ଶ୍ରେଷ୍ଠ ବୀରରୂପେ ଘୋଷିତ ହେବା ଉଚିତ ।''

ଲକ୍ଷ୍ୟ କଲି, ଶେଷୋକ୍ତ ମନ୍ତବ୍ୟ ପରେ ପରେ ଗୁଞ୍ଜରଣ କିଛିଟା ପଡ଼ିଗଲା ଶାନ୍ତ । ଏହା ବୋଧହୁଏ ସମସ୍ତଙ୍କ ପାଇଁ ଥିଲା ଗ୍ରହଣୀୟ । ଏଣେ ଦ୍ରୋଣାଚାର୍ଯ୍ୟ ପିତାମହ ଭୀଷ୍ମ ଆଦିଙ୍କ ସହିତ ମୃଦୁ ମୃଦୁ ଆଲୋଚନାରେ ରତ । ସମ୍ଭବତଃ କାହାକୁ ଶ୍ରେଷ୍ଠ ବୀର ବୋଲି ଘୋଷଣା କରାଯିବ ଏବଂ କେଉଁ ଭିତ୍ତିରେ ସେଥିପାଇଁ ଉପାୟ ଖୋଜିବାରେ ବ୍ୟସ୍ତ ।

ଉପାୟ ନିର୍ଣ୍ଣୟରେ ସହାୟତା ଦେବାଲାଗି ଗୋଟିଏ ପ୍ରସ୍ତାବ ଦେବାକୁ ଚାହିଁଲି ମୁଁ । ଠିଆ ହୋଇ ବିନୟର ସହିତ କହିଲି, ''ଆଚାର୍ଯ୍ୟ ଅନୁମତି ଦେଲେ ଗୋଟିଏ କଥା କହନ୍ତି ।''

ଆଚାର୍ଯ୍ୟ କହିଲେ, ''କହ କର୍ଣ୍ଣ, କ'ଣ କହିବାର ଅଛି କହ ।''

ଆଶ୍ଚର୍ଯ୍ୟ ହୋଇଗଲି ତାଙ୍କ କଥାରେ । ଏତେ ଦିନ ପରେ ସେ ଆଜି ମତେ କର୍ଣ୍ଣ ବୋଲି ଡାକୁଛନ୍ତି । ଦୀର୍ଘ ଛଅ ବର୍ଷ ଧରି ପାଠ ପଢ଼ିଲି ତାଙ୍କ ଶିକ୍ଷାୟତନରେ । ଦିନେହେଲେ ମତେ କର୍ଣ୍ଣ ବୋଲି ଡାକି ନାହାନ୍ତି ଯଦିଓ ମୋ' ନାମ ସଂପର୍କରେ ଅଛନ୍ତି ସଂପୂର୍ଣ୍ଣ ପରିଚିତ । କେବଳ ଡାକିଆସିଛନ୍ତି ସୂତପୁତ୍ର ବୋଲି । ଅବହେଳାର ଡାକ । ଅବଜ୍ଞାର ଡାକ । ଅପମାନ ଦେବାର ଡାକ । ଅଥଚ ଆଜି ଡାକୁଛନ୍ତି କର୍ଣ୍ଣ ବୋଲି । ଏହାର କାରଣ ତେବେ କ'ଣ ? ଆଜି ରଙ୍ଗଭୂମିର ଦର୍ଶକମାନେ ମଧ୍ୟ ଦେଇଛନ୍ତି ମତେ ବୀର ହିସାବରେ ସ୍ୱୀକୃତି । ଆଉ ସ୍ୱୟଂ ଗଙ୍ଗାନନ୍ଦନ ପିତାମହ ଭୀଷ୍ମ ଦେଇଛନ୍ତି ଅନୁରୂପ ସ୍ୱୀକୃତି । ବୀର ହିସାବରେ ମୁଁ

ଅର୍ଜୁନଙ୍କ ଆଗରେ ସଫଳ ସ୍ପର୍ଦ୍ଧା ଦେଖାଇବାର ଅବସ୍ଥାରେ ଅଛି । ଏହିସବୁ କାରଣ ହୁଏତ ତାଙ୍କର ମତେ କର୍ଣ୍ଣ ବୋଲି ଡାକିବା ମୂଳରେ ଥାଇପାରେ । ସମାଜରେ ତେବେ ଉପରକୁ ଉଠିଥିବା ଲୋକର ହିଁ ଆଦର । ତଳେ ପଡ଼ିଥିବା ଲୋକର ହତାଦର । ଏଇ ହତାଦର ଦେଖାଇବା ପାଇଁ ଖୋଜାଯାଏ ଅସଂଖ୍ୟ ବାଟ । ବର୍ଣ୍ଣକୁ ନେଇ କିମ୍ବା ଧନକୁ ନେଇ ଅଥବା ବିଦ୍ୟାକୁ ନେଇ କିମ୍ବା ବୁଦ୍ଧିକୁ ନେଇ । କିଛି ନ ମିଳିଲେ ପୁରୁଣା ପୋକରା ନୀତି-ନିୟମକୁ ନେଇ । ସବୁ ଏଇ ଚତୁର ମଣିଷର ମନଗଢ଼ା । ଏହିଭଳି ଚିନ୍ତା ସେତେବେଳେ ଆସୁଥିଲା ମୋ' ମନରେ ।

ପରକ୍ଷଣରେ କିନ୍ତୁ ସେଇ ଚିନ୍ତାକୁ ଦୂରେଇଦେଇ କହିଲି, ''ହେ ଆଚାର୍ଯ୍ୟବର ! ଯଦି ଆପଣ ଭାବୁଥାନ୍ତି ଯେ ମୁଁ ଓ ଅର୍ଜୁନ ସମାନ ବୀରତ୍ୱ ଦେଖାଇଛୁ ଏବଂ କିଏ ଶ୍ରେଷ୍ଠ ବୀର ତାହା ନିର୍ଣ୍ଣୟ କରିବାରେ ଅସୁବିଧା ଅଛି, ତାହାର ସମାଧାନ ଲାଗି ଗୋଟିଏ ମାତ୍ର ଉପାୟ । ଦ୍ୱନ୍ଦ୍ୱଯୁଦ୍ଧ । ଆମେ ଦୁହେଁ ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ କରିବୁ । ବିଜୟୀ ବ୍ୟକ୍ତି ହିଁ ଗଣିତ ହେବେ ଶ୍ରେଷ୍ଠ ବୀରରୂପେ ।''

''ଦ୍ୱନ୍ଦ୍ୱଯୁଦ୍ଧ ?'' ଚମକି ପଡ଼ିଲେ ଆଚାର୍ଯ୍ୟ ଓ ପ୍ରତିପ୍ରଶ୍ନ କଲେ ମତେ । ସେ ବୋଧହୁଏ ଆମ ଦୁହିଁଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ହେବାଟା ଆଦୌ ଚାହୁଁ ନ ଥିଲେ । କାରଣ ଏଇ ଯୁଦ୍ଧରେ ତାଙ୍କ ପ୍ରିୟ ଶିଷ୍ୟ ଅର୍ଜୁନ ବିଜୟୀ ହେବେ କି ନାହିଁ ସେଥିନେଇ ଥିଲେ ସନ୍ଦିହାନ ।

ମୁଁ ଦୃଢ଼ତାର ସହିତ କହିଲି, ''ହଁ, ଆଚାର୍ଯ୍ୟବର, ଦ୍ୱନ୍ଦ୍ୱଯୁଦ୍ଧ । ତାହା ଛଡ଼ା ଆଉ ଅନ୍ୟ ଉପାୟ ନାହିଁ ।''

କୃପାଚାର୍ଯ୍ୟ ମଧ୍ୟ ନ ଥିଲେ ଏଭଳି ଦ୍ୱନ୍ଦ୍ୱଯୁଦ୍ଧର ପକ୍ଷପାତୀ । ନିଜ ଭଗିନୀପତି ଦ୍ରୋଣାଚାର୍ଯ୍ୟଙ୍କ ପକ୍ଷକୁ ସମର୍ଥନ କରିବାକୁ ଯାଇ ସେ ଚେଷ୍ଟା କଲେ ଏହାକୁ ଏଡ଼ାଇବା ପାଇଁ । ସେ ମତେ ଲକ୍ଷ୍ୟ କରି କହିଲେ, ''ଦ୍ୱନ୍ଦ୍ୱଯୁଦ୍ଧ ହେବାରେ କିଛି ଆପତ୍ତି ନାହିଁ । କିନ୍ତୁ ଏହା ହୋଇଥାଏ ଦୁଇ ସମାନ ପକ୍ଷଙ୍କ ମଧ୍ୟରେ ।''

''ଏଥିରେ ଆଉ ବାଧା ରହିଲା କେଉଁଠି ? ଆମେ ଦୁହେଁ ତ ବୀର । ପୁଣି ସମାନ ପରାକ୍ରମ ଦେଖାଇଛୁ । ଆମେ ଦୁହେଁ ତେଣୁ ସମାନ ପକ୍ଷ ।'' ମୋର ଆଶ୍ଚର୍ଯ୍ୟଭରା ପ୍ରଶ୍ନ ଓ ତାହାର ସାର୍ଥକ ଉତ୍ତର ମଧ୍ୟ ।

''ଅର୍ଜୁନ ଖାଲି ବୀର ନୁହନ୍ତି । ସେ କୁରୁବଂଶର ରାଜକୁମାର । ତୁମେ କେଉଁ ବଂଶର ରାଜକୁମାର ଅଥବା ରାଜା କହ ତ କର୍ଣ୍ଣ ?''

ଏ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ଥିଲି ସଂପୂର୍ଣ୍ଣ ଅକ୍ଷମ । ତେଣୁ ନୀରବ ରହିଲି । କାରଣ ଜାଣିଥିଲି ମୁଁ ସୂତପୁତ୍ର । ଆଉ ଜାଣି ବି ଥିଲି ଯଦି ଏଇ ପରିଚୟ ଦେଉଛି, ତେବେ ହେବି ଉପହସିତ । ମୁଣ୍ଡ ଟେକି ଚାଲିପାରିବି ନାହିଁ ହସ୍ତିନାପୁରର ଦାଣ୍ଡରେ । ତେଣୁ ନିରୁତ୍ତର ଥାଇ ମୁଣ୍ଡ ତଳକୁ କରିଦେଲି ।

ଅସହାୟତାର ଏଇ ବିରାଟ ଓ ଭୟଙ୍କର ସମୁଦ୍ରରେ ଉବୁଟୁବୁ ହେଉଥିବାବେଳେ ହଠାତ୍ ଘଟିଲା ଏକ ବିଚିତ୍ର ଘଟଣା । ଏକ ଅଭାବନୀୟ ପରିସ୍ଥିତି ଯାହା ସ୍ମରଣୀୟ ହୋଇ ରହିଲା

ମୋର ସାରାଜୀବନ ଧରି । ଜୀବନର ରାସ୍ତାରେ ସହସା ନୂଆ ମୋଡ଼ଟିଏ ଆଣିଦେଲା ଯେମିତି । ହଠାତ୍ ମତେ ମିଳିଗଲା ଆଶ୍ରାର ନଉକା !

ଦୁର୍ଯ୍ୟୋଧନ ଉଠିଆସିଲେ ମଞ୍ଚ ଉପରକୁ ଏବଂ ଘୋଷଣା କରି କହିଲେ, "ଏଇ ମୁହୂର୍ତ୍ତରୁ କର୍ଣ୍ଣ ହେଲେ ଅଙ୍ଗର ରାଜା । ତେଣୁ ଅର୍ଜୁନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାରେ କିଛି ଆପତ୍ତି ରହିବ ନାହିଁ ଏଣିକି ।"

ଏଇ ଦୃଢ଼ ଓ ଗମ୍ଭୀର ଘୋଷଣା ଚକିତ କରିଦେଲା ସମସ୍ତଙ୍କୁ । କୃତଜ୍ଞତାପୂର୍ଣ୍ଣ ଚାହାଣି ଢାଳି ତାଙ୍କ ଆଡ଼େ ଚାହିଁଲି ।

କିନ୍ତୁ ତଥାପି କୃପାଚାର୍ଯ୍ୟ ଧୈର୍ଯ୍ୟ ହରାଇ ନ ଥିଲେ । ଆଶା ଛାଡ଼ି ନ ଥିଲେ । ସେ ପୁଣି କହିଲେ, "ହେ ରାଜକୁମାର ଦୁର୍ଯ୍ୟୋଧନ ! ତୁମେ ଅବଶ୍ୟ ଘୋଷଣା କଲ ଯେ କର୍ଣ୍ଣ ଅଙ୍ଗର ରାଜା ହେଲେ ବୋଲି । କିନ୍ତୁ ଏଭଳି ଘୋଷଣାରେ ତୁମର କି ଅଧିକାର ଅଛି ? ମହାରାଜ ସ୍ୱୟଂ ତ ଏହା ଘୋଷଣା କରି ନାହାନ୍ତି । ତେଣୁ କର୍ଣ୍ଣ ଅଙ୍ଗରାଜ ହେବେ କିପରି ?"

ଦୁର୍ଯ୍ୟୋଧନ କ୍ରୋଧିତ ଓ ବିରକ୍ତ । ମହାରାଜଙ୍କୁ ଲକ୍ଷ୍ୟ କରି କହିଲେ, "ମହାରାଜ ! ଆପଣ ଏ ଘୋଷଣା କରନ୍ତୁ ।"

ମହାରାଜ କ'ଣ ଆଲୋଚନା କଲେ ମହାମନ୍ତ୍ରୀ ବିଦୁରଙ୍କ ସହିତ ଅତି ଚୁପ୍ ଚୁପ୍ ହୋଇ । ତାହା ପରେ ରହିଲେ ନୀରବ । ତାଙ୍କ ମୁଖମଣ୍ଡଳରୁ ଜଣାପଡୁଥାଏ ସେ ଯେମିତି ଅଧୀର ହୋଇଉଠୁଛନ୍ତି କି ଏକ ବିରାଟ ମାନସିକ କଷ୍ଟରେ । ପ୍ରାଣଥରା ଯାତନାରେ । ବୁଦ୍ଧି, ବିବେକ ସବୁ କିଛି ଦୋଳାୟିତ ଦ୍ୱନ୍ଦ୍ୱର ଝଞ୍ଜାପବନରେ ।

"ଶୀଘ୍ର କହନ୍ତୁ ନା ମହାରାଜ !" ଦୁର୍ଯ୍ୟୋଧନଙ୍କ ଅଧୈର୍ଯ୍ୟ ବାଣୀରେ ମଞ୍ଚ ହୋଇଉଠିଲା ଉଚ୍ଛଳ !

କିନ୍ତୁ ତଥାପି ନୀରବ ମହାରାଜ । ଅବଶ୍ୟ ତାଙ୍କର ପୁତ୍ରଙ୍କ ପ୍ରତି ବିଶେଷ କରି ଜ୍ୟେଷ୍ଠ ପୁତ୍ର ଦୁର୍ଯ୍ୟୋଧନଙ୍କ ପ୍ରତି ଥିଲା ଅପାର ସ୍ନେହ । ସ୍ନେହାନ୍ଧ ଥିଲେ ବୋଲି କହିଲେ ଠିକ୍ ହେବ । କିନ୍ତୁ ଉପସ୍ଥିତ ପରିସ୍ଥିତିରେ ତାଙ୍କ ପ୍ରଜ୍ଞାଚକ୍ଷୁ ବୋଧହୁଏ ବାଧା ଦେଉଥିଲା ଦୁର୍ଯ୍ୟୋଧନଙ୍କ ସହିତ ସହମତ ହୋଇ ଏଭଳି ଘୋଷଣା କରିବାକୁ ।

"ହୁଁ ।" କ୍ରୋଧିତ ଅଭିମାନରେ ହୁଙ୍କାର କରି ଦୁର୍ଯ୍ୟୋଧନ ମଞ୍ଚ ଛାଡ଼ିଲେ ଓ ଯାଇ ନିଜ ଆସନରେ ବସିଗଲେ । ବସିଲାବେଳେ ଏଭଳି ଶବ୍ଦ ହେଲା ଯେ ଜଣାଗଲା ଆସନଟା ଭାଙ୍ଗିଗଲା ଯେମିତି !

ମନରେ ମୋର ଆଶଙ୍କା । ମହାରାଜ କ'ଣ ମୋର ଅଙ୍ଗରାଜ ହେବା ପ୍ରସ୍ତାବଟିକୁ ସମର୍ଥନ କରିବେ ? ସେ କରନ୍ତୁ କି ନ କରନ୍ତୁ, ମୁଁ କିନ୍ତୁ ଚିରଦିନ ଋଣୀ ହୋଇ ରହିବି ରାଜକୁମାର ଦୁର୍ଯ୍ୟୋଧନଙ୍କ ନିକଟରେ । ଏଭଳି ଅପମାନଜନକ ଦୁଃସ୍ଥିତିରେ ଥିଲାବେଳେ ସେହି ତ ଏକମାତ୍ର ବ୍ୟକ୍ତି ଯେ ଅକୁଣ୍ଠରେ ମତେ ସାହାଯ୍ୟ କରିବାପାଇଁ ଧାଇଁ ଆସିଛନ୍ତି । ଭଗ୍ନପୋତ ନାବିକର ସହାୟକ ନୌକାଟିଏ ଭଳି ଠିଆ ହୋଇଛନ୍ତି । ଅକାତରେ ଏଡ଼େ

ବଡ଼ ଦାନଟିଏ ମୋ' ହାତରେ ଟେକିଦେବା ପାଇଁ ଆଗେଇ ଆସିଛନ୍ତି । ପ୍ରକୃତରେ ସେ ମୋର ସୁହୃତ୍, ବନ୍ଧୁ, ମିତ୍ର ସବୁ କିଛି । ପ୍ରାଣର ବିନିମୟରେ ତାଙ୍କ ସ୍ୱାର୍ଥକୁ ମୁଁ ରକ୍ଷା କରିବି । ହଁ, ନିଶ୍ଚୟ ରକ୍ଷା କରିବି । ମନେ ମନେ ଏଇଭଳି ପ୍ରତିଶ୍ରୁତିବଦ୍ଧ ହେଲି । ସେହି ଦିନଠାରୁ ହିଁ ରହିଗଲି ତାଙ୍କର ଅନ୍ଧ ସମର୍ଥକ ହୋଇ । ତାଙ୍କ ଲାଗି ସୁରକ୍ଷାର ଏକ ଦୃଢ଼ ବର୍ମ ହୋଇ ।

ଦୁର୍ଯ୍ୟୋଧନଙ୍କ ଘୋଷଣାର ବିଚିତ୍ରତାକୁ ବଳିକରି ହଠାତ୍ ଘଟିଗଲା ଆଉ ଏକ ବିଚିତ୍ର ଘଟଣା । ମୋ'ପାଇଁ ଆହୁରି ଅଧିକ ହର୍ଷୋଲ୍ଲାସଜନକ ।

ଦୀର୍ଘ ସମୟ ଧରି ନୀରବ ରହିବା ପରେ ମହାରାଜ ଘୋଷଣା କଲେ, ''କର୍ଣ୍ଣଙ୍କୁ ଅଙ୍ଗରାଜ୍ୟର ରାଜା ଭାବରେ ମୁଁ ସ୍ୱୀକୃତି ଜଣାଉଛି । ସେ ଏବେ ଅର୍ଜୁନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିପାରନ୍ତି ।''

ଚକିତହର୍ଷରେ ଫୁଲିଉଠିଲି ମୁଁ । ଆଉ ରାଜକୁମାର ଦୁର୍ଯ୍ୟୋଧନ ବି । ସେ ପ୍ରଥମେ କରତାଳି ଦ୍ୱାରା ଏହାର ସମର୍ଥନ କଲେ । ତାହା ପରେ ଗଡ୍‌ଡାଳିକା-ପ୍ରବାହ ପରି ଦର୍ଶକମାନଙ୍କ ମଧ୍ୟରୁ ଆସିଲା କରତାଳି ପରେ କରତାଳି । ମଝିରେ ମଝିରେ କେହି କେହି ମୋର ଜୟଧ୍ୱନି ବି କରିବାକୁ ଲାଗିଲେ — ମହାବୀର କର୍ଣ୍ଣଙ୍କର ଜୟ ହେଉ ! ଅଙ୍ଗରାଜ କର୍ଣ୍ଣଙ୍କର ଜୟ ହେଉ ।

ଏ ନିଷ୍ପତ୍ତିରେ କିନ୍ତୁ ଚମକିପଡ଼ିଲେ ପିତାମହ ଭୀଷ୍ମ । ଆଉ ଚମକିପଡ଼ିଲେ ବି ଆଚାର୍ଯ୍ୟ ଦ୍ରୋଣ । ସାନରାଣୀମା ତ ହଠାତ୍ ଆସନରୁ ଟଳିପଡ଼ିଲେ ତଳକୁ । ମୂର୍ଚ୍ଛା ଗଲେ । ବହୁ କଷ୍ଟରେ ପରିଚାରିକାମାନେ ସାଷ୍ଟାମ କରିବାରେ ଯାଇ ଫେରିପାଇଲେ ଚେତା । ଚେତା ଫେରିପାଇବାରେ କିନ୍ତୁ ବସିପାରି ନ ଥିଲେ ଶାନ୍ତ ହୋଇ । ମତେ ଓ ଅର୍ଜୁନଙ୍କୁ ଉଭୟଙ୍କୁ କରୁଣ ଚାହାଣି ଢାଳି ଚାହୁଁଥାନ୍ତି । ବେଦନା ଜର୍ଜରିତ ଚାହାଣି । ଅଥଚ ସ୍ନେହ, ଦରଦ ଓ ସହାନୁଭୂତିରେ ଛଳ ଛଳ । ଭାବୁଥାଏ, ଅର୍ଜୁନଙ୍କ ଆଡ଼େ ଏଭଳି ଚାହିଁବାରେ ଅର୍ଥ ଅଛି । କାରଣ ଗର୍ଭଧାରିଣୀ ମାଆ ସେ । ଦ୍ୱନ୍ଦ୍ୱଯୁଦ୍ଧରେ ଆସନ୍ନ ବିପଦର ସମ୍ଭାବନା ବିଷୟ ଚିନ୍ତା କରି କେଉଁ ମାଆ ବା ନ ହେବେ ଆତଙ୍କିତା ? ନ ହେବେ ବ୍ୟଥିତା ? ନ ହେବେ ଉଦ୍‌ବିଗ୍ନା ? କିନ୍ତୁ ମୋ' ଆଡ଼କୁ ଏମିତି ଚାହୁଁଛନ୍ତି କାହିଁକି ? ଠିକ୍ ସେମିତି ସମାନ ଚାହାଣି । ଟିକିଏ ହେଲେ ଫରକ ନାହିଁ । ମୁଁ ତାଙ୍କର କିଏ ? ଆଉ ସେ ବା ମୋର କିଏ ? କେବଳ ମୋହିତ ହୋଇ ଭାବିଚାଲିଥାଏ ସିନା, କିଛି ହିଁ ଠିକଣା କରିପାରୁ ନ ଥାଏ । ଖାଲି ଯାହା ତାଙ୍କ ମୁହଁରେ ଦେଖୁଥାଏ ରାଧାମା'ଙ୍କ ମୁହଁଟିକୁ । ହଁ, ସେଇ ମୁହଁଟିକୁ ଯହିଁରୁ ମୋ'ପାଇଁ ନିରତ ଝରୁଥାଏ ଆଶିଷର ଧାରା ସ୍ୱର୍ଗଙ୍ଗାର ପ୍ରବାହ ଭଳି !

''ଦ୍ୱନ୍ଦ୍ୱଯୁଦ୍ଧ ହେବାରେ ଆଉ କିଛି ଆପତ୍ତି ନାହିଁ । ତଥାପି ଟିକିଏ ଅଭାବ ରହିଯାଇଛି । ତାହାକୁ ପୂରଣ କରିବାକୁ ହେବ ।''

''କ'ଣ ସେଇ ଅଭାବଟି ?'' ମହାରାଜଙ୍କ ପ୍ରଶ୍ନ । ଏଥରକ ସେ ଟିକିଏ ଅଧୈର୍ଯ୍ୟ ଥିବାର ଜଣା ପଡୁଥାନ୍ତି । ଦ୍ୱନ୍ଦ୍ୱଯୁଦ୍ଧ ଶୀଘ୍ର ହେଉ ଏବଂ ତାଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କ ମନୋବାଞ୍ଛା ପୂର୍ଣ୍ଣ ହେଉ, ଏଇଆ ହୁଏତ ଚାହୁଁଥାନ୍ତି ।

''ଅଙ୍ଗରାଜଙ୍କ ରାଜ୍ୟାଭିଷେକ ହୋଇ ନାହିଁ । ତାଙ୍କ ଶିରରେ ଅଭିଷେକଜଳ ଢଳାଯାଇ ନାହିଁ । ସେ ପ୍ରଜାମାନଙ୍କୁ ସୁରକ୍ଷା ଦେବେ, ସେମାନଙ୍କ ମଙ୍ଗଳ ଚାହିଁବେ, ସେଥିପାଇଁ ଶପଥ ନେଇ ନାହାନ୍ତି । ଏହା ସବୁ ନ ହେଲେ ରାଜା ହେବାଟା ଅସଂପୂର୍ଣ୍ଣ । ଧର୍ମସମ୍ମତ ବି ନୁହେଁ ।''

କୃପାଚାର୍ଯ୍ୟ ଅବଶ୍ୟ ଠିକ୍ କଥା କହିଥିଲେ । କିନ୍ତୁ ଏପର୍ଯ୍ୟନ୍ତ ସେ ଯେଉଁ ଆଚରଣ ଦେଖାଇ ଆସିଛନ୍ତି ଏବଂ ବର୍ତ୍ତମାନ ଯେଭଳି ଆଚରଣ ଦେଖାଉଛନ୍ତି, ତହିଁରୁ ଗୋଟିଏ କଥା ଜଣାପଡୁଥିଲା ସ୍ପଷ୍ଟ ଭାବରେ । ସେ ଗୋଟିଏ ଜିନିଷ, କେବଳ ମାତ୍ର ଗୋଟିଏ ଜିନିଷ ଚାହାନ୍ତି । ଦ୍ୱନ୍ଦ୍ୱଯୁଦ୍ଧ କଦାପି କରାଇଦେବେ ନାହିଁ । ଫଳରେ ଅର୍ଜୁନ ହିଁ ଶେଷରେ ଘୋଷିତ ହେବେ ଶ୍ରେଷ୍ଠ ବୀର ଭାବରେ । ସେଥିପାଇଁ ନାନା ଆଳ ଦେଖାଇ କୌଣସିମତେ ଏଡ଼ାଇବାକୁ ଚାହାନ୍ତି ଦ୍ୱନ୍ଦ୍ୱଯୁଦ୍ଧକୁ । ଅନ୍ତତଃପକ୍ଷେ ଏହାକୁ ବିଳମ୍ବିତ କରିବା ପାଇଁ ଚାହାନ୍ତି । ଏହା ସାଧୁତାର ଖୋଳ ପିନ୍ଧିଥିବା କପଟ ଛଡ଼ା ଆଉ କିଛି ନୁହେଁ । ମୁଁ ବା କ'ଣ କରିପାରିଥାନ୍ତି ? ସବୁ ଏବେ ନିର୍ଭର କରୁଛି ମହାରାଜଙ୍କ ଉପରେ । କ୍ରୀଡ଼ାକନ୍ଦୁକଟି ରହିଛି ତାଙ୍କରି ଅଙ୍ଗନରେ । ତେଣୁ ନୀରବରେ ଅପେକ୍ଷା କରିଥାଏ ମହାରାଜାଙ୍କ ନିଷ୍ପତ୍ତିକୁ ଏବଂ ତାହାର ପରବର୍ତ୍ତୀ ଘଟଣାପ୍ରବାହକୁ ।

''ଆପଣ ଠିକ୍ କହିଛନ୍ତି ଆଚାର୍ଯ୍ୟ ! ଅଙ୍ଗରାଜଙ୍କର ଅଭିଷେକ ହେବା ଆବଶ୍ୟକ । ଏହି ସମୟରେ ଏହି ସ୍ଥାନରେ ହିଁ ତାହା କରାଯାଉ । ରାଜପୁରୋହିତ ଆଦି ସମସ୍ତଙ୍କୁ ଯଥାଶୀଘ୍ର ଡକାଯାଉ । ମହାମନ୍ତ୍ରୀ ସମସ୍ତ ବ୍ୟବସ୍ଥା କରନ୍ତୁ ।'' ମହାରାଜ ନିଷ୍ପତ୍ତି ଶୁଣାଇଲେ ।

ଏହି ଆଦେଶ ଥିଲା ମହାମନ୍ତ୍ରୀଙ୍କ ପାଇଁ ଅଭିପ୍ରେତ । ତାହା ସଙ୍ଗେ ସଙ୍ଗେ ହେଲା ପାଳିତ । ଅତି ତରବରିଆ ଭାବରେ ହୋଇଗଲା ମୋ' ରାଜ୍ୟାଭିଷେକ । ରାଜପୁରୋହିତ ମହାରାଜଙ୍କ ହସ୍ତରୁ ମୋ' ଲାଗି ଉଦ୍ଦିଷ୍ଟ ରାଜମୁକୁଟଟିକୁ ଗ୍ରହଣ କଲେ ଓ ମୋ' ମୁଣ୍ଡରେ ମନ୍ତ୍ର ପଢ଼ି ପିନ୍ଧାଇଦେଲେ । ଏହା ବାସ୍ତବ ଥିଲେ ମଧ୍ୟ ଏଭଳି ଆକସ୍ମିକ ଓ ତରବରିଆ ଭାବରେ ଘଟିଗଲା ଯେ ମତେ ଲାଗୁଥିଲା ସତେଯେମିତି ପିଲାମାନଙ୍କ କୌତୁକପୂର୍ଣ୍ଣ ଖେଳ । ମିଛି-ମିଛିକା ରାଜା ହେବାର ବିନୋଦ । ଅନେକ କିଛି ମନ୍ତ୍ର ପଢ଼ିଥିଲେ ସେ । ମୁଁ ମଧ୍ୟ ମନ୍ତ୍ର ପଢ଼ି ଅନେକ କିଛି ଶପଥ ନେଇଥିଲି । ସେ ସବୁ କଥା ମନେ ନାହିଁ । କିନ୍ତୁ ଗୋଟିଏ ମନ୍ତ୍ର ଏବେ ବି ମନେଅଛି ଯେତେବେଳେ ସିଂହାସନରେ ବସିବା ଅବସରରେ କହିଥିଲି, ''ବାଞ୍ଛନ୍ତୁ ନୋ ବିଶଃ ।'' ପ୍ରଜାମାନେ ସର୍ବଦା ମୋର ରାଜା ହେବାଟା ଚାହିଁଥାନ୍ତୁ । ସେମାନେ ନ ଚାହିଁଲେ ମୁଁ ରାଜା ହେବି ନାହିଁ । ରାଜପଦ ଛାଡ଼ିଦେବି । କାହିଁ କେଉଁ ବୈଦିକ ଯୁଗରୁ ଚଳିଆସୁଛି ଏଇ ପ୍ରଥା । ରାଜା ତ ଏମିତି ଶପଥ ନେଉଛନ୍ତି । ଶପଥ ଭଙ୍ଗ କଲେ ପ୍ରଜାମାନେ ତାଙ୍କୁ ଗାଦିଚ୍ୟୁତ କରିପାରୁଛନ୍ତି କି ? ରାଜା ସବୁବେଳେ ପ୍ରଜାମାନଙ୍କ ହିତକାମନା କରୁଛନ୍ତି କି ? ମୁଁ ଅବଶ୍ୟ ମୋ' ସାରା ଜୀବନ ଧରି ପ୍ରଜାମାନଙ୍କ ହିତକାମନା କରିଆସିଛି । ସେମାନଙ୍କୁ ସବୁ କିଛି ଦେଇଆସିଛି । ପ୍ରତିଦାନରେ କିଛି ଆଶା ରଖି ନାହିଁ । ଏହିଭଳି ଆଉ କେତେ ରାଜା ବି ଅଛନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା

ଖୁବ୍ କମ୍ । କିନ୍ତୁ ମୋର ଯାହା ଅନୁଭୂତି, ଏଇ ଆର୍ଯ୍ୟାବର୍ତ୍ତରେ ସଂଖ୍ୟାଧିକ ରାଜା ଅତ୍ୟାଚାରୀ । ପ୍ରଜାମାନଙ୍କୁ ଶୋଷଣ କରିଛନ୍ତି । ସେମାନଙ୍କ ଉପରେ ଅତ୍ୟାଚାର କରିଛନ୍ତି । ନୀରବରେ ସେମାନେ ସବୁକିଛି ସହି ଯାଇଛନ୍ତି । ସେମାନଙ୍କ ନିଜ ଅଧିକାର କ'ଣ ତାହା ଭୁଲିଯାଇଛନ୍ତି । ମୋର ବିଶ୍ୱାସ, ଏଭଳି ବ୍ୟବସ୍ଥା ରହିପାରିବ ନାହିଁ ଦୀର୍ଘଦିନ । ରହିବା ବି ଉଚିତ ନୁହେଁ । କାଳର କବଳରେ ଗ୍ରସ୍ତ ହେବ ପୂର୍ଣ୍ଣଗ୍ରସ୍ତ ଶଶିକଳା ଭଳି । ଗ୍ରହଣ ଚାଲିଗଲେ ଚନ୍ଦ୍ର ପୁଣି ଆସିଥାନ୍ତି ନବୀନପ୍ରଭାରେ ଧରଣୀକୁ ଉଜଳାଇ ଦେଇ । କିନ୍ତୁ ରାଜତନ୍ତ୍ର ଥରେ ଚାଲିଗଲେ ଆଉ ଆସିବ ନାହିଁ ଫେରି । ଉଦୟ ହେବ ଆଉ ଏକ ଚନ୍ଦ୍ର । ପ୍ରଜାତନ୍ତ୍ରର ଚନ୍ଦ୍ର । ଏହା କେବେ ହେବ କହିପାରିବି ନାହିଁ । କିନ୍ତୁ ନିଶ୍ଚୟ ହେବ ହିଁ ହେବ ।

ଆରେ, ରାଜତନ୍ତ୍ରର ଭବିଷ୍ୟତ୍‌ବାଣୀ ଶୁଣାଇବାକୁ ଯାଇ ଏତେ କଥା କହିଗଲିଣି । ଆଗାମୀ ଭବିଷ୍ୟତ୍‌କୁ ନ ଦେଖି ମଧ୍ୟ ଅନେକ କିଛି କଳ୍ପନାର ଜାଲ ବୁଣି ବସିଲିଣି । ମୋ' ମନ ମଧ୍ୟରେ ଯେଉଁ ସଂବେଗର ବାତ୍ୟା ବହୁଛି, ତାହାର ହିଁ ଫଳଶ୍ରୁତି । ଏବେ ଫେରିଯାଉଛି ହସ୍ତିନାପୁରର ରଙ୍ଗଭୂମିକୁ ।

ମୋର ରାଜ୍ୟାଭିଷେକ ଯଥାଶୀଘ୍ର ସରିଗଲା । ଏବେ ଅର୍ଜୁନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାର ଶେଷ ବିଘ୍ନ ଅପସାରିତ । ମୁଁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲି । ଅର୍ଜୁନ ମଧ୍ୟ ।

କିନ୍ତୁ କେତୋଟି ମୁହୂର୍ତ୍ତରେ ମୋର ସବୁ ପ୍ରସ୍ତୁତି ପାଣିଫୋଟକା ପରି ଉଭେଇଗଲା ଏକ ନୂତନ ପରିସ୍ଥିତିର ଉଦ୍ଭବରେ । ଶୌର୍ଯ୍ୟ-ବୀର୍ଯ୍ୟ ହୋଇଗଲା ଶିଥିଳ ଆପେ ଆପେ । ନିରସ୍ତ ହେବାକୁ ବାଧ୍ୟ ହେଲି । ଝଡ଼ ଭଳି ହଠାତ୍ ପିତା ପ୍ରବେଶ କଲେ ରଙ୍ଗଭୂମିରେ । ମୋର ଅଙ୍ଗରାଜ ହେବାର ସଂବାଦ ପାଇଛନ୍ତି । ସେଥିପାଇଁ ଆନନ୍ଦ ପ୍ରକାଶ କରି ବଧାଇ ଦେବାକୁ ଆସିଲେ । ଆଉ ଶୁଣିଛନ୍ତି ବି ମୋର ପାଣ୍ଡବ ଅର୍ଜୁନଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିବାର କଥା । ସେଥିପାଇଁ ବାରଣ କରିବାକୁ ଆସିଲେ । ରଙ୍ଗଭୂମିରେ ପ୍ରବେଶ କରିବା ମାତ୍ରେ ସ୍ନେହରେ ମତେ ଦୁଇବାହୁରେ ଜାକିଧରିଲେ ଏବଂ ଥର ଥର କଣ୍ଠରେ କହିଲେ, ''ପୁତ୍ର ମୋର ? ଭାଗ୍ୟବାନ୍ ପୁତ୍ର ମୋର !!''

ମୋର ରାଜବେଶ ଦେଖି ଅତି ମାତ୍ରାରେ ପ୍ରସନ୍ନ ହୋଇଉଠୁଥାନ୍ତି । ଦରିଦ୍ରକୁ କୁବେର-ସମ୍ପତ୍ତି ମିଳିଯାଇଥାଏ ଯେମିତି । ମୁଁ ଶିଷ୍ଟାଚାର ଦେଖାଇବାକୁ ଯାଇ ଅସ୍ତ୍ରତ୍ୟାଗ କଲି । ଶିରରୁ ରାଜମୁକୁଟ କାଢ଼ିଦେଲି । ତାଙ୍କ ପାଦତଳେ କଲି ଭୂମିଷ୍ଠ ପ୍ରଣାମ । ସେ ମତେ ତଳୁ ଉଠାଇ ପୁଣି ଥରେ ଭିଡ଼ିରଖିଲେ ବାହୁବନ୍ଧନରେ ଏବଂ ମୋର ଶିର ଆଘ୍ରାଣ କରି କହିଲେ, ''ଦୀର୍ଘାୟୁ ହୁଅ ବତ୍ସ ! ଆଉ ହୁଅ ବି ବିଜୟୀ ।'' ତାହା ପରେ ପୁଣି କହିଲେ, ''ଗୋଟିଏ କଥା ମୋର ରଖ ବତ୍ସ ।''

''କ'ଣ ବାପା ? ଆପଣଙ୍କ ଆଦେଶ ପୁଣି ମାନିବି ନାହିଁ ?'' ମୋର ଉତ୍କଣ୍ଠାଭରା ପ୍ରତିପ୍ରଶ୍ନ ।

"ତୁମେ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ସହିତ ଦ୍ୱନ୍ଦ୍ୱଯୁଦ୍ଧ କର ନାହିଁ ।"

"ଯେ ଆଜ୍ଞା ।" ଅନନ୍ୟୋପାୟ ହୋଇ ବିନୟାବନତ ସ୍ୱରରେ କହିଲି । ପିତ୍ରାଜ୍ଞା ଅଲଂଘନୀୟ ।

ମୁଁ ଦ୍ୱନ୍ଦ୍ୱଯୁଦ୍ଧରେ ଦାବିରୁ ଦୂରେଇଯାଇଛି ଜାଣି ମଧ୍ୟ ଭୀମସେନ ମତେ କଟୁ କଥା କହିବାକୁ ଆଗେଇ ଆସିଥିଲେ । ଏହାର ଉଦ୍ଦେଶ୍ୟ କେବଳ ଥିଲା ମତେ ଅପମାନିତ କରିବା । ମାନସିକ ନିର୍ଯାତନା ଦେବା । ମୋର ବୀରତ୍ୱ ପ୍ରତି ନିଷ୍ଠୁର ତାଚ୍ଛଲ୍ୟଭାବ ଦେଖାଇବା । ସେ ପରିହାସ କରି କହିଲେ, "ସୂତପୁତ୍ର କର୍ଣ୍ଣ ! ତୁମେ ଦ୍ୱନ୍ଦ୍ୱଯୁଦ୍ଧ କରିବ କ'ଣ, ଏବେ ଏଠୁ ଯାଅ । ଅଶ୍ୱଶାଳା ତୁମକୁ ଅପେକ୍ଷା କରିଛି । ଅଶ୍ୱମାନଙ୍କର ଯତ୍ନ ନେବ । ଅଥବା ରଥରେ ବସି ପ୍ରତୋଦ ଧରି ସେମାନଙ୍କୁ ଚଳାଇବ । ତାହାହିଁ ସାଜେ ତୁମକୁ । ଅସ୍ତ୍ରସ୍ପର୍ଦ୍ଧାର ବୃଥା ଅଭିନୟ ଆଉ କର ନାହିଁ । ହାଃ ! ହାଃ ! ହାଃ !"

କିଛି ଉତ୍ତର ଦେଇ ନ ଥିଲି । କେବଳ ମୁହଁ ତଳକୁ କରି ଠିଆ ହୋଇଥିଲି ସଂକୋଚରେ । କିନ୍ତୁ ମନର ସାପ ମୋ'ର ଫଁ ଫଁ ହେଉଥିଲା ଗୋପନରେ । ସୁଯୋଗ ଖୋଜୁଥିଲା ଚୋଟ ମାରିବା ପାଇଁ ଠିକଣା ସମୟରେ । ସେଦିନର ଆଚରଣ ପାଇଁ ଭୀମସେନଙ୍କୁ କ୍ଷମା ଦେଇ ନ ଥିଲି । ପ୍ରତିଶୋଧର ନିଆଁ ମୋ' ପ୍ରାଣ-ମନରେ ଜଳି ଉଠୁଥିଲା ହୁତୁ ହୁତୁ ହୋଇ !

ଦୁର୍ଯ୍ୟୋଧନ କିନ୍ତୁ ମୋ' ପକ୍ଷ ଦୃଢ଼ ଭାବରେ ସମର୍ଥନ କରି କହିଥିଲେ, "କର୍ଣ୍ଣ ସୂତପୁତ୍ର ହୁଅନ୍ତୁ ଅବା ଯେ କେହି ହୁଅନ୍ତୁ ସେ ବର୍ତ୍ତମାନ ଅଙ୍ଗରାଜ । ତାଙ୍କୁ ସେହି ନାମରେ ହିଁ ଡାକିବାକୁ ହେବ । ନ ହେଲେ ଅପରାଧୀକୁ ଦଣ୍ଡ ଦିଆଯିବ ।"

ପୁତ୍ରସ୍ନେହରେ ଅନ୍ଧ ଥିବା ମହାରାଜ ମଧ୍ୟ ଏଥିରେ ଦେଲେ ସହମତି । ତାହା ପରେ ଆଉ କେହି କିଛି କଟୁ କଥା କହିବାକୁ ସାହସ କରି ନ ଥିଲେ କିମ୍ବା ଭୀମସେନଙ୍କ ସମର୍ଥକ ଥାଇ ମୋ' ପ୍ରତି ଦେଖାଇ ନ ଥିଲେ ନିଷ୍ଠୁର ଉପହାସ ।

ଏତିକିବେଳେ କୃପାଚାର୍ଯ୍ୟ ଘୋଷଣା କଲେ, "ସୂର୍ଯ୍ୟ ଅସ୍ତ ଗଲେ । ଆଉ ଅସ୍ତ୍ରସ୍ପର୍ଦ୍ଧା ହୋଇପାରିବ ନାହିଁ । ଆଜିକାର ଅସ୍ତ୍ରସ୍ପର୍ଦ୍ଧାର ଫଳାଫଳ ଏବେ ଘୋଷଣା କରନ୍ତୁ ଦ୍ରୋଣାଚାର୍ଯ୍ୟ ।"

କ'ଣ ଘୋଷଣା କରାଯିବ ତାହା ଜଳ ଜଳ ହୋଇ ଦିଶୁଥିଲା ମୋ' ଆଖିକୁ । ତେଣୁ ଶୁଣିବାପାଇଁ କିଛି ହିଁ ନ ଥିଲା ସ୍ପୃହା ଅଥବା ଉତ୍କଣ୍ଠା ।

ଅର୍ଜୁନଙ୍କୁ ଶ୍ରେଷ୍ଠ ବୀର ବୋଲି ଘୋଷଣା କରାଗଲା ଏବଂ ସେ ଏଥିପାଇଁ ସଂରକ୍ଷିତ ଥିବା ପୁରସ୍କାରର ହେଲେ ଅଧିକାରୀ ।

ମୋର ମୁଖ ମଳିନରୁ ହୋଇଉଠୁଥିଲା ମଳିନତର । ଆଶ୍ଚର୍ଯ୍ୟ ହେଲି ସାନରାଣୀମା'ଙ୍କ ମୁଖକୁ ଚାହିଁ । ମୋ' ମୁଖର ମଳିନତା ତାଙ୍କ ମୁଖରେ ଯେମିତି ଆହୁରି ଅଧିକତର ପ୍ରତିଫଳିତ । ସୁପୁତ୍ରଙ୍କ ସଫଳତାରେ ସୁଖିନୀ ନ ହୋଇ ମୋ' ବିଫଳତାରେ ଦୁଃଖିନୀ ସେ । ଏହାର ରହସ୍ୟ ବୁଝିବା ମୋ' ପକ୍ଷରେ ଥିଲା ଏକାନ୍ତ ଅସମ୍ଭବ । କିଏ ଏଇ ରହସ୍ୟକୁ ଭେଦିପାରିବେ, ତାହାର ଉତ୍ତର ମଧ୍ୟ ନ ଥିଲା ମୋ' ପାଖରେ ।

## ପଞ୍ଚତିରିଶ

ସେଦିନ ରାତିରେ ମତେ ଆଦୌ ଭଲ ନିଦ ହୋଇ ନ ଥିଲା । ପରାଜୟ ଓ ଅପମାନର ଗ୍ଳାନି ସାରା ଦେହ-ମନକୁ କି ଏକ ଅବସାଦରେ କରିରଖିଥିଲା ଆଛନ୍ନ । ଜୀବନରେ ଏ ପର୍ଯ୍ୟନ୍ତ ଯାହା କିଛି ସିଦ୍ଧି ପାଇଛି ଅଥବା ଆଉ ଯାହା କିଛି ଭବିଷ୍ୟତ୍‌ରେ ପାଇବାର କଳ୍ପନା ଧରିରଖିଛି, ସବୁ ମତେ ଲାଗୁଥିଲା ତୁଚ୍ଛ । ସୂତପୁତ୍ର କର୍ଣ୍ଣରୁ ଦ୍ରୋଣାଚାର୍ଯ୍ୟ-କୃପାଚାର୍ଯ୍ୟ ଓ ଆଚାର୍ଯ୍ୟ ପରଶୁରାମଙ୍କ ଶିଷ୍ୟ । ସେଠାରୁ ପୁଣି ମହାବୀର କର୍ଣ୍ଣ । ସର୍ବୋପରି ପୁଣି ଅଙ୍ଗରାଜ କର୍ଣ୍ଣ । ଗୋଟିକ ପରେ ଗୋଟିଏ କରି ଅତିକ୍ରମ କରିଛି ଏଇ ପାହାଚଗୁଡ଼ିକୁ । ଜଣେ ସାଧାରଣ ମଣିଷପାଇଁ ନିଶ୍ଚୟ କଠିନ ଓ ଅନତିକ୍ରମ୍ୟ । କିନ୍ତୁ ତାହା ସତ୍ତ୍ୱେ କ'ଣ ବା ଫଳ ହେଲା ? ପାଣ୍ଡବ ଭୀମସେନଙ୍କ ପଦେ କଥାରେ ସବୁର ଗୌରବ ଆଜି ମିଳାଇଗଲା ପାଣିଫୋଟକା ପରି । ଏଇ ଗୌରବଗୁଡ଼ିକ ମଧ୍ୟରୁ ଗୋଟିଏ ହେଲେ ମତେ ରକ୍ଷା କରିପାରିଲା ନାହିଁ ତାଙ୍କ କଟୁ ପରିହାସଭରା ବଚନରୁ । ଭରା ରଙ୍ଗସଭା ମଧ୍ୟରେ ସେ ମତେ କହିଦେଲେ ଶୀଘ୍ର ଯାଇ ଅଶ୍ୱଶାଳାରେ ଅଶ୍ୱମାନଙ୍କ ପରିଚର୍ଯ୍ୟା କରିବାକୁ । ଅଥବା ହସ୍ତରେ ପ୍ରତୋଦ ଧରି ରଥର ଅଶ୍ୱମାନଙ୍କୁ ଚଳାଇବାକୁ । କେଉଁଥିପାଇଁ ? କି ଦୋଷ କରିଥିଲି ମୁଁ ? କି ପାପ କରିଥିଲି ଅବା ? ଛୋଟ ମୁହଁରେ ବଡ଼ କଥା କହିବାର ସାମାନ୍ୟ ଟିକିଏ ଉଦ୍ୟମ କରିଥିଲି ବୋଲି ତ ? ମୋ' ବୀରତ୍ୱ ଦେଖି ରଙ୍ଗଭୂମିର ଦର୍ଶକମାନେ ତଥା ପିତାମହ ଭୀଷ୍ମ ମତେ ପ୍ରଶଂସା କରିଥିଲେ ବୋଲି ତ ? ବଣର ମଲ୍ଲୀ ହୋଇ ସୁବାସରେ ବନଚାରୀ ପଥିକକୁ ଉଚ୍ଚାଟ କରିଦେବାର ସାହସ କରିଥିଲି ବୋଲି ତ ? ପବନ ଯଦି ସେଇ ସୁବାସକୁ ପ୍ରସାରିତ କରିଦେଲା, ସେଥିରେ ବଣମଲ୍ଲୀର ଦୋଷ ବା କ'ଣ ? ଖାଲି ବଣରେ ଫୁଟିଛି, ଏହା ଛଡ଼ା ଆଉ କ'ଣ ବା ଦୋଷ ଥାଇପାରେ ? ପ୍ରକୃତରେ ଦେଖିବାକୁ ଗଲେ ସେ ଦୋଷ କ'ଣ ତାହାର ? ବରଂ ପୂରା ଦୋଷ ବିଧାତାଙ୍କର । ସେ କାହିଁକି ତାହାକୁ ଦେଲେ ଏମିତି ମହକଭରା ଫୁଲଟିର ଜନ୍ମ । ଯଦି ବା ଦେଲେ, ତେବେ କାହିଁକି ତାହା ପାଇଁ ବାଛିଲେ ଅପନ୍ତରା ବଣଭୂଇଁ ? ମୋର ମଧ୍ୟ ଅନୁରୂପ ଭାଗ୍ୟ । ଭାଗ୍ୟ ତ ନୁହେଁ । ଦୁର୍ଭାଗ୍ୟ । ସୂତକୁଳରେ ମୋର ଜନ୍ମ । ବିଧାତା ଏଇ ଯେଉଁ ଅପରାଧଟି କରିବସିଲେ, ତାହାର ଯନ୍ତ୍ରଣା ମତେ ସହିବାକୁ ପଡୁଛି ସାରା ଜୀବନ ଧରି । ଗୌରବର କ୍ଷାର ଦେଇ ଯେତେ ମାଜିଲେ ବି ସେ କଳଙ୍କ ଛାଡୁନାହିଁ ମୋ'ଠାରୁ । ଆଶା ନାହିଁ ଆଉ ଛାଡ଼ିବ ବୋଲି । ଆମରଣ ରହିଯିବି ଏମିତି କଳଙ୍କର ଦାଗ ଧରି !

ବାରମ୍ବାର ଦୀର୍ଘଶ୍ୱାସ ଛାଡୁଥିଲି । ଯାତନାବୋଧ ଓ କ୍ରୋଧର ଏକ ମିଶ୍ରିତ ଦୀର୍ଘଶ୍ୱାସ ।

ପ୍ରତିଶୋଧ ହିଁ, ପ୍ରତିଶୋଧ । ନିଶ୍ଚୟ ନେବି ଏ ପ୍ରତିଶୋଧ । ଭୀମସେନଙ୍କ ଉପରେ ନେବି ପ୍ରତିଶୋଧ । ସୂତପୁତ୍ର ବୋଲି ସେ ମତେ ତାଚ୍ଛଲ୍ୟ କରି କହିଛନ୍ତି ପ୍ରତୋଦ ଧରିବାକୁ । ସେହି ପ୍ରତୋଦ ଯେ ଅଶ୍ୱମାନଙ୍କ ଛଡ଼ା ମନୁଷ୍ୟମାନଙ୍କ ପିଠିରେ ବାଜିପାରେ, ତାହା ତାଙ୍କୁ ଦେଖାଇଦେବି ସୁଯୋଗ ପଡ଼ିଲେ । ଜାଣେ, ଦୁର୍ଯ୍ୟୋଧନଙ୍କର କିପରି ତାଙ୍କ ପ୍ରତି ସ୍ୱଭାବଜ ବୈରଭାବ । ସେଇ ନିଆଁକୁ ଆହୁରି ତେଜାଇବି । ମାତୁଳ ଶକୁନି ହେବେ

ଏଥିରେ ନିଶ୍ଚିତ ଭାବରେ ସହାୟକ । ଆଉ ସହାୟକ ବି ହେବେ ପୁତ୍ରସ୍ନେହରେ ଅନ୍ଧ ମହାରାଜ ଧୃତରାଷ୍ଟ୍ର । କୌରବ ସୈନ୍ୟବାହିନୀ ତ କିଛି କମ୍ ବଡ଼ ଶକ୍ତିଶାଳୀ ନୁହେଁ । ତାହାର ସାହାଯ୍ୟ ମଧ୍ୟ ନେବି । ଏଇ ଯେଉଁ ପନ୍ଥା ଆଦରିନେବାକୁ ଯାଉଛି ସେଥିରେ ପାପ ଅଛି କି ପୁଣ୍ୟ ଅଛି, ସେ ବିଚାର ଆଣିବାକୁ ଅବସର ନାହିଁ ମୋର । ଅବସର ଥିଲେ ବି କାହିଁକି ଚିନ୍ତା କରିବି ସେ କଥା ? ମୋ' କଥା ତ କେହି ଚିନ୍ତା କରୁ ନାହିଁ । ମନର ଶୋଷକୁ ମେଣ୍ଟାଇବା ପାଇଁ ମୋ' ଆଗରେ ତ କେହି ଜଳପାତ୍ରଟିଏ ଥୋଇଦେଉ ନାହିଁ । ସମରଭୂମିରେ ଭଗ୍ନଜାନୁ ଅଶ୍ୱଟିଏ ଭଳି ପଡ଼ିରହିଛି ମୁଁ । ବେଦନାରେ ଆର୍ତ୍ତଚିତ୍କାର କରିଉଠୁଛି । କେହି ତ ମୋ' ଲାଗି 'ଆହା' ବୋଲି ପଦଟିଏ ହେଲେ କହୁ ନାହିଁ । ମୁଁ କାହିଁକି ଅନ୍ୟ କାହା କଥା ଭାବିବି ? ଏଇଭଳି ଭାବରେ ଚିତ୍ତତଳେ ମୋର ଅଭିମାନର ପାରାବତଟି ଘୁମୁରି ଉଠୁଥିଲା ବାରମ୍ବାର । ସେଥିରେ ପ୍ରତିଶୋଧର ନିଆଁ ପବନର ସ୍ପର୍ଶ ପାଇ ଆହୁରି ଅଧିକ ପ୍ରଜ୍ୱଳିତ ହୋଇ ଉଠୁଥିଲା ସିନା, ହେଉ ନ ଥିଲା କିନ୍ତୁ ପ୍ରଶମିତ । ଏହି ନିଆଁ କେତେ ଦୁର୍ବାର ସତେ ! କେତେ ଭୟଙ୍କର ସତେ ! ଥରେ ଜଳିଲେ ଦିନକୁ ଦିନ ନୂଆ ନୂଆ ସମିଧ ପାଇ ତାହାର ଜଳିବାଟା ବଢ଼େ ସିନା, କମେ ନାହିଁ । ଅନ୍ତତଃ ଯେପର୍ଯ୍ୟନ୍ତ ବିରୋଧୀ ପକ୍ଷକୁ ଜାଳିପୋଡ଼ି ପାଉଁଶ କରିଦେଇ ନାହିଁ ।

ସମୟ ଗଡ଼ି ଚାଲିଥାଏ । ରାତି ହୋଇଉଠୁଥାଏ ଗଭୀରରୁ ଗଭୀରତର । ହସ୍ତିନାପୁର ଏବେ ନୀରବ ସୁପ୍ତ । ମଝିରେ ମଝିରେ ପ୍ରହରୀର ଚିତ୍କାର ଭଙ୍ଗ କରୁଥାଏ ସେଇ ନୀରବତାକୁ । ମୋ' ଆଖିକୁ କିନ୍ତୁ ଆଦୌ ନିଦ ଆସୁ ନ ଥାଏ । ଚିନ୍ତାରେ ତାହା ଜଡ଼ୀଭୂତ ହୋଇଯାଏ ଯେମିତି । ଭାବୁଥାଏ ରାଜକୁମାର ଦୁର୍ଯ୍ୟୋଧନଙ୍କ କଥା । ସେ ଅବଶ୍ୟ ମୋର ସତୀର୍ଥ । ଆଚାର୍ଯ୍ୟ ଦ୍ରୋଣଙ୍କ ବିଦ୍ୟାୟତନରେ ଆମେ ଦୁହେଁ ଏକାଠି ପାଠ ପଢ଼ିଛୁ ଦୀର୍ଘ ଛଅବର୍ଷ ଧରି । ତାହା ଛଡ଼ା ତାଙ୍କ ସହିତ କିଛିଟା ମିତ୍ରତା ବି ଅଛି । କିନ୍ତୁ ଆଜି ସେ ଯାହା କଲେ, ସେ ତ କେବଳ ଏକ ସାଧାରଣ ମିତ୍ରଙ୍କ କାର୍ଯ୍ୟ ନୁହେଁ । ବରଂ ମୁଁ କହିବି, ତାହା ଜଣେ ଦରଦୀ ମହାମିତ୍ରଙ୍କ କାର୍ଯ୍ୟ । ତାଙ୍କ ହୃଦୟରେ ପାଣ୍ଡବବିଦ୍ୱେଷକୁ ଗୁପାୟିତ କରିବାର ଭାବନା ଥାଉ ପଛକେ, ମୋ'ପାଇଁ ସେ ଦେଖାଇଦେଲେ ଅପୂର୍ବ ଉଦାରତା । ଅନନ୍ୟ ମହାନୁଭବତା । ମତେ ଅଙ୍ଗଦେଶର ରାଜା କରାଇଦେଲେ । ଖାଲି ମୁଖର ବଚନରେ ନୁହେଁ, ମନ୍ତ୍ରପୂତ ରାଜ୍ୟାଭିଷେକ ମାଧ୍ୟମରେ ବି । ତାଙ୍କ ପାରୁପର୍ଯ୍ୟନ୍ତ ଚେଷ୍ଟା କଲେ ମତେ ନୀଚଜନ୍ମର କଳଙ୍କରୁ ବଞ୍ଚାଇବା ପାଇଁ । ତାହା ପୁଣି ବିନା ଯାଚନାରେ । ଏହା କ'ଣ କମ୍ ବଡ଼ ଦାନ ? ମୋ' ପରି ଜଣେ ସାଧାରଣ ସୂତପୁତ୍ର ପାଇଁ ଏହା କ'ଣ କମ୍ ବଡ଼ ସୌଭାଗ୍ୟ ? ଅଥଚ ମୁଁ ମନେ ମନେ ତାଙ୍କ ପ୍ରତି ସିନା କୃତଜ୍ଞତା ଜଣାଇଥିଲି, ବାକ୍ୟରେ କିନ୍ତୁ ପ୍ରକାଶ କରିପାରି ନ ଥିଲି । ସେଭଳି ସୁଯୋଗ ମିଳି ନ ଥିଲା । ପୁରସ୍କାର ଘୋଷଣା ପରେ ପରେ ରଙ୍ଗସଭା ଭାଙ୍ଗିଗଲା । ସେଇ ହଟ୍ଟଗୋଳ ଭିତରେ ତାଙ୍କ ସହିତ କଥାବାର୍ତ୍ତା ହେବାର ସୁଯୋଗ ପାଇପାରିଲି ନାହିଁ । ତେଣୁ ମନେ ମନେ ସ୍ଥିର କଲି, ରାତି ପାହି ସକାଳ ହେଲେ ତାଙ୍କ ପାଖକୁ ଯିବି । ତାଙ୍କୁ ହୃଦୟଭରା କୃତଜ୍ଞତା ଜଣାଇବି । ତାଙ୍କ ସହିତ ଥିବା ପୂର୍ବ ମିତ୍ରତାକୁ ଅଧିକତର ଦୃଢ଼ୀଭୂତ କରାଇବି ।

ଏହି ଅବସରରେ ମୋ' ଚିନ୍ତାର ବଳୟ ମଧ୍ୟକୁ ଆସିଗଲେ ଆଉ ଜଣେ ବ୍ୟକ୍ତି । ସାନରାଣୀମା । ପାଣ୍ଡୁମହିଷୀ କୁନ୍ତୀଦେବୀ । ଆଗରୁ ତ କହିଛି, ରଙ୍ଗଭୂମିର ମଞ୍ଚ ଉପରେ ଥାଇ ସେ ଯେଉଁ ଆଚରଣ ମୋ' ପ୍ରତି ଦେଖାଇଥିଲେ, ତାହା କିପରି ସ୍ତମ୍ଭୀଭୂତ କରିଦେଇଥିଲା ମତେ । ଖାଲି ତ ସ୍ତମ୍ଭୀଭୂତ କରିଦେଇ ନ ଥିଲା; ବରଂ କି ଏକ ପୁଲକର ମହାସାଗରରେ ବୁଡ଼ାଇ ଦେଇଥିଲା । ମତେ ଲାଗୁଥିଲା, ତାଙ୍କ ସହିତ ଯେପରି ମୋର ରହିଛି ଏକ ଶାଶ୍ୱତ ବନ୍ଧନ ! ତାହାର ସ୍ୱରୂପଟି କ'ଣ ତାହା କିନ୍ତୁ ଥିଲା ଅଜଣା । ନିଶୀଥ-ଶଯ୍ୟାରେ ଏବେ ସେଇ ହିଁ ମନେପଡ଼ିଲେ । ଖାଲି ତ ମନେପଡ଼ିଲେ ନାହିଁ; ମନକୁ ମୋର ଜାବୁଡ଼ି ଧରିରଖିଲେ ନିବିଡ଼ ଆଲିଙ୍ଗନରେ ନିଦ ଆସିବାଯାଏ ।

ନିଦ୍ରାଦେବୀଙ୍କ କୋଳରେ ଅଚେତ ହୋଇ ସୁଷୁପ୍ତିରେ ବୁଡ଼ି ରହିଥିବା ବେଳେ ହଠାତ୍ ଦେଖାଦେଲା ଏକ ବିଚିତ୍ର ଓ ଅଭାବନୀୟ ପରିସ୍ଥିତି । ପାହାନ୍ତା ପହରକୁ ଦେଖିଲି ଏକ ମଧୁର ସ୍ୱପ୍ନ । ସେଦିନର ଯାହା କିଛି ଘଟଣାବଳୀ ଆଚ୍ଛନ୍ନ କରି ରଖିଥିଲା ମୋର ପ୍ରାଣମନକୁ, ଦୁଃସ୍ୱପ୍ନ ଦେଖିବାର ସମ୍ଭାବନା ଥିଲା ଅଧିକ । ଅଥଚ ଏଭଳି ଯେ ସୁଖଦ ସ୍ୱପ୍ନଟିଏ ଦେଖିପାରିବି ତାହା ଥିଲା କଳ୍ପନାତୀତ । ସହସା ସ୍ୱପ୍ନଭଙ୍ଗ ପରେ ଅନୁଭବ କଲି, ସତେଯେମିତି ମୋର ସନ୍ତାପଦଗ୍ଧ ତନୁରେ କିଏ ବୋଳିଦେଇଛି ଚନ୍ଦନର ଚାରୁ ପ୍ରଲେପ । ସାରା ତନୁ, ମନ, ପ୍ରାଣ ଧରି ଅପୂର୍ବ ଶିହରଣ ! ସେଇ ସ୍ୱପ୍ନ କଥା ନ କହି ରହିପାରୁ ନାହିଁ ।

ଦେଖିଲି, ମୋ' ଶଯ୍ୟାଧାରରେ ବସିଛନ୍ତି ଜଣେ ମହୀୟସୀ ମହିଳା । ଚିହ୍ନିଲି । ସେ ସାନରାଣୀମା' । ପାଣ୍ଡୁପତ୍ନୀ କୁନ୍ତୀଦେବୀ । ପଞ୍ଚପାଣ୍ଡବଙ୍କ ପୁତ୍ରଗର୍ବିଣୀ ମାତା । ଧୀରେ ଧୀରେ ଆଉଁଶୁଛନ୍ତି ମୋ' ମୁଣ୍ଡକୁ । ଚାହିଁଛନ୍ତି ମୋର ମୁହଁକୁ କି ଏକ ଅତୃପ୍ତ ପିପାସା ନେଇ । ବୁକୁତଳ ତାଙ୍କର ଗୁରୁ ଗୁରୁ କମ୍ପିତ ! ମମତାର ଏକ ମୂର୍ତ୍ତିମତୀ ଦେବୀ ।

"ପୁତ୍ର ! ପୁତ୍ର ମୋ'ର !" ତାଙ୍କର ସ୍ନେହଭରା ଡାକ କର୍ଣ୍ଣମୂଳେ ମୋର ବିନ୍ଦୁ ବିନ୍ଦୁ ଅମୃତ ଛିଞ୍ଚିଦେଉଛି ଯେମିତି ।

"କିଏ ତୁମେ ଦେବୀ ?" ଚମକିପଡ଼ି ପ୍ରଶ୍ନ କଲି ଏବଂ ସଂଭ୍ରମର ସହିତ ଉଠିବାକୁ ଚେଷ୍ଟା କଲି ।

"ଉଠ ନାହିଁ ବାପା, ଶୁଅ । ତୁମେ କ୍ଲାନ୍ତ – ଅବସନ୍ନ । ବିଶ୍ରାମ ନିଅ । ଏଇଠି ମୋ' କୋଳରେ ବିଶ୍ରାମ ନିଅ ।"

ସେ ଦେଖାଇଦେଲେ ତାଙ୍କ କୋଳ । ସେଇ ସ୍ନେହର ପକ୍ଷରେ ସଦା ଉଷ୍ଣକୋମଳ କୋଳ ! ମାତା ପକ୍ଷିଣୀଟିର ଶାବକ ପାଇଁ ବିସ୍ତାରିତ ପକ୍ଷତଳେ ଥିବା ଉଷ୍ମ ଆଶ୍ରୟ ଯେମିତି । ବିନା ପ୍ରତିବାଦରେ ବାଧ ଶିଶୁଟି ଭଳି ଆଶ୍ରୟ ନେଲି ସେଇ କୋଳରେ । କି ଆଶ୍ଚର୍ଯ୍ୟ ! ମୋ'ର ପୂର୍ବ ରୂପ ଗଲା କୁଆଡ଼େ ? ଯୁବକର ବଳିଷ୍ଠ ବପୁ ଗଲା କୁଆଡ଼େ ? ହଠାତ୍ ପାଲଟିଗଲି କ୍ଷୁଦ୍ର ଶିଶୁଟିଏ । ନିତାନ୍ତ ଅସହାୟ । ଚିତ୍କାର କରୁଥାଏ ଗୋଡ଼ ହାତ ପିଟି ପିଟି । ମତେ ବାରମ୍ବାର ସାନ୍ତ୍ୱନା ଦେଉଥାନ୍ତି ସେ । ତଥାପି ମୋ' ଚିତ୍କାର ହେଉ ନ ଥାଏ ଉପଶାନ୍ତ । ତାଙ୍କ କୋଳରେ ଆଘାତ ଉପରେ ଆଘାତ ଦେଇ ଚିତ୍କାର କରି

ଚାଲିଥାଏ । ଏ ଆଘାତ ତାଙ୍କୁ ଫୁଲବରଷା ଭଳି ଲାଗୁଥାଏ ଯେମିତି । ସେ ଖାଲି ହସୁଥାନ୍ତି । ମୋ' ଶିରକୁ ବାରମ୍ବାର ଆଘ୍ରାଣ କରି କରି ହସୁଥାନ୍ତି । ବେଳେ ବେଳେ ମୁଗ୍ଧ ଆବେଗରେ ଚୁମୁଥାନ୍ତି ମୋ' ମୁଖକୁ । ମୋ' ଚିତ୍କାର ତଥାପି ବନ୍ଦ ନ ହେବାର ଦେଖି ତାଙ୍କ ବୁକୁତଳେ ଚାପିରଖନ୍ତି ମତେ । ସେଇ ସ୍ନେହୋଚ୍ଛଳ ବୁକୁତଳ ଯେଉଁଠି ଶିଶୁ ଲାଗି ବିଧାତା ସଯତ୍ନରେ ସଞ୍ଚିତ କରି ରଖିଥାନ୍ତି ଆଦ୍ୟ ଅମୃତମୟ ଆହାର । ସହସା ବନ୍ଦ ହୋଇଯାଏ ମୋ' ଚିତ୍କାର । ସେ ଖାଲି ମୁଗ୍ଧ ଆବେଗରେ ଚାହିଁ ରହିଥାନ୍ତି ମୋ' ମୁହଁକୁ ଓ ତାଙ୍କ ବୁକୁ ତଳେ ଅଧାଲୁଚା ଅଧାଖୋଲା ମୋ' କୁନି କୁନି ଆଖି ଦିଓଟିକୁ । କି ଶାନ୍ତି କି ପରିତୃପ୍ତି ପାଉଥାନ୍ତି କେଜାଣି, ତାଙ୍କୁ ହିଁ ଜଣା ।

ଏତିକିରେ ମୋ' ନିଦ ଭାଙ୍ଗିଗଲା । ପରୀକ୍ଷା କରିନେଲି ମୋ' ସାରା ଦେହକୁ । ପ୍ରକୃତରେ ମୁଁ ପୂର୍ବଭଳି ରହିଛି ଯୁବକ ହୋଇ । ମୋର କିଛି ହିଁ ଘଟି ନାହିଁ ପରିବର୍ତ୍ତନ । କେବଳ ଯାହା ଦେହସାରା କି ଏକ ମଧୁର କମ୍ପନ ! ବୁଝିପାରିଲି, ଏହା ସବୁ ସେଇ ସ୍ୱପ୍ନର ଫଳଶ୍ରୁତି ।

ଭାବିଲି, ଏଭଳି ସ୍ୱପ୍ନ ଦେଖିଲି କାହିଁକି ? ସତରେ କ'ଣ କୁନ୍ତୀଦେବୀ ମୋର ମାଆ ? ତା'ହେଲେ ରାଧା ମାଆ ପୁଣି କିଏ ? ପିତା ସୂତବର ଅଧିରଥ ପୁଣି କିଏ ? ମୁଁ କ'ଣ ସୂତପୁତ୍ର ନୁହେଁ ?

ଶେଷରେ ସ୍ଥିର କଲି, ନା, ଏ ସବୁ ଅଳୀକ କଳ୍ପନା । କୁନ୍ତୀଦେବୀ ମୋର କେହି ନୁହନ୍ତି । ଅନ୍ୟମାନଙ୍କ ଭଳି ସେ ମୋର ସାନରାଣୀମା' । ଚିର ନମସ୍ୟା । ମୁଁ ସାମାନ୍ୟ ପ୍ରଜା ମାତ୍ର । ସୂତପୁତ୍ର ହୋଇ ଏଡ଼େ ବଡ଼ ସୌଭାଗ୍ୟ କଥା ଚିନ୍ତା କରିବା ମୋ' ପକ୍ଷରେ ଆଦୌ ଉଚିତ ନୁହେଁ । ଏଭଳି କଳ୍ପନା କରିବାଟା ଅନ୍ୟାୟ, ପାପ । ରଙ୍ଗଭୂମିରେ କୁନ୍ତୀଦେବୀଙ୍କ ରହସ୍ୟମୟ ଓ ପ୍ରାଣସ୍ପର୍ଶୀ ଭାବମୂର୍ତ୍ତିଟି ଦେଖି ମୋର ଯେଉଁ ଦୁର୍ବଳତା ଥିଲା କ୍ଷଣକ ପାଇଁ, ତାହା ସଞ୍ଚିତ ହୋଇ ରହିଥିଲା ଅବଚେତନ ମନରେ । ତାହାରି ଫଳଶ୍ରୁତି ହୁଏତ ଏଇ ବିଚିତ୍ର ସ୍ୱପ୍ନ । ଏହିପରି ଭାବରେ ମନକୁ ଦେଲି ସାନ୍ତ୍ୱନା ଓ ଶୂନ୍ୟ ଆକାଶରେ ପ୍ରାସାଦ ଗଢ଼ିବାର ବ୍ୟର୍ଥ ଉଦ୍ୟମରୁ ନେଲି ଅବ୍ୟାହତି ।

ଯେତେ ଚେଷ୍ଟା କଲେ ବି ଆଉ ନିଦ ହେଲା ନାହିଁ । ସକାଳ ହେବାରୁ ଶେଯ ଛାଡ଼ିଲି । ପରେ ପରେ ଲାଗିଗଲି ଦୁର୍ଯ୍ୟୋଧନଙ୍କୁ ସାକ୍ଷାତ କରିବାର ପ୍ରସ୍ତୁତି କର୍ମରେ ।

## ଛତିଶ

ଅସ୍ତ୍ରସ୍ପର୍ଦ୍ଧା ପ୍ରଦର୍ଶନର ସମାପ୍ତି ପରେ ପରେ ହିଁ ରାଜକୁମାରମାନେ ବିଦ୍ୟାୟତନରୁ ଆସିଯାଇଥିଲେ ରାଜଭବନକୁ । ଦୁର୍ଯ୍ୟୋଧନ ତାଙ୍କ ନିଜ ଭବନରେ ଥିଲେ । ସାକ୍ଷାତ କରିବା ନିମିତ୍ତ ପୂର୍ବରୁ ସଂବାଦ ପଠାଇଥିଲି ତାଙ୍କ ପାଖକୁ । ସେ ସେଥିପାଇଁ ପ୍ରସ୍ତୁତ ହୋଇ ବସିଥିଲେ ନିଜ ଆସନରେ । ପାଖରେ ଭ୍ରାତା ଦୁଃଶାସନ ଓ ମାତୁଳ ଶକୁନି । ଦୁଃଶାସନଙ୍କର ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ଗଭୀର ଅନୁରକ୍ତି, ଶ୍ରଦ୍ଧା ଓ ସମ୍ମାନ । କାୟା ପଛରେ

ଛାୟା ଲାଗି ରହିଥିବା ଭଳି ସର୍ବଦା ଥାଆନ୍ତି ଅଗ୍ରଜ ପାଖରେ । ଆଉ ମାତୁଳ ଶକୁନି । ବଡ଼ ବିଚିତ୍ର ବ୍ୟକ୍ତିତ୍ୱ ସେ । କୌରବ ରାଜକୁମାରମାନଙ୍କ ହିତାକାଙ୍କ୍ଷୀ । ଅନ୍ତତଃ ସେଇ ଧାରଣା ସେମାନଙ୍କର । କିନ୍ତୁ କୂଟକପଟରେ ଏକ ପ୍ରମୂର୍ତ୍ତ ବିଗ୍ରହ । ନିଜ ରାଜ୍ୟ ଗାନ୍ଧାର ଛାଡ଼ି ଦୀର୍ଘଦିନ ଧରି ରହିଆସୁଛନ୍ତି ହସ୍ତିନାପୁରରେ । ରାଜକୁମାରମାନଙ୍କ ସ୍ୱାର୍ଥରକ୍ଷା ତାଙ୍କ ଉଦ୍ଦେଶ୍ୟ । ଏଇ ଧାରଣା ସେ ସୃଷ୍ଟି କରାଇପାରିଛନ୍ତି ନିଜ ଭଗିନୀପତି ରାଜା ଧୃତରାଷ୍ଟ୍ରଙ୍କ ମନରେ । ନିଜ ଭଗିନୀ ଗାନ୍ଧାରୀ ଚାହାନ୍ତି ନାହିଁ ସେ ଏତେଦିନ ଧରି ନିଜ ରାଜ୍ୟ ଛାଡ଼ି ହସ୍ତିନାପୁରରେ ରହନ୍ତୁ ବୋଲି । କିନ୍ତୁ ନାଚାର ସେ । ମହାରାଜଙ୍କ କଥାକୁ ଏଡ଼ାଇ ଦେଇପାରି ନାହାନ୍ତି । ଏହିପରି ଅନୁକୂଳ ପରିସ୍ଥିତିରେ ଗାନ୍ଧାରରାଜ ରହିଯାଇ ପାରିଛନ୍ତି ଏତେଦିନ ଧରି ହସ୍ତିନାପୁରରେ ।

ଯଥାସମୟରେ ଯାଇ ପହଞ୍ଚିଲି ଦୁର୍ଯ୍ୟୋଧନଙ୍କ ଭବନର ଦ୍ୱାରଦେଶରେ । ଦ୍ୱାରପାଳ ହାତରେ ଖବର ଦେଲି ତାଙ୍କୁ । ସେ ଖବର ପାଇବା ମାତ୍ରେ ସଙ୍ଗେ ସଙ୍ଗେ ଧାଇଁଆସିଲେ ଦ୍ୱାର ନିକଟକୁ । ମତେ ଆଦରରେ ଆଲିଙ୍ଗନ କରି କହିଲେ, ‘‘ଆସ ମିତ୍ର ଅଙ୍ଗରାଜ କର୍ଣ୍ଣ, ଆସ । ତୁମକୁ ସ୍ୱାଗତ ଜଣାଉଛି । ଆଉ ବଧାଇ ବି ଜଣାଉଛି ଅଙ୍ଗରାଜଗାଦି ପାଇଥିବା କାରଣରୁ ।’’ ଆଶ୍ଚର୍ଯ୍ୟ ହୋଇଗଲି ତାଙ୍କ ଆଚରଣରେ । ମହାମାନୀ ସେ । ରାଜକୀୟ ଅଭିମାନରେ ଟଳମଳ । ବଳବୀର୍ଯ୍ୟର ଅଭିମାନରେ ବି । ସେ ପୁଣି ମୋ’ ଭଳି ସୂତପୁତ୍ରକୁ ଆଜି ପାଛୋଟି ନେଉଛନ୍ତି ଦ୍ୱାରଦେଶରୁ ଆଉ ଆଲିଙ୍ଗନର ବନ୍ଧନରେ ବାନ୍ଧି ରଖି ! ଲଜ୍ଜା ଓ କୃତଜ୍ଞତାରେ ମୁଣ୍ଡ ମୋର ନଇଁ ଆସିଲା । ଭାବିଲି, ଯେତେ ଅଭିମାନୀ ହେଲେ କ’ଣ ହେଲା, ରାଜକୀୟ ସମ୍ମାନବୋଧ ଓ ଶିଷ୍ଟାଚାରରେ କିଛି କମ୍ ନୁହନ୍ତି ଦୁର୍ଯ୍ୟୋଧନ । ଆଉ ଜଣେ ମିତ୍ର ପାଇଁ । ସେ ତ ସ୍ୱଚ୍ଛ-ତରଳ ଗିରିନିର୍ଝରୀରୁ ଉଦ୍‌ଗତ ଜଳପ୍ରପାତ ଯେମିତି । ଅଜାଡ଼ି ହୋଇପଡ଼ିବେ ଅଯାଚିତ ପ୍ରେମର ଧାରା ଢାଳିଦେଇ ! ଶ୍ରୀଫଳ ଭଳି ବାହାରକୁ ଗର୍ବ-ଅଭିମାନର କର୍କଶତା । କିନ୍ତୁ ଭିତରେ ସରସ ପ୍ରେମର ଛଳ ଛଳ ପ୍ରବାହ ! ବଡ଼ ଅନନ୍ୟ ଚରିତ୍ର !

‘‘ଧନ୍ୟବାଦ ମିତ୍ର ଦୁର୍ଯ୍ୟୋଧନ । ବଧାଇ ତ ମୋର ତୁମକୁ ଦେବା କଥା । କାରଣ ଅଙ୍ଗରାଜଗାଦି ତ କେବଳ ତୁମରି ହିଁ ଦାନ ! ତୁମରି ହିଁ ପ୍ରସାଦ ।’’ କଣ୍ଠରେ ମୋର ବିନୟଭରା ଭାଷା । ଶିର ମଧ୍ୟ ସାମାନ୍ୟ ଅବନତ ।

‘‘ଆଦୌ ନୁହେଁ, ଆଦୌ ନୁହେଁ, ମିତ୍ର କର୍ଣ୍ଣ । ତୁମେ ଏଇ ପଦଟି ପାଇଛ କେବଳ ନିଜ ସାମର୍ଥ୍ୟବଳରେ । ନିଜ ବୀରତ୍ୱବଳରେ । କାହାରି ଅନୁଗ୍ରହରୁ କିନ୍ତୁ ନୁହେଁ । ତୁମଠାରେ ଅଛି ମହାସୁଗନ୍ଧି । ମୁଁ ତାହାକୁ ସାମାନ୍ୟ ପବନ ହୋଇ ବହିଆଣିଛି ମାତ୍ର । ନା କ’ଣ ମାମୁ ?’’ ମୋ’ର ପ୍ରଶଂସାରେ ଶତମୁଖର ସେ । ଶେଷ ବାକ୍ୟଟି ଥିଲା ଗାନ୍ଧାରରାଜଙ୍କୁ ଅଭିପ୍ରେତ ।

‘‘ନିଶ୍ଚୟ, ନିଶ୍ଚୟ । ନିଜ ଗୁଣବଳରେ ହିଁ କର୍ଣ୍ଣ ଆଜି ଅଙ୍ଗଦେଶର ରାଜା । ଏହା ହେବାଟା କାହାରି ଅନୁଗ୍ରହସାପେକ୍ଷ ନୁହେଁ ।’’ ମାମୁଙ୍କ ମୁହଁରେ ମଧ୍ୟ ମୋର ସମର୍ଥିକ ପ୍ରଶଂସା । ସେ ଦୁର୍ଯ୍ୟୋଧନଙ୍କ କଥାର ଥିଲେ ଦୃଢ଼ ସମର୍ଥକ ।

''ତୁମକୁ କଥାରେ କିଏ ପାରିବ ମିତ୍ର ? ଆଉ ମାମୁ । ସେ ତ କଥାର ପଶାଖେଳରେ ଅତି ପାରଙ୍ଗମ । ବୁଦ୍ଧିଭ୍ରମ କରିଦେବେ ସମସ୍ତଙ୍କର ।'' ହସି ହସି କହିଲି । ମୋ' ହସ ସହିତ ସମତାଳ ଦେଇ ହସିଉଠିଲେ ବି ଦୁର୍ଯ୍ୟୋଧନ, ଗାନ୍ଧାରରାଜ ଶକୁନି ଓ ଦୁଃଶାସନ ।

ପରେ ପରେ କିଛି ସମୟ ଧରି ଚାଲିଲା ଖୁସିଗପ । ବିନୋଦରେ ଅନେକ କିଛି କଥା କୁହାକୁହି ହେଲୁ । ମାମୁ ମଧ୍ୟ ବିଚିତ୍ର ଲୋକ । ସେ ବି ଆମ ସହିତ ବିନୋଦ କରିବାରେ ପାଉଥାନ୍ତି ଆନନ୍ଦ । ଆମ ତାଙ୍କ ମଧ୍ୟରେ ବୟସର ଦୂରତା ଅପସରିଯାଇଥାଏ । ହୃଦୟ ତାଙ୍କର ଯେମିତି ଗଙ୍ଗାଜଳ ପରି ଖୁବ୍ ନିର୍ମଳ । କିନ୍ତୁ ତାଙ୍କର ପ୍ରତ୍ୟେକଟି କଥାକୁ ଅନ୍ତର୍ଦୃଷ୍ଟି ଦେଇ ଦେଖିଲେ ଜଣାଯିବ, ତାହାର ଯେମିତି ଦୁଇଟା ଅର୍ଥ ଅଛି । ପ୍ରକୃତ ଅର୍ଥଟା ଛପି ରହିଛି ଭିତରେ ହୁଙ୍କା ମଧ୍ୟରେ ନାଗସାପର ଫଣାଟି ଲୁଚି-ଛପି ରହିଥିବା ଭଳି । କଥାବାର୍ତ୍ତା, ଚାହାଣି ସବୁ କିଛିଟାରେ କପଟଭାବ ଥିବାର ଜଣାଯାଏ । ଏଭଳି ଜଣେ ବ୍ୟକ୍ତିଙ୍କୁ କାହିଁକି ଯେ ମହାରାଜ ଏତେଦିନ ଧରି ରାଜଭବନରେ ରହିବାର ସୁଯୋଗ ଦେଇଛନ୍ତି ବୁଝିପାରୁ ନ ଥାଏ । କ'ଣ ବା ତାଙ୍କର ବିବଶତା ?

ହାଲୁକା ଗପ ସରିବା ଉତ୍ତାରୁ ଦୁର୍ଯ୍ୟୋଧନ ମତେ ପଚାରିଲେ, ''ମିତ୍ର କର୍ଣ୍ଣ ! ତୁମେ ତ ଅଙ୍ଗରାଜ ହେଲ । ଭବିଷ୍ୟତର କାର୍ଯ୍ୟପନ୍ଥା କ'ଣ ସ୍ଥିର କରିଛ ?''

''ଭାବିଛି, ନିଜ ରାଜ୍ୟକୁ ଦୁଇ-ଚାରି ଦିନ ମଧ୍ୟରେ ଯିବାର ବ୍ୟବସ୍ଥା କରିବି । ଏହା ଭିତରେ ପିତାମହ ଭୀଷ୍ମ, ମହାରାଜ ଓ ମହାମନ୍ତ୍ରୀ ବିଦୁରଙ୍କ ସହିତ କିଛି ପରାମର୍ଶ କରିବି ।''

''ପରାମର୍ଶ କରିପାର । କିନ୍ତୁ ହସ୍ତିନାପୁର ଛାଡ଼ି ଚାଲିଯିବା ପାଇଁ କାହିଁକି ଭାବୁଛ ? ମତେ ଏଠାରେ ଏକାକୀ ଛାଡ଼ିଦେବା ପାଇଁ କାହିଁକି ବିଚାରୁଛ ?

''କର୍ତ୍ତବ୍ୟ ମିତ୍ର, କର୍ତ୍ତବ୍ୟ । ଏଇ କର୍ତ୍ତବ୍ୟର ଆହ୍ୱାନରେ ହିଁ ଯାଉଛି । ରାଜା ନିଜ ରାଜ୍ୟରେ ନ ରହିଲେ ରାଜ୍ୟଶାସନ ଚାଲିବ କେମିତି ? ପ୍ରଜାମାନେ ନିଜକୁ ସୁରକ୍ଷିତ ମନେକରିବେ କେମିତି ?''

ଜାଣିଥିଲି, ଏ ପର୍ଯ୍ୟନ୍ତ ଅଙ୍ଗ ହସ୍ତିନାପୁରର ଶାସକଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ଅବଶ୍ୟ କାହିଁ କେଉଁ ସୁଦୂର ଅତୀତରେ ରାମାୟଣ ଯୁଗରେ ଏହା ଥିଲା ଏକ ସ୍ୱତନ୍ତ୍ର ରାଜ୍ୟ ଯାହାର ଶାସକ ଥିଲେ ଲୋମପାଦ । ଏହାର ସ୍ୱାତନ୍ତ୍ର୍ୟ କେବେ ଲୋପ ହେଲା ତାହା ଇତିହାସର ଗର୍ଭରେ ଲୁକ୍କାୟିତ । ମତେ ଏବେ ନୂଆ କରି ରାଜଧାନୀ ନିର୍ମାଣ କରିବାକୁ ହେବ । ସୀମା ନିର୍ଦ୍ଧାରଣ, ହସ୍ତିନାପୁର ରାଜକୋଷରୁ କିଛି ମୌଳିକ ସମ୍ବଳ ଆହରଣ, ସୈନ୍ୟବଳ ଗଠନ, ଏମିତି ଅନେକ କିଛି ପ୍ରାରମ୍ଭିକ କାର୍ଯ୍ୟ ଅଛି । ଅଙ୍ଗରାଜ୍ୟକୁ ନ ଗଲେ ଚଳିବ କେମିତି ? ପ୍ରଥମ କିଛି ଦିନ ପାଇଁ ଅଙ୍ଗ ଓ ହସ୍ତିନାପୁର ଉଭୟ ସହିତ ସମନ୍ୱୟ ଓ ସଂପର୍କ ରଖିବାକୁ ହେବ । ସେଥିପାଇଁ ଏପରି କହିଥିଲି ।

''ମତେ ଅସୁରକ୍ଷିତ ଛାଡ଼ିଦେଇ ପ୍ରଜାମାନଙ୍କୁ ସୁରକ୍ଷା ଦେବାପାଇଁ ଚାଲିଯିବ ମିତ୍ର ? ମୁଁ କ'ଣ ତୁମର କେହି ନୁହେଁ ?'' ଦୁର୍ଯ୍ୟୋଧନଙ୍କ କଣ୍ଠରେ ଆହତ ଅଭିମାନର ଝଙ୍କାର ।

ତାଙ୍କ ଦମ୍ଭର ପାହାଡ଼ଟି ଦୋହଲି ଯାଉଥାଏ ଯେମିତି । ଚମକିପଡ଼ିଲି ମୁଁ । ଏଭଳି ପ୍ରଶ୍ନ କାହିଁକି କରୁଛନ୍ତି ସେ ? ତାଙ୍କଠାରୁ କ'ଣ ଆଉ କେହି ବେଶି ସୁରକ୍ଷିତ ଅବସ୍ଥାରେ ଅଛନ୍ତି ? ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଆଦି ମହା ମହାବୀରମାନେ ଅଛନ୍ତି ତାଙ୍କ ପାଖେ ପାଖେ । ମନ୍ତ୍ରଣା ଦେବାପାଇଁ ଅଛନ୍ତି ମହାମନ୍ତ୍ରୀ ବିଦୁର । କୁରୁରାଜ୍ୟର ଅତି ଶକ୍ତିଶାଳୀ ଚତୁରଙ୍ଗବଳ ବି ଅଛି । ଏହା ସତ୍ତ୍ୱେ ସେ ନିଜକୁ ଭାବୁଛନ୍ତି ଅସୁରକ୍ଷିତ ବୋଲି ! ଆଶ୍ଚର୍ଯ୍ୟ !

କହିଲି, ''ମିତ୍ର ଦୁର୍ଯ୍ୟୋଧନ । ତୁମଠାରୁ ଅଧିକ ସୁରକ୍ଷିତ ଆଉ କେହି ନାହାନ୍ତି । ଏଭଳି ସଶକ୍ତ ସୁରକ୍ଷାବଳୟରେ ଥାଇ ନିଜକୁ କାହିଁକି ଭାବୁଛ ଅସୁରକ୍ଷିତ ବୋଲି ?''

''କାରଣ ଅଛି ମିତ୍ର, ଅଛି । ମୋର ପାଣ୍ଡବମାନଙ୍କୁ ଭୟ । ପାଣ୍ଡବମାନେ ତ କେବଳ ବୀର ନୁହନ୍ତି । ସେମାନଙ୍କ ଦୃଢ଼ ସମର୍ଥକ ହୋଇ ଆମରି ମଧ୍ୟରେ ରହିଛନ୍ତି ଜଣେ ଜଣେ । କୁରୁରାଜଙ୍କ ଅନ୍ନରେ ପ୍ରତିପାଳିତ । ଅଥଚ ପ୍ରଚ୍ଛନ୍ନ ଭାବରେ କୌରବମାନଙ୍କ ବିରୋଧୀ ।''

''କେଉଁମାନଙ୍କ କଥା କହୁଛ ମିତ୍ର ?''

''ଏଇ ପିତାମହ ଭୀଷ୍ମ ଓ ଆଚାର୍ଯ୍ୟ ଦ୍ରୋଣଙ୍କ କଥା । ସେମାନେ ପାଣ୍ଡବମାନଙ୍କୁ ଖୁବ୍ ଭଲପାଆନ୍ତି । କୃପାଚାର୍ଯ୍ୟଙ୍କର ମଧ୍ୟ ଠିକ୍ ଏଇଭଳି ପାଣ୍ଡବପ୍ରୀତି । ମୋର ମନରେ ଆଶଙ୍କା ହୁଏ –''

ଏତିକିରେ ମାତୁଳ ଶକୁନି ତାଙ୍କୁ ସଂକେତ ଦେଲେ ନୀରବ ରହିବାପାଇଁ । ସେ କିନ୍ତୁ ପ୍ରତିବାଦ କରି କହିଲେ, ''ମତେ କାହିଁକି ରହିଯିବାପାଇଁ କହୁଛନ୍ତି ମାମୁ ? ମୁଁ କଥାଟାକୁ ପରିଷ୍କାର କରି କହିଦେଉଛି । ଅଙ୍ଗରାଜ ତ ମୋ' ମିତ୍ର । ଅତି ନିଜର ଲୋକ । ତାଙ୍କ ଆଗରେ ସବୁ କଥା ଖୋଲା-ଖୋଲି କହିଦେବାରେ ସଂକୋଚ କରିବି କାହିଁକି ?'' ସେ ପୁଣି କହିଲେ, ''କୁରୁରାଜ୍ୟର ଉତ୍ତରାଧିକାରୀ ବାଛିବାରେ ସେମାନେ ପାଣ୍ଡବପକ୍ଷର ସମର୍ଥନ କରିବେ । ଆମେ କୌରବମାନେ ଦାଣ୍ଡର ଭିକାରି ହୋଇଯିବୁ ।'' ତାଙ୍କ କଣ୍ଠସ୍ୱର ବିଷାଦଭରା ଓ ବେଦନାକ୍ତ ।

ମୁଁ ତାଙ୍କୁ ନିଜର କୃତଜ୍ଞତା ଜଣାଇବାପାଇଁ ଯେଉଁ ଆସିଥିଲି, ସେଥିପାଇଁ ସୁଯୋଗ ପାଇ ନ ଥିଲି । ବର୍ତ୍ତମାନ ମିଳିଗଲା ସୁଯୋଗ । କହିଲି, ''ମିତ୍ର ! ମୋ' ଭଳି ମିତ୍ର ଥାଉଁ ଥାଉଁ ଏହା ସମ୍ଭବ ହେବ ନାହିଁ । ତୁମେ ମୋର ଯେଉଁ ଉପକାର କରିଛ, ସେ ଋଣ ମୁଁ ଶୁଝି ପାରିବି ନାହିଁ ଜୀବନରେ । ତେଣୁ ପ୍ରତିଜ୍ଞା କରି କହୁଛି, ସାରା ଜୀବନ ରହିବି ତୁମରି ପଛେ ପଛେ । ତୁମରି ସ୍ୱାର୍ଥକୁ ହିଁ ଦେଖିବି । ସୂର୍ଯ୍ୟଙ୍କ ଉଦୟାସ୍ତର ଦିଗ ବଦଳିଯାଇପାରେ । କିନ୍ତୁ ମୋର ଏଇ ପ୍ରତିଶ୍ରୁତି ଟଳିବ ନାହିଁ । ବୀରତ୍ୱର ନାମ ନେଇ ଏଇ ଖଡ଼୍‌ଗକୁ ଛୁଇଁ କହୁଛି ।'' କଟିବନ୍ଧ ଖଡ଼୍‌ଗକୁ ସଙ୍ଗେ ସଙ୍ଗେ କୋଷମୁକ୍ତ କରି ତାହାକୁ ଛୁଇଁ ଶପଥ ନେଲି ।

ଦୁର୍ଯ୍ୟୋଧନଙ୍କ ଆଖିକୋଣରେ ପ୍ରସନ୍ନ ହସର ଝଲକ । ଅଧରତଳ ଥର ଥର ପୁଲକ ଭରା କମ୍ପନରେ । ଅତ୍ୟଧିକ ଆନନ୍ଦ, ''ସାଧୁ ମିତ୍ର କର୍ଣ୍ଣ ! ସାଧୁ !

ମାତୁଳ ଶକୁନି ଓ ଦୁଃଶାସନଙ୍କ କଣ୍ଠରେ ମଧ୍ୟ ମୋର ସାଧୁବାଦ ।

"ମୁଁ ଦୂରରେ ଅଙ୍ଗରାଜ୍ୟରେ ଥିଲେ ମଧ୍ୟ ସବୁବେଳେ ତୁମ ପାଖରେ ଅଛି ବୋଲି ଭାବିବ ମିତ୍ର । ଯେତେବେଳେ ଆବଶ୍ୟକ ପଡ଼ିବ ଖବର ଦେଲେ ଆସିଯାଉଥିବି । ଏଥିରେ ଅସୁବିଧା କ'ଣ ଅଛି ?" ପ୍ରଶ୍ନ କଲି ମୁଁ ଏବଂ ସର୍ବଦା ଯେ ତାଙ୍କ ସହାୟକ ହୋଇ ରହିଥିଲି ସେ ସଂପର୍କରେ ଦୃଢ଼ ପ୍ରତିଶ୍ରୁତି ଦେଲି ।

"ଅସୁବିଧା ଅଛି ମିତ୍ର । ମୋର ଭୟ ହେଉଛି ।" ବିଶେଷକରି ଭୀମସେନ ଓ ଅର୍ଜୁନ ଏହି ଦୁଇଜଣଙ୍କୁ ତୁମେ ତ ଲକ୍ଷ୍ୟ କରିଛ, ଗତ କାଲିର ଅସ୍ତ୍ରସ୍ପର୍ଦ୍ଧାରେ ଭୀମସେନ କିପରି ମୋ' ପ୍ରାଣ ନେଇଯିବାପାଇଁ ଚେଷ୍ଟା କରୁଥିଲେ ।"

"ହଁ, ଲକ୍ଷ୍ୟ କରିଛି ।" ସମବ୍ୟଥା ପ୍ରକାଶ କରି କହିଲି । ମନେ ମନେ ଭାବୁଥାଏ । ଦୁର୍ଯ୍ୟୋଧନ କିଛି ତ କମ୍ ହିଂସ୍ରତା ଦେଖାଇ ନାହାନ୍ତି ଅସ୍ତ୍ରସ୍ପର୍ଦ୍ଧା ବେଳେ ! ଜିଘାଂସାର ପ୍ରବୃତ୍ତିରେ ସ୍ନାନ କରି କିଛି ତ କମ୍ ଅବମାନନା କରି ନାହାନ୍ତି ଅସ୍ତ୍ରସ୍ପର୍ଦ୍ଧାର ଚିରାଚରିତ ନିୟମକୁ ! ସେ କଥା କହି ତାଙ୍କ ମନରେ କଷ୍ଟ ଦେବାପାଇଁ ଚାହିଁଲି ନାହିଁ । ତେଣୁ ସେ ସଂପର୍କରେ ରହିଲି ନୀରବ ।

ସେ ପୂର୍ବ କଥାକୁ ଦୋହରାଇ କହିଲେ, "କେତେବେଳେ କ'ଣ ଘଟିବ ଜଣା ନାହିଁ । ସେଇଥିପାଇଁ କହୁଛି, ତୁମେ ଏଇଠି ହସ୍ତିନାପୁରରେ ରହିଯାଅ । ତୁମପାଇଁ ସ୍ୱତନ୍ତ୍ର ରାଜଭବନର ବ୍ୟବସ୍ଥା ହେବ । ସେହିଠାରୁ ତୁମେ ଅଙ୍ଗରାଜ୍ୟକୁ ଶାସନ କରିବ । କିଛି ଅସୁବିଧା ହେବ ନାହିଁ ଭାବୁଛି ।"

ଗାନ୍ଧାରରାଜ ମଧ୍ୟ ତାଙ୍କ କଥାକୁ ସମର୍ଥନ କରି କହିଲେ, "ହେ ଅଙ୍ଗରାଜ କର୍ଣ୍ଣ ! ତୁମକୁ ଯେମିତି ହେଲେ ତ ହସ୍ତିନାପୁରରେ ବର୍ତ୍ତମାନ କିଛିଦିନପାଇଁ ରହିବାକୁ ହେବ । ଅଙ୍ଗରାଜ୍ୟର ସ୍ୱାତନ୍ତ୍ର୍ୟକୁ ସାବ୍ୟସ୍ତ କରିବାପାଇଁ କିଛି ପ୍ରାଥମିକ ବ୍ୟବସ୍ଥା କରିବାକୁ ହେବ । ତାହା ପୁଣି ଏଇଠି । ଏଇ ହସ୍ତିନାପୁରରେ । ପରେ ପରିସ୍ଥିତିକୁ ଦେଖି ଯାହା କିଛି ବିଚାର କରିବ ।"

"ମୁଁ ଅଙ୍ଗର ରାଜା ହୋଇ କ'ଣ ସେଠାକୁ ଆଦୌ ଯିବି ନାହିଁ ? ଏଇଆ କହୁଛନ୍ତି ଆପଣ ?" ମାତୁଳ ଶକୁନିଙ୍କୁ ପ୍ରଶ୍ନ କଲି ।

"ନା, ସେ କଥା ନୁହେଁ । ମଝିରେ ମଝିରେ ଯାଉଥିବ । କିନ୍ତୁ ତୁମ ରାଜଭବନ ରହିବ ହସ୍ତିନାପୁରରେ । ତୁମର ଜଣେ ପ୍ରତିନିଧି କେବଳ ରହିବେ ଅଙ୍ଗରେ ।"

"ଆଉ ମନା କର ନାହିଁ ମିତ୍ର । ମୋର ତୁମକୁ ବିଶେଷ ଅନୁରୋଧ ।" ଏହା କହି ଦୁର୍ଯ୍ୟୋଧନ ମୋ' ହାତ ଧରି ପକାଇଲେ । ହାତ ତାଙ୍କର ଥରୁଥାଏ ସଂବେଗରେ । ଭାବିଲି, ପ୍ରାଣ ମଧ୍ୟ ସେମିତି ଥରୁଥିବ । ଅନ୍ତରର ସହିତ ମୋର ନିତ୍ୟ ସାନ୍ନିଧ ଚାହାନ୍ତି ସେ । ତାଙ୍କର ମୋ' ପ୍ରତି ଯେଉଁ ଅନୁଗ୍ରହ, ସେଥିରେ ତ ବିବଶତା ମତେ ଆଗରୁ ଗ୍ରାସ କରିଦେଇଥିଲା କଣ୍ଠ ପର୍ଯ୍ୟନ୍ତ । ତାଙ୍କର ଏଇ ସନିର୍ବନ୍ଧ ଅନୁରୋଧ ଏବେ ମତେ ଗ୍ରାସ କରିଦେଲା ସଂପୂର୍ଣ୍ଣ ଭାବରେ । ପୂରା ମାତ୍ରାରେ ହୋଇଗଲି ଅସହାୟ ଓ ବିବଶ । ଆଉ ମନା କରିପାରିଲି ନାହିଁ । ଶେଷରେ ରାଜି ହେଲି ତାଙ୍କ କଥାରେ ।

ସେତେବେଳେ ପୁନର୍ବାର ସେ ମତେ ବାନ୍ଧିରଖିଲେ ବାହୁପାଶରେ ଓ ସହର୍ଷ ଚିତ୍କାର କରିଉଠିଲେ, ''ପ୍ରାଣର ମିତ୍ର ମୋ'ର । ପରମ ମିତ୍ର ମୋ'ର !'' ମୁଁ ମଧ୍ୟ ତାଙ୍କୁ ବାନ୍ଧି ରଖିଲି ସ୍ନେହଭରା ଆଲିଙ୍ଗନରେ । ଆମ ଦୁହିଁଙ୍କ ମୁହଁର ହସ ଦେଖି ଗାନ୍ଧାରରାଜ ଶକୁନି ଓ ଦୁଃଶାସନ ମଧ୍ୟ ହସିଉଠିଲେ ।

ଗଙ୍ଗାର ବୁକୁତଳକୁ ଛୁଇଁ ବହିଆସୁଥିବା ସୀକରସିକ୍ତ ପବନ ତାହାର ଶୀତଳ ସ୍ପର୍ଶ ଦେଇ ବାତାୟନର କୌଶେୟ ପରଦାକୁ ବାରମ୍ବାର କରିଦେଉଥାଏ କୁତୁ କୁତୁ । ଏଥିରେ ପରଦାଟି ଥରି ଉଠୁଥାଏ ଅଧୀର କମ୍ପନରେ । କେଉଁ ନବୀନା ତରୁଣୀ ଚତୁର ପ୍ରେମିକର କୁତୁ କୁତୁ ପାଇ ଉଚ୍ଛଳ ହସରେ ଥରିଉଠୁଥାଏ ଯେମିତି !!

## ସଇଁତିରିଶ

ଏହା ଭିତରେ ବିତିଯାଇଛି ଦୀର୍ଘ ଚାରି ମାସ । ପ୍ରଥମ କେତେ ଦିନ ଖୁବ୍ ଖୁସିରେ କଟିଗଲା । ନୂଆ ନୂଆ ରାଜା ହେବାର ଗୌରବ । ସମସ୍ତଙ୍କଠାରୁ ସମ୍ମାନ ପାଇବାର ସନ୍ତୋଷ । ଏକ ସଂପୂର୍ଣ୍ଣ ନୂତନ ଅନୁଭୂତି । ଭାଗ୍ୟରେ ଥିଲେ ମିଳେ । ମୋ' ଖୁସି ସହିତ ସମତାଳ ରଖି ପିତା, ମାତା, ଭ୍ରାତା ଓ ମିତ୍ର ଆଦିଙ୍କର ଖୁସି । ଏ ସବୁ କିଛି ମତେ ଦେଉଥିଲା ଆନନ୍ଦ । ଅଙ୍ଗରାଜ୍ୟ ନୂତନ କରି ପାଇଛି ସ୍ୱାତନ୍ତ୍ର୍ୟ । ତେଣୁ ବହୁତ କିଛି କରିବାକୁ ଥାଏ ପ୍ରାଥମିକ କାର୍ଯ୍ୟ । ବାରମ୍ବାର ମହାମନ୍ତ୍ରୀ ବିଦୁର, ପିତାମହ ଭୀଷ୍ମ, ମହାରାଜ୍ ଧୃତରାଷ୍ଟ୍ର ଓ ମିତ୍ର ଦୁର୍ଯ୍ୟୋଧନ ଆଦିଙ୍କ ସହିତ ପରାମର୍ଶ କରୁଥାଏ । ମାତୁଳ ଶକୁନିଙ୍କ ପ୍ରତି ମୋର ବିଶ୍ୱାସ ନ ଥାଏ । ତେଣୁ କେତେବେଳେ କେମିତି ତାଙ୍କୁ ପଚାରୁଥାଏ ଗୋଟିଏ ଗୋଟିଏ କଥା । କିନ୍ତୁ ରାଜକୀୟ ଗୋପନ ତଥ୍ୟମାନ ତାଙ୍କଠାରୁ ସର୍ବାଦୌ ରଖୁଥାଏ ଗୁପ୍ତ । କୌଣସି ବିଷୟରେ ସେ କିଛି ପରାମର୍ଶ ଦେଲେ ତାହାକୁ ଭଲ ଭାବରେ ପରୀକ୍ଷା-ନିରୀକ୍ଷା ନ କରି ଗ୍ରହଣ କରୁ ନ ଥାଏ । ବେଳେବେଳେ ଦେଖୁଥାଏ, ତାଙ୍କ ପରାମର୍ଶର ବିପରୀତ କାର୍ଯ୍ୟଟି କରିବାରେ ହିଁ ମିଳୁଥାଏ ସୁଫଳ । ବାସ୍ତବିକ ବଡ଼ ବିଚିତ୍ର ଏ ମାତୁଳ ଶକୁନି । ଏଭଳି ଚତୁର ଦୁଷ୍ଟ ବ୍ୟକ୍ତିତ୍ୱ ବିରଳ । ଅନ୍ତତଃ ଏଇ ଆର୍ଯ୍ୟାବର୍ତ୍ତରେ ଏଭଳି ଜଣେ ଦ୍ୱିତୀୟ ବ୍ୟକ୍ତି ଥିବାର ଦେଖୁ ନାହିଁ । ଶୁଣାଶୁଣି ବି ନାହିଁ ।

ଏହା ମଧ୍ୟରେ ଅଙ୍ଗର କିଛିଟା ସୈନ୍ୟବଳ ଗଢ଼ିଉଠିଛି ସ୍ୱତନ୍ତ୍ର ଭାବରେ ମୌଳ ବଳର ସୃଷ୍ଟି ହସ୍ତିନାପୁରର ସୈନ୍ୟବାହିନୀରୁ ଚୟନ କରାଯାଇଥିବା କେତେକ ସୈନ୍ୟ ଓ ଅଧିକାରୀଙ୍କୁ ନେଇ । ତାହାକୁ ଧୀରେ ଧୀରେ ସୁଦୃଢ଼ କରାଇବାର ଚେଷ୍ଟା ରହିଛି ଅବ୍ୟାହତ । ଏଥିରେ ପ୍ରଚୁର ଅର୍ଥର ଆବଶ୍ୟକତା । ମିତ୍ର ଦୁର୍ଯ୍ୟୋଧନଙ୍କ କୃପାରୁ ତାହା ପାଇବାରେ ମୋର କିଛି ହିଁ ହୋଇ ନାହିଁ ଅସୁବିଧା । ହସ୍ତିନାପୁରର ରାଜକୋଷ ମୋ' ପାଇଁ ଚିର ଉନ୍ମୁକ୍ତ ରହିଛି ଯେମିତି ! ସେଥିପାଇଁ ତାଙ୍କ ନିକଟରେ ଚିରକୃତଜ୍ଞ ମୁଁ । ମତେ ନିଜ ଗୋଡ଼ରେ ଠିଆ କରାଇବାପାଇଁ ଅକାତରେ କରିଆସୁଛନ୍ତି ସାହାଯ୍ୟ । ହୁଏତ ତାଙ୍କ ନିଜର କିଛି ସ୍ୱାର୍ଥ ଥାଇପାରେ ନିହିତ । ତଥାପି ସେ ସାହାଯ୍ୟ କରୁଛନ୍ତି ତ । ତାଙ୍କର ପ୍ରଶଂସା କରିବି ନାହିଁ କେମିତି ?

ଅଙ୍ଗର ରାଜଧାନୀ ବର୍ତ୍ତମାନ ଚମ୍ପାପୁର ଗ୍ରାମରେ ଅବସ୍ଥିତ । ତାହାର ନୂତନ ନାମକରଣ ଚମ୍ପାନଗରୀ । ଧୀରେ ଧୀରେ ନୂତନ ରାଜଧାନୀର ନିର୍ମାଣକାର୍ଯ୍ୟ ଆଗେଇ ଚାଲିଛି । ମୋ' ଜନ୍ମମାଟିର ମର୍ଯ୍ୟାଦା ବଢ଼ିଛି । ଗ୍ରାମର ଲୋକମାନେ ତେଣୁ ଭାରି ଖୁସି ମୋ' ଉପରେ । ସମସ୍ତଙ୍କ ମୁହଁରେ ମୋର ଭୂରି ଭୂରି ପ୍ରଶଂସା । ମୁଁ କୁଆଡ଼େ ଗ୍ରାମର ଟେକ ରଖିଛି । କୁଳର ମର୍ଯ୍ୟାଦା ବଢ଼ାଇଛି । ଏମିତି କେତେ କଥା ।

ଏତେ ସମୃଦ୍ଧି ଓ ସିଦ୍ଧିର ପ୍ରବହମାନ ଧାରାରେ ଭାସି ଭାସି ଗଲେ ବି ମତେ ଲାଗୁଥାଏ, ମୋର ଆଉ କିଛି ଗୋଟାଏ ଅଭାବ ରହିଯାଇଛି । ଖାଲି ତ ଅଭାବ ନୁହେଁ । ଦୁର୍ବଳତା ଓ ହୀନମ୍ମନ୍ୟତା । କୁଳର ହୀନମ୍ମନ୍ୟତାଠାରୁ ଆହୁରି ଦୁଃଖଦ । ଆହୁରି ଯନ୍ତ୍ରଣାଦାୟକ । କୁଳର ହୀନମ୍ମନ୍ୟତା ତ ବିଧାତାଦତ୍ତ । କିନ୍ତୁ ଏଇ ଯେଉଁ ନୂତନ ହୀନମ୍ମନ୍ୟତା ଏହା ମନୁଷ୍ୟଦତ୍ତ । ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରୁ ଉଦ୍ଭୁତ । ଜଣେ ବୀର ପକ୍ଷରେ ନିତାନ୍ତ ଅସହନୀୟ । ଦିନବେଳା ଏହାର ଯନ୍ତ୍ରଣା ସେତେଟା ଜଣାଯାଏନା । କାରଣ କାର୍ଯ୍ୟବ୍ୟସ୍ତ ଥାଏ । ତାହା ବିଶେଷ ଭାବରେ ଯନ୍ତ୍ରଣା ଦିଏ ରାତିରେ ଶୋଇଲା ବେଳେ । ନିର୍ଜନ ଅବକାଶରେ ନିଜ ସହିତ ନିଜେ କଥାବାର୍ତ୍ତା ହେବା ବେଳେ । ଅଥଚ ଅନ୍ୟମାନଙ୍କ ପାଇଁ ଏହା ଚିରଦିନ ରହିଯାଏ ଅଜଣା । କାରଣ ମୁଁ ଏ କଥା ପ୍ରକାଶ କରି ନ ଥାଏ କାହା ଆଗରେ କେତେବେଳେ । କେବଳ ସୁଖୀ ଥିବାର ଅଭିନୟ ହିଁ କରି କରି ଚାଲିଥାଏ । ସମୁଦ୍ରର ଶୀତଳ ବୁକୁତଳେ ଉଷ୍ଣସ୍ରୋତର ପ୍ରଚ୍ଛନ୍ନ ଧାର ବହୁଥାଏ ବୋଲି କିଏ ବା କାହିଁକି ଜାଣିବ ?

ରାତିରେ ଶୋଇଲା ବେଳେ ଅନେକ ସମୟରେ ଭାବେ ଏଇ ଅଭିନୟ କଥା । ମୋର ଅଙ୍ଗରାଜ ହେବାର ଅଭିନୟ କଥା । ଏହା ଅଭିନୟ ନୁହେଁ ତ ଆଉ କ'ଣ ? ମୁଁ ରାଜା । ମୋର ରାଜ୍ୟ ଅଛି । ରାଜଧାନୀ ଅଛି । ପ୍ରଜାମାନେ ଅଛନ୍ତି । ସେମାନଙ୍କ ହର୍ତ୍ତା-କର୍ତ୍ତା ବିଧାତା ମୁଁ । ଅଥଚ ଆଜି ରହିଛି ହସ୍ତିନାପୁରରେ । କୁରୁରାଜ୍ୟର ରାଜଧାନୀରେ । ମୁଁ ଜଣେ ସ୍ୱତନ୍ତ୍ର ରାଜା ନାମକୁମାତ୍ର । ପ୍ରକୃତରେ ମିତ୍ର ଦୁର୍ଯ୍ୟୋଧନଙ୍କ ଅଧୀନ । ତାଙ୍କ ନିର୍ଦ୍ଦେଶରେ ପରିଚାଳିତ । ତାଙ୍କର ପ୍ରୀତିଭାଜନ ହେବା ପାଇଁ ନିରତ ଚେଷ୍ଟିତ । ସେଥିପାଇଁ ମୋର ସାମର୍ଥ୍ୟ ଥିଲେ ବି ମୁଁ ସଂପୂର୍ଣ୍ଣ ଅସମର୍ଥ ଓ ବିବଶ । ମୋ ରାଜ୍ୟ ଓ ପ୍ରଜାମାନେ ହୁଏତ ହୋଇପାରନ୍ତି ମୁକ୍ତ ଓ ସ୍ୱତନ୍ତ୍ର । କୁରୁରାଜ୍ୟର ବଶ୍ୟତାରୁ ମୁକ୍ତ । ମୁଁ କିନ୍ତୁ ବ୍ୟକ୍ତିଗତ ଭାବରେ ବାନ୍ଧିହୋଇ ରହିଛି ବଶ୍ୟତାର ନାଗପାଶ ବନ୍ଧନରେ । ଯେଉଁଠି ବଶ୍ୟତା ସେଠି ସୁଖ କାହିଁ ? ଆନନ୍ଦ କାହିଁ ? ମୁକ୍ତ ବିହଗ ଭଳି ଆକାଶରେ ଉଡ଼ିବାର ସ୍ୱାଧୀନତା କାହିଁ ? ମଣିଷର ଚିର-ଇପ୍‌ସିତ ମୁକ୍ତି ଓ ସ୍ୱାଧୀନତା ମୋ'ଠାରୁ ବହୁତ ଦୂରରେ । ତେଣୁ ମୁଁ ଦୁଃଖୀ । ଖୁବ୍ ଦୁଃଖୀ ମୁଁ ତ ରାଜ୍ୟ ଜୟ କରି ରାଜପଦ ପାଇ ନାହିଁ । ଅଥବା ପାଇ ନାହିଁ ଉତ୍ତରାଧିକାରୀ ଭାବରେ ନିଜ ଜନ୍ମଗତ ଅଧିକାର ବଳରେ । ତାହା ପାଇଛି ଦୁର୍ଯ୍ୟୋଧନଙ୍କ କୃପାରୁ । ସେ ଦାନ କରିଛନ୍ତି । ହାତ ଟେକି ଗ୍ରହଣ କରିଛି ମୁଁ । ବୀର ପାଇଁ ଏହା କ'ଣ କମ୍ ବଡ଼ ଅପମାନ ? ବୀରର କର୍ତ୍ତବ୍ୟ ହେଉଛି ନିଜ ଅଧିକାରକୁ ସ୍ୱକୀୟ ବଳରେ ସାବ୍ୟସ୍ତ କରିବା । ଭିକାରି ଭଳି କାହା ଆଗରେ ହାତ ପତାଇ ଠିଆ ହେବା କିନ୍ତୁ ନୁହେଁ । ମୁଁ ନିଜ ଆଡୁ ହାତ ପତାଇ ନାହିଁ ଅବଶ୍ୟ । ଅଯାଚିତ ଭାବରେ ଏଇ ଦାନ ଆସିଛି ମୋ'

ପ୍ରତି । କିନ୍ତୁ ତାହାକୁ ତ ପ୍ରତ୍ୟାଖ୍ୟାନ କରିଦେଇ ନାହିଁ । ବରଂ ଗ୍ରହଣ କରିଛି ନିଜ ହାତରେ । ବୀର ଯୋଦ୍ଧା ପାଇଁ ତାହା କ'ଣ ଯଥେଷ୍ଟ କାରଣ ନୁହଁ ଆତ୍ମଗ୍ଲାନିରେ ସଢ଼ି ମରିବା ଲାଗି ? ସେଇ ଆତ୍ମଗ୍ଲାନିର କ୍ଷତ ହିଁ ମତେ ଅଧୀର କରିଦେଉଛି ନୀରବ ମୁହୂର୍ତ୍ତମାନଙ୍କରେ । ହାୟ ! କର୍ଣ୍ଣର ସାରାଜୀବନ କ'ଣ ଏମିତି ରହିବ ଆତ୍ମଗ୍ଲାନିରେ ଚିରନିପୀଡ଼ିତ ? ଏଇ ଚିନ୍ତାର ଜ୍ୱଳନ ମୋ' ଅନ୍ତରତଳେ ଯେଉଁ ଉତ୍ତପ୍ତ ବୈତରଣୀ-ଧାରାଟିକୁ ବୁହାଇ ଦେଉଥିଲା, ସେଥିରେ ଖୁବ୍ ଯନ୍ତ୍ରଣାଜର୍ଜର ହୋଇଉଠୁଥିଲି । ରାଜକୀୟ ତୂଳିତଳ୍ପ ମତେ କଣ୍ଟକମୟ ଶଯ୍ୟା ଭଳି ଲାଗୁଥିଲା । ଏଇ ଦହନ ଭିତରେ ସାମାନ୍ୟ କିଛି ସମୟ ପାଇଁ ମତେ କେତେବେଳେ ନିଦ ଆସିଯାଉଥିଲା, ତାହା ଜାଣିପାରୁ ନ ଥିଲି ।

ମନବଗିଚାର ଫୁଲଗଛଗୁଡ଼ିକ ଏମିତି ଦହନର ଜ୍ୱାଳାରେ ଜଳିଯାଉଥିବା ସମୟରେ ହଠାତ୍ ଦିନେ ଆସିଲା ଏକ ଅନୁକୂଳ ପାଗ । ଅଦିନିଆ ବରଷାରେ ପୁଣି କଅଁଳି ଉଠିଲା ମୋ' ମନର ଗଛ । ପୁଣି ଫୁଲ ଫୁଟିଲା । ମହକିଉଠିଲା ବାସନା । ଡାଳ ଗହଳରୁ ରହି ରହି କୋଇଲି ଡାକିଲା, କୁହୁ... କୁହୁ.... କୁହୁ.... ସେଇ ଯୌବନର କୋଇଲି ଯାହା ଅସରନ୍ତି ଦୁର୍ବାର ବାସନାକୁ ଉଜ୍ଜୀବିତ କରାଇ ଦେଇଥାଏ ! ସ୍ୱପ୍ନର କନକ ପକ୍ଷ ଖଞ୍ଜିଦେଇ ଉଡ଼ାଇ ଦେଇଥାଏ ନୀଳ ଆକାଶରେ !

ମୋର ବିବାହ ସ୍ଥିର ହୋଇଗଲା ରତସେନଙ୍କ ପୁତ୍ରୀ ପଦ୍ମାଙ୍କ ସହିତ । ଅନେକ ଦିନର ସ୍ୱପ୍ନ ଏବେ ସଫଳ ହେବାକୁ ଯାଉଛି । ତେଣୁ ପ୍ରସନ୍ନ ଥିଲି । ପ୍ରସ୍ତାବ ନେଇ ରତସେନ ନିଜେ ଆସିଥିଲେ । ସାଥିରେ ଆଣିଥିଲେ ମାମୁଙ୍କୁ । ବାପା ରାଜି ହୋଇଗଲେ । ତାଙ୍କର ଅବଶ୍ୟ ଇଚ୍ଛା ଥିଲା କୌଣସି କ୍ଷତ୍ରିୟ ରାଜକନ୍ୟାଙ୍କୁ ପୁତ୍ରବଧୂ ଭାବରେ ଚୟନ କରିବାପାଇଁ । ଅନେକ କିଛି ଉଦ୍ୟମ କଲେ । କିନ୍ତୁ ବିଫଳ ହେଲେ । କୌଣସି କ୍ଷତ୍ରିୟ ରାଜା ମତେ ଜାମାତାରୂପରେ ବରଣ କରିବାପାଇଁ କଲେ ନାହିଁ ଇଚ୍ଛାପ୍ରକାଶ । ମୋର ନୀଚ କୁଳରେ ଜନ୍ମ ହିଁ ଏହାର କାରଣ । ମୋର ବୀର୍ଯ୍ୟ, ଶିକ୍ଷା, ରାଜପଦ ଆଦି କିଛି ହିଁ ସାହାଯ୍ୟ କରିପାରିଲା ନାହିଁ ଏଥିରେ । ଏଭଳି ପରିସ୍ଥିତିରେ ସେ ବାଧ ହୋଇ ରାଜି ହେଲେ ରତସେନଙ୍କ ପ୍ରସ୍ତାବରେ ।

ପଦ୍ମାଙ୍କ ନାମ କାନରେ ବାଜିବା ମାତ୍ରେ ମୋ' ମନରେ ଅତୀତର ଅନେକ ମଧୁର ସ୍ମୃତିର ଫୁଲ ଫୁଟିଉଠିଲେ ଖିଲି ଖିଲି ହସରେ ଠିକ୍ ଯେମିତି କଢ଼ଟିର ନିବୁଜ ପାଖୁଡ଼ାଗୁଡ଼ିକ ସୁଗନ୍ଧିତ କୁତୁ କୁତୁ ପରଶ ପାଇ ଧୀରେ ଧୀରେ ହୋଇଉଠନ୍ତି ବିକଶିତ ! ଦୈବାତ୍ ଘଟିଗଲା ଏଭଳି ସୁଯୋଗ । ମୋ' ମନର ମଣିଷଟି ସହିତ ମିଳିତ ହେବାର ସମ୍ଭାବନା ରୂପାୟିତ ହେବାର ସୁଯୋଗ ଆସିଗଲା । ତେଣୁ ଭାବୁଥାଏ, ଦଇବ ଯେ ସବୁବେଳେ ନିଷ୍ଠୁର ତାହା ନୁହେଁ । ମଣିଷ ବିବଶ ହୋଇ ସବୁ କଥା ଦଇବ ଉପରେ ଛାଡ଼ିଦେଲେ ବେଳେବେଳେ ତା'ର ବି ଦୟା ହୁଏ । ସେ ମଣିଷର ଚିର ଈପ୍ସିତ ବସ୍ତୁଟିକୁ ଯୋଗାଇଦିଏ । ଅନ୍ତତଃ ଏ କ୍ଷେତ୍ରରେ ମୁଁ କହିବି ଯେ ଦଇବ ମୋ' ପ୍ରତି ଥିଲା ପ୍ରସନ୍ନ ।

ବେଳେବେଳେ ଭାବେ, ବିଧାତାଙ୍କର ଏଇ ନାରୀସୃଷ୍ଟି କି ଚମତ୍କାର ! କି ରମଣୀୟ ! ପୁଣି ସେ ଯେତେବେଳେ ବିବାହବନ୍ଧନରେ ବାନ୍ଧିହୋଇଯାଏ ପୁରୁଷ ସହିତ ସେତେବେଳେ ତା'ର ନିଟୋଳ ସୁନ୍ଦରତା କେତେ ବଢ଼ିଉଠେ ? ଅନୂଢ଼ା ତରୁଣୀର ଗିରିନିର୍ଝରୀ ପରି ଉଦ୍ଦାମ ସେ ହୋଇଉଠିଥାଏ ସ୍ୱଚ୍ଛଶୀତଳସଲିଳା ଧୀରଗାମିନୀ ତଟିନୀଟିଏ । ସର୍ବଦା କଳ କଳ ଓ ଛଳ ଛଳ । ଦାନର ମହିମାରେ ମହିମାନ୍ୱିତା । ସବୁବେଳେ ଖାଲି ଦେଇଚାଲିଥାଏ । ପ୍ରତିଦାନରେ କିଛି ପାଇବ ଏ ଆଶା ରଖି ନ ଥାଏ । ସଂପୂର୍ଣ୍ଣ ସମର୍ପିତ ଜୀବନ । ଯୌବନରେ ପତିଙ୍କ ପାଇଁ । ମାତୃତ୍ୱର ଅଧିକାରିଣୀ ହେଲେ ସନ୍ତାନ ପାଇଁ । ବୃଦ୍ଧା ହେଲେ ପୌତ୍ର-ପୌତ୍ରୀମାନଙ୍କ ପାଇଁ । ସମର୍ପଣଭାବର ବିଚିତ୍ର ମୃତ୍ତିକାରେ ବିଧାତା ଗଢ଼ିଛନ୍ତି ଏଇ ଯେଉଁ ଜୀବନ୍ତ ପ୍ରତିମାଟିକୁ, ପୁରୁଷ ପାଇଁ ତାହାର ଆବଶ୍ୟକତା ଯେ କେତେ ତାହା କେବଳ ନାରୀହୀନ ପୁରୁଷ ହିଁ ବୁଝିପାରିବ । ମତେ ଲାଗେ, ବିଧାତା ଯେତେବେଳେ ସୁଖନିଦ୍ରାରେ ଥିଲେ ସୁପ୍ତ, ସେତେବେଳେ ପ୍ରଥମ ନିଃଶ୍ୱାସରେ ହିଁ ସୃଷ୍ଟି କରିଥିଲେ ନାରୀକୁ । ସେଥିପାଇଁ ସେ ଏତେ ସୁନ୍ଦରୀ । ଏତେ ସୁକୋମଳା । ଏତେ ରମଣୀୟା ! ପଦ୍ମା ସେମିତି ଏକ ମୂର୍ତ୍ତି !

ସେଇ ରମଣୀୟ ମୂର୍ତ୍ତିଟି ସହିତ ମିଳିତ ହେବାର ଦିନଟି ଯେତେ ପାଖେଇ ଆସୁଥାଏ ସେତେ ମନ ହୋଇଉଠୁଥାଏ ଅଧୀର ଉଚ୍ଚାଟ । ଏଇ ଅଧୀରତାର ତଳେ ତଳେ ଯେଉଁ ଆନନ୍ଦର ଅନ୍ତଃସଲିଳା ଫଲ୍‌ଗୁଧାରଟି ଛଳଛଳେଇ ଉଠୁଥାଏ, ତାହା ବର୍ଣ୍ଣନା କରିବାକୁ ଭାଷା ନାହିଁ ମୋ' ପାଖରେ । ଭାବୁଛି, ଆସନ୍ନ ବିବାହ ପାଇଁ ପ୍ରତୀକ୍ଷିତ ଥିବା ସମସ୍ତ ପୁରୁଷଙ୍କ ମନରେ ହୁଏତ ଅନୁରୂପ ଭାବନା ଆସୁଥିବ । କାରଣ ଭାବନା ମନୁଷ୍ୟକୃତ ଉଦ୍ୟମର ଫଳଶ୍ରୁତି ନୁହେଁ । ଏହା ସ୍ୱଭାବଜ । ଏହା ଶାଶ୍ୱତ । ଏହା ସ୍ରଷ୍ଟାଙ୍କର ଆଦିମ ସୃଷ୍ଟିପାଇଁ ଆଦିମ ଅବଦାନ ।

ଆଉ ବି ଭାବେ, ଏଇ ଯେଉଁ ଶାଶ୍ୱତ ସଂପର୍କ, କେବଳ ଏହାକୁ ରୂପାୟିତ କରିବାର ଅର୍ଥ ନୁହେଁ ନାରୀ-ପୁରୁଷଙ୍କ ମିଳନ । ଏତିକିରେ ଶେଷ ହୁଏ ନାହିଁ ବିବାହ । ବିବାହ ଶେଷ ଲକ୍ଷ୍ୟ ନୁହେଁ । ବରଂ ଶେଷ ଲକ୍ଷ୍ୟରେ ପହଞ୍ଚିବାର ଏକ ସାଧନ । ଏକ ମାର୍ଗ । ଏଇ ଛକି ଜାଗାଟିରେ ଯଦି ବାଟବଣା ହୋଇ ଅଟକିଗଲେ ନାରୀ-ପୁରୁଷ, ତେବେ ସେଇଠି ହିଁ ରହିଯିବେ । ଆଉ ଆଗେଇପାରିବେ ନାହିଁ । ଶାଶ୍ୱତ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ତ ଦୂରର କଥା । ଏ କଥା ମତେ ମିତ୍ର ଅଶ୍ୱତ୍ଥାମା ଅନେକ ଦିନ ତଳେ କହିଥିଲେ । ତାହାକୁ ଚିରଦିନ ପାଇଁ ଗଣ୍ଠିଧନ କରି ଧରିରଖିଛି ।

ମନେପଡୁଥିଲା ସେହି ଉପଦେଶର ସ୍ମୃତି । ଅନେକ ଦିନ ତଳର କଥା । ଦ୍ରୋଣାଚାର୍ଯ୍ୟଙ୍କ ବିଦ୍ୟାୟତନରେ ଶିକ୍ଷା କରିବାର ମୋର ଶେଷ ବର୍ଷ । ସେ ଦିନ କୌଣସି କାରଣରୁ ଥାଏ ଅବକାଶ । ଅପରାହ୍ନ ସମୟ । ମୁଁ ଓ ଅଶ୍ୱତ୍ଥାମା ଗଙ୍ଗାକୂଳରେ ଏକାକୀ କରୁଥାଉ ପଦଚାରଣ । ଖୁସି-ଗପ ହେଉଥାଉ । ଇଆଡୁ-ସିଆଡୁ ଅନେକ ଗପ । କେତେବେଳେ ବିନୋଦଭରା ତ ଆଉ କେତେବେଳେ ଦର୍ଶନଭରା । ମିତ୍ର ଅଶ୍ୱତ୍ଥାମାଙ୍କ ଦର୍ଶନଭରା କଥାଗୁଡ଼ିକ ଭାରି ଶିକ୍ଷଣୀୟ । କହୁ କହୁ ଅନେକ ଗହନ ତତ୍ତ୍ୱ କଥା କହି

ଦିଅନ୍ତି । ମଣିଷ ପକ୍ଷରେ ଖୁବ୍ ଉପାଦେୟ । ମୁଁ ତେଣୁ ଜାଣିଶୁଣି ତାଙ୍କୁ ଅନେକ ସମୟରେ ଟାଣିନିଏ ଦର୍ଶନ ଦିଗକୁ । ଦର୍ଶନ କଥା ପଡ଼ିଲେ ସେ ଅହେତୁକ ଭାବରେ ହୋଇଉଠନ୍ତି ଖୁବ୍ ବାବଦୂକ । ଅନର୍ଗଳ କଥା କହିଚାଲିଥାନ୍ତି ବାଣୁଆର ବାଟୁଳିଖଡ଼ାରୁ ନିର୍ଗତ ହେଉଥିବା ଗୋଟିକ ପରେ ଗୋଟିଏ ବାଟୁଳି ଭଳି ।

ଗଙ୍ଗାକୂଳରେ ଚାଲି ଚାଲି ଆମେ ଅନେକ ଦୂର ଆଗେଇଗଲୁ । ପହଞ୍ଚିଲୁ ଯାଇ ଏକ ଅରଣ୍ୟର ସୀମାଭୂମିରେ । ପାଖରେ ଥିବା ନିଷାଦ ପଲ୍ଲୀରୁ ଭାସିଆସୁଥାଏ ବିବାହକାଳୀନ ବାଦ୍ୟର ମନ୍ଦ୍ର ଧ୍ୱନି । ତାହା ସାଥେ ସାଥେ ନୃତ୍ୟରତ ନରନାରୀମାନଙ୍କ ନିଶାଗ୍ରସ୍ତ ସ୍ଖଳିତ କଣ୍ଠର ସଂଗୀତ-ଝଙ୍କାର । ସମସ୍ତେ ମଦିରା ପିଇ ଉନ୍ମତ୍ତ ବୋଧହୁଏ । ଉତ୍କଟ ମଦିରାର ଗନ୍ଧ ଆମ ନାକରେ ବାଜିଲା । ଅସହ୍ୟ ସେ ଗନ୍ଧ । ଆମେ ନାକ ବନ୍ଦ କଲୁ ।

''ନିଷାଦ ବିବାହ ଚାଲିଛି । ଚାଲ ମିତ୍ର, ଏଇଠୁ ଫେରିବା ।'' ଅଶ୍ୱତ୍ଥାମା କହିଲେ ।

''ହଁ, ମିତ୍ର ।'' ମୋର ସଂକ୍ଷିପ୍ତ ଉତ୍ତର । ଆମେ ଦୁହେଁ ସେଇଠୁ ଫେରିଆସିଲୁ ।

କିଛିକ୍ଷଣ ନୀରବ ରହିଲେ ସେ । ମୁଖମଣ୍ଡଳର ଗମ୍ଭୀରତାରୁ ଜଣାପଡୁଥିଲା, କିଛି ଗୋଟାଏ ଚିନ୍ତା କରୁଛନ୍ତି ବୋଧହୁଏ । କିଛି ବାଟ ଆଗେଇବା ପରେ ମତେ ପଚାରିଲେ, ''ତୁମେ ଦେଖିଲ ତ ମିତ୍ର, ନିଷାଦ ନରନାରୀମାନେ କିପରି ବିବାହୋତ୍ସବର ଆନନ୍ଦରେ ବୁଡ଼ି ରହିଛନ୍ତି ? ବର-କନ୍ୟା ଆଜି ହୁଏତ ଖୁବ୍ ମଦିରା ପିଇବେ । ଖୁବ୍ ନାଚିବେ । ଦେହର ଆନନ୍ଦରେ ବୁଡ଼ିରହିବେ ।''

''ନିଶ୍ଚୟ, ନିଶ୍ଚୟ ।'' ପୂର୍ବ ଭଳି ମୋର ସଂକ୍ଷିପ୍ତ ଉତ୍ତର ।

''ତୁମେ ଜାଣ କର୍ଣ୍ଣ, ବିବାହର ଅର୍ଥ କ'ଣ ?'' ତାଙ୍କର ଉଦାସଭରା ପ୍ରଶ୍ନ । ନିଷାଦମାନେ ଦେହର ଆନନ୍ଦ ଉପରେ ଯେଉଁ ଗୁରୁତ୍ୱ ଦେଉଛନ୍ତି ସେଥିପାଇଁ ଗଭୀର କ୍ଷୋଭ । ଅନେକ ଲୋକଙ୍କ ନିକଟରେ ଏହାର ଅର୍ଥ ଅବୁଝା ରହିଯାଇଛି ବୋଲି ବେଦନାକ୍ତ ଚିନ୍ତା ।

''ମୋ' ମତରେ ବିବାହ କେବଳ ଦେହର ମିଳନ ନୁହେଁ । ଆତ୍ମା ସହିତ ଆତ୍ମାର ମିଳନ । ବିବାହ ପରେ ନାରୀ ଓ ପୁରୁଷ ହୋଇଯାଆନ୍ତି ଗୋଟିଏ ଆତ୍ମା ।''

''ଖାଲି ସେତିକି ନୁହେଁ ମିତ୍ର । ଆତ୍ମିକ ମିଳନ ଯଥେଷ୍ଟ ନୁହେଁ । ଏଇ ଆତ୍ମିକ ମିଳନ ପରେ ପତିପତ୍ନୀ ଉଭୟଙ୍କୁ ଆତ୍ମିକ ଆନନ୍ଦ ପାଇବା ଦିଗରେ ଆଗେଇଯିବାକୁ ହେବ । ଅନ୍ୟ ଅର୍ଥରେ ତାହା ଚିର ଆନନ୍ଦ । ତାହାହିଁ ଜୀବନର ଲକ୍ଷ୍ୟ ।'' ତାଙ୍କ କଣ୍ଠସ୍ୱର ଗମ୍ଭୀରରୁ ଗମ୍ଭୀରତର ହୋଇଉଠୁଥିଲା ।

ମୋର ତଥାପି ସନ୍ଦେହ । ପଚାରିଲି, ''ବିବାହ ସଂପର୍କରେ ବଡ଼ ବଡ଼ ଲୋକମାନଙ୍କ ମୁହଁରୁ ଗୋଟିଏ କଥା ଶୁଣିଛି । ଜୀବନରେ ବିଶେଷ ଦାୟିତ୍ୱ ବହନ କରିବାର ଏକ ସାଧନ ହେଉଛି ବିବାହ ।''

''କିଛି ଭୁଲ ନାହିଁ ଏଥିରେ । ଏ ବିଶେଷ ଦାୟିତ୍ୱଟି କ'ଣ ଜାଣ ?''

''ସାଂସାରିକ କର୍ମକ୍ଷେତ୍ରରେ ଆଗେଇବା । ଏଥିରେ ପତିପତ୍ନୀ ପରସ୍ପରର ପରିପୂରକ । ଦୁଇଟି ଯୋଡ଼ ହାତରେ ନମସ୍କାର ଯେମିତି ।''

''ତୁମେ ଅର୍ଦ୍ଧସତ୍ୟ କହିଛ ମାତ୍ର । ପ୍ରକୃତରେ ଆଗେଇବାର ଗୋଟିଏ ସାଧନ ହେଉଛି ବିବାହ । କେବଳ ସାଂସାରିକ କର୍ମକ୍ଷେତ୍ରରେ କିନ୍ତୁ ନୁହେଁ ।''

''ମାନେ ?''

''ସାଂସାରିକ କ୍ଷେତ୍ରଠାରୁ ଆଉ ଏକ ମହତ୍ତର କ୍ଷେତ୍ର ଅଛି ।'' ତାଙ୍କର କହିଲାବେଳେ ମୃଦୁ ମୃଦୁ ହସ । ଧୀରେ ଧୀରେ ଆସୁଥାନ୍ତି କଥାଟିର ନିର୍ଯ୍ୟାସକୁ । ଅବୋଧ ବାଳକଟିକୁ ବୁଝାଇବା ଢଙ୍ଗରେ କହୁଥାନ୍ତି ।

''ଅର୍ଥାତ୍ ?'' ପୁନର୍ବାର ମୋର ସନ୍ଦେହଭରା ପ୍ରଶ୍ନ ।

''ଏହି ଗଙ୍ଗାନଦୀକୁ ଦେଖ ମିତ୍ର । ଗତି ତା'ର ସମୁଦ୍ରର ବୁକୁଦେଶକୁ । ସେଇଠି ସେ ହଜାଇଦିଏ ନିଜକୁ । ମଣିଷର ଆତ୍ମାର ଗତି ଠିକ୍ ସେମିତି ପରମାତ୍ମାଙ୍କ ନିକଟକୁ । ସେହି ଗତିଟିକୁ ତ୍ୱରାନ୍ୱିତ କରି ସେହି ମିଳନ ଅଣାଇବା ବିବାହର ଲକ୍ଷ୍ୟ । ଏହା ହିଁ ଏକ ବିଶେଷ ଦାୟିତ୍ୱ ତୁମେ ଯେଉଁ କଥାଟି ଉଠାଇଛ ।''

ଅତି ପରିଷ୍କାର ଭାବରେ ଏଡ଼େ ବଡ଼ ଆଧ୍ୟାତ୍ମିକ ତତ୍ତ୍ୱକୁ ବୁଝାଇ ଦେଇଥିଲେ ସେ । ଆଜି ବିବାହ ପ୍ରଶ୍ନ ଉଠିଲାବେଳେ ମନରେ ମୋର ତାହାରି ସ୍ମୃତି ଆଘାତ କରୁଥିଲା । ଭାବୁଥିଲି, ପଦ୍ମାଙ୍କ ସହିତ ମୋର ଏଇ ଯେଉଁ ଆସନ୍ନ ମିଳନଟି ଘଟିବାକୁ ଯାଉଛି, ତାହା କ'ଣ ଏଇ ଲକ୍ଷ୍ୟଟିକୁ ଚରିତାର୍ଥ କରିପାରିବ ? ଏହି ଶାଶ୍ୱତ ଭାରଟିକୁ ବହିବାର ସାମର୍ଥ୍ୟ ଦିଆଇପାରିବ ? ଜୀବନର ଚରମ ଲକ୍ଷ୍ୟ ଚିର ଆନନ୍ଦକୁ ଅଣାଇପାରିବ ?

ଜୀବନରେ କେବେହେଲେ ଆଶା ହରାଇ ବସି ନାହିଁ । ସର୍ବଦା ରହିଆସିଛି ଆଶାବାଦୀ ହୋଇ । କାରଣ ଜାଣିଛି, ଆଶା ସଞ୍ଚାରିତ କରେ ଜୀବନ । ଆଉ ନିରାଶା ମୃତ୍ୟୁ । କେବଳ ହିଁ ବିକଳ ମୃତ୍ୟୁ । ଆଶାବାଦିତାର ବଳ ହିଁ ଏ ପର୍ଯ୍ୟନ୍ତ ଯାହା କିଛି ସିଦ୍ଧି ଅଣାଇପାରିଛି ମୋ' ଜୀବନରେ । ସେଇ ଭରା ବିଶ୍ୱାସ ନେଇ ଏ କ୍ଷେତ୍ରରେ ମଧ୍ୟ ରହିଲି ଆଶାବାଦୀ ହୋଇ !

## ଅଠତିରିଶ

ବିବାହର ସେହି ଶୁଭଦିନଟି ଯଥାସମୟରେ ଆସିଗଲା । ବିବାହୋତ୍ସବର ଘଟଘଟା ଯେ ଏଭଳି ହେବ ସେ କଳ୍ପନା ମୋର ନ ଥିଲା । ସୂତପୁତ୍ର ମୁଁ । ମୋର ବିବାହ ହେଉଛି ସୂତକୁଳରେ । ତେଣୁ ଅତି ସାଧାରଣ ଭାବରେ ହେବା ସ୍ୱାଭାବିକ । ବାପାଙ୍କର ବି ସେଇଆ ଇଚ୍ଛା । ସେହିପରି ବ୍ୟବସ୍ଥାରେ ଆଗେଇଥିଲେ ସେ । କିନ୍ତୁ ଅଚାନକ ଦିନେ ମିତ୍ର ଦୁର୍ଯ୍ୟୋଧନ ମୋ' ଭବନକୁ ଆସି ବାପାଙ୍କ ସହିତ ଏ ସଂପର୍କରେ କଲେ କଥାବାର୍ତ୍ତା । କହିଲେ ''ଅଧିରଥକକା ! ଆପଣ କେଉଁଠି ମିତ୍ର କର୍ଣ୍ଣଙ୍କ ବିବାହ କରାଇବା ପାଇଁ ସ୍ଥିର କରିଛନ୍ତି ?''

"କାହିଁକି ? କନ୍ୟାଗୃହରେ ।" ଅତି ସରଳ ଭାବରେ ଉତ୍ତର ଦେଲେ ସେ ।

"ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ବରଯାତ୍ରୀ ହୋଇ ଯିବେ । କେତେକ ରାଜା, ରାଜପୁତ୍ର ଥିବେ । ମନ୍ତ୍ରୀ ଅମାତ୍ୟ ବି ଥିବେ । ଏମାନଙ୍କ ପାଇଁ ସେହି ଗ୍ରାମରେ ସୁବ୍ୟବସ୍ଥା କରିହେବ ତ ?" ତାଙ୍କର ସନ୍ଦେହଭରା ପ୍ରଶ୍ନ ।

"ସତରେ କ'ଣ ଏମାନେ ଯିବେ ?" ବାପାଙ୍କ ମନରେ ଦ୍ୱିଧା ଓ କୌତୂହଳର ଦୋଳି । ଦୁର୍ଯ୍ୟୋଧନଙ୍କ କଥାକୁ ବିଶ୍ୱାସ କରିପାରୁ ନ ଥିଲେ ସେ ।

"ଯିବେ ନାହିଁ ? ଅଙ୍ଗରାଜଙ୍କ ବିବାହ । ତାଙ୍କ ସାଥୀ ରାଜା-ରାଜକୁମାରମାନେ ଯିବେ ନାହିଁ ? ମୁଁ ଓ ମୋ'ର ଭାଇମାନେ । ଆମେ ତ ନିଶ୍ଚୟ ଯିବୁ ।"

ତାଙ୍କ ମୁଣ୍ଡରେ ବଜ୍ରପାତ ହେଲା ଯେମିତି । ସେ ମୁଣ୍ଡରେ ଦୁଇ ହାତ ଦେଇ ବସିପଡ଼ିଲେ । କିଛି ସମୟ ନୀରବ ରହିବା ପରେ କହିଲେ, "ଏଭଳି ବ୍ୟବସ୍ଥା ସେଠାରେ ହୋଇପାରିବା ତ ଆଦୌ ସମ୍ଭବ ନୁହେଁ । ପଲ୍ଲୀଗ୍ରାମରେ ଏଭଳି ରାଜକୀୟ ଅତିଥିମାନଙ୍କ ଚର୍ଚ୍ଚା କିପରି ବା ହୋଇପାରିବ ?"

"ଆପଣ କିଛି ବ୍ୟସ୍ତ ହୁଅନ୍ତୁ ନାହିଁ । ସେ ସବୁର ବ୍ୟବସ୍ଥା ମୁଁ ଆଗରୁ କରିରଖିଛି । ଦୁର୍ଯ୍ୟୋଧନ ତାଙ୍କୁ ଆଶ୍ୱସ୍ତ କରାଇବା ଉଦ୍ଦେଶ୍ୟରେ କହିଲେ ।"

"କ'ଣ ବ୍ୟବସ୍ଥା ଶୁଣେ ?" ତାଙ୍କ ମନରେ କୌତୂହଳ । ଏତେବଡ଼ ଚିନ୍ତାରୁ ବର୍ତ୍ତିଯିବେ । ସେଥିପାଇଁ ଉତ୍କଣ୍ଠା !

"ବିବାହ ଏଇ ହସ୍ତିନାପୁରରେ ହିଁ ହେବ । ସେଥିପାଇଁ ଏକ ସ୍ୱତନ୍ତ୍ର ରାଜକୀୟ ଭବନ ଶୂନ୍ୟ କରିଦିଆଯିବ । କନ୍ୟାଘରର ପରିବାର ସେଠାରେ ଆଗରୁ ଆସି ରହିବେ । ଏଇଠି କନ୍ୟାଦାନ କରାଯିବ ।" ସେ ପୁଣି କହିଲେ, "ଏ ସବୁର ବ୍ୟବସ୍ଥା ଲାଗି ଯେଉଁ ଅର୍ଥ ଆବଶ୍ୟକ ସେଥିପାଇଁ ଚିନ୍ତା କରନ୍ତୁ ନାହିଁ । ତାହା ହସ୍ତିନାପୁରର ରାଜକୋଷ ବହନ କରିବ । ମୁଁ ମହାରାଜଙ୍କ ସହିତ କଥାବାର୍ତ୍ତା କରିସାରିଛି ।"

ବାପା କୃତକୃତ୍ୟ ହୋଇ ଧନ୍ୟବାଦ ଦେଲେ ତାଙ୍କୁ । ଆଉ ମୁଁ ମଧ । ବଡ଼ ଚିନ୍ତାଟିଏ ମୁଣ୍ଡରୁ ଚାଲିଗଲା ବୋଲି ଆମେ ବାପ-ପୁଅ ଦୁହେଁ ଆଶ୍ୱସ୍ତ ।

ଦୁର୍ଯ୍ୟୋଧନଙ୍କ କଥା ରହିଲା । ମୋ'ର ବିବାହୋତ୍ସବ ଅନୁଷ୍ଠିତ ହେଲା ହସ୍ତିନାପୁରରେ ଖୁବ୍ ଜାକଜମକରେ । ଏଥିରେ ଆହୁରି ଅଧିକ ଋଣୀ ହୋଇଗଲି ତାଙ୍କ ନିକଟରେ । ବିବଶତାର ନାଗପାଶ ମତେ ବାନ୍ଧିରଖିଲା ଆହୁରି ଅଧିକ ନିବିଡ଼ ଭାବରେ ।

ବିବାହରେ ଅନେକ ରାଜ୍ୟର ପ୍ରସିଦ୍ଧ ରାଜାଗଣ ତଥା ନାଗରିକଗଣ ଆସିଥିଲେ । ବରଯାତ୍ରୀମାନଙ୍କ ଯାତ୍ରାର ଘଟାଟୋପ, ନୃତ୍ୟବାଦ ଆଦିର ଘନଘଟା ଦେଖି ମନେ ହେଉଥିଲା, ସତେ ଯେମିତି ହସ୍ତିନାପୁରର କୌଣସି ଜଣେ ରାଜକୁମାରଙ୍କ ବିବାହ । ମିତ୍ର ଦୁର୍ଯ୍ୟୋଧନଙ୍କ କଥା କ'ଣ କହିବି ? ସେ ତ ତାଙ୍କର ସକଳ ଦମ୍ଭ-ଅଭିମାନକୁ ଛାଡ଼ିଦେଇ ଅତିଥି-ସତ୍କାର ଆଦି ନାନା କାର୍ଯ୍ୟରେ ଲାଗିପଡ଼ିଥିଲେ । ତାଙ୍କ ନିର୍ଦ୍ଦେଶରେ ଅନ୍ୟାନ୍ୟ କୌରବ ରାଜକୁମାରମାନେ ବି ଅନୁରୂପ ଭାବରେ ଲାଗିପଡ଼ିଥିଲେ ନିଜ ନିଜ

କର୍ତ୍ତବ୍ୟ-କର୍ମରେ । ବଡ଼ ବିଚିତ୍ର ଏ ବ୍ୟବସ୍ଥାମାନ । ମୋ' କଳ୍ପନାର ଅତୀତ । ବାପା-ମାଆଙ୍କର ବି । ଆମ ପରିବାରର ସମସ୍ତଙ୍କର ତଥା ବନ୍ଧୁବାନ୍ଧବମାନଙ୍କର ମଧ୍ୟ ।

ବାପା-ମାଆ ଓ ପରିବାରର ଅନ୍ୟ ସଦସ୍ୟମାନଙ୍କ ଆନନ୍ଦ ତ କହିଲେ ନ ସରେ । ସେମାନେ ଖାଲି କାନରେ ଶୁଣିଥିଲେ କୁରୁ-ରାଜପରିବାରର ମୁଁ ଅତ୍ୟନ୍ତ ପ୍ରୀତିଭାଜନ ବୋଲି । କିନ୍ତୁ ମୁଁ ଯେ ସେହି ପରିବାରର ଜଣେ ସଭ୍ୟ ଆସନରେ ଅଛି, ଏ କଥା ବିଶ୍ୱାସ କରି ନ ଥିଲେ । ଏଇ ବିବାହୋତ୍ସବରେ ସବୁ କଥା ଦେଖିଲେ ନିଜ ଆଖିରେ । ତେଣୁ ବିଶ୍ୱାସ ନ କରି ରହିପାରିଲେ ନାହିଁ । ଦୀର୍ଘଦିନ ଧରି ଦାରିଦ୍ର୍ୟ-ପ୍ରପୀଡ଼ିତ ପରିବାରଟିକୁ ହଠାତ୍ କୋଟିନିଧି ମିଳିଗଲା ଯେମିତି ।

ମୋ' ଦାର୍ଶନିକ ସତୀର୍ଥ ବନ୍ଧୁ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ମଧ୍ୟ ଆସିବାକୁ ଭୁଲି ନ ଥିଲେ । ବୈଦିକ ମନ୍ତ୍ରସମୂହ ପାଠ ହେଉଥିବା ସମୟରେ ଦୀର୍ଘ ସମୟ ଧରି ବିବାହ-ବେଦୀ ନିକଟରେ ବସିରହିଥିଲେ । ଲକ୍ଷ୍ୟ କରୁଥିଲେ କ୍ରମାନ୍ୱୟରେ ଚାଲିଥିବା ବିବାହର କାର୍ଯ୍ୟବିଧିସମୂହକୁ । ଯେତେବେଳେ ହସ୍ତଗ୍ରନ୍ଥି ପଡ଼ିଲା, ମୋର ମନେପଡୁଛି ସେତେବେଳର କଥା । ସେ ହଠାତ୍ ବସିବା ଆସନରୁ ଉଠିଆସିଲେ ଏବଂ ହସି ହସି କହିଲେ ମୋ' କାନରେ ଅତି ଧୀର ଭାବରେ, ''ମନେ ଅଛି ତ ମିତ୍ର ମୋ' କଥା ? ମନେ ଅଛି ତ ବିବାହର ଅର୍ଥ ମୁଁ ଯାହା କହିଥିଲି ? ଦେହର ମିଳନ, ଆତ୍ମାର ମିଳନ ଓ ଶେଷରେ ଆତ୍ମିକ ଆନନ୍ଦ ଯାହା ଚିର ଆନନ୍ଦ । ଏ ସବୁ ମନେଅଛି ତ ?''

ମୁଣ୍ଡ ହଲାଇ ହସି ହସି ସ୍ୱୀକୃତି ଜଣାଇବା ଅବସରରେ ପୁରୋହିତଙ୍କ ନିର୍ଦ୍ଦେଶରେ ମନ୍ଦ୍ର କଣ୍ଠରେ ଗାଇ ଉଠିଥିଲି ସେଇ ପବିତ୍ର ମନ୍ତ୍ରଟି ଯାହା କେଉଁ ଆଦିମ କାଳରୁ ଗୀତ ହୋଇ ଆସୁଛି– 'ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥା ସଃ' । ମୁଁ ପତିଭାବରେ ଆଜି ମୋର ଭାଗ୍ୟୋଦୟ ଉଦ୍ଦେଶ୍ୟରେ ତୁମ ହାତ ଧରୁଛି । ବାର୍ଦ୍ଧକ୍ୟ ଅବସ୍ଥାଯାଏ ଆମେ ଦୁହେଁ ଏକାଠି ଥାଇ ସୌଭାଗ୍ୟର ଅଧିକାରୀ ହୋଇଥିବା । କିଛି ସମୟ ପରେ ପୁଣି ଗାଇଥିଲି– 'ଜୀବେବଃ ଶରଦଃ ଶତଂ, ପଶ୍ୟେବଃ ଶରଦଃ ଶତଂ, ଶୃଣୁୟାବଃ ଶରଦଃ ଶତଂ, ବବ୍ରୁୟାବଃ ଶରଦଃ ଶତଂ । ଆମେ ଦୁହେଁ ଏକାଠି ଥାଇ ଶହେଟି ଶରତ୍ ଋତୁ ଧରି ବଞ୍ଚିରହିବା । ଖାଲି ଏମିତି ସେମିତି ନୁହେଁ । ଶରତ୍ ଋତୁ ପରି ନିର୍ମଳ-ହୃଦୟ ମନ ନେଇ ଶହେ ବର୍ଷ ଧରି ଆମ ଦୃଷ୍ଟିଶକ୍ତି, ଶ୍ରବଣଶକ୍ତି ଓ ବାକ୍‌ଶକ୍ତି ମଧ୍ୟ ରହିବ ଅକ୍ଷୁଣ୍ଣ । କର୍ମର ଶେଷ ପର୍ଯ୍ୟାୟରେ ସପ୍ତପଦୀ ଅଗ୍ନିଦେବଙ୍କୁ ସାକ୍ଷୀ ରଖି ଆମେ ଦୁହେଁ ଏକତ୍ର ଚାଲିଲୁ ସାତପାଦ । ପ୍ରଦକ୍ଷିଣ କଲୁ ଅଗ୍ନିଦେବଙ୍କୁ । ସ୍ୱସ୍ତିବାଚନ ପାଇଁ ଆସନରେ ବସିବାର ଠିକ୍ ଅବ୍ୟବହିତ ପୂର୍ବରୁ ମିତ୍ର ଅଶ୍ୱତ୍ଥାମା ମୋ' କର୍ଣ୍ଣମୂଳରେ ଚୁପ୍ ଚୁପ୍ କରି ପୁନର୍ବାର କହିଥିଲେ, ''ମନେରଖିଥିବ ମିତ୍ର ସପ୍ତପଦୀର କର୍ମଟିକୁ । ଆଜିଠାରୁ ସାତ ପାଦ ଏକତ୍ର ଚାଲି ତୁମେ ଦୁହେଁ ହୋଇଗଲ ବନ୍ଧୁ ଚିରଦିନ ପାଇଁ । କେହି ବଡ଼ କିମ୍ବା ସାନ ନୁହେଁ । କେବଳ ବନ୍ଧୁ । ସୁଖ-ଦୁଃଖ, ଆଶା-ନିରାଶା, ଜୟ-ପରାଜୟ ସବୁଥିର ବନ୍ଧୁ ।''

ତାହାକୁ ମଧ୍ୟ ମୁଣ୍ଡ ହଲାଇ ଜଣାଇଥିଲି ସ୍ୱୀକୃତି ।

ଭାବୁଥିଲି ମନେ ମନେ ଆର୍ଯ୍ୟବିବାହ କେତେ ପବିତ୍ର ସତେ ! ପତିପତ୍ନୀଙ୍କ ସଂପର୍କ ଖାଲି କେତେ ଦିନ, କେତେ ମାସ, କେତେ ବର୍ଷ ପାଇଁ ନୁହେଁ । ଏହା ଶାଶ୍ୱତ । ଚିରକାଳୀନ । ଆକାଶ ଓ ଚକ୍ରବାଳ ଭଳି ଚିରନ୍ତନ । ଅଥଚ ଅଳ୍ପ କେତେକ ଲୋକ ବୁଝନ୍ତି ଏ କଥା । ସେମାନେ ବାହାରର ଘଟାଟୋପ ପ୍ରତି ଦିଅନ୍ତି ଗୁରୁତ୍ୱ । କିଏ ବଡ଼ କିଏ ସାନ ସେଥିନେଇ ପତିପତ୍ନୀଙ୍କ ମଧ୍ୟରେ ଟଣା-ଓଟରା । କିଏ ଦାସ କିଏ ପ୍ରଭୁ ସେଥିନେଇ ନାନାଦି ଯୁକ୍ତିତର୍କ ଓ ମନୋମାଳିନ୍ୟ । ବଡ଼-ସାନର ବିଚାର ଆସେ କେଉଁଥିପାଇଁ ? କେବଳ ଗୋଟିଏ ହିଁ କାରଣ । ପତି-ପତ୍ନୀ ସପ୍ତପଦୀ ମନ୍ତ୍ରର ତାତ୍‌ପର୍ଯ୍ୟ ଯାଇଥାନ୍ତି ଭୁଲି । ଅଗ୍ନିଦେବତାଙ୍କୁ ସାକ୍ଷୀ ରଖି ବନ୍ଧୁ-ବାନ୍ଧବୀ ହୋଇଯାଇଥିବା କଥାଟିକୁ ପୋଛିପାଇଥାନ୍ତି ମନରୁ । ପୁଣି ଦେଖାଯାଏ କେତେବେଳେ ପତି ବିଶ୍ୱାସଘାତକ ତ ଆଉ କେତେବେଳେ ପତ୍ନୀ ବିଶ୍ୱାସଘାତିକା । କେତେବେଳେ ପତି ନିନ୍ଦିତ ବ୍ୟଭିଚାରୀ ପୁରୁଷ ତ ଆଉ କେତେବେଳେ ପତ୍ନୀ ନିନ୍ଦିତା ଅସତୀ ସ୍ତ୍ରୀ । ଏଭଳି ଚେତନାର ଅବକ୍ଷୟ କେଉଁଥିପାଇଁ ? ତାହାରି ପ୍ରଭାବରେ ପୁଣି ସାମାଜିକ ଦୁଃସ୍ଥିତି କେଉଁଥିପାଇଁ ? ସ୍ଥିର ମନରେ ଟିକିଏ ଅନ୍ତର୍ଦୃଷ୍ଟି ଦେଇ ଭାବିଲେ ଏହାର ଉତ୍ତର ଆପେ ଆପେ ପାଇଯାଏ । ଏ ସବୁର ଏକମାତ୍ର କାରଣ ହେଲା ବିବାହର ଏକ କୁତ୍ସିତ ଅର୍ଥ କରିବା । ଏହାକୁ ପୁରୁଷ ଓ ନାରୀର ଦୈହିକ ମିଳନ, ସନ୍ତାନ-ପ୍ରଜନନ ଆଦିରେ ସୀମିତ ରଖିବା । ବିବାହର ବାସ୍ତବ ସ୍ଥିତି ଏହାର ଊର୍ଦ୍ଧ୍ୱରେ — ଯଥେଷ୍ଟ ଊର୍ଦ୍ଧ୍ୱରେ । ଆକାଶର ସୀମା ଡେଇଁ ମହାକାଶର ଆରପାରିରେ । ମିତ୍ର ଅଶ୍ୱତ୍ଥାମା କହିଲା ଭଳି ଯଦି ପତି-ପତ୍ନୀ ଆତ୍ମିକ ମିଳନ ଓ ତାହାର ଉତ୍ତରୋତ୍ତର ଅଭିବୃଦ୍ଧିରେ ମିଳିବାକୁ ଥିବା ଚିର ଆନନ୍ଦ ଉପରେ ଗୁରୁତ୍ୱ ଦିଅନ୍ତେ, ତା'ହେଲେ ଏଭଳି କୁସ୍ଥିତି ଆସନ୍ତା ବା କୁଆଡୁ ? ଏଭଳି ନୈତିକ ବିପର୍ଯ୍ୟୟ ଓ ତଜ୍ଜନିତ ସାମାଜିକ ଅବକ୍ଷୟ ହୁଅନ୍ତା ବା କୁଆଡୁ ?

ଯିଏ ଯାହା ଭାବୁ ଅଥବା କରୁ, ମୁଁ କିନ୍ତୁ ମନେ ମନେ ପ୍ରତିଶ୍ରୁତିବଦ୍ଧ ହେଲି ମିତ୍ର ଅଶ୍ୱତ୍ଥାମାଙ୍କ ଦ୍ୱାରା ପ୍ରଦର୍ଶିତ ପଥରେ ଚାଲିବାକୁ । ଆଉ ପତ୍ନୀ ପଦ୍ମାଙ୍କୁ ସେହି ପଥରେ ଚାଲିବାପାଇଁ ସଦା ପରାମର୍ଶ ଦେବାକୁ ।

ରାଜା-ମହାରାଜା, ମାନ୍ୟଗଣ୍ୟ ବ୍ୟକ୍ତି, ବନ୍ଧୁବାନ୍ଧବ ଓ ମିତ୍ର ଆଦିଙ୍କ ପାଖରୁ ପ୍ରଚୁର ପରିମାଣରେ ମିଳିଥିଲା ଉପହାର ଉଭୟ ଧନ-ରତ୍ନ ଓ ଅନ୍ୟାନ୍ୟ ସାମଗ୍ରୀ ଆକାରରେ । ସେଗୁଡ଼ିକ ଅକାତରେ ଦାନ କରିଦେଇଥିଲି । ତାହା ଛଡ଼ା ନିଜସ୍ୱ ରାଜକୋଷରୁ ମଧ୍ୟ ଦାନ କରିଥିଲି ଅନେକ କିଛି । କେହି ପ୍ରାର୍ଥୀ ବିଫଳ ମନୋରଥ ଅଥବା ଶୂନ୍ୟ ହସ୍ତରେ ଫେରି ନ ଥିଲେ ମୋ' ଭବନରୁ । ବାସ୍ତବିକ ମତେ ଦେବାରେ ହିଁ ମିଳୁଥିଲା ଆନନ୍ଦ ଓ ତୃପ୍ତି । ଏଇ ସ୍ୱଭାବଟି ମୋର ପିଲାଦିନରୁ ହିଁ ଥିଲା ବିକଶିତ ଯେଉଁ ବିଷୟରେ ଆଗରୁ ସୂଚନା ଦେଇଛି କିଛିଟା । ସେତେବେଳେ ମୋର ଗୋଟାଏ ବଡ଼ ପ୍ରତିବନ୍ଧକ ଥିଲା ଦାରିଦ୍ର୍ୟ । ବର୍ତ୍ତମାନ ସେ ଅବସ୍ଥା ନାହିଁ । ସୌଭାଗ୍ୟବଳରେ ହୋଇଛି ଅଙ୍ଗର ରାଜା । ଯଥେଷ୍ଟ ଐଶ୍ୱର୍ଯ୍ୟବାନ୍ ।

ତେଣୁ ଏହି ପ୍ରବୃତ୍ତି ମୋର ଅଧିକରୁ ଅଧିକ ଡାଳପତ୍ର ମେଲାଇ ବିସ୍ତାରିତ ହେବାକୁ ଲାଗିଲା । ପ୍ରତ୍ୟେକ ଦିନ ଦାନ କରିବି, ଏହା ପଣ କରିନେଲି । ମୋର ରାଜା ହେବା ପରଠାରୁ ଏଭଳି କୌଣସି ଦିନ ନାହିଁ ଯେଉଁ ଦିନ ମୁଁ ଦାନ କରି ନାହିଁ କିମ୍ୱା କେହି ମୋ' ଭବନରୁ ଦାନ ନ ପାଇ ଫେରିଯାଇଛି ରିକ୍ତ ହସ୍ତରେ । ଭଗବାନ୍‌ଙ୍କର ଏ୍ ଦିଗରେ ମୋ' ଉପରେ କୃପା । ଆଉ ମୋ' ଆଦ୍ୟଗୁରୁ ଆଦିତ୍ୟଦେବଙ୍କର ବି । ବାସ୍ତବିକ, ଏଇ ଦାନର ମହିମା ମୁଁ ତ ଶିଖିଥିଲି ସେଇ ଆଦିତ୍ୟଦେବଙ୍କଠାରୁ ଯାହାଙ୍କ ଜୀବନ କେବଳ ଦେବାରେ ହିଁ ବିତିଥାଏ, ନେବାରେ କିନ୍ତୁ ନୁହେଁ । ନଦୀ, ହ୍ରଦ, ନାଳ, ନର୍ଦ୍ଦମା ଆଦି ସବୁଠାରେ ସେ ଅକାତରେ ଓ ନିଷ୍ପକ୍ଷ ଭାବରେ କିରଣଦାନ କରି ଚାଲିଥାନ୍ତି । କାହାକୁ କରି ନ ଥାନ୍ତି ନିରାଶ । ଦାତାମାନଙ୍କର ଦାତା କି ମହାଦାନୀ ସତେ ସେ !

ହଁ, ପୁଣି ଫେରିଯାଉଛି ମୋ' ବିବାହକୁ । ବିବାହ ପରେ ଆମ ପତି ପତ୍ନୀ ଦୁହିଁଙ୍କ ଆନୁଷ୍ଠାନିକ ଗୃହପ୍ରବେଶ । ସେତେବେଳେ ମୁଁ ଓ ପଦ୍ମା ପ୍ରଣତି ଡାକିଲୁ ପିତାମାତାଙ୍କ ପାଦ ତଳେ । ଦୁହେଁ ପଦ୍ମାଙ୍କୁ ଆଶୀର୍ବାଦ ଦେଇ କହିଲେ, ''ଆୟୁଷ୍ମତୀ ଭବ । ପୁତ୍ରବତୀ ଭବ ।'' ଆଉ ମତେ ଆଶୀର୍ବାଦ ଦେଇ କହିଲେ, ''ବିଜୟୀ ଭବ । ଆୟୁଷ୍ମାନ୍ ଭବ ।'' ଏଇ ଆଶୀର୍ବାଦ ଯେ ଆମ ଜୀବନରେ ସୁଫଳ ଦେଇ ନାହିଁ, ତାହା ନୁହେଁ । ପଦ୍ମାଙ୍କ ପାଇଁ ତ ଫଳିଛି ସଂପୂର୍ଣ୍ଣ ଭାବରେ । ପୁତ୍ରବତୀ ହୋଇଛନ୍ତି ସେ । ଦୀର୍ଘାୟୁଷ ଧରି ଯେ ବଞ୍ଚିରହିବେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୋ' ପକ୍ଷରେ ଏହା ଫଳିଛି ଆଂଶିକ ଭାବରେ । ମୁଁ ଅବଶ୍ୟ ବିଜୟୀ ହୋଇଛି । ସାରା ଆର୍ଯ୍ୟାବର୍ତ୍ତରେ ଉଡ଼ାଇଛି ବିଜୟର ବାନା । ଅନେକ ରାଜ୍ୟ ଜିଣି କୁରୁରାଜ୍ୟକୁ ସମୃଦ୍ଧ କରିଛି । ମିତ୍ର ଦୁର୍ଯ୍ୟୋଧନଙ୍କ ହସ୍ତକ୍ଷେପ ଫଳରେ ରାଜ୍ୟବିଜୟରୁ ଯାହା କିଛି ଧନରତ୍ନ ମିଳିଛି, ସେଥିରୁ ଅର୍ଦ୍ଧେକର ଅଧିକାରୀ ହୋଇଛି ମୁଁ । ଫଳରେ ଅଙ୍ଗରାଜ୍ୟ ହୋଇଛି ଯଥେଷ୍ଟ ସମୃଦ୍ଧ । କିନ୍ତୁ ଦୀର୍ଘଜୀବନର ଆଶୀର୍ବାଦଟି ସାକାର ହୋଇପାରି ନାହିଁ ଜୀବନରେ । ଆଜି ଅକାଳରେ ମହାଭାରତ ଯୁଦ୍ଧରେ ମୃତ୍ୟୁ ବରଣ କରିବାକୁ ଯାଉଛି । ଏହା କେବଳ ମୋ' ଦୁର୍ଭାଗ୍ୟର ହିଁ ଫଳ । ମୋ' ମୁଣ୍ଡ ଉପରେ ଝୁଲୁଥିବା ଭାର୍ଗବ ପରଶୁରାମଙ୍କ ଅଭିଶାପ ଓ ବ୍ରାହ୍ମଣଙ୍କ ଅଭିଶାପ ଏକାଠି ମିଶି ଏବେ ଆରମ୍ଭ କରିଛନ୍ତି ଫଳ ଦେବାକୁ । ଅସହାୟ ହୋଇ ସେଇ ଫଳର ରୂପାୟନକୁ ଅପେକ୍ଷା କରିଛି ମାତ୍ର । ଚିର ଅଭିଶପ୍ତ କର୍ଣ୍ଣର ଜୀବନର ଏଇଭଳି ହେବ କରୁଣ ପରିଣତି, ଏହା ତ ଦୈବର ଲିଖନ । ଏହାକୁ ଲଂଘନ କରିବ କିଏ ? ପିତୃମାତୃ ଆଶୀର୍ବାଦ ବା କିପରି ପ୍ରତିହତ କରିପାରିବ ଏହାକୁ ?

ଆଜି ମୋ' ଜୀବନର ଶେଷ ସମୟରେ ଆଉ ଗୋଟିଏ ଅପୂର୍ଣ୍ଣ ଆଶା କଥା ମନେପଡୁଛି ଓ ଅସ୍ଥିର କରିଦେଉଛି ମତେ । ମତେ ଲାଗୁଛି, ସବୁ କିଛି ମୋ' କୃତକର୍ମର ଫଳ । ସାରା ଜୀବନ ବିବଶ ରହି ଅନେକ କିଛି ପାପକର୍ମ କରିଛି ଅଥବା ପାପକର୍ମକୁ ଦେଇଛି ପ୍ରୋତ୍ସାହନ ଓ ପ୍ରଶ୍ରୟ । ତାହାରି ଫଳରେ ମୋର ଚିରପୋଷିତ ଆଶାଟି ରହିଛି ଅପୂର୍ଣ୍ଣ ।

ପୁତ୍ରବାନ୍ ହେବା ପରେ ମୁଁ ଗୋଟିଏ କନ୍ୟାସନ୍ତାନ ପାଇବାପାଇଁ ଚାହିଁଥିଲି । ତାକୁ ଆଦର-ଯତ୍ନରେ ଲାଳିତ-ପାଳିତ କରି ପଠାଇଥାନ୍ତି ପତିଗୃହକୁ । ତା'ର ଭାଲପଟରେ ନବୀନ ସୂର୍ଯ୍ୟଙ୍କ ଭଳି ଝଟକିଉଠୁଥିବା ସିନ୍ଦୂର ଟୋପାକୁ ଦେଖି ଆନନ୍ଦରେ ହୋଇଉଠିଥାନ୍ତି ଉଚ୍ଛଳ । ସୁବର୍ଣ୍ଣ କଙ୍କଣକୁ କଣ-କଣ କରି ସେ ମତେ ପ୍ରଣତି ଢାଳିଲାବେଳେ ତା'କୁ ତଳୁ ଉଠାଇଦେଇ କରିଥାନ୍ତି ଶିରଶ୍ଚୁମ୍ବନ । ଆଉ ଆଶୀର୍ବାଦଭରା କଣ୍ଠରେ କହିଥାନ୍ତି, "ଆୟୁଷ୍ମତୀ ଭବ । ପୁତ୍ରବତୀ ଭବ ।" କିନ୍ତୁ ସବୁକିଛି ସ୍ୱପ୍ନରେ ହିଁ ରହିଗଲା । ହୋଇପାରିଲା ନାହିଁ ତାହାର ବାସ୍ତବ ରୂପାୟନ । କେମିତି ବା ହୋଇଥାନ୍ତା ? କହିଛି ତ ଦୁର୍ଭାଗା ମୁଁ । ମୋ'ଭଳି ଗୋଟିଏ ଲୋକକୁ କନ୍ୟାବାନ୍ ହେବାର ସୌଭାଗ୍ୟ ମିଳିଥାନ୍ତା ବା କିପରି ? ଭରା ରାଜସଭାରେ ଦୁର୍ଯ୍ୟୋଧନ ଯେତେବେଳେ ମୋର କନ୍ୟାସମା ଅନୁଜବଧୂ କୃଷ୍ଣାଙ୍କୁ ନିଜ ଜାନୁ ଉପରେ ବସିବାପାଇଁ ଦେଇଥିଲେ ଅଶ୍ଳୀଳ ଇଙ୍ଗିତ ମୁଁ ସେତେବେଳେ ତାଙ୍କ କଥାକୁ କରିଥିଲି ସମର୍ଥନ । କୃଷ୍ଣାଙ୍କୁ ସମ୍ବୋଧନ କରିଥିଲି ପଞ୍ଚପତିଙ୍କ ପତ୍ନୀ ଜଣେ ବେଶ୍ୟା ବୋଲି । ଏଭଳି ଜଣେ ପାପୀ ଲୋକଟିଏ କନ୍ୟାରତ୍ନ ପାଇବାର ଗୌରବ କେମିତି ବା ଲାଭ କରିପାରିଥାନ୍ତା ? ବିଧାତା ତେଣୁ ଉଚିତ ଦଣ୍ଡ ଦେଇଛନ୍ତି ମତେ । ମୁଁ ହୋଇପାରି ନାହିଁ କନ୍ୟାବାନ୍ । ଏଇ ଦଣ୍ଡ ଆହୁରି ଉଚିତ ହୋଇଥାନ୍ତା ଯଦି ସଙ୍ଗେ ସଙ୍ଗେ ଛିଣ୍ଡିପଡ଼ିଥାନ୍ତା ମୋ' ଜିଭ ଓ ଛାତି ଫାଟି ହୋଇଯାଇଥାନ୍ତା ଦି'ଫାଳ । ନିର୍ଲଜ ମୁଁ ଏପର୍ଯ୍ୟନ୍ତ ବଞ୍ଚିରହିଛି ଆସନ୍ନ ମୃତ୍ୟୁକୁ ଅପେକ୍ଷା କରି । ଆଉ ସେଇ ଅପେକ୍ଷାରେ ଅତୀତର ଏଇ ଦାରୁଣ କାହାଣୀର ସ୍ମୃତିଚାରଣ କରିବାପାଇଁ । ହାୟ ରେ ଭାଗ୍ୟହୀନ ଅଭିଶପ୍ତ କର୍ଣ୍ଣ !!

ଦେଖୁଛି, ମନରେ ମୋର ପୁଣି ସେଇ ପୂର୍ବର ବାଚାଳତା । ସମୟକୁ ଦ୍ରୁତ ଗତିରେ ଡେଇଁ ଡେଇଁ ଚାଲିଯିବାର ଉଦ୍ୟମ । ଏହା କିନ୍ତୁ ମୋର ଇଚ୍ଛାକୃତ ନୁହେଁ । ମନ ମଧ୍ୟରେ ମୋର ଯେଉଁ ପ୍ରବଳ ଝଞ୍ଜାବାତ ବହୁଛି, ସେଥିରେ ବିକ୍ଷିପ୍ତ ଭାବରେ ଆସୁଛନ୍ତି ଅନେକ ଚିନ୍ତା । କେତେବେଳେ କ୍ରମାନ୍ୱୟରେ ତ ଆଉ କେତେବେଳେ ଡେଇଁ ଡେଇଁ । ରୋମନ୍ଥନ କରୁଛନ୍ତି ଅତୀତର କରୁଣ ସଜଳ ସ୍ମୃତିଗୁଡ଼ିକୁ । ଏଇ ସ୍ଥିତି କେବଳ ତାହାରି ହିଁ ଫଳଶ୍ରୁତି । ଯେତେ ଚେଷ୍ଟା କଲେ ବି ମୁକୁଳିପାରୁ ନାହିଁ ଏ ସ୍ଥିତିରୁ ।

ଏବେ ମୋ' ଜୀବନକାହାଣୀର କ୍ରମପ୍ରବହମାନତାକୁ ରକ୍ଷା କରି ପୁଣି ଫେରିଯାଉଛି ବିବାହ ପରର ସ୍ଥିତିକୁ । ହଁ, ସେଇ ସ୍ଥିତିକୁ ଯାହା ସଂସାର-ଦେହଳିରେ ପାଦ ଦେବାକୁ ଯାଉଥିବା ସକଳ ଯୁବକ-ଯୁବତୀଙ୍କ ପ୍ରାଣରେ ଭରିଦିଏ ପୁଲକଜର୍ଜର ଉନ୍ମାଦନା । ମନରେ ଫୁଟାଇଦିଏ ଅସରନ୍ତି କଳ୍ପନାର ସୁଗନ୍ଧିତ ଫୁଲ ! ଜୀବନରେ ନୂଆ କରି କି ଏକ ଅଚାଖା ମହୁକୁ ଚାଖିବା ପାଇଁ ପ୍ରାଣମନ ଆକୁଳ ପିପାସାରେ ହୋଇଉଠେ ଉଦଗ୍ର !

ମୋ' ପ୍ରାଣମନରେ ମଧ୍ୟ ସେମିତି ପିପାସା ଥିଲା । ସେମିତି ଅଧୀରତା ଥିଲା । ସେମିତି ସ୍ୱପ୍ନ ଥିଲା ! ଥିଲା ବି ସେମିତି ପ୍ରୀତିପଝଳା ଚାନ୍ଦିନୀ ରାତିର ଅନୁଚିନ୍ତା !!

## ଅଣଚାଳିଶ

ପ୍ରୀତିପଖଳା ଚାନ୍ଦିନୀ ରାତି କଥା କହୁଥିଲି ପରା । ସେଦିନ ଥିଲା ସେମିତି ଗୋଟିଏ ରାତି । ମାଘମାସର ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ । ମୋର ବାସରରାତି । ଏକ ସ୍ମରଣୀୟ ରାତି । ବାସ୍ତବିକ ନବବିବାହିତ ସମସ୍ତ ଯୁବକ-ଯୁବତୀଙ୍କ ପାଇଁ ଚିର ସ୍ମରଣୀୟ । ଆଜି ବି ଏତେ ବର୍ଷ ପରେ ସେହି ରାତିର ସମସ୍ତ ଘଟଣା ଗୋଟି ଗୋଟି କରି ମୋ' ସ୍ମୃତି-ଧେନୁଟିର ପହ୍ନାରେ ବାରମ୍ବାର ମାରୁଛି ମୁଣ୍ଡିଆ । ତହିଁରୁ ଝରୁଥିବା ପୟଃଧାରର ସ୍ୱାଦୁକୁ ଚାଖି ଚାଖି ଆଜି ବି ପାଉଛି ଅସୀମ ଆନନ୍ଦ ।

ମାଘମାସ ଆସୁଥିଲା ସରି ସରି । ଆଉ ଦୁଇ ଦିନ ପରେ ଆସିଯିବ ଫଗୁବୋଳା ଦୋଳିରେ ବସି ଫାଲ୍‌ଗୁନ । ଶୀତ ପ୍ରାୟ କମି ଆସିଥିଲା । ଆକାଶ ନିର୍ମଳ । ଚତୁର୍ଦ୍ଦଶୀର ଚାନ୍ଦରେଖା ଧରଣୀର ବୁକୁରେ ବେଢ଼ାଇ ଦେଇଥିଲା ଏକ ରଜତଶୁଭ୍ର କୌଶେୟ ବସ୍ତ୍ର । ଚନ୍ଦ୍ରକିରଣ ଲାଜେଇ ଲାଜେଇ ପଶୁଥିଲା ମୋ' ଶୟନକକ୍ଷରେ ବାତାୟନ ସୀମା ଦେଇ । ତା'କୁ ଆଶ୍ଚର୍ଯ୍ୟ ଲାଗୁଥିଲା କି କ'ଣ କକ୍ଷ ମଧ୍ୟରେ ଆଉ ଏକ ଉଜ୍ଜ୍ୱଳ ଚନ୍ଦ୍ର ଦେଖି । ତେଣୁ ପରଦା ଆଢୁଆଳରେ ରହି ରହି ଲୁଚାଇ ଦେଉଥିଲା ସଲଜ୍ଜ ମୁହଁଟି ।

ଉପବନରେ ଉତଳା-ଆକୁଳ ପବନର କୁସୁମକୁଞ୍ଜରେ ନିରନ୍ତର କୁତୁ କୁତୁ । ଅନୁଭବ କରୁଥିଲି, ମତେ ବି କିଏ ଯେମିତି ଏଇଭଳି କରିଦେଉଛି କୁତୁ କୁତୁ । ଆଉ କରିଦେଉଛି ବି ମୁଗ୍ଧଚକିତ । ଆଖିରେ ମୋର ସାତ ରଙ୍ଗର ସ୍ୱପ୍ନ । ଏଇଭଳି ଅନୁଭୂତି ନେଇ ପ୍ରବେଶ କଲି ସେଇ ଚିରସ୍ମରଣୀୟ ବାସରରାତିର କୁସୁମଶୋଭିତ ଶୟନକକ୍ଷରେ । ପ୍ରାଣ-ମନରେ ପିପାସାର ଜୁଆର ।

ପଦ୍ମା ବସିଥାନ୍ତି ହସ୍ତୀଦନ୍ତନିର୍ମିତ ପଲଙ୍କର ଗୋଟିଏ ଧାରରେ । ପଲଙ୍କରେ ସମାସ୍ତୃତ ସୁକୋମଳ ପୁଷ୍ପଶଯ୍ୟା । ଖୁବ୍ ଦିବ୍ୟ । ଅତି ରମଣୀୟ । ସାରା କକ୍ଷ ମହ ମହ ମହକରେ ଟଳମଳ । ମୁଁ ମଧ୍ୟ କି ଏକ ଉନ୍ମଦ ପରିମଳରେ ଅଧୀର । ପଦ୍ମାଙ୍କ ବିପୁଳ କବରୀରେ ରଜନୀଗନ୍ଧାର ସାଜ । କନକଗୌର ତନୁରେ ନୀଳ ରଙ୍ଗର ଝୀନ କୌଶେୟ ବସ୍ତ୍ର । ମେଘକୋଳରେ ବିଜୁଳି ଭଳି ତନୁଯଷ୍ଟିର ଝଲକ । ଆଖି ଓ ଓଠରେ ଅଦମ୍ୟ ପିପାସା । କିନ୍ତୁ ଓଠ ଥରୁ ନ ଥାଏ କିମ୍ବା ବାକ୍ୟ ବି ସ୍ଫୁରୁ ନ ଥାଏ । ଲାଜଭରା ଚଟୁଳ ଆଖି ଦିଓଟି ବି ଉଠୁ ନ ଥାଏ ଉପରକୁ । ଏଇ ମୌନତା ମଧ୍ୟରେ ସେ ଯେମିତି କହିଯାଉଥାନ୍ତି ଅନେକ କିଛି କଥା । ମୌନତା ମଧ୍ୟରେ ବିଚିତ୍ର ଭାବରେ ବାବଦୂକା ହୋଇଉଠିଥାନ୍ତି । ସ୍ଥିର ହୋଇ ବସିଥାନ୍ତି । କିନ୍ତୁ ମତେ ଲାଗୁଥାଏ ଯେମିତି ବିଜୁଳିଗତିରେ ଧାଇଁ ଆସୁଛନ୍ତି ମୋ' ମନୋରାଜ୍ୟର ପ୍ରତିଟି କୋଣଅନୁକୋଣକୁ !

ଭାବୁଥାଏ, ବଡ଼ ବିଚିତ୍ର ଯେ ବାସରରାତିର ନାରୀ ! ବଡ଼ ଅଦ୍ଭୁତ ଯାର ହାବଭାବ । ନ କହି ନ କହି ଅନେକ କିଛି କହିଯାଏ । ନ ଚାହିଁ ନ ଚାହିଁ ଅନେକ କିଛି ଚାହିଁଯାଏ । ନ ଛୁଇଁ ନ ଛୁଇଁ ଅନେକ କିଛି ଛୁଇଁଯାଏ । ପୁରୁଷ ନିକଟରେ ଚିରକୁହୁକିନୀ ! ଧରା ନ ପଡ଼ିବାର ଛଳ ଉଦ୍ୟମ କରୁ କରୁ ଧରାପଡ଼ିଯାଏ ।

ମୁଁ ଗୃହ ମଧ୍ୟରେ ପ୍ରବେଶ କରିବା ମାତ୍ରେ ସେ ହଠାତ୍ ଉଠିପଡ଼ିଲେ ପଲଙ୍କରୁ । ସଲଜ୍ଜ ବଦନରେ ତହିଁରୁ ଓହ୍ଲାଇ ଜଣାଇଲେ ମତେ ପ୍ରଣତି । ତାହା ପରେ ନୀରବରେ ଠିଆହୋଇ ରହିଲେ ମୋ' ପାଖେ । ସଂପୂର୍ଣ୍ଣ ନିଶ୍ଚଳ ଠିକ୍ ଦେବାଳୟରେ ଶୋଭିତ କନକ ପ୍ରତିମାଟିଏ ଭଳି । ପ୍ରଣୟର ଏଇ ରମ୍ୟ ଦେବାଳୟଟିକୁ କରିଦେଉଥିଲେ ଖୁବ୍ ସୁଷମିତ । ମୁଁ ମଧ୍ୟ ନୀରବ ନିଶ୍ଚଳ । ଭବନର ଚାରିକୋଣରେ ଜଳୁଥିବା ରତ୍ନପ୍ରଦୀପ ଚାରୋଟି ଜଳିଉଠୁଥାନ୍ତି ପ୍ରଖର ଶିଖା ଟେକି । ପ୍ରଦୀପଗୁଡ଼ିକର ସୁବାସିତ ତୈଳର ଭୁରୁ ଭୁରୁ ବାସନା । ତାହା ସହିତ ମିଶିଯାଉଥାଏ ଉପବନ ଦେଇ ବହିଆସୁଥିବା ସୁଗନ୍ଧିଭରା ପବନର ମହକ । ଏ ସବୁକୁ ବଳି ପଦ୍ମାଙ୍କ ତନୁର ଅଙ୍ଗଚର୍ଚ୍ଚାର ଗନ୍ଧ । ସମଗ୍ର ଭବନ କି ଏକ ଗନ୍ଧର ଆବେଗରେ ଉଚ୍ଛଳ-ଉଛକିତ । ଆଉ ମୋ' ଅନ୍ତରତଳ । ତାହା ଏକ ନବୀନ ପୁଲକରେ ଥରଥର । ଅନେକ କିଛି କଥା କହିବାକୁ ଚାହୁଁଥାଏ ମୁଁ । କିନ୍ତୁ ପାରୁ ନ ଥାଏ । କିଛି ହିଁ କଥା ବାହାରୁ ନ ଥାଏ ପାଟିରୁ ।

ପଦ୍ମା ମୋର ଏତେ ଦିନର ପରିଚିତା । ଶୈଶବ ଓ କୈଶୋର ଜୀବନର ଖେଳସାଥୀ । ଯୌବନମନ୍ଦିରର ଆରାଧ୍ୟ ଦେବୀ । ଏତେ ପାଖରେ ସେ । ପୁଣି ବାସରଭବନରେ । ଅଥଚ ତାଙ୍କ ସହିତ ପଦଟିଏ କଥା କହିବାକୁ ଏତେ ସଂକୋଚ କାହିଁକି ? ନିର୍ବେଦ ପାଲଟିଯାଇଥାଏ ଅସ୍ୱାଭାବିକ ଭାବରେ ।

ବାସରରାତ୍ରିର ପ୍ରଥମ କଥା । ମତେ ହିଁ ତ କହିବାକୁ ହେବ । କାରଣ ମୁଁ ପୁରୁଷ । ନାରୀମନର ମଞ୍ଜୁଷାଟିକୁ ମତେ ହିଁ ପ୍ରଥମେ କରିବାକୁ ହେବ ଅନାବୃତ । କିଛି ଗୋଟାଏ କହିବାପାଇଁ ଅଧର ମୋର ସ୍ଫୁରିତ ହେବାକୁ ଲାଗିଲା । କିନ୍ତୁ ହଠାତ୍ କାହିଁକି ତାହା ଜଡ଼ୀଭୂତ ହୋଇଗଲା ସଂକୋଚରେ । ପାରିଲି ନାହିଁ । ଦୂରକୁ ଘୁଞ୍ଚିଯାଇ ଠିଆହେଲି ବାତାୟନ ଧାରରେ । ହଠାତ୍ ଭବନପ୍ରଦୀପଗୁଡ଼ିକ ପବନର ହିଲ୍ଲୋଳରେ ହୋଇଉଠିଲା ଦପ୍ ଦପ୍ । ମତେ ଲାଗୁଥାଏ, ସତେ ଯେମିତି ସେଗୁଡ଼ିକ ମୋର ଅସହାୟତା ଦେଖି ହସିଉଠୁଛନ୍ତି ପରିହାସର ହସ । ଆଉ କହୁଛନ୍ତି – ଧେତ୍ ଦୁର୍ବଳ କର୍ଣ୍ଣ ! ତୁମେ ଭାରି ମାଇଚିଆ !!

ପଦ୍ମା ପୂର୍ବଭଳି ସେମିତି ଠିଆ ହୋଇଥାନ୍ତି ନିଶ୍ଚଳ ଭାବରେ ।

"ସୁନାର ବୀଣାଟିଏ ସେମିତି ଘର କାନ୍ଥରେ ଡେରା ହୋଇ ରହିଲେ ଲାଭ କ'ଣ ? ବାଜିଲେ ସିନା ଘରର ଶୋଭା ବଢ଼ିବ ?" ପଦ୍ମାଙ୍କୁ ଲକ୍ଷ୍ୟକରି ହଠାତ୍ କହିଦେଲି । ଜାଣେନା କେମିତି ଏତେ ସାହସ ମୋର ଆସିଗଲା । ମୃଦୁ ମୃଦୁ ହସୁଥାଏ । ଆଖି ତୋଳିଥାଏ ତାଙ୍କ ମୁଖକୁ କିଛି ଗୋଟାଏ ଉତ୍ତର ଆଶାରେ ।

ସେ କିନ୍ତୁ ମୁହଁ ଟେକି ଚାହିଁ ନ ଥିଲେ ମତେ । ତଥାପି ଲାଜ ଛାଡ଼ି ନ ଥିଲା । ସେ ନାରୀସୁଲଭ ଚତୁରତା ଦେଖାଇ ଉତ୍ତର ଦେଲେ, "ବୀଣାତାରରେ ବାଦକର ହାତ ନ ବାଜିଲେ କ'ଣ ସେ ବାଜେ ?" ସ୍ୱଳ୍ପ ଅବଗୁଣ୍ଠିତ ଆନତ ମୁଖରେ ଅଧାହସ ଓ ଅଧା ଲାଜ ଖୁବ୍ ମାନୁଥିଲା ତାଙ୍କୁ । ମେଘକୋଳରେ ଶଶିରେଖା ଯେମିତି ! ଭାବୁଥିଲି, ମୋ'ଠାରୁ

ସେ ବୟସରେ ଅନେକ ସାନ । ଅଥଚ ଏତେ ଚତୁରୀ ହେଲେ ସେ କେବେଠାରୁ ? ଭାରି ଆଶ୍ଚର୍ଯ୍ୟ ଲାଗୁଥାଏ ମତେ ।

ସହସା କି ଏକ ତୀବ୍ର ଆବେଗରେ ଛୁଟିଗଲି ତାଙ୍କ ପାଖକୁ ଏବଂ ତାଙ୍କ ଚଟୁଳ ଚିବୁକଟି ଟେକି ଧରି କହିଲି, ''ତାରରେ ତ ହାତ ଦେଲି । ଏଥରକ ବୀଣା ବାଜୁ ।''

ରତ୍ନପ୍ରଦୀପସମୂହର ଜ୍ୟୋତିର୍ମୟ ଶିଖାଗୁଡ଼ିକୁ ସରମରେ ବୁଡ଼ାଇ ଦେଇ ତାଙ୍କ କନକ ମୁଖମଣ୍ଡଳରେ ସହସା ଝଟକିଉଠିଲା ଛଳ ଛଳ ହାସ-ରେଖା । ଶତ ମଲ୍ଲିକା ଏକତ୍ର ବିକଶିଉଠିଲା ଯେମିତି । ସେ ସିନା କିଛି କଥା ନ କହି ଥିଲେ ନିର୍ବାକ । କିନ୍ତୁ ଏଇ ହାସ ମାଧମରେ ସେ କେତେ ଯେ ବାବଦୂକା ହୋଇଉଠିଥିଲେ ତାହା ବୁଝିପାରିଥିଲି ମୁଁ । ଠିକ୍ ସେତିକିବେଳେ ଦମକାଏ ଜୋର ପବନ ବହି ତିନୋଟି ରତ୍ନ ପ୍ରଦୀପ ଲିଭିଗଲା । ଚତୁର୍ଥ ପ୍ରଦୀପଟି ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । ବୋଧହୁଏ ତୈଳ ନିଃଶେଷ ହୋଇଯାଇଥିଲା କି କ'ଣ ।

ତାଙ୍କ ହାତ ଧରି ଟାଣିଆଣିଲି ବକ୍ଷୋଦେଶକୁ । ସେ ମୋ' ବିପୁଳ ବକ୍ଷରେ ମୁହଁ ଗୁଞ୍ଜିଦେଲେ ଭରା ବିଶ୍ୱାସ ନେଇ । ନିରାପଦ ଆଶ୍ରୟସ୍ଥଳଟିଏ ପାଇଲେ ଯେମିତି ।

ଏଇ ବିଶ୍ୱାସ ହିଁ ସେତୁଭଳି କାର୍ଯ୍ୟ କରିଥାଏ ପୁରୁଷ ଓ ନାରୀ ମଧ୍ୟରେ । ଦୁହିଁଙ୍କ ମନ୍ତ୍ରପୂତ ବିବାହ ବନ୍ଧନକୁ ଯୋଡ଼ିଦେଇଥାଏ ନିବିଡ଼ ଭାବରେ । ଏଇ ବିଶ୍ୱାସ ଟିକକ ତୁଟିଗଲେ ପୂତ-ପବିତ୍ର ବୈଦିକ ମନ୍ତ୍ରସମୂହ ହୋଇଯାଏ ନିଷ୍ଫଳ । କିଛି କାମର ହୁଏନା । ବିବାହବନ୍ଧନ ଆପେ ଆପେ ହୋଇଯାଏ ଶିଥିଳ । ସାଂସାରିକ ଜୀବନ ହୋଇଉଠେ ଦୁର୍ବିଷହ । ଆଉ ଆଶ୍ରୟ କଥା । କେବଳ ପୁରୁଷତ ହୋଇ ନ ଥାଏ ନାରୀର ଆଶ୍ରୟ । ନାରୀ ମଧ ହୋଇଥାଏ ପୁରୁଷ ପାଇଁ ସମଧିକ ଆଶ୍ରୟଦାତ୍ରୀ । ସଂସାରର କର୍ମକ୍ଷେତ୍ରରେ ଲଢ଼ି ଲଢ଼ି ପୁରୁଷ ଯେତେବେଳେ ହୋଇଥାଏ କ୍ଷତ-ବିକ୍ଷତ ଓ ଶ୍ରାନ୍ତ-କ୍ଳାନ୍ତ, ସେତେବେଳେ ସେ ଖୋଜୁଥାଏ ଟିକିଏ ଆଶ୍ୱାସନା । ଟିକିଏ ଶୁଶ୍ରୂଷା । ଟିକିଏ ସାନ୍ତ୍ୱନାଭରା ମିଠା ମିଠା କଥା । ହତାଶାର ଅରଣ୍ୟ ମଧ୍ୟରେ ଆଶାର କାକଳି ! ଏ ସବୁ ପାଇଁ ସେ ନାରୀ ପାଖକୁ ଧାଇଁଆସେ । ନାରୀ ତାହା ଦାନ କରେ ଅକାତରରେ । ଏଥିରେ ପୁରୁଷ ପୁଣି ନବଜୀବନ ପାଇ ପରବର୍ତ୍ତୀ ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇଯାଏ । ଏଇ ତ ବିବାହିତ ଜୀବନର ସଫଳ ସଂପର୍କର କାହାଣୀ । ଜୀବନଟା ତ ଖାଲି ବାସରଶେଯ ଭଳି ଫୁଲଶେଯ ନୁହେଁ । ଏଠି ଫୁଲ ଅଛି । ଆଉ ଅଛି ବି କଣ୍ଟା । କଣ୍ଟାକୁ ଆଡ଼େଇ ଆଡ଼େଇ ଫୁଲର ମହକଟିକୁ ଉପଭୋଗ କରିବାକୁ ହେବ । ଦାମ୍ପତ୍ୟ ଜୀବନର ଦେହଳିରେ ଥାଇ ବାସରରାତ୍ରିରେ ପୁରୁଷ ଓ ନାରୀ ଯଦି ଏଇ ଶପଥ ନିଅନ୍ତି, ତେବେ ସେହି ଜୀବନ ହୋଇଉଠିବ ମଧୁମୟ ।

ସେଇ ପୁଲକକର୍କର ମୁହୂର୍ତ୍ତରେ ବି ଏମିତି କେତେ କଥା ଆକୁଳିତ କରୁଥିଲା ମୋ' ମନଃପ୍ରାଣକୁ । ନବପରିଣୀତା ବଧୂ ପଦ୍ମାଙ୍କୁ ସେଇ ଚିନ୍ତାର ଭାଗୀଦାର କରିବାକୁ ଭୁଲି ନ ଥିଲି ।

ଆମେ ଦୁହେଁ ମିଞ୍ଜି ମିଞ୍ଜି ଜଳୁଥିବା ଶେଷ ପ୍ରଦୀପଟିଏ ଆଗରେ ଶପଥ ନେଇଥିଲୁ କଣ୍ଟା ଓ ଫୁଲଭରା ଏଇ ଜୀବନକୁ ବୁଝିବାକୁ ଓ ତାହା ବୁଝି ପରସ୍ପରର ବିଶ୍ୱାସ ଓ ଆଶ୍ରୟର

ପାତ୍ର ହେବାକୁ । ଦୁଇଟି ଖୋଲା ମନର ସତ୍ୟଶିଷ୍ଟ ଶପଥ । ପ୍ରାଣ ଆମର ପୂରି ଉଠୁଥିଲା ପରସ୍ପର ପ୍ରତି ଥିବା ଶ୍ରଦ୍ଧା ଓ ବିଶ୍ୱାସରେ ।

ଲକ୍ଷ୍ୟ କଲି ବାତାୟନ ଦେଇ ଆସୁଥିବା ଚତୁର୍ଦ୍ଦଶୀ ଚନ୍ଦ୍ରଙ୍କ ଶୁଭ୍ର ରଶ୍ମିଜାଲରେ ଆଲୋକିତ ପଦ୍ମାଙ୍କ ସଂବେଗକମ୍ପିତ ମୁଖମଣ୍ଡଳକୁ । ଆଖିରୁ ଦୁଇ ଧାର ଆନନ୍ଦର ଲୁହ ପଡୁଥାଏ ଝରି ଝରି । ବାନ୍ଧିରଖିଲି ତାଙ୍କୁ ପ୍ରାଣପୂରା ଆଲିଙ୍ଗନରେ । ତାଙ୍କ କୋମଳ ବାହୁର ବନ୍ଧନ ମଧ୍ୟ ଧୀରେ ଧୀରେ ଦୃଢ଼ରୁ ଦୃଢ଼ତର । ମୁଦି ହୋଇ ଆସୁଥିଲା ପ୍ରୀତିସୁନ୍ଦର ଲାଜୁକ ନୟନଯୁଗଳ ! ମାଘ ରଜନୀର ଜୋଛନାଧୁଆ ଓଢ଼ଣା ତଳେ ଦୁଇ ତନୁ ଓ ଦୁଇ ଆତ୍ମା ଧୀରେ ଧୀରେ ନିକଟତର ହୋଇଆସୁଥିଲେ ପରସ୍ପରର ।

ତୈଳହୀନ ଶେଷ ପ୍ରଦୀପଟି ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଅବସ୍ଥାରେ ସରମରେ ବୁଡ଼ିଯାଇ ହଠାତ୍ ହୋଇଗଲା ନିର୍ବାପିତ । ଉପବନରେ ପତ୍ରଗହନରୁ କିଛି ସମୟ ଧରି ସାଥୀହରା ପକ୍ଷୀଟିର କରୁଣ କାକଳି ଏବେ ନୀରବିତ । ବୋଧହୁଏ ସେ ତା'ର ହଜିଲା ସାଥୀକୁ ପାଇଗଲା କି କ'ଣ ! ବାସରରାତ୍ରି ଗଭୀରରୁ ଗଭୀରତର ହେବାକୁ ଲାଗିଲା ।

## ଚାଳିଶ

ମଣିଷ ଚାହେଁ ଗୋଟାଏ କଥା । ପୁଣି ବିବଶ ହୋଇ କରେ ଆଉ ଗୋଟିଏ କଥା । ଅଥବା କାହାଦ୍ୱାରା ଏଭଳି କୌଣସି ଘଟଣା ସଂଘଟିତ ହୁଏ, ଯାହା ମଣିଷ ଚାହିଁ ନ ଥାଏ – ଯାହାକୁ ସେ ପସନ୍ଦ କରି ନ ଥାଏ । ସେତେବେଳେ ସେ କାଳକୁ ନିନ୍ଦା କରି କହେ କାଳର ଗତି କୁଟିଳ । କିଏ ଜାଣେ କେଉଁ ଘଟଣା ଆଣି ଘଟାଇବ ସେ ? ଏଇଟା କିନ୍ତୁ ମଣିଷର ବିଚାରରେ ଭ୍ରମ । କାଳ ତାହାର ଠିକ୍ ରାସ୍ତାଧରି ଚାଲିଥାଏ । ଯାହା ଘଟାଇବାର କଥା ତାହା ହିଁ ଘଟାଇଥାଏ । ତାହାଠାରୁ ବଳିକରି ଆଉ ନିଷ୍ପକ୍ଷ ଓ ନ୍ୟାୟପୂର୍ଣ୍ଣ ବିଚାର ଆଉ କାହାର ନାହିଁ । ଯେଉଁ ମଣିଷ କାଳ ସହିତ ତାଳ ଦେଇ ଚାଲିଥାଏ, ତା'କୁ ଲାଗେ କାଳର ଗତି ଖୁବ୍ ସରଳ । ଖୁବ୍ ସ୍ୱଚ୍ଛ । ଅତି ମସୃଣ । ଖୁବ୍ ନିର୍ମଳ ଓ ନିରପେକ୍ଷ । ଏହାର ପ୍ରତିକୂଳରେ ଯିବାକୁ ଚେଷ୍ଟା କରୁଥିବା ମଣିଷ ହିଁ ହୁଏ ବିପର୍ଯ୍ୟୟର ସମ୍ମୁଖୀନ ।

ଜ୍ୟେଷ୍ଠ କୌରବ ଦୁର୍ଯ୍ୟୋଧନ କାଳର ପ୍ରତିକୂଳ ଦିଗରେ ଯିବାର ଉଦ୍ୟମ କରୁଛନ୍ତି । ମାତୁଳ ଶକୁନି ତାଙ୍କୁ ବାରମ୍ବାର ସେଥିପାଇଁ କରୁଛନ୍ତି ଅନୁପ୍ରେରିତ । ଭଗବାନ୍ ଜାଣନ୍ତି କି ମହତ୍ କିମ୍ବା ଅମହତ୍ ଉଦ୍ଦେଶ୍ୟ ଛପିରହିଛି ତାଙ୍କର ଏଇ ଅନୁପ୍ରେରଣା ପଛରେ । ମୁଁ ତ ସ୍ଥିରନିଶ୍ଚୟ ଯେ ଏହା ଅନୁପ୍ରେରଣା ନୁହେଁ, ବରଂ ଦୁଷ୍ପ୍ରେରଣା । ସେ କୌରବମାନଙ୍କୁ ଧ୍ୱଂସ କରିଦେବାକୁ ଚାହୁଁଛନ୍ତି । ଜାଣେନା ଏଇ ଧ୍ୱଂସର ଭସ୍ମସ୍ତୂପରେ ସେ କି ପଦ୍ମଫୁଲ ଫୁଟାଇବା ପାଇଁ ଚାହାନ୍ତି ? ବଡ଼ ଆଶ୍ଚର୍ଯ୍ୟର କଥା ହେଲା, ମହାରାଜ ସ୍ୱୟଂ ଦୁର୍ଯ୍ୟୋଧନଙ୍କୁ ଓ ଗାନ୍ଧାରରାଜ ଶକୁନିଙ୍କୁ ସମର୍ଥନ କରୁଛନ୍ତି । ଏଭଳି ସ୍ଥିତି କାଳଦ୍ୱାରା ଅନୁପ୍ରେରିତ ନୁହେଁ ତ ଆଉ କ'ଣ ?

ରାଜାଙ୍କର ଇଚ୍ଛା ଥିଲା, ନିଜ ପୁତ୍ର ଦୁର୍ଯ୍ୟୋଧନଙ୍କୁ କରିଥାନ୍ତେ ଯୁବରାଜ ପଦରେ ଅଭିଷିକ୍ତ । ସେଥିପାଇଁ ଅନେକଙ୍କ ସହିତ ପ୍ରଚ୍ଛନ୍ନ ପରାମର୍ଶ କରିଛନ୍ତି । କିନ୍ତୁ ରାଜସଭା ଏହାକୁ ସମର୍ଥନ କରି ନାହିଁ । ବରଂ କରିଛି ପ୍ରତ୍ୟାଖ୍ୟାନ । ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ଦୁର୍ଯ୍ୟୋଧନଠାରୁ ବୟସରେ ବଡ଼ । ତାହା ଛଡ଼ା ସେ ବୀର, ଶୀଳବାନ୍ ଓ ଗୁଣୀ । ପୌର-ଜାନପଦର ସମସ୍ତ ଲୋକ ତାଙ୍କ ଉପରେ ପ୍ରୀତ । ଅଜାତଶତ୍ରୁ ସେ । ତାଙ୍କ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟର ତୁଳନା ହିଁ ନାହିଁ । ତେଣୁ ରାଜସଭା ତାଙ୍କୁ ହିଁ ଚୟନ କରିଛି ଯୁବରାଜ ଭାବରେ । ଶେଷରେ ବାଧ ହୋଇ ରାଜା ଅନିଚ୍ଛାସତ୍ତ୍ୱେ ତାଙ୍କୁ କରିଛନ୍ତି ଯୁବରାଜ ପଦରେ ଅଭିଷିକ୍ତ । ମହାରାଜଙ୍କ ପାଇଁ ଏହା ବିଡ଼ମ୍ବନା ଥିଲେ ମଧ କାଳ ନିକଟରେ ବିବଶ ଅସହାୟ ସେ ।

ଏଥିରେ ଖୁବ୍ ଉତ୍କ୍ଷିପ୍ତ ଜ୍ୟେଷ୍ଠକୌରବ ଦୁର୍ଯ୍ୟୋଧନ । ପ୍ରତିଶୋଧର ନିଆଁରେ କୁହୁଳୁଛନ୍ତି । ପ୍ରତିଶୋଧ ନେବାର ଉପାୟମାନ ଖୋଜୁଛନ୍ତି । କୌଣସିମତେ ପାଣ୍ଡବମାନଙ୍କୁ ଶେଷ କରିଦେବାକୁ ହେବ । ନ ହେଲେ ତାଙ୍କର ଉନ୍ନତି ସମ୍ଭବ ନୁହେଁ; ରାଜା ହେବା ତ ଦୂରର କଥା । ଏଇ ଧାରଣାରେ ମନ ତାଙ୍କର ଚିର ଆନ୍ଦୋଳିତ । କୁହୁଳୁଥିବା ସେହି ନିଆଁକୁ ମଝିରେ ମଝିରେ ସମିଧ ଦେଇ ଅଧିକରୁ ଅଧିକ ପ୍ରଜ୍ୱଳିତ କରାଉଛନ୍ତି ଦୁଷ୍ଟବୁଦ୍ଧି ମାତୁଳ ଶକୁନି ।

ଦୁର୍ଯ୍ୟୋଧନଙ୍କର ବେଶି ରାଗ ଭୀମସେନ ଓ ଅର୍ଜୁନଙ୍କ ପ୍ରତି । ଭୀମସେନଙ୍କ ପ୍ରତି ରାଗ ତ ବହୁ ଆଗରୁ ପିଲାଦିନରୁ । ଏବେ ଅର୍ଜୁନଙ୍କ ପ୍ରତି ରାଗଟା ବଢ଼ିଛି ତାଙ୍କ ବୀରତ୍ୱକୁ ଦେଖି । ଏହି ଦୁଇ ବୀରଙ୍କ ଯୋଗରୁ ହିଁ ପାଣ୍ଡବମାନଙ୍କ ବଳ ଓ ତେଜସ୍ୱିତା ବଢ଼ିଯାଇଛି ଆଶାତୀତ ଭାବରେ । ଏହା ଭିତରେ ଭୀମସେନ ସ୍ୱୟଂ ବଳରାମଙ୍କ ଶିଷ୍ୟ ହୋଇ ତାଙ୍କଠାରୁ ପାଇଛନ୍ତି ଗଦାଯୁଦ୍ଧ, ଖଡ଼୍ଗଯୁଦ୍ଧ ଓ ରଥଯୁଦ୍ଧ ସଂପର୍କରେ ବିଶେଷ ଜ୍ଞାନ । ଏଥିରେ ତାଙ୍କ ଉଦ୍ଦଣ୍ଡତା ଓ କୌରବୋଦ୍ୱେଷ ବଢ଼ିଯାଇଛି ଅହେତୁକ ଭାବରେ । ଅର୍ଜୁନଙ୍କଠାରୁ କିଛି କମ୍ ଭୟର ଆଶଙ୍କା ନାହିଁ । ଏଇ ଗୋଟିଏ ଘଟଣା ହିଁ ତାହାର ନିଦର୍ଶନ ।

ଶିକ୍ଷା ଶେଷରେ ଆଚାର୍ଯ୍ୟ ଦ୍ରୋଣ ସମସ୍ତ ଶିଷ୍ୟଙ୍କଠାରୁ ଗୁରୁଦକ୍ଷିଣା ନେବାପାଇଁ ଚାହାନ୍ତି । ଏହି ଅବସରରେ ସେ ପୂର୍ବଶତ୍ରୁତା କାରଣରୁ ପାଞ୍ଚାଳରାଜ ଦ୍ରୁପଦଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଚାହାନ୍ତି । ଦ୍ରୁପଦ କୁଆଡ଼େ ଦିନେ ତାଙ୍କୁ ଦୀନବ୍ରାହ୍ମଣ କହି ରାଜଦ୍ୱାରରୁ ଫେରାଇ ଦେଇଥିଲେ । ଅତୀତରେ ଦୁହେଁ ସତୀର୍ଥ ଥାଇ ତାଙ୍କ ପିତା ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ଶିକ୍ଷା ପାଇଥିବା କଥାଟାକୁ ଯାଇଥିଲେ ଭୁଲି । ରାଜପଦରେ ପ୍ରମତ୍ତ ହୋଇ ଏଭଳି ଆଚରଣ ଦେଖାଇଥିଲେ ସେ । ତାଙ୍କୁ ବନ୍ଦୀ କରି ଆଣି ନିଜ ଆଗରେ ଉପସ୍ଥାପିତ କରିବାପାଇଁ ଆଚାର୍ଯ୍ୟ ଶିଷ୍ୟମାନଙ୍କୁ କହନ୍ତି । ସ୍ୱୟଂ ଦୁର୍ଯ୍ୟୋଧନ କୌରବ ଭ୍ରାତାମାନଙ୍କୁ ଓ ସେନାବଳକୁ ଧରି ଆକ୍ରମଣ କରନ୍ତି ଦ୍ରୁପଦଙ୍କ ଉପରେ । କିନ୍ତୁ ପରାଜିତ ହୋଇ ଫେରିଆସନ୍ତି । ଲାଜରେ ମୁହଁ ତାଙ୍କର ରଙ୍ଗା ପଡ଼ିଯାଏ । ଅଥଚ ଅର୍ଜୁନ ଏକାକୀ ସିଦ୍ଧି ହାସଲ କରନ୍ତି ଏ କାର୍ଯ୍ୟରେ । ସେ ଶୀଘ୍ର ହିଁ ଦ୍ରୁପଦଙ୍କୁ ବନ୍ଦୀ ଅବସ୍ଥାରେ ଉପସ୍ଥାପିତ କରାନ୍ତି ଆଚାର୍ଯ୍ୟଙ୍କ ସମ୍ମୁଖରେ । ଆଚାର୍ଯ୍ୟ କ୍ଷମା ଦେଇ ତାଙ୍କର ଅର୍ଦ୍ଧେକ ମାତ୍ର

ରାଜ୍ୟ ତାଙ୍କୁ ଫେରାଇ ଦିଅନ୍ତି । ବାକି ଅର୍ଦ୍ଧକର ଶାସନଭାର ନିଜେ ଗ୍ରହଣ କରନ୍ତି । ଏଇ ଘଟଣାରୁ ଜଣେ ମହାବୀର ଭାବରେ ଚାରିଆଡ଼େ ବିଖ୍ୟାତ ହୋଇଉଠେ ଅର୍ଜୁନଙ୍କ ନାମ ।

ମୋର ଅବଶ୍ୟ ଅର୍ଜୁନଙ୍କ ପ୍ରତି ଦ୍ୱେଷ ଅଛି । କାରଣ ଏକମାତ୍ର ତାଙ୍କୁ ହିଁ ମୁଁ ମୋର ସ୍ପର୍ଦ୍ଧୀ ବୋଲି ଭାବୁଛି । ତଥାପି ତାଙ୍କର ବୀରତ୍ୱକୁ ପ୍ରଶଂସା ନ କରିବି କିପରି ? ଜଣେ ବୀର ଆଉ ଜଣେ ବୀରଙ୍କୁ ତାଙ୍କ ଯୋଗ୍ୟ ସ୍ଥାନ ନ ଦେବ ବା କିପରି ? ମୁଁ ତେଣୁ ତାଙ୍କର ଏଇ ସଫଳତାରେ ମନେ ମନେ ତାଙ୍କୁ ଶତବାର ପ୍ରଶଂସା ନ କରି ରହି ନ ଥିଲି ।

ଖାଲି ସେତିକି ନୁହେଁ, ପାଣ୍ଡବମାନେ ଅର୍ଜୁନ ଓ ଭୀମସେନଙ୍କ ସହାୟତାରେ ଦକ୍ଷିଣଦେଶର ରାଜାମାନଙ୍କୁ, ପୂର୍ବଦେଶର ରାଜାମାନଙ୍କୁ ଓ ସୌବୀରରାଜ ସମେତ ପଶ୍ଚିମଦେଶର ରାଜାମାନଙ୍କୁ ଜିତିଯାଇଛନ୍ତି । ସେମାନଙ୍କ ରାଜ୍ୟଟିମାନ ଏବେ କୁରୁସାମ୍ରାଜ୍ୟର ଅନ୍ତର୍ଗତ । ସେହି ରାଜ୍ୟଗୁଡ଼ିକରୁ ସଂଗୃହୀତ ପ୍ରଚୁର ଧନରତ୍ନରେ ଭରପୂର ହୋଇଉଠିଛି କୌରବ ରାଜକୋଷ ।

ଏହିସବୁ କାରଣରୁ ଦୁର୍ଯ୍ୟୋଧନଙ୍କ ପାଣ୍ଡବବିଦ୍ୱେଷ ବଢ଼ିଛି ସିନା, କମି ନାହିଁ ।

ଦୁର୍ଯ୍ୟୋଧନ ଏହିଭଳି ମନଃସ୍ଥିତିରେ ଥିଲାବେଳେ ଦିନେ ମୁଁ ଯାଇ ତାଙ୍କୁ ତାଙ୍କ ଭବନରେ ଭେଟିଲି । ପାଖରେ ତାଙ୍କର ଚିରମନ୍ତ୍ରଣାଦାତା ମାତୁଳ ଶକୁନି ଓ ଚିରଅନୁଗତ ଅନୁଜ ଦୁଃଶାସନ । ମୁଁ ଲକ୍ଷ୍ୟ କରି ଆସୁଛି କିଛି ଗୋଟାଏ କୁମନ୍ତ୍ରଣା ଚାଲିଲେ ଏହି ମନ୍ତ୍ରଣା-ତ୍ରିଭୁଜର ଗଠନଟି ଯେମିତି ଅନିବାର୍ଯ୍ୟ ହୋଇଉଠେ । ବେଳେବେଳେ ସେମାନଙ୍କ ମନ୍ତ୍ରଣାରେ ଯୋଗ ଦିଏ ମୁଁ । ନୀରବରେ ସବୁ ଶୁଣେ । ପଚାରିଲେ ମତାମତ ଦିଏ । କିନ୍ତୁ ଯାହା ଅଧର୍ମ ଓ ଅନ୍ୟାୟ ଏବଂ ଅସତ୍ୟ ଉପରେ ଆଧାରିତ ତାହାର ସମର୍ଥନ କରେ ନାହିଁ । କିନ୍ତୁ ମୋ' କଥା ସବୁବେଳେ ରହେ ନାହିଁ । ମନେ ମନେ କ୍ରୋଧିତ ଓ ବିରକ୍ତ ହେଲେ ବି ତାହାକୁ ପ୍ରକାଶ କରିପାରେ ନାହିଁ । ମିତ୍ର ଦୁର୍ଯ୍ୟୋଧନଙ୍କ ପକ୍ଷ ସମର୍ଥନ କରିବି ବୋଲି ଯେଉଁ ଶପଥ ନେଇଛି ତାହାକୁ ସ୍ମରଣ କରି ସବୁ କିଛି ସହିଯାଏ । ଏଇ ବିବଶତା ଦେଖି ପ୍ରାଣତଳ ମୋର ହାୟ, ହାୟ କରିଉଠେ ! କିନ୍ତୁ ନାଚାର ମୁଁ ! ଚିର ଅସହାୟ !!

ମତେ ଦେଖିବାମାତ୍ରେ ଦୁର୍ଯ୍ୟୋଧନ ଉଠିପଡ଼ି କହିଲେ, ''ଆସ ମିତ୍ର ଅଙ୍ଗରାଜ । ବସ । ଏବେ ତ ତୁମକୁ ଡକାଇ ପଠାଇଥାନ୍ତି । ଭାଗ୍ୟକୁ ଆସିଗଲ ।'' ମୁହଁ ତାଙ୍କର ହସ ହସ । ମତେ ବସିବାକୁ ଆସନ ଦେଖାଇଦେଲେ ସେ ।

''ଧନ୍ୟବାଦ ମିତ୍ର ।'' ଏହା କହି ଆସନ ଗ୍ରହଣ କଲି ଓ ପଚାରିଲି, ''କ'ଣ ବିଶେଷ କିଛି କାମ ଥିଲା ?''

''ହଁ, ମିତ୍ର କର୍ଣ୍ଣ । ବଡ଼ ଜରୁରୀ ।''

''ଏ ଜରୁରୀ କାମଟା କ'ଣ ଶୁଣେ ?''

''ଏଇ ପାଣ୍ଡବମାନଙ୍କ କଥା ।''

ଅନୁମାନ କରିନେଲି ସେ କ'ଣ କହିବାକୁ ଯାଉଛନ୍ତି । ସବୁବେଳେ ସେଇ ଗୋଟିଏ କଥା । କିପରି ପାଣ୍ଡବମାନଙ୍କ ବଳକୁ ପ୍ରତିହତ କରିବାକୁ ହେବ ? କିପରି କୌରବମାନଙ୍କ

ପ୍ରାଥମିକତାକୁ ପ୍ରତିଷ୍ଠା କରିବାକୁ ହେବ ? ସେ ବୁଝିପାରନ୍ତି ନାହିଁ ଯେ ପ୍ରତିଷ୍ଠା କାହାର ଦାନ ନୁହେଁ । ଏହା ମିଳିଥାଏ ପୌରୁଷବଳରେ । ପାଣ୍ଡବମାନଙ୍କଠାରେ ଅଛି ପୌରୁଷ ଏବଂ ସେହି ପୌରୁଷକୁ ଅଧିକରୁ ଅଧିକ ଗୁପାୟିତ କରିବାପାଇଁ ଉଦ୍ୟମ । ଅଛି ବି ବଳବୀର୍ଯ୍ୟ ଓ ସାମର୍ଥ୍ୟ । ତାହା ସାଥେ ସାଥେ ଗୁଣ, ଶୀଳ ଆଦି ସବୁ କିଛି । ତାହାରି ବଳରେ ସେମାନେ ପୌରଜାନପଦ ସମସ୍ତଙ୍କ ମନୋରାଜ୍ୟରେ ଅଧିଷ୍ଠିତ ସମ୍ମାନାସ୍ପଦ ସ୍ଥାନରେ । ଈର୍ଷା, କୁଚକ୍ର ଆଦିଦ୍ୱାରା କିଏ ବା ସେମାନଙ୍କୁ ସେହି ଆସନରୁ କରିପାରିବ ବିଚ୍ୟୁତ ? ଯଦି ବା ବିଚ୍ୟୁତି ଘଟେ, ତାହା ହେବ କ୍ଷଣକ ପାଇଁ ମାତ୍ର । ସେମାନେ ସତ୍ୟରେ ଅଛନ୍ତି । ଧର୍ମରେ ଅଛନ୍ତି । ତେଣୁ ସବୁବେଳେ ରହିବେ ବିଜୟୀ ହୋଇ । ସତ୍ୟ ଓ ଧର୍ମର ସର୍ବଦା ଜୟ ବୋଲି ଯୁଗ ଯୁଗ ଧରି ରହିଆସିଛି ପ୍ରସିଦ୍ଧି । ତାହାକୁ ଟଳାଇ ଦେବାଲାଗି ଦୁର୍ଯ୍ୟୋଧନଙ୍କର ଏଇ ଯେଉଁ ନିରନ୍ତର ଅପଚେଷ୍ଟା ତାହା ବିଫଳ ହେବ ହିଁ ହେବ । ମୁଁ ଯେଉଁ ତାଙ୍କୁ ସମର୍ଥନ କରୁଛି ବିବଶ ଭାବରେ ତାହାର ବି କିଛି ମୂଲ୍ୟ ନାହିଁ । ସବୁ ନିରର୍ଥକ । ଶୂନ୍ୟ ଆକାଶରେ ପ୍ରାସାଦ ତୋଳିବାର ଏକ ନିଷ୍ଫଳ କଳ୍ପନା । କେବଳ କଳ୍ପନାରେ ହିଁ ରହିଯିବ ।

ମିତ୍ର ଦୁର୍ଯ୍ୟୋଧନଙ୍କ ମନରେ କଷ୍ଟ ହେବ । ତେଣୁ ମନର କଥାକୁ ଗୋପନ ରଖି ପଚାରିଲି, ''ପାଣ୍ଡବମାନଙ୍କ କଥା କ'ଣ ହେଲା ? ଆଉ କିଛି ନୂତନ ପରିସ୍ଥିତି ଉପୁଜିଲା ନା କ'ଣ ?''

''ମହାରାଜ କାଲି ଅମାତ୍ୟ କଣକଙ୍କ ସହିତ ପାଣ୍ଡବମାନଙ୍କ ବିଷୟ ନେଇ କଥାବାର୍ତ୍ତା ହେଉଥିଲେ । ମୁଁ ମଧ୍ୟ ସେଠାରେ ଥିଲି ।''

ଅମାତ୍ୟ କଣକଙ୍କ ସହିତ ମହାରାଜ ପାଣ୍ଡବମାନଙ୍କ ବିଷୟରେ କଥାବାର୍ତ୍ତା ହେଉଥିବାର ଶୁଣି ମନରେ ମୋର ଦ୍ୱିଧାର ସ୍ପର୍ଶ । ନାନା ପ୍ରକାର ସନ୍ଦେହର ଆନ୍ଦୋଳନ । ଯଦି ପିତାମହ ଭୀଷ୍ମ କିମ୍ବା ଆଚାର୍ଯ୍ୟ ଦ୍ରୋଣଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତେ ଅଥବା ସେମାନଙ୍କ ପରାମର୍ଶ ଚାହୁଥାନ୍ତେ, ତେବେ ଭାବିବାକୁ ନ ଥିଲା କିଛି । ସେ ପୁଣି ଆଉ କେହି ନୁହନ୍ତି, ଅମାତ୍ୟ କଣକ ଯାହାଙ୍କ କୁଖ୍ୟାତି ସର୍ବଜନବିଦିତ । ଖୁବ୍ ଶାସ୍ତ୍ରଜ୍ଞ ସେ । ରାଜ୍ୟନୀତି, ଧର୍ମନୀତି, ଶାସନନୀତି ଆଦି ସବୁଥିରେ ନିପୁଣ । ବୁଦ୍ଧି ବି ପ୍ରଖର । କ୍ଷୁରର ତୀକ୍ଷ୍ଣଧାର ଯେମିତି । କିନ୍ତୁ ଭାରି କୁଚକ୍ରୀ । କପଟର ଏକ ମୂର୍ତ୍ତିମାନ୍ ବିଗ୍ରହ । ପ୍ରାୟ ଗାନ୍ଧାରରାଜ ଶକୁନିଙ୍କ ସମାନ । ତାଙ୍କ ସହିତ କଥାବାର୍ତ୍ତା ଓ ପରାମର୍ଶର ଅର୍ଥ କିଛି ଗୋଟାଏ ଆସନ୍ନ ଝଡ଼ର ପୂର୍ବାଭାସ । ମନରେ ମୋର ଆଶଙ୍କାଭରା ତୀବ୍ର କୌତୂହଳ । ଦୁର୍ଯ୍ୟୋଧନଙ୍କ ଆଡ଼େ ଉଦ୍‌ଗ୍ରୀବ ହୋଇ ଚାହିଁ ପ୍ରଶ୍ନ କଲି, ''କ'ଣ କଥାବାର୍ତ୍ତା ହେଉଥିଲେ ? ଅମାତ୍ୟ କଣକ କ'ଣ ପରାମର୍ଶ ଦେଉଥିଲେ ?''

''ରାଜନୀତି ବିଷୟରେ ।

''ତାହା ତ ଜାଣେ । ଅନେକ ଶାସ୍ତ୍ର ବିଷୟରେ ତାଙ୍କର ବିଶାରଦଜ୍ଞାନ ଥିଲେ ହେଁ ରାଜନୀତି ବିଷୟରେ ହିଁ ଏହି ଜ୍ଞାନଟା ଅଧିକ । ତେବେ ନିର୍ଦ୍ଦିଷ୍ଟ କେଉଁ କଥା ପଡ଼ିଥିଲା ?'' କଣ୍ଠରେ ମୋର ଶ୍ଳେଷଭରା ବାଣୀ । ଦୁର୍ଯ୍ୟୋଧନ କିନ୍ତୁ ଥିଲେ ଅତି ମାତ୍ରାରେ ଚିନ୍ତାନ୍ୱିତ । ମନଃସ୍ଥିତି ତାଙ୍କର ଗଭୀର ଭାବରେ ଉତ୍ପୀଡ଼ିତ । ତେଣୁ ମୋର ଶ୍ଳେଷ ବାକ୍ୟକୁ ବୁଝିପାରି

ନ ଥିଲେ । ମତେ ଉତ୍ତର ଦେବାକୁ ଯାଇ କହିଲେ, ''ପାଣ୍ଡବମାନଙ୍କ ଉତ୍ତରୋତ୍ତର ଉନ୍ନତି ଦେଖି ମହାରାଜ ଚିନ୍ତିତ । ଭବିଷ୍ୟତରେ ମୁଁ ଯେ କୁରୁସିଂହାସନରେ ବସିପାରିବି, ତାହାର ସମ୍ଭାବନା ଧୀରେ ଧୀରେ କମିଯାଉଛି ବୋଲି ତାଙ୍କର ଧାରଣା । ସେ ତେଣୁ ଏହାର ପ୍ରତିକାର ପାଇଁ ପରାମର୍ଶ ଚାହିଁଥିଲେ ।''

''ଅମାତ୍ୟକଣକ କି ପରାମର୍ଶ ଦେଲେ ?''

ରାଜନୀତି ବିଷୟରେ ତ ଅନେକ କିଛି କହିଲେ । କିନ୍ତୁ ପ୍ରକାଶ୍ୟ ଭାବରେ ପାଣ୍ଡବ ବିରୋଧୀ କୌଣସି କଥା ବାହାରି ନ ଥିଲା ତାଙ୍କ ମୁହଁରୁ ।''

''ତାହାହିଁ ତ ବୁଦ୍ଧିମାନ୍ ବ୍ୟକ୍ତିଙ୍କ କାର୍ଯ୍ୟ । ରାଜଭବନ କଥା । କାନ୍ଥଗୁଡ଼ିକରେ ବି ତ କାନ ଅଛି । ସେ କେମିତି ବା ସବୁ କଥା ଖୋଲି ଦେଇଥାନ୍ତେ ?'' ହସି ହସି ମନ୍ତବ୍ୟ ଦେଲି । କଣକଙ୍କ ବୁଦ୍ଧି ନିକଟରେ ଦୁର୍ଯ୍ୟୋଧନ କିବା ଲୋକ ? ସେ କେମିତି ବା ଭେଦି-ପାରିବେ ତାଙ୍କ ଦୁର୍ଭେଦ୍ୟ ବୁଦ୍ଧିଜାଲକୁ ? ସ୍ୱୟଂ ବୃହସ୍ପତି ଅଥବା ଶୁକ୍ରାଚାର୍ଯ୍ୟ ତାହାକୁ ଭେଦି ପାରିବେ କି ନାହିଁ ସନ୍ଦେହ ।

ଭାବିଲି, ମହାରାଜ ଏ କ'ଣ କରିବାକୁ ଯାଉଛନ୍ତି ? ପାଣ୍ଡବମାନେ ଯଦିଓ ତାଙ୍କ ପୁତ୍ର ନୁହନ୍ତି, ପୁତ୍ରୋପମ ତ । ଅନୁଜ ପାଣ୍ଡୁଙ୍କ ପୁତ୍ର । ସେମାନଙ୍କ ଜ୍ୟେଷ୍ଠତାତ ସେ । ମୁଁ ଯେତିକି ଜାଣିଛି, ସେମାନେ ତ କେବେହେଲେ ତାଙ୍କୁ ଜ୍ୟେଷ୍ଠତାତ ଛଡ଼ା ଆଉ କୌଣସି ଦୃଷ୍ଟିରେ ଦେଖି ନାହାନ୍ତି । ସର୍ବଦା ତାଙ୍କୁ ତତ୍ତୁଲ୍ୟମାନ-ସମ୍ମାନ ଦେଖାଇ ଆସିଛନ୍ତି । ରହି ଆସିଛନ୍ତି ଚିର ବଶମ୍ବଦ ହୋଇ । ଅଥଚ ଆଜି ସେ ସେମାନଙ୍କୁ ଶତ୍ରୁଦୃଷ୍ଟିରେ ଦେଖୁଛନ୍ତି । ଲାଳନ-ପାଳନ କରିବେ କ'ଣ ସେମାନଙ୍କ ଧ୍ୱଂସ ଚାହୁଁଛନ୍ତି । ଏହା କ'ଣ ଧର୍ମ ନା ନ୍ୟାୟ ? ଏହା କ'ଣ ଚିରାଚିରତ ଆର୍ଯ୍ୟଧର୍ମର ଉଜ୍ଜ୍ୱଳ ପରମ୍ପରାର ନିଦର୍ଶନ ? ଯୁଗ ଯୁଗ ଧରି ରାଜଧର୍ମକୁ ଜାବୁଡ଼ି ଧରିଥାନ୍ତି ବୋଲି କୁରୁବଂଶୀ ରାଜାମାନଙ୍କର ଯେଉଁ ପ୍ରସିଦ୍ଧି ରହିଆସିଛି, ଏହା କ'ଣ ତାହାରି ନିଦର୍ଶନ ? ଆମ ମହାରାଜଙ୍କୁ କୁହାଯାଏ ପ୍ରଜ୍ଞାଚକ୍ଷୁ ବୋଲି । ସାଧାରଣ ଚର୍ମଚକ୍ଷୁ ନ ଥିଲେ ବି ପ୍ରଜ୍ଞାଚକ୍ଷୁବଳରେ ସେ କରିଆସୁଛନ୍ତି ରାଜ୍ୟଶାସନ । ଦୃଢ଼ ଭାବରେ ଧରିଛନ୍ତି ତାହାର ବାଗ୍‌ଡୋରକୁ । ଏବେ କ'ଣ ହୋଇଛି ତାଙ୍କର ? ନିଜ ପୁତ୍ରସ୍ନେହରେ ଏଭଳି ଅନ୍ଧ ହୋଇଯାଇଛନ୍ତି କିପରି ? ପୁତ୍ର ଦୁର୍ଯ୍ୟୋଧନଙ୍କ ରାଜ୍ୟଲୋଭର ହୋମାନଳକୁ ନିଜସ୍ୱ କୁକର୍ମର ସମିଧଦ୍ୱାରା ଅଧିକରୁ ଅଧିକ ପ୍ରଜ୍ୱଳିତ କରାଉଛନ୍ତି କିପରି ? ଧର୍ମ କ'ଣ ଏଭଳି ଅନ୍ୟାୟକୁ ସହିବ ? ଭବିଷ୍ୟତର ଇତିହାସ ତାଙ୍କୁ କି ଚକ୍ଷୁରେ ଦେଖିବ ? ଶାସ୍ତ୍ର କହେ— ରାଜା କାଳସ୍ୟ କାରଣମ୍ । ରାଜା କାଳର କାରଣ । ସେ ନୂତନ କାଳର ସୃଷ୍ଟି କରିଥାନ୍ତି । ଆମ ମହାରାଜ କେଉଁ କାଳ ସୃଷ୍ଟି କରିଛନ୍ତି ବୋଲି ଇତିହାସ କହିବ ? ସେ ନିଜେ ତ କାଳଦ୍ୱାରା କବଳିତ । ସେ ଯାହା ସୃଷ୍ଟି କରିବାକୁ ଯାଉଛନ୍ତି, ତାହା ତ କାଳ ନୁହେଁ । ବରଂ ଦୁଷ୍କାଳ ! ଛି ! ଛି ! ଧିକ୍ ଏ ରାଜପଣକୁ !

ମନରେ ମୋର ଏଇଭଳି ଅନୁଚିନ୍ତା । ମହାରାଜଙ୍କ ପ୍ରତି ମନେ ମନେ ଅଶେଷ ଘୃଣା । ସବୁ କିଛିକୁ ଚାପିରଖି ପଚାରିଲି, ''ଆଚ୍ଛା କହିଲ ଦେଖି ମିତ୍ର ଦୁର୍ଯ୍ୟୋଧନ, ଅମାତ୍ୟ କଣକ କି କି ଉପଦେଶ ଦେଲେ ?''

''ଅନେକ କିଛି ତ ଦେଲେ । ତେବେ ରାଜଶତ୍ରୁ ସଂପର୍କରେ ଯାହା କିଛି କହିଲେ, ତାହା ଜାଣିବାର କଥା ।'' ତାହା ପରେ ଗୋଟି ଗୋଟି କରି କଣିକ ଦେଇଥିବା ଉପଦେଶମାନ ବର୍ଣ୍ଣନା କରିବାକୁ ଲାଗିଲେ ସେ ।

ରାଜାଙ୍କୁ ନିଜ ପୁରୁଷାର୍ଥର ଦଣ୍ଡଟିକୁ ଉଦ୍ୟତ ଅବସ୍ଥାରେ ଧରି ରଖିବାକୁ ହେବ । ସଂସାରରେ ସମସ୍ତଙ୍କ ଭୟ ଏଇ ଦଣ୍ଡାଘାତକୁ । ତେଣୁ ସମସ୍ତ କାର୍ଯ୍ୟ ଏଇ ଦଣ୍ଡବଳ ଦେଖାଇ କରିବାକୁ ହେବ । ଏଭଳି ଯତ୍ନ କରିବାକୁ ହେବ ଯେପରିକି ନିଜ କାର୍ଯ୍ୟର ଛିଦ୍ରମାନ ଅନ୍ୟ କାହାକୁ ଜଣା ନ ପଡ଼େ । କାରଣ ପ୍ରତ୍ୟେକ ଶତ୍ରୁ ଏଇ ଛିଦ୍ରଗୁଡ଼ିକୁ ହିଁ ଖୋଜୁଥାଏ । ଶତ୍ରୁ ଉପରେ ଦାଉ ସାଧିବାକୁ ହେଲେ ତା'ର ଛିଦ୍ରଗୁଡ଼ିକୁ ଖୋଜିବାକୁ ହେବ ଗୁପ୍ତଚର ମାଧ୍ୟମରେ । ଅଥଚ ନିଜ ଛିଦ୍ରଗୁଡ଼ିକୁ ଅତି ସାବଧାନ ଭାବରେ ଗୁପ୍ତ ରଖିବାକୁ ହେବ । ନିଜର ପ୍ରକୃତ ରୂପଟିକୁ କଚ୍ଛପ ଭଳି ଲୁଚାଇ ରଖିବାକୁ ହେବ । ବଳାବଳକୁ ମଧ୍ୟ । ବାହାରର କେହି ଯେମିତି ଏ ବିଷୟରେ କିଛି ହେଲେ ନ ଜାଣନ୍ତି । ଯଦି କିଛି ସମୟ ପାଇଁ ଛଳ ଅନ୍ଧତ୍ୱକୁ ସ୍ୱୀକାର କରିବା ଆବଶ୍ୟକ ପଡ଼େ ତାହା କରିନେବା ଉଚିତ । ରାଜା ମେଷଶାବକଟି ପରି ଦେଖାଯାଉଥିବେ ନିରୀହ । କିନ୍ତୁ ଆବଶ୍ୟକ ପଡ଼ିଲେ ସିଂହ ସମାନ ପରାକ୍ରମ ଦେଖାଇବେ ଶତ୍ରୁ ଉପରେ । ତା'ହେଲେ ଏଇ ଅତର୍କିତ ଆକ୍ରମଣରେ ଶତ୍ରୁ ଉଠିବ ଚମକି । ତା' ପାଖରେ ବଳ ଥିଲେ ବି ସେ ହୋଇଯିବ ଦୁର୍ବଳ । ରାଜାଙ୍କୁ ସେତିକିବେଳେ ଆଖି ଖୋଲିବାକୁ ହେବ ଯେତେବେଳେ ସେ ଶତ୍ରୁକୁ ଧ୍ୱଂସ କରିଦେବା ପାଇଁ ହେବେ ସମର୍ଥ । ଶତ୍ରୁ ଯେତେ ଦୁର୍ବଳ ଜଣାପଡୁଥିଲେ ବି ତା' ପ୍ରତି ସଦା ସାବଧାନ ରହିବାକୁ ହେବ । ତା'କୁ ଆଦୌ ଦେଖିବାକୁ ହେବ ନାହିଁ ଅବହେଳାର ଦୃଷ୍ଟି ନେଇ । ଅଗ୍ନିସ୍ଫୁଲିଙ୍ଗ ଅତି ଛୋଟ । କିନ୍ତୁ ତାହାକୁ ଯଦି ଅବହେଳା କରାଯାଏ, ତେବେ ପରେ ଇନ୍ଧନ ପାଇ ସେ ଗଗନଭେଦୀ ଲେଲିହାନ ଶିଖା ଟେକି ଜଳିଉଠେ । ସେତେବେଳେ ତାହାକୁ ଲିଭାଇବା ହୋଇପଡ଼େ କଠିନ । ତେଣୁ ସ୍ଫୁଲିଙ୍ଗ ଅବସ୍ଥାରୁ ହିଁ ଲିଭାଇଦେବାକୁ ହେବ ତାହାକୁ । ନାଗଶିଶୁଟି ଅତି କ୍ଷୁଦ୍ର । ଭାରି ଅସହାୟ । ନିରୀହ କ୍ଷୁଦ୍ର ସରୀସୃପଟି ଭଳି ଜଣାପଡ଼େ । କିନ୍ତୁ ତା'କୁ ଛାଡ଼ିଦେଲେ ସେ ବଡ଼ ହୋଇ ଦଂଶନ କରିବାକୁ ଭୁଲି ନ ଥାଏ । କେତେବେଳେ କେଉଁ ଦୟାଳୁ ଲୋକ ତା'କୁ ନ ମାରି ଛାଡ଼ି ଦେଇଥିଲା ବୋଲି ବିଚାର ଆସି ନ ଥାଏ ତା' ମନରେ । ଶତ୍ରୁ କଥା ଠିକ୍ ସେମିତି । ସେ ଯେତେ କ୍ଷୁଦ୍ର ଅଥବା ଦୁର୍ବଳ ଥାଉ ପଛକେ ତାକୁ ଅବହେଳା କରିବାକୁ ହେବ ନାହିଁ । ଜଳାଶୟଟି ଭଳି ଦିନକୁ ଦିନ ଜଳ ସଞ୍ଚୟ କରି ସେ ବଢୁଥିବ । ଏପରି ସମୟ ଆସିବ ଯେତେବେଳେ ତାହାକୁ ପାରିହେବା ହୋଇପଡ଼ିବ ଅତ୍ୟନ୍ତ କଠିନ । ତେଣୁ କ୍ଷୁଦ୍ର ଜଳସଞ୍ଚୟ ଅବସ୍ଥାରୁ ହିଁ ତାହାକୁ ମାଟି ପକାଇ ପୋତି ଦେବାକୁ ହେବ କିମ୍ବା ନାଳ ଖୋଲି ତାହାର ଜଳକୁ ନିଷ୍କାସିତ କରିଦେବାକୁ ହେବ ।

''ଏତିକି ନା ଆହୁରି କିଛି ?'' କଥା ମଝିରୁ ପଚାରିଲି । ସବୁ କଥା ମତେ ଏକ ଦୀର୍ଘ ଭାଷଣ ଭଳି ଲାଗୁଥାଏ । ଅଥବା ଜଣେ ପାରଦର୍ଶୀ ପ୍ରବାଚକଙ୍କ ଦ୍ୱାରା ଟିକିନିଖି କରି ଧର୍ମନୀତି ସଂପର୍କରେ ଦିଆଯାଉଥିବା ପ୍ରବଚନ ଭଳି ଲାଗୁଥାଏ । ଶୁଣିବାକୁ ଧୈର୍ଯ୍ୟ ନ ଥିଲେ ବି ଖୁବ୍ କୌତୂହଳପ୍ରଦ ଲାଗୁଥାଏ । କାରଣ ଶତ୍ରୁଦମନର ଠିକ୍ ଠିକ୍ କଥାମାନ

କହିଥାନ୍ତି ଚତୁର ଅମାତ୍ୟ ଜଣକ । ଅଙ୍ଗରାଜ ଭାବରେ ମୋ' ପାଇଁ ମଧ୍ୟ ଥାଏ ଶିକ୍ଷାପ୍ରଦ । ତେଣୁ ମୋର ଏଇ ଧୈର୍ଯ୍ୟହୀନ ପ୍ରଶ୍ନରେ କିଛିଟା ଜିଜ୍ଞାସାଭରା କୌତୂହଳ ମଧ୍ୟ ଥିଲା ମିଶ୍ରିତ ।

''ବହୁତ କିଛି ମିତ୍ର କର୍ଣ୍ଣ । ବହୁତ କିଛି ।'' ଦୁର୍ଯ୍ୟୋଧନ ପୁଣି ଆଗେଇବାକୁ ଲାଗିଲେ କଣିକଙ୍କ ଉପଦେଶମାନ ଦୋହରାଇ ।

ଶତ୍ରୁଦମନ ପାଇଁ ଚାରୋଟି ମାର୍ଗ, ସାମ, ଦାନ, ଦଣ୍ଡ ଓ ଭେଦ । ଆବଶ୍ୟକତାକୁ ଚାହିଁ ଏହି ମାର୍ଗରୁ ଯେ କୌଣସି ଗୋଟିଏ ଅଥବା ଏକାଧିକ ମାର୍ଗ ଚୟନ କରିବାକୁ ହେବ ରାଜାଙ୍କୁ । ଶତ୍ରୁକୁ ଅର୍ଦ୍ଧମୃତ ଅବସ୍ଥାରେ ଛାଡ଼ିଦେବାକୁ ହେବ ନାହିଁ । ବରଂ ପୂରାପୂରି ନିପାତ କରିଦେବାକୁ ହେବ । ଅର୍ଦ୍ଧମୃତ ଶତ୍ରୁ ଦଣ୍ଡାଘାତ ପାଇଥିବା ନାଗସାପ ସହିତ ସମାନ । କେତେବେଳେ ଯେ ସୁଯୋଗ ପାଇଲେ ଦଂଶିଦେବ, ବିଶ୍ୱାସ ନାହିଁ । କ୍ରୋଧ ଆସିଲେ ବି ଶତ୍ରୁ ପ୍ରତି ହସି ହସି କଥା କହିବାକୁ ହେବ । ତାକୁ କଦାପି ଅପମାନିତ କରିବାକୁ ହେବ ନାହିଁ । ବଚନରେ ପୁଣି ଦରିଦ୍ରତା କ'ଣ ? ପ୍ରହାର କରିବା ପୂର୍ବରୁ ଓ ପରେ ବି ତା' ସହିତ ମଧୁର ଭାଷଣ କରିବାକୁ ହେବ । ତିନିପ୍ରକାର ଲୋକଙ୍କ ପ୍ରତି ସାବଧାନ ରହିବାକୁ ହେବ । ଭିକାରି, ନାସ୍ତିକ ଓ ଗୃହଭେଦୀ । ସେମାନଙ୍କ ପାଇଁ ରାଜ୍ୟରେ ସ୍ଥାନ ନାହିଁ । ଭିକାରିମାନେ ଆଳସ୍ୟ ବଢ଼ାଇବା ଛଡ଼ା ଆଉ କ'ଣ ବା କରିବେ ? ଆଉ ନାସ୍ତିକମାନେ । ସେମାନେ ତ ଯୁଗ ଯୁଗ ଧରି ଗଢ଼ାଯାଇଥିବା ସାମାଜିକ ସୂତ୍ରସମୂହକୁ କରିଦେବେ ଛିନ୍ନ-ଭିନ୍ନ ଓ ବ୍ୟବସ୍ଥାସମୂହକୁ କରିଦେବେ ଧ୍ୱସ୍ତ-ବିଧ୍ୱସ୍ତ । ଚାରିଆଡ଼େ ଅଣାଇବେ ବିଶୃଙ୍ଖଳା । ଗୃହଭେଦୀମାନେ ଗୃହର ଛିଦ୍ରଗୁଡ଼ିକୁ ନେଇ ପ୍ରକାଶ କରିବେ ବାହାରେ । ଫଳରେ ଗୃହ ଗୃହ ମଧ୍ୟରେ, ଗୋଷ୍ଠୀ-ଗୋଷ୍ଠୀ ମଧ୍ୟରେ ଦେଖାଯିବ ବିଦ୍ୱେଷଭାବ । ତହିଁରୁ ଆରମ୍ଭ ହେବ ନାନା ପ୍ରକାର ସଂଘର୍ଷ । ସବୁପ୍ରକାର ଶାନ୍ତି ହେବ ବିପନ୍ନ । ସମାଜ ହେବ ଅଶାନ୍ତ । ଆଉ ଦେଶ ବି ।

ଶତ୍ରୁରାଜ୍ୟରେ ସବୁବେଳେ ବିଶ୍ୱାସୀ ଗୁପ୍ତଚରମାନଙ୍କୁ ରଖାଇବାକୁ ହେବ । ଗୁପ୍ତଚରମାନେ ଠିକ୍ କାର୍ଯ୍ୟ କରୁଛନ୍ତି କି ନାହିଁ ତାହା ପରୀକ୍ଷା କରିନେବା ପାଇଁ ବେଳେ ବେଳେ ରାଜାଙ୍କୁ ବି ସ୍ୱୟଂ ଗୁପ୍ତଚର ସାଜିବାକୁ ହେବ । ନିଜ ରାଜ୍ୟରେ ମଧ୍ୟ ଗୁପ୍ତଚର ରଖିବାକୁ ହେବ ଅନୁରୂପ ଭାବରେ । ଶତ୍ରୁପକ୍ଷର ଗୁପ୍ତଚରମାନଙ୍କ ଗତିବିଧି ଲକ୍ଷ୍ୟ କରିବେ ସେମାନେ । ରାଜାଙ୍କ ପାଇଁ ଗୋଟିଏ ବଡ଼ କଥା ହେଲା, ନିଜ ରାଜ୍ୟର ଗୁପ୍ତ ରହସ୍ୟ, ଦୁର୍ବଳତା ଆଦି ଯେପରି ଶତ୍ରୁ ହାତରେ ନ ପଡ଼େ । ଶତ୍ରୁକୁ ଜିଣିବା ପାଇଁ ଦୁଇଟି ଉପାୟ, ସନ୍ଧି ଓ ବିଗ୍ରହ । ଆବଶ୍ୟକ ପଡ଼ିଲେ ସନ୍ଧି କରିବାକୁ ହେବ । ନ ହେଲେ ନାହିଁ । ସନ୍ଧି କରିବାରେ ରାଜାଙ୍କୁ କିଛିଟା କ୍ଷତି ସହିବାକୁ ପଡ଼ିଥାଏ । କିଛିଟା ଦେବାକୁ ପଡ଼ିଥାଏ । ତେଣୁ ନିତାନ୍ତ ଆବଶ୍ୟକ ନ ପଡ଼ିଲେ ସନ୍ଧି କରିବା ଅନୁଚିତ । ବରଂ ବିଗ୍ରହରେ ଲାଭ ଅଛି । କିନ୍ତୁ ଶତ୍ରୁ ସହିତ ଯୁଦ୍ଧ କରିବାକୁ ହେଲେ ଉପଯୁକ୍ତ ସମୟ ଚୟନ କରିବାକୁ ହେବ । ଶତ୍ରୁସେନା ଦୁର୍ବଳ । ସେନାବାହିନୀରେ ରୋଗ ବ୍ୟାପିଛି । ଅଥବା ପଡ଼ିଛି ଖାଦ୍ୟାଭାବ । ନିଜ ପକ୍ଷ ପାଇଁ ପ୍ରକୃତି ଅଛି ଅନୁକୂଳ । ଏମିତି ସମୟରେ ଶତ୍ରୁ ସହିତ ଯୁଦ୍ଧ କରିବାକୁ ହେବ । ତା'କୁ

ପଦାନତ କରିବାକୁ ହେବ । ଏଭଳି କଲେ କ୍ଷତି ନାହିଁ । ବରଂ ଅଛି ଲାଭ । ରାଜ୍ୟଲାଭ । ଧନରତ୍ନ ଲାଭ । ଯଶୋଲାଭ । ଏମିତି ସବୁ କିଛି ଲାଭ ।

''ଆଚ୍ଛା ମିତ୍ର ! ଆଉ କ'ଣ କ'ଣ କହିଲେ ?'' ମୁଁ ପୁନର୍ବାର ପ୍ରଶ୍ନ କଲି ।

''ଅନେକ କିଛି ତ କହିଛନ୍ତି । ସବୁ କଥା ଅବଶ୍ୟ ମୋର ମନେ ପଡୁ ନାହିଁ । କିନ୍ତୁ ସବୁ କଥାର ଦୁଇଟି ସାର କଥା ବାଛି ନେଇଛି ମୁଁ ।''

''କ'ଣ ସେ କଥା ମିତ୍ର ?''

''ଶତ୍ରୁ ଯେତେ କ୍ଷୁଦ୍ର ହେଲେ ବି ତା'କୁ ଅବହେଳା କରିବା ଅନୁଚିତ । ସେ ଦୁର୍ବଳ ଥିବା ଅବସ୍ଥାରେ ହିଁ ତା' ଉପରେ ପ୍ରହାର କରିବା ଉଚିତ ।''

''ବର୍ତ୍ତମାନ ଏଭଳି ଶତ୍ରୁ କିଏ ତୁମର ଅଛି ମିତ୍ର ? ଆର୍ଯ୍ୟାବର୍ତ୍ତର ଅଧିକାଂଶ ରାଜ୍ୟ ତ କୁରୁରାଜ୍ୟର ଅଧୀନ । କେଉଁ ରାଜା ବା ତୁମର ଶତ୍ରୁ ହେବା ପାଇଁ ସାହସ କରୁଛନ୍ତି ?''

''ଯୁଧିଷ୍ଠିର ଓ ତାଙ୍କ ଅନୁଗତ ଚାରି ପାଣ୍ଡବଭ୍ରାତା ।'' କ୍ରୋଧ ଓ ଘୃଣାରେ ତାଙ୍କ ମୁଖମଣ୍ଡଳ ବିକୃତ ।

''ଯୁଧିଷ୍ଠିର ତ ଭାରି ସାଧୁ ପ୍ରକୃତିର । ଖୁବ୍ ଧର୍ମନିଷ୍ଠ । ଅନୁଜମାନେ ବି ତାଙ୍କର ଚିର ବଶମ୍ବଦ । ଖୁବ୍ ଶୀଳବାନ୍ ଓ ଗୁଣବାନ୍ ମଧ୍ୟ । ସେମାନେ ପୁଣି ତୁମ ପିତାଙ୍କ ଅନୁଜପୁତ୍ର । ଭ୍ରାତା ସମାନ । ସେମାନଙ୍କୁ ଶତ୍ରୁ ବୋଲି ଭାବୁଛ କାହିଁକି ?''

''ସେଇଠି ତ କଥାର ମଞ୍ଜି । ଯୁଧିଷ୍ଠିର ଜଣେ ଛଳ ସାଧୁ । ଧର୍ମନିଷ୍ଠା ତାଙ୍କର ବି ଛଳନା । ସେ ରାଜ୍ୟଲୋଭୀ । ତାଙ୍କ ଅନୁଜମାନେ ବି ତାଙ୍କରି ପ୍ରତିରୂପ । ଚିନ୍ତା କରିବେ ଗୋଟିଏ କଥା । କହିବେ ଗୋଟିଏ କଥା । କରିବେ ଆଉ ଗୋଟିଏ କଥା । ଏଇ ଦେଖୁନ ମିତ୍ର ! ଯୁଧିଷ୍ଠିର କେମିତି କୌଶଳ କରି ହସ୍ତିନାପୁରର ଯୁବରାଜ ହୋଇଯାଇଛନ୍ତି । ଆଜି ଯୁବରାଜ ହୋଇଛନ୍ତି କାଲି ରାଜା ହେବେ । ମୁଁ କିନ୍ତୁ ଏହା କରାଇଦେବି ନାହିଁ । ଉଚିତ ଶାସ୍ତି ଦେବି ତାଙ୍କୁ ଓ ତାଙ୍କ ଅନୁଜମାନଙ୍କୁ ।'' ଦୃଢ଼ନିଶ୍ଚୟରେ ଦକ୍ଷିଣହସ୍ତ ତାଙ୍କର ମୁଷ୍ଟିବଦ୍ଧ ।

ଆଶ୍ଚର୍ଯ୍ୟ ହେଲି ଦୁର୍ଯ୍ୟୋଧନଙ୍କ ଏଭଳି ବିଚାର ଶୁଣି । ଦୁଃଖିତ ବି । କହିଲି, ''ମୋ' ଧାରଣା କିନ୍ତୁ ଅଲଗା ।''

''କ'ଣ ?'' ଦୁର୍ଯ୍ୟୋଧନ ଅଧୈର୍ଯ୍ୟ ହୋଇଉଠୁଥିଲେ ମୋ' ଉତ୍ତର ଶୁଣିବା ପାଇଁ ।

''ରାଜସଭା ଯୁଧିଷ୍ଠିରଙ୍କୁ ଯୁବରାଜରୂପେ ଚୟନ କଲା । ମହାରାଜ ଧୃତରାଷ୍ଟ୍ର ତାଙ୍କୁ ସେହି ଆସନରେ ବସାଇଲେ । ଏଥିରେ ଯୁଧିଷ୍ଠିରଙ୍କର ତ କିଛି ଉଦ୍ୟମ ନ ଥିଲା । ତା'ହେଲେ ତାଙ୍କ ଅପରାଧ କେଉଁଠି ?''

''ଏଭଳି ଶାନ୍ତନିରୀହ ଭାବ କେବଳ ବାହାରକୁ ଦେଖାଇବା ପାଇଁ । ଭିତରେ ଭିତରେ ସେ ଖୁବ୍ ଚେଷ୍ଟା କରୁଥିଲେ ଯୁବରାଜ ହେବା ପାଇଁ । ଏଥିପାଇଁ ରାଜସଭାର ସଭ୍ୟମାନଙ୍କୁ ନାନା ମାର୍ଗରେ କରିଛନ୍ତି ପ୍ରଭାବିତ ।''

‘‘ତୁମେ ଏ କଥା ଜାଣିଲ କିପରି ମିତ୍ର ?’’

‘‘ଗୁପ୍ତଚର ନିଷାଦ ପୁରୋଚନ ମୁହଁରୁ । ଏଇ କେତେଦିନ ହେଲା ସେ ମୋ’ ପାଇଁ ପାଣ୍ଡବମାନଙ୍କ ଗୁପ୍ତ ଖବର ଆଣି ପହଞ୍ଚାଉଛି ।’’

ଏତିକିବେଳେ ମାତୁଳ ଶକୁନି ଦୁର୍ଯ୍ୟୋଧନଙ୍କ କଥାକୁ ସମର୍ଥନ କରି କହିଲେ, ‘‘ହଁ, ଅଙ୍ଗରାଜ କର୍ଣ୍ଣ ! ମୁଁ ବି ସେଇଭଳି ଖବର ପାଇଛି । ଯୁଧିଷ୍ଠିର ଏଇଟା ବଡ଼ ଅନ୍ୟାୟ କାମ କରିଛନ୍ତି । ମହାରାଜଙ୍କ ଇଚ୍ଛା ଥିଲା, ଦୁର୍ଯ୍ୟୋଧନଙ୍କୁ ଯୁବରାଜ କରାଇଥାନ୍ତେ । ଉଚିତ କଥା । କାରଣ ସେ ରାଜାଙ୍କ ଜ୍ୟେଷ୍ଠପୁତ୍ର । ପାଣ୍ଡବମାନଙ୍କ କୁଚକ୍ର ହେତୁ ଏହା ସମ୍ଭବ ହୋଇପାରିଲା ନାହିଁ । ସେଥିପାଇଁ ମହାରାଜ ଖୁବ୍ ମର୍ମାହତ ।’’

ଏତିକିରେ ଦୁର୍ଯ୍ୟୋଧନ ଗର୍ଜିଉଠି କହିଲେ, ‘‘ମୁଁ କିନ୍ତୁ ଏହାର ପ୍ରତିଶୋଧ ନେବି । ନିଶ୍ଚୟ, ନିଶ୍ଚୟ ନେବି । ମୁଁ ପାଣ୍ଡବମାନଙ୍କୁ...’’ ମାତୁଳ ଶକୁନି ତାଙ୍କୁ କଥା ମଝିରୁ ବାଧା ଦେଇ କହିଲେ, ‘‘ହାଁ, ହାଁ, ବନ୍ଦ କର ଭଣଜା ଦୁର୍ଯ୍ୟୋଧନ । ବନ୍ଦ କର ଏପରି ବାଚାଳତା ।’’

‘‘କାହିଁକି ବନ୍ଦ କରିବି ମାମୁ ? କ’ଣ ମୋ’ ପ୍ରତି ଅନ୍ୟାୟ ହୋଇ ନାହିଁ ? ଅବିଚାର ହୋଇ ନାହିଁ ।’’ ଦୁର୍ଯ୍ୟୋଧନଙ୍କର ଦୃଢ଼ ପ୍ରତିବାଦ ଆଖି ଦୁଇଟି ତାଙ୍କର ଲାଲ ଲାଲ । ପଳାଶ ଫୁଲ ଯେମିତି । କୁରାଳଚକ୍ର ଭଳି ଘୂରୁଥାଏ । ଓଷ୍ଠାଧର ଥରିଉଠୁଥାଏ କ୍ରୋଧ ଓ ସଂବେଗର ତାଡ଼ନାରେ ।

‘‘ବନ୍ଦ କରିବ ସେଇଥିପାଇଁ ଯେଉଁ ରାଜନୀତି କଥା ଟିକିଏ ପୂର୍ବରୁ ଉଠାଇଥିଲ । ରାଜନୀତିରେ ସବୁ କଥା ଖୋଲିକରି କୁହାଯାଏନା । ତାହାର ଗତିପଥ ଜଟିଳ । ବୁଝିବାକୁ ଚେଷ୍ଟା କର ଭଣଜା ଦୁର୍ଯ୍ୟୋଧନ ।’’

ଭାବୁଥାଏ ମନେ ମନେ, ରାଜନୀତି ଓ ଧର୍ମ କ’ଣ ପୃଥକ୍ ? ଯଦି ପୃଥକ୍ ତେବେ କିଏ କାହାଠାରୁ ମହତ୍ତର ? ଯାହା ମୁଁ ଜାଣିଛି ରାଜନୀତି ସ୍ୱଳ୍ପକାଳୀନ ଧର୍ମ । ଅଥଚ ଧର୍ମ ଚିରକାଳୀନ ରାଜନୀତି । ଏ କଥା କିଏ ବୁଝାଇବ ମାତୁଳ ଶକୁନି ଓ ଦୁର୍ଯ୍ୟୋଧନଙ୍କୁ ?

ଏଥିରୁ କି ସଂକେତ ଦୁର୍ଯ୍ୟୋଧନ ପାଇଲେ କେଜାଣି ଆଉ ଅଧିକ କିଛି ଖୋଲି କହିଲେ ନାହିଁ । ସାପ ଭଳି ଫଁ ଫଁ ହେଉଥିବା ଅବସ୍ଥାରେ ଏକ ତାଚ୍ଛଲ୍ୟଭରା ହୁଙ୍କାର ଦେଲେ, ‘‘ହୁଁ ।’’ ତାହା ପରେ ଖୁବ୍ ଜୋର୍‌ରେ ପଦାଘାତ କଲେ କକ୍ଷର ଭୂମିକୁ । ତାହାକୁ ଫଟାଇ ଦେବେ ଯେମିତି । କ’ଣ ହେଲା ବୁଝିବାପାଇଁ ଦ୍ୱାରପାଳ ପରଦା ଆଢ଼େଇ ହଠାତ୍ ପଶିଆସିଲା କକ୍ଷକୁ ଓ ହାତଯୋଡ଼ି ଠିଆ ହେଲା ଅବନତ ଶିରରେ ଆଦେଶକୁ ଅପେକ୍ଷା କରି । ଦୁର୍ଯ୍ୟୋଧନଙ୍କ ଆଦେଶରେ ପୁଣି ତୁରନ୍ତ ଚାଲିଗଲା କକ୍ଷ ଛାଡ଼ି ।

ମୁଁ କିନ୍ତୁ ବିଶ୍ୱାସ କରିପାରୁ ନ ଥିଲି ଦୁର୍ଯ୍ୟୋଧନଙ୍କ କଥାକୁ ଏବଂ ତାଙ୍କୁ ଅନ୍ଧ ସମର୍ଥନ କରି କହୁଥିବା ଗାନ୍ଧାରରାଜ ଶକୁନିଙ୍କ କଥାକୁ । ଦୁର୍ଯ୍ୟୋଧନଙ୍କର ଅହେତୁକ ଲୋଭ । ଅନ୍ୟର ସମ୍ପତ୍ତିକୁ ନିଜସ୍ୱ କରିନେବା ପାଇଁ ଉଦଗ୍ର ପିପାସା । ପୁଣି ତାହା ଉପରେ ଏ ସବୁର ଅନଳଶିଖାକୁ ପ୍ରଜ୍ୱଳିତ କରାଇଦେବା ପାଇଁ ଗାନ୍ଧାରରାଜଙ୍କ ନିରନ୍ତର କୁପରାମର୍ଶର

ଘୃତାହୁତି । ଏଇ ସବୁ କିଛି ଆଜି ଦୁର୍ଯ୍ୟୋଧନଙ୍କୁ ଏପରି ଅବସ୍ଥାରେ ଆଣି ପହଞ୍ଚାଇଛି । ତାଙ୍କଠାରେ ଆତ୍ମାଭିମାନ ଅଛି । ଅଛି ମଧ୍ୟ ମହତ୍ତ୍ୱାକାଙ୍କ୍ଷା । ଏହାର ପରିପୂର୍ତ୍ତି ଲାଗି ଯେଉଁ ନିଷ୍ଠା ଓ ଉଦ୍ୟମ ଆବଶ୍ୟକ ତାହା କିନ୍ତୁ ନାହିଁ । ତେଣୁ ଯାହା ତାଙ୍କ ପାଖରେ ନାହିଁ, ସେ ତାହା ଅନ୍ୟ ପାଖରୁ ଛଡ଼ାଇ ଆଣିବା ପାଇଁ ଚାହୁଁଛନ୍ତି । ଏଥିରେ କ'ଣ ପୌରୁଷର ବିକାଶ ଘଟିବ ? ଚିରପୋଷିତ ଉଚ୍ଚାଭିଳାଷ ହେବ ରୂପାୟିତ ? ମତେ ତ ଲାଗୁଥାଏ, କଦାପି ନୁହେଁ । ଅତ୍ୟଧିକ ବିଷୟଚିନ୍ତାରେ ମଣିଷର ତାହା ପ୍ରତି ଆସେ ଆସକ୍ତି । ଆସକ୍ତିରୁ ଜନ୍ମେ ବିଷୟପ୍ରାପ୍ତିର କାମନା । ଏଇ କାମନା ପ୍ରତିହତ ହେଲେ ଆସେ କ୍ରୋଧ । କ୍ରୋଧରୁ ଜନ୍ମ ନିଏ ମୋହ । ତାହା ମଣିଷକୁ କରିଦିଏ ମୋହିତ । ତା'ର ବିବେକକୁ କରିଦିଏ ନଷ୍ଟ ଭ୍ରଷ୍ଟ । ମୋହ ହେତୁ ସତ୍‌ପ୍ରବୃତ୍ତିସମୂହର ସ୍ମୃତି ଲୋପପାଏ । ସ୍ମୃତିନାଶରେ ହୁଏ ବୁଦ୍ଧିନାଶ । ଶେଷରେ ଏଇ ବୁଦ୍ଧିନାଶରେ ତା'ର ହୁଏ ବିନାଶ । ଆସକ୍ତି ଓ ବିନାଶ ମଧ୍ୟରେ ଥିବା ଚକ୍ରଟିର ଏଇଭଳି କ୍ରମିକ ଗତି । ସଦା ଅପ୍ରତିହତ ଓ ଅଲଂଘନୀୟ । ମତେ ଲାଗୁଥାଏ ଦୁର୍ଯ୍ୟୋଧନ ଯେମିତି ଏଇ ବୁଦ୍ଧିନାଶ ଅବସ୍ଥାରେ ପହଞ୍ଚିଯାଇଛନ୍ତି । ଆଉ ପଛକୁ ଫେରିବାର ଅବସ୍ଥାରେ ନାହାନ୍ତି । କାରଣ ଏଇ ଚକ୍ରଟିର ଆଉ ପଶ୍ଚାଦ୍‌ଗତି ନାହିଁ । ତେଣୁ ବିନାଶ ତାଙ୍କର ଅବଶ୍ୟମ୍ଭାବୀ ।

ମନେ ମନେ ତାଙ୍କ ପାଇଁ ଦୁଃଖିତ ହେଲି ଖୁବ୍ ଗଭୀର ଭାବରେ ।

ଏପରି କ୍ଷେତ୍ରରେ ମୋର କର୍ତ୍ତବ୍ୟ କ'ଣ ସ୍ଥିର କରିନେଲି । ବାସ୍ତବିକ ଏ ନିଷ୍ପତ୍ତି ତ ମୋର ବହୁ ଆଗରୁ ହୋଇସାରିଥିଲା ଯେତେବେଳେ ତାଙ୍କ ଆଗରେ ପ୍ରତିଜ୍ଞା କରି କହିଥିଲି ଯେ ସର୍ବଦା ଓ ସବୁ ପରିସ୍ଥିତିରେ ତାଙ୍କ ପଛେ ପଛେ ରହିଥିବି । ତାଙ୍କୁ ସମର୍ଥନ କରୁଥିବି । ମୁଁ ଜାଣେ, ସେ ଅଚିରେ ହେବାକୁ ଯାଉଛନ୍ତି ଜଣେ ଭଗ୍ନପୋତ ସମୁଦ୍ରଯାତ୍ରୀ । ମୁଁ ତ ସେହି ପୋତର ମହାନାବିକ ସାଜି ରହିଛି । ତାଙ୍କର ମୋ' ଉପରେ ଭାରି ଭରସା । ତାଙ୍କୁ ଛାଡ଼ିଦେବି ବା କିପରି ? ଅଥବା ସେଇ ପୋତଟିକୁ ଛାଡ଼ିଦେବି ବା କିପରି ? ମୁଁ ତେଣୁ ପୋତସମେତ ତାଙ୍କରି ସାଥିରେ ବୁଡ଼ି ମରିବି । ଏହା ଜାଣିକରି ମଧ୍ୟ ତାଙ୍କ ପଛେ ପଛେ ରହିଥିବି । ଆଜି ଏଇ ସମର୍ଥନକୁ ତାଙ୍କ ଆଗରେ ପୁଣି ଥରେ ଦୋହରାଇବା ଆବଶ୍ୟକ । ତା'ହେଲେ ସେ ହେବେ ଗଭୀର ଭାବରେ ଆଶ୍ୱସ୍ତ, ଏଇ ଆଶ୍ୱସ୍ତିର ସ୍ଥିତି ଯେତେ କମ୍ ସମୟ ପାଇଁ ହୋଇଥାଉ ପଛକେ ।

ତାଙ୍କୁ ଆଶ୍ୱାସନା ଦେବା ଉଦ୍ଦେଶ୍ୟରେ କହିଲି, ''ହେ ମିତ୍ର ଦୁର୍ଯ୍ୟୋଧନ ! ପାଣ୍ଡବମାନଙ୍କ ବଳାବଳ ଓ ଜନସମର୍ଥନ କେତେ ତାହା ମତେ ଜଣା । ତୁମର ସେମାନଙ୍କ ପ୍ରତି ବିଦ୍ୱେଷଭାବ ରଖିବା ଅନୁଚିତ । ଆଉ ଅନୁଚିତ ବି ସେମାନଙ୍କ ସହିତ ବିଗ୍ରହରେ ମାତିବା । ଯଦି କୌଣସି କାରଣରୁ ଏଭଳି ଯୁଦ୍ଧ ଘଟେ, ତା'ହେଲେ ଏ ମିତ୍ର ତୁମକୁ ହିଁ ସମର୍ଥନ କରିବ । ଏ ପ୍ରତିଶ୍ରୁତିକୁ ମୁଁ ଦୋହରାଉଛି ।''

''ଜାଣେ ମିତ୍ର ଅଙ୍ଗରାଜ କର୍ଣ୍ଣ । ଭଲ କରି ଜାଣେ । ତୁମ ସମର୍ଥନରେ ତିଳେ ମାତ୍ର ସନ୍ଦେହ ନାହିଁ ମୋ' ମନରେ । ଅନେକବାର ତ କହିଛ ସେ କଥା । ଆଜି ଯେ ତାହା ଦୋହରାଇଲ, ସେଥିପାଇଁ ଧନ୍ୟବାଦ ଦେଉଛି ।'' ଏହା କହି ସେ ମତେ ବାନ୍ଧି-ରଖିଲେ

ଆଲିଙ୍ଗନରେ । ଅନ୍ତରଛୁଆଁ ପ୍ରାଣଖୋଲା ନିବିଡ଼ ଆଲିଙ୍ଗନରେ । ତାଙ୍କ ମୁଖମଣ୍ଡଳରେ ଅପୂର୍ବ ପ୍ରସନ୍ନତା । କିଛି ଗୋଟାଏ ବିରାଟ ସିଦ୍ଧି ପାଇଯାଇଛନ୍ତି ଯେମିତି ।

ତାଙ୍କ ଆଲିଙ୍ଗନରୁ ମୁକ୍ତ ହେବା ପରେ ତାଙ୍କୁ ଯଥାବିଧି ଆଦରସମ୍ମାନ ଜଣାଇ ବିଦାୟ ନେଲି । ପାଦପାତ ମୋର ଧୀର ଓ ସ୍ଖଳିତ । ମତେ ଲାଗୁଥାଏ, ଭାରାକ୍ରାନ୍ତ ମନ ସହିତ ସମତାଳ ରଖି ମୋ' ପାଦ ଦୁଇଟା ଯେମିତି ଖୁବ୍ ଭାରି ହୋଇଯାଇଛି ! ସହଜରେ ଉଠୁ ନାହିଁ !

## ଏକଚାଳିଶ

''ଏଇଟା କିନ୍ତୁ ତୁମେ ଠିକ୍ କରୁ ନାହିଁ ମିତ୍ର ଦୁର୍ଯ୍ୟୋଧନ । ଏହା ବଡ଼ ଅନ୍ୟାୟ ।'' ଚାରି ଦିନ ପରେ ଦୁର୍ଯ୍ୟୋଧନଙ୍କୁ ସାକ୍ଷାତ କରିବା ଅବସରରେ ଦୃଢ଼ ପ୍ରତିବାଦର ସ୍ୱରରେ କହିଲି । ପାଖରେ ଥିଲେ ମାତୁଳ ଶକୁନି । କିନ୍ତୁ ଅନୁଜ ଦୁଃଶାସନ ନ ଥିଲେ । କୁଚକ୍ରର ତ୍ରିଭୁଜଟି ତଥାପି ଥିଲା ଅପୂର୍ଣ୍ଣ । ଆଶ୍ଚର୍ଯ୍ୟ ଲାଗିଲା ମତେ । ଆଜି ଦୁଃଶାସନ ଅନୁପସ୍ଥିତ କିପରି ? ଏତିକିବେଳେ ହଠାତ୍ ଆସି ପହଞ୍ଚିଗଲେ ଦୁଃଶାସନ ଓ ତାଙ୍କୁ କହିଲେ, ''ଏଇ ଫେରୁଛି ବାରଣାବତରୁ । ସବୁ ବ୍ୟବସ୍ଥା ଠିକ୍ ହୋଇଯାଇଛି । ମୁଁ ପୁଣି ଯାଉଛି । ଏଇ ହସ୍ତିନାପୁରରେ ଆଉ ଟିକିଏ କାମ ଅଛି । କରିସାରି ପରେ ଜଣାଇବି ।'' ସେ ଏହା କହି ଫେରିଯିବାପାଇଁ ବସିଥିଲେ । ଦୁର୍ଯ୍ୟୋଧନଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ଅଟକିଗଲେ ଟିକିଏ । ଦୁର୍ଯ୍ୟୋଧନ ପଚାରିଲେ, ''ଭାଇ ଦୁଃଶାସନ ! ପୁରୋଚନ ଉପରେ ତୁମର ବିଶ୍ୱାସ ଅଛି ତ ?''

''ହଁ, ଅଛି ଭାଇ ।''

ଦୁର୍ଯ୍ୟୋଧନ ଆଉ କ'ଣ ପଚାରିବାକୁ ଚାହୁଁଥିଲେ । କିନ୍ତୁ ମାତୁଳ ଶକୁନିଙ୍କ ଇଙ୍ଗିତରେ ରହିଗଲେ ନୀରବ । ଦୁଃଶାସନ କକ୍ଷ ଛାଡ଼ି ଚାଲିଗଲେ ।

ଅନୁମାନ କରିନେଲି ଦୁଃଶାସନ କିଛି ଗୋଟଏ ଗୁପ୍ତ ରାଜକୀୟ କାର୍ଯ୍ୟ ନେଇ ବ୍ୟସ୍ତ । ଏହା ସହିତ ଦୁର୍ଯ୍ୟୋଧନ ଓ ମାତୁଳ ଶକୁନି ମଧ୍ୟ ସଂଶ୍ଲିଷ୍ଟ । ଆଉ ଗୁପ୍ତଚର ପୁରୋଚନ ବି । ତାହା ବିଷୟରେ କିଛି ମୁଣ୍ଡ ଖେଳାଇବାକୁ ଚାହିଲି ନାହିଁ । ରାଜକୀୟ ଅନେକ ଗୁପ୍ତ କଥା ଅଛି । ସେଥିରେ କାହିଁକି ବା ମୁଣ୍ଡ ଖେଳାଇବି ? ତାହା କରି କାହିଁକି ବା ଅଯଥାରେ ଟାଣି ହୋଇଯିବି ସନ୍ଦେହର ବଳୟ ମଧ୍ୟକୁ ? ଯେଉଁ ମନ୍ତବ୍ୟଟି ଦେଇଥିଲି ତାହା ଉପରେ ଦୁର୍ଯ୍ୟୋଧନଙ୍କ ପ୍ରତିକ୍ରିୟା କ'ଣ ସେଇ କଥା ହିଁ ଜାଣିବାପାଇଁ ପ୍ରତୀକ୍ଷା କରି ରହିଲି ।

ଦୁଃଶାସନ ଚାଲିଯିବା ପରେ ଦୁର୍ଯ୍ୟୋଧନ ମୋ' ଆଡ଼କୁ ଚାହିଁ ମୁହଁ ଖୋଲିଲେ, ''କ'ଣ ଗୋଟାଏ ଅନ୍ୟାୟ ହୋଇଗଲା ବୋଲି କହୁଥିଲ ପରା ମିତ୍ର । କ'ଣ ସେ କଥା ?''

''ପାଣ୍ଡବମାନଙ୍କୁ ମାତା କୁନ୍ତୀଦେବୀଙ୍କ ସହିତ ବାରଣାବତକୁ ପଠାଇବା ପାଇଁ ନେଇଥିବା ନିଷ୍ପତ୍ତି କଥା । ମୁଁ ପୁଣି କହିବି, ଏହା ଅନ୍ୟାୟ ।''

''ଏ ନିଷ୍ପତ୍ତି ମୋ'ର ନୁହେଁ । ମହାରାଜଙ୍କର ।'' ଦୁର୍ଯ୍ୟୋଧନଙ୍କର ହସି ହସି ଉତ୍ତର ।

''କିନ୍ତୁ ମିତ୍ର, ମୋର ବିଶ୍ୱାସ, ତୁମର ବି ଏଥିରେ ହାତ ଅଛି । ତୁମର ବିନା ପରାମର୍ଶରେ ମହାରାଜ ଏଭଳି ନିଷ୍ପତ୍ତି ନେଇ ନାହାନ୍ତି ।''

ମୋର ପ୍ରତିବାଦ ପୂର୍ବ ଭଳି ଦୃଢ଼ । ଦୋଷାରୋପଟି ସୂଚିମୁଖୀ ହୋଇ ରହିଥାଏ ଦୁର୍ଯ୍ୟୋଧନଙ୍କ ପ୍ରତି ।

''ସ୍ୱୀକାର କରୁଛି ମୁଁ ଏହଭଳି ପରାମର୍ଶ ଦେଇଥିଲି ମହାରାଜଙ୍କୁ । କିନ୍ତୁ ମିତ୍ର, ତାହା ତୁମରି କଥାରେ ।''

''ମୋ' କଥାରେ ? ମୁଁ କେତେବେଳେ ଏଭଳି କହିଥିଲି ତୁମକୁ ?'' ମୋର ଆଶ୍ଚର୍ଯ୍ୟଭରା ପ୍ରଶ୍ନ । ଭାବିଲି, ଦୁର୍ଯ୍ୟୋଧନ ସମ୍ଭବତଃ ଏହା କହୁଛନ୍ତି ବିନୋଦରେ ।

''ତୁମେ କହୁ ନ ଥିଲ ପାଣ୍ଡବ-କୌରବମାନଙ୍କ ମଧ୍ୟରେ ବନ୍ଧୁତା ରଖିବାପାଇଁ ? ଶାନ୍ତି ରଖିବାପାଇଁ ?'' ଏଇ ଚାରିଦିନ ତଳର କଥା ଭୁଲିଗଲ ଏତେ ଶୀଘ୍ର ?''

ହଁ, ସତ କଥା ତ । ଦୁର୍ଯ୍ୟୋଧନ କିଛି ମିଛ କହୁ ନାହାନ୍ତି । ଅବଶ୍ୟ କହିଥିଲି ଏଭଳି କଥା । ଦୁର୍ଯ୍ୟୋଧନ ବିପରୀତ ଦିଗରେ ଗତି କରୁଛନ୍ତି ବୋଲି ଦୁଃଖିତ ବି ହୋଇଥିଲି । କିନ୍ତୁ ଏହା ସହିତ ପାଣ୍ଡବମାନଙ୍କର ବାରଣାବତରେ ଅବସ୍ଥାନର ଯେ କି ସଂପର୍କ ଥାଇପାରେ ତାହା ଥିଲା ମୋର ଅଗମ୍ୟ । କଥାଟାକୁ ପରିଷ୍କାର କରି ବୁଝାଇବାପାଇଁ ଅନୁରୋଧ କଲି ତାଙ୍କୁ । ସେ ଯାହା ଉତ୍ତର ଦେଲେ ସେଥିରେ କେତେ ଭାଗ ସତ୍ୟ ଓ କେତେ ଭାଗ ମିଥ୍ୟା ପ୍ରତାରଣା ଥିଲା ନିହିତ ତାହା ବୁଝିପାରି ନ ଥିଲି ।

ତାଙ୍କ କହିବା କଥା ହେଲା, ପାଣ୍ଡବମାନେ ଏବେ ଯୁବକ । ଆଉ ବାଳକ ହୋଇ ନାହାନ୍ତି । ସେମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଶସ୍ତ ଭବନର ଆବଶ୍ୟକତା ଅଛି । ଏଠାରେ ହସ୍ତିନାପୁରରେ ସ୍ଥାନାଭାବ । ପୁଣି ମୁକ୍ତ ଭାବରେ ଚଳିବା ପାଇଁ ଅସୁବିଧା । ରାଜଭବନର ନାନା ଶୃଙ୍ଖଳା ମଧ୍ୟରେ ବାନ୍ଧି ହୋଇ ରହୁଛନ୍ତି । ସେମାନଙ୍କ ବିବାହ ହେବ । ପରିବାର ବଢ଼ିବ । ତେଣୁ ଏକ ସ୍ୱତନ୍ତ୍ର ଭବନ ନିତାନ୍ତ ଆବଶ୍ୟକ ।

କଥା ମଝିରୁ ପଚାରିଲି, ''ଏଡ଼େ ବଡ଼ ହସ୍ତିନାପୁରରେ ସ୍ଥାନାଭାବର ପ୍ରଶ୍ନ ଉଠୁଛି ବା କେମିତି ? କେହି ଯେ ଏ କଥାକୁ ବିଶ୍ୱାସ କରିବେ, ମତେ ଲାଗୁ ନାହିଁ ।'' ତାଙ୍କ କଥାକୁ ସନ୍ଦେହପୂର୍ଣ୍ଣ ଚକ୍ଷୁରେ ଦେଖୁଥିଲି ।

ଦୁର୍ଯ୍ୟୋଧନ୍ କିନ୍ତୁ କିଛି ଦବିଯାଇ ନ ଥିଲେ । ସେ ପୂର୍ବଭଳି ହସି ହସି କହିଲେ, ''କେବଳ ସେତିକି ନୁହେଁ ମିତ୍ର । ଭୀମସେନଙ୍କ ପ୍ରତି ଥିବା ପ୍ରେମଭାବ ହିଁ ମତେ ଏଭଳି କରିବାକୁ ଦେଇଛି ଅନୁପ୍ରେରଣା ।'' ମୁଖମଣ୍ଡଳରେ ତାଙ୍କର ନିରୀହ ଭାବର ଉଚ୍ଛଳତା । ଛଳନା ବୋଲି ଆଦୌ ଜଣାପଡୁ ନ ଥାଏ । ଯାଦୁକରର ଏକ ଅଭୂତପୂର୍ବ ଓ ଅନନ୍ୟ ଯାଦୁବିଦ୍ୟାର ପ୍ରଦର୍ଶନ ଭଳି ଲାଗୁଥାଏ ମତେ । ଭାବିଲି, ଦୁର୍ଯ୍ୟୋଧନଙ୍କ ଭୀମସେନଙ୍କ ପ୍ରତି ପ୍ରେମଭାବ ! କିଏ ବିଶ୍ୱାସ କରିବ ଏ କଥା ? ସୂର୍ଯ୍ୟଙ୍କ ପଶ୍ଚିମ ଦିଗରେ ଉଦୟ ଓ ପୂର୍ବଦିଗରେ ଯେ ଅସ୍ତମିତ ଅସମ୍ଭବ, ଏହା ଠିକ୍ ସେମିତି ଅସମ୍ଭବ । ମନରେ ମୋର

ଘନୀଭୂତ ହେବାକୁ ଲାଗିଲା ସନ୍ଦେହ । କିଛି ଗୋଟାଏ ବିରାଟ କୁଚକ୍ର ଥିବ ଏହା ଭିତରେ ହୁଏତ । ମାତୁଳ ଶକୁନିଙ୍କ ମୃଦୁ ମୃଦୁ ହସରୁ ମିଳୁଥିଲା ଏହାର କିଛିଟା ସଂକେତ । କଦାପି ସରଳ ହସ ନୁହେଁ । ବରଂ ପ୍ରତାରଣାର ହସ । ଉପରେ ଅମୃତ । ଅଥଚ ଭିତରେ ବିଷ । ବାହାରକୁ ଖୁବ୍ ସୁନ୍ଦର ଦିଶୁଥିବା ଲାଲ ଟହ ଟହ ବିଷଫଳ ଯେମିତି । ଖାଲି ନିରୀକ୍ଷଣ କରୁଥାଏ ଦୁର୍ଯ୍ୟୋଧନ ଓ ମାତୁଳ ଶକୁନିଙ୍କ ମୁହଁ ଦୁଇଟିକୁ ଗୋଟିକ ପରେ ଗୋଟିଏ କରି ସନ୍ଦେହଭରା ଦୃଷ୍ଟିରେ । କିଛି ସମୟ ପାଇଁ କଥା ବାହାରିଲା ନାହିଁ ମୋ' ତୁଣ୍ଡରୁ । ବିସ୍ମୟରେ ହତବାକ୍ ମୁଁ ।

ଦୁର୍ଯ୍ୟୋଧନ କଥାଟାକୁ ବୁଝାଇଦେବା ପାଇଁ ଯାହା କହିଲେ ତାହା ଯେତିକି ଥିଲା କୌତୂହଳପୂର୍ଣ୍ଣ, ସେତିକି ବି ଥିଲା ଯୁକ୍ତିନିଷ୍ଠ । ତାଙ୍କ କଥା ଅନୁସାରେ ଅନୁଜ ଭୀମସେନଙ୍କର ବିଶେଷ ଲୋଭ ଖାଦ୍ୟ ପ୍ରତି । ସମସ୍ତ ପ୍ରୀତିଠାରୁ ଖାଦ୍ୟପ୍ରୀତି ତାଙ୍କର ଅଧିକ । ବାରଣାବତର ଚାରିଦିଗରେ ଭୀଷଣ ଅରଣ୍ୟ । ଆରଣ୍ୟକ ଜନ୍ତୁମାନଙ୍କଦ୍ୱାରା ପରିପୂର୍ଣ୍ଣ । ଶିକାର କରିବା ପାଇଁ ଖୁବ୍ ଉପଯୁକ୍ତ ଜାଗା । ବର୍ଷ ବର୍ଷ ଧରି ଶିକାର କଲେ ବି ଜନ୍ତୁମାନେ ମିଳୁଥିବେ ପ୍ରଚୁର ଭାବରେ । ସେଠାରେ ସେ ଜନ୍ତୁଶିକାର ପାଇଁ ପାଇବେ ଅତି ଦିବ୍ୟ ସୁଯୋଗ । ପ୍ରଚୁର ପରିମାଣରେ ସିଦ୍ଧ ମାଂସ ପାଇବେ ଖାଇବାକୁ । ଖୁବ୍ ପ୍ରସନ୍ନ ହୋଇ ରହିବେ । ଖାଇବା, ପିଇବା ଓ ରହିବାର ସମସ୍ତ ସୁବିଧା ପାଇ ମନରୁ ଭୁଲିଯିବେ କୌରବବିଦ୍ୱେଷ ।

ପଚାରିଲି, ''ଭୀମସେନ କ'ଣ ନିଜ ଇଚ୍ଛାରେ ରାଜି ହେଲେ ଏଥିରେ ? ଆଉ ଅନ୍ୟ ପାଣ୍ଡବମାନେ ବି ?''

''ସେଥିର ବ୍ୟବସ୍ଥା ପୂର୍ବରୁ କରିସାରିଥିଲି ମିତ୍ର । ମହାରାଜଙ୍କ ଆଡୁ ଏହା ଆସିବାରେ ସେ ତ ଖାଲି ରାଜି ହେଲେ ନାହିଁ, ଅନ୍ୟ ପାଣ୍ଡବଭ୍ରାତାମାନଙ୍କୁ ଓ ସାନମାଆଙ୍କୁ ଏହାକୁ ଗ୍ରହଣ କରିନେବା ପାଇଁ ପ୍ରବର୍ତ୍ତାଇଲେ । ସେମାନେ ବି ବାଧ ହୋଇ ରାଜି ହେଲେ ।''

''ତୁମେ କ'ଣ ନିଜେ ଭୀମସେନଙ୍କୁ ବୁଝାଇଲ ?'' ମୋ'ର ଜିଜ୍ଞାସାଭରା ପ୍ରଶ୍ନ । ଦୁର୍ଯ୍ୟୋଧନଙ୍କ ପ୍ରସ୍ତାବରେ ଭୀମସେନ ସମ୍ମତ ହୋଇଥିବା ସଂବାଦଟା ବି ଥାଏ ଅନୁରୂପ ଭାବରେ ଆଉ ଏକ ଆଶ୍ଚର୍ଯ୍ୟ ଘଟଣା । ଏଇ ରହସ୍ୟଜାଲଟିକୁ ବି ଖୋଲିବାପାଇଁ ଚେଷ୍ଟିତ ଥାଏ ମୁଁ ।

''ମୁଁ ପୁଣି ଏଭଳି ଭୁଲ କରିବି ? ଭୀମସେନ କ'ଣ ବିଶ୍ୱାସ କରିଥାନ୍ତେ ମତେ ?''

''ତେବେ ?'' ମୋ'ର ଉତ୍କଣ୍ଠାଭରା ପ୍ରଶ୍ନବାଚୀ । କୁହୁକର ପେଡ଼ିଟି ଧୀରେ ଧୀରେ ଖୋଲୁଥିବା ଭଳି ଲାଗୁଥାଏ ମତେ ।

''ଏ କଥାଟି କରିପାରିଛି ମୋ' ଗୁପ୍ତଚର ପୁରୋଚନ ।'' ତାଙ୍କ ଉତ୍ତର ଥିଲା ପୂର୍ବଭଳି ହସ-ହସ । ତାତ୍କାଳିକ ତୃପ୍ତିର ଝଲକ ମୁଖମଣ୍ଡଳରେ । ତାଙ୍କୁ ସମର୍ଥନ କରି ମାତୁଳ ଶକୁନି ମଧ୍ୟ ହସ-ହସ ।

''କିପରି ?''

ତାହାର ବି ଉତ୍ତର ଦେଲେ ସେ । ବଡ଼ ଯୁକ୍ତିନିଷ୍ଠ । ଭାବିଲି, ବହୁତ ଭାବିଚିନ୍ତି ଏଥିପାଇଁ ଯୋଜନା କରାଯାଇଥିବ ନିଶ୍ଚୟ । ଏଇଟି ଏକ ସରଳ ନିରୀହ ଯୋଜନା ଅଥବା ଏକ ସୁପରିକଳ୍ପିତ ଚକ୍ରାନ୍ତ, ତାହା କିନ୍ତୁ ଥିଲା ମୋ' ଧାରଣାର ବାହାରେ । କାରଣ ରାଜକୀୟ କାର୍ଯ୍ୟ ଓ ଆଚରଣରେ ସବୁ କିଛି ସମ୍ଭବ । ନିରାଟ ମିଥ୍ୟା ସତ୍ୟ ଭଳି ହୋଇଥାଏ ପ୍ରତିଭାତ ଏବଂ ସତ୍ୟ ମିଥ୍ୟା ଭଳି । ମାତୁଳ ଶକୁନି ଯେଉଁଠି ପରାମର୍ଶଦାତା ସେଠି ସବୁ କିଛି ସମ୍ଭବ । ଉତ୍କଣ୍ଠିତ ଚିତ୍ତ ଧରି ଚାହିଁରହିଲି ଦୁର୍ଯ୍ୟୋଧନଙ୍କ ଆଡ଼େ ।

ତାଙ୍କ ଉତ୍ତର ଶୁଣି ଆଶ୍ଚର୍ଯ୍ୟ ମୁଁ । ନିଷାଦ ପୁରୋଚନ ବହୁଦିନ ଧରି ଚଳପ୍ରଚଳ ହେଉଥାଏ ପାଣ୍ଡବନିବାସ ପାଖରେ । ବାନର ନୃତ୍ୟ ପ୍ରଦର୍ଶନ କରିବାର ବାହାନା ନେଇ ସେ ପ୍ରବେଶ କରେ ଭୀମସେନଙ୍କ ଭବନରେ । ଭୀମସେନ ନୃତ୍ୟ ଦେଖି ଖୁବ୍ ପ୍ରସନ୍ନ ହୁଅନ୍ତି । ଶିଶୁଟିଏ ଭଳି ନାଚନ୍ତି ଅନେକ ସମୟରେ । ଦେହରେ ସିନା ତାଙ୍କର ଦଶ ହାତୀର ବଳ । କିନ୍ତୁ ମନଟା ସବୁବେଳେ ଶିଶୁମନ ଭଳି ତରଳ ଢଳ ଢଳ । ବାରମ୍ବାର ଏହି କ୍ରୀଡ଼ାପ୍ରଦର୍ଶନ ମାଧ୍ୟମରେ ପୁରୋଚନ ତାଙ୍କର ଖୁବ୍ ପ୍ରିୟ ହୋଇଯାଏ । ଦିନେ ସେ ହଠାତ୍ ଗୋଟିଏ ଭାର ମୃଗମାଂସ ଆଣି ପହଞ୍ଚେ । ମୂଲ୍ୟ ବି ଖୁବ୍ କମ୍ । ସବୁତକ ଭୀମସେନ କିଣି ନିଅନ୍ତି ଏବଂ ମାଂସର ମୂଲ୍ୟ ଏତେ କମ୍ କେମିତି ବୋଲି ପଚାରିନ୍ତି । ବାରଣାବତକୁ ଲାଗିକରି ଥିବା ଅରଣ୍ୟରେ ତା'ର ଘର ବୋଲି ସେ କହେ । ଆହୁରି କହେ ଯେ ସେହି ଅରଣ୍ୟରେ ଶିକାରପାଇଁ ଅସଂଖ୍ୟ ଜନ୍ତୁ ଅଛନ୍ତି । ଯେତେ ଶିକାର କଲେ ବି ଜନ୍ତୁଭଣ୍ଡାର ସରିବ ନାହିଁ । ମାଂସ ତ ସେଠି ମାଗଣାରେ ମିଳୁଛି ଯାହାକୁ ଯେତେ । ଧୀରେ ଧୀରେ ଭୀମସେନଙ୍କ ମନ ବାରଣାବତ ପାଖର ସେହି ଅରଣ୍ୟ ପ୍ରତି ଆକୃଷ୍ଟ ହୁଏ । ତାଙ୍କ ମନ ଡାକେ କେମିତି ଯାଇ ବାରଣାବତରେ ରହନ୍ତେ । ନିତିଦିନ ଶିକାର କରନ୍ତେ । ବିନୋଦରେ କାଳ କାଟନ୍ତେ ।

ଦୁର୍ଯ୍ୟୋଧନ ପୁଣି କହିଲେ, "ଭୀମସେନଙ୍କ ମନ ବାରଣାବତ ପ୍ରତି ସଂପୂର୍ଣ୍ଣ ରୂପେ ଆକୃଷ୍ଟ । ମହାରାଜ ପାଣ୍ଡବମାନଙ୍କର ସେଠାରେ ରହିବାର ପ୍ରସ୍ତାବ ଦେଲାବେଳେ ଭୀମସେନ ସବା ଆଗ ହିଁ ସେଥିରେ ରାଜି ହୋଇଗଲେ । ଖାଲି ସେତିକି ନୁହେଁ, ଅନ୍ୟମାନଙ୍କୁ ମଧ୍ୟ ରାଜି କରାଇବାର ଉଦ୍ୟମ କଲେ । ଆଉ ସେଥିରେ ସଫଳ ହେଲେ ବି । ଶିଶୁଟିଏ ଭଳି ଏଭଳି ଜିଦ୍ ଧରିଲେ ଯେ ଆମେ ସମସ୍ତେ ଆଶ୍ଚର୍ଯ୍ୟ ।"

"ବାଃ ! ଚମତ୍କାର ଯୋଜନାଟିଏ ତ କଲ ମିତ୍ର !" ଦୁର୍ଯ୍ୟୋଧନଙ୍କୁ ପ୍ରଶଂସା କରି କହିଲି ।

"ମୋର ଆଉ ଗୋଟିଏ ବି ଉଦ୍ଦେଶ୍ୟ ଅଛି ଏହି ବ୍ୟବସ୍ଥା ମୂଳରେ ।" ମୋ' କୌତୂହଳକୁ ଆହୁରି ଟିକିଏ ବଢ଼ାଇ ଦେବାକୁ ଯାଇ କହିଲେ ସେ । ପୁଣି କହିଲେ, "ପାଣ୍ଡବମାନେ ରହିବେ ବାରଣାବତରେ । ଆମେ କୌରବମାନେ ହସ୍ତିନାପୁରରେ । ପରସ୍ପରଠାରୁ ଦୂରରେ ରହିବା ଫଳରେ ଆମ ମଧ୍ୟରେ ଥିବା ଭୁଲ ବୁଝାମଣା ଓ ବିଦ୍ୱେଷଭାବ ଧୀରେ ଧୀରେ କମିଯିବ ।"

''ଏଭଳି ଦିନ ଆସିବ ଯେତେବେଳେ ଆଦୌ ଶତ୍ରୁତା ରହିବ ନାହିଁ । ପାଣ୍ଡବମାନେ ଓ କୌରବମାନେ ଭାଇ-ଭାଇ ହୋଇ ଚଳିବେ ।'' ମାତୁଳ ଶକୁନି ଦୁର୍ଯ୍ୟୋଧନଙ୍କୁ ସମର୍ଥନ କରି କହିଲେ । ବାହାରକୁ ଜଣା ପଡୁଥିଲା ଭରା ସଦିଚ୍ଛା ଓ ସ୍ୱସ୍ତି । ଶାନ୍ତିର କାମନା ପହଁଗୁଛି ଯେମିତି ତାଙ୍କ କଥାରେ । କିନ୍ତୁ ତାଙ୍କ ଓଠତଳେ ଖେଳୁଥିବା ଦୁଷ୍ଟ ହସ ମତେ ଲାଗୁଥିଲା କେମିତି କେମିତି ।

ଦୁର୍ଯ୍ୟୋଧନ ପୁଣି ପଚାରିଲେ ମତେ, ''ମିତ୍ର କର୍ଣ୍ଣ ! ଏହି ବ୍ୟବସ୍ଥାଟି କଲେ ଭଲ ହେବ ନା ନାହିଁ ? ତୁମର ସମର୍ଥନ ଅଛି ତ ?''

''ତୁମେ ଯେଉଁ ଉଦ୍ଦେଶ୍ୟ କଥା କହିଲ, ତାହା ଯଦି ସତ୍ୟ ହୋଇଥାଏ, ତେବେ ମୋର ପୂର୍ଣ୍ଣ ସମର୍ଥନ ଅଛି । ଭଲ ହେବ ।'' ସହମତି ପ୍ରକାଶ କରି କହିଲି ।

ଦୁର୍ଯ୍ୟୋଧନ ଓ ମାତୁଳ ଶକୁନି ଖୋଲା ହସ ହସିଲେ । ଖୁବ୍ ପ୍ରସନ୍ନ ଜଣାପଡୁଥିଲେ ଦୁହେଁ । କିନ୍ତୁ ଏଇ ହସର ତଳେ ତଳେ ଦୁଇଟା ନାଗସାପର ବିଷାକ୍ତ ନିଃଶ୍ୱାସ ଯେ ପହଁରୁଥିଲା, ସେ କଥା ସେତେବେଳେ ଜାଣିପାରି ନ ଥିଲି । ଜାଣିଲାବେଳକୁ ତାହାକୁ ପ୍ରତିହତ କରିବାର ସମୟ ଯାଇଥିଲା ଗଡ଼ି । ଖୁବ୍ ଦୁଃଖିତ ହୋଇଥିଲି ।

## ବୟାଳିଶ

ବାସ୍ତବିକ ଖୁବ୍ ବ୍ୟଥିତ ହୋଇଉଠିଥିଲି ଦୁଃଖଦ ଖବରଟି ଶୁଣି । ମୋ' ସନ୍ଦେହ କିଛି ଅମୂଳକ ନ ଥିଲା । ପାଣ୍ଡବମାନଙ୍କୁ ମାତାଙ୍କ ସହିତ ବାରଣାବତକୁ ପଠାଇବାର ମୂଳରେ ଥିଲା ଗାନ୍ଧାରରାଜ ଶକୁନିଙ୍କ କୁପରାମର୍ଶ । ଦୁର୍ଯ୍ୟୋଧନ ଓ ଦୁଃଶାସନ ସହାୟତା କରିଥିଲେ । ଯୋଜନାଟିକୁ କାର୍ଯ୍ୟକାରୀ କରିବାରେ ବିଶେଷ ଭୂମିକା ନେଇଥିଲା ଦୁଷ୍ଟବୁଦ୍ଧି ନୃଶଂସ ପୁରୋଚନ ।

ପାଣ୍ଡବମାନେ ବାରଣାବତକୁ ଯାତ୍ରା କରିବାର ପରଦିନ ପ୍ରଭାତରେ ହିଁ ହସ୍ତିନାପୁରରେ ଏକ ଦାରୁଣ ଦୁଃସଂବାଦ ଆସି ପହଞ୍ଚିଲା । ତ୍ୱରିତଗାମୀ ଅଶ୍ୱପୃଷ୍ଠରେ ବସି ଚର ଖବର ଦେଲା ବାରଣାବତ ନଗରୀ ଜଳିଯାଇଛି । ପାଣ୍ଡବମାନେ ମାତା କୁନ୍ତୀଙ୍କ ସହିତ ଜଳି କରିଛନ୍ତି ସ୍ୱର୍ଗବାସ । ସେମାନଙ୍କ ଦଗ୍ଧ ଦେହଗୁଡ଼ିକର ଅବଶେଷମାତ୍ର ପଡ଼ିଛି ଭବନର ମଧ୍ୟ କକ୍ଷରେ ।

ହସ୍ତିନାପୁର ରାଜଭବନର ଅନ୍ତେବାସୀମାନଙ୍କ ମଧ୍ୟରେ ହାହାକାର ! ଛାତିର ପିଟି ସମସ୍ତଙ୍କ ଆକୁଳ କ୍ରନ୍ଦନ । ନଗରବାସୀମାନେ ବି ସମଧିକ ଦୁଃଖୀ ଓ ହତଚକିତ । କ୍ରମେ କ୍ରମେ ସଂବାଦଟା ବ୍ୟାପିଗଲା ଜନପଦ ଅଞ୍ଚଳକୁ । ପୌର-ଜାନପଦବାସୀ ସମସ୍ତେ ଆସି ଠୁଳ ହେବାକୁ ଲାଗିଲେ ହସ୍ତିନାପୁର ରାଜଭବନର ମହାଦ୍ୱାର ସମ୍ମୁଖରେ । କିଛି ଗୋଟାଏ ବିପଦର ଆଶଙ୍କା କରି ମହାଦ୍ୱାରର କବାଟମାନ ହୋଇଗଲା ରୁଦ୍ଧ । ଅସ୍ତ୍ରଧାରୀ ପ୍ରହରୀମାନେ ଅଧିକ ସତର୍କ । ସମସ୍ତଙ୍କ ମନରେ ମୋରି ଭଳି ସନ୍ଦେହ — ଏହା ଏକ ହୀନ ଚକ୍ରାନ୍ତର ଫଳ । ଦୁର୍ଯ୍ୟୋଧନଙ୍କ ରାଜ୍ୟଲାଭ ପାଇଁ ଯେଉଁ ଉଦଗ୍ର ପିପାସା ତାହାର

ପାପମୟ ପରିଣାମ । ଏହି ପାପର କଳସଟିକୁ ଶୀଘ୍ର ଜଳପୂର୍ଣ୍ଣ କରିବାପାଇଁ ଗାନ୍ଧାରରାଜ ଶକୁନିଙ୍କର ପାତ୍ର ପରେ ପାତ୍ର କରି ଜଳଦାନ । ଛି ! ଛି ! ଏଭଳି ପାପୀ ଲୋକମାନଙ୍କୁ କେମିତି ବା ଏ ଧରଣୀ ସହିଛି ? ଏତେ ଅଧର୍ମର ଲୀଳା ଚାଲିଛି ଏଠି ! ଅଥଚ ତାହା ଫାଟିଯାଇ ଏ ପର୍ଯ୍ୟନ୍ତ ହସ୍ତିନାପୁରର ରାଜଭବନକୁ ଗ୍ରାସ କରି ନାହିଁ କେମିତି ? ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା । ପାଣ୍ଡବମାନଙ୍କର ଓ ସାନରାଣୀମା'ଙ୍କର ସ୍ୱାଭାବିକ ମରଣ ହୋଇ ନାହିଁ । ଏହା ଅଗ୍ନିଦାହ ହେତୁ ଆକସ୍ମିକ ନୁହେଁ । ସେମାନଙ୍କୁ ହତ୍ୟା କରାଯାଇଛି । ଜାଣିଶୁଣି ହତ୍ୟା କରାଯାଇଛି । ହତ୍ୟାକାରୀମାନଙ୍କୁ ତେଣୁ ଦଣ୍ଡ ଦିଆଯାଉ । ସେମାନଙ୍କୁ ଦଣ୍ଡ ନ ମିଳିଲେ ଆମେ ରାଜଭବନର ମହାଦ୍ୱାର ଛାଡ଼ି ଯିବୁ ନାହିଁ । ଏମିତି କେତେ କଥା କହୁଥାନ୍ତି । ମହାରାଜଙ୍କୁ ସାକ୍ଷାତ ନ କରି ଫେରିବେ ନାହିଁ ବୋଲି ଜିଦ୍ । ମହାମାନୀ ଦୁର୍ଯ୍ୟୋଧନ ଓ ଗାନ୍ଧାରରାଜ ଶକୁନି ରାଜଭବନ ମଧ୍ୟରେ ଥାଆନ୍ତି । ଅଥଚ ବାହାରକୁ ଆସି ଜନତାର ସମ୍ମୁଖୀନ ହେବାର ସାହସ ନ ଥାଏ । ସେମାନେ ସାରାଦିନ ସେମିତି ରହିଥାନ୍ତି ଆତ୍ମଗୋପନ କରି । ଜନତା ଏପରି ବିକ୍ଷୁବ୍ଧ ଯେ ସେମାନଙ୍କୁ ଦେଖିଲେ ହିତାହିତ ଜ୍ଞାନ ଭୁଲି କ'ଣ କରିଦେବେ ଠିକଣା ନାହିଁ । ହିତାକାଙ୍‌କ୍ଷୀମାନଙ୍କ ପରାମର୍ଶକ୍ରମେ ରାଜଭବନରୁ ବାହାରୁ ନ ଥାନ୍ତି ଦୁହେଁ । ନିଜ ଭବନରେ ନିଜେ ବନ୍ଦୀ ।

ଶେଷରେ ଜନତାର ବିଜୟ । ସେମାନଙ୍କ କଥା ରହିଲା । ମହାରାଜ ଅନନ୍ୟୋପାୟ । ମହାମନ୍ତ୍ରୀ ବିଦୁରଙ୍କ ପରାମର୍ଶରେ ଦେଖାଦେଲେ ଜନତାକୁ । ପ୍ରାସାଦର ବଡ଼ଭୀରେ ଥାଇ ଉଦ୍‌ବୋଧନ ଦେଲେ, ''ହେ ମୋ'ର ପ୍ରିୟ ପ୍ରଜାଗଣ ! ଆଜି ଆମ ପାଇଁ ଏକ ଅତି ଦାରୁଣ ସଂବାଦ ଆସି ପହଞ୍ଚିଛି । ମୋ' ଅନୁଜପୁତ୍ର ପାଣ୍ଡବମାନେ ଓ ଅନୁଜପତ୍ନୀ କୁନ୍ତୀଦେବୀ ଆଉ ନାହାନ୍ତି । ଆକସ୍ମିକ ଅଗ୍ନିଦାହରେ ସେମାନଙ୍କ ସ୍ୱର୍ଗବାସ ହୋଇଛି । ଆଜି ଆମର ସେମାନଙ୍କ ପାଇଁ ଶୋକ ପାଳିବା କଥା ।''

''ଏହା ଆକସ୍ମିକ ମୃତ୍ୟୁ ନୁହେଁ । ସେମାନଙ୍କୁ ହତ୍ୟା କରାଯାଇଛି । ହତ୍ୟାକାରୀମାନଙ୍କୁ ଦଣ୍ଡ ଦିଆଯାଉ ।'' ଏକ ସ୍ୱରରେ ସେମାନଙ୍କ ପ୍ରତିବାଦ ।

''ମୋ' ପାଖରେ କିନ୍ତୁ ସେଭଳି ଖବର ନାହିଁ । ମୁଁ ବି ଏହା ଶୁଣି ଆଶ୍ଚର୍ଯ୍ୟ ହେଉଛି । ଯଦି ପ୍ରକୃତରେ ସେମାନଙ୍କୁ ହତ୍ୟା କରାଯାଇଥାଏ, ତେବେ ଅପରାଧୀକୁ ନିଶ୍ଚୟ ଦଣ୍ଡ ଦିଆଯିବ ।''

''ଏଇ ବର୍ତ୍ତମାନ ଆମ ଆଗରେ ଦଣ୍ଡ ମିଳୁ ମହାରାଜ । ଆମେ ଜାଣୁ ହତ୍ୟାକାରୀ କିଏ ?''

ଜନତା ଯାହା କହିଥାନ୍ତା, ତାହାର କିଛିଟା ସୂଚନା ବୋଧହୁଏ ପାଇଥିଲେ ମହାମନ୍ତ୍ରୀ ବିଦୁର । ଜନତାର ଶରବ୍ୟ ନିଜ ପ୍ରିୟ ପୁତ୍ର ଦୁର୍ଯ୍ୟୋଧନ ଯାହାଙ୍କୁ ହସ୍ତିନାପୁରର ରାଜା କରିବାକୁ ଚାହିଁ ରାଜା ଧୃତରାଷ୍ଟ୍ର ପାପର ଘଡ଼ିଟିକୁ ଧୀରେ ଧୀରେ ପୂର୍ଣ୍ଣ କରୁଛନ୍ତି । ଆଉ ପୁଣି ଶରବ୍ୟ ବି ତାଙ୍କ ପ୍ରିୟ ଶ୍ୟାଳକ ଶକୁନି । ଜନତାର ଏଇ ପ୍ରକାଶ୍ୟ ଅଭିଯୋଗ ହୁଏତ ସହିପାରି ନ ଥାନ୍ତେ ମହାରାଜ । ସେ ତେଣୁ ମହାରାଜଙ୍କ କାନରେ କ'ଣ ଚୁପ୍ ଚୁପ୍

କହିଲେ । ମହାରାଜ ତାହା ପରେ ତୁଣ୍ଡ ଖୋଲିଲେ, "ହେ, ପ୍ରଜାଗଣ ! ଏମିତି ଶୁଣାଶୁଣି କଥାରେ କିଛି ଗୋଟିଏ ମନ୍ତବ୍ୟ ଦେବା ଠିକ୍ ହେବ ନାହିଁ । ଏପରି ହେଲେ ହୁଏତ ପ୍ରକୃତ ଅପରାଧୀ ଖସିଯାଇପାରେ । ମୁଁ ବିଷୟଟାକୁ ଭଲଭାବରେ ଅନୁସନ୍ଧାନ କରାଇ ପ୍ରକୃତ ଦୋଷୀକୁ ଦଣ୍ଡ ଦେବାର ବ୍ୟବସ୍ଥା କରିବି । ଏ ପ୍ରତିଶ୍ରୁତି ଦେଉଛି ।"

ଜନତା ଶାନ୍ତ । ଧୀରେ ଧୀରେ ରାଜଭବନର ମହାଦ୍ୱାର ଛାଡ଼ି ଅପସରିଯିବାକୁ ଲାଗିଲା । ହସ୍ତିନାପୁରୀ ଏବେ ଏକ ଆସନ୍ନଝଞ୍ଜାରୁ ମୁକ୍ତ । ମହାରାଜଙ୍କ କଥା ମାନି ଜନତା ସିନା ଚାଲିଗଲା । କିନ୍ତୁ ସେମାନଙ୍କ ମନରେ ବହୁଥିଲା ଯେଉଁ ସନ୍ଦେହର ଝଞ୍ଜା ତାହା ହୋଇ ନ ଥିଲା ଉପଶାନ୍ତ । ମନରେ ବାରମ୍ବାର ପ୍ରଶ୍ନବାଚୀ – ପୁତ୍ରସ୍ନେହରେ ଅନ୍ଧ ମହାରାଜ ଧୃତରାଷ୍ଟ୍ର କ'ଣ ନ୍ୟାୟବିଚାର କରିପାରିବେ ? ଅପରାଧୀ ନିଜ ପୁତ୍ର ଦୁର୍ଯ୍ୟୋଧନ, ଦୁଃଶାସନ ଆଦିଙ୍କୁ କରିପାରିବେ ଦଣ୍ଡିତ ? ଆଉ ନିଜ ଶ୍ୟାଳକ ଗାନ୍ଧାରରାଜ ଶକୁନିଙ୍କୁ ବି ?

କେଜାଣି କାହିଁକି ଏହି ସଂବାଦ ପାଇଲା ବେଳଠାରୁ ମୋର ଦୁର୍ଯ୍ୟୋଧନଙ୍କ ପ୍ରତି ଆସିଯାଇଥିଲା ଘୋର ବିତୃଷ୍ଣାଭାବ । ବିବଶତା ହେତୁ ତାଙ୍କୁ ଯେଉଁ ସମର୍ଥନ କରି ଆସୁଥିଲି, ତାହାର ସୂତ୍ରଟି ଧୀରେ ଧୀରେ ହେବାକୁ ଲାଗିଲା କ୍ଷୀଣରୁ କ୍ଷୀଣତର । ପ୍ରାୟ ସାତ ଦିନ ଧରି ସେ ଦୈନିକ ମୋ' ପାଖକୁ ଖବର ପଠାଇଥିଲେ ବି ତାଙ୍କୁ ସାକ୍ଷାତ କରିବାପାଇଁ ଯାଇ ନ ଥିଲି । ମନରେ ମୋର ଦୁଃଖ, କ୍ରୋଧ, ଘୃଣା ଓ ବିରକ୍ତିର ଏକ ଭୀଷଣ ବନ୍ୟା ! ତାହାରି ପ୍ଲାବନରେ ନିରନ୍ତର ଆକୁଳିତ ମୁଁ !!

ଭାବୁଥାଏ, ଦୁର୍ଯ୍ୟୋଧନ ଏ କ'ଣ କଲେ ? କୁରୁବଂଶର ଉଜ୍ଜ୍ୱଳ ତଥା ଉନ୍ନତ ପରମ୍ପରାର ଦାୟାଦ ସେ । ଏ କି ନୂତନ ପରମ୍ପରା ସୃଷ୍ଟି କଲେ ଆଜି ? ପାଣ୍ଡବମାନେ ନିଜ ଭାଇ ସମାନ । କୁନ୍ତୀଦେବୀ ବି ମାତା ସମାନ । କାହିଁକି ସେ ଏକାଧାରରେ ଭ୍ରାତୃହତ୍ୟା ଓ ମାତୃହତ୍ୟାର ପାପ ବହିଲେ ମୁଣ୍ଡରେ ? ଏହି କଳଙ୍କର ଦାଗକୁ କେଉଁ ମହାସାଗରର ଜଳ ବା ଧୋଇଦେବାକୁ ହେବ ସମର୍ଥ ? ରାଜ୍ୟଲୋଭରେ ଏହା କଲେ ହୁଏତ । ସମ୍ପତ୍ତିର ଲାଳସାର ଏଭଳି ଶିକାର ହେଲେ ହୁଏତ । ଏଇ ରାଜ୍ୟ ଓ ସମ୍ପତ୍ତିକୁ କ'ଣ କିଏ ନିଜ ସାଥିରେ ନେଇଯିବାପାଇଁ ଏପର୍ଯ୍ୟନ୍ତ ହୋଇପାରିଛି ସମର୍ଥ ? ଏଇ କୁରୁବଂଶରେ ତ ଅନେକ ଦିଗ୍‌ବିଜୟୀ ବିଖ୍ୟାତ ରାଜା ଆସିଛନ୍ତି ଓ ଯାଇଛନ୍ତି । ସେମାନେ କ'ଣ ବା ନେଇକରି ଯାଇଛନ୍ତି ସାଥିରେ ? ଯାହା କିଛି ଅର୍ଜିଛନ୍ତି ଜୀବନରେ, ତାହା ସବୁ ସେମିତି ପଡ଼ିରହିଛି ଏଠି । କିଛି ହିଁ ନେଇପାରି ନାହାନ୍ତି । କେବଳ ନେଇଛନ୍ତି କୃତକର୍ମର ଫଳ । ସେମାନେ କେବଳ ବଞ୍ଚିରହିଛନ୍ତି ସ୍ମୃତିରେ । କାଲି ମୁଁ ବି ସେମିତି ବଞ୍ଚିରହିବି ସ୍ମୃତିରେ । ଆଉ ଦୁର୍ଯ୍ୟୋଧନ ବି । ଏଇ କ୍ଷଣସ୍ଥାୟୀ ଜୀବନର କିଛିଟା କ୍ଷଣିକ ସୁଖ ଲାଗି କାହିଁକି ସେ ଅର୍ଜିଲେ ଏଭଳି ଅପକୀର୍ତ୍ତି ? ଆଜି ହୁଏତ ଲୋକେ କେବଳ ସନ୍ଦେହ କରୁଛନ୍ତି ତାଙ୍କ ଉପରେ । ପରେ ଯେତେବେଳେ ସନ୍ଦେହଟା ସତ୍ୟରେ ପରିଣତ ହୋଇଯିବ ସେତେବେଳେ ସବୁ କଥା ଖୋଲିଯିବ ସେମାନଙ୍କ ଆଗରେ । ଦିନେ ନା ଦିନେ ତ ନିଶ୍ଚୟ ସତ୍ୟ ମିଥ୍ୟା ଓ ସନ୍ଦେହର ପରଦାକୁ ଠେଲିଦେଇ ବାହାରିଆସିବ ଠିକ୍ ମେଘ ଉହାଡ଼ରୁ

ଉଇଁ ଆସୁଥିବା ପ୍ରଭାତୀ ସୂର୍ଯ୍ୟଙ୍କ ଭଳି । ସେତେବେଳେ କ'ଣ କରିବେ ସେ ? କିପରି ମୁଣ୍ଡ ଟେକି ଚାଲିପାରିବେ ସମାଜ ଆଗରେ ? ରାଜକୁମାରଙ୍କ ସମ୍ମାନ ତାଙ୍କୁ କିଏ ବା ଦେବ ? ଏଭଳି ଅପମାନଜନକ ଜୀବନ କ'ଣ ସହିପାରିବେ ମହାମାନୀ ଦୁର୍ଯ୍ୟୋଧନ ?

ଏଇ ଚିନ୍ତାମାନ ବିଚଳିତ କରିଦେଉଥାଏ ମତେ । ମନ ହୋଇଉଠୁଥାଏ ଅସ୍ଥିର । କଙ୍କଡ଼ାବିଛା ଭଳି ନିଜ ପିଠିରେ ନିଜେ ଆଘାତ କରି ନିରନ୍ତର ପୀଡ଼ା ପାଉଥାଏ । ଏଇ କ'ଣ ତା'ହେଲେ ଜୀବନ ? ସୁଖ ଦୁଃଖ, ଆଶା ନିରାଶା, ପ୍ରେମ ପ୍ରତାରଣା, ହିଂସା ଦ୍ୱେଷ ଏଇସବୁକୁ ନେଇ କ'ଣ ଜୀବନ ? କିଛିଟା ଉତ୍‌ଥାନ ଓ କିଛିଟା ପତନ । କିଛିଟା କୀର୍ତ୍ତି ଓ କିଛିଟା ଅପକୀର୍ତ୍ତି । କିଛିଟା ଯଶ ଓ କିଛିଟା ଅପଯଶ । ଏଇଆକୁ କ'ଣ ନେଇ ଗଢ଼ା ଜୀବନର ପିଣ୍ଡଟି ? ଏହା ନ ଥିଲେ କ'ଣ ଜୀବନ ନାହିଁ ? ଚିନ୍ତାର ଦ୍ୱନ୍ଦ୍ୱରେ ମନ ଭାରାକ୍ରାନ୍ତ ହୋଇଗଲେ ଏଇ ପ୍ରଶ୍ନ ମୋର ସର୍ବଦା ଛୁଇଁଥାଏ ମନକୁ । ତାହାର ଉତ୍ତର ପାଇଁ ବ୍ୟାକୁଳ ହୋଇଉଠିଥାଏ । ସେଦିନ ମଧ୍ୟ ପାଣ୍ଡବମାନଙ୍କ ସ୍ମୃତିରେ ମନରେ ମୋ'ର ଆସିଥିଲା ଏହିଭଳି ଚିନ୍ତା । ଅଥଚ ଉତ୍ତରପାଇଁ ବ୍ୟାକୁଳତା ନ ଥିଲା । କାରଣ ଏହାର ଉତ୍ତର ପାଇସାରିଥିଲି ମିତ୍ର ଅଶ୍ୱତ୍‌ଥାମାଙ୍କଠାରୁ ଅନେକ ଦିନ ତଳୁ । ସେ କଥା ମନେ ପଡୁଥାଏ ସେତେବେଳେ ।

ବେଶିଦିନର କଥା ନୁହେଁ । ଏଇ ମାତ୍ର ପନ୍ଦରଦିନ ତଳର କଥା । ଗୁରୁପୁତ୍ର ଅଶ୍ୱତ୍‌ଥାମା ଆସିଥିଲେ ମତେ ସୌଜନ୍ୟମୂଳକ ସାକ୍ଷାତ କରିବାପାଇଁ । ଅନେକ କଥା ପଡ଼ିଲା । କଥା ପ୍ରସଙ୍ଗରେ ପଚାରିଲି, ''ମିତ୍ର ଅଶ୍ୱତ୍‌ଥାମା ! ଜୀବନ କ'ଣ ?''

ସେ କିଛିକ୍ଷଣ କ'ଣ ଭାବିଲେ । ତାହା ପରେ କହିଲେ, ''ମିତ୍ର ଅଙ୍ଗରାଜ କର୍ଣ୍ଣ ! ତୁମେ ଜଣେ ବୀର । ତୁମରି ଭାଷାରେ ହିଁ ତୁମକୁ ବୁଝାଉଛି ଜୀବନ କ'ଣ ?'' ମୋର କୌତୂହଳଭରା ରହସ୍ୟମୟ ପ୍ରଶ୍ନଟିର ଉତ୍ତର ଦେବା ପୂର୍ବରୁ ତାଙ୍କର ଅଧିକତର ରହସ୍ୟମୟ ଭୂମିକା । ଉଦ୍‌ଗ୍ରୀବ ହୋଇ ଚାହିଁରହିଲି ତାଙ୍କ ମୁହଁକୁ ।

''ଜୀବନ ଶରୀରରୂପୀ ତୂଣୀରରେ ରଖାଯାଇଥିବା ଗୋଟିଏ ତୀକ୍ଷ୍ଣଧାର ବାଣ ।'' ତାଙ୍କ ବାଣୀ ଥିଲା ଗମ୍ଭୀର ଓ ଓଜସ୍ୱିତାରେ ଭରପୂର ।

''ବଡ଼ ଅଦ୍‌ଭୁତ ଉପମା ଏଇଟା ତୁମର । ମୁଁ କିନ୍ତୁ ଆଦୌ ବୁଝିପାରୁ ନାହିଁ ।''

''ବୁଝିପାରିବ ନାହିଁ; କାରଣ ଅଧା ମାତ୍ର କହିଛି । ଆଉ ଟିକିଏ ଅଛି ବାକି । ହେ ମିତ୍ର ! ଜୀବନରୂପୀ ବାଣର ଆତ୍ମା ହେଉଛି କାଣ୍ଡମୂଳ ।''

ତଥାପି ମନରେ ମୋର ସନ୍ଦେହର କୁହେଳିକା । ଶରୀର, ଆତ୍ମା, ବାଣ, କାଣ୍ଡମୂଳ ଏସବୁର କିଛି ହିଁ ଅର୍ଥ ବୁଝିପାରୁ ନ ଥାଏ ।

ସେ କଥାଟିକୁ ଅଧିକତର ସ୍ପଷ୍ଟ କରିଦେବା ପାଇଁ କହିଲେ, ''ଶୁଣ ମିତ୍ର, କାଣ୍ଡମୂଳର ବାଣ ସହିତ ଯେମିତି ସମ୍ବନ୍ଧ, ଠିକ୍ ସେମିତି ସମ୍ବନ୍ଧ ଆତ୍ମାର ଶରୀର ସହିତ । କାଣ୍ଡମୂଳ ନ ଥିଲେ ବାଣର ସ୍ଥିତି ସମ୍ଭବ ନୁହେଁ । ଠିକ୍ ସେମିତି ଆତ୍ମା ନ ଥିଲେ ଶରୀରର ସ୍ଥିତି ସମ୍ଭବ ନୁହେଁ । ସେତେବେଳେ ଶରୀର ହୋଇଯାଏ ମୃତ । ତାହାକୁ କୁହାଯାଏ ଶବ ।''

''ଶରୀର ନଷ୍ଟ ହୋଇଗଲେ ଆତ୍ମାର କ'ଣ ହୁଏ ? ତୁମରି ଭାଷାରେ ପଚାରୁଛି ମିତ୍ର, ତୂଣୀର ନଷ୍ଟ ହୋଇଗଲେ କାଣ୍ଡମୂଳର କ'ଣ ହୁଏ ?''

''କାଣ୍ଡମୂଳର କିଛି କ୍ଷତି ହୁଏ ନାହିଁ । ସେ ପୁଣି ଯାଇ ଅନ୍ୟ କୌଣସି ତୂଣୀରରେ ରହେ । ସେମିତି ଶରୀର ନଷ୍ଟ ହେଲେ ଆତ୍ମାର କିଛି କ୍ଷତି ହୁଏ ନାହିଁ । ସେ ଯାଇ ପ୍ରବେଶ କରେ ଅନ୍ୟ କୌଣସି ଶରୀରରେ ।''

''କାଣ୍ଡମୂଳ ତ ପୂରାପୂରି ତୂଣୀର ମଧ୍ୟରେ ନ ଥାଏ । ତାହାର କିଛିଟା ବାହାରେ ଥାଏ । କେବଳ ବାଣ ହିଁ ଥାଏ ତୂଣୀରରେ । ଶରୀର ଓ ଆତ୍ମାର ସଂପର୍କ କ'ଣ ସେମିତି ?'' ମୋର ପୁନର୍ବାର ରହସ୍ୟମୟ ପ୍ରଶ୍ନ ।

''ତୁମେ ଠିକ୍ କହିଛ ଅଙ୍ଗରାଜ କର୍ଣ୍ଣ । ଶରୀର ଓ ଆତ୍ମାର ସଂପର୍କ ଠିକ୍ ସେମିତି । ଗୋଟିଏ ଦୃଷ୍ଟିରେ ଦେଖିଲେ ଆତ୍ମା ଶରୀର ମଧ୍ୟରେ ଅଛି । ପୁଣି ନାହିଁ ମଧ୍ୟ ।''

''ଗୋଟିଏ ବସ୍ତୁ କ'ଣ ଥାଇପାରେ ଏବଂ ପୁଣି ନ ଥାଇପାରେ ବି ?''

''ଆତ୍ମା କୌଣସି ବସ୍ତୁ ନୁହେଁ । ଏହା ତାହାର ଅତୀତ । ଏହାର ଜନ୍ମ ନାହିଁ କି ବିନାଶ ବି ନାହିଁ । ଏହା ଚିର ଅମର । ଶରୀର ମଧ୍ୟରେ ଥାଇ ମଧ୍ୟ ଏହା ନାହିଁ ତାହା ଭିତରେ । ପଦ୍ମପତ୍ରରେ ଜଳ ଯେମିତି ।''

''ଆଚ୍ଛା, ତୁମେ ତା'ହେଲେ ପୁନର୍ଜନ୍ମକୁ ବିଶ୍ୱାସ କରୁଛ ମିତ୍ର ?'' ମୋର ପୁନର୍ବାର ଜିଜ୍ଞାସାଭରା ପ୍ରଶ୍ନ । ପୁନର୍ଜନ୍ମ ସଂପର୍କରେ ଅନ୍ୟମାନଙ୍କ ପାଖରୁ ଶୁଣିଥିଲେ ବି ଅଶ୍ୱତ୍ଥାମାଙ୍କ ଭଳି ଜଣେ ଦାର୍ଶନିକ ମିତ୍ରଙ୍କ ସ୍ପଷ୍ଟୀକରଣ ଚାହୁଁଥିଲି । ଜାଣିବାକୁ ଚାହୁଁଥିଲି ସେ ଏହାର ସମର୍ଥକ କି ନୁହନ୍ତି ।

''କାହିଁକି ନୁହେଁ ? ପୁନର୍ଜନ୍ମ ଅଛି ମିତ୍ର, ନିଶ୍ଚୟ ଅଛି । ଏହା ସହସ୍ର ସହସ୍ର ବର୍ଷ ତଳେ ନିଆଯାଇଥିବା ମହାମହା ମୁନିମାନଙ୍କର ସିଦ୍ଧାନ୍ତ । କେବଳ ମନର କଳ୍ପନା ନୁହେଁ, ଏହା ପରୀକ୍ଷିତ ମଧ୍ୟ । ପ୍ରଜ୍ଞା ଓ ଅନୁଭୂତିର ପରୀକ୍ଷାଗାରରେ ।''

''ଆତ୍ମା ଯଦି ଶରୀର ସହିତ ଏପରି ଭାବରେ ସମ୍ବନ୍ଧିତ, ତା'ହେଲେ ମଣିଷ ପାପକର୍ମ କରିବସେ କାହିଁକି ?''

''ଭଲ ପ୍ରଶ୍ନଟିଏ ପଚାରିଛ ମିତ୍ର । ପାପକର୍ମ ସେହି ଲୋକମାନେ କରିଥାନ୍ତି ଯେଉଁମାନେ ଆତ୍ମାର ଅର୍ଥକୁ ଠିକ୍ ଭାବରେ ବୁଝିପାରି ନ ଥାନ୍ତି । ବରଂ କଦର୍ଥ କରିଥାନ୍ତି । ପ୍ରାଣ-ମନରେ ଯେଉଁ ଅମୃତମୟ ଶାଶ୍ୱତ ସ୍ୱରର ଝଙ୍କାର ବାହାରୁଛି, ତାହାକୁ ଆବିଷ୍କାର କରିଥିବା ମଣିଷ କଦାପି ପାପକର୍ମ କରି ନ ଥାଏ ।''

''ତା' ହେଲେ କ'ଣ ମଣିଷ ପାପୀ ହୋଇପାରେ ନା ?''

''ନା, କଦାପି ନୁହେଁ । ମଣିଷ ସ୍ୱାଭାବିକ ଭାବରେ ପୁଣ୍ୟମୟ । କାରଣ ସେ ଅମୃତର ସନ୍ତାନ । ସେ ପାପ କରିବ କାହିଁକି ? ତା'ର ସ୍ୱଭାବ ତ ଦିବ୍ୟ ।''

''ଯେଉଁ ଲୋକମାନେ ପାପ କରନ୍ତି ସେମାନେ ତେବେ କ'ଣ ମଣିଷ ନୁହନ୍ତି ?''

''ଆଦୌ ନୁହନ୍ତି । ସେମାନେ ମଣିଷର ରୂପ ଧରିଥିବା ପଶୁ । ବଡ଼ ଦୁଃଖର କଥା ଯେ ଏଇ ମଣିଷରୂପଧାରୀ ପଶୁମାନଙ୍କ ସଂଖ୍ୟା ଆଜି ବଢ଼ି ବଢ଼ି ଚାଲିଛି ।'' ସେ ଦୀର୍ଘଶ୍ୱାସ ପକାଇ କହିଲେ ।

ମୁଁ ମଧ ତାଙ୍କ ସହିତ ହୋଇଥିଲି ସହମତ ।

ପାଣ୍ଡବମାନଙ୍କ ମୃତ୍ୟୁ ସଂବାଦ ପାଇବା ପରେ ଚିନ୍ତାର ଜାଲରେ ଛନ୍ଦି ହୋଇଥିବା ଅବସରରେ ସେଇ କଥା ମୋର ମନେ ପଡୁଥିଲା । ସେମାନେ ତ ଥିଲେ ଖୁବ୍ ଧର୍ମପରାୟଣ । ଭାରି ସତ୍ୟନିଷ୍ଠ । ଗୁରୁଜନମାନଙ୍କର ଚିର ବଶମ୍ବଦ । ସେମାନଙ୍କର ଏଭଳି ହୃଦୟବିଦାରକ ମୃତ୍ୟୁ ହେଲା କିପରି ? ଅଥଚ ଦୁର୍ଯ୍ୟୋଧନ ଓ ତାଙ୍କ କୌରବ ଭ୍ରାତାଗଣ । ପୁଣି ମାତୁଳ ଶକୁନି ବି । ଏମାନେ ତ ପ୍ରତିଟି ମୁହୂର୍ତ୍ତ ବିତାଉଛନ୍ତି ପାପଚିନ୍ତାରେ ଓ ପାପକର୍ମରେ । ଏମାନେ ଆଜି ଜୀବିତ । ଏହାହିଁ କ'ଣ ବିଧାତାଙ୍କ ନିଷ୍ପକ୍ଷ ବିଚାରର ନିଦର୍ଶନ ? ଅଥବା ଯେଉଁ ଅର୍ଥ ନେଇ ମୁଁ ଦେଖୁଛି ଏଇସବୁ ଦୃଶ୍ୟ, ତାହା କ'ଣ ଭ୍ରମାତ୍ମକ ? ଏଇ ପ୍ରଶ୍ନଗୁଡ଼ିକରେ କିଛି ହିଁ ସମାଧାନ ଆସୁ ନ ଥିଲା ମୋ' ମନକୁ ।

ଖାଲି ନୀରବ ଧୈର୍ଯ୍ୟରେ ଅପେକ୍ଷା କରିଥିଲି କାଳର ଏଇ ରହସ୍ୟମୟ ଅବୁଝା ଗତିକୁ । ଆଗାମୀ ଦିନମାନଙ୍କରେ ଦେଖାଦେବାକୁ ଥିବା ଘଟଣାବଳୀକୁ ।

## ତେୟାଳିଶ

ବାସ୍ତବିକ ମୋ' ଅନୁମାନ ଠିକ୍ ଥିଲା । ବେଶି ଡେରି ନାହିଁ, ଲାକ୍ଷାଗୃହଦାହର ପ୍ରାୟ ପନ୍ଦର ଦିନ ମଧ୍ୟରେ କାଳ ହିଁ ଦୂରେଇଦେଲା ସକଳ ରହସ୍ୟର ଆବରଣ । ସତ୍ୟ କ'ଣ ଓ ଛଳନା କ'ଣ ତାହାକୁ ପକାଇଦେଲା ପଦାରେ । ଯେଉଁ ଯେଉଁ ଘଟଣାମାନଙ୍କର ଆବରଣ ଉନ୍ମୋଚିତ ହେଲା ସେଥିରୁ ଜାଣିପାରିଲି ଯେ ପାଣ୍ଡବମାନଙ୍କୁ ଦୈବ ସହାୟ । ତେଣୁ ସାଧାରଣ ମଣିଷ ସେମାନଙ୍କର କି କ୍ଷତି କରିପାରିବ ? ଯେତେ ବଳବାନ୍ ହେଉ ପଛକେ ସେ କଥା ଏବେ ନ କହି ରହିପାରୁ ନାହିଁ ।

ମୃତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦେବା ଦିନଠାରୁ ହିଁ ଏକ ବିରାଟ ସନ୍ଦେହ ଉଙ୍କି ମାରୁଥିଲା ମୋ' ମନରେ । ମହାରାଜ ଧୃତରାଷ୍ଟ୍ର, ବଡ଼ରାଣୀମା ଗାନ୍ଧାରୀଦେବୀ, ଦୁର୍ଯ୍ୟୋଧନ ଆଦି କୁରୁରାଜପରିବାରର ସମସ୍ତେ ଦେଲେ ଜଳାଞ୍ଜଳି ଗଙ୍ଗାନଦୀରେ । ସମସ୍ତେ ଶୋକାକୁଳ । ଦୁର୍ଯ୍ୟୋଧନ ଓ ମାତୁଳ ଶକୁନିଙ୍କ ଶୋକ ଦେଖିବ କ'ଣ ? କାନ୍ଦୁଥାନ୍ତି ଅତି ବିକଳ ହୋଇ ସଦ୍ୟ ସନ୍ତାନହରା ମାତା ଯେମିତି । ମହାରାଜ ଓ ବଡ଼ରାଣୀମା'ଙ୍କ ଦୁଃଖ ବି କମ୍ ନ ଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ! ମହାମନ୍ତ୍ରୀ ବିଦୁର କିମ୍ବା ପିତାମହ ଭୀଷ୍ମଙ୍କ ମଧ୍ୟରୁ କେହି ଉପସ୍ଥିତ ନ ଥିଲେ ଜଳାଞ୍ଜଳି କର୍ମରେ । ସେ ଦୁହେଁ ବରଂ ରହିଥିଲେ ପ୍ରସନ୍ନ । ମହାମନ୍ତ୍ରୀ ବିଦୁରଙ୍କ ମତ ହେଲା ପାଣ୍ଡବମାନେ ଓ କୁନ୍ତୀଦେବୀ ମରିଛନ୍ତି ବୋଲି ଅକାଟ୍ୟ ପ୍ରମାଣ ନାହିଁ । ଅର୍ଦ୍ଧଦଗ୍ଧ ଶବ ପାଞ୍ଚଟି ମଧ୍ୟରୁ ଦୁଇଟି ଶବ ଅତି କମ୍ ବୟସର ବାଳକଙ୍କର ଭଳି ଜଣାପଡୁଛି । ଅବଶ୍ୟ ଅନ୍ୟ ତିନୋଟି ଶବ ମଧ୍ୟରୁ

ଗୋଟିଏ ଜଣେ ନାରୀଙ୍କର । ତେଣୁ ପାଣ୍ଡବମାନେ ଓ କୁନ୍ତୀଦେବୀ ଅଗ୍ନିଦଗ୍ଧ ଅବସ୍ଥାରେ ମରିଛନ୍ତି କି ନାହିଁ ଠିକ୍ ଭାବରେ ଜଣାପଡୁ ନାହିଁ । ସେମାନେ ହୁଏତ କାହାଦ୍ୱାରା ଅପହୃତ ହୋଇଥାଇପାରନ୍ତି । କିନ୍ତୁ ସେମାନଙ୍କ ବଳଦର୍ପ ଦୃଷ୍ଟିରୁ ଅପହରଣଟା ସେତେଟା ସମ୍ଭବପର ଅବଶ୍ୟ ନୁହେଁ । ତେବେ ସେମାନେ ହୁଏତ ନିଜ ଇଚ୍ଛାରେ ନିଖୋଜ ଥାଇପାରନ୍ତି । ମହାରାଜ ତ ଏ ବିଷୟରେ ଅନୁସନ୍ଧାନ କରାଇବେ ବୋଲି କହିଛନ୍ତି । ସେ କାର୍ଯ୍ୟଟା ସରିଯାଉ । ଅନ୍ତତଃ ସେତିକିଦିନ ପର୍ଯ୍ୟନ୍ତ ଅପେକ୍ଷା କରାଯାଉ । ଯଦି ଅନୁସନ୍ଧାନ କରା ନ ଯାଉଛି, ତେବେ ଅପେକ୍ଷା କରାଯାଉ ଅନ୍ତତଃ ବାରବର୍ଷ ପର୍ଯ୍ୟନ୍ତ । ତାହା ପରେ ଯାଇ ଅନ୍ତ୍ୟେଷ୍ଟିକ୍ରିୟା କରାଯାଉ । ଏହା ତ ଶାସ୍ତ୍ରର ନୀତି । ସେ ଭଲକରି ଜାଣିଥିଲେ ଯେ ଜନତାର ଚାପରେ ମହାରାଜ ଅନୁସନ୍ଧାନର ପ୍ରତିଶ୍ରୁତିଟିଏ ଦେଇଛନ୍ତି । ତାଙ୍କର ଦୁର୍ଯ୍ୟୋଧନଙ୍କ ପ୍ରତି ଯେଉଁ ଦୁର୍ବଳତା ଅଛି, ସେଥିରେ ବିମୋହିତ ଥାଇ କଦାପି କରାଇପାରିବେ ନାହିଁ ଅନୁସନ୍ଧାନର ଆରମ୍ଭ । ଦିନ ଯିବ ଗଡ଼ି । ଜନତାର ସ୍ମୃତିରୁ ଏହି ଘଟଣା କ୍ରମେ ହୋଇଯିବ ବିଲୁପ୍ତ । ମହାରାଜ ଏଡ଼ାଇଦେବେ ଅନୁସନ୍ଧାନକୁ । ବାସ୍ତବିକ ଭବିଷ୍ୟତର ଘଟଣାବଳୀ ପ୍ରମାଣିତ କରିଥିଲା ବିଦୁରଙ୍କର ଏହି ଧାରଣାକୁ । ଏମିତି ବାହାନା ଦେଖାଇ ସେ ଦେଇ ନ ଥିଲେ ଜଳାଞ୍ଜଳି । ପିତାମହ ଭୀଷ୍ମ ତାଙ୍କ ପରାମର୍ଶ ମାନି ତାହାହିଁ କରିଥିଲେ । ଖାଲି ଜଳାଞ୍ଜଳିରେ ଯୋଗ ଦେଇ ନ ଥିଲେ ନୁହେଁ ଅନ୍ତ୍ୟେଷ୍ଟିକ୍ରିୟାର କୌଣସି କାର୍ଯ୍ୟକ୍ରମରେ ବି ଯୋଗ ଦେଇ ନ ଥିଲେ । ଅଥଚ ଦୁହିଁଙ୍କଠାରୁ ବଳିକରି କୁନ୍ତୀଦେବୀ ଓ ପାଣ୍ଡବମାନଙ୍କର ଅଧିକ ପ୍ରିୟଜନ ହସ୍ତିନାପୁରରେ ଆଉ କେହି ନ ଥିଲେ ।

ବିଦୁର ଓ ପିତାମହ ଭୀଷ୍ମଙ୍କ ଏଭଳି ମନୋଭାବ ଓ ଅହେତୁକ ପ୍ରସନ୍ନତାରୁ ହିଁ ମନରେ ମୋର ଜାଗିଥିଲା ଦ୍ୱନ୍ଦ୍ୱ । ଏଥିରେ କିଛି ଗୋଟାଏ ରହସ୍ୟ ଅଛି । ନିଶ୍ଚୟ ଏଇଟି ଜଣା କେବଳ ସେ ଦୁହିଁଙ୍କୁ । କୁନ୍ତୀଦେବୀ ଓ ପାଣ୍ଡବମାନେ ହୁଏତ ଜୀବିତ । ଦଗ୍ଧୀଭୂତ ଶବ ପାଞ୍ଚଟି ହୁଏତ ଆଉ କେଉଁମାନଙ୍କର । କୁନ୍ତୀଦେବୀ ଓ ତାଙ୍କ ସନ୍ତାନମାନଙ୍କ ହିତ ଦୃଷ୍ଟିରୁ ଏ ରହସ୍ୟ ଦୁହେଁ ରଖିଛନ୍ତି ନିଜ ମନରେ ଗୋପନ କରି । ପ୍ରକାଶ କରି ନାହାନ୍ତି ଏ ପର୍ଯ୍ୟନ୍ତ । ଯଥାସମୟରେ ପ୍ରକାଶ କରିବେ ହୁଏତ ।

ଏହି ସନ୍ଦେହକୁ ଆହୁରି ଦୃଢ଼ୀଭୂତ କରିଦେଲା କୌରବ ଗୁପ୍ତଚରଠାରୁ ମିଳିଥିବା ଏକ ସଂବାଦ— ଏକଚକ୍ର ନଗରୀର ଉପକଣ୍ଠରେ ରହୁଥିବା ବକାସୁର ଏବେ ଆଶ୍ଚର୍ଯ୍ୟଜନକ ଭାବରେ ମୃତ । ତା'ର ହତ୍ୟାକାରୀ ଜଣେ ହୃଷ୍ଟପୁଷ୍ଟ ବ୍ରାହ୍ମଣ । ସେହି ବ୍ରାହ୍ମଣଜଣକ ଆଉ ଚାରି ଜଣ ବ୍ରାହ୍ମଣ ସହଚରଙ୍କ ସହିତ ବିଶ୍ରାମ ନେଉଛନ୍ତି ଜଣେ ବ୍ରାହ୍ମଣଙ୍କ ଗୃହରେ ଅତିଥି ଭାବରେ । ସାଙ୍ଗରେ ଅଛନ୍ତି ଜଣେ ବୃଦ୍ଧା ମହିଳା । ଅତିଥିମାନେ ତାଙ୍କୁ ମାଆ ବୋଲି ଡାକୁଛନ୍ତି । ସମ୍ଭବତଃ ସେହି ବ୍ରାହ୍ମଣମାନେ ଭାଇ ଭାଇ ଓ ମହିଳାଜଣଙ୍କ ସେମାନଙ୍କ ମାଆ । ପରେ ପରେ ଆହୁରି ବି ଆଚମ୍ବିତ ସଂବାଦ ଆସିଲା । ଏକଚକ୍ର ଅରଣ୍ୟରୁ ସମସ୍ତ ଅସୁର ଏବେ ବିତାଡ଼ିତ । କେତେକ ଯୁଦ୍ଧରେ ପରାସ୍ତ । ଅନ୍ୟମାନେ ଅରଣ୍ୟ ଛାଡ଼ିଦେଇଛନ୍ତି ଭୟରେ । ଏକଚକ୍ରର ଅଧିବାସୀମାନେ ଏବେ ଖୁବ୍ ଆଶ୍ୱସ୍ତ ଏହି ସମସ୍ତ

କାର୍ଯ୍ୟର ମହାନାୟକ ବି ବକାସୁରର ହତ୍ୟାକାରୀ ସେହି ବ୍ରାହ୍ମଣଯୁବକ । ଏହି ଦୁଇ ସଂବାଦ ଉପରେ କୁରୁ ରାଜଦରବାରର ପ୍ରତିକ୍ରିୟା ପ୍ରକାଶିତ ହେବା ପୂର୍ବରୁ ପୁଣି ଏକ ସମଧିକ ବିସ୍ମୟକର ସଂବାଦର ଆବିର୍ଭାବ । ବ୍ରାହ୍ମଣ ଯୁବକଜଣକ ହିଡ଼ିମ୍ବାସୁରକୁ ବି ମାରିଦେଇଛନ୍ତି । ତା'ର ଭଗିନୀ ହିଡ଼ିମ୍ବାକୁ ପରାସ୍ତ କରି ଶେଷରେ ତା'ର ପାଣିଗ୍ରହଣ କରିଛନ୍ତି ।

ଏହିସବୁ ସଂବାଦ ମିଳିବା ପରେ ମୋ' ମନରେ ଆଉ ସନ୍ଦେହର କିଛି ହିଁ ନ ଥିଲା ଅବକାଶ । ପାଣ୍ଡବମାନେ ମାତା କୁନ୍ତୀଦେବୀଙ୍କ ସହିତ ଜୀବିତ, ଏଇ ଧାରଣାରେ ନିଶ୍ଚିତ ହୋଇଗଲି ମୁଁ । ସେମାନେ ବ୍ରାହ୍ମଣବେଶରେ ଆଶ୍ରୟ ନେଇଛନ୍ତି ଏକଚକ୍ରନଗରୀରେ । ଭାରି ଖୁସି ଲାଗିଲା ମତେ । ମନେ ମନେ ଶତ ଧନ୍ୟବାଦ ଦେଲି ଦଇବକୁ । ଯାହାହେଉ ଭୀମସେନ ଓ ଅର୍ଜୁନ ତ ବଞ୍ଚିଯାଇଛନ୍ତି । କେବେହେଲେ ତ ମତେ ସୁଯୋଗ ମିଳିବ ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କରିବାପାଇଁ । ପୁଣି ଯେଉଁ ଅପମାନ ମତେ ଭୀମସେନ ଦେଇଥିଲେ ସେଦିନ ଅସ୍ତ୍ରପରୀକ୍ଷା ବେଳେ ତାହାର ପ୍ରତିଶୋଧ ନେବାପାଇଁ । ଯେଉଁ ସ୍ନେହମୟୀ ପାଣ୍ଡୁମହିଷୀ କୁନ୍ତୀଦେବୀଙ୍କ ଚିତ୍ତମନ ଥରିଉଠେ ବାତ୍ସଲ୍ୟମମତାରେ ମୋର ପ୍ରତିଟି ଦର୍ଶନରେ ତାଙ୍କୁ ଅନ୍ତତଃ ପୁନର୍ବାର ଦେଖିବାର ସୁଯୋଗ ପାଇବି ।

ଏହା ଭିତରେ ଗୋଟିଏ ଗୋଟିଏ କରି ଦୁର୍ଯ୍ୟୋଧନ ଓ ମାତୁଳ ଶକୁନିଙ୍କ ସମସ୍ତ କୁଚକ୍ର ପଡ଼ିଯାଇଛି ପଦାରେ । ସମସ୍ତ ଗୁପ୍ତ ତଥ୍ୟ ହୋଇଯାଇଛି ପ୍ରକାଶିତ । ଏବେ ତାହା ଘରେ ଘରେ ଆଲୋକିତ । ପୌର-ଜାନପଦଗଣ ସମସ୍ତେ ହତଚକିତ ଓ ହତବାକ୍ । ସମସ୍ତଙ୍କ ନାସିକା ଘୃଣାରେ ସଂକୁଚିତ । ଆବାଳବୃଦ୍ଧବନିତା ଛିଛାକାର କରୁଛନ୍ତି ଦୁହିଁଙ୍କୁ । ଦେଖେଇ ଦେଖେଇ କହିବାର ତ ସାହସ ନାହିଁ । ଅତି ଗୋପନରେ କୁହାକୁହି ହେଉଛନ୍ତି ପରସ୍ପର ମଧ୍ୟରେ – ଏ ଦୁହିଁଙ୍କୁ କାଳସର୍ପ ଦଂଶିବ । ଦୁହିଁଙ୍କର ନରକଗତି ହେବ । କଦାପି ଧର୍ମ ସହିବ ନାହିଁ ଦୁହିଁଙ୍କୁ । ଏମିତି କେତେ କଥା । ଦୁଷ୍ଟ ଗ୍ରାମ୍ୟବାଳକମାନଙ୍କ କଥା ଛାଡ଼ । ସେମାନେ ତ ଏହା ଭିତରେ ବିନୋଦରେ ଆରମ୍ଭ କରିଦେଇଛନ୍ତି କୌରବ-ପାଣ୍ଡବମାନଙ୍କ ଲୀଳାଭିନୟ । ଲାକ୍ଷାଗୃହର ଦହନରେ ଦୁର୍ଯ୍ୟୋଧନ ଓ ଗାନ୍ଧାରରାଜଙ୍କର ଯେଉଁ କଳଙ୍କମୟ ଭୂମିକା, ତାହାକୁ ଫୁଟାଉଛନ୍ତି ଶ୍ଳେଷାତ୍ମକ ଶୈଳୀରେ । ଅତି ବିନୋଦରେ । କିଏ ବା ବାରଣ କରିବ ଏଇ ବାଳସୁଲଭ କ୍ରୀଡ଼ାକୌତୁକକୁ ? ବିନୋଦଭରା ଅଭିନୟକୁ ? ଦୁର୍ଯ୍ୟୋଧନ ଓ ମାତୁଳ ଶକୁନି ଯେ ଏ କଥା ଜାଣୁ ନାହାନ୍ତି ତାହା ନୁହେଁ । କିଛି ନ ଜାଣିଲା ଭଳି ନୀରବରେ ରହୁଛନ୍ତି । କରୁଛନ୍ତି ନିରୀହତାର ଛଳନା । ଆସନ୍ନ ବିପଦକୁ ଦେଖି କଚ୍ଛପ ତା'ର ମୁଖଟିକୁ ଦୃଢ଼ ତନୁ ଆବରଣ ମଧ୍ୟରେ ସଂକୁଚିତ କରିଦିଏ ଯେମିତି ଠିକ୍ ସେମିତି ନିରୀହତାର ଛଳ ଆବରଣରେ ଲୁଚାଇ ରଖିଛନ୍ତି ନିଜକୁ ।

କଥାଟା ପ୍ରଥମେ କିଏ ପ୍ରକାଶ କଲା ତାହା ଅବଶ୍ୟ ମୋର ମନେପଡୁ ନାହିଁ । ସମ୍ଭବତଃ ମହାମନ୍ତ୍ରୀ ବିଦୁରଙ୍କ ଦ୍ୱାରା ନିୟୋଜିତ ଚରମୁଖରୁ ଏହା ସର୍ବପ୍ରଥମେ ପ୍ରକାଶ ପାଏ । ପାଣ୍ଡବମାନେ ଯେ ପ୍ରକୃତରେ ମରି ନାହାନ୍ତି, ଏଇ ଆଶ୍ୱାସନା ଦେବାପାଇଁ ସେ ତା'ର ସମବ୍ୟଥିନୀ ସ୍ତ୍ରୀକୁ କହେ । କିନ୍ତୁ ସ୍ତ୍ରୀ ହୃଦୟରେ ଗୋପନ କଥା ରହେନା । ଅଚିରେ ତାହା

ମୁଖରୁ ମୁଖ ହୋଇ ଚାରିଆଡ଼େ ହୋଇଯାଏ ବିବୃତ । ମିଥ୍ୟାର ମୁଖାଟି ଖୋଲିଯାଏ । ସତ୍ୟର ଆଲୋକ ହୋଇଉଠେ ଝଲମଲ ।

କଥାଟା ହେଲା, ଦୁର୍ଯ୍ୟୋଧନ, ଦୁଃଶାସନ ଓ ଗାନ୍ଧାରରାଜ ଶକୁନି ବସି କରନ୍ତି କୁମନ୍ତ୍ରଣା । ପାଣ୍ଡବମାନଙ୍କୁ ମାତା କୁନ୍ତୀଙ୍କ ସହିତ ଶେଷ କରିଦେବାକୁ ହେବ । ପ୍ରକାଶ୍ୟ ଯୁଦ୍ଧରେ ତ ପାରିହେବ ନାହିଁ ତେଣୁ ଗୋପନରେ ହତ୍ୟା କରିବାକୁ ହେବ । ଯୋଜନାଟି ପ୍ରଥମେ ବାହାରେ ଦୁଷ୍ଟବୁଦ୍ଧି ଶକୁନିଙ୍କ ମୁଣ୍ଡରୁ । ଦୁର୍ଯ୍ୟୋଧନ ଓ ଦୁଃଶାସନ ତାହାକୁ କାର୍ଯ୍ୟକାରୀ କରନ୍ତି ମାତ୍ର । ଏଥିରେ ହିଂସ୍ରବୁଦ୍ଧି ପୁରୋଚନ ଦିଏ ସହାୟତା । ପୁରୋଚନଦ୍ୱାରା ଗୋପନରେ ଲାକ୍ଷାଗୃହ ନିର୍ମିତ ହୁଏ ବାରଣାବତରେ । ଲାକ୍ଷାଗୃହରେ ଅବସ୍ଥାନର ପ୍ରଥମ ରାତ୍ରିରେ ହିଁ ସେମାନଙ୍କୁ ହତ୍ୟା କରିବାର ସ୍ଥିର ହୁଏ । ଦୁର୍ଯ୍ୟୋଧନ କୌଣସିମତେ ପାଣ୍ଡବମାନଙ୍କୁ ସେଠାକୁ ପଠାଇବାପାଇଁ ସଫଳ ହୁଅନ୍ତି ମହାରାଜଙ୍କୁ ପ୍ରବର୍ତ୍ତାଇବାରେ । ମହାରାଜ କିନ୍ତୁ ଜାଣିପାରି ନ ଥାନ୍ତି ଏ ଚକ୍ରାନ୍ତ କଥା । ସେ କେବଳ ପାଣ୍ଡବମାନଙ୍କୁ ଦୂରେଇ ରଖିବା ଉଦ୍ଦେଶ୍ୟରେ ସହମତ ହୁଅନ୍ତି ପ୍ରସ୍ତାବଟିରେ । ଚତୁର ମହାମନ୍ତ୍ରୀ ବିଦୁର କିନ୍ତୁ ସବୁ କଥା ଜାଣିପାରନ୍ତି ଗୁପ୍ତଚର ମାଧ୍ୟମରେ । ସେ ପିତାମହ ଭୀଷ୍ମଙ୍କୁ ଜଣାନ୍ତି ଏବଂ ଭୀଷ୍ମଙ୍କ ନିର୍ଦ୍ଦେଶରେ ପାଣ୍ଡବମାନଙ୍କୁ ଏ ବିପଦରୁ ଉଦ୍ଧାର କରିବାର ଉପାୟ ଖୋଜନ୍ତି । ଶେଷକୁ ସୁନ୍ଦର ଉପାୟଟିଏ ହୁଏ ନିର୍ଣ୍ଣୀତ । ପିତାମହଙ୍କ ଆଦେଶରେ ତାହା ହୁଏ କାର୍ଯ୍ୟକାରୀ । ସମସ୍ତଙ୍କ ଅଗୋଚରରେ ବିଦୁର ଜଣେ ଗୁପ୍ତଚର ସାହାଯ୍ୟରେ ଗୁପ୍ତ ପଥଟିଏ ଖୋଳାନ୍ତି ଲାକ୍ଷାଗୃହର ମଧ୍ୟକକ୍ଷ ପର୍ଯ୍ୟନ୍ତ । କଥାଟା ଗୋପନ ରଖିବାରେ କିଛି ଅସୁବିଧା ହୁଏନା । କାରଣ ସ୍ୱୟଂ ଗୁପ୍ତଚର ଥାଏ ଜଣେ ପ୍ରବୀଣ ଖନକ । ସେହି ଗୁପ୍ତଚର ସାହାଯ୍ୟରେ ସେ ଯୁଧିଷ୍ଠିରଙ୍କ ପାଖକୁ ସନ୍ଦେଶ ପଠାନ୍ତି ଅତି ଗୋପନୀୟ ଭାଷାରେ । ସେହି ରାତିରେ ହିଁ ଲାକ୍ଷାଗୃହକୁ ଜଳାଇଦେଇ ଗୁପ୍ତ ପଥ ଦେଇ ପଳେଇଯିବା ପାଇଁ ପରାମର୍ଶ ଦିଅନ୍ତି । ପାଣ୍ଡବମାନେ ତାହାକୁ ପାଳନ୍ତି ଅକ୍ଷରେ ଅକ୍ଷରେ । ପୁରୋଚନ ଅତ୍ୟଧିକ ମଦ୍ୟପାନ କରି ସେହି ଭବନରେ ଶୋଇଯାଏ । ମଦ୍ୟପାନର ସାଥୀ ଥାଆନ୍ତି ଜଣେ ନିଷାଦୀ ଓ ତା'ର ପାଞ୍ଚ ସନ୍ତାନ । ସେମାନେ ବି ଶୋଇଯାନ୍ତି । ସମସ୍ତେ ମଦ୍ୟପାନରେ ସଂଜ୍ଞାହୀନ ପ୍ରାୟ । ଶୋଇରହନ୍ତି ଖୁବ୍ ନିଶ୍ଚିନ୍ତରେ । ପୁରୋଚନ ଆଉ ଉଠିପାରେ ନାହିଁ ଯଥାସମୟରେ ଲାକ୍ଷାଗୃହରେ ଅଗ୍ନିସଂଯୋଗ କରିବା ନିମିତ୍ତ । ମାତାଙ୍କ ସହିତ ସମସ୍ତ ପାଣ୍ଡବ ମଧ୍ୟକକ୍ଷରୁ ଗୁପ୍ତ ପଥ ବାଟେ ପ୍ରାୟ ମଧ୍ୟରାତ୍ରିରେ ହୁଅନ୍ତି ନିଷ୍କ୍ରାନ୍ତ । ଗଲାବେଳେ ଲାକ୍ଷାଗୃହରେ ଭୀମସେନ କରିଦିଅନ୍ତି ଅଗ୍ନିସଂଯୋଗ । ମୁହୂର୍ତ୍ତକରେ ତାହା ପରିଣତ ହୋଇଯାଏ ଭସ୍ମସ୍ତୂପରେ । ତାହା ଭିତରେ ଶୋଇଥିବା ଅବସ୍ଥାରେ ପୁରୋଚନ ସମେତ ନିଷାଦୀ ଓ ତା'ର ପାଞ୍ଚ ସନ୍ତାନ ଜଳିଯାଆନ୍ତି । ପାପୀ ପୁରୋଚନ ତା' ପାପ ପାଇଁ ଉଚିତ ଦଣ୍ଡ ପାଏ । ଏହି ଦୃଶ୍ୟ ଖନକ ଗୁପ୍ତଚର ବୃକ୍ଷ ଅନ୍ତରାଳରେ ଗୋପନରେ ଥାଇ ଦେଖେ ଓ ପରେ ପରେ ଆସି ଜଣାଏ ବିଦୁରଙ୍କୁ । ଏଣେ ପାଣ୍ଡବମାନେ ମାତାଙ୍କ ସହିତ ଗଙ୍ଗାନଦୀକୁ ପାରିହୋଇ ପଳାୟନ କରନ୍ତି ପୂର୍ବାଭିମୁଖରେ । ବିଦୁରଙ୍କଦ୍ୱାରା ଗୁପ୍ତ ଭାବରେ ପ୍ରେରିତ ଜଣେ ନାବିକ ସେମାନଙ୍କୁ ଯନ୍ତ୍ରଚାଳିତ ନୌକାଦ୍ୱାରା ପାରି କରିଦିଏ ଖୁବ୍ ଶୀଘ୍ର-ଶୀଘ୍ର ।

ଏଇ ଖବରଟି ଜାଣିସାରିବା ପରେ ମୁଁ ଭାବୁଥାଏ, ଅବଶ୍ୟ ପାପୀ ପୁରୋଚନଙ୍କୁ ତା' ପାପର ଫଳ ମିଳିଛି । କିନ୍ତୁ ସେ ତ ଥିଲା ତା'ର କେବଳ ସାଧନ । ଆଦେଶର ପାଳକ ମାତ୍ର । ଅସଲ ପାପୀ ତ ରହିଯାଇଛନ୍ତି । ହସ୍ତିନାପୁରରେ ସାଧୁବେଶ ସାଜି ବୁଲୁଛନ୍ତି । ସେମାନଙ୍କୁ ତ କାହିଁ କିଛି ଦଣ୍ଡ ମିଳି ନାହିଁ ? ମୁଁ କିନ୍ତୁ ସେତେବେଳେ କେଉଁ ସୁଦୂର ଦିଗ୍‌ବଳୟର ଅନ୍ତରାଳରେ ଅଧା ଲୁଚା ଅଧା ଖୋଲା ମୁହଁ ଦେଖାଇ କାଳ କେମିତି ଉପହାସ କରି କହୁଛି ତାହାର କ୍ଷୀଣ ଝଙ୍କାର ଶୁଣିପାରୁଛି– କେହି ବର୍ତ୍ତିବେ ନାହିଁ କର୍ଣ୍ଣ, କେହି ବର୍ତ୍ତିବେ ନାହିଁ । ପାପର କଳସ ପୂର୍ଣ୍ଣ ହେଲେ ଆପେ ଆପେ ତହିଁରୁ ଉଛୁଳି ପଡ଼ିବ ଜଳ । ହୁଏତ ଅନ୍ୟମାନଙ୍କ ପାପର କଳସ ପୂରିବାକୁ ତଥାପି ଅଛି ବାକି !

ମତେ କେମିତି କେମିତି ଲାଗୁଥିଲା । ମୁଁ ବି ହୋଇଉଠୁଥିଲି ଆତଙ୍କିତ । ମୁଁ ଅବଶ୍ୟ ନିଜେ ପାପ କରି ନାହିଁ । କିନ୍ତୁ ପାପର ପକ୍ଷକୁ ସମର୍ଥନ କରିଛି ତ । ମତେ କ'ଣ ଦଣ୍ଡ ମିଳିବ ଏଇ ଅପରାଧ ଲାଗି ? ଆଃ ! କି ଦୁଃଖଦ ଯନ୍ତ୍ରଣା ପାଇବି ତା'ହେଲେ ସେତେବେଳେ !

ଆଜି ଯେତେବେଳେ ବୀରଗତି ପାଇବାକୁ ଯାଉଛି ଏଇ ଯୁଦ୍ଧଭୂମିରେ, ପୁଣି ମୋ' ନିଜ ଅନୁଜ ପୁତ୍ରପ୍ରତିମ ଅର୍ଜୁନଙ୍କ ହାତରେ, ସେତେବେଳେ ଭାବୁଛି, କାଳ ମତେ ମୋ' ଅପରାଧ ଲାଗି ଦଣ୍ଡ ଦେବାକୁ ପଛାଇ ନାହିଁ । ନିଷ୍ପକ୍ଷ କାଳର ଅଲଂଘନୀୟ ନିର୍ଣ୍ଣୟକୁ ଏଡ଼ାଇଦେବାର କ୍ଷମତା କାହାରି ନାହିଁ !

## ଚଉରାଳିଶ

ପାଣ୍ଡବମାନଙ୍କ ଜୀବିତ ଥିବାର ସତ୍ୟାସତ୍ୟକୁ ପରୀକ୍ଷା କରି ଦେଖିବାର ସମୟ ବର୍ତ୍ତମାନ କୌରବ ରାଜଦରବାରର ନ ଥିଲା । ସେତେବେଳେ ଆଉ ଏକ ସଂବାଦ ଆସି ପହଞ୍ଚିଥିଲା ପାଞ୍ଚାଳ ରାଜଦରବାରରୁ । ଖାଲି ତ ସଂବାଦ ନୁହେଁ, ନିମନ୍ତ୍ରଣ । ପାଞ୍ଚାଳରାଜ ଦ୍ରୁପଦଙ୍କ ପାଖରୁ ତାଙ୍କ କନ୍ୟା ଦ୍ରୌପଦୀଙ୍କ ସ୍ୱୟଂବର-ସଭା ଲାଗି ଆସିଥିଲା ନିମନ୍ତ୍ରଣ । କୁରୁ ରାଜଦରବାରରୁ ଦୁର୍ଯ୍ୟୋଧନ ପ୍ରସ୍ତୁତ ହେଉଥିଲେ ସ୍ୱୟଂବରରେ ଯୋଗ ଦେବାପାଇଁ । ଅଙ୍ଗରାଜ ହିସାବରେ ମୁଁ ମଧ୍ୟ ପାଇଥିଲି ନିମନ୍ତ୍ରଣ । ମୁଁ ବି ଯିବାପାଇଁ ପ୍ରସ୍ତୁତ ହେଉଥିଲି । ବୀରତ୍ୱ ପ୍ରଦର୍ଶନ ଥିଲା ସ୍ୱୟଂବର ଲାଗି କନ୍ୟାଶୁଳ୍କ । ଦ୍ରୌପଦୀ କେବଳ ଉପଯୁକ୍ତ ବୀର ପୁରୁଷଙ୍କୁ ହିଁ କରିବେ ପତି ରୂପରେ ବରଣ । ଏହି ବୀରତ୍ୱ ପ୍ରଦର୍ଶନର କନ୍ୟାଶୁଳ୍କଟି ହିଁ ମତେ ଅଧିକ ଉତ୍ସାହିତ କରୁଥିଲା ସ୍ୱୟଂବରରେ ଯୋଗଦାନ କରିବାପାଇଁ । ଦ୍ରୌପଦୀଙ୍କ ପ୍ରତି ଯେ ଆକର୍ଷଣ ନ ଥିଲା, ତାହା କହିଲେ ଭୁଲ ହେବ । ମିଥ୍ୟାବାଦୀ ହେବି । ତାଙ୍କ ରୂପ ଓ ଗୁଣ ଥିଲା ଲୋକବିଖ୍ୟାତ । ରଙ୍ଗ ଶ୍ୟାମଳ ହେଲେ କ'ଣ ହେବ, ସେ କୁଆଡ଼େ ଥିଲେ ଖୁବ୍ ସୁନ୍ଦରୀ । ଠିକ୍ ଯେମିତି ପୁରୁଷମାନଙ୍କ ମଧ୍ୟରେ ଦ୍ୱାରକାଧିପତି କୃଷ୍ଣ ସୁନ୍ଦର । ତେଣୁ ତାଙ୍କ ଜନ୍ମ ହେବା ମାତ୍ରେ ଦ୍ରୁପଦ ଆନନ୍ଦର ଆବେଗରେ କହିଉଠିଥିଲେ, "କୃଷ୍ଣା... କୃଷ୍ଣା.... ଏ କନ୍ୟାରତ୍ନ ଆଜିଠାରୁ ପରିଚିତା ହେବେ କୃଷ୍ଣା ନାମରେ !" ବାସ୍ତବିକ ତାଙ୍କର ନାମ ରଖାଯାଇଛି କୃଷ୍ଣା । ଦ୍ରୁପଦଙ୍କ ପୁତ୍ରୀ ବୋଲି ଦ୍ରୌପଦୀ । ଦ୍ରୁପଦ ବି ସାଂପ୍ରତିକ କାଳର

ଜଣେ ଶ୍ରେଷ୍ଠ ଯଜ୍ଞକର୍ତ୍ତା ରାଜା । ତାଙ୍କୁ ତେଣୁ କୁହାଯାଏ ଯଜ୍ଞସେନ ବୋଲି । ଯଜ୍ଞସେନଙ୍କ ପୁତ୍ରୀ ହିସାବରେ କୃଷ୍ଣାଙ୍କ ଅପର ନାମ ଯାଜ୍ଞସେନୀ ।

ବଡ଼ ବିଚିତ୍ର ଏ ରାଜା ଦ୍ରୁପଦ ! ବଡ଼ ଅଦ୍ଭୁତ ୟାଙ୍କ ଯଜ୍ଞଧର୍ମ ! ଅଗ୍ନିଦେବଙ୍କୁ ସନ୍ତୁଷ୍ଟ କରାଇ ଅଭୀଷ୍ଟ ବର ପ୍ରଦାନ କରିବାପାଇଁ ଅନୁପ୍ରେରିତ କରାଇବାର ଯେଉଁ ଶକ୍ତି ଅଛି ୟାଙ୍କ ପୁରୋହିତଙ୍କଠାରେ, ତାହା ମଧ୍ୟ ବିଚିତ୍ର ଓ ଅଦ୍ଭୁତ । ରାଜା ଦ୍ରୁପଦ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ହୋଇ ବନ୍ଦୀ ଥିବା ଅବସ୍ଥାରେ ଯେଉଁ ଦୟନୀୟ ଭାବରେ ଦ୍ରୋଣାଚାର୍ଯ୍ୟଙ୍କୁ ନିଜ ରାଜ୍ୟର ଅର୍ଦ୍ଧେକ ଦାନ କରି ବନ୍ଧନରୁ ମୁକ୍ତ ହୁଅନ୍ତି ତାହାକୁ ଭୁଲିପାରନ୍ତି ନାହିଁ ସହଜରେ । ଦ୍ରୋଣଙ୍କ ଉପରେ ପ୍ରତିଶୋଧ ନେବାର ଉପାୟ କରନ୍ତି ଅନ୍ୱେଷଣ । ଯେ ଜଣେ ପୁତ୍ରସନ୍ତାନ ଚାହାନ୍ତି ଯେ ଦ୍ରୋଣାଚାର୍ଯ୍ୟଙ୍କ ପ୍ରାଣ ନେଇପାରିବେ । ତାଙ୍କ ଜ୍ୟେଷ୍ଠପୁତ୍ର ଶିଖଣ୍ଡୀ ଯେ ଏଥିପାଇଁ ସଂପୂର୍ଣ୍ଣ ଅନୁପଯୁକ୍ତ ଓ ଅସମର୍ଥ, ଏ ଧାରଣା ଥାଏ ତାଙ୍କର । ତାଙ୍କ ପୁରୋହିତ ଏଥିରେ ସାହାଯ୍ୟ କରନ୍ତି ତାଙ୍କୁ । ଏକ ବିଶିଷ୍ଟ ଯଜ୍ଞର ପୌରୋହିତ୍ୟ କରନ୍ତି ସେ । କେବଳ ପୁତ୍ରେଷ୍ଟି ଯଜ୍ଞ ନୁହେଁ । ପିତୃଶତ୍ରୁର ହତ୍ୟାକାରୀ ହେବାର ଯୋଗ୍ୟତା ଥିବା ପୁତ୍ରସନ୍ତାନଟିଏ ପାଇବାକୁ ହେବ । ଯଜ୍ଞକୁଣ୍ଡରୁ ପୁଣି ପୁତ୍ରସନ୍ତାନଟିଏ ଜନ୍ମ ହେବ ? ଏହା ରାଜାଙ୍କ ପାଗଳାମି ଛଡ଼ା ଆଉ କିଛି ନୁହେଁ ବୋଲି ଭାବନ୍ତି ଲୋକେ । କିନ୍ତୁ ମନ୍ତ୍ରଦ୍ୱାରା ଅସାଧ୍ୟ ବି ହୁଏ ସାଧିତ । ଅସମ୍ଭବ ହୁଏ ସମ୍ଭବ । ପଥର ମଧ୍ୟରେ ଥିବା ଆତ୍ମିକ ସତ୍ତା ସାଜେ ବାବଦୂକ । ରାଜାଙ୍କୁ ଯଜ୍ଞରେ ସିଦ୍ଧି ମିଳେ । ସେ ଯଜ୍ଞକୁଣ୍ଡରୁ ହିଁ ପାଆନ୍ତି ପୁତ୍ରସନ୍ତାନଟିଏ । ଆଉ ପାଆନ୍ତି ବି କନ୍ୟାସନ୍ତାନଟିଏ । ଧୃଷ୍ଟଦ୍ୟୁମ୍ନ ସେହି ପୁତ୍ରସନ୍ତାନ । ଆଉ କୃଷ୍ଣା ସେହି କନ୍ୟାସନ୍ତାନ । ସାକ୍ଷାତ ଯଜ୍ଞପୁରୁଷ ଆବିର୍ଭୂତ ହୋଇ କହନ୍ତି, "ହେ ରାଜନ୍ ! ତୁମ ଯଜ୍ଞରେ ମୁଁ ପରମ ତୃପ୍ତ । ନିଅନ୍ତୁ ଏଇ ପୁତ୍ରସନ୍ତାନଟିକୁ । ଯେ ହେବ ଦ୍ରୋଣହନ୍ତା । ଆଉ ଏ କନ୍ୟାସନ୍ତାନ ସହାୟିକା ହେବ ସେହି କାର୍ଯ୍ୟ ସଂପାଦନରେ ।" ରାଜା ସାଦରେ ପୁତ୍ର ଓ କନ୍ୟା ଦୁହିଁଙ୍କୁ ଗ୍ରହଣ କରନ୍ତି ।

ଧୀରେ ଧୀରେ ଏହି ସଂବାଦ ପ୍ରସାର ଲାଭ କରେ ସାରା ଆର୍ଯ୍ୟାବର୍ତ୍ତରେ । ଦ୍ରୋଣାଚାର୍ଯ୍ୟ ବି ଜାଣନ୍ତି । ସେ ଭୟଭୀତ ହୋଇଯାଆନ୍ତି ଯଜ୍ଞପୁରୁଷଙ୍କ ଏଭଳି ଭବିଷ୍ୟତ୍‌ବାଣୀ ଶୁଣି । ତାଙ୍କପାଇଁ ଏହା ଦୈବର ଅଭିଶାପ ବୋଲି ଗ୍ରହଣ କରନ୍ତି ସେ । ସେହିଦିନଠାରୁ ହୋଇଯାଆନ୍ତି ସତର୍କ । ରାଜା ଦ୍ରୁପଦଙ୍କ ସହିତ ଯୁଦ୍ଧକୁ ଏଡ଼ାଇ ଚାଲନ୍ତି । ଧୃଷ୍ଟଦ୍ୟୁମ୍ନଙ୍କ ସମ୍ମୁଖୀନ ହେବାର ଦୁରନ୍ତ ଅବକାଶଠାରୁ ରହନ୍ତି ଦୂରେଇ ।

କୃଷ୍ଣାଙ୍କ ସ୍ୱୟଂବର ସମ୍ବାଦ ତାଙ୍କୁ ଏକ ସୁଯୋଗ ଆଣିଦିଏ । ସେ ଭାବନ୍ତି, ଅଶ୍ୱତ୍‌ଥାମା ଯଦି କନ୍ୟାଶୁଳ୍କ ଦେଇ କୃଷ୍ଣାଙ୍କୁ ବିବାହ କରନ୍ତେ, ତା'ହେଲେ କେତେ ଭଲ ନ ହୁଅନ୍ତା ! ଦ୍ରୁପଦଙ୍କ ସହିତ ତାଙ୍କର ନୂତନ ବନ୍ଧୁତା ହୁଅନ୍ତା । ରାଜା ପୂର୍ବ ଶତ୍ରୁତାକୁ ଭୁଲିଯାଆନ୍ତେ । ପ୍ରତିଶୋଧର ଅଗ୍ନିଶିଖା ମଧ୍ୟ ତାଙ୍କ ହୃଦୟରୁ ହୁଅନ୍ତା ନିର୍ବାପିତ । କିନ୍ତୁ କେମିତି ଯିବେ ଅଶ୍ୱତ୍‌ଥାମା ? ତାଙ୍କୁ ତ ନିମନ୍ତ୍ରଣ ନାହିଁ । ତାଙ୍କୁ ଏକ ଉପାୟ ଜୁଟେ । ସେ ଅଶ୍ୱତ୍‌ଥାମାଙ୍କୁ ଦୁର୍ଯ୍ୟୋଧନଙ୍କ ଗହଣରେ ପଠାଇବାର ସ୍ଥିର କରନ୍ତି । ପୁତ୍ରଙ୍କୁ ଉପଦେଶ ଦେଇ କହନ୍ତି

ସୁଯୋଗ ମିଳିଲେ ଲକ୍ଷ୍ୟବେଧ କରି କନ୍ୟାରତ୍ନଟିକୁ ଲାଭ କରିବାପାଇଁ । ଅଶ୍ୱତ୍ଥାମା ବିନୟରେ ଗ୍ରହଣ କରନ୍ତି ପିତ୍ରାଦେଶକୁ ।

ଏହି ପରିସ୍ଥିତିରେ ଅଶ୍ୱତ୍ଥାମା ବି ଆଜି ଯାଉଛନ୍ତି ଦୁର୍ଯ୍ୟୋଧନଙ୍କ ଗହଣରେ । ସ୍ୱୟଂବରରେ ମିତ୍ର ଅଶ୍ୱତ୍ଥାମାଙ୍କ ସାନ୍ନିଧ୍ୟ ପାଇବାର ସୌଭାଗ୍ୟର ସମ୍ଭାବନା ଖୁବ୍ ଭଲ ଲାଗୁଥାଏ ମତେ !

ଆମେ ଯଥାସମୟରେ ଆରମ୍ଭ କଲୁ ସ୍ୱୟଂବର ଯାତ୍ରା ।

ରାଜା ଦ୍ରୁପଦଙ୍କ ରାଜଧାନୀ କାମ୍ପିଲ୍ୟନଗରୀ । ପୁରୁଷ ପୁରୁଷ ଧରି ଶ୍ରୀବୃଦ୍ଧିର ଏକ ସୁନ୍ଦର ନିଦର୍ଶନ । ଆମେ ସେଠାରେ ପହଞ୍ଚିଲାବେଳକୁ ଅପରାହ୍ନ ସାମାନ୍ୟ ଗଡ଼ି ଯାଇଥାଏ । ସୂର୍ଯ୍ୟ ତଥାପି ପାଇ ନ ଥାନ୍ତି ଦିନାନ୍ତର ଅବସାଦ । ସୂର୍ଯ୍ୟକିରଣରେ ଚିକ୍ ଚିକ୍ କରୁଥାଏ ନଗରୀର ମୁଖ୍ୟ ପଥର ଉଭୟ ପାର୍ଶ୍ୱରେ ଥିବା ହର୍ମ୍ୟମାଳ । ନଗରରେ ପ୍ରବେଶ କରିବା ମାତ୍ରେ ଆମ ରଥ ଓ ଅଶ୍ୱମାନଙ୍କର ଗତି ହୋଇଉଠିଥାଏ ମନ୍ଥର । ନଗରର ପ୍ରବେଶଦ୍ୱାର ସୁନ୍ଦର ଭାବରେ ସଜ୍ଜିତ । ସେହିଠାରେ ଆମେ ପାଇଲୁ ଯଥୋଚିତ ସ୍ୱାଗତ-ସଂବର୍ଦ୍ଧନା । ଆଗରୁ ନଗରଦ୍ୱାର ସ୍ପର୍ଶ କରିବାର ସଂବାଦ ପଠାଯାଇଥାଏ । ରାଜାଙ୍କ ଜ୍ୟେଷ୍ଠପୁତ୍ର ଶିଖଣ୍ଡୀ ସ୍ୱୟଂ ଠିଆହୋଇ ଆମର ସ୍ୱାଗତ ସଂବର୍ଦ୍ଧନା କଲେ । ଆମେ ଧୀରେ ଧୀରେ ଆଗେଇ ଚାଲିଲୁ ଆମ ପାଇଁ ନିର୍ଦ୍ଦିଷ୍ଟ ଥିବା ବିଶ୍ରାମଶାଳା ଅଭିମୁଖରେ । ନିଜ ପ୍ରିୟ ରାଜକୁମାରୀ ଦ୍ରୌପଦୀଙ୍କ ସ୍ୱୟଂବର ଲାଗି ନାଗରିକମାନେ ଖୁବ୍ ସୁନ୍ଦର ଭାବରେ ସଜାଇଥାନ୍ତି ନଗରକୁ । ସାରା ନଗର ପତାକାଦ୍ୱାରା ଶୋଭିତ । ରାସ୍ତାର ସ୍ଥାନେ ସ୍ଥାନେ ସୁନ୍ଦର ସୁନ୍ଦର ତୋରଣମାନ ନିର୍ମିତ । ମୁଖ୍ୟରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଭବନମାନଙ୍କ ସମ୍ମୁଖରେ ମଧ୍ୟ ଅନୁରୂପ ବ୍ୟବସ୍ଥା । ତୋରଣଗୁଡ଼ିକ ସହିତ ଜଳପୂର୍ଣ୍ଣ କଳସମାନ ମଧ୍ୟ ସ୍ଥାପିତ । କେଉଁଠି ସୁବର୍ଣ୍ଣ କଳସ ତ ଆଉ କେଉଁଠି ରୌପ୍ୟ ଅଥବା ତାମ୍ର କଳସ । ପୁଣି କେଉଁଠି ମୃଣ୍ମୟ କଳସ । ପ୍ରତିଟି ଭବନ ସମ୍ମୁଖରେ ସୁନ୍ଦର ସୁନ୍ଦର ଆଳାପନା । ପ୍ରତିଟି ଆଳାପନା ଅନ୍ୟଠାରୁ ପୃଥକ୍ । ଆଳାପନାର ବୈଚିତ୍ର୍ୟ କେବଳ ତ କାମ୍ପିଲ୍ୟର ନାଗରିକମାନଙ୍କ କଳାକୁଶଳତା ପ୍ରଦର୍ଶନ କରୁ ନ ଥାଏ, ତାହା ଦର୍ଶକମାନଙ୍କ ମନକୁ ମଧ୍ୟ ମୋହିଦେଉଥାଏ ଖୁବ୍ । ସାପୁଆ କେଳାର ମନ୍ତ୍ର ସାପକୁ ମୋହିଦେଉଥାଏ ଯେମିତି ! ଉଭୟ ପାର୍ଶ୍ୱରେ ନାଗରିକମାନେ ଠିଆ ହୋଇ ସ୍ୱାଗତ କରୁଥାନ୍ତି ଆଗନ୍ତୁକମାନଙ୍କୁ । ପୁଷ୍ପ ଓ ଅକ୍ଷତର ବୃଷ୍ଟିରେ ସାରା ପଥ ସମାସ୍ତୃତ । ଶଙ୍ଖଧ୍ୱନିରେ ଗଗନପବନ ମୁଖରିତ । ରାଜଭବନର ମହାଦ୍ୱାରରେ ନିର୍ମିତ ବାଦ୍ୟଭବନରୁ ଆସୁଥିବା ବିଭିନ୍ନ ବାଦ୍ୟର ମିଶ୍ରିତ ଧ୍ୱନି ସହିତ ଶଙ୍ଖଧ୍ୱନି ମିଶିଯାଇ ଏକ ଅପୂର୍ବ କର୍ଣ୍ଣରସାୟନ ଝଙ୍କାର ତୋଳୁଥାଏ । ମୁଁ, ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନ ଓ ଦୁଃଶାସନ – ଆମେ ଚାରି ଜଣ ଗୋଟିଏ ରଥରେ ବସିଥାଉ । ଅନ୍ୟ ରଥଗୁଡ଼ିକ ଅନୁସରଣ କରୁଥାଏ ଆମକୁ । ଉଭୟ ପାର୍ଶ୍ୱକୁ ଆଖି ପକାଇ ପକାଇ ବିମୋହିତ ଅବସ୍ଥାରେ ଆଗେଇ ଚାଲିଥାଉ । ଏଭଳି ସୁନ୍ଦର ଭାବରେ ସଜା ହୋଇଥିବା କୌଣସି ନଗରୀର ଦୃଶ୍ୟ ମୁଁ ଦେଖି ନ ଥାଏ ଆଗରୁ । ଏଥିରୁ ତ

ରାଜାଙ୍କ ଧନାଢ଼୍ୟତାର କେବଳ ପ୍ରମାଣ ମିଳୁ ନ ଥାଏ । ରାଜକାର୍ଯ୍ୟରେ ପ୍ରଜାମାନଙ୍କ ହାର୍ଦ୍ଦିକ ସହାୟତାର ସୂଚନା ବି ମିଳୁଥାଏ ଯଥେଷ୍ଟ । ରାଜା-ପ୍ରଜାଙ୍କର କି ହାର୍ଦ୍ଦିକ ମିଳନ ଏଠି ! ଗଙ୍ଗା-ଯମୁନାର ସଙ୍ଗମ ଯେମିତି !

ସେତେବେଳେ ମୋର ମନେ ପଡୁଥାଏ ରାଜା ପ୍ରଜାଙ୍କ ସଂପର୍କ କଥା ଯାହା ମୁଁ ଶିକ୍ଷା କରିଥିଲି ଆଚାର୍ଯ୍ୟଙ୍କ ବିଦ୍ୟାୟତନରେ । ତାହା ଛଡ଼ା ଏ ସଂପର୍କରେ ବିଭିନ୍ନ ଗ୍ରନ୍ଥ ମଧ୍ୟ ପଢ଼ିଥିଲି । ଏହି ସଂପର୍କ ପିତା-ପୁତ୍ରଙ୍କ ସଂପର୍କ ଭଳି । ରାଜା ପ୍ରଜାମାନଙ୍କୁ ଦେଖିବେ । ସେମାନଙ୍କ ସୁଖ-ସୁବିଧା କଥା ବୁଝିବେ । ସେମାନଙ୍କୁ ସୁରକ୍ଷା ଦେବେ । ଏହାର ବିନିମୟରେ ପ୍ରଜାମାନେ ତାଙ୍କୁ ସେମାନଙ୍କ ଉତ୍ପନ୍ନ ଶସ୍ୟର ଛଅଭାଗରୁ ଭାଗେ ଦେବେ ରାଜଭାଗ ରୂପରେ । ରାଜା ଆଉ ଅଧିକ କର ଦାବି କରିପାରିବେ ନାହିଁ । କଲେ ବି ପ୍ରଜାମାନେ ଦେବେ ନାହିଁ । ସେଥିପାଇଁ ତ ରାଜାଙ୍କୁ କୁହାଯାଇଛି 'ଷଡ଼୍‌ଭାଗୀ' । ପ୍ରଜାମାନଙ୍କ ମନକୁ ଅନୁରଞ୍ଜନ କରିବେ ବୋଲି ତାଙ୍କୁ କୁହାଯାଇଛି ରାଜା । ପ୍ରଜାମାନେ ବି ସନ୍ତାନ ଭଳି ତାଙ୍କୁ ଭକ୍ତି, ସମ୍ମାନ ଦେଖାଇବେ ବୋଲି ସେମାନଙ୍କୁ କୁହାଯାଇଛି ପ୍ରଜା । ରାଜା ଦ୍ରୁପଦ ଖୁବ୍ ଲୋକପ୍ରିୟ । ହେବେ ନାହିଁ ବା କେମିତି ? ସେ ତ ଏମିତି ସେମିତି କୌଳିକ ପରମ୍ପରାର ଦାୟାଦ ନୁହନ୍ତି । ସେ ସୁଦୂର ଅତୀତର ପାଞ୍ଚାଳରାଜ ପ୍ରବାହଣଙ୍କ ଦାୟାଦ ଯେ ଥିଲେ ଆର୍ଯ୍ୟାବର୍ତ୍ତର ପ୍ରଥମ ବ୍ରହ୍ମବିତ୍ ଓ ଯାହାଙ୍କଠାରୁ ଋଷି ଶ୍ୱେତକେତୁ ଆହରଣ କରିଥିଲେ ବ୍ରହ୍ମବିଦ୍ୟା । ମୁଁ ଯାହା ଶୁଣିଛି ଏବଂ ପୁଣି ଯାହା ସ୍ୱଚକ୍ଷୁରେ ଦେଖୁଛି, ରାଜା ଦ୍ରୁପଦ କେବଳ ଜଣେ ଶାସକ ନୁହନ୍ତି । ସେ ବି ପ୍ରଜାମାନଙ୍କ ଭଳି ଶାସିତ । ରାଜଦଣ୍ଡଦ୍ୱାରା ନୁହେଁ ବରଂ ରାଜଧର୍ମଦ୍ୱାରା । ସେ ପ୍ରଜାମାନଙ୍କ ପ୍ରଭୁ କେବଳ ହୁଅନ୍ତି । ସେମାନଙ୍କ ଦାସ ବି । ତାଙ୍କ ପ୍ରଜାପ୍ରୀତିର ନିଦର୍ଶନ ତ ଆମ ରଥ ଚାଲୁଥିବା ରାସ୍ତାର ଦୁଇ ପାଖରେ ଦେଖିଆସିଛି । ପ୍ରଜାମାନଙ୍କ କ୍ଷେତ୍ରମାନ ରାଜାଙ୍କ ଦ୍ୱାରା ନିର୍ମିତ ପୟଃପ୍ରଣାଳୀଗୁଡ଼ିକ ଦ୍ୱାରା ସମାସ୍ତୀର୍ଣ୍ଣ । ଠିକ୍ ଜାଲଦ୍ୱାରା ଯେମିତି । ଟାଖଣ୍ଡେ ହେଲେ କ୍ଷେତ୍ର ବି ଖାଲି ପଡ଼ି ନାହିଁ । ସର୍ବତ୍ର ହସୁଛି ଶ୍ୟାମଳ ଶସ୍ୟ । ରାଜା ଓ ପ୍ରଜାଙ୍କ ସମନ୍ୱିତ ଉଦ୍ୟମର ଫଳଶ୍ରୁତି । ପ୍ରତ୍ୟେକଟି କ୍ଷେତ୍ରରେ ଶୋଭିତ ସେହି ଯଜ୍ଞର ଶ୍ୟାମ ହୋମାନଳ ଯେମିତି । ସେଭଳି ରାଜା ଧନାଢ଼୍ୟ ହେବେ ନାହିଁ ବା କେମିତି ? ସେଭଳି ରାଜାଙ୍କ ପ୍ରଜାମାନେ ସମୃଦ୍ଧ ହେବେ ନାହିଁ ବା କେମିତି ? ପ୍ରଜାମାନେ ଆଜି ରାଜକୁମାରୀ ଦ୍ରୌପଦୀଙ୍କୁ କେବଳ ରାଜକୁମାରୀ ବୋଲି ଦେଖୁ ନାହାନ୍ତି । ଦେଖୁଛନ୍ତି ବି ନିଜ ଭଗିନୀ ଭାବରେ । ସେହି ଚିନ୍ତା ଓ ଚେତନାରେ ପରିସ୍ନାତ ହୋଇ ନିଜକୁ ଉତ୍ସର୍ଗ କରିଦେଇଛନ୍ତି ତାଙ୍କ ସ୍ୱୟଂବରକୁ ସଫଳ କରାଇବାରେ । ଶାସକ-ଶାସିତଙ୍କ ଦ୍ୱାରା କର୍ମର ଏଇ ଯେଉଁ ମହାଯଜ୍ଞଟି ଏଠାରେ ଅନୁଷ୍ଠିତ ହେଉଛି, ଏହା କେତେ ସୁମହାନ୍ ସତେ ! ପୁଣି କେତେ ଶିକ୍ଷଣୀୟ ବି !!

ବହୁତ କିଛି ଜ୍ଞାନଲାଭ ହେଲା ମୋର ଏଥିରୁ । ମନେ ମନେ ପ୍ରତିଜ୍ଞା କଲି, ମୁଁ ମଧ୍ୟ ଅଙ୍ଗରାଜ୍ୟରେ ଏହିପରି ପ୍ରଜାହିତକର କାର୍ଯ୍ୟମାନ କରିବି । ନିଜକୁ ସେମାନଙ୍କ ସେବାରେ

କରିବି ଉତ୍ସର୍ଗୀକୃତ । ସେମାନଙ୍କ ପ୍ରଭୁ ନୁହେଁ, ଦାସ ହୋଇ ଚଳିବି । ସାରା ଜୀବନ ଖାଲି ଦେଇ ହିଁ ଚାଲିବି ।

ଏତିକିବେଳେ ହଠାତ୍ ଅଟକିଗଲା ଆମ ରଥ । ମୋ' ଚିନ୍ତା ବି ଅଟକିଗଲା ସେଇଠି । ସାରଥି ରଥରୁ ଓହ୍ଲାଇପଡ଼ି ଅବନତ ଶିରରେ କହିଲେ, ''ଅତିଥିଶାଳା ହୋଇଗଲା । ଏଥରକ ଓହ୍ଲାନ୍ତୁ ଦୟା କରି ।''

ଆମେ ରଥରୁ ଓହ୍ଲାଇଲୁ । ସୂର୍ଯ୍ୟ ସେତେବେଳକୁ ଅସ୍ତପ୍ରାୟ । ସେହି ରାତ୍ରିଟି ସେଠାରେ ବିଶ୍ରାମ ନେଲୁ । ଉଦଗ୍ର ଉତ୍କଣ୍ଠା ନେଇ ଅପେକ୍ଷା କରି ରହିଲୁ ପର ଦିନ ହେବାକୁ ଥିବା ସ୍ୱୟଂବରସଭାରେ ଯୋଗ ଦେବା ଲାଗି ।

## ପଞ୍ଚଚାଳିଶ

ପରଦିନ ଯଥାସମୟରେ ଆରମ୍ଭ ହେଲା ସ୍ୱୟଂବରସଭା । ବଡ଼ ସୁନ୍ଦର ଆକାରରେ ଗଢ଼ାଯାଇଥାଏ ସଭାଟି । ଶିଶୁମାର ଆକୃତିରେ ସଜ୍ଜିତ । ରାଜା, ମହାରାଜା, ରାଜକୁମାର ଓ ଅନ୍ୟାନ୍ୟ କ୍ଷତ୍ରିୟକୁମାରମାନଙ୍କ ପାଇଁ ପୃଥକ୍ ପୃଥକ୍ ଆସନ । ଋଷି-ବ୍ରାହ୍ମଣମାନେ ଓ କେତେକ ମାନ୍ୟଗଣ୍ୟ ନାଗରିକ ମଧ ଉପସ୍ଥିତ ନିମନ୍ତ୍ରିତ ବ୍ୟକ୍ତି ଭାବରେ । ସେମାନଙ୍କ ପାଇଁ ମଧ ପୃଥକ୍ ପୃଥକ୍ ଆସନ । ସେମାନେ କେବଳ ପରିଦର୍ଶକ । ରାଜଧାନୀର ଐଶାନ୍ୟ କୋଣରେ ସୁନ୍ଦର ସମତଳ ଭୂମିଟିଏ ଦେଖି ସ୍ୱୟଂବରସଭାର ମଣ୍ଡପଟି ନିର୍ମିତ । ଚାରିଦିଗରେ ଚାରୋଟି ତୋରଣ । ମୁଖ୍ୟ ପ୍ରବେଶପଥକୁ ସଜ୍ଜିତ କରାଯାଇଥାଏ ଏକ ବିଶିଷ୍ଟ ତୋରଣରେ । ମଣ୍ଡପର ଗୋଟିଏ କୋଣରେ ବାଦ୍ୟକାରମାନେ ଥାଇ ତୋଳୁଥାନ୍ତି ବିଭିନ୍ନ ବାଦ୍ୟର ଝଙ୍କାର । ସମଗ୍ର ମଣ୍ଡପଟି ମହକି ଉଠୁଥାଏ ବିଚିତ୍ର ସୁଗନ୍ଧରେ । ଚାରିଆଡ଼େ ଏକ ମନୋମୁଗ୍ଧକର ପରିବେଶ । ସ୍ୱର୍ଗର ସୁଧର୍ମା ସଭା ଯେମିତି ।

ଆମେ ଯାଇ ଆମ ପାଇଁ ନିର୍ଦ୍ଦିଷ୍ଟ ଆସନରେ ବସିଲୁ ।

ପୂର୍ବରୁ ଅନେକ ନିମନ୍ତ୍ରିତ ରାଜା-ରାଜକୁମାର ଆସିଯାଇଥାନ୍ତି । ଆଉ କେତେକ ଏବେ ବି ଆସୁଥାନ୍ତି । ରାଜା ଦ୍ରୁପଦଙ୍କ ଉଦ୍‌ଘୋଷଣାର ସମୟ ଯେତେ ପାଖେଇ ଆସୁଥାଏ, ଲୋକଗହଳି ସେତେ ଅଧିକରୁ ଅଧିକ ଜମି ଉଠୁଥାଏ । ଆଖି ପକାଇ ଆଣିଲି ରାଜନ୍ୟମଣ୍ଡଳୀ ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନଗୁଡ଼ିକ ପ୍ରତି । ଅଧିକାଂଶ ଆସନ ଅଧିକୃତ । ସମସ୍ତ ରାଜା-ରାଜକୁମାର ନିଜ ନିଜ ବସ୍ତ୍ରାଭୂଷଣଗୁଡ଼ିକୁ ବାରମ୍ବାର ଦେଖୁଥାନ୍ତି । ସମସ୍ତଙ୍କର ଥାଏ ନିଜ ବଳ ନେଇ ଅଭିମାନ । ରୂପ, ପରାକ୍ରମ, କୁଳ, ଶୀଳ, ଧନ ଓ ଯୌବନ ନେଇ ବି ଅଭିମାନ । ସମସ୍ତେ ନିଜ ନିଜ ସ୍ୱେଦବିନ୍ଦୁଟିମାନ ବାରମ୍ବାର ପୋଛିବାରେ ବ୍ୟସ୍ତ । ପ୍ରୌଢ଼ ଓ ବୃଦ୍ଧ ରାଜାମାନଙ୍କ ଆଚରଣ ଦେଖି ମତେ ଆହୁରି ହସ ଲାଗୁଥାଏ । ମାତୁଳ ଶକୁନି କିଛି କମ୍ ନୁହନ୍ତି । ତାଙ୍କ ଯୁବକ ପୁତ୍ରମାନେ ସ୍ୱୟଂବରସଭାକୁ ଆସିଥାନ୍ତି । ଏଣେ ସେ ବି ଆସିଥାନ୍ତି ନିଜେ । ପୁଣି ନିର୍ଲଜ ଭଳି ଏମିତି ଯୁବକର ଅଭିନୟ

କରୁଥାନ୍ତି । ମିତ୍ର ଦୁର୍ଯ୍ୟୋଧନ ମତେ ତାଙ୍କ ଆଚରଣକୁ ଲକ୍ଷ୍ୟ କରିବାପାଇଁ ବାରମ୍ବାର କହୁଥାନ୍ତି ବିନୋଦରେ । ଖୁବ୍ କୌତୁକାବହ ଦୃଶ୍ୟ । କେବଳ ଦୁଇଜଣଙ୍କୁ ଲକ୍ଷ୍ୟ କଲି ଯେଉଁ ଦୁହେଁ ଥାନ୍ତି ଅଚଞ୍ଚଳ ଓ ଗମ୍ଭୀର । ଜଣେ ବଳରାମ ଓ ଅପର ଜଣକ ଦ୍ୱାରିକାଧୀଶ କୃଷ୍ଣ । ମୁଁ ସେ ଦୁହିଁଙ୍କୁ ପୂର୍ବରୁ ଦେଖି ନ ଥିଲି । କେବଳ ନାଁ ଶୁଣିଥିଲି । ଦୁର୍ଯ୍ୟୋଧନ ମତେ ସଭାମଣ୍ଡପରେ ଚିହ୍ନାଇ ଦେଇଥିଲେ ଦୂରରୁ । ଲକ୍ଷ୍ୟ କଲି କୃଷ୍ଣଙ୍କ ମୁଖକୁ । ଉଚ୍ଚାଧରରେ ମୃଦୁ ମୃଦୁ ହସ । କେଉଁ ରହସ୍ୟର ସଂକେତ ବହନ କରୁଛି କିଏ କହିବ ? ଆଉ ବି ଲକ୍ଷ୍ୟ କଲି ସେ ବାରମ୍ବାର ଚାହୁଁଥାନ୍ତି ଋଷି-ବ୍ରାହ୍ମଣମଣ୍ଡଳୀରେ ବସିଥିବା ଆଉ ଜଣେ ଶ୍ୟାମଳ ବର୍ଣ୍ଣର ବ୍ରାହ୍ମଣଙ୍କୁ । ଆଖିର ସଂକେତରେ ବହୁତ କିଛି କଥାବାର୍ତ୍ତା ହେଉଥାନ୍ତି ସେ ଦୁହେଁ । ମୁଁ କିଛିହେଲେ ବୁଝିପାରୁ ନ ଥାଏ ଏଇ ରହସ୍ୟ । ତାହା ବିଷୟରେ ଚିନ୍ତା କରିବାର ଅବକାଶ ହିଁ ନ ଥାଏ । କାରଣ ଦ୍ରୁତଗତିରେ ଗୋଟିକ ପରେ ଗୋଟିଏ କରି ଘଟଣା ଏଣେ ଘଟିଯାଉଥାଏ ସ୍ୱୟଂବରକୁ ନେଇ । ସତର୍କ, ସଜାଗ ହେବାକୁ ପଡୁଥାଏ ନିଜ ସ୍ଥିତିକୁ ନେଇ ।

ରାଜା ଦ୍ରୁପଦ ଆସିଗଲେ । ସାଥିରେ ରାଜପୁରୋହିତ ଓ ପାତ୍ରମନ୍ତ୍ରିଗଣ । ସଭାମଣ୍ଡପରେ ହଠାତ୍ ନୀରବତାର ଅବତରଣ । ସମସ୍ତେ ନିଜ ନିଜ ଆସନରେ ବସିବା ଉତ୍ତାରୁ ସେ ଉଦ୍‌ଘୋଷଣା କରି କହିଲେ, ''ହେ ମାନ୍ୟଗଣ୍ୟ ଆମନ୍ତ୍ରିତ ରାଜନ୍ୟଗଣ ଓ ଅନ୍ୟାନ୍ୟ ଅତିଥିଗଣ ! ମୋର କନ୍ୟା ଯାଜ୍ଞସେନୀଙ୍କ ସ୍ୱୟଂବରସଭାରେ ଆପଣମାନଙ୍କୁ ସମସ୍ତଙ୍କୁ ସ୍ୱାଗତ କରୁଛି । ଏହି ସଭାରେ ମୋ' ପୁତ୍ରୀଙ୍କୁ ପାଇବାଲାଗି ଯେଉଁ କନ୍ୟାଶୁଳ୍କ ଆଗରୁ ସ୍ଥିର ହୋଇଛି ତାହା ଏବେ କହୁଛି । ତାହାକୁ ଯେଉଁ ବୀରପୁରୁଷ ପୂରଣ କରିବେ, ତାଙ୍କ କଣ୍ଠରେ ମୋ' ପୁତ୍ରୀ ବରଣମାଳା ଦେବେ । ଏଥିପାଇଁ ରଖାଯାଇଥିବା ପଣଟି ହେଲା– ସମସ୍ତଙ୍କ ଆଗରେ ମଣ୍ଡପର ଛାତରେ ଗୋଟିଏ ମତ୍ସ୍ୟଯନ୍ତ୍ର ରଖାଯାଇଛି । ତାହାର ଘୂରିବାର କ୍ଷମତା ଅଛି । ଲକ୍ଷ୍ୟବେଧ ବେଳ ଆସିଲେ ତାହାକୁ କୁଶଳ ଶିଳ୍ପୀ ଜଣେ ଘୂରାଇଦେବେ । ସେହି ଯନ୍ତ୍ର ଉପରେ ଗୋଟିଏ କାଷ୍ଠନିର୍ମିତ ମତ୍ସ୍ୟ ଅଛି ସ୍ଥିର ଭାବରେ । ମତ୍ସ୍ୟଯନ୍ତ୍ରର ତଳେ ରଖାଯାଇଛି ତୈଳପୂର୍ଣ୍ଣ କୁଣ୍ଡଟିଏ । ତହିଁରେ ଯନ୍ତ୍ରସମେତ ମତ୍ସ୍ୟର ପ୍ରତିବିମ୍ବ ପଡୁଛି । ପାଖରେ ରଖାଯାଇଛି ଗୋଟିଏ ଧନୁ ଓ ସୂଚୀବାଣରେ ପରିପୂର୍ଣ୍ଣ ଗୋଟିଏ ତୂଣୀର । ଯେଉଁ ବୀର ମତ୍ସ୍ୟର ପ୍ରତିବିମ୍ବକୁ ଦେଖି ତାହାର ଦକ୍ଷିଣଚକ୍ଷୁଟିକୁ ଗୋଟିଏ ସୂଚୀବାଣରେ ରଖାଯାଇଥିବା ଧନୁର ଗୁଣକୁ ଟାଣି ଯନ୍ତ୍ରର ଛିଦ୍ର ମଧ୍ୟ ଦେଇ ବିନ୍ଧିଦେଇପାରିବେ, ସେ ମୋ' ପୁତ୍ରୀଙ୍କୁ ପତ୍ନୀରୂପରେ ପାଇପାରିବେ । ଏହା ମୁଁ ତ୍ରିବାର ସତ୍ୟ କରି କହୁଛି ।''

ଏହା କହି ସେ ଆସନ ଗ୍ରହଣ କଲେ । କରତାଳି ଉପରେ କରତାଳିର ବୃଷ୍ଟି । ଏହି ଶୁଭ ଉଦ୍‌ଘୋଷଣାକୁ ସମସ୍ତେ ସାଦରେ ଦେଲେ ସ୍ୱୀକୃତି ।

''ମୋ' ପୁତ୍ର ଧୃଷ୍ଟଦ୍ୟୁମ୍ନ ଏବେ ତାଙ୍କ ଭଗିନୀ କୃଷ୍ଣାଙ୍କୁ ସାଥିରେ ଧରି ସ୍ୱୟଂବରସଭାକୁ ଆସନ୍ତୁ ।'' ତାହା ପରେ ଗମ୍ଭୀର କଣ୍ଠରେ ଆଦେଶ ଦେଲେ ରାଜା ।

ଯେଉଁ ପଥ ଦେଇ ରାଜପରିବାରର ଲୋକମାନେ ସଭାମଣ୍ଡପକୁ ଆସୁଥାନ୍ତି, ସେହି ଦିଗକୁ ଟାଣି ହୋଇଗଲା ସମସ୍ତଙ୍କ ସତୃଷ୍ଣ ଦୃଷ୍ଟି । ପ୍ରଥମ ପ୍ରବେଶରେ ହିଁ କୃଷ୍ଣାଙ୍କୁ ଦେଖିବେ । ମୁହୂର୍ତ୍ତକ ମଧ୍ୟରେ ବୀର ଭ୍ରାତା ଧୃଷ୍ଟଦ୍ୟୁମ୍ନଙ୍କ ସହିତ ମଣ୍ଡପ ମଧ୍ୟରେ ପ୍ରବେଶ କଲେ କୃଷ୍ଣା । ଚାରିଆଡ଼େ ଉତ୍ସୁକତାରେ ଭରପୂର ନୀରବ ଶାନ୍ତି । କାରଣ ହାତରେ ବରଣମାଳା ଧରି ତନ୍ୱୀ ତରୁଣୀ ପାଞ୍ଚାଳୀ ଏବେ ଆସିଗଲେ । ଧୀର ଧୀର ଚାଲି । ମୁଖମଣ୍ଡଳ ସ୍ତୋକ ନମ୍ର ଉଭୟ ଲଜ୍ଜାରେ ଓ ଯୌବନର ଭାରରେ । ଅଙ୍ଗେ ଅଙ୍ଗେ ଲାବଣ୍ୟର ଲହରୀ । ମହାର୍ଘ ବସ୍ତ୍ରାଭୂଷଣର ତୁଳନା ହିଁ ନାହିଁ । ପ୍ରତିଟି ଅଙ୍ଗ-ପ୍ରତ୍ୟଙ୍ଗ ନିଜ ନିଜ ମଧ୍ୟରେ ସୌନ୍ଦର୍ଯ୍ୟ ନେଇ ପ୍ରତିଯୋଗିତା କରୁଛନ୍ତି ଯେମିତି । ଶ୍ୟାମାଙ୍ଗୀ ହେଲେ କ'ଣ ହେଲା, କୃଷ୍ଣା ଦିଶୁଥାନ୍ତି ସତେଯେମିତି ସକଳ ସୁନ୍ଦରତାର ଏକ ପ୍ରମୂର୍ତ୍ତି ବିଗ୍ରହ । ଅଥବା ଧୂସର ପ୍ରାନ୍ତର ବୁକୁ ଚିରି ବହିଯାଉଥିବା ନୀଳବେଣୀରେ ଛଳ ଛଳ ତଟିନୀଟିଏ ଯେମିତି । କିମ୍ବା ବସନ୍ତଋତୁର ମୌନ ଆକର୍ଷଣ ସଂଧ୍ୟା ଯେମିତି । ସରସତାରେ ଟଳ ମଳ ! କୋମଳତାରେ ଛଳ ଛଳ ! ମଧୁରିମାରେ ଢଳ ଢଳ ! ସୁଦୀର୍ଘ କମଳପୁଷ୍ପର ବରଣମାଳାଟି ଆଣ୍ଠୁ ପର୍ଯ୍ୟନ୍ତ ପ୍ରଲମ୍ବିତ । ତାହାକୁ ଧରି ଧୀରେ ଆଗେଇ ଆସୁଥାନ୍ତି ସେ କାମନାଦଗ୍ଧ ରାଜନ୍ୟବର୍ଗଙ୍କ ହୃଦୟ-ସରୋବରରେ ଶତ ଶତ ଆଶାର କମଳପୁଷ୍ପ ଫୁଟାଇ ଫୁଟାଇ ! ପ୍ରକୃତରେ କୃଷ୍ଣା ହୋଇଉଠିଥାନ୍ତି ବିଚିତ୍ର ଭାବରେ ନୀରବ-ମୁଖର । ତାଙ୍କ ନୀରବ ଚାହାଣିରେ ସେ କେତେ ଯେ କଥା କହିଯାଉଥାନ୍ତି, ତାହା କେବଳ ବୁଝିପାରୁଥାନ୍ତି ତାଙ୍କୁ ପାଇବାପାଇଁ ଉତ୍ସୁକ ଥିବା ବୀର ପୁରୁଷବୃନ୍ଦ ।

ସମସ୍ତ ରାଜନ୍ୟବୃନ୍ଦ ପୁଣି ଥରେ ନିଜ ଅଙ୍ଗପ୍ରତ୍ୟଙ୍ଗ, ବସ୍ତ୍ରାଭୂଷଣ ଆଦିକୁ ପରୀକ୍ଷା କରିନେଲେ । ପ୍ରତ୍ୟେକ ଚାହିଁଲେ ଜଣେ ଜଣେ ଆକର୍ଷକ ମୂର୍ତ୍ତି ହେବାପାଇଁ । କୃଷ୍ଣାଙ୍କ ଦୃଷ୍ଟି ନିଜ ଆଡ଼କୁ ଫେରାଇ ଆଣିବାପାଇଁ । ମୁଗ୍ଧ କୋକିଳ କୋକିଳାର ସାନ୍ନିଧ ପାଇଁ ଉଦଗ୍ର ଯେମିତି ! ଯୁବକଠାରୁ ବୃଦ୍ଧ ରାଜନ୍ୟବର୍ଗଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣମନରେ କାମନାର ଜ୍ୱାଳା !

ଧୃଷ୍ଟଦ୍ୟୁମ୍ନ କ୍ରମାନ୍ୱୟରେ ଜଣ ଜଣ କରି ପରିଚିତ କରାଇଦେଲେ ଭଗିନୀ କୃଷ୍ଣାଙ୍କୁ ଅପେକ୍ଷମାଣ ବୀର ଅତିଥିମାନଙ୍କ ସହିତ । କୃଷ୍ଣା ମୃଦୁ ମୃଦୁ ହସି ସମସ୍ତଙ୍କୁ ସ୍ୱାଗତ ଜଣାଇଲେ ।

ତାହା ପରେ ଆରମ୍ଭ ହେଲା ବହୁ ପ୍ରତୀକ୍ଷିତ ଲକ୍ଷ୍ୟବେଧ କାର୍ଯ୍ୟକ୍ରମ । ରାଜନ୍ୟମଣ୍ଡଳୀ ନିଜ ନିଜ ନିଶ ସାଉଁଳିବାକୁ ଲାଗିଲେ । ଦକ୍ଷିଣକରକୁ କରିବାକୁ ଲାଗିଲେ ମୁଷ୍ଟିବଦ୍ଧ । ଛାତି ଫୁଲାଇବାକୁ ଲାଗିଲେ । ନିଜ ବଳ ପରାକ୍ରମ ନେଇ ଗର୍ବିତ ହେବାକୁ ଲାଗିଲେ । ଏହାଦ୍ୱାରା ପ୍ରକୃତ ଲକ୍ଷ୍ୟବେଧ ପୂର୍ବରୁ ନିଜ ବଳପରାକ୍ରମକୁ ନେଇ ସାହସ ସଞ୍ଚୟ କରିବାକୁ ଚାହୁଁଥିଲେ ।

ଧୃଷ୍ଟଦ୍ୟୁମ୍ନଙ୍କ ଆଦେଶରେ ମତ୍ସ୍ୟଯନ୍ତ୍ରଟିକୁ ଜଣେ କୁଶଳୀ ଶିଳ୍ପୀ ଘୂରାଇଦେଲେ । ଚକ୍ର ଭଳି ତାହା ଘୂରିବାକୁ ଲାଗିଲା ଘର୍ଘର ନାଦରେ । କାଷ୍ଠର ମତ୍ସ୍ୟଟି ଯନ୍ତ୍ର ସହିତ ତୈଳ କୁଣ୍ଡରେ ପ୍ରତିବିମ୍ବିତ ହେଉଛି କି ନାହିଁ ତାହା ପରୀକ୍ଷା କରିନିଆଗଲା । ସବୁ ଠିକ୍ ଅଛି

ବୋଲି ଶିକ୍ଷୀଜଣକ ସଂକେତ ଦେବା ମାତ୍ରେ ଧୃଷ୍ଟଦ୍ୟୁମ୍ନ ଜଣ ଜଣ କରି ବୀରମାନଙ୍କୁ ଆହ୍ୱାନ କଲେ ନିଜ ବୀରତ୍ୱ ପ୍ରଦର୍ଶନ ନିମିତ୍ତ । ଦୁର୍ଯ୍ୟୋଧନ, ଶାଲ୍ୱ, ଶଲ୍ୟ, କ୍ରାଥ, ସୁନୀଥ, ବକ୍ର, ଶିଶୁପାଳ, କଳିଙ୍ଗରାଜ, ବଙ୍ଗରାଜ, ପାଣ୍ଡ୍ୟରାଜ, ପୌଣ୍ଡ୍ରରାଜ, ବିଦେହରାଜ ଆଦି ଅନେକ ବୀର ଆସିଲେ । କିନ୍ତୁ ଲକ୍ଷ୍ୟବେଧ କରିବାରେ ହେଲେ ଅସମର୍ଥ । କିଏ ଧନୁକୁ ଟେକିପାରିଲେ ନାହିଁ ତ କିଏ ତାହାକୁ ଟେକି ମଧ ତହିଁରେ ଗୁଣ ଚଢ଼ାଇବାକୁ ହେଲେ ଅସମର୍ଥ । ଆଉ କେହି କେହି ଧନୁକୁ ଟେକୁ ଟେକୁ ଆଣ୍ଠୁମାଡ଼ି ପଡ଼ିଲେ । ପୁଣି କେତେକ ଗୁଣ ଚଢ଼ାଇ ମଧ ମତ୍ସ୍ୟଟିର ଦକ୍ଷିଣଚକ୍ଷୁକୁ ଭେଦ କରିବାରେ ହେଲେ ଅସମର୍ଥ । ସମସ୍ତେ ମୁଣ୍ଡ ତଳକୁ କରି ଫେରିଆସିଲେ । ମଗଧରାଜ ଜରାସନ୍ଧ ଅତି ଶୌର୍ଯ୍ୟସମ୍ପନ୍ନ ନୃପତି । ସାରା ଆର୍ଯ୍ୟାବର୍ତ୍ତ ତାଙ୍କ ଭୟରେ ଥରହର । ଅସୁରରାଜ କଂସଙ୍କ ଶ୍ୱଶୁର । ତାଙ୍କ ଜାମାତାଙ୍କ ହତ୍ୟାକାରୀ କୃଷ୍ଣଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଅନେକ ବାର ଆକ୍ରମଣ କରିଥିଲେ ମଥୁରାକୁ । କୃଷ୍ଣଙ୍କ ଭଳି ଜଣେ ପରାକ୍ରମୀ ବୀର ତାଙ୍କ ଭୟରେ ରାଜ୍ୟ ଛାଡ଼ି ଏବେ ଦ୍ୱାରିକାରେ ଯାଇ ନୂତନ ରାଜ୍ୟ ପ୍ରତିଷ୍ଠା କରି ରହୁଛନ୍ତି । ସେହି ଜରାସନ୍ଧ ଯେତେବେଳେ ଲକ୍ଷ୍ୟବେଧ କରିବାକୁ ଉଠିଲେ, ସେତେବେଳେ ସମସ୍ତେ ମାରିଲେ କରତାଳି । ସମସ୍ତଙ୍କ ଦୃଢ଼ ଧାରଣା ଯେ ନିଶ୍ଚୟ ଲକ୍ଷ୍ୟବେଧରେ ହେବେ ସମର୍ଥ । କିନ୍ତୁ ଫଳ ହେଲା ବିପରୀତ । ସେ ଧନୁଟିକୁ ବାମ ହସ୍ତରେ ଟେକି ଧରିଥିବା ଅବସ୍ଥାରେ ହିଁ ତଳେ ପଡ଼ିଗଲେ । ତାହାର ଭାର ସହିପାରିଲେ ନାହିଁ । ମୁଁ ମଧ ଆଶ୍ଚର୍ଯ୍ୟ ହୋଇଗଲି ତାଙ୍କ ବିଫଳତା ଦେଖି । ମାତୁଳ ଶକୁନି ସହଜରେ ଉଠୁ ନ ଥିଲେ । ଏତେ ଏତେ ବୀରଙ୍କ ବିଫଳତା ଦେଖି ସମ୍ଭବତଃ ଭୟ ପାଇଯାଇଥିଲେ । ଦୁର୍ଯ୍ୟୋଧନ ବାଧ କରିବାରୁ ଉଠିଲେ । କିନ୍ତୁ ଅଧାବାଟରୁ ଫେରିଆସି ନିଜ ଆସନରେ ମୁହଁ ପୋତି ବସିଗଲେ । ଦୁର୍ଯ୍ୟୋଧନ ପଚାରିଲେ ତାଙ୍କୁ ଧୀର କଣ୍ଠରେ ବିନୋଦରେ, ‘‘ମାମୁ ! ଅଧାବାଟରୁ ଫେରିଆସିଲେ କାହିଁକି ?’’

‘‘ଫେରନ୍ତି ନାହିଁ ? ଏଇ ଦେଖିଲ ନାହିଁ ଭଣଜା, ଜରାସନ୍ଧଙ୍କ ଭଳି ବୀର କେମିତି ଧନୁ ଟେକୁ ଟେକୁ ପଡ଼ିଗଲେ । ମୋର ତ ଗୋଟିଏ ଗୋଡ଼ ସାମାନ୍ୟ ଖଞ୍ଜ । ମୁଁ ଯଦି ପଡ଼ିଯାଇଥାନ୍ତି, ଆଉ ଗୋଡ଼ଟି ରହିଥାନ୍ତା କି ନାହିଁ ସନ୍ଦେହ ।’’

ଦୁର୍ଯ୍ୟୋଧନ ହସିଲେ ମୃଦୁ ମୃଦୁ । ମୁଁ ମଧ ଅନୁରୂପ ଭାବରେ ହସିଲି ।

ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା ମତେ ଆଉ ଜଣଙ୍କର ବିଫଳତା ଦେଖି । ସେ ହେଉଛନ୍ତି ଆଚାର୍ଯ୍ୟପୁତ୍ର ଅଶ୍ୱତ୍ଥାମା । ସକଳ ଶସ୍ତ୍ର ଓ ଶାସ୍ତ୍ରରେ ବିଦ୍ୱାନ୍ ସେ । ଜଣେ ବ୍ରହ୍ମଜ୍ଞାନୀ ବ୍ରାହ୍ମଣ । ଦ୍ରୋଣାଚାର୍ଯ୍ୟଙ୍କ ଭଳି ପିତାଙ୍କଠାରୁ ପାଇଛନ୍ତି ଶସ୍ତ୍ରବିଦ୍ୟା ସଂପର୍କରେ ଉତ୍ତମ ଶିକ୍ଷା । ପିତା ପୁଣି ତାଙ୍କୁ ଜଗତର ଶ୍ରେଷ୍ଠ ବୀର ଭାବରେ ଠିଆ କରାଇବା ପାଇଁ ଦେଇଛନ୍ତି ବିଶେଷ ଅସ୍ତ୍ରଶିକ୍ଷା । ସେ ପୁଣି ଲକ୍ଷ୍ୟବେଧରେ ହେଲେ ବିଫଳ ! ମତେ ଯେତିକି ଆଶ୍ଚର୍ଯ୍ୟ ଲାଗୁଥାଏ, ତାହାଠାରୁ ଅଧିକ ଲାଗୁଥାଏ ଦୁଃଖ । ଦୁର୍ଯ୍ୟୋଧନଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ଗଲେ ଧନୁମଣ୍ଡପ ନିକଟକୁ । କ୍ଷତ୍ରିୟ ନ ଥିଲେ ବି ତାଙ୍କପାଇଁ ଲକ୍ଷ୍ୟବେଧରେ କିଛି ବାରଣ ନ ଥିଲା । କାରଣ ସେ ଜଣେ ମହାବୀର ନାମରେ ଥିଲେ ପରିଚିତ । ଦ୍ୱିତୀୟରେ

ବ୍ରାହ୍ମଣ ବି । ଭରଦ୍ୱାଜ ଋଷିଙ୍କ କୁଳରେ ଜନ୍ମ । ତାଙ୍କ ପକ୍ଷରେ ଅନୁଲୋମ ବିବାହ ମାଧ୍ୟମରେ କ୍ଷତ୍ରିୟକନ୍ୟା ଗ୍ରହଣ କରିବାରେ କିଛି ହିଁ ନ ଥିଲା ସାମାଜିକ ବାଧା । ତେଣୁ ତାଙ୍କ ପାଇଁ କେହି ଆପତ୍ତି ଉଠାଇ ନ ଥିଲେ । ସେ ଖୁବ୍ ବୀରଦର୍ପରେ ଗଲେ । ଦୁଇ ହସ୍ତର ବଳଦେଇ ଧନୁଟିକୁ କୌଣସିମତେ ଟେକିଲେ । ବହୁ କଷ୍ଟରେ ତହିଁରେ ଗୁଣ ଚଢ଼ାଇଲେ । କିନ୍ତୁ ବାମ ହସ୍ତରେ ତାହାକୁ ଟେକିପାରିଲେ ନାହିଁ । ଶରସନ୍ଧାନ କରିବା ତ ଦୂରର କଥା । ଲାଜରେ ମୁଣ୍ଡ ପୋତି ଫେରିଆସିଲେ ।

ଦୁର୍ଯ୍ୟୋଧନଙ୍କର ଇଚ୍ଛା, ସେ ନିଜେ ଯେତେବେଳେ ବିଫଳ ହୋଇଛନ୍ତି ଲକ୍ଷ୍ୟବେଧରେ, ସେତେବେଳେ ତାଙ୍କର କେହି ଜଣେ ନିଜ ଲୋକ ହେଲେ ଏଥିରେ ସଫଳ ହୁଅନ୍ତୁ । ତା' ହେଲେ ସେ ଟିକିଏ ସଫଳତାର ଆନନ୍ଦ ପାଇପାରିବେ । ସିଦ୍ଧିଲାଭର ହସ ହସିପାରିବେ । ଏ ଉଦାରତା ଅବଶ୍ୟ ଥିଲା ତାଙ୍କ ପାଖରେ । ସେ ତେଣୁ ମତେ ସଂକେତ ଦେଲେ ଯିବାପାଇଁ । ଏହି ଲକ୍ଷ୍ୟବେଧ ଅବଶ୍ୟ ମୋ' ପାଇଁ କଠିନ ନ ଥିଲା । ସ୍ଥିରନିଶ୍ଚୟ ଥିଲି ଯେ ଏଥିରେ ସଫଳ ହେବି । କିନ୍ତୁ ମନରେ ସମାନ୍ୟ ଟିକିଏ ଦ୍ୱିଧାଭାବ । ତାହା ମୋ' କୁଳକୁ ନେଇ । ମୁଁ ସୂତପୁତ୍ର । ଏ କଥା ସମସ୍ତେ ଜାଣନ୍ତି । ଅଙ୍ଗରାଜ ହୋଇଥିଲେ ବି ସୂତପୁତ୍ରର କାଳିମା ଲିଭି ନାହିଁ ମୋ'ଠାରୁ । ସେଥିପାଇଁ ତ କୌଣସି କ୍ଷତ୍ରିୟରାଜା କନ୍ୟାଦାନ କରି ନାହାନ୍ତି ମତେ । ଏଠାରେ ଏଇ ଭରା ସଭାରେ କେହି ଯଦି ସେହି ଆପତ୍ତି ଉଠାନ୍ତି ? ତା'ହେଲେ ମୋ' ମୁଣ୍ଡ ଆଉ ରହିବ ? ଆଉ କ'ଣ ମୁଣ୍ଡ ଟେକି ବାଟ ଚାଲିପାରିବି ? ଅଙ୍ଗରାଜସିଂହାସନରେ ବସି ରାଜାଭିମାନରେ ଆଦେଶ ଦେଇପାରିବି ? ଦ୍ୱନ୍ଦ୍ୱଜଡ଼ିତ ଚିତ୍ତମନ ନେଇ ଆସନରୁ ଉଠିଲି । କିଛି ସମୟ ପାଇଁ ଅପେକ୍ଷା କରି ଠିଆହେଲି କୌଣସି ପ୍ରତିବାଦସ୍ୱରକୁ ଅପେକ୍ଷା କରି । କୌଣସିଠାରୁ କିଛି ପ୍ରତିବାଦ ନାହିଁ । ଏପରି କି ସ୍ୱୟଂ ପାଞ୍ଚାଳରାଜଙ୍କର ବି ନାହିଁ । ଭାବିଲି, ଏତେ ଏତେ ବୀରଙ୍କ ବିଫଳତାରେ ସେ ହୁଏତ ଭୟଭୀତ ଓ ଆଶଙ୍କାଜର୍ଜର । ତେଣୁ କୌଣସିମତେ ଲକ୍ଷ୍ୟବେଧ କରାଇଦେବାକୁ ଚାହାନ୍ତି । ଜଣେ ସୁଯୋଗ୍ୟ ବୀର ପାତ୍ରଙ୍କ ହସ୍ତରେ ସ୍ୱକନ୍ୟାଙ୍କୁ ଟେକିଦେବାପାଇଁ ଚାହାନ୍ତି । ସେଥିପାଇଁ ହୁଏତ ମୋ' କାର୍ଯ୍ୟରେ କିଛି କରୁ ନାହାନ୍ତି ପ୍ରତିବାଦ । କୌରବମଣ୍ଡଳୀରୁ କରତାଳି । ତାହାକୁ ଅନୁସରଣ କରି ଅନ୍ୟମାନଙ୍କ ପାଖରୁ ମଧ୍ୟ କରତାଳି । ସମସ୍ତେ ମତେ ଉତ୍ସାହିତ କରୁଥାନ୍ତି ଆଗେଇବା ପାଇଁ । ମୋ' ଉପରେ ଭରସା ରଖିଥାନ୍ତି ଖୁବ୍ । ସାହସ ପାଇ ଆଗେଇଚାଲିଲି । ଅନାୟାସରେ ବାମ ହସ୍ତରେ ଟେକିଦେଲି ଧନୁଟିକୁ ଓ ଗୁଣ ଚଢ଼ାଇଲି ତହିଁରେ । ଏତିକିବେଳେ ପୁନର୍ବାର ଗୁଞ୍ଜରିତ ହୋଇଉଠିଲା ଉତ୍ସାହଜନକ କରତାଳି ଉପରେ କରତାଳି । ଲକ୍ଷ୍ୟ କଲି ଦୁର୍ଯ୍ୟୋଧନ ଓ ଅଶ୍ୱତ୍ଥାମାଙ୍କ ମୁଖମଣ୍ଡଳକୁ । ଉଭୟଙ୍କ ମୁଖରେ ଅପୂର୍ବ ପ୍ରସନ୍ନତା । କୃଷ୍ଣଙ୍କ ମୁଖକୁ ଲକ୍ଷ୍ୟ କରିବାରେ ଦେଖିଲି, ତାଙ୍କ ଅଧରତଳେ ସଦା ବିରାଜିତ ରହସ୍ୟମୟ ହସର ରେଖା ଆଉ ନାହିଁ । ମୁହଁର ରଙ୍ଗ ସାମାନ୍ୟ ଫିକା । ଆଖି ବୁଜି ବସିଥାନ୍ତି । ଧ୍ୟାନ କରି କିଛିଟା ଚିନ୍ତା କରୁଥାନ୍ତି ବୋଧହୁଏ । କିନ୍ତୁ ହଠାତ୍ କ'ଣ ହେଲା କେଜାଣି, ସେ ଆଖି ଖୋଲି ପୁଣି ହସିଉଠିଲେ ପୂର୍ବର ସେଇ ରହସ୍ୟମୟ ହସ । ଖୁବ୍ ପ୍ରସନ୍ନ ଜଣାପଡୁଥିଲେ ।

ଏ ରହସ୍ୟମୟ ହସ ଓ ପ୍ରସନ୍ନତାର କିଛି ହିଁ ଭେଦ ପାଇପାରୁ ନ ଥିଲି । ବାସ୍ତବିକ ଯାହାଙ୍କ ସାମଗ୍ରିକ ସତ୍ତା ରହସ୍ୟମୟ ସେଇ ରହସ୍ୟର କାଣିଚାଏ ଭେଦ କରିବାର ଅପଚେଷ୍ଟା କାହିଁକି ବା କିଏ କରିବ ? କଲେ ଲାଭ ବା କ'ଣ ? କେବଳ ବିଫଳତା ହିଁ ହେବ ସାର । ତେଣୁ ସେ ସବୁ ଚିନ୍ତା ଛାଡ଼ି ମୁଁ ମନ ଦେଲି ଲକ୍ଷ୍ୟବେଧରେ । ସୂଚୀବାଣଟିଏ ଧରି ତାହାକୁ ମନ୍ତ୍ରସିଦ୍ଧ କରିବାକୁ ଯାଉଛି, ଏତିକିବେଳେ ସଭାସ୍ଥଳରେ ଗୁଞ୍ଜରିତ ହୋଇଉଠିଲା ଏକ ନାରୀକଣ୍ଠର ପ୍ରତିବାଦାତ୍ମକ ସ୍ୱର, ''ରହନ୍ତୁ ସୂତପୁତ୍ର କର୍ଣ୍ଣ । ରହନ୍ତୁ । ମୁଁ ଆପଣଙ୍କୁ ପତି ରୂପରେ ବରଣ କରିବାକୁ ଚାହେଁନା ।''

ସାରା ରାଜସଭା ଚକିତ-ସ୍ତବ୍ଧ । ମୋ'ର ମଧ୍ୟ ପ୍ରାଣମନରେ ତଡ଼ିତ୍-ଚମକ । ହଠାତ୍ କି ଏକ ଜଡ଼ତା ଗ୍ରାସ କରିବସିଲା ମତେ । ଆଉ କରିପାରିଲି ନାହିଁ ମନ୍ତ୍ରଜପ ଓ ଶରସନ୍ଧାନ । ବୁଲିପଡ଼ି ଚାହିଁଲି ସଭାମଣ୍ଡପକୁ । କୃଷ୍ଣା ଉଠାଇଥିଲେ ଏଭଳି ପ୍ରତିବାଦର ସ୍ୱର । ନାସିକା ତାଙ୍କର କୁଞ୍ଚିତ ଘୃଣା ଓ ତାଚ୍ଛଲ୍ୟରେ । କି ଏକ ସଂବେଗ ହଠାତ୍ ଛୁଇଁଲା ମୋ' ମନକୁ । କ୍ରୋଧରେ ଆରକ୍ତ ହୋଇଉଠିଲା ମୁଖମଣ୍ଡଳ । କ'ଣ କହିଦେବାକୁ ବାହାରିଥିଲି କିନ୍ତୁ ପରକ୍ଷଣରେ ସଂଯତ କରିନେଲି ନିଜକୁ । ନୀରବରେ ରହିଗଲି କେତୋଟି ମୁହୂର୍ତ୍ତ ।

ମିତ୍ର ଦୁର୍ଯ୍ୟୋଧନ କିନ୍ତୁ ସହିପାରିଲେ ନାହିଁ ବୀରତ୍ୱ ପ୍ରତି ଏଭଳି ଅମର୍ଯ୍ୟାଦା ପ୍ରଦର୍ଶନ । ନିମନ୍ତ୍ରିତ ଅତିଥିଙ୍କ ପ୍ରତି ଏଭଳି ଅବମାନନା । ସେ ସହସା ଉଠିପଡ଼ି କହିଲେ, ''କର୍ଣ୍ଣ ଅଙ୍ଗରାଜ । ପୁଣି ସେ ମହାବୀର । ତାଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଛି ସ୍ୱୟଂବର-ସଭାରେ ଯୋଗ ଦେବାପାଇଁ । ଲକ୍ଷ୍ୟବେଧ କରିବାପାଇଁ ଉଠିଲାବେଳେ କେହି ପ୍ରତିବାଦ କରି ନ ଥିଲେ । ତେଣୁ ବର୍ତ୍ତମାନ ଶେଷ ମୁହୂର୍ତ୍ତରେ ଏଭଳି କହିବା ଶୋଭା ପାଏନା । ତାଙ୍କୁ ତେଣୁ ଲକ୍ଷ୍ୟବେଧ କରିବାର ସୁଯୋଗ ଦିଆଯାଉ ।'' ତାଙ୍କ କଣ୍ଠସ୍ୱର ଦୃଢ଼ । ଆଉ ଯୁକ୍ତିନିଷ୍ଠ ବି । ଯେଉଁ କଥା ଆତ୍ମପକ୍ଷ ସମର୍ଥନରେ ମୁଁ କହିଥାନ୍ତି, ସେ ହିଁ ତାହା ଆଗତୁରା ହୋଇ କହିଦେଲେ । ଏ ଭରା ସଭାରେ ତାଙ୍କର ଏଭଳି ଅଯାଚିତ ସହାୟତା ଲାଗି ମୋ' ମନେ ମନେ ତାଙ୍କ ପ୍ରତି ସ୍ୱତଃ କୃତଜ୍ଞତା ଭରିଉଠୁଥିଲା । ପ୍ରକୃତ ମିତ୍ରର ପରିଚୟ ଦେଲେ ସେ ।

''ତାହା ସତ୍ତ୍ୱେ ବି ମୁଁ ସୂତପୁତ୍ରଙ୍କୁ ପତିରୂପରେ ବରଣ କରିବାକୁ ଚାହେନା ।'' କୃଷ୍ଣାଙ୍କ ସ୍ୱର ଦୃଢ଼ତର । ଶ୍ୟାମସୁନ୍ଦର ମୁଖମଣ୍ଡଳରେ କ୍ରୋଧର ରକ୍ତିମା । ନାସିକା ଫୁଲି ଉଠୁଥାଏ କ୍ରୋଧଭରା ନିଃଶ୍ୱାସ-ପ୍ରଶ୍ୱାସରେ । କୌଣସି ନାଗିନୀ ଯଷ୍ଟିର ଆଘାତ ପାଇଥାଏ ଯେମିତି ।

ଦୁର୍ଯ୍ୟୋଧନ କିନ୍ତୁ ଦବିଯିବାର ପାତ୍ର ନ ଥିଲେ । ସେ ରାଜା ଦ୍ରୁପଦଙ୍କୁ ନୀତି ସଂପର୍କରେ ସୂଚାଇ ଦେବାକୁ ଯାଇ ପଚାରିଲେ ପ୍ରତିପ୍ରଶ୍ନ, ''କହନ୍ତୁ ରାଜନ୍ ! ଆପଣ ଯେତେବେଳେ ପଣ କଥା ଘୋଷଣା କରିଥିଲେ, ସେଥିରେ କେବଳ ବୀରତ୍ୱର ପ୍ରଶ୍ନ ହିଁ ଥିଲା । କୁଳ କଥା ନ ଥିଲା । ଏବେ ଅଙ୍ଗରାଜ କର୍ଣ୍ଣ ଯେତେବେଳେ ଲକ୍ଷ୍ୟବେଧ କରିବାକୁ ଯାଉଛନ୍ତି, ସେତେବେଳେ ତାଙ୍କୁ ଏଭଳି ଭାବରେ ବାଧା ଦେବା କ'ଣ ଉଚିତ ? ଏହା କ'ଣ ରାଜଧର୍ମ ? ଏହା କ'ଣ ପାଞ୍ଚାଳ ରାଜଦରବାରର ନ୍ୟାୟବିଚାର ?''

"ହଁ, ହଁ, ଏହାର ଉତ୍ତର ଦିଅନ୍ତୁ ରାଜନ୍ ! ଅଙ୍ଗରାଜ କର୍ଣ୍ଣଙ୍କୁ ଏଭଳି ଭାବରେ ଅପମାନିତ କରିବା ଠିକ୍ ହେଉ ନାହିଁ ।" ସମବେତ ରାଜନ୍ୟବର୍ଗଙ୍କ ସମର୍ଥନାତ୍ମକ ମନ୍ତବ୍ୟ । ସଭାର ବାତାବରଣ ଧୀରେ ଧୀରେ ହୋଇଉଠିଲା ଗମ୍ଭୀରତର ।

ରାଜା ଦ୍ରୁପଦ ସ୍ତବ୍ଧ-ବିମୂଢ଼ । କେତୋଟି ମୁହୂର୍ତ୍ତ ଧରି କିଛି କହିପାରିଲେ ନାହିଁ । ଏକ ପକ୍ଷରେ ନିଜ ଏକମାତ୍ର ଆଦରଣୀୟା କନ୍ୟାଙ୍କର ଇଚ୍ଛା । ଅନ୍ୟପକ୍ଷରେ ରାଜକୀୟ ନ୍ୟାୟବିଚାର । ପୁଣି ସମବେତ ସମସ୍ତ ରାଜନ୍ୟଙ୍କର ଏଇ ଗୋଟିଏ ପ୍ରଶ୍ନ ଉପରେ ସହମତି । ସେମାନଙ୍କ ବିରୋଧରେ ଗଲେ ହୁଏତ ସମସ୍ତେ ମିଳିତ ହୋଇ ଯୁଦ୍ଧ ଘୋଷଣା କରିପାରନ୍ତି । ବଳପୂର୍ବକ ଅପହରଣ କରିନେଇପାରନ୍ତି ତାଙ୍କ ଆଦରଣୀୟା କନ୍ୟାଙ୍କୁ । ଏଇ ମିଳିତ ଶକ୍ତି ବିରୋଧରେ ପାଞ୍ଚାଳର ସୀମିତ ସେନାବଳ ଠିଆ ହୋଇପାରିବ ତ ? ଭାବୁଥାଏ, ଏଇ କଥା ବୋଧହୁଏ ଚିନ୍ତା କରୁଛନ୍ତି ରାଜା ଦ୍ରୁପଦ । ରାଜଧର୍ମ ଓ ପିତୃଧର୍ମ ମଧ୍ୟରୁ କେଉଁଟିକୁ ପାଳିବେ ସେଥିନେଇ ପ୍ରବଳ ମାନସିକ ଦ୍ୱନ୍ଦ୍ୱ ହୁଏତ ।

ତାଙ୍କ ନୀରବତା ଦେଖି କୃଷ୍ଣାଙ୍କ ସାହସ ଭାଙ୍ଗିଗଲା । ସାରା ମୁଖମଣ୍ଡଳରେ କରୁଣିମାର ଢେଉ । ତ୍ରସ୍ତା ହରିଣୀ ଭଳି ଆଶଙ୍କିତା ଚାହାଣି । ମନରେ ମୋର ଦୟା ଆସିଲା ତାଙ୍କ ପ୍ରତି । ବିଚାରୀ ରାଜଧର୍ମର ନିଷ୍ଠୁରତା ସଂପର୍କରେ ସଂପୂର୍ଣ୍ଣ ଅନବହିତା । ମୋ' ମନର ସ୍ୱାଭାବିକ ଉଦାରତା କ୍ରୋଧକୁ ଧୀରେ ଧୀରେ ଶାନ୍ତ କରିଦେବାକୁ ଲାଗିଲା । ଏବେ ସବୁ କିଛି ନିର୍ଭର କରୁଛି ମୋ' ଉପରେ । କାରଣ ସ୍ୱୟଂ ରାଜା ଏବେ ବିମୂଢ଼ ଅବସ୍ଥାରେ । ନେଇପାରୁ ନାହାନ୍ତି କୌଣସି ନିଷ୍ପତ୍ତି । ଏହି ଅବସରରେ ଟିକିଏ ଆଖି ପକାଇଦେଲି କୃଷ୍ଣଙ୍କ ଭାବମୂର୍ତ୍ତିକୁ । ସେ ମଧ୍ୟ ହୋଇଉଠିଥାନ୍ତି ବିଷଣ୍ଣ ଓ ଆତଙ୍କିତ । ହୁଏତ ଭାବୁଥିବେ, ତାଙ୍କ ମନର ଇଚ୍ଛାଟି ପୂରି ନ ପାରେ ।

ଶେଷରେ ମୁହଁ ଖୋଲିଲି, "ହେ ରାଜନ୍ ! ହେ ରାଜନ୍ୟବୃନ୍ଦ ! ମୁଁ ଅବଶ୍ୟ ଲକ୍ଷ୍ୟବେଧ କରିପାରିବି । କିନ୍ତୁ ନିଜ ଇଚ୍ଛାରେ ବିରତ ହେଉଛି ସେହି ଉଦ୍ୟମରୁ । ପତିପତ୍ନୀଙ୍କ ସଂପର୍କ ଚିରନ୍ତନ । ଉଭୟଙ୍କ ସମ୍ମତି ବିନା ତାହା ହୋଇପାରେନା । କୃଷ୍ଣା ଯେତେବେଳେ ସ୍ୱୟଂ ମତେ ପତିରୂପରେ ଗ୍ରହଣ କରିବାପାଇଁ ଅନିଚ୍ଛୁକା, ସେତେବେଳେ ମୋର ଲକ୍ଷ୍ୟବେଧ କରିବାର ଅବକାଶ ହିଁ ନାହିଁ । ବଳପୂର୍ବକ କୃଷ୍ଣାଙ୍କୁ ବିବାହ କରିପାରିବି ନାହିଁ; କାରଣ ତାହା ହେବ ଆର୍ଯ୍ୟବିରୋଧୀ ରାକ୍ଷସବିବାହ ।" ଏହା କହି ଧନୁଟିକୁ ଗୁଣହୀନ କରି ଯଥାସ୍ଥାନରେ ରଖିଦେଲି ଓ ଫେରିଆସିଲି ନିଜ ଆସନକୁ ।

"ସାଧୁ, ସାଧୁ ଅଙ୍ଗରାଜ କର୍ଣ୍ଣ ! ସାଧୁ !" ସମବେତ ଋଷି-ବ୍ରାହ୍ମଣ ଦର୍ଶକମଣ୍ଡଳୀରୁ ଭାସିଆସିଲା ସାଧୁବାଦର ମନ୍ଦ୍ର ଧ୍ୱନି । ପରିବର୍ତ୍ତିତ ପରିସ୍ଥିତିରେ ରାଜନ୍ୟବର୍ଗ ମଧ୍ୟ ତାହାର ସମର୍ଥନରେ ଜଣାଇଲେ ସାଧୁବାଦ ।

ରାଜକୁମାରୀ କୃଷ୍ଣା ନିଶ୍ଚିନ୍ତା । ଧୀରେ ଧୀରେ ମୁଖମଣ୍ଡଳରେ ଆଶଙ୍କାଜନିତ ସଞ୍ଚିତ ସ୍ୱେଦକଣିକାଗୁଡ଼ିକୁ ପୋଛିବାକୁ ଲାଗିଲେ ନିଜ ଉତ୍ତରୀୟରେ । ରାଜା ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ, ରାଜପୁରୋହିତ ଆଦି ମଧ୍ୟ ସମଧିକ ନିଶ୍ଚିନ୍ତ । ଆଉ ଯାଦବବୀର କୃଷ୍ଣ । ତାଙ୍କ ମୁଖମଣ୍ଡଳରେ ପୁନର୍ବାର ରହସ୍ୟମୟ ହସର ଊର୍ମି ! କିଛି ସମୟ ଧରି ରାଜନ୍ୟମଣ୍ଡଳୀ

ମଧ୍ୟରେ ମୃଦୁ କଳ ଗୁଞ୍ଜନ । କେହି କେହି ମୋର ଲକ୍ଷ୍ୟବେଧରୁ ନିବୃତ୍ତିକୁ ସମର୍ଥନ କରୁଥାନ୍ତି ତ ଆଉ କେହି କେହି ବିରୋଧ କରୁଥାନ୍ତି । ପୂର୍ବର ସେହି ପୁଣି କେହି କେହି ନିଜେ ଲକ୍ଷ୍ୟବେଧ ପାଇଁ ଯିବାକୁ ସାହସ ନ କରି ଅପରଜଣଙ୍କୁ କରୁଥାନ୍ତି ଅନୁପ୍ରେରିତ । ଆଉ ସେହି ଅପରଜଣଙ୍କ ଦୃଢ଼ ଭାବରେ କରୁଥାନ୍ତି ମନା । ଏକପ୍ରକାର ନୈରାଶ୍ୟ ଖେଳିଯାଇଥାଏ ସେମାନଙ୍କ ମଧ୍ୟରେ । ଆଉ କେହି ସାହସ କରୁ ନ ଥାନ୍ତି ଲକ୍ଷ୍ୟବେଧ କରିବାପାଇଁ । ଭାବୁଥାନ୍ତି, ସେମିତି ବସି ବସି ଫେରିଯିବାଟା ହିଁ ଭଲ । ଏଭଳି ଅପମାନିତ ହେବା ଉଚିତ ନୁହେଁ ।

ଦୀର୍ଘ ସମୟ ଧରି କେହି ଆଉ ବାହାରିଲେ ନାହିଁ ଲକ୍ଷ୍ୟବେଧର ସ୍ଥଳୀକୁ ଯିବାପାଇଁ । ରାଜା ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ଆଦିଙ୍କ ଆଶା ଧୀରେ ଧୀରେ ମଉଳିଯିବାକୁ ଲାଗିଲା । ଦ୍ରୁପଦନନ୍ଦିନୀ କୃଷ୍ଣାଙ୍କର ମଧ୍ୟ । ଦୀର୍ଘ ପ୍ରତୀକ୍ଷା ଫଳରେ ତାଙ୍କ ହସ୍ତର ବରଣମାଳାଟି ବି ଆସୁଥିଲା ଶୁଖି ଶୁଖି । ହାତ ଥରି ଉଠୁଥିଲା । ହୁଏତ ହାତମୁଠା ଶିଥିଳ ହୋଇଉଠୁଥିଲା ନୈରାଶ୍ୟର ପୀଡ଼ା ପାଇ । ସେ ଆପ୍ରାଣ ଚେଷ୍ଟା କରୁଥିଲେ ତାହାକୁ ଦୃଢ଼ କରିବାପାଇଁ । ବରଣମାଳାକୁ ଖସିବାକୁ ନ ଦେବା ପାଇଁ ।

ଅଧୈର୍ଯ୍ୟ କଣ୍ଠରେ ଧୃଷ୍ଟଦ୍ୟୁମ୍ନ ଆହ୍ୱାନ କଲେ ରାଜନ୍ୟମଣ୍ଡଳୀକୁ ଲକ୍ଷ୍ୟ କରି, ''ଆଉ କେହି କ୍ଷତ୍ରିୟବୀର ଅଛନ୍ତି ଯଦି ଦୟାକରି ଆସନ୍ତୁ । ଲକ୍ଷ୍ୟବେଧ କରନ୍ତୁ ।''

ସମସ୍ତେ ନିରୁଦ୍ୟମ । ନିଷ୍କମ୍ପା ସାରା ସଭାମଣ୍ଡପରେ ମରୁଭୂମିର ଧୂସର ନୀରବତା । କେବଳ ଯାହା ମତ୍ସ୍ୟଯନ୍ତ୍ରଟିର ଘୂର୍ଣ୍ଣନ ଶବ୍ଦ ଭଙ୍ଗ କରୁଥାଏ ସେହି ନୀରବତାକୁ । ଧୀରେ ଧୀରେ ବେଳ ଯାଉଥାଏ ଗଡ଼ି । ହୋଇଆସୁଥାଏ ଅପରାହ୍ଣ । ଆକାଶବୁକୁରେ ଉଡ଼ିଯାଉଥିବା ହଂସପଙ୍କ୍ତିର କାକଳି ଆସୁଥାଏ ରହି ରହି । ସତେଯେମିତି ବୃନ୍ଦନୃତ୍ୟରତା ଚତୁରୀ ନର୍ତ୍ତକୀଗଣଙ୍କ ବିରତି ପୂର୍ବର ଶେଷ ନୂପୁର ନିକ୍ୱଣ ! ରୁଣୁ ଝୁଣୁ... ରୁଣୁ ଝୁଣୁ... ରୁଣୁ ଝୁଣୁ...

ଧୃଷ୍ଟଦ୍ୟୁମ୍ନ ରାଜା ଦ୍ରୁପଦ ଓ ରାଜପୁରୋହିତଙ୍କ ସହିତ ଚୁପ୍ ଚୁପ୍ କରି କିଛି ସମୟ ପାଇଁ କ'ଣ ପରାମର୍ଶ କଲେ । ତାହା ପରେ ସମବେତ ଋଷିବ୍ରାହ୍ମଣ ଦର୍ଶକମଣ୍ଡଳୀ ଆଡ଼କୁ ଲକ୍ଷ୍ୟ କରି କହିଲେ, ''ହେ ମାନନୀୟ ଋଷିବ୍ରାହ୍ମଣଗଣ ! ଆପଣମାନଙ୍କ ମଧ୍ୟରେ ଯଦି କେହି ବୀର ଅଛନ୍ତି, ତେବେ ଆସିପାରନ୍ତି ଲକ୍ଷ୍ୟବେଧ ପାଇଁ । ବ୍ରାହ୍ମଣଙ୍କ ପକ୍ଷରେ କ୍ଷତ୍ରିୟକନ୍ୟା ଗ୍ରହଣ କରିବାରେ କିଛି ବାଧା ନାହିଁ । ଅନୁଲୋମ ବିବାହ ଶାସ୍ତ୍ରଦ୍ୱାରା ସମର୍ଥିତ ।''

ରାଜନ୍ୟମଣ୍ଡଳୀ ଫାଟିପଡ଼ିଲେ ତାଚ୍ଛଲ୍ୟଭରା ଉପହାସରେ । ଏଡ଼େ ଏଡ଼େ କ୍ଷତ୍ରିୟ ବୀରମାନେ ଗଲେ । ଆଉ ଏ ଦୁର୍ବଳ ବ୍ରାହ୍ମଣମାନେ ଆସିବେ ବଳବୀର୍ଯ୍ୟ ଦେଖାଇବା ପାଇଁ ! ଧୃଷ୍ଟଦ୍ୟୁମ୍ନ କ'ଣ ପାଗଳ ହୋଇଗଲେ ନା କ'ଣ ? ହୁଏତ ଏଇଆ ଭାବୁଥିଲେ ସେମାନେ ।

ଲକ୍ଷ୍ୟ କଲି କୃଷ୍ଣଙ୍କ ରହସ୍ୟମୟ ହସ ଆହୁରି ଅଧିକ ହୋଇଉଠୁଛି ଘନୀଭୂତ । ସେ ବ୍ରାହ୍ମଣମଣ୍ଡଳୀ ଆଡ଼କୁ ମୁହଁ ବୁଲାଇ ଶ୍ୟାମାଙ୍ଗ ଯୁବକଙ୍କୁ ଦେଉଛନ୍ତି ଚକ୍ଷୁର ସଂକେତ ।

ଯୁବକଜଣକ ସେହିପରି ଚକ୍ଷୁର ପ୍ରତିସଂକେତରେ ଦେଉଛନ୍ତି ପ୍ରତ୍ୟୁତ୍ତର । ଉଭୟଙ୍କ ଅଧରତଳେ ଦରଦର ହସ । ରହସ୍ୟରେ ଭରପୂର !

ବ୍ରାହ୍ମଣ ଯୁବକଜଣକ ଶେଷରେ ଉଠିଲେ । ତାଙ୍କ ବାମପାର୍ଶ୍ୱରେ ଆସୀନ ଆଉ ଦୁଇ ଜଣ ବ୍ରାହ୍ମଣ ଯୁବକ । ଜଣେ ଖୁବ୍ ହୃଷ୍ଟପୁଷ୍ଟ । ଅପରଜଣକ ଶାନ୍ତ ସୌମ୍ୟ । ଯୁବକଙ୍କଠାରୁ ସେ ଦୁହେଁ ବୟସରେ ବଡ଼ ହେବେ । ସମ୍ଭବତଃ ଖୁବ୍ ପରିଚିତ ଓ ଅତି ନିକଟସଂପର୍କୀୟ । ଦୁହିଁଙ୍କ ପାଦସ୍ପର୍ଶ କଲେ ସେ ଓ ଉଭୟଙ୍କ ଆଶୀର୍ବାଦ ନେଇ ଆଗେଇଲେ ଧୀରେ ଧୀରେ । ପ୍ରଶସ୍ତ ଛାତି । ଆଜାନୁଲମ୍ବିତ ବାହୁଯୁଗଳ । ଆୟତ ଚକ୍ଷୁ । ଅତି ସୌମ୍ୟ ଅଙ୍ଗଯଷ୍ଟି । ବୀରଠାଣିରେ ହେଉଥାନ୍ତି ଅଗ୍ରସର । ପଶୁରାଜ ସିଂହ ଯେମିତି । ଧନୁ ନିକଟରେ ପହଞ୍ଚି ଅନାୟାସରେ ବାମହସ୍ତରେ ଉଠାଇନେଲେ ତାହାକୁ ଓ ଗୁଣ ଚଢ଼ାଇଲେ ତହିଁରେ । ମତେ ଆଶ୍ଚର୍ଯ୍ୟ ଲାଗୁଥାଏ ଖୁବ୍ । ଯେଉଁ ଧନୁର ଭାର ସହି ନ ପାରି ଜରାସନ୍ଧଙ୍କ ଭଳି ମହାବୀର ପଡ଼ିଥିଲେ ଆଣ୍ଠୁ ମାଡ଼ି, ତାହାକୁ ପୁଣି ଖୁବ୍ ସହଜରେ ଟେକିଦେଇପାରିଲେ ଏଇ ବ୍ରାହ୍ମଣଯୁବକ । ପୁଣି ବାମ ହସ୍ତରେ ! କେବଳ ମୁଁ ତ ନୁହେଁ । ସାରା ସଭା ବି ବିସ୍ମୟ ବିମୂଢ଼ । କୃଷ୍ଣାଙ୍କ ମୁଖମଣ୍ଡଳ ଧୀରେ ଧୀରେ ହୋଇଉଠୁଥାଏ ପ୍ରସନ୍ନ । ଆଦ୍ୟ ସୂର୍ଯ୍ୟକିରଣର ସ୍ପର୍ଶରେ କମଳପୁଷ୍ପ ଦଳର ଚକ୍ଷୁ ମେଲି ହସିଉଠୁଥାଏ ଯେମିତି ! ବ୍ରାହ୍ମଣଯୁବକ ତୈଳକୁଣ୍ଡ ଆଡ଼କୁ ଚାହିଁ ମତ୍ସ୍ୟର ପ୍ରତିବିମ୍ବଟିକୁ ଦେଖି ସ୍ଥିର କରିନେଲେ ତାଙ୍କ ଲକ୍ଷ୍ୟ । ପରେ ପରେ ମନ୍ତ୍ର ଜପି ସୂଚୀବାଣଟିଏ ଛାଡ଼ିଲେ । 'ଟକ୍' କରି ଶବ୍ଦ ହେଲା । ଲକ୍ଷ୍ୟରେ ବାଣ ବାଜିଲା ବୋଧହୁଏ । ମତ୍ସ୍ୟଟିକୁ କାଢ଼ିଆଣି ପରୀକ୍ଷା କରିବାରେ ଜଣାଗଲା, ତାହା ଯଥାସ୍ଥାନରେ କରିଛି ଆଘାତ । ମତ୍ସ୍ୟଟିର ଦକ୍ଷିଣ ଚକ୍ଷୁ ବାଣବିଦ୍ଧ ।

''ବ୍ରାହ୍ମଣ ଯୁବକ ଲକ୍ଷ୍ୟବେଧ କରିଛନ୍ତି ।'' ଘୋଷଣା କଲେ ରାଜକୁମାର ଧୃଷ୍ଟଦ୍ୟୁମ୍ନ ।

କରତାଳି ଉପରେ କରତାଳିର ବୃଷ୍ଟି । ବିଶେଷ କରତାଳି ଆସୁଥାଏ ଋଷି ବ୍ରାହ୍ମଣମଣ୍ଡଳୀରୁ । ସ୍ୱଭାବତଃ ଯେଉଁମାନେ ଶାନ୍ତ, ସେହି ଋଷି ବ୍ରାହ୍ମଣମାନେ ବି ଆଜି ଆନନ୍ଦୋନ୍ମତ୍ତ । ସିଦ୍ଧିରେ ଆନନ୍ଦରେ ଆତ୍ମହରା । ସେମାନଙ୍କ ମଧ୍ୟରୁ ଜଣେ ଯୁବକ ଆଜି ଲକ୍ଷ୍ୟବେଧ କରିପାରିଛନ୍ତି । କ୍ଷତ୍ରିୟ ବୀରମାନଙ୍କ ମୁହଁରେ ବୋଳିଛନ୍ତି କାଳି । ଏହା କ'ଣ କମ୍ ଗୌରବର କଥା ? ଏ ଯୁବକ ଆଜି ବାହାରିଛନ୍ତି ଦ୍ୱିତୀୟ ପରଶୁରାମ ସାଜି । ଯୁବକଙ୍କ ଉଦ୍ଦେଶ୍ୟରେ ବୃଷ୍ଟି ହେଉଥିବା ସାଧୁବାଦରେ ସାରା ସଭାସ୍ଥଳୀ ଉଚ୍ଛଳ ! ପୁଣି ଲକ୍ଷ୍ୟ କଲି ସଭାସ୍ଥଳକୁ । ଜଣେ ହୃଷ୍ଟପୁଷ୍ଟ ବ୍ରାହ୍ମଣ ଯୁବକ ସମସ୍ତ ଶିଷ୍ଟାଚାର ଜ୍ଞାନ ଭୁଲି ଆସନ ଉପରେ ଠିଆ ହୋଇ କରୁଛନ୍ତି ଶିଶୁ ଭଳି ନୃତ୍ୟ । ମଚ୍ ମଚ୍ କରି ଆସନଟା ଗଲା ଭାଙ୍ଗି । ସେ ଆଉ କେହି ନୁହନ୍ତି । ସେ ହେଉଛନ୍ତି ସେହି ବ୍ରାହ୍ମଣ ଯୁବକ ଯାହାଙ୍କ ଚରଣ ସ୍ପର୍ଶକରି ବୀର ବ୍ରାହ୍ମଣ ଯୁବକଜଣକ ଆସିଥିଲେ ଲକ୍ଷ୍ୟବେଧ କରିବାପାଇଁ । ତଳେ ପଡ଼ିଯାଇ ମଧ୍ୟ ସେ ବନ୍ଦ କରୁ ନ ଥାନ୍ତି ଉଦ୍ଦଣ୍ଡ ନୃତ୍ୟ । ସୃଷ୍ଟି କରୁଥାନ୍ତି ଏକ ବିନୋଦପୂର୍ଣ୍ଣ ପରିସ୍ଥିତି । ବିଚରା ଉନ୍ମତ୍ତ ବ୍ରାହ୍ମଣ ଯୁବକ !

ମୁଁ ମଧ୍ୟ ଖୁବ୍ ଚକିତ-ବିସ୍ମୟରେ ବୁଡ଼ି ଯାଇଥିଲି ତାଙ୍କ ସିଦ୍ଧିରେ । ମନେ ମନେ ଭାବୁଥାଏ, ଅର୍ଜୁନ ଯଦି ଆଜି ଥାଆନ୍ତେ, ସେ ହୁଏତ ଏଭଳି ସିଦ୍ଧିର ଅଧିକାରୀ ହୋଇପାରିଥାନ୍ତେ । ସେ କିନ୍ତୁ ଆଜି ନାହାନ୍ତି । ସେ ମାତା ଓ ଭ୍ରାତାମାନଙ୍କ ସହିତ ନିରୁଦ୍ଦିଷ୍ଟ । କେଉଁଠି ଅଛନ୍ତି କେଜାଣି ? ମତେ ଲାଗୁଥିଲା, ଏଇ ବ୍ରାହ୍ମଣ ଯୁବକ ଜଣକ ବି ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କରିବାରେ ସମର୍ଥ । ମତେ ତ ତାଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କରିବାର ସୁଯୋଗ ମିଳିଲା ନାହିଁ । ଏବେ ଯାହାହେଉ, ଆଉ ଜଣେ ସ୍ପର୍ଦ୍ଧୀ ବାହାରିଛନ୍ତି ତ । ପୁଣି ବ୍ରାହ୍ମଣକୁଳରେ । ସେ ହୁଏତ ଅର୍ଜୁନଙ୍କ ଗର୍ବ, ଦମ୍ଭ ଓ ଅଭିମାନକୁ ଦିନେ କରିଦେଇପାରନ୍ତି ଖର୍ବ । କରିଦେଇପାରନ୍ତି ଚୂର୍ଣ୍ଣ-ବିଚୂର୍ଣ୍ଣ । ଏଥିରେ କିଛିଟା ଆଶ୍ୱାସନା ପାଉଥିଲି । କାରଣ ଶତ୍ରୁର ଜଣେ ସମ୍ଭାବ୍ୟ ଶତ୍ରୁ ତ ଏବେ ଆବିଷ୍କୃତ ।

ଧୃଷ୍ଟଦ୍ୟୁମ୍ନଙ୍କ ସଂକେତରେ ଧୀରେ ଧୀରେ ବରଣମାଳାଟିକୁ ଧରି ଆଗେଇଆସିଲେ ପାଞ୍ଚାଳୀ । ଏକ ଶ୍ୟାମଳ ମେଘଖଣ୍ଡ ଆଉ ଏକ ଶ୍ୟାମଳ ମେଘଖଣ୍ଡରେ ମିଶିବାପାଇଁ ପବନଦ୍ୱାରା ଅନୁପ୍ରେରିତ ହୋଇ ଆଗେଇଆସେ ଯେମିତି । ଆଗେଇ ଆସିଲେ ସୁନ୍ଦରୀ ତରୁଣୀ କୃଷ୍ଣା ଆଉ ଏକ କୃଷ୍ଣତନୁ ଯୁବକଙ୍କ ତନୁ-ମନରେ ରୋମାଞ୍ଚ ଜଗାଇବା ପାଇଁ । ରୂପସୀ ଦ୍ରୌପଦୀ ଆଗେଇ ଆସିଲେ ପ୍ରତିଟି ଚରଣପାତରେ ସ୍ଥଳକମଳ ଫୁଟାଇ ଫୁଟାଇ । ଆପାଦଲମ୍ବିତ ବରଣମାଳା ଓ ନିତମ୍ବସ୍ପର୍ଶୀ ଦୀର୍ଘ ବେଣୀ ଖୁବ୍ ମାନୁଥାଏ ତାଙ୍କ ଧୀର ଓ ସଲଜ୍ଜ ଗମନକୁ । ପ୍ରସନ୍ନମୁଖରେ ସେ ବ୍ରାହ୍ମଣ ଯୁବକଙ୍କ କଣ୍ଠରେ ଲମ୍ବାଇଦେଲେ ବରଣମାଳା ଓ ତାଙ୍କୁ ପ୍ରଣାମ କରି ଠିଆ ହୋଇ ରହିଲେ ଆନତ ବଦନରେ ।

ଶଙ୍ଖ, ତୂରୀ, ମହୁରୀ, ଦୁନ୍ଦୁଭି ଆଦି ବାଦ୍ୟଗୁଡ଼ିକ ବାଜିଉଠିଲା ମନ୍ଦ୍ର ନାଦରେ । ରାଜଦ୍ୱାରର ଉଭୟ ପାର୍ଶ୍ୱରେ ଥିବା ଭୂମିଦୁନ୍ଦୁଭି ଦିଓଟି ଗର୍ଜିଉଠିଲା ବଜ୍ର ନିନାଦରେ ଆଖ ପାଖ ଦଶ କ୍ରୋଶ ଦୂରର ଜନତାଙ୍କୁ ଏହି ସୁସନ୍ଦେଶଟି ଜଣାଇବାପାଇଁ— ଦ୍ରୌପଦୀଙ୍କ ସ୍ୱୟଂବର ଏବେ ସଫଳ । ଜଣେ ଯୋଗ୍ୟ ବୀରପୁରୁଷ ଲକ୍ଷ୍ୟବେଧ କରିଛନ୍ତି ।

ସେତେବେଳେ ଲକ୍ଷ୍ୟ କରିଛି ରାଜା ଦ୍ରୁପଦଙ୍କୁ । ଆଃ ! କି ଆନନ୍ଦିତ ଓ ଆଶ୍ୱସ୍ତ ସେ ! ଝର ଝର ହୋଇ ଝରିଯାଉଛି ନେତ୍ରକୋଣରୁ ଅଶ୍ରୁଧାର । ସିଦ୍ଧିର ଆନନ୍ଦରେ । ଚିର ଆକାଙ୍‌କ୍ଷିତ ଏକ ବିଶେଷ ଧନପ୍ରାପ୍ତିର ଆନନ୍ଦରେ । କନ୍ୟାପିତାଙ୍କ ନିକଟରେ ଯୋଗ୍ୟ ଜାମାତା ଜଣଙ୍କୁ ପାଇବା ଏକ ବିଶେଷ ଧନପ୍ରାପ୍ତି ନୁହେଁ ତ ଆଉ କ'ଣ ? ସକଳ ପିତା ଚାହାନ୍ତି କନ୍ୟା ତାଙ୍କର ରହନ୍ତୁ ଚିରସୁରକ୍ଷିତା ଜଣେ ଯୋଗ୍ୟ ପତିଙ୍କ ଦ୍ୱାରା । ସେଥିପାଇଁ ଦିନରାତି କେତେ ଚିନ୍ତା ! ଯୋଗ୍ୟ ଜାମାତା ଖୋଜି ବାହାର କରିବାପାଇଁ କେତେ ଅକ୍ଳାନ୍ତ ଉଦ୍ୟମ । ସେହି ଉଦ୍ୟମ ଯେତେବେଳେ ସଫଳ ହୁଏ, ସେତେବେଳେ ତାଙ୍କୁ ଲାଗେ ଯେମିତି ଏକ ବିରାଟ ଦାୟରୁ ମୁକ୍ତ ହେଲେ । ଆଜି ସେହି ସୁଦିନ ଆସିଛି ଦ୍ରୁପଦଙ୍କ ଜୀବନରେ । ଚିରପୋଷିତ ସ୍ୱପ୍ନ ଏବେ ସଫଳ । ତେଣୁ ଆନନ୍ଦର ଜଳରେ ଭାସିବାଟା ତାଙ୍କ ପାଇଁ ସ୍ୱାଭାବିକ ।

ହଠାତ୍ ଏହି ଆନନ୍ଦକୁ ବ୍ୟାହତ କରିବାକୁ ଯାଇ ସଭାମଣ୍ଡପରେ ଗୁଞ୍ଜରିତ ହୋଇଉଠିଲା ଏକ ମୃଦୁ କୋଳାହଳ । ଅଧିକାଂଶ ରାଜନ୍ୟଙ୍କ ମିଳିତ ପ୍ରତିବାଦ ଧ୍ୱନି ।

ତାହାର ନେତୃତ୍ୱ ନେଇଥାନ୍ତି ଦୁର୍ଯ୍ୟୋଧନ ଓ ଚେଦିରାଜ ଶିଶୁପାଳ । ଚେଦିରାଜ ନିଜ ଆସନରୁ ଉଠିଯାଇ ଭୀମ ଗର୍ଜନରେ ଉଦ୍‌ଗାରି ଉଠିଲେ ବିଷଭରା ବାଣୀ, ''ଅପମାନ । ଏହା ଘୋର ଅପମାନ । ଆସ୍ମମାନଙ୍କ ପକ୍ଷରେ ଏ ଅପମାନ ଅସହ୍ୟ । ଆମେ ଏ ସ୍ୱୟଂବରକୁ ସ୍ୱୀକାର କରୁ ନାହୁଁ । ଆମ ଆଗରେ ସାମାନ୍ୟ ଜଟାଜୂଟଧାରୀ ବ୍ରାହ୍ମଣ ଯୁବକ ଜଣେ କୃଷ୍ଣାଙ୍କୁ ନେଇଯିବାଟା ଆମ ପକ୍ଷରେ ଅସହ୍ୟ । ଆମେ ଏବେ ତାଙ୍କୁ ହତ୍ୟା କରି କୃଷ୍ଣାଙ୍କୁ ଛଡ଼ାଇନେବୁ ବଳାତ୍କାର କରି ।''

''ହଁ, ହଁ, ଆମେ ତାହାହିଁ କରିବୁ । ଚାଲ । ଧର । ମାର ।'' ଅନ୍ୟ ରାଜାମାନଙ୍କ ସମର୍ଥନସୂଚକ ବାଣୀରେ ଅଧିକତର ଉଷ୍ମାୟିତ ହେବାକୁ ଲାଗିଲା ସଭାମଣ୍ଡପ । ସମସ୍ତେ ହୋଇଉଠିଲେ ଯୁଦ୍ଧମୁଖର । ପ୍ରାୟ ଶସ୍ତ୍ର ଉଦ୍ୟତ କରିବା ଅବସ୍ଥାରେ ।

''ବ୍ରାହ୍ମଣପତ୍ନୀଙ୍କୁ ଅପହରଣ କରିନେବାର ସାହସ କାହାର ଅଛି ମୁଁ ଟିକିଏ ଦେଖିନିଏ ।'' ବାହୁସ୍ଫୋଟ କରି ଡେଇଁପଡ଼ିଲେ ସେହି ହୃଷ୍ଟପୁଷ୍ଟ ବ୍ରାହ୍ମଣ ଯୁବକ ଜଣକ । କ୍ରୋଧରେ ତାଙ୍କ ଜଟାରୁ କିଛିଟା ଛିଣ୍ଡାଇପକାଇଥିଲେ ଇତିମଧ୍ୟରେ । ତଡ଼ିତ୍ ଗତିରେ ଆସି ଠିଆ ହେଲେ କୃଷ୍ଣା ଓ ଲକ୍ଷବେଧୀ ବ୍ରାହ୍ମଣ ଯୁବକଙ୍କ ଆଗରେ ଉଭୟଙ୍କ ରକ୍ଷାର କବଚ ଭାବରେ । ନାଗସାପ ଭଳି ଖର ନିଃଶ୍ୱାସ । ଅଧୋବାସ ଓ ଉତ୍ତରୀୟକୁ ଖୁବ୍ ଜୋର୍‌ରେ ଭିଡ଼ିଦେଇଥାନ୍ତି ଦେହରେ ଜଣେ ମଲ୍ଲବୀରଙ୍କ ଭଳି । ବାରମ୍ବାର ଜାନୁକୁ ଆଘାତ କରି ସୃଷ୍ଟି କରୁଥାନ୍ତି ଭୟଙ୍କର ଶବ୍ଦ । ବଜ୍ରପାତ ହେଉଥାଏ ଯେମିତି । ପୁଣି ମଝିରେ ମଝିରେ ରେରେକାର ଧ୍ୱନି । ଯୁଦ୍ଧ ପାଇଁ ଉଦଗ୍ର ଆହ୍ୱାନ ।

ଲକ୍ଷ୍ୟବେଧୀ ବ୍ରାହ୍ମଣ ଯୁବକଜଣକ କୃଷ୍ଣଙ୍କ ଚକ୍ଷୁର କି ସଂକେତ ପାଇଲେ କେଜାଣି, ହଠାତ୍ ପରିବର୍ତ୍ତନ କରିଦେଲେ ତାଙ୍କ ଭାବମୂର୍ତ୍ତି । କ୍ଷଣକରେ ଚାଲିଗଲା ରକ୍ତାଧର ତଳେ ଶୋଭା ପାଉଥିବା ଦର ଦର ହସ । ହଠାତ୍ ହୋଇଉଠିଲେ କ୍ରୋଧଜର୍ଜର । ପ୍ରଳୟକାଳୀନ ମହାମେଘ ଭଳି ଗର୍ଜନ କରି କହିଲେ, ''ଏ ଆର୍ଯ୍ୟାବର୍ତ୍ତରେ କିଏ ଏମିତି ବୀର ଅଛି, ଯେ ମୋ' ପତ୍ନୀଙ୍କୁ ବଳପୂର୍ବକ ଛଡ଼ାଇ ନେଇଯିବ ମୋ'ପାଖରୁ ? କିଏ ସେ ଏମିତି ସାହସୀ ଲୋକ ଅଛି ଆସୁ ତ ମୋ' ଆଗକୁ ?'' ତାହା ପରେ ତାଚ୍ଛଲ୍ୟର ଟହ ଟହ ହସ ।

ଶିଶୁପାଳଙ୍କୁ ଅସହ୍ୟ ଏ ଅପମାନ । ଆଉ ଦୁର୍ଯ୍ୟୋଧନଙ୍କୁ ବି । ଦୁହେଁ ଏକ ସଙ୍ଗରେ ଗଦା ନିକ୍ଷେପ କଲେ ଲକ୍ଷ୍ୟବେଧୀ ଯୁବକଙ୍କ ଉପରକୁ । ହୃଷ୍ଟପୁଷ୍ଟ ଯୁବକ ଜଣକ ଆକାଶକୁ ଲମ୍ଫ ମାରି ଦୁଇ ହାତରେ ଦୁଇଟାଯାକ ଗଦାକୁ ଧରିନେଲେ । ପ୍ରତ୍ୟାଘାତରେ ସେହି ଦିଓଟିକୁ ପୁଣି ଛାଡ଼ିଲେ ନିକ୍ଷେପକାରୀ ବୀରଦୁହିଁଙ୍କୁ ଲକ୍ଷ୍ୟ କରି । ଏଇ ଅପ୍ରତ୍ୟାଶିତ ପ୍ରତ୍ୟାକ୍ରମଣ ପାଇଁ ପୂରା ଅପ୍ରସ୍ତୁତ ଥିଲେ ଦୁହେଁ । ଶିରରେ ଆଘାତ ବାଜିବା ଫଳରେ ଉଭୟ କେତୋଟି ମୁହୂର୍ତ୍ତ ପାଇଁ ମୂର୍ଚ୍ଛା ଗଲେ । ଇତିମଧ୍ୟରେ ପାଖରେ ଥିବା ରାଜୋଦ୍ୟାନରୁ ବିରାଟ ଏକ ଶାଳ ଗଛ ଉପାଡ଼ି ଆଣିଲେ ହୃଷ୍ଟପୁଷ୍ଟ ଯୁବକଜଣକ । ଲକ୍ଷ୍ୟବେଧୀ ଯୁବକ ଯେଉଁ ଧନୁରେ ଲକ୍ଷ୍ୟବେଧ କରିଥିଲେ, ତାହାରି ସାହାଯ୍ୟରେ ହିଁ ଆରମ୍ଭ କରିଦେଲେ ପ୍ରତ୍ୟାକ୍ରମଣ । ଧୃଷ୍ଟଦ୍ୟୁମ୍ନ ତାଙ୍କୁ ଯୋଗାଇଦେଲେ ଦୁଇଟି ଶରପୂର୍ଣ୍ଣ ତୂଣୀର । ବଢ଼ିବାକୁ ଲାଗିଲା ଯୁଦ୍ଧର ଘନଘଟା । ମୁଁ, ଶଲ୍ୟ, କଳିଙ୍ଗରାଜ, ଦୁଃଶାସନ ଆଦି ସମସ୍ତ କୌରବ

ଭ୍ରାତା– ଆମେ ସମସ୍ତେ ଯୋଗ ଦେଲୁ ଯୁଦ୍ଧରେ । ଶିଶୁପାଳ ଓ ଦୁର୍ଯ୍ୟୋଧନ ମଧ୍ୟ ଇତିମଧ୍ୟରେ ଚେତା ଫେରିପାଇ ପୁଣି ମାତି ଉଠିଲେ ସଂଘର୍ଷରେ । ରାଜା ଦ୍ରୁପଦଙ୍କ ସେନାବାହିନୀ ମଧ୍ୟ ଯୋଗ ଦେଲା କୃଷ୍ଣା ଓ ଲକ୍ଷ୍ୟବେଧୀ ଯୁବକଙ୍କ ପକ୍ଷ ନେଇ । କ୍ଷଣକ ମଧ୍ୟରେ ସୁନ୍ଦର ଭାବରେ ସଜାସଜି ହୋଇଥିବା ସଭାମଣ୍ଡପଟି ପରିଣତ ହୋଇଗଲା ଏକ ଭୀଷଣ ରଣକ୍ଷେତ୍ରରେ । ଅନେକ ସମୟ ପର୍ଯ୍ୟନ୍ତ ଚାଲିଲା ଯୁଦ୍ଧ । ଅନେକ ଲୋକଙ୍କ ଶବମାନ ଭୂଲୁଣ୍ଠିତ । କ୍ଷଣକ ମଧ୍ୟରେ କୁସୁମଦଳରେ ଛାଇ ହୋଇଥିବା ସ୍ୱୟଂବର ସଭାଟିର ଭୂମି ଏବେ ରକ୍ତରଞ୍ଜିତ । ସମଗ୍ର ସଭା ଛାରଖାର, ଧ୍ୱସ୍ତ-ବିଧ୍ୱସ୍ତ । ମହାବାତ୍ୟା-ପ୍ରପୀଡ଼ିତ ବନଭୂମି ଯେମିତି !

ସୂର୍ଯ୍ୟ ବୁଡ଼ିବାକୁ ଆଉ ଅଳ୍ପ କିଛି ସମୟ ବାକି ଅଛି, ଯୁଦ୍ଧ ସରିଗଲା । ଆମ ରାଜନ୍ୟବର୍ଗଙ୍କ ମିଳିତ ବାହିନୀ ହେଲା ପରାଜିତ । ରାଜା ଦ୍ରୁପଦଙ୍କର ଜୟ ହେଲା । ଲକ୍ଷ୍ୟବେଧୀ ଯୁବକ ବିଜୟୀ ହୋଇ କୃଷ୍ଣାଙ୍କୁ ପାଇଲେ ପତ୍ନୀରୂପରେ । ଆମେ ସମସ୍ତେ ଜୀବନରକ୍ଷା କରିବାଲାଗି ପଳାଇଆସିଲୁ ନିଜ ନିଜ ରାଜଧାନୀ ଉଦ୍ଦେଶ୍ୟରେ । ସାଥିରେ ବହିଆଣିଲୁ ଲଜ୍ଜା ଅପମାନର ବହନ !

ସତ କହୁଛି, ସେଦିନ ମୁଁ ଖୁବ୍ ଅପମାନିତ ବୋଧ କରିଥିଲି । ପ୍ରଥମରେ ଭରା ସଭାରେ କୃଷ୍ଣା ମତେ ସୂତପୁତ୍ର କହି କଲେ ହେୟ ଜ୍ଞାନ । ଲକ୍ଷ୍ୟବେଧ ଉଦ୍ୟମରୁ କଲେ ନିବୃତ୍ତ । ମୋ' ବୀରତ୍ୱ ଓ ରାଜତ୍ୱ ପ୍ରତି ଦେଖାଇଲେ ଅମର୍ଯ୍ୟାଦା । ଛି ! ଛି ! ଏଭଳି ଭିକାରିଟିଏ ହୋଇ ରାଜପଦ ପାଇବାରେ ଲାଭ ବା କ'ଣ ? ଏତେ ଅସ୍ତ୍ରବିଦ୍ୟା ଶିଖି ବୀରତ୍ୱର ଅଭିମାନ ନେଇ ବଞ୍ଚିବାର ଅର୍ଥ ବା କ'ଣ ? ସବୁ ଫମ୍ପା । ସବୁ ଶୁଖିଲା । ସବୁ ନିରର୍ଥକ । ମୁଁ ତ ସାମାନ୍ୟ ଜଣେ ସୂତପୁତ୍ର । ଅଶ୍ୱଶାଳାରେ ଅଶ୍ୱମାନଙ୍କ ପରିଚର୍ଯ୍ୟା କରିବା ମୋର କାମ । ରାଜା ହେବାର ମୋର କିବା ଅଧିକାର ଅଛି ? ନିଜକୁ ନିଜେ ଖୁବ୍ ନିନ୍ଦା କରୁଥିଲି । ପରକ୍ଷଣରେ ପୁଣି ମନେ ମନେ ଜଳି ଉଠୁଥିଲି ସୁଯୋଗ ପଡ଼ିଲେ ପ୍ରତିଶୋଧ ନେବାପାଇଁ । ଅସ୍ତ୍ରପରୀକ୍ଷାର ରଙ୍ଗଭୂମିରେ ସୂତ୍ରପୁତ୍ର କହି ଭୀମସେନ ମତେ ସେ ଦିନ ଦେଇଥିଲେ ଅପମାନ । ଆଜି ପୁଣି ସେହି କଥା କହି ଦ୍ରୌପଦୀ ଦେଇଛନ୍ତି ଅପମାନ । ମୁଁ ନିଶ୍ଚୟ ଦିନେ ନା ଦିନେ ଏଇ ଅପମାନର ପ୍ରତିଶୋଧ ନେବି ସୁଧ-ମୂଳ ସହିତ । ହଁ, ନିଶ୍ଚୟ ନେବି । ପ୍ରତିଜ୍ଞା କରି କହୁଛି ନିଶ୍ଚୟ ନେବି । ଏଇ ଅପମାନ କଥା ଭାବିଲା ବେଳକୁ ଆଉ ଏକ ଅପମାନ ଧକ୍କା ମାରୁଥାଏ ମନର କବାଟରେ । ତାହା ଆଜିର ପରାଜୟ ।

ଏତେ ଲୋକଙ୍କ ସହାୟତାରେ ଯୁଦ୍ଧ କରୁଥିଲି । ତଥାପି ହେଲି ପରାଜିତ । ପୁଣି ସାମାନ୍ୟ ଦୁଇ ଜଣ ବ୍ରାହ୍ମଣ ଯୁବକଙ୍କ ହାତରେ ଓ ସେହି ଦୁହିଁଙ୍କୁ ସହାୟତା ଦେଉଥିବା ସ୍ୱଳ୍ପ ସଂଖ୍ୟକ ପାଞ୍ଚାଳ ସେନାବାହିନୀଦ୍ୱାରା । ତା'ହେଲେ ମୋ' ଅସ୍ତ୍ରଜ୍ଞାନର ମୂଲ୍ୟ ବା କ'ଣ ? ନିୟତି ଯଦି ପରାଜୟ ଲେଖିଛି ମୋ' କପାଳରେ, ତେବେ ନିଜ ପୌରୁଷକୁ ନେଇ କେତେ ବା ଆଉ ଲଢ଼ିବି ? କିଏ ମତେ ଦେବ ସେ ଧୈର୍ଯ୍ୟ ! କର୍ଣ୍ଣ ବୋଲି ଯେଉଁ ରକ୍ତମାଂସରେ ଗଢ଼ା ମଣିଷଟି, ଚିରଦିନ କ'ଣ ତା ଭାଗ୍ୟରେ ଲେଖା ଅଛି ଅପମାନ, ଅବମାନନା ଓ ପରାଜୟ ! ହାୟ ରେ ଦୁର୍ଭାଗା କର୍ଣ୍ଣ !!

ଏହି ଦୁଇଟି ଅପମାନର କାଳିମା ଧରି ଫେରିଲି ହସ୍ତିନାପୁରକୁ । ଆମେ ମଶାଲ ଜଳାଇ ରାତ୍ରିରେ ବି ଯାତ୍ରାକୁ ରଖିଥିଲୁ ଅକ୍ଷୁଣ୍ଣ । ମନ ଭଲ ନ ଥିଲା । ପଥ ମଧ୍ୟରେ ବିଶ୍ରାମ ନେବାର ସୁବିଧା ଥିଲେହେଁ ନେଇ ନ ଥିଲୁ ବିଶ୍ରାମ । ଅବିରାମ ଗତିରେ ଚାଲିଥିଲୁ ହସ୍ତିନାପୁର ଅଭିମୁଖରେ । ସେଠାରେ ପହଞ୍ଚୁ ପହଞ୍ଚୁ ଅର୍ଦ୍ଧରାତ୍ରି ଗଡ଼ିଯାଇଥିଲା ସାମାନ୍ୟ ।

ରାତ୍ରିର ନିବିଡ଼ ଅନ୍ଧକାରରେ ପ୍ରାଣ-ମନର ଅନ୍ଧକାରକୁ ମିଶାଇ ଦେଇଥିଲି ମୁଁ । ଏଭଳି ଅଶାନ୍ତ ଚିତ୍ତ ଧରି କେତେବେଳେ ଯେ ଶଯ୍ୟାଧାରରେ ଶୋଇଗଲି, ତାହା ଜାଣିପାରି ନ ଥିଲି ।

## ଛୟାଳିଶ

ଚାରି ଦିନ ପରେ ହସ୍ତିନାପୁରରେ ପଡ଼ିଗଲା ଚହଳ । ଗୁପ୍ତଚର ଖବର ଆଣି ପହଞ୍ଚାଇଦେଲା ପାଣ୍ଡବମାନେ ଜୀବିତ । ପାଞ୍ଚାଳ ରାଜ୍ୟର ଏକ କୁମ୍ଭକାର ଗୃହରେ ଥିଲେ ମାତା କୁନ୍ତୀ ସଙ୍ଗରେ । ଲକ୍ଷ୍ୟବେଧୀ ବ୍ରାହ୍ମଣ ଯୁବକ ଅର୍ଜୁନ । ତାଙ୍କୁ ଯୁଦ୍ଧରେ ସହାୟତା ଦେଇଥିବା ବ୍ୟକ୍ତିଜଣକ ଭୀମସେନ । କୁମ୍ଭକାର ଗୃହରୁ ଯାଇଛନ୍ତି ରାଜା ଦ୍ରୁପଦଙ୍କ ରାଜଭବନକୁ । ସେମାନେ ଦିନେ ଦୁଇ ଦିନ ମଧ୍ୟରେ ରାଜାଙ୍କ ଆତିଥ୍ୟ ଛାଡ଼ି ନିକଟସ୍ଥ ଅରଣ୍ୟକୁ ଚାଲିଯିବେ ଓ ସେଠାରେ ପର୍ଣ୍ଣକୁଟୀ ନିର୍ମାଣ କରି ରହିବେ । ଆଉ ଏକ ବିଚିତ୍ର ଓ ଅସମ୍ଭବ କଥା । ଆର୍ଯ୍ୟ ନୀତିନିୟମର ବିରୋଧୀ ମଧ୍ୟ । ସମସ୍ତ ପାଣ୍ଡବଭ୍ରାତା ପାଞ୍ଚାଳୀଙ୍କୁ ଗ୍ରହଣ କରିଛନ୍ତି ପତ୍ନୀ ରୂପରେ ।

ଖବରଟା ଶୁଣି ଖୁସି ହେଲି ଯେତିକି ତାହାଠାରୁ ଅଧିକ ଘୃଣାରେ ହୋଇଉଠିଲି ଭରପୂର । ଖୁସି ଏଇଥିପାଇଁ ଯେ ପାଣ୍ଡବମାନେ ଜୀବିତ ବୋଲି ନିଶ୍ଚିତ ପ୍ରମାଣ ଏବେ ମିଳିଗଲା । ମୋର ଚିରଶତ୍ରୁ ଭୀମସେନ ଓ ଅର୍ଜୁନ ଜୀବିତ । ପୁଣି ନୂତନ କରି ସୃଷ୍ଟ ହୋଇଥିବା ଶତ୍ରୁ ଯାଜ୍ଞସେନୀ ହୋଇଛନ୍ତି ଉଭୟଙ୍କ ପତ୍ନୀ । ତେଣୁ ଏଇ ତିନି ଶତ୍ରୁଙ୍କ ଉପରେ ପ୍ରତିଶୋଧ ନେବାଟା ସହଜ ହୋଇପଡ଼ିବ ମୋ' ପକ୍ଷରେ । ଖାଲି ସମୟକୁ ପ୍ରତୀକ୍ଷା କରିବାକୁ ହେବ । ସୁଯୋଗକୁ ଅପେକ୍ଷା କରିବାକୁ ହେବ । ଜୀବନଟା ତ ସେଇଆ । କ୍ଷତ ଓ ପ୍ରତୀକ୍ଷାର ଏକ ଛନ୍ଦାଛନ୍ଦି ଜାଲ । ଗୋଟିଏ କ୍ଷତ ଆସିଲେ ତାହାକୁ ଶୁଖାଇବା ପାଇଁ ଲାଗେ ସମୟ । ସେଥିପାଇଁ ପ୍ରତୀକ୍ଷା କରିବାକୁ ପଡ଼େ । ସେଇଟି ଶୁଖିଗଲେ ପୁଣି ଆସେ ଆଉ ଏକ କ୍ଷତ । ତାହାକୁ ବି ଶୁଖିବାପାଇଁ ଲାଗେ ସମୟ । ପୁଣି ସେଥିପାଇଁ ପ୍ରତୀକ୍ଷା । ଏମିତି କ୍ଷତ ଓ ପ୍ରତୀକ୍ଷାର ଜାଲ ବୁଣି ବୁଣି ମଣିଷ ଚାଲିଥାଏ । ଜୀବନର ସ୍ରୋତ ବି ବହି ବହି ଚାଲିଥାଏ । କ୍ଷତ ସରେ ନାହିଁ କି ପ୍ରତୀକ୍ଷା ବି ସରେ ନାହିଁ । ଗୋଟିଏ ଗଣ୍ଠି ଫିଟିଲେ ଆଉ ଗୋଟିଏ ଗଣ୍ଠି ପଡୁଥାଏ । ଏମିତି ଫିଟା-ବନ୍ଧା ମଧ୍ୟ ଦେଇ ଜୀବନ ଜାଲଟିର ବୁଣା ଚାଲିଥାଏ । ମୁଁ ଏବେ ଖୁସି ମନରେ ସେଇ ପ୍ରତୀକ୍ଷା ହିଁ କରିବାର ସୁଯୋଗ ଅନ୍ତତଃ ପାଇପାରିଲି । ଏ ତ ଗଲା ଖୁସି ହେବାର କାରଣ । ମନରେ ମୋର ଘୃଣା ଏଇଥିପାଇଁ ଯେ ପାଣ୍ଡବମାନଙ୍କ ଭଳି ନୀତିବାନ୍ ବ୍ୟକ୍ତିମାନେ ଏଭଳି ଘୃଣ୍ୟ

ଆର୍ଯ୍ୟବିରୋଧୀ କର୍ମ କଲେ କେମିତି ? ଆର୍ଯ୍ୟସମାଜରେ ବହୁପତ୍ନୀତ୍ୱ ଅବଶ୍ୟ ଚଳି ଆସୁଛି ବୈଦିକ କାଳରୁ । କିନ୍ତୁ ବହୁପତିତ୍ୱ । ଏହା ତ ଜଣା ନାହିଁ କି ଶୁଣା ବି ନାହିଁ । ଧର୍ମନନ୍ଦନ ବୋଲି ପ୍ରତିଷ୍ଠା ଅର୍ଜନ କରିଥିବା ଯୁଧିଷ୍ଠିର ପୁଣି ଏଥିରେ ସମ୍ମତି ଦେଲେ କେମିତି ? ସବୁଠାରୁ ବିଚିତ୍ର ଓ ଆଶ୍ଚର୍ଯ୍ୟ କଥା ହେଉଛି ଦ୍ରୁପଦକୁମାରୀ ଯାଜ୍ଞସେନୀଙ୍କ ଆଚରଣ । ମଧ୍ୟମପାଣ୍ଡବ ଅର୍ଜୁନ ତାଙ୍କୁ ପାଇଥିଲେ ପତ୍ନୀରୂପରେ ଲକ୍ଷ୍ୟବେଧ କରି । ଧର୍ମତଃ ସେଇ ହିଁ ତାଙ୍କର ପତି । ଅଥଚ ସେ ପୁଣି ବିବାହ କଲେ ତାଙ୍କର ଅନ୍ୟ ଚାରି ଭ୍ରାତାଙ୍କୁ ! ଚାରି ଭ୍ରାତାଙ୍କ ମଧ୍ୟରୁ ପୁଣି ଯୁଧିଷ୍ଠିର ଓ ଭୀମସେନ ତାଙ୍କଠାରୁ ବୟସରେ ବଡ଼ । ମାନ୍ୟତାରେ ଯାଜ୍ଞସେନୀଙ୍କର ପିତା ସମାନ ହେବେ । ସେ ଦୁହିଁଙ୍କର ପତ୍ନୀ ହେବାଲାଗି କିପରି ସ୍ୱୀକୃତି ଦେଲେ ସେ ? ଛି ! ଛି ! କୁରୁବଂଶରେ ଏ କି ଅଲିଭା କଳଙ୍କ ଆଣି ବୋଳିଦେଲେ ପାଣ୍ଡବଗଣ ! କିଏ ବା ସେମାନଙ୍କୁ ରାଜପୁତ୍ର ଜ୍ଞାନରେ ସମ୍ମାନ ଦେଖାଇବ ? କାର୍ଯ୍ୟରେ ତ ଚାଣ୍ଡାଳପୁତ୍ରମାନଙ୍କଠାରୁ ହୋଇଗଲେ ହୀନ ! ସଂବାଦଟି ଶୁଣିବା ମାତ୍ରେ ନାସିକାଗ୍ର ମୋର ବାରମ୍ବାର କୁଞ୍ଚିତ ହେବାକୁ ଲାଗିଲା ଘୃଣାରେ ।

କିନ୍ତୁ ପରକ୍ଷଣରେ କଥାଟାକୁ ଅଧିକତର ଗଭୀର ଭାବରେ ଯେତେବେଳେ ଅନୁଧ୍ୟାନ କଲି, ସେତେବେଳେ କିଛିଟା ଯୁକ୍ତିନିଷ୍ଠତା ପାଇଲି ସେଥିରୁ । ଜାଣିପାରିଲି ପାଣ୍ଡବମାନେ ବିବଶ ହୋଇ ଦ୍ରୌପଦୀଙ୍କୁ ଗ୍ରହଣ କରିଥାନ୍ତି ପତ୍ନୀଭାବରେ । ବାସ୍ତବିକ, ଏଇ ବିବଶତା ଭାରି ଦାରୁଣ । ଖୁବ୍ ନିର୍ଦ୍ଦୟ । ମଣିଷକୁ ତା' ବିବେକ ବିରୋଧରେ ନ କରିବା କାମକୁ କରାଏ । ନ କହିବା କଥାକୁ କୁହାଏ । ନ ଶୁଣିବା କଥାକୁ ଶୁଣାଏ । ତାକୁ ଟାଣି ଟାଣି ନେଉଥାଏ ରଜ୍ଜୁବଦ୍ଧ ଧେନୁଟି ଭଳି ନିଜ ଇଚ୍ଛାରେ । ନରକକୁ ନେଲେ ମଧ୍ୟ ବିବଶ ମଣିଷ ବିଚରା କିଛି କରିପାରି ନ ଥାଏ । ମୋ' ନିଜ ଅବସ୍ଥା ବି ତ ଠିକ୍ ସେମିତି । ଦୁର୍ଯ୍ୟୋଧନଙ୍କ ପାପପକ୍ଷକୁ କେବଳ ବିବଶ ଥାଇ ହିଁ ସମର୍ଥନ କରିଚାଲିଛି । ଆଉ ଚାଲୁଥିବି ମଧ୍ୟ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଯୁଆଡ଼କୁ ଗଲେ ପଛେ ଯିବି ସ୍ୱର୍ଗକୁ ଅଥବା ନରକକୁ ! କର୍ଣ୍ଣର ଏଇ ବିବଶତାକୁ କ'ଣ ଆଗାମୀ ଦିନର ଇତିହାସ ବୁଝିପାରିବ ? ବୁଝିପାରିବ କେହି ଜଣେ ହେଲେ ଦରଦୀ ଦାୟାଦ ?

ଘଟଣାଟି ଘଟେ ଏଇଭଳି ବିଚିତ୍ର ପରିସ୍ଥିତିରେ । ପଞ୍ଚପାଣ୍ଡବ ଦ୍ରୌପଦୀଙ୍କୁ ସାଥିରେ ଧରି ସେମାନଙ୍କ କୁଟୀର ଅଭିମୁଖରେ ଯାଆନ୍ତି । ସଂଧ୍ୟା ଯାଇଥାଏ ଗଡ଼ି । କୁଟୀରରେ ପହଞ୍ଚିଲା ବେଳକୁ ଘୋଟିଆସିଥାଏ ଅନ୍ଧାର । ମାତା କୁନ୍ତୀ କୁଟୀର ମଧ୍ୟରେ ଥାଇ କ'ଣ କାର୍ଯ୍ୟରତ । ଜ୍ୟେଷ୍ଠ ଯୁଧିଷ୍ଠିର ଦ୍ୱାରଦେଶରେ ଆନନ୍ଦରେ ବିହ୍ୱଳ ହୋଇ କହନ୍ତି ''ମାଆ, ଦେଖିବେ ଆସନ୍ତୁ । କି ସୁନ୍ଦର ଭିକ୍ଷା ଆମେ ଆଣିଛୁ !''

''ଟିକିଏ ଛାଡ଼ି ଯାଉଛି ବାପାମାନେ । ଯାହା ଆଣିଛ, ତାହା ସମାନ ଭାବରେ ବାଣ୍ଟିକରି ନିଅ ।''

ଚମକି ପଡ଼ନ୍ତି ଯୁଧିଷ୍ଠିର । ଅନ୍ୟାନ୍ୟ ପାଣ୍ଡବ ଭ୍ରାତାମାନେ ବି । ଦ୍ରୌପଦୀଙ୍କ ଚିତ୍ତରେ ମଧ୍ୟ ସମଧିକ ଚକିତ ଚମକ । ଏ କି କଥା କହିଲେ ମାଆ ? ଏ କି ଧର୍ମସଂକଟରେ ଆଣି ପକାଇଲେ ? ତାଙ୍କ ଆଦେଶ ପାଳିତ ହେବ କେମିତି ? ସମସ୍ତଙ୍କ ମୁଖମଣ୍ଡଳରେ ଶଙ୍କାର

ଛାୟା । ଏତିକିବେଳେ କୁଟୀର ମଧ୍ୟରୁ ବାହାରିଆସନ୍ତି କୁନ୍ତୀଦେବୀ ଏବଂ ପଚାରନ୍ତି ହସ ହସ ମୁଖରେ, ''ଆସ ବାପାମାନେ, ଭିତରକୁ ଆସ । କ'ଣ ଅପୂର୍ବ ଭିକ୍ଷା ଆଣିଛ ଦେଖେଁ ?''

ଯୁଧିଷ୍ଠିର ଦେଖାଇଦିଅନ୍ତି ଦ୍ରୌପଦୀଙ୍କୁ ଏବଂ ଯାହା ଯାହା ଘଟିଯାଇଛି ତାହା ସବୁ କହନ୍ତି ବିସ୍ତାରିତ ଭାବରେ । ଦ୍ରୌପଦୀ ପ୍ରଣାମ କରନ୍ତି ନିଜ ଶ୍ୱଶ୍ରୂଙ୍କ ପାଦତଳେ । କୁନ୍ତୀଦେବୀ ତାଙ୍କୁ କୋଳେଇନିଅନ୍ତି ଆଦରରେ ଓ ଅନୁତାପ କରି କହନ୍ତି, ''ନ ଜାଣି ନ ଶୁଣି ଏ ମୁଁ କ'ଣ କରିପକାଇଲି ? ଏବେ କ'ଣ ହେବ ? ହେ ଭଗବାନ୍ !''

ଯୁଧିଷ୍ଠିରଙ୍କ ଆଡ଼କୁ କାତର ଦୃଷ୍ଟି ଢାଳି ପଚାରନ୍ତି, ''କହ ବାପା ଯୁଧିଷ୍ଠିର ! ତୁମେ ତ ସବୁ ଧର୍ମଶାସ୍ତ୍ରରେ ପ୍ରବୀଣ । ଏ କ୍ଷେତ୍ରରେ କ'ଣ କରାଯିବ ?''

''କିଛି ଅସୁବିଧା ନାହିଁ ମାଆ । ଆପଣଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳିତ ହେବ ।'' ଉତ୍ତର ତାଙ୍କର ଗମ୍ଭୀର ଓ ଓଜସ୍ୱିତାରେ ଭରପୂର ।

''କିପରି ବାପା ? ମତେ ତ କିଛି ବୁଦ୍ଧି ଦିଶୁ ନାହିଁ ।'' କୁନ୍ତୀଦେବୀଙ୍କ କଣ୍ଠସ୍ୱର କାତରତର । ଜଣଙ୍କର ପତ୍ନୀଙ୍କୁ ସମସ୍ତ ଭ୍ରାତାଙ୍କ ମଧ୍ୟରେ କିପରି ବଣ୍ଟାଯାଇପାରିବ, ତାହାର ବାଟ ଖୋଜି ପାଉ ନ ଥାନ୍ତି ସେ । ବଡ଼ ଅଧୀରା ହୋଇ ଉଠୁଥାନ୍ତି ।

''ଅତି ସହଜ ମାଆ । ଆମେ ପାଞ୍ଚ ଭାଇ ଦ୍ରୌପଦୀଙ୍କୁ ବିବାହ କରିବୁ ।'' ଯୁଧିଷ୍ଠିର କଥାଟିକୁ ପରିଷ୍କାର କରିଦିଅନ୍ତି । ଅଧରତଳେ ମୃଦୁ ମୃଦୁ ହସ । ମୁଖମଣ୍ଡଳରେ ଶାନ୍ତ ସୌମ୍ୟ ବିଭା ।

''ହଁ, ମାଆ । ତାହା ଛଡ଼ା ଆଉ ଉପାୟ ନାହିଁ । ଆମେ ପାଞ୍ଚଭାଇ ହେବୁ ତାଙ୍କ ପତି ।'' ଅର୍ଜୁନ ଜ୍ୟେଷ୍ଠଭ୍ରାତାଙ୍କ କଥାକୁ ସମର୍ଥନ କରନ୍ତି ଦୃଢ଼ ଭାବରେ । ନିଜ ଇଚ୍ଛାରେ ଦ୍ରୌପଦୀଙ୍କ ଉପରେ ଥିବା ତାଙ୍କ ପତିତ୍ୱର ଅଧିକାରକୁ ବାଣ୍ଟିଦିଅନ୍ତି ଭାଇମାନଙ୍କ ମଧ୍ୟରେ । ବିଚିତ୍ର ଏ ତ୍ୟାଗ । ବିଚିତ୍ର ଏ ମାତୃଭକ୍ତି । ଅବାକ୍ ହୋଇଉଠନ୍ତି ମାତା । ଆଖିରେ ଆନନ୍ଦ ଓ କୃତଜ୍ଞତାର ମିଶ୍ରିତ ଅଶ୍ରୁ ଢଳ ଢଳ !

ଅନ୍ୟ ପାଣ୍ଡବମାନେ ମଧ୍ୟ ହୁଅନ୍ତି ଏଇ ପ୍ରସ୍ତାବର ସମର୍ଥକ ।

କୁନ୍ତୀଦେବୀ ପଚାରନ୍ତି ଦ୍ରୌପଦୀଙ୍କୁ, ''ମାଆ ! ଶୁଣିଲ ତ ଏମାନଙ୍କ କଥା । ମାତୃଭକ୍ତିରେ ପାଗଳ ଏମାନେ । କୌଣସିମତେ ମୋ' କଥାକୁ ତଳେ ପକାଇଦେବାକୁ ଚାହାନ୍ତି ନାହିଁ । ତୁମେ ତେଣୁ କହ, ତୁମର ଇଚ୍ଛା କ'ଣ ? ତୁମ ଇଚ୍ଛା ବିରୋଧରେ ଏ ବିବାହ ହୋଇ ନ ପାରେ ।''

''ମୁଁ ତ ଆପଣଙ୍କ ଝିଅ ସମାନ । ଆପଣଙ୍କ ଆଦେଶ ମୋ' ପାଇଁ ଶିରୋଧାର୍ଯ୍ୟ । ଯାହା ଆପଣଙ୍କ ଇଚ୍ଛା ଓ ମୋ' ପତିମାନଙ୍କ ଇଚ୍ଛା, ମୋର ତାହା ହିଁ ଇଚ୍ଛା । ଏଥିରେ ସଂପୂର୍ଣ୍ଣ ସମ୍ମତ ମୁଁ ।'' ନମ୍ର ଅଥଚ ଦୃଢ଼ ସ୍ୱରରେ କହନ୍ତି ଦ୍ରୌପଦୀ । ଦ୍ୱିଧାହୀନ ବାଣୀ । ବିକୃତିହୀନ ମୁଖଶ୍ରୀ । ସତୀତ୍ୱର ବିଭାରେ ସମୁଜ୍ଜ୍ୱଳ !

କୁନ୍ତୀଦେବୀ ସ୍ତବ୍ଧ । ପାଣ୍ଡବମାନେ ବି ସ୍ତବ୍ଧ-ଚକିତ । ପର୍ଣ୍ଣକୁଟୀରର ସାମଗ୍ରିକ ବାତାବରଣ ବି ସ୍ତବ୍ଧ !

କୁନ୍ତୀଦେବୀ ଦ୍ରୌପଦୀଙ୍କୁ ପୁନର୍ବାର ବାନ୍ଧିରଖନ୍ତି ଆଲିଙ୍ଗନ ପାଶରେ ଓ କହନ୍ତି, "ମାଆ ଦ୍ରୌପଦୀ ! ଧନ୍ୟା ତୁମେ । ଧନ୍ୟ ତୁମର ସତୀତ୍ୱ । 'ମୋ' ପାଣ୍ଡବ ପୁତ୍ରମାନେ ତୁମକୁ ପତ୍ନୀ ଭାବରେ ପାଇ ଆଜି ଧନ୍ୟ । ଆଜିଠାରୁ ତୁମକୁ ବଧୂରୂପେ ପାଇ କୁରୁବଂଶ ବି ହୋଇଉଠିଛି ଧନ୍ୟ !" କହୁ କହୁ ସଂବେଗର ଅଧୀନ ଥାଇ ଏତେ ଗୋପନ କଥା କହିଦିଅନ୍ତି ପ୍ରକାଶ୍ୟରେ । ଦ୍ରୌପଦୀ ଏତେବେଳକେ ଜାଣନ୍ତି ଯେ ପଞ୍ଚପାଣ୍ଡବ ତାଙ୍କ ପତି । ତାଙ୍କ ଆନନ୍ଦ କହିଲେ ନ ସରେ । ତାଙ୍କୁ ସ୍ୱର୍ଗପ୍ରାପ୍ତିର ସୁଖ ମିଳିଗଲା ଭଳି ଲାଗେ । ଆନନ୍ଦର ଅଶ୍ରୁଧାରା ଝରିପଡ଼େ ନୟନଯୁଗଳରୁ । ହୁଏତ ଭାବୁଥିବେ, କେଡ଼େ ଭାଗ୍ୟବତୀ ସେ ! କୁରୁରାଜ ଭବନରେ ପ୍ରବେଶ ପୂର୍ବରୁ ବାରଣକଳସଟିକୁ ବାମ ପାଦରେ ଠେଲି ଗଡ଼ାଇ ଦେବାର ଅଧିକାର ଆଜି ପାଇଛନ୍ତି ସେ ! ଆଃ ! ଏତେ ଆନନ୍ଦ ସହିପାରିବେ ତ ?

ଏଣେ ଧୃଷ୍ଟଦ୍ୟୁମ୍ନ ଗୋପନରେ ଅନୁସରଣ କରୁଥାନ୍ତି ଦ୍ରୌପଦୀ ଓ ବ୍ରାହ୍ମଣଯୁବକମାନଙ୍କୁ । ସମସ୍ତ ଘଟଣା ସେ ଦେଖନ୍ତି ନିଜ ଆଖିରେ । କୁନ୍ତୀଦେବୀଙ୍କ କଥା ଶୁଣି ମୋହିତ ହୋଇଉଠନ୍ତି ଆନନ୍ଦରେ । ଅର୍ଜୁନ ତା'ହେଲେ କରିଛନ୍ତି ଲକ୍ଷ୍ୟବେଧ । ଭାଗ୍ୟବଳରେ ଏବେ ତାଙ୍କ ଭଗିନୀ ପାଇଛନ୍ତି ପଞ୍ଚପାଣ୍ଡବଙ୍କୁ ପତି ରୂପରେ । ପିତୃଶତ୍ରୁ ଦ୍ରୋଣାଚାର୍ଯ୍ୟଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଏଣିକି ଆଉ କିଛି ଅସୁବିଧା ହେବ ନାହିଁ । ପାଣ୍ଡବମାନଙ୍କ ଭଳି ମହା ମହା ବୀରମାନେ ହେବେ ପାଞ୍ଚାଳ ରାଜଶକ୍ତିର ସହାୟକ । ତେଣୁ ପିତାଙ୍କ ମନସ୍କାମନା ପୂରଣ ହେବା ନିଶ୍ଚିତ । ହୁଏତ ଏଇଭଳି କିଛି ଭାବନା ତାଙ୍କ ମନକୁ ଛୁଇଁଥିବ ବୋଲି ମୋର ଧାରଣା ।

ସେ ଫେରିଆସି ରାଜା ଦ୍ରୁପଦଙ୍କୁ ସବୁ କଥା ଜଣାନ୍ତି । ରାଜା ପାଣ୍ଡବମାନଙ୍କୁ ଓ ରାଜମାତା କୁନ୍ତୀଙ୍କୁ ନେଇଯାଆନ୍ତି ନିଜ ଭବନକୁ । ସେଠାରେ ପାଣ୍ଡବମାନଙ୍କର ଦ୍ରୌପଦୀଙ୍କ ସହିତ ବିବାହ ଅନୁଷ୍ଠିତ ହୁଏ ମହାସମାରୋହରେ । ଏହି ବିବାହକୁ ମହର୍ଷି ବ୍ୟାସଦେବ ସ୍ୱେଚ୍ଛାରେ ଆସି କରନ୍ତି ସମର୍ଥନ । ସେ ମଧ ପାଣ୍ଡବମାନଙ୍କ ପିତାମହ ହିସାବରେ ହୁଅନ୍ତି ବରକର୍ତ୍ତା ଓ ନିଜ ପୌତ୍ରମାନଙ୍କ ପାଇଁ କନ୍ୟାକର୍ତ୍ତାଙ୍କ ଠାରୁ ଗ୍ରହଣ କରନ୍ତି ଦ୍ରୌପଦୀଙ୍କୁ ।

ଦ୍ରୁପଦ ପାଣ୍ଡବମାନଙ୍କୁ ନିଜ ରାଜ୍ୟ ଫେରିପାଇବା ପର୍ଯ୍ୟନ୍ତ କାମ୍ପିଲ୍ୟ ନଗରୀରେ ରହିବାପାଇଁ ଅନୁରୋଧ କରନ୍ତି । ସେମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଭବନର ବ୍ୟବସ୍ଥା କରନ୍ତି । କିନ୍ତୁ ପାଣ୍ଡବମାନେ ଏହାକୁ ପ୍ରତ୍ୟାଖ୍ୟାନ କରନ୍ତି ବିନୀତ ଭାବରେ । ସେମାନଙ୍କ ପକ୍ଷରୁ ଜ୍ୟେଷ୍ଠ ଯୁଧିଷ୍ଠିର କହନ୍ତି ଦ୍ରୁପଦଙ୍କୁ, "ତାତ ! ଆପଣଙ୍କ ଦୟା ପ୍ରଦର୍ଶନ ପାଇଁ ଧନ୍ୟବାଦ । କିନ୍ତୁ କ୍ଷତ୍ରିୟପକ୍ଷରେ କାହାଙ୍କ ଦୟା ଉପରେ ନିର୍ଭରଶୀଳ ହେବା ଉଚିତ ନୁହେଁ । ତାହା ଭିକ୍ଷାବୃତ୍ତି ସହିତ ସମାନ ଯାହା କ୍ଷତ୍ରିୟ ପାଇଁ ମନା । ନିଜ ବଳପରାକ୍ରମରେ ମିଳିବା ବସ୍ତୁକୁ ହିଁ ସେ କରିପାରିବ ଉପଭୋଗ । ତାହା ଛଡ଼ା ପୈତୃକ ସମ୍ପତ୍ତିକୁ ମଧ । ଆମେ ନିଜ ରାଜ୍ୟ

ଫେରିପାଇବା ପର୍ଯ୍ୟନ୍ତ ବନବାସ କରୁଥିବୁ । ପର୍ଣ୍ଣକୁଟୀରରେ ରହୁଥିବୁ । ଦ୍ରୌପଦୀଙ୍କ ଅସୁବିଧା ହେଲେ ସେ ଏଇଠାରେ କାମ୍ପିଲ୍ୟ ନଗରୀରେ ଥାଆନ୍ତୁ । ପରେ ଆମେ ତାଙ୍କୁ ହସ୍ତିନାପୁରୀକୁ ନେଇଯିବୁ ।''

ରାଜମାତା କୁନ୍ତୀ ମଧ ଦ୍ରୌପଦୀଙ୍କୁ କାମ୍ପିଲ୍ୟ ନଗରୀରେ ରହିବାପାଇଁ ବାରମ୍ବାର ପରାମର୍ଶ ଦିଅନ୍ତି । ବନବାସର କ୍ଳେଶ ବିଷୟରେ ସୂଚନା ଦିଅନ୍ତି । ଦ୍ରୌପଦୀ କିନ୍ତୁ ଲୁହଭରା ଆଖିରେ କହନ୍ତି, ''ଏ କି ଦାରୁଣ କଥା ଶୁଣାଉଛନ୍ତି ମାଆ ? ଆପଣ ପରା ମୋ' ସତୀତ୍ୱକୁ ଧନ୍ୟବାଦ ଦେଇ ସେଦିନ ଏତେ କଥା କହିଥିଲେ । ପତିମାନେ ବନବାସର ଦୁଃଖ ଭୋଗୁଥିବା ବେଳେ ମୋ' ପକ୍ଷରେ ଜଣେ ସତୀ ନାରୀ ହୋଇ ରାଜଭବନର ସୁଖ-ସମ୍ପଦରେ ବୁଡ଼ିରହିବା କ'ଣ ସମ୍ଭବ ? ଏହା କ'ଣ ଧର୍ମର କଥା ? ମୋ' ପତିମାନେ ରାଜା ହେଲେ ମୁଁ ହେବି ରାଣୀ । ସେମାନେ ଭିକାରି ହେଲେ ମୁଁ ହେବି ଭିକାରୁଣୀ । ସେମାନେ ବନବାସୀ ହେଲେ ହେବି ବନବାସିନୀ । ସୀତା ରାମଙ୍କୁ ଅନୁସରଣ କରିଥବା ଭଳି ମୁଁ ମଧ ମୋ' ପତିମାନଙ୍କୁ ବନଗମନରେ ଅନୁସରଣ କରିବି । ସେଥିରେ ମୋର ସ୍ୱର୍ଗସୁଖ । ମତେ ଏଥିରେ ବାଧା ଦିଅନ୍ତୁ ନାହିଁ ମାଆ ।''

ମୁଗ୍ଧ ଆବେଗରେ କୁନ୍ତୀଦେବୀ କୋଳାଗ୍ରତ କରିନିଅନ୍ତି ତାଙ୍କୁ ଓ କହନ୍ତି, ''ତୁମେ ମୋର ସୁନା ଝିଅ, ବୋହୂ ନୁହଁ । ତୁମକୁ ଛାଡ଼ି କ'ଣ ମୁଁ ସୁଖରେ ରହିପାରିବି ପର୍ଣ୍ଣକୁଟୀରରେ ? ତୁମେ ଚାଲ ମୋ' ସାଥିରେ ।''

ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ଆଦି ସମସ୍ତେ ଅବାକ୍ । ବିସ୍ମୟଭରା ଆନନ୍ଦରେ ସମସ୍ତେ ଉଚ୍ଛଳ । ରାଜକୁମାରୀ ଦ୍ରୌପଦୀ ଆଜି କୁରୁବଂଶର କୁଳବଧୂ । ଏ କ'ଣ କମ୍ ବଡ଼ ସୌଭାଗ୍ୟ ! ଦ୍ରୁପଦ ଶେଷରେ ଦ୍ରୌପଦୀଙ୍କ ବନବାସ ଲାଗି ଜଣାନ୍ତି ସମ୍ମତି । କିନ୍ତୁ କିଛି ଦିନ ମାତ୍ର କାମ୍ପିଲ୍ୟ ନଗରୀରେ ରହିଯିବାପାଇଁ ପ୍ରସ୍ତାବ ଦିଅନ୍ତି । ଅନ୍ତତଃ ରାଜା ଧୃତରାଷ୍ଟ୍ରଙ୍କୁ ସମ୍ବାଦ ଦେଇ ତାଙ୍କଠାରୁ ପ୍ରତ୍ୟୁତ୍ତର ମିଳିବା ପର୍ଯ୍ୟନ୍ତ । ପାଣ୍ଡବମାନେ ରାଜି ହୁଅନ୍ତି ଏଥିରେ ।

ଏଇ ସମସ୍ତ ଟିକିନିଖି ଖବର ଆମେ ପାଇଲୁ ଚରମୁଖରୁ । ପିତାମହ ଭୀଷ୍ମ, ରାଜା ଧୃତରାଷ୍ଟ୍ର, ମହାମନ୍ତ୍ରୀ ବିଦୁର ଆଦି ସମସ୍ତେ ବି ପାଇଲେ ଏଇ ଖବର । ସମସ୍ତେ ଆନନ୍ଦିତ ଓ ଆଶ୍ୱସ୍ତ । ଯାହାହେଉ, ପାଣ୍ଡବମାନେ ଏବେ ଜୀବିତ ଓ ସେମାନଙ୍କୁ ଠାବ କରାଯାଇପାରିଛି । ରାଜପରିବାର ପାଇଁ ଆଉ ଏକ ବିଶେଷ ଆନନ୍ଦର ଖବର ହେଲା, ସେମାନଙ୍କ ବିବାହ ଦ୍ରୁପଦନନ୍ଦିନୀ କୃଷ୍ଣାଙ୍କ ସହିତ ହୋଇଛି । କୃଷ୍ଣା ହେବେ କୁରୁବଂଶର ପ୍ରଥମ ପୁତ୍ରବଧୂ । ଏହା କିଛି କମ୍ ଖୁସିର କଥା ନୁହେଁ । ରାଜା ଧୃତରାଷ୍ଟ୍ର କେମିତି ଶୀଘ୍ର ପୁତ୍ରବଧୂଙ୍କୁ ରାଜଭବନକୁ ନେଇଆସିବେ ସେଥିପାଇଁ ବ୍ୟାକୁଳ । ଦୁର୍ଯ୍ୟୋଧନଙ୍କ କାର୍ଯ୍ୟକଳାପ ଯୋଗୁଁ ତାଙ୍କ ନାମରେ ଯଥେଷ୍ଟ କଳଙ୍କ ଲାଗିଯାଇଛି । ତହିଁରୁ କିଛିଟା ସେ ପୋଛିଦେବାପାଇଁ ହୋଇ ଉଠୁଥିଲେ ଉଦ୍‌ଗ୍ରୀବ । ଶକୁନି ଓ ଦୁର୍ଯ୍ୟୋଧନ ଯେତେ ବିରୋଧ କଲେ ମଧ ସେ ତାଙ୍କ ସଂକଳ୍ପରୁ ଆଉ ଘୁଞ୍ଚି ନ ଥିଲେ । ଏ ସଂପର୍କରେ ପିତାମହ ଭୀଷ୍ମ ଓ ମହାମନ୍ତ୍ରୀ ବିଦୁରଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ ।

ରାଜାଙ୍କ ଏଇ ଅପ୍ରତ୍ୟାଶିତ ପରିବର୍ତ୍ତିତ ଗତିବିଧିକୁ କୌତୂହଳୀ ହୋଇ ଲକ୍ଷ୍ୟ କରୁଥାଏ ମୁଁ । ପ୍ରତୀକ୍ଷା କରୁଥାଏ ପରବର୍ତ୍ତୀ ଘଟଣାବଳୀକୁ ଉତ୍କଣ୍ଠାଭରା ଚିତ୍ତରେ । କାଳର ଚକ୍ରଟି କେଉଁଭଳି ଢଙ୍ଗରେ ଘୂରୁଛି କେଜାଣି ?

ଏଇ ପ୍ରତୀକ୍ଷା ମଧ୍ୟରେ ସେହିଦିନ ହିଁ ରାଜା ଦ୍ରୁପଦଙ୍କ ପାଖରୁ ଦ୍ରୌପଦୀଙ୍କ ବିବାହ ବିଷୟରେ ସଂବାଦ ପାଇଲେ ରାଜା ଧୃତରାଷ୍ଟ୍ର ।

## ସତଚାଳିଶ

ମହାରାଜ ଧୃତରାଷ୍ଟ୍ର ନିଜ କଥା ରଖିଲେ । ପ୍ରିୟ ପୁତ୍ର ଦୁର୍ଯ୍ୟୋଧନଙ୍କ ପ୍ରତିବାଦ ସତ୍ତ୍ୱେ ପାଣ୍ଡବମାନଙ୍କୁ କୁଳବଧୂ ଓ ରାଜମାତାଙ୍କ ସହିତ ପାଞ୍ଚାଳ ରାଜ୍ୟରୁ ହସ୍ତିନାପୁରକୁ ନେଇ ଆସିବାପାଇଁ ମହାମନ୍ତ୍ରୀ ବିଦୁରଙ୍କୁ ପଠାଇଲେ । ଡେରି କଲେ ନାହିଁ ଆଉ । ଯେଉଁଦିନ ଦ୍ରୌପଦୀଙ୍କ ବିବାହ ସଂବାଦ ପାଇଲେ, ଠିକ୍ ତହିଁ ଆରଦିନ ହିଁ ପଠାଇଲେ ତାଙ୍କୁ । ଯିବା ପୂର୍ବରୁ ବିଦୁର କିଛି ସମୟ ଲାଗି ପିତାମହ ଭୀଷ୍ମଙ୍କ ସହିତ ଗୋପନରେ କୌଣସି ଗୋଟିଏ ଗୁରୁତର ବିଷୟ ନେଇ ପରାମର୍ଶ କରିଥିବାର ଖବର ପାଇଥିଲି ମୁଁ । ଏ କଥା ମିତ୍ର ଦୁର୍ଯ୍ୟୋଧନ ପରେ ମତେ କହିଥିଲେ । ଏହାର ଅର୍ଥ କ'ଣ ହୋଇପାରେ କଳ୍ପନା କରିପାରି ନ ଥିଲି । କିନ୍ତୁ ପରବର୍ତ୍ତୀ ଯେଉଁ ଘଟଣାମାନ ଘଟିଗଲା, ବିଶେଷକରି ହସ୍ତିନାପୁରକୁ ଦୁଇ ଭାଗରେ କୌରବ-ପାଣ୍ଡବମାନଙ୍କ ମଧ୍ୟରେ ବଣ୍ଟନ କରିବାକୁ ନେଇ ଓ ତତ୍ପୂର୍ବରୁ ପାଣ୍ଡବମାନଙ୍କର ହସ୍ତିନାପୁରର ରାଜଭବନରେ ନ ରହି ବିଦୁରଙ୍କ କୁଟୀରରେ ଅବସ୍ଥାନକୁ ନେଇ, ସେଇଥିରୁ କିଛିଟା ଅନୁମାନ କରିନେଇଥିଲି ମୁଁ । ସମ୍ଭବତଃ ଏଇ ଗୁପ୍ତ ଆଲୋଚନାର ତାହା ସହିତ ଥିଲା କିଛିଟା ସଂପର୍କ । ହୁଏତ ପାଣ୍ଡବମାନଙ୍କ ସୁରକ୍ଷା ଦୃଷ୍ଟିରୁ ପିତାମହ ଭୀଷ୍ମ ଓ ବିଦୁର ଚାହୁଁ ନ ଥିଲେ ସେମାନଙ୍କର କୌରବମାନଙ୍କ ସହିତ ଏକତ୍ର ଅବସ୍ଥାନ କିମ୍ବା ନିକଟ ଅବସ୍ଥାନ ।

ମହାରାଜଙ୍କଦ୍ୱାରା ପ୍ରେରିତ ପ୍ରଚୁର ଉପହାର ଦ୍ରବ୍ୟମାନ ସାଥିରେ ଧରି ତୁରିତଗାମୀ ଅଶ୍ୱମାନେ ଯୁକ୍ତ ହୋଇଥିବା ରଥରେ ବସିଲେ ବିଦୁର ଓ ଯାତ୍ରା କଲେ ପାଞ୍ଚାଳ ରାଜ୍ୟ ଅଭିମୁଖରେ । ସାରଥି ସୂତପ୍ରବର ସଂଜୟ । ରଥଯାତ୍ରାର ଅବ୍ୟବହିତ ପୂର୍ବରୁ ଶୁଭଶଙ୍ଖ ବାଜିଉଠିଲା ଘନ ଘନ ଧ୍ୱନି କରି ।

ବିଦୁର ପାଞ୍ଚାଳରାଜ ଦ୍ରୁପଦଙ୍କ ପାଖକୁ ମହାରାଜ ଧୃତରାଷ୍ଟ୍ରଙ୍କ ସନ୍ଦେଶ ଜଣାଇଲେ । ଦ୍ରୁପଦ ଖୁବ୍ ଆନନ୍ଦିତ । ତାଙ୍କ କନ୍ୟା ଏବେ ହସ୍ତିନାପୁରକୁ ଯିବେ । ସେ ବିଦୁରଙ୍କୁ ଖୁବ୍ ଆଦର-ଅଭ୍ୟର୍ଥନା କଲେ । ଡେରି ହେବ ବୋଲି ବିଦୁର ଶୀଘ୍ର ଶୀଘ୍ର ଛାଡ଼ିଲେ ପାଞ୍ଚାଳ ରାଜ୍ୟ । ପାଣ୍ଡବମାନଙ୍କୁ ମାତା କୁନ୍ତୀଦେବୀ ଓ ରାଜବଧୂ ଦ୍ରୌପଦୀଙ୍କ ସହିତ ଧରି ଫେରି ଆସିଲେ ପରଦିନ । ତାଙ୍କ ପରେ ପରେ ପଚାଶଟି ଶକଟରେ ରାଜପରିବାର ଉଦ୍ଦେଶ୍ୟରେ ଦ୍ରୁପଦପ୍ରେରିତ ଉପହାର ଦ୍ରବ୍ୟମାନ ଆସୁଥିବାର ଖବର ପାଇଲୁ ଆମେ । ରଥ କିନ୍ତୁ ତ୍ୱରିତ ଗତିରେ ଚାଲିଆସିଥିଲା ଆଗରୁ ।

ମହାରାଜଙ୍କ କଠୋର ଆଦେଶ । ହସ୍ତିନାପୁରୀକୁ ଅତି ସୁନ୍ଦର ଭାବରେ ସଜାଇବାକୁ ହେବ । ବହୁଦିନ ପରେ ରାଜକୁମାରମାନେ ପୁତ୍ରବଧୂଙ୍କୁ ଓ ରାଜମାତାଙ୍କୁ ସାଥିରେ ଧରି ଫେରୁଛନ୍ତି ରାଜଭବନକୁ । ରାଜଭବନକୁ ମଧ୍ୟ ସଜାଇବାକୁ ହେବ ଅନୁରୂପ ଭାବରେ । କୌଣସିଠାରେ କିଛି ତ୍ରୁଟି ନ ରହେ ଯେମିତି । ଏଭଳି ସାଜସଜ୍ଜା ଓ ପାଣ୍ଡବମାନଙ୍କ ପାଇଁ ସ୍ୱାଗତର ଘନଘଟା ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନଙ୍କ ପାଇଁ ଥିଲା ଅସହ୍ୟ । ଅତି ଦାରୁଣ ଭାବରେ ଅସହ୍ୟ । ମଝିରେ ମଝିରେ କଟା ଘା'ରେ ଚୂନ ଦେଲା ଭଳି ମାତୁଳ ଶକୁନିଙ୍କ କଟାକ୍ଷଭରା କଟୁ କଥାମାନ ତାହାକୁ ବଢ଼ାଇ ଦେଉଥିଲା ବହୁ ଗୁଣ । କିନ୍ତୁ ନାଚାର ସେମାନେ । ରାଜାଦେଶକୁ ବାଧା ଦେବାର ଶକ୍ତି ନାହିଁ । ମଝିରେ ମଝିରେ ମହାରାଜ ନିଜେ ସୂତବର ସଞ୍ଜୟଙ୍କୁ ପଚାରି ସଂଗ୍ରହ କରୁଥାନ୍ତି ଖବର । କେଉଁଠି କିଛି ତ୍ରୁଟି ଥିଲେ ତାହାକୁ ସଂଗେ ସଂଗେ ସଂଶୋଧନ କରିବାକୁ ଦେଉଥାନ୍ତି ନିର୍ଦ୍ଦେଶ । ବିଦୁରଙ୍କ ଅନୁପସ୍ଥିତିରେ ସ୍ୱାଗତ ସଂବର୍ଦ୍ଧନାର ସମସ୍ତ ବ୍ୟବସ୍ଥାର ସାଧାରଣ ଭାବରେ ପରୀକ୍ଷା ନିରୀକ୍ଷା କରୁଥାନ୍ତି ନିଜେ ପିତାମହ ଭୀଷ୍ମ । ତାଙ୍କ ଗତିର ପ୍ରଖରତାକୁ ଦେଖିବ କ'ଣ ? ସେ ଯେମିତି ଆଜି ପାଲଟିଯାଇଛନ୍ତି ସଦା ଚଳଚଞ୍ଚଳ ଯୁବକ ଜଣେ ! ମୁଖମଣ୍ଡଳରେ ଶୋଭିତ ପ୍ରସନ୍ନତାର ସୀମା ହିଁ ନାହିଁ ।

ତାଙ୍କ ଆଚରଣ ଦେଖି ଭାବୁଥାଏ ମନେ ମନେ ସେ ଖୁସି ହେବେ ନାହିଁ କେମିତି ? ଯେଉଁ କୁରୁବଂଶର ସୁରକ୍ଷାଲାଗି ସେ ଆଜନ୍ମବ୍ରହ୍ମଚାରୀ ହୋଇ ରହିଛନ୍ତି, ଯେଉଁ ହସ୍ତିନାପୁରର ଭବିଷ୍ୟତ ଲାଗି ବାରମ୍ବାର ସୁନାର ସ୍ୱପ୍ନମାନ ଦେଖି ସେଗୁଡ଼ିକୁ ସାକାର କରିବାପାଇଁ ନିଜକୁ ସଂପୂର୍ଣ୍ଣ ରୂପେ କରିଛନ୍ତି ସମର୍ପିତ, ସେହି ବଂଶର ପ୍ରଥମ ପୌତ୍ରବଧୂ କୃଷ୍ଣା ଏବେ ପାଦ ଦେଉଛନ୍ତି ହସ୍ତିନାପୁରର ରାଜଭବନରେ । ସେ ଜଣେ ସମର୍ପିତ ପିତାମହ ଭାବରେ ଆନନ୍ଦର ଜଳରେ ପହଁରିବେ ନାହିଁ ବା କେମିତି ? ଏ ତ ଖାଲି ପହଁରିବା କଥା ନୁହେଁ, ଏଭଳି ପରିସ୍ଥିତି ତହଁରେ ଉବୁ-ଟୁବୁ ହୋଇ ମରିଗଲେ ବି ମିଳିବ ଅଶେଷ ଆନନ୍ଦ । ସେହି ଆନନ୍ଦର ମଧୁକୁ ଚାଖି ଚାଖି ବିଭୋର ଆଜି ସେ !

ପୁରାଣପ୍ରସିଦ୍ଧ ହସ୍ତିନାନଗରୀ । ପୁରୁଷଶ୍ରେଷ୍ଠ ମହାରାଜ ହସ୍ତୀଙ୍କ ଦ୍ୱାରା ପ୍ରତିଷ୍ଠିତ ନଗରୀ । ଏଇଠି ଅତୀତରେ ଲୀଳାଖେଳା କରିଥିଲେ ପ୍ରେମୀ ମହାରାଜ ପୁରୁରବା ଓ ତାଙ୍କ ପ୍ରେମମୟୀ ପତ୍ନୀ ଅନନ୍ତଯୌବନା ଉର୍ବଶୀ । ସେଇ ପ୍ରେମମୟୀ ଲଳନାଙ୍କ କ୍ଷୀଣ ସ୍ପର୍ଶରେ କି କ'ଣ ଏଇ ନଗରୀର ଯୌବନ ଯେମିତି ଚିରଦିନ ରହିଆସିଛି ଅକ୍ଷତ ହୋଇ । ପୀନୋଦ୍ଧତ ବକ୍ଷକୁ ଧରି ଯୌବନରେ ଫୁଲିଉଠିଥିବା ତରୁଣୀ ଭଳି ଏହାର ସୌଧମାଳାର ଗମ୍ବୁଜଟିମାନ ଚିରଦିନ ରହିଆସିଛି ଉନ୍ନତ । ଆକାଶର ବୁକୁକୁ ଚିରି ଚିରି ଉଠିଛି ଯେମିତି । ସେଇ ଅନନ୍ତଯୌବନା ନଗରୀର ଆଜି ଅଭିନବ ବେଶ ବାସରରଜନୀର ଅପେକ୍ଷମାଣା ବର୍ଣ୍ଣାଢ଼୍ୟ ଓ ମହାର୍ଘ ବସନଭୂଷଣରେ ମଣ୍ଡିତା ନାୟିକାଟିଏ ଭଳି । ପଥର ଉଭୟ ପାର୍ଶ୍ୱରେ ଦୀପସ୍ତମ୍ଭଗୁଡ଼ିକରେ ସଜ୍ଜିତ ଉଜ୍ଜ୍ୱଳ ପ୍ରଦୀପମାଳା । କେଉଁଠି କନକ ପ୍ରଦୀପ ତ ଆଉ କେଉଁଠି ରୌପ୍ୟ ପ୍ରଦୀପ । ପୁଣି କେଉଁଠି ତାମ୍ର ପ୍ରଦୀପ । ପ୍ରତିଟି ଗୃହରେ ତୋରଣ ଓ ପତାକାସମୂହର ଭବ୍ୟ ସାଜସଜ୍ଜା । ରାଜଭବନ ବିଶେଷ ଭାବରେ ଆଲୋକିତ । ପଥର

ଉଭୟ ପାର୍ଶ୍ୱରେ ନାଗରିକମାନେ ଅପେକ୍ଷା କରିରହିଥାନ୍ତି କୁସୁମାଞ୍ଜଳି ହସ୍ତରେ । ନଗରୀର ପ୍ରବେଶଦ୍ୱାରରେ ବିରାଟ ଏକ ତୋରଣ । ରାଜଭବନର ମହାଦ୍ୱାରରେ ମଧ୍ୟ ଅନୁରୂପ ତୋରଣ । ମହାଦ୍ୱାରରେ ଠିଆ ହୋଇଛନ୍ତି ଅନେକ ମାନ୍ୟଗଣ୍ୟ ନାଗରିକ । ସେମାନଙ୍କ ନେତୃତ୍ୱ ନେଇଛନ୍ତି ମହାନଗରପାଳ । ତାହା ଛଡ଼ା ବିଭିନ୍ନ ବାଦ୍ୟକାରମାନଙ୍କ ସମାବେଶ । ମଝିରେ ମଝିରେ ରହି ରହି ବାଜିଉଠୁଥାଏ ବାଦ୍ୟମାନ । ସେହିଠାରୁ ଆରମ୍ଭ କରି ରାଜଦ୍ୱାର ପର୍ଯ୍ୟନ୍ତ ରାସ୍ତାର ଉଭୟ ପାର୍ଶ୍ୱରେ ଲମ୍ବିଯାଇଛି ବିଭିନ୍ନ ରଙ୍ଗର ପତାକାମାଳା । ରାଜଭବନରେ ଶୋଭା ପାଉଥିବା ବିଭିନ୍ନ ରଙ୍ଗର ଆଲୋକମାଳା ଦେଖି ସଂଧ୍ୟାର ଅନ୍ଧକାର ଲାଜରେ ମୁହଁ ଲୁଚାଇ ଦେଇଛି ଯେମିତି ।

ବହୁ ପ୍ରତୀକ୍ଷା ପରେ ଏବେ ସନ୍ଧ୍ୟାକାଳରେ ଉପଗତ ବିଦୁରଙ୍କ ରଥ । ନଗରୀର ପ୍ରବେଶଦ୍ୱାର ପ୍ରକମ୍ପିତ ହୋଇଉଠିଲା ଶଙ୍ଖ ଓ ଅନ୍ୟାନ୍ୟ ବାଦ୍ୟଗୁଡ଼ିକର ମିଳିତ ଝଙ୍କାରରେ । ତାହାର ଅନୁସରଣରେ ରାଜଭବନର ଦ୍ୱାରଦେଶରେ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଥିବା ବାଦ୍ୟମାନ ମୁଖରିତ । ନଗରୀର ପ୍ରବେଶଦ୍ୱାରରେହିଁ ସଂବର୍ଦ୍ଧିତ ହେଲେ ଅତିଥିଗଣ । ବ୍ରାହ୍ମଣମାନଙ୍କ ସ୍ୱସ୍ତ୍ୟୟନ ଧ୍ୱନି ଓ ରଥ ଉପରକୁ ପ୍ରକ୍ଷିପ୍ତ ଅକ୍ଷତ-ଅର୍ଘ୍ୟ ବାତାବରଣରେ ବୋଳିଦେବାକୁ ଲାଗିଲା ଏକ ସୌମ୍ୟ ପବିତ୍ରତାର ଆଲିମ୍ପନ । ରଥ ଆଗେଇ ଚାଲିଲା ଧୀରେ ଧୀରେ ରାଜଭବନ ଅଭିମୁଖରେ । ସାଥେ ସାଥେ ନାଗରିକଗଣ ଓ ବାଦ୍ୟକାରବୃନ୍ଦ । ରାଜଭବନ ଯେତେ ପାଖେଇ ଆସୁଥାଏ, ସହଯାତ୍ରୀମାନଙ୍କ ସଂଖ୍ୟା ସେତେ ଉଠୁଥାଏ ଫୁଲି । ଆବାଳବୃଦ୍ଧବନିତା ସମସ୍ତେ ଚାଲିଥାନ୍ତି ରଥ ପଛେ ପଛେ ।

ସମସ୍ତଙ୍କ ମନରେ ଉଦ୍‌ବେଗ । ମୁଖରେ ପ୍ରସନ୍ନତା । ପାଣ୍ଡବମାନେ ଆଜି ନବବଧୂଙ୍କ ସହିତ ଫେରୁଛନ୍ତି । ଆଉ ଫେରୁଛନ୍ତି ବି କଲ୍ୟାଣମୟୀ ରାଜମାତା କୁନ୍ତୀଦେବୀ । ନବବଧୂଙ୍କୁ ଦର୍ଶନ କରିବାର ସୁଯୋଗ ମିଳିବ । କୁହାଯାଏ କୁଆଡ଼େ ଅଯୋନିସଂଭୂତା ସେ । ଯଜ୍ଞାଗ୍ନିରୁ ଜନ୍ମ ନେଇଛନ୍ତି । ତାଙ୍କ ସ୍ୱରୂପ ଦେଖିବାପାଇଁ ସମସ୍ତଙ୍କ ମନରେ ତେଣୁ କୌତୂହଳ । ଯଦି କେହି ଲୁଚି ଲୁଚି କ୍ରୋଧରେ ନାସାପୁଟକୁ ଫୁଲାଉଛନ୍ତି ସେମାନେ ଆଉ କେହି ନୁହନ୍ତି । ସେମାନେ ହେଉଛନ୍ତି ଦୁର୍ଯ୍ୟୋଧନ ଓ ତାଙ୍କ ଅନୁଗାମୀ କୌରବ ଭ୍ରାତାଗଣ । ଆଉ ଧୂର୍ତ୍ତ କପଟୀ ମାତୁଳ ଶକୁନି ।

ରଥ ଆସି ଲାଗିଲା ରାଜଦ୍ୱାରରେ । ରଥର ଯାତ୍ରୀ-ଯାତ୍ରିଣୀମାନେ କ୍ରମାନ୍ୱୟରେ ଓହ୍ଲାଇଲେ ତହିଁରୁ । ପ୍ରଥମେ ମହାମନ୍ତ୍ରୀ ବିଦୁର । ତାହା ପରେ ରାଜମାତା କୁନ୍ତୀଦେବୀ । ଦେବର ବିଦୁର ତାଙ୍କୁ ହାତ ଧରି ରଥରୁ ଓହ୍ଲାଇଦେଲେ । ତାହା ପରେ ଯୁଧିଷ୍ଠିର । ସେ ଦ୍ରୌପଦୀଙ୍କ ହାତ ଧରି ତାଙ୍କୁ ଓହ୍ଲାଇବାରେ କଲେ ସହାୟତା । ପରେ ପରେ ବୟସ ଅନୁକ୍ରମରେ ଓହ୍ଲାଇଲେ ଅନ୍ୟାନ୍ୟ ପାଣ୍ଡବମାନେ । ଶଙ୍ଖ, ହୁଳହୁଳି, ମହୁରୀ ଆଦିର ଧ୍ୱନିରେ ହଠାତ୍ ପ୍ରକମ୍ପିତ ରାଜଦ୍ୱାର । ଦ୍ୱାର ନିକଟରେ ପୁରଲଳନାମାନଙ୍କ ଅସମ୍ଭବ ଭିଡ଼ । ତାହାକୁ କୌଣସିମତେ ଅତିକ୍ରମ କରି ଆଗେଇଲେ ଦ୍ରୌପଦୀ । ତାଙ୍କ ପଛେ ପଛେ ରାଜମାତା ଓ ପାଣ୍ଡବଗଣ । ସେଠାରେ ମଧ୍ୟ ବ୍ରାହ୍ମଣମାନଙ୍କର ସ୍ୱସ୍ତ୍ୟୟନ ଓ ଅକ୍ଷତ-ଅର୍ଘ୍ୟର ବୃଷ୍ଟି । ଦ୍ୱାରଦେଶରେ ରଖାଯାଇଥିବା କଳସଟିକୁ ବାମ ପାଦରେ

ଗଡ଼ାଇଦେଇ ଦ୍ରୌପଦୀ ପ୍ରବେଶ କଲେ ରାଜଭବନରେ । ସମସ୍ତ ବାରଣ ଏବେ ଖଣ୍ଡିତ । ତାଙ୍କ ପରେ ପରେ ପ୍ରବେଶ କଲେ ଅନ୍ୟମାନେ । ଦ୍ରୌପଦୀଙ୍କ ସହିତ ସମସ୍ତେ ଅପେକ୍ଷମାଣ ପିତାମହ ଭୀଷ୍ମ, ମହାରାଜ ଧୃତରାଷ୍ଟ୍ର ଓ ରାଜମାତା ଗାନ୍ଧାରୀ ଆଦିଙ୍କୁ ପ୍ରଣାମ କଲେ ଏବଂ ଆଗେଇ ଚାଲିଲେ ଅନ୍ତର୍ଭବନ ଆଡ଼କୁ ।

ମୁଁ ସ୍ୱାଗତକାରୀମାନଙ୍କ ମଧ୍ୟରେ ଥିଲି ଜଣେ । କିଛି ସମୟ ମହାଦ୍ୱାର ନିକଟରେ ରହିବା ପରେ ବାହାରିଲି ନିଜ ଭବନକୁ । ଆଶ୍ଚର୍ଯ୍ୟ ହୋଇଉଠିଲି ଏକ ବିଚିତ୍ର ଘଟଣା ଦେଖି । ରାଜଭବନ ମଧ୍ୟରୁ ବାହାରି ଆସୁଛନ୍ତି ଯୁଧିଷ୍ଠିରଙ୍କ ନେତୃତ୍ୱରେ ପାଣ୍ଡବମାନେ । ସାଥିରେ ରାଜବଧୂ କୃଷ୍ଣା ଓ ରାଜମାତା କୁନ୍ତୀଦେବୀ । ଅନୁସରଣ କରୁଛନ୍ତି ମହାମନ୍ତ୍ରୀ ବିଦୁରଙ୍କୁ । ଅଳ୍ପ କେତେକ ସମୟ ମାତ୍ର ରହିଛନ୍ତି ରାଜଭବନରେ । ସେମାନେ ତେବେ ଯାଉଛନ୍ତି କୁଆଡ଼େ ? କ'ଣ ଅନ୍ୟ କେଉଁଠି ସେମାନଙ୍କ ରହିବାର ବ୍ୟବସ୍ଥା କରାଯାଇଛି ? ତା'ହେଲେ ମହାରାଜ ସେମାନଙ୍କ ସ୍ୱାଗତ-ସଂବର୍ଦ୍ଧନା ଲାଗି ଏତେ ବ୍ୟବସ୍ଥା ରାଜଭବନରେ କରିଛନ୍ତି କାହିଁକି ? ମାତୁଳ ଶକୁନିଙ୍କ କପଟ ଆଚରଣ ସଂପର୍କରେ ସଂପୂର୍ଣ୍ଣ ଅବହିତ ମୁଁ । ଆଉ ଅବହିତ ବି ଦୁର୍ଯ୍ୟୋଧନଙ୍କ ପାଣ୍ଡବବିଦ୍ୱେଷ ସଂପର୍କରେ । କେବଳ ବିକର୍ଣ୍ଣ ଓ ଯୁଯୁତ୍ସୁଙ୍କୁ ଛାଡ଼ିଦେଲେ ଅନ୍ୟ କୌରବ ଭ୍ରାତାମାନେ ଜ୍ୟେଷ୍ଠ ଦୁର୍ଯ୍ୟୋଧନଙ୍କର ଦୃଢ଼ ସମର୍ଥକ । ସେମାନେ କ'ଣ ଆଉ କିଛି ନୂତନ ପରିସ୍ଥିତି ଭିଆଇଲେ ଇତିମଧ୍ୟରେ ଯାହା ଫଳରେ ପାଣ୍ଡବମାନେ ରାଜଭବନ ଛାଡ଼ିବାକୁ ବାଧ୍ୟ ହେଲେ ? ବାରମ୍ବାର ମନର କବାଟରେ ମୋର ଏଇ ଚିନ୍ତାମାନଙ୍କର ଆଘାତ । ଏଇ ଅସମାହିତ ପ୍ରଶ୍ନମାନଙ୍କ ଦ୍ୱାରା ମନୋରାଜ୍ୟ ମୋର ଆକୁଳିତ ।

ପରିସ୍ଥିତି କ'ଣ ବୁଝିବାପାଇଁ ସାମାନ୍ୟ ଅଟକିଗଲି ।

''ଆସନ୍ତୁ ମାଆ, ଏଇ ରଥରେ ବସି ଆମ କୁଟୀରକୁ ଯିବା ।'' କୁନ୍ତୀଦେବୀଙ୍କୁ ଅନୁରୋଧ କରି କହିଲେ ବିଦୁର ଓ ତାଙ୍କ ହାତ ଧରି ଉଠାଇଦେଲେ ରଥକୁ । ଅନୁରୂପ ଭାବରେ କୃଷ୍ଣା ଓ ପାଣ୍ଡବମାନଙ୍କୁ ନିମନ୍ତ୍ରଣ କଲେ ଯିବାକୁ । ସମସ୍ତେ ବସିଲେ ରଥରେ । ବିଦୁର ସ୍ୱୟଂ ସାରଥି ଆସନରେ ବସିବାକୁ ଯାଉଥିଲେ । ଯୁଧିଷ୍ଠିର ତାଙ୍କୁ ବାରଣ କରି କହିଲେ, ''ନାଇଁ କକା ! ଆପଣ ରଥରେ ବସନ୍ତୁ । ମୁଁ ରଥ ଚଳାଇନେବି ।''

''ନାଇଁ ପୁତ୍ର । ତୁମେ ଘର ଦେଖିପାରିବ ନାହିଁ । ମୁଁ ନୂଆ ଘରେ ଏବେ ରହୁଛି । ନିଜେ ସାରଥି ହେଉଛି ମୁଁ ।''

''କାହିଁକି ତାତ ? ଆପଣ ବାଟ ଦେଖାଇଦେବେ । ମୁଁ ରଥ ଚଳାଇନେବି । ଏତେ ଦିନ ପରେ ତାତଙ୍କୁ ବହିନେବାର ସୌଭାଗ୍ୟ ପାଇଛି । ତହିଁରୁ ମତେ ବଞ୍ଚିତ କରିବେ ?'' ଯୁଧିଷ୍ଠିରଙ୍କ ମୁଖମଣ୍ଡଳ ଧୀରେ ଧୀରେ ହୋଇଉଠୁଥିଲା ମ୍ଳାନ । ଅଭିମାନର କିଛିଟା ଛାୟା ଆଚ୍ଛନ୍ନ କରି ରଖିଥିଲା ତାହାକୁ ।

''ତୁମକୁ କିଏ କଥାରେ ପାରିବ ପୁତ୍ର ? ହଉ, ତୁମେ ତେବେ ଚଳାଅ ରଥ ।'' ହସି ହସି କହିଲେ ବିଦୁର । ତାଙ୍କ ଆଖି ଦୁଇଟିରୁ ଧାର ଧାର ହୋଇ ବହି ଯାଉଥିଲା ଆନନ୍ଦର

ଲୁହ । ସ୍ନେହରେ ଛଳ ଛଳ ! ଆଶୀର୍ବାଦରେ ଢଳ ଢଳ ! ସତ୍ୟ ଓ ଧର୍ମର ପ୍ରମୂର୍ତ୍ତ ବିଗ୍ରହ ବିଦୁରଙ୍କଠାରୁ ଅନୁରୂପ ଆଉ ଏକ ବିଗ୍ରହ ଆଡ଼କୁ ଅନୁକମ୍ପାର ଉତ୍ତରଳ ଧାର ବହିଯାଉଛି ଯେମିତି !

ପରେ ଅନୁସନ୍ଧାନ କରି ବୁଝିଲି ଯେ ଦୁର୍ଯ୍ୟୋଧନ ଆଦିଙ୍କ ଦ୍ୱାରା କିଛି ସୃଷ୍ଟ କରାଯାଇ ନାହିଁ ନୂତନ ପରିସ୍ଥିତି । ପାଣ୍ଡବମାନେ ନିଜ ଇଚ୍ଛାରେ ହିଁ ରାଜଭବନ ଛାଡ଼ିଛନ୍ତି । ତାହା କିନ୍ତୁ ଅସ୍ଥାୟୀ ଭାବରେ । ମାତ୍ର ସାତଦିନ ପାଇଁ । ମହାରାଜ ଅନିଚ୍ଛୁକ ଥିଲେ ସେମାନଙ୍କୁ ଛାଡ଼ିବା ପାଇଁ । ସେମାନଙ୍କ ପ୍ରତି ପିତୃବ୍ୟ ହିସାବରେ ସ୍ନେହଭାବ ଯେ ନ ଥିଲା ତାହା ନୁହେଁ । କିନ୍ତୁ ଲୋକାପବାଦ-ଭୟର ମାତ୍ରାଟା ଥିଲା ଅଧିକ । ଲୋକେ ହୁଏତ କହିବେ, ଆସୁ ଆସୁ ଅନୁଜପୁତ୍ରମାନଙ୍କୁ ଘରୁ କରିଦେଲେ ବାହାର । ପୁଣି ସଦ୍ୟବିବାହିତା ପତ୍ନୀ ଓ ମାତାଙ୍କ ସହିତ । କିନ୍ତୁ କୁନ୍ତୀଦେବୀ ବସିଲେ ଜିଦ୍ ଧରି । ସେ ଦେବର ବିଦୁରଙ୍କୁ କଥା ଦେଇସାରିଛନ୍ତି । ପ୍ରଥମ ସାତଦିନ ତାଙ୍କ ଘରେ ପୁତ୍ରବଧୂ ଓ ପୁତ୍ରମାନଙ୍କୁ ଧରି ରହିବେ । ତାହା ପରେ ଯାଇ ରାଜଭବନରେ ରହିବେ । ଆନୁଷ୍ଠାନିକତା ଦୃଷ୍ଟିରୁ ରାଜଭବନରେ ! ପ୍ରଥମେ ପାଦ ଦେଇଛନ୍ତି ମାତ୍ର । ଏଭଳି କହିଲେ ସେ । ବିଦୁରଙ୍କ ପ୍ରତି ମହାରାଜଙ୍କ ଅତୁଳ ସ୍ନେହଭାବ । ସେ ଆଉ ମନା କରିପାରିଲେ ନାହିଁ । ରାଜି ହୋଇଗଲେ ।

ବିଦୁର କିନ୍ତୁ ଏବେ ରାଜଭବନର ପରିସରରେ ରହୁ ନାହାନ୍ତି । ଲାକ୍ଷାଗୃହର ଦହନଠାରୁ ମନ ତାଙ୍କର ଛାଡ଼ିଯାଇଛି ରାଜଭବନରୁ । ଗୃହ ଛାଡ଼ି ଅରଣ୍ୟବାସ କରିବାପାଇଁ ଚାହିଁଥିଲେ । ମହାରାଜଙ୍କ ବିଶେଷ ଅନୁରୋଧରେ ହସ୍ତିନାପୁରରେ ଥାଇ ସମ୍ଭାଳିଛନ୍ତି ମନ୍ତ୍ରିପଦ । କିନ୍ତୁ ରହୁଛନ୍ତି ଯାଇ ରାଜଭବନଠାରୁ କିଛି ଦୂରରେ ଏକ ନବନିର୍ମିତ ପର୍ଣ୍ଣକୁଟୀରରେ । ରାଜମାତା, ରାଜବଧୂ ଓ ପାଣ୍ଡବମାନେ ସେଇ ପର୍ଣ୍ଣକୁଟୀରରେ ରହିବେ ଏବେ ସାତଦିନ ପାଇଁ ।

ମୋ' ମନରେ କାହିଁ ତଥାପି ସନ୍ଦେହ । କିଛି ଗୋଟାଏ ବିଶେଷ କଥା ନ ଥାଇ ପାଣ୍ଡବମାନେ ଛାଡ଼ି ନାହାନ୍ତି ରାଜଭବନ । ଏହା ମୂଳରେ ବିଦୁରଙ୍କ ନିରୀହ ନିମନ୍ତ୍ରଣ କେବଳ କାମ କରି ନାହିଁ । ନିଶ୍ଚୟ ଅଛି ପୂର୍ବକଳ୍ପିତ ଯୋଜନା ଯାହା ବର୍ତ୍ତମାନ ଏହି ଭାବରେ ରୂପ ନେବାକୁ ଆରମ୍ଭ କରିଛି । ଆଗାମୀ ଦିନଗୁଡ଼ିକର ଘଟଣାମାନ ଦେଖାଇଦେବ ଏହାର ପୂର୍ଣ୍ଣ ରୂପାୟନର ସ୍ୱରୂପ । ପିତାମହ ଭୀଷ୍ମ ଓ ବିଦୁରଙ୍କ ମଧ୍ୟରେ ଯେଉଁ ଗୁପ୍ତ ଆଲୋଚନା ହୋଇଥିଲା ବିଦୁରଙ୍କ ପାଞ୍ଚାଳଯାତ୍ରାର ଅବ୍ୟବହିତ ପୂର୍ବରୁ ଏହା ହୁଏତ ତାହାରି ଫଳଶ୍ରୁତି । ସେମାନେ ପାଣ୍ଡବମାନଙ୍କୁ କୌଣସିମତେ କୌରବମାନଙ୍କଠାରୁ ଦୂରରେ ରଖାଇବାକୁ ଚାହାନ୍ତି । କାରଣ ବର୍ତ୍ତମାନ ପରିସ୍ଥିତିରେ ରାଜଭବନରେ ରହିବା ଆଦୌ ନିରାପଦ ନୁହେଁ ସେମାନଙ୍କ ପକ୍ଷରେ ।

ଭାବିଲି, ହୁଏତ ସାତଦିନର ଅବଧି ପୂରିବା ପରେ ପ୍ରକୃତ କଥାଟା ଜଣାପଡ଼ିଯିବ । ଅଥବା ଇତିମଧ୍ୟରେ ଆଉ କିଛି ବିଚିତ୍ର ଘଟଣା ଘଟିପାରେ ଯାହାର କଳ୍ପନା ବର୍ତ୍ତମାନ କରିପାରୁ ନାହିଁ ।

ସେଇ ବିଚିତ୍ର ଘଟଣାଟି ପାଇଁ ଅପେକ୍ଷା କରିରହିଲି ଉଦ୍‌ବେଗଭରା ମନ ନେଇ । ସମୟରୂପୀ ବିହଗର ଡେଣା ଫଡ଼ ଫଡ଼ ଶବ୍ଦକୁ କାନେଇ କାନେଇ ।

## ଅଠଚାଳିଶ

ମତେ ଆଉ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ସେଇ ବିଚିତ୍ର ଘଟଣାଟି କ'ଣ ହେବାକୁ ଯାଉଛି, ତାହାର ଏକ ସ୍ପଷ୍ଟ ଆଭାସ ପାଇଗଲି ଦୁଇ ଦିନ ମଧ୍ୟରେ ।

ମହାରାଜ ଏବେ ଖୁବ୍ ଚିନ୍ତିତ । ଅଧିକାଂଶ ସମୟରେ କପାଳରେ କୁଞ୍ଚିତ ରେଖା । ଅନ୍ୟମନସ୍କ ରହୁଛନ୍ତି । ସାମାନ୍ୟ ଟିକିଏ କଥାରେ ବିରକ୍ତ । ରାଜମାତା ଗାନ୍ଧାରୀ ଓ ଦୁର୍ଯ୍ୟୋଧନଙ୍କ ଛଡ଼ା ଆଉ କାହାରି ସହିତ ଭଲ ଭାବରେ କଥା କହୁ ନାହାନ୍ତି । ଅନ୍ୟମାନଙ୍କୁ କେମିତି ଗୋଟାଏ ଅବିଶ୍ୱାସୀ ଓ ସନ୍ଦିହାନ ଦୃଷ୍ଟି ନେଇ ଚାହୁଁଛନ୍ତି । ସମସ୍ତେ ଆଚମ୍ବିତ । ତାଙ୍କ ଆଚରଣରେ । ଅନ୍ତର୍ଭବନ ମଧ୍ୟରେ ଥିବା ଗୁପ୍ତ ମନ୍ତ୍ରଣାଭବନରେ ଘନ ଘନ ମନ୍ତ୍ରଣା । କିଛି ଗୋଟାଏ ଗୁରୁତର ବିଶେଷ ନେଇ ଗୁପ୍ତ ମନ୍ତ୍ରଣା ହୁଏତ । ମନ୍ତ୍ରଣାକକ୍ଷର ଦ୍ୱାରଦେଶରେ ଅଧିକାଂଶ ସମୟ ଜଳି ରହୁଛି ସତର୍କ ପ୍ରଦୀପଟିଏ । କେତେବେଳେ ବିଦୁର ଆସୁଛନ୍ତି ଆଉ କେତେବେଳେ ଆସୁଛନ୍ତି ପିତାମହ ଭୀଷ୍ମ । ପୁଣି କେତେବେଳେ ଆସୁଛନ୍ତି ଉଭୟ ମିଶିକରି । ବେଳେବେଳେ ପୁଣି ଦୁର୍ଯ୍ୟୋଧନ ବି ଆସୁଛନ୍ତି । ତାଙ୍କ ସାଥିରେ ଆସୁଛନ୍ତି ମାତୁଳ ଶକୁନି । ଆଲୋଚନାର ବିଷୟବସ୍ତୁ କ'ଣ ତାହା ତ ଜାଣିହେଉ ନାହିଁ । କିନ୍ତୁ ଆଗନ୍ତୁକ ଆଲୋଚକମାନେ ଯେତେବେଳେ ଫେରୁଛନ୍ତି, ସେତେବେଳେ ସେମାନଙ୍କ ମୁଖଟିମାନ ଦେଖାଯାଉଛି ସ୍ୱେଦକ୍ଲିନ୍ନ, ଚିନ୍ତାଜର୍ଜର ଓ ଭାରି ଭାରି । ଏଥିରୁ ଅନୁମାନ କରାଯାଉଛି ଆଲୋଚନାଟା ଖୁବ୍ ଗମ୍ଭୀର । ତାହା ଉପରେ ଯେଉଁ ନିଷ୍ପତ୍ତି ନିଆଯିବ କିମ୍ବା ନିଆଯାଇଛି ତାହା ଗମ୍ଭୀରତର ଆହୁରି ।

ଦୁଇ ଦିନ ବିତିଗଲା । କିଛି ଜାଣିପାରିଲି ନାହିଁ । ନିଜ ରାଜକାର୍ଯ୍ୟର ବ୍ୟସ୍ତତା ନେଇ ଦୁର୍ଯ୍ୟୋଧନଙ୍କ ପାଖକୁ ସାକ୍ଷାତ୍‌କାର ପାଇଁ ଯିବାର ସମୟ ବ୍ୟବଧାନ ଏବେ ଟିକିଏ ବଢ଼େଇଦେଇଛି । ସପ୍ତାହକୁ ଥରେ ଖଣ୍ଡେ ଗଲେ ଯଥେଷ୍ଟ । ବର୍ତ୍ତମାନ କିନ୍ତୁ ଯିବାପାଇଁ ହୋଇଉଠିଲି କୌତୂହଳୀ । ତୃତୀୟ ଦିନ ହିଁ ଯିବାକୁ ବାହାରିଛି, ଏତିକିବେଳେ ଖବର ଆସିଲା ତାଙ୍କ ପାଖରୁ । ମତେ ତୁରନ୍ତ ଦେଖିବାକୁ ଚାହାନ୍ତି ସେ । କିଛି ଗୋଟାଏ ଜରୁରୀ ଆଲୋଚନା ଅଛି । ସ୍ୱତଃ ମନରେ ମୋର ଭାବନା ଆସିଲା, ଏହି ଆଲୋଚନା ସହିତ ମହାରାଜଙ୍କ ଗୁପ୍ତ ମନ୍ତ୍ରଣାକକ୍ଷରେ ଚାଲୁଥିବା ଆଲୋଚନାର କିଛି ସଂପର୍କ ଥିବ ହୁଏତ । ତେଣୁ ବାହାରିଲି କାଳବିଳମ୍ବ ନ କରି । ମନରେ ଉଦଗ୍ର ଆଗ୍ରହ ।

ଦୁର୍ଯ୍ୟୋଧନ ତାଙ୍କ କକ୍ଷରେ ମାତୁଳ ଶକୁନିଙ୍କ ସହିତ ଆଲୋଚନାରତ । ପାଖରେ ଅନୁଗାମୀ ବିଶ୍ୱାସୀ ଭ୍ରାତା ଦୁଃଶାସନ । ସମସ୍ତଙ୍କ ମୁଖମଣ୍ଡଳରେ ଚିନ୍ତାର ସ୍ୱେଦ । କକ୍ଷର ବାତାବରଣ ଖୁବ୍ ଗମ୍ଭୀର । କକ୍ଷର ଗୋଟିଏ କୋଣରେ ବିରାଟ ଦୀପସ୍ତମ୍ଭରେ ଥିବା ଦୀପଶିଖାଟି ଜଳୁଛି ମିଞ୍ଜି ମିଞ୍ଜି ହୋଇ । ତେଲ ସରିଆସିଲାଣି ବୋଧହୁଏ । କାହାରି

ଲକ୍ଷ୍ୟ ନାହିଁ । ପରିଚାରକଙ୍କୁ ଆଲୋଚନାର ଗୋପନୀୟତା ହେତୁ ଭିତରେ ପଶିବାକୁ ମନା । ମୁଁ ଆସିଥିବାର ସଂବାଦ ଦେବା ପରେ ଯାଇ ଅନୁମତି ନେଇ ପଶିଲି ଭିତରେ । ଯଥାବିଧି ପ୍ରାଥମିକ ସ୍ୱାଗତ-ସଂଭାଷଣ ପରେ ଆସନ ଗ୍ରହଣ କଲି ।

ସଙ୍ଗେ ସଙ୍ଗେ ପଚାରିଲି, ''କଥା କ'ଣ ମିତ୍ର ଦୁର୍ଯ୍ୟୋଧନ ? ତୁମେ ତ ଖୁବ୍ ଗମ୍ଭୀର ଜଣାପଡୁଛ । ଆଉ ଅନ୍ୟମାନେ ବି । କ'ଣ କିଛି ବିପତ୍ତି ପଡ଼ିଛି ?'' କଣ୍ଠସ୍ୱରରେ ମୋର ଉତ୍କଣ୍ଠା ।

''ପଡ଼ି ନାହିଁ ମିତ୍ର । କିନ୍ତୁ ପଡ଼ିବ ।'' ତାଙ୍କର ଗମ୍ଭୀର ଅଥଚ ସଂକ୍ଷିପ୍ତ ଉତ୍ତର ।

''ଏ କର୍ଣ୍ଣ ଥାଉ ଥାଉ କୌଣସି ବିପତ୍ତିକୁ ଚିନ୍ତା କର ନାହିଁ ମିତ୍ର । ସବୁ କ୍ଷେତ୍ରରେ ମୁଁ ଅଛି ତୁମ ପଛେ ପଛେ । ପ୍ରାଣ ଦେଇଦେବି ପଛକେ ମୋ' ମିତ୍ରଙ୍କୁ ଦେବି ନାହିଁ ବିପତ୍ତିରେ ପଡ଼ିବାକୁ ।'' ସାନ୍ତ୍ୱନା ଦେବାକୁ ଯାଇ କହିଲି ।

''ଜାଣେ ମିତ୍ର, ଜାଣେ । କିନ୍ତୁ ଏ ବିପତ୍ତିରୁ ଉଦ୍ଧାର କରିପାରିବ ନାହିଁ ତୁମେ ।'' କିପରି ଗୋଟାଏ ହତାଶ ଭାବ ନିଃସରିତ ତାଙ୍କ କଥାରୁ । ଆଶ୍ଚର୍ଯ୍ୟ ଲାଗିଲା ମତେ । ଦୁର୍ଯ୍ୟୋଧନ ତ ଖାଲି ଅଭିମାନୀ ନୁହନ୍ତି । ଆଶାବାଦୀ ମଧ୍ୟ । ଗଭୀର ଆତ୍ମବିଶ୍ୱାସ ତାଙ୍କର । ସେ ଏମିତି ଭାଙ୍ଗି ପଡ଼ିବେ ବୋଲି ଆଶା କରି ନ ଥିଲି ।

''ଏପରି କାହିଁକି ଭାବୁଛନ୍ତି ମିତ୍ର ? ସଂସାରରେ ଏପରି କୌଣସି ବିପତ୍ତି ନାହିଁ ଯାହାକୁ ତରିଯିବାର ଉପାୟ ନାହିଁ, ଅବଶ୍ୟ ଦୈବ ବିପତ୍ତି ଛଡ଼ା । ତେବେ ମୁଁ ଶୁଣେ କଥାଟା କ'ଣ ? ଯଦି ମୋ'ପାଇଁ ଗୋପନୀୟ ନ ଥାଏ, ତା'ହେଲେ କହ ।''

''ନା, ମିତ୍ର । ତୁମ ପାଖରେ ମୋର କିଛି ହିଁ ନାହିଁ ଗୋପନୀୟ । ତୁମ ଛଡ଼ା ଦ୍ୱିତୀୟ ବିଶ୍ୱାସୀ ବନ୍ଧୁ ମୋର ଆଉ କେହି ନାହାନ୍ତି । କହୁଛି ତେବେ ଶୁଣ ।''

କିଛି ସମୟ ନୀରବ ରହିବା ପରେ ପୁଣି କହିଲେ, ''କୁରୁରାଜ୍ୟର ଆଶୁ ବିଭାଜନ ହେବାକୁ ଯାଉଛି । ଏ ବିଷୟରେ କିଛି ସୂଚନା ପାଇଛ ମିତ୍ର ?'' ତାଙ୍କ ପ୍ରଶ୍ନରେ ଉତ୍କଣ୍ଠାର ସନ୍ତରଣ । ମୁଁ ମଧ୍ୟ ସମଧିକ ଉତ୍କଣ୍ଠାଭରା ସ୍ୱରରେ ପଚାରିଲି, ''କେଉଁମାନଙ୍କ ମଧ୍ୟରେ ?''

''କୌରବ-ପାଣ୍ଡବମାନଙ୍କ ମଧ୍ୟରେ । ସଂକ୍ଷେପରେ କହିଲେ ଯୁଧିଷ୍ଠିର ଓ ମୋ' ମଧ୍ୟରେ ।''

''କାହିଁକି ?''

''ଯୁଧିଷ୍ଠିରଙ୍କର ଦାବି ଯେ ସେ ତାଙ୍କ ପିତ୍ରାର୍ଜିତ ରାଜ୍ୟଭାଗ ନେବେ ।''

''ସେ କ'ଣ ଏ କଥା ନିଜେ ମହାରାଜଙ୍କୁ ନିବେଦନ କରିଛନ୍ତି ?''

''ପ୍ରତ୍ୟକ୍ଷ ଭାବରେ ତ କରି ନାହାନ୍ତି । ମହାମନ୍ତ୍ରୀ ବିଦୁରଙ୍କ ମାଧ୍ୟମରେ ଖବର ପଠାଇଛନ୍ତି ।''

''ମହାରାଜଙ୍କର ଇଚ୍ଛା କ'ଣ ? ସେ କ'ଣ ଏଥିରେ ରାଜି ?''

"ନା, ସେ ତ ଆଦୌ ରାଜି ନୁହନ୍ତି । ସମଗ୍ର ରାଜ୍ୟ ମତେ ହିଁ ଦେବାପାଇଁ ଚାହାନ୍ତି । କିନ୍ତୁ ମହାମନ୍ତ୍ରୀ ତାଙ୍କ ଉପରେ ଚାପ ପକାଉଛନ୍ତି । କେତେବେଳେ ନିଜେ ଓ ଆଉ କେତେବେଳେ ପିତାମହଙ୍କ ସହିତ ମିଶି ।"

"ଏହା ତା'ହେଲେ ପିତାମହଙ୍କର ବି ଇଚ୍ଛା । ନା, କ'ଣ ମିତ୍ର ?" ପିତାମହଙ୍କ ପ୍ରକୃତ ମନଃସ୍ଥିତି କ'ଣ ଜାଣିବାପାଇଁ ପ୍ରଶ୍ନ କଲି । ମତେ ଆଶ୍ଚର୍ଯ୍ୟ ଲାଗୁଥିଲା ପିତାମହଙ୍କ ଆଚରଣ ସଂପର୍କୀୟ ଏଇ ଖବର । କାରଣ ମୋର ଦୃଢ଼ ବିଶ୍ୱାସ ଥିଲା ଯେ ସେ କଦାପି ଏଇ ବିଭାଜନ କରାଇଦେବେ ନାହିଁ । ସମସ୍ତ ଶକ୍ତି ସହିତ ଏହାର ବିରୋଧ କରିବେ । ଅଥଚ ଏ କି କଥା ଏବେ କହୁଛନ୍ତି ଦୁର୍ଯ୍ୟୋଧନ ?

"ନା, ତାଙ୍କର ଇଚ୍ଛା ନୁହେଁ । ସେ କେବଳ ମହାମନ୍ତ୍ରୀଙ୍କ ଚାପରେ ହିଁ ଏଭଳି ପ୍ରସ୍ତାବ ଦେଉଛନ୍ତି । କିନ୍ତୁ ତାଙ୍କ ପ୍ରକୃତ ଇଚ୍ଛାଟି ଅଧିକ ଭୟଙ୍କର ଆମ ପାଇଁ । ସେ ଚାହାନ୍ତି ରାଜ୍ୟର ବିଭାଜନ ନ ହେଉ । ଯୁଧିଷ୍ଠିର ହିଁ କୁରୁ-ସିଂହାସନରେ ବସନ୍ତୁ ।"

ଏତିକିବେଳେ କଥାରେ ଯୋଗଦେଇ ମାତୁଳ ଶକୁନି କହିଲେ, "ଜାଣିଲ ବନ୍ଧୁ ଅଙ୍ଗରାଜ କର୍ଣ୍ଣ, ଏ ସବୁର ମୂଳରେ ଅଛନ୍ତି କେବଳ ଜଣେ ଲୋକ । ଦ୍ୱାରିକାଧିପତି କୃଷ୍ଣ । ପାଣ୍ଡବମାନଙ୍କ ମାମୁଁପୁଅ ଭାଇ ସେ । ବିଶେଷକରି ଅର୍ଜୁନଙ୍କ ସହିତ ତାଙ୍କର ଖୁବ୍ ମିତ୍ରତା । ସେହି ହିଁ ମହାମନ୍ତ୍ରୀ ବିଦୁରଙ୍କ ମୁଣ୍ଡରେ କଥାଟାକୁ ପୂରାଇଛନ୍ତି । ପାଣ୍ଡବମାନଙ୍କୁ ରାଜ୍ୟବିଭାଜନ ଲାଗି ଦାବି କରିବାକୁ ଅନୁପ୍ରେରିତ କରିଛନ୍ତି ।"

"ଏହାର ପ୍ରମାଣ କିଛି ଅଛି ନା ଆପଣ କେବଳ ଅନୁମାନ କରି କହୁଛନ୍ତି ?" ମୋର ଜିଜ୍ଞାସାଭରା ପ୍ରଶ୍ନ ।

"ଅଛି, ଅଙ୍ଗରାଜ ଅଛି । ମୋ' ନିଜ ଗୁପ୍ତଚର ଖବର ଦେଇଛି ।"

"ମାନେ ? ଆପଣ କ'ଣ ଏଇ କୁରୁରାଜ୍ୟରେ ଗୁପ୍ତଚରମାନଙ୍କୁ ରଖିଛନ୍ତି ନା କ'ଣ ?" ମୋର କଟାକ୍ଷଭରା ପ୍ରଶ୍ନ । ଏଇ ଆକ୍ଷେପଭରା ପ୍ରଶ୍ନକୁ ସେ କିନ୍ତୁ ନେଲେ ବିନୋଦାର୍ଥରେ ।

"ଏଇ ତ ଅଙ୍ଗରାଜଙ୍କର ସବୁ କଥାରେ ବିନୋଦ ।" ସେ ହସି ହସି କହିଲେ କଥାଟାକୁ ଲାଘବ କରିବାପାଇଁ । ତାହା ପରେ କହିଲେ, "ପାଣ୍ଡବମାନେ ଯେଉଁଦିନ ବିଦୁରଭବନକୁ ଗଲେ ମୁଁ ସେମାନଙ୍କ ପଛେ ପଛେ ମୋର ଜଣେ ବିଶ୍ୱାସୀ ଲୋକକୁ ପଠାଇଲି ସେମାନଙ୍କ ଗତିବିଧି ଲକ୍ଷ୍ୟ କରିବାପାଇଁ । ସେହି ଦିନ ରାତିରେ ହିଁ କୃଷ୍ଣ ଆସିଥିଲେ ବିଦୁରଭବନକୁ । ବହୁ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ କ'ଣ କଥାବାର୍ତ୍ତା କଲେ । ପୁଣି ରାତି ପାହିବା ପୂର୍ବରୁ ଚାଲିଗଲେ । ତହିଁ ଆରଦିନଠାରୁ ହିଁ ଉଠିଛି ରାଜ୍ୟ-ବିଭାଜନର ଦାବି ।"

ଯେଉଁଭଳି ଢଙ୍ଗରେ ସେ କହିଲେ, ତାଙ୍କ କଥାକୁ ବିଶ୍ୱାସ ନ କରି ରହିପାରିଲି ନାହିଁ । କାରଣ କୃଷ୍ଣଙ୍କ ବିଷୟରେ ବିଶେଷ କିଛି ଜାଣି ନ ଥିଲେ ବି ସେ ଯେ ଜଣେ ସଫଳ କୂଟନୀତିଜ୍ଞ ଏ ଧାରଣା ମୋର ଥିଲା । ପାଣ୍ଡବମାନଙ୍କ ହିତ ଦୃଷ୍ଟିରୁ ଏଭଳି ପ୍ରସ୍ତାବ ଦେବା ତାଙ୍କ ପକ୍ଷରେ କିଛି ଅସ୍ୱାଭାବିକ ହୋଇ ନ ପାରେ । ପୁଣି ପଚାରିଲି ଦୁର୍ଯ୍ୟୋଧନଙ୍କୁ,

''ମହାରାଜ ତେବେ କ'ଣ କରିବାକୁ ଯାଉଛନ୍ତି ?''

''କିଛି ସ୍ଥିର କରିପାରୁ ନାହାନ୍ତି । ସମ୍ଭବତଃ ରାଜସଭା ଉପରେ ନିଷ୍ପତ୍ତିଟିକୁ ଛାଡ଼ିଦେବେ । ମୁଁ କିନ୍ତୁ ଛାଡ଼ିବି ନାହିଁ ।'' ଧୀରେ ଧୀରେ ଆରକ୍ତ ହୋଇଉଠୁଥିଲା ତାଙ୍କ କନକଗୌର ମୁଖମଣ୍ଡଳ । ସାରା ତନୁ ସଂବେଗରେ ଥର ଥର କମ୍ପିତ ।

''ତୁମେ କ'ଣ କରିବ ଭଣଜା, ଶୁଣେ ?'' ଗାନ୍ଧାରରାଜଙ୍କ ଚକିତ ପ୍ରଶ୍ନ ।

''ବିଦ୍ରୋହ କରିବି । ରାଜଶକ୍ତି ବିରୋଧରେ ଲଢ଼ିବି । ବଳପୂର୍ବକ କୁରୁରାଜ୍ୟକୁ ନିଜ ଅଧିକାରକୁ ନେଇଆସିବି ।'' ଦୁର୍ଯ୍ୟୋଧନଙ୍କ କଥାରେ ଅଧୈର୍ଯ୍ୟର ବନ୍ୟା । ଅତି ମାତ୍ରାରେ ଭାବପ୍ରବଣ ହୋଇଉଠୁଥାନ୍ତି ସେ ।

''ହାଃ ! ହାଃ ! ହାଃ !'' ଖୁବ୍ ଜୋର୍‌ରେ ଅଟ୍ଟହାସ କଲେ ଗାନ୍ଧାରରାଜ ଶକୁନି । ଦାରୁଣ-ବିପୁଳ ଅଟ୍ଟହାସ । ନିୟତିର ଅଟ୍ଟହାସ ଯେମିତି । ତଜ୍ଜନିତ ସଞ୍ଚାଳିତ ପବନର ବେଗରେ ହଠାତ୍ ଦପ୍ କରି ଲିଭିଗଲା ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ପ୍ରଦୀପଶିଖାଟି । କକ୍ଷ ମଧ୍ୟରେ ଆଲୋକ-ଅନ୍ଧକାରର କୋଳାକୋଳି ! କି ଏକ କରୁଣ ମୂର୍ଚ୍ଛିତ ବାତାବରଣ ! ଆଶଙ୍କାରେ ଜରଜର ! ସେ ପୁଣି ମୁହଁ ଖୋଲିଲେ, ''ଧୀରେ ଅତି ଧୀରେ । ରାଜଭବନର ପ୍ରତିଟି କାନ୍ଥର କାନ ଅଛି । ଏଭଳି କଥା କହ ନାହିଁ । ଏଭଳି ପାଗଳାମି ଦେଖାଅ ନାହିଁ । ରାଜଦ୍ରୋହର ପରିଣତି କ'ଣ ଜାଣିଛ ? ପ୍ରାଣଦଣ୍ଡ । ହଁ, ପ୍ରାଣଦଣ୍ଡ । ତୁମେ ମହାରାଜଙ୍କର ଯେତେ ପ୍ରିୟ ଥିଲେ ବି ରାଜଦ୍ରୋହର ଦଣ୍ଡରୁ ମୁକୁଳିପାରିବ ନାହିଁ ।'' ସତର୍କବାଣୀ ଶୁଣାଇଲେ ଗାନ୍ଧାରରାଜ ।

''ଏମିତି ତିଳେ ତିଳେ ମରିବା ଅପେକ୍ଷା ଥରେ ମରିଯିବା ହିଁ ଭଲ ।'' ଦୁର୍ଯ୍ୟୋଧନଙ୍କ କଣ୍ଠରେ ହତାଶାର ଭାଷା । ଅଥଚ ପ୍ରତିଟି ଅକ୍ଷରରେ ବିଦ୍ରୋହର ଉତ୍ତରଳ ସ୍ପର୍ଶ । ତାଙ୍କର ସକଳ ଆଶା ଯେମିତି ଆଜି ଚୂର୍ଣ୍ଣୀଭୂତ ହେବାକୁ ଯାଉଛି ଏଇ କୁରୁରାଜ୍ୟର ବିଭାଜନ ପ୍ରସ୍ତାବରେ । ସେ ଆଉ ହୋଇପାରିବେ ନାହିଁ ଅପ୍ରତିଦ୍ୱନ୍ଦ୍ୱୀ ଏକାଙ୍ଗଚକ୍ରବର୍ତ୍ତୀ । ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ଭାବରେ ଠିଆ ହେବାକୁ ଯାଉଛନ୍ତି ପାଣ୍ଡବ ଯୁଧିଷ୍ଠିର ଓ ତାଙ୍କ ବଶମ୍ବଦ ଭ୍ରାତାମାନେ । ସେମାନଙ୍କ ପଛରେ ଅଛି ଦ୍ୱାରିକାଧିପତି କୃଷ୍ଣଙ୍କ ଆଶୀର୍ବାଦ । ପୁଣି ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ ଓ ମହାମନ୍ତ୍ରୀ ବିଦୁରଙ୍କ ଶୁଭେଚ୍ଛା । ସେ ଯେମିତି ଭାରି ଏକାକୀ ହୋଇଯାଉଥିଲେ । ହୋଇଯାଉଥିଲେ ଅସହାୟ ଓ ଅସୁରକ୍ଷିତ । ଅନ୍ତତଃ ସେଇ ଧାରଣା ଛୁଉଁଥିଲା ତାଙ୍କ ମନକୁ । ତେଣୁ ସ୍ୱାଭାବିକ ଭାବରେ ଆହତ ସିଂହ ଭଳି ହୋଇଉଠୁଥିଲେ ହିଂସ୍ର । ସାମାନ୍ୟ ସୁଯୋଗରେ ବିଦାରିଦେବେ ଘାତକଙ୍କୁ !

ଗାନ୍ଧାରରାଜ ତାଙ୍କ ମନଃସ୍ଥିତି ବୁଝିପାରି କହିଲେ, ''ତୁମେ ଧୈର୍ଯ୍ୟ ଧର ଭଣଜା । କେଉଁ ପାଣି କେଉଁଆଡ଼କୁ ବହୁଛି ଦେଖ ।''

''ଆଉ ଦେଖିବାକୁ କ'ଣ ଥିବ ମାମୁ ? ରାଜସଭା ଯଦି ଏଇ ବିଭାଜନକୁ ମଞ୍ଜୁର କରିଦେଲା, ତେବେ ମହାରାଜ ତାହାକୁ ଗ୍ରହଣ କରିବାକୁ ବାଧ୍ୟ ହେବେ । ସେତେବେଳକୁ ଆଉ ଥିବ ବା କ'ଣ ?'' ଦୁର୍ଯ୍ୟୋଧନଙ୍କ କଣ୍ଠର ନିରାଶ ବାଣୀ କରୁଣାୟିତ କରି ତୋଳୁଥାଏ କକ୍ଷର ବାତାବରଣକୁ ।

"ସେଇଠି ତ କଥା ଅଛି ବାପା ଦୁର୍ଯ୍ୟୋଧନ । ରାଜ୍ୟର ବିଭାଜନ ହେବ । ଅଥଚ ପାଣ୍ଡବମାନଙ୍କ ହସ୍ତ ହେବ ଶୂନ୍ୟ । ସେମାନେ କିଛି ପାଇବେ ନାହିଁ ।"

"ମାନେ ?" ଦୁର୍ଯ୍ୟୋଧନଙ୍କର ସାଶ୍ଚର୍ଯ୍ୟ ପ୍ରଶ୍ନ । ମୁଁ ବି ଚକିତ ବିସ୍ମିତ । କି ରହସ୍ୟ ଲୁଚି ରହିଛି ମାତୁଳ ଶକୁନିଙ୍କ କଥାରେ ? ସେ ତ ଅର୍ଥ ନ ଥାଇ କଥା କହନ୍ତି ନାହିଁ । କେଉଁ କଥା ପ୍ରତି ସେ ଏବେ ଦେଉଛନ୍ତି ସଂକେତ ? କୌତୂହଳୀ ହୋଇ ଚାହିଁରହିଲି ତାଙ୍କ ମୁହଁକୁ । କଥାଟାକୁ କହି କିଛି ହିଁ କହି ନାହାନ୍ତି ସେ । ଅଥଚ ଏଇ ଲୁଚେଇବାରେ ବହୁତ କିଛି କହିଦେଇଛନ୍ତି । ଏକ ଆସନ୍ନ ପ୍ରଭଞ୍ଜନର ମଞ୍ଜି ଦେଇଛନ୍ତି ପୋତି । ବଡ଼ ବିଚିତ୍ର ଯେ ମାତୁଳ ଶକୁନି !

"ସାପ ମରିବ । ଅଥଚ ବାଡ଼ି ଭାଙ୍ଗିବ ନାହିଁ ।" ଶକୁନିଙ୍କ ଅଧରରେ ଦରଦର ରହସ୍ୟମୟ ହସ ତାଙ୍କ କଥାକୁ କରିଦେଲା ଆହୁରି ଅଧିକ ରହସ୍ୟମୟ ।

"କଥାଟା ପରିଷ୍କାର କରି କହନ୍ତୁ ମାମୁ । ଦୁର୍ଯ୍ୟୋଧନ ହୋଇଉଠୁଥିଲେ ଅସହିଷ୍ଣୁ ।

"ଅନେକଥର ପରା କହିଛି ବାପା ଦୁର୍ଯ୍ୟୋଧନ, ରାଜନୀତିରେ ସବୁ କଥା ଖୋଲିକରି କୁହାଯାଏ ନାହିଁ ବୋଲି । ଏହା ସାପର ପେଡ଼ି ଭଳି । ପେଡ଼ିର ଘୋଡ଼ଣୀଟି ଖୋଲିଦେଲେ ସାପକୁ ଦେଖିବାକୁ ମିଳେ । ଆଗରୁ କିନ୍ତୁ ନୁହେଁ । ଯଥାସମୟରେ ଜାଣିପାରିବ ସବୁ କଥା ।"

"କେବେ ମାମୁ ?" ଦୁର୍ଯ୍ୟୋଧନଙ୍କ ଅଧୈର୍ଯ୍ୟ ପ୍ରଶ୍ନ ।

"ବେଶି ଡେରି ନୁହେଁ । ରାଜସଭାରେ ଯେତେବେଳେ ପ୍ରସ୍ତାବଟି ପଡ଼ିବ ଠିକ୍ ସେତିକିବେଳେ । ତୁମକୁ ଗୋଟିଏ କାମ କରିବାକୁ ହେବ ସେତେବେଳେ ।"

"କ'ଣ ମାମୁ ?" ଦୁର୍ଯ୍ୟୋଧନ ଆଗ୍ରହୀ ହୋଇଉଠୁଥିଲେ ଧୀରେ ଧୀରେ । ମାତୁଳ ଶକୁନି କିଛି ଗୋଟାଏ ବାଟ ବାହାର କରିଛନ୍ତି ବୋଲି ଖୁସି ବି । ଅନେକ କିଛି ଆଶ୍ୱସ୍ତ ମନେ ମନେ । ନୀରନ୍ଧ୍ର ଅନ୍ଧକାରରେ କ୍ଷୀଣ ଦୀପଶିଖାଟିର ବି ବିଶେଷ ମୂଲ୍ୟ ଅଛି ।

"ସେତେବେଳେ ମୁଁ ଯେଉଁ ପ୍ରସ୍ତାବ ଦେବି, ତୁମେ ତାହାକୁ ସଙ୍ଗେ ସଙ୍ଗେ ସମର୍ଥନ କରିବ । ମନେରଖିଥିବ, ମୋ' ପ୍ରସ୍ତାବ ବିରୋଧରେ କେହି କିଛି କହିବା ପୂର୍ବରୁ ତୁମ ସମର୍ଥନଟା ଯେମିତି ମିଳିଯିବ ।"

"ହଉ, ମାମୁ ।"

ଆଲୋଚନା ସେତିକିରେ ବନ୍ଦ ହେଲା । ମୁଁ ଦୁର୍ଯ୍ୟୋଧନଙ୍କଠାରୁ ବିଦାୟ ନେଇ ଆସିଲି । ଆସିଲାବେଳେ ଭାବୁଥାଏ ମନେ ମନେ, ଧୂର୍ତ୍ତପଣିଆରେ ତ ଗାନ୍ଧାରାଜଙ୍କର ତୁଳନା ହିଁ ନାହିଁ । ତାଙ୍କ କଥାର ଗଭୀରତାକୁ ଭେଦ କରିବା ଦେବତାମାନଙ୍କ ପକ୍ଷରେ ବି ଅସମ୍ଭବ । ଶୂନ୍ୟରେ ପ୍ରାସାଦଟିଏ ତୋଳିଦେଇ ପାରିବେ । ଆଉ ପ୍ରାସାଦଟିକୁ ଅନ୍ତର୍ହିତ ବି କରିଦେଇ ପାରିବେ ପର କ୍ଷଣରେ । ଚତୁର ମୂଷିକ ଭଳି ଶତଦ୍ୱାରରେ ଗଢ଼ା ତାଙ୍କ ହୃଦୟର ବିଲଟି । ତାହାକୁ ଭେଦି ହୃଦୟର କଥାଟିକୁ କାଢ଼ିବା ସହଜ ନୁହେଁ । ଏ କ୍ଷେତ୍ରରେ କି ଉପାୟ ସେ ଖଞ୍ଜିଛନ୍ତି କେଜାଣି ? ତାହା ତାଙ୍କୁ ହିଁ ଜଣା ।

ମନରେ ଭରା ଉତ୍କଣ୍ଠା ନେଇ ଅପେକ୍ଷା କରି ରହିଲି ରାଜସଭା ବସିବାର ଦିନଟିକୁ ।

## ଅଣଚାଶ

ଦୁର୍ଯ୍ୟୋଧନ ଠିକ୍ କଥା କହିଥିଲେ । ଦୁଇ ଦିନ ପରେ ହିଁ ବସିଲା ରାଜସଭାର ଏକ ବିଶେଷ ଜରୁରୀ ଅଧିବେଶନ । ତେଣୁ ସଭ୍ୟମାନଙ୍କ ପାଖକୁ ସଂବାଦ ପଠାଗଲା ତ୍ୱରିତଗାମୀ ଅଶ୍ୱାରୋହୀମାନଙ୍କ ହସ୍ତରେ । ଆଲୋଚନାର ବିଷୟବସ୍ତୁ ସେଇ ଗୋଟିଏ । ପାଣ୍ଡବ-କୌରବମାନଙ୍କ ମଧ୍ୟରେ କୁରୁରାଜ୍ୟର ବିଭାଜନ ଲାଗି ନେବାକୁ ହେବ ନିଷ୍ପତ୍ତି । ବିଷୟବସ୍ତୁର ଗୁରୁତ୍ୱ ଦୃଷ୍ଟିରୁ ପୌର-ଜାନପଦର ସମସ୍ତ ସଭ୍ୟ ପ୍ରାୟ ଯୋଗଦେଇଥିଲେ ସଭାରେ । ମହାରାଜ ଧୃତରାଷ୍ଟ୍ର ଯଥାରୀତିରେ ଥିଲେ ସଭାପତିଙ୍କ ଆସନରେ । ପିତାମହ ଭୀଷ୍ମ ଓ ମହାମନ୍ତ୍ରୀ ବିଦୁର, ଦ୍ରୋଣାଚାର୍ଯ୍ୟ ଓ ଅନ୍ୟାନ୍ୟ ଅମାତ୍ୟଗଣ ବି ଆସୀନ ସଭ୍ୟ ଆସନରେ । ଦୁର୍ଯ୍ୟୋଧନଙ୍କ ଅନୁଗ୍ରହରୁ ମୁଁ ଓ ମାତୁଳ ଶକୁନି ମଧ୍ୟ ସଭ୍ୟ ହୋଇଯାଇଛୁ । ଏହା ଛଡ଼ା ସେ ନିଜେ ବି ଯୁବରାଜ ନ ଥାଇ ସଭ୍ୟ କେବଳ ଯୁଧିଷ୍ଠିରଙ୍କ ପ୍ରତିଦ୍ୱନ୍ଦ୍ୱୀ ଭାବରେ ମହାରାଜଙ୍କ ପ୍ରସାଦରୁ । ଯୁଧିଷ୍ଠିର ତ ଯୁବରାଜ ହିସାବରେ ସଭ୍ୟ । ଆମେ ସମସ୍ତେ ଉପସ୍ଥିତ । ବିଶେଷ ନିମନ୍ତ୍ରିତ ବ୍ୟକ୍ତି ଭାବରେ ଅନ୍ୟାନ୍ୟ ପାଣ୍ଡବମାନେ ଓ କୌରବମାନେ ମଧ୍ୟ ଉପସ୍ଥିତ । ସଭାଭବନ ପ୍ରାୟ ଭରପୂର ।

ସଭାରମ୍ଭର ଘଣ୍ଟିଟି ବାଜିଉଠିଲା । ସଭାକକ୍ଷରେ ଯାହା କିଛି ମୃଦୁ ଗୁଞ୍ଜରଣ ହେଉଥିଲା ତାହା ବନ୍ଦ ହୋଇଗଲା ହଠାତ୍ । କକ୍ଷ ମଧ୍ୟରେ ସହସା ନୀରବତା ଓ ଗାମ୍ଭୀର୍ଯ୍ୟର ଯୁଗ୍ମ ରାଜୁତି । ଏଇ ମୌନ-ଗମ୍ଭୀର ବାତାବରଣରେ ତରଙ୍ଗ ସୃଷ୍ଟି କରିବାକୁ ଯାଇ ମହାରାଜ ଘୋଷଣା କଲେ, ‘‘ସଭା ଆରମ୍ଭ କରାଯାଉ ।’’

ମହାମନ୍ତ୍ରୀ ବିଦୁର ଉଠି କହିଲେ, ‘‘ହେ ସଭାସଦବର୍ଗ ! ପାଣ୍ଡବମାନଙ୍କର ମହାରାଜଙ୍କ ଆଗରେ କିଛି ନିବେଦନ ଅଛି । ତାହା ଉପରେ ଏହି ସଭା ନିଷ୍ପତ୍ତି ନେବେ । ସେମାନଙ୍କ ତରଫରୁ ଜ୍ୟେଷ୍ଠପାଣ୍ଡବ ଯୁଧିଷ୍ଠିର ଏବେ ତାହା ଉପସ୍ଥାପିତ କରନ୍ତୁ ।’’

ଯୁଧିଷ୍ଠିର ଉଠିଲେ । ସମସ୍ତ ଗୁରୁଜନଙ୍କୁ ଯଥାବିଧି ସମ୍ମାନ ଜଣାଇ କହିଲେ, ‘‘ମୁଁ ସ୍ୱର୍ଗତ ମହାରାଜ ପାଣ୍ଡୁଙ୍କ ଜ୍ୟେଷ୍ଠପୁତ୍ର ଯୁଧିଷ୍ଠିର ଏହି ନିବେଦନ କରୁଛି । ଆମ ସ୍ୱର୍ଗତ ପିତା ଥିଲେ କୁରୁରାଜ୍ୟର ରାଜା । ନିଜ ବାହୁବଳରେ ଅନେକ ରାଜ୍ୟ ଜିଣି ଏହି ରାଜ୍ୟର ପରିସୀମାକୁ ବଢ଼ାଇଥିଲେ । ଆମକୁ ତାଙ୍କ ଦାୟାଦ ଭାବରେ ଆମ ରାଜ୍ୟଭାଗଟି ମିଳୁ । ନିୟମ ଅନୁସାରେ ଆମେ ସମସ୍ତ ରାଜ୍ୟର ଉତ୍ତରାଧିକାରୀ । କିନ୍ତୁ ଅନୁଜ ଦୁର୍ଯ୍ୟୋଧନଙ୍କର ରାଜ୍ୟ ପାଇବାର ଆଶା ବି ଅଛି । ସେଥିନେଇ କୌରବ-ପାଣ୍ଡବମାନଙ୍କ ମଧ୍ୟରେ ବିବାଦ । ତାହା ମୁଁ ବଢ଼ାଇବାକୁ ଚାହେଁ ନା । ସେ ରାଜ୍ୟରୁ ଭାଗ ପାଆନ୍ତୁ । ସୁଖରେ ରହନ୍ତୁ । ଆମେ ଦୁଇ ପକ୍ଷ ନିଜ ନିଜ ରାଜ୍ୟଭାଗ ପାଇ ଏଣିକି ସୁଖ-ଶାନ୍ତିରେ ରହିବୁ । ଆମ ଭାଗଟି କେବଳ ଆମକୁ ମିଳିଯାଉ । ଅବଶିଷ୍ଟ ଯାହା ରହିଲା, ସ୍ୱାଭାବିକ ଭାବରେ ଅନୁଜ ଦୁର୍ଯ୍ୟୋଧନ ହିଁ ତାହାର ଉତ୍ତରାଧିକାରୀ ।’’

ମତେ ଭାରି ଭଲ ଲାଗିଲା ତାଙ୍କ କଥା ଶୁଣି । ବାସ୍ତବିକ ଅତି ଉଦାର ସେ । ଗଭୀରତମ ସମୁଦ୍ରଠାରୁ ଅଧିକ ଉଦାର-ଗମ୍ଭୀର । ମେରୁ ସମାନ ଅଟଳ । କୌଣସି

ଭାବପ୍ରବଣତାରେ ଚହଲିଯିବାର ଲୋକ ନୁହନ୍ତି । ଏଇ ଦୁର୍ଯ୍ୟୋଧନଙ୍କ ଯୋଗୁଁ ପାଣ୍ଡବମାନଙ୍କର ଏଭଳି ଦଶା ! ଆଜି ଭିକାରି ଭଳି କରୁଛନ୍ତି ରାଜ୍ୟଭିକ୍ଷା । ଅଥଚ ଦୁର୍ଯ୍ୟୋଧନଙ୍କ ପ୍ରତି ଜ୍ୟେଷ୍ଠଭ୍ରାତା ହିସାବରେ ଯୁଧିଷ୍ଠିରଙ୍କର ଏଭଳି ସ୍ନେହ ଓ ଉଦାରତା । ମନେ ମନେ ଶତ ପ୍ରଣାମ କରୁଥିଲି ତାଙ୍କ ଉଦ୍ଦେଶ୍ୟରେ । ଆଉ ଧନ୍ୟବାଦ ଦେଉଥିଲି ପାଣ୍ଡବ ଭ୍ରାତାମାନଙ୍କୁ । କାରଣ ସେମାନେ ମଧ୍ୟ ବିନା ପ୍ରତିବାଦରେ ଗ୍ରହଣ କରିଯାଉଥିଲେ ଜ୍ୟେଷ୍ଠଭ୍ରାତାଙ୍କ କଥାକୁ । ଜ୍ୟେଷ୍ଠଙ୍କ ଚିରବଶମ୍ବଦ ସେମାନେ ।

"ସାଧୁ, ସାଧୁ, ଯୁଧିଷ୍ଠିର ! ସାଧୁ !" ସଭାସ୍ଥଳୀ ଗୁଞ୍ଜରିତ ହୋଇଉଠିଲା ଜଣଙ୍କର ସାଧୁବାଦରେ । ସମସ୍ତେ ଚକିତ ବିସ୍ମିତ । ଆଉ ମୁଁ ମଧ୍ୟ । ଦେଖିଲି, ସାଧୁବାଦ ଦେଉଥିବା ବ୍ୟକ୍ତି ଆଉ କେହି ନୁହନ୍ତି । ସ୍ୱୟଂ ମାତୁଳ ଶକୁନି । ସମସ୍ତଙ୍କ ବିସ୍ମୟଭରା ଦୃଷ୍ଟି ତାଙ୍କୁ ପରୀକ୍ଷା କରିନେଇଥାଏ ବାରମ୍ବାର । ଏହା କ'ଣ ସତ୍ୟ ନା ସ୍ୱପ୍ନ ? ଏହା କିପରି ସମ୍ଭବ ହେଲା ? ଲଙ୍କାରେ ଏଇ ହରିଶବ୍ଦ ଆସିଲା କିପରି ? ଶକୁନିଙ୍କ ମୁଖରେ ପାଣ୍ଡବ ଯୁଧିଷ୍ଠିରଙ୍କ ପ୍ରଶଂସା ସମ୍ଭବିଲା କିପରି ? ସୂର୍ଯ୍ୟ ପଶ୍ଚିମ ଦିଗରେ ଉଇଁଲା ଭଳି ଲାଗୁଥାଏ ।

ଅନ୍ୟ କେହି କିଛି ପ୍ରତିକ୍ରିୟା ପ୍ରକାଶ କରିବା ପୂର୍ବରୁ ସେ ପୁଣି କହିଉଠିଲେ, "ଏ ବଡ଼ ସୁନ୍ଦର ପ୍ରସ୍ତାବଟିଏ ଯୁଧିଷ୍ଠିର ଦେଇଛନ୍ତି । ଏହା ଫଳରେ କୌରବ-ପାଣ୍ଡବମାନଙ୍କ ମଧ୍ୟରେ ସଂପ୍ରୀତି ବଢ଼ିବ । ସବୁ ଦିନ ପାଇଁ ପାରିବାରିକ ବିବାଦର ଅବସାନ ହେବ । ପାଣ୍ଡବମାନଙ୍କ ଜନ୍ମ ତ ହିମାଳୟ ଅଞ୍ଚଳର ଶତଶୃଙ୍ଗ ପର୍ବତରେ । ବାଲ୍ୟକାଳ କଟାଇଛନ୍ତି ଆରଣ୍ୟକ ପରିବେଶରେ । ତେଣୁ ସେମିତି ଗୋଟିଏ ଅଞ୍ଚଳ ପାଇଲେ ସେମାନେ ଆନନ୍ଦରେ ରହିବେ । ଖାଣ୍ଡବପ୍ରସ୍ଥଟି ଅରଣ୍ୟରେ ପରିପୂର୍ଣ୍ଣ । ପୁରାତନ ରାଜପ୍ରାସାଦଟିଏ ବି ଅଛି ସେଠି । ଟିକିଏ ମରାମତି କରିଦେଲେ ଚଳିଯିବ । ସେହି ଅଞ୍ଚଳଟି ସେମାନଙ୍କୁ ଦିଆଯାଉ ।"

"ମୁଁ ଏହି ପ୍ରସ୍ତାବକୁ ଅନ୍ତରର ସହିତ ସମର୍ଥନ କରୁଛି । ମୋର ଜ୍ୟେଷ୍ଠଭ୍ରାତା ଯୁଧିଷ୍ଠିରଙ୍କର ଏଥିରେ କିଛି ଆପତ୍ତି ରହିବ ନାହିଁ ବୋଲି ଭାବୁଛି ।" ଦୁର୍ଯ୍ୟୋଧନ ସଙ୍ଗେ ସଙ୍ଗେ ଉଠି ଏହାର ସମର୍ଥନ କଲେ । ଦୁଇ ଚତୁର ବ୍ୟକ୍ତି କୋଳାଗ୍ରତ କରିନେଲେ ଯେମିତି ପରସ୍ପରକୁ । ଏହା ଯେ ପୂର୍ବକଳ୍ପିତ ଯୋଜନାର ଏକ ରୂପାୟନ, ଏହା କେହି ଭାବିପାରି ନ ଥିଲେ । କେବଳ ଜାଣିଥିଲି ମୁଁ ଓ କୌରବ ଦୁଃଶାସନ ।

ଏତେବେଳକେ ମାତୁଳ ଶକୁନି ଦେଖାଦେଲେ ତାଙ୍କ ପ୍ରକୃତ ସ୍ୱରୂପରେ ।

ମନେ ମନେ ଭାବୁଥାଏ, ଯଦି ଏହି ପ୍ରସ୍ତାବ ଗୃହୀତ ହୁଏ, ତେବେ କେତେ ବଡ଼ ଅନ୍ୟାୟ ନ ହେବ ପାଣ୍ଡବମାନଙ୍କ ପ୍ରତି ? ସ୍ୱପିତାଙ୍କ ଦ୍ୱାରା ଅର୍ଜିତ ରାଜ୍ୟସମ୍ପତ୍ତିରୁ ବଞ୍ଚିତ ହେବେ ସେମାନେ । ଅରଣ୍ୟବାସୀମାନଙ୍କ ଭଳି ଦୀନହୀନ ଜୀବନ ବିତାଇବେ । ଏହା କ'ଣ ନ୍ୟାୟ ବିଚାର ? କିନ୍ତୁ ମୁହଁ ଖୋଲିପାରୁ ନ ଥାଏ ମୁଁ । ବିବଶତା ବନ୍ଦ କରି ଦେଇଥାଏ ମୁହଁକୁ । ଦୁର୍ଯ୍ୟୋଧନ ପ୍ରସ୍ତାବଟିର ସମର୍ଥନ କରିସାରିବା ପରେ ତାହା ବିରୋଧରେ କିଛି କହିପାରିବି ନାହିଁ । ତାହା ମିତ୍ରଦ୍ରୋହ ସଙ୍ଗେ ସମାନ ହେବ । ମୋର ପୂର୍ବରୁ ଦୁର୍ଯ୍ୟୋଧନଙ୍କୁ ଦେଇଥିବା ପ୍ରତିଶ୍ରୁତି ଭଙ୍ଗ ହେବ । ତେଣୁ ଅନ୍ତର୍ବେଦନାରେ ପୀଡ଼ିତ

ଥାଇ ଅପେକ୍ଷା କରି ରହିଲି ପରବର୍ତ୍ତୀ ଘଟଣାପ୍ରବାହକୁ । ଯୂପକାଷ୍ଠରେ ବନ୍ଧା ହୋଇଥିବା ପଶୁଟି କାତର ଦୁଃଖରେ ମୃତ୍ୟୁକୁ ଅପେକ୍ଷା କରି ରହିଥାଏ ଯେମିତି ! ହାୟ ରେ କର୍ଣ୍ଣର ଅନ୍ତର୍ଯାତନା !!

"ମୋର କାହିଁକି ଆପତ୍ତି ରହିବ ? ମହାରାଜ ଆମର ଜ୍ୟେଷ୍ଠ ପିତା । ଆମର ହିତାକାଙ୍‌କ୍ଷୀ । ଆମ ହିତ ଉଦ୍ଦେଶ୍ୟରେ ଯାହା କିଛି ଆମକୁ ଦେବେ, ସେଥିରେ ଆମେ ଖୁସି । ସାଦରେ ତାହାକୁ ଗ୍ରହଣ କରିବୁ ।" ହସି ହସି କହିଲେ ଯୁଧିଷ୍ଠିର । କଣ୍ଠସ୍ୱର ବିନୀତ ଅଥଚ ଦୃଢ଼ । ସୌମ୍ୟ ଦୃଷ୍ଟି । ସାମାନ୍ୟ ଟିକିଏ ହେଲେ ବିକୃତି କିମ୍ବା ଭାବାନ୍ତର ନାହିଁ ମୁଖମଣ୍ଡଳରେ ।

ଦ୍ରୋଣାଚାର୍ଯ୍ୟଙ୍କୁ ଅସହ୍ୟ ଏ ଅନ୍ୟାୟ । ଏହା ଖାଲି ତ ଅବିଚାର ନୁହେଁ ଦୁର୍ବିଚାର । ନିରାଟ ଦୁର୍ବିଚାର । ଦୁରଭିସନ୍ଧି ରଖି ପାଣ୍ଡବମାନଙ୍କୁ ବିପତ୍ତି ମୁହଁକୁ ଠେଲିଦେବାର ଉଦ୍ୟମ । ଏହାକୁ ପ୍ରତିହତ ନ କଲେ ହୁଏତ ମହାରାଜ ଦେଇଦେବେ ସମ୍ମତି । ସେ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟ କରି କହିଲେ, "ଭାବିଚିନ୍ତି ଦେଖ ଯୁଧିଷ୍ଠିର । ଖାଣ୍ଡବପ୍ରସ୍ଥ ଘନ ଅରଣ୍ୟରେ ପରିପୂର୍ଣ୍ଣ । ଜନବସତି ବିରଳ । ଶସ୍ୟକ୍ଷେତ୍ର ବି ନାହିଁ । ତୁମର ପ୍ରଜାମାନେ ହେବେ କିଏ ? କେଉଁମାନଙ୍କୁ ନେଇ ରାଜ୍ୟଶାସନ କରିବ ?" ବାସ୍ତବିକ ଜଣେ ହିତାକାଙ୍‌କ୍ଷୀ ଭାବରେ ସେ ଏଭଳି ପ୍ରଶ୍ନମାନ କରିଥିଲେ ଯୁଧିଷ୍ଠିରଙ୍କୁ । ହୁଏତ ଭାବୁଥିଲେ, ଯୁଧିଷ୍ଠିର ଏ ବିଷୟରେ ପୁନର୍ବିଚାର କରିପାରନ୍ତି ।

"ହେ ଆଚାର୍ଯ୍ୟଦେବ ! ଏଥିରେ ଭାବିବାର କିଛି ନାହିଁ । ସବୁ ଭୂମି ମୋ' ପାଇଁ ସମାନ । କାରଣ ମୁଁ ଭୂମିପାଳ । ଭୂମିକୁ ପାଳନ କରିବି, ନିନ୍ଦିବି ନାହିଁ । ଭୂମି ମୋର ମାଆ । ମୁଁ ତା'ର ପୁତ୍ର । ଏ କଥା ତ ବେଦର ବାଣୀ ବୋଲି ଆପଣ ନିଜେ ମତେ ବାରମ୍ବାର କହିଛନ୍ତି । ମାଆ ଯଦି ବୃଦ୍ଧା ଅଥବା ରୁଗ୍ଣା ହୋଇଯାଆନ୍ତି, ଅଥବା ତାଙ୍କ ବୁକୁରୁ କ୍ଷୀର ଶୁଖିଯାଏ, ପୁତ୍ର କ'ଣ ତାଙ୍କୁ ଛାଡ଼ିଦେବ । ଆମେ ଉଦ୍ୟମ କରି ଏଇ ଅରଣ୍ୟ-ଭୂମିରେ ବି ସୁନା ଫଳାଇବୁ । ଆଉ ପ୍ରଜାମାନଙ୍କ କଥା । ସେମାନେ ଆପେ ଆପେ ଆସିଯିବେ ।" ଦୀର୍ଘ ଏକ ଭାଷଣ ଦେବା ଢଙ୍ଗରେ ଉତ୍ତର ଦେଲେ ଯୁଧିଷ୍ଠିର । ଖାଲି ତ ଉତ୍ତର ଦେଲେ ନାହିଁ । ବହୁତ କିଛି ନୀତିବାକ୍ୟ ବି ଶୁଣାଇଦେଲେ ।

"ତଥାପି ଆଉ ଥରେ ଭାବି ଦେଖିବାରେ କ୍ଷତି କ'ଣ ?" ଯୁଧିଷ୍ଠିରଙ୍କ ସରଳତା ଦେଖି ଦ୍ରୋଣାଚାର୍ଯ୍ୟ ତାଙ୍କୁ ପୁନର୍ବାର ପରାମର୍ଶ ଦେବାକୁ ଯାଇ କହିଲେ । ତାଙ୍କ ଇଚ୍ଛା, ଯୁଧିଷ୍ଠିର ଏଥିରେ ରାଜି ନ ହୁଅନ୍ତୁ ।

ଯୁଧିଷ୍ଠିର କିନ୍ତୁ ତାଙ୍କ କଥାରେ ଅଟଳ । ମେରୁପର୍ବତ ଯେମିତି । ସେ ପୂର୍ବ କଥାକୁ ଦୋହରାଇ କହିଲେ, "ଜ୍ୟେଷ୍ଠତାତ ଯଦି ଖାଣ୍ଡବପ୍ରସ୍ଥ ଆମକୁ ଦେବେ, ତେବେ ତାହା ଆମ ପାଇଁ ହେବ ସ୍ୱର୍ଗପୁରୀ ସମାନ ସୁଖପ୍ରଦ । ଆମର ତାହାକୁ ଗ୍ରହଣ କରିବାରେ କିଛି ହିଁ କୁଣ୍ଠା ନାହିଁ । ପିତୃଦତ୍ତ ବସ୍ତୁ କ'ଣ ପୁତ୍ରପାଇଁ କେବେ ଦୁଃଖ ଆଣି ଦେଇପାରେ ?"

ଦ୍ରୋଣାଚାର୍ଯ୍ୟ ଆଉ କ'ଣ କହିବାପାଇଁ ଉଠୁଥିଲେ । ଏତିକିବେଳେ ହଠାତ୍ ସଭାର ମର୍ଯ୍ୟାଦା ଭୁଲି ଦୁର୍ଯ୍ୟୋଧନ ଉଠିପଡ଼ିଲେ । ଫଳରେ ଆଚାର୍ଯ୍ୟ ପୁଣି ବସିପଡ଼ିବାକୁ ହେଲେ ବିବଶ ।

''ସ୍ୱୟଂ ରାଜାଙ୍କ ଅପେକ୍ଷା ଚାଟୁକାରମାନେ ତାଙ୍କ ହିତ ପାଇଁ ବେଶି ଉତ୍କଣ୍ଠିତ ଦେଖୁଛି ।'' ଆଚାର୍ଯ୍ୟଙ୍କୁ ଆକ୍ଷେପ କରି କହିଲେ ଦୁର୍ଯ୍ୟୋଧନ । ରାଜସଭାରେ ବଜ୍ରପାତ ହେଲା ଯେମିତି । ସମସ୍ତେ ସ୍ତବ୍ଧ-ଚକିତ । ଆଉ ନୀରବ ମଧ ଜନ୍ମଜାତ ମୂକମାନଙ୍କ ଭଳି । କାହାର ହେଲେ ସାହସ ନାହିଁ ପ୍ରତିବାଦ କରିବାକୁ । ମହାରାଜଙ୍କ ମୁଖମଣ୍ଡଳରେ ବିବ୍ରତତାର ଛାୟା । କିନ୍ତୁ ସେ ମଧ ସମଧିକ ମୂକ । ଏଇ ଅଭାବନୀୟ ନୀରବତାକୁ ଭଙ୍ଗ ଭଳି ସିଂହ ଭଳି ଗର୍ଜିଉଠିଲେ ପିତାମହ ଭୀଷ୍ମ, ''ସାବଧାନ ହୁଅ ପୁତ୍ର ଦୁର୍ଯ୍ୟୋଧନ । ଗୁରୁଜନଙ୍କୁ କିପରି କଥା କହିବାକୁ ହେବ ଶିଖ । ଆଚାର୍ଯ୍ୟ ଦ୍ରୋଣଙ୍କୁ କ୍ଷମା ମାଗ ।''

''ହୁଁ ।'' ଦୁର୍ଯ୍ୟୋଧନଙ୍କ ବିଦ୍ରୂପାତ୍ମକ ହୁଙ୍କାର । ବସିଥିବା ଆସନ ଉପରେ ଦୃଢ଼ ଭାବରେ କଲେ ମୁଷ୍ଟ୍ୟାଘାତ । କିନ୍ତୁ କ୍ଷମା ନ ମାଗି ରହିଲେ ନୀରବ ।

''କ୍ଷମା ମାଗ ଦୁର୍ଯ୍ୟୋଧନ । ମୋର ଆଦେଶ ।'' ଅସହ୍ୟ କ୍ରୋଧରେ ଥରିଉଠି ଆଦେଶ ଦେଲେ ପିତାମହ । ଆଖି ତାଙ୍କର ଲାଲ ଓ ଓଠ ଥର ଥର ।

''ମୁଁ କ୍ଷମା ମାଗୁଛି ଆଚାର୍ଯ୍ୟ ।'' ପରିଶେଷରେ ବାଧ ହୋଇ କହିଲେ ଦୁର୍ଯ୍ୟୋଧନ । କିନ୍ତୁ ତାଙ୍କ କଥା କହିବାର ଢଙ୍ଗ ଔଦ୍ଧତ୍ୟ ପ୍ରକାଶ କରୁଥିଲା ସିନା, ନମ୍ରତା କିନ୍ତୁ ନୁହେଁ । ଆଚାର୍ଯ୍ୟ କିନ୍ତୁ ପ୍ରତିକ୍ରିୟାହୀନ । ମତେ ଲାଗୁଥାଏ, ସେ ଯେମିତି ଅନ୍ତର ମଧରେ କ୍ଷମା ଦେଇ ନାହାନ୍ତି ଦୁର୍ଯ୍ୟୋଧନଙ୍କ ଔଦ୍ଧତ୍ୟକୁ । ଗୁରଜନଙ୍କ ପ୍ରତି ଏ ପ୍ରକାର ଅବମାନନାକୁ ।

ମୁଁ ମଧ ସନ୍ତୁଳିହେଉଥିଲି ବେଦନାରେ । ସମର୍ଥନ କରିପାରୁ ନ ଥିଲି ଦୁର୍ଯ୍ୟୋଧନଙ୍କ ଆଚରଣକୁ ।

ଏତିକିବେଳେ ଯୁଧିଷ୍ଠିର ଉଠି ହାତଯୋଡ଼ି ଠିଆ ହେଲେ । ଆଚାର୍ଯ୍ୟଙ୍କୁ ଲକ୍ଷ୍ୟ କରି କହିଲେ, ''ହେ ଆଚାର୍ଯ୍ୟବର ! ମୋ' ଅନୁଜ ଦୁର୍ଯ୍ୟୋଧନ ଭାବାବେଗରେ କ'ଣ କହିଦେଇଛନ୍ତି । ଆପଣଙ୍କ ଉଦାରତା ବଳରେ ତାଙ୍କୁ କ୍ଷମା ଦିଅନ୍ତୁ; ଆଉ ମତେ ବି କ୍ଷମା ଦିଅନ୍ତୁ କାରଣ ମୋରି ଯୋଗୁଁ ହିଁ ଆପଣଙ୍କୁ ଏତେ କଥା ଶୁଣିବାକୁ ପଡ଼ିଲା । ଆପଣ ତ ନିଜେ କହିଛନ୍ତି ଆମକୁ 'କ୍ଷମା ଧର୍ମ । କ୍ଷମା ସତ୍ୟ । କ୍ଷମା ବ୍ରହ୍ମ ।' ଆପଣ ସ୍ୱୟଂ କ୍ଷମାର ଅବତାର ଶିଷ୍ୟମାନଙ୍କ ପାଇଁ । ଆମକୁ ତେଣୁ କ୍ଷମା ଦିଅନ୍ତୁ । ମୋର ଏକାନ୍ତ ଅନୁରୋଧ ।'' ତାଙ୍କ କମଳନୟନରେ ଆକୁତିଭରା ଚାହାଣି । ଦେଖିଲେ ପାଷାଣ ତରଳିଯିବ ।

ଆଚାର୍ଯ୍ୟଙ୍କ ପ୍ରାଣମନରେ ବିଜୁଳିର ଚମକ ସହସା ଖେଳିଗଲା ଯେମିତି । ମୁଖର ବିଷଣ୍ଣତା ଚାଲିଗଲା । ଅଧରତଳେ ମୃଦୁ ମୃଦୁ ହସ । ପବନକମ୍ପିତ ଅର୍ଦ୍ଧଧବଳ ଶ୍ମଶ୍ରୁକୁ ମାନୁଥାଏ ଖୁବ୍ । ଆଖି କଣରେ ଛଳ ଛଳ ଆନନ୍ଦର ଲୁହ । ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ଉଭୟଙ୍କ ଆଡ଼କୁ ଦୁଇ କର ପ୍ରସାରିତ କରି ଆଶୀର୍ବାଦ ଦେଲେ । କିଛି କଥା ଅବଶ୍ୟ କହି

ନ ଥିଲେ । କିନ୍ତୁ ଆଶୀର୍ବାଦ ମୁଦ୍ରାରେ ପ୍ରସାରିତ ସେଇ ବରଦ କରଯୁଗଳ ଯେମିତି ଆଶ୍ୱାସଭରା କଣ୍ଠରେ ବାରମ୍ବାର କହୁଥିଲା – କ୍ଷମା ଦେଲି ବତ୍ସ ଯୁଧିଷ୍ଠିର ! କ୍ଷମା ଦେଲି ବତ୍ସ ଦୁର୍ଯ୍ୟୋଧନ !

ସଭାର ଅଧିବେଶନକୁ ଆଉ ବଢ଼ାଇବାର ଆବଶ୍ୟକତା ନ ଥିଲା । କାରଣ ସ୍ୱୟଂ ଯୁଧିଷ୍ଠିର ଖାଣ୍ଡବପ୍ରସ୍ଥ ନେବାକୁ ସମ୍ମତ । ସଭାସଦ୍‌ମାନେ ସେହି ଅନୁସାରେ ଦେଲେ ସହମତି । ମହାରାଜ ଧୃତରାଷ୍ଟ୍ର ମଧ୍ୟ ଖୁସି ମନରେ ଏହାକୁ ଗ୍ରହଣ କଲେ । ତାହା ପରେ ଘୋଷଣା କରି କହିଲେ, "ପାଣ୍ଡବମାନଙ୍କୁ କୁରୁରାଜ୍ୟର ଖାଣ୍ଡବପ୍ରସ୍ଥ ଅଞ୍ଚଳଟି ଦିଆହେବାର ନିଷ୍ପତ୍ତି ନିଆଗଲା । ସେମାନେ ଏବେ ନିଜ ରାଜ୍ୟରେ ସୁଖରେ ରହନ୍ତୁ ।"

ସେତେବେଳେ ଦୁର୍ଯ୍ୟୋଧନ ଓ ମାତୁଳ ଶକୁନିଙ୍କ ଅଧରତଳେ ଯେଉଁ ହିଂସ୍ର ବିଷାକ୍ତ ମୃଦୁ ମୃଦୁ ହସର ଝଲକ ପହଁରୁଥିଲା ତାହା ମୁଁ ଲକ୍ଷ୍ୟ କରିପାରିଥିଲି ପରିଷ୍କାର ଭାବରେ । ମତେ କିନ୍ତୁ ଏସବୁ କିଛି ଭଲ ଲାଗୁ ନ ଥିଲା । ମନ ମତେ ବାରମ୍ବାର କହୁଥିଲା, ପାଣ୍ଡବମାନଙ୍କ ପ୍ରତି ଏଇଟା ଖୁବ୍ ଅନ୍ୟାୟ ! ସଭାଭଙ୍ଗ ପରେ ଏକ ଭାରାକ୍ରାନ୍ତ ମନ ନେଇ ଫେରିଲି ନିଜ ଭବନକୁ ।

## ପଚାଶ

ଦୁର୍ଯ୍ୟୋଧନଙ୍କ ଜିଦ୍ – ପାଣ୍ଡବମାନେ ତ ସେମାନଙ୍କ ରାଜ୍ୟ ପାଇଗଲେ । ଏଣିକି ହସ୍ତିନାପୁରର ରାଜଭବନରେ ରହିବେ କାହିଁକି ? ସେମାନେ ନିଜ ରାଜ୍ୟକୁ ଏବେ ଯାଆନ୍ତୁ । ଆଜି ତ ରାଜସଭା ପୂର୍ବାହ୍ନରେ ନିଷ୍ପତ୍ତି ନେଇଛି । ଏ ବିଷୟରେ ମହାରାଜ ବି ସମ୍ମତି ଦେଇଛନ୍ତି । ତେଣୁ ଅପରାହ୍ନରେ ହିଁ ଚାଲିଯାଆନ୍ତୁ । ଆଉ ଡେରି କରନ୍ତୁ ନାହିଁ । ମହାରାଜ ପୁତ୍ରସ୍ନେହରେ ଅନ୍ଧ ଥାଇ ଏଥିରେ ସ୍ୱୀକୃତି ଦେବାପାଇଁ ପ୍ରାୟ ପ୍ରସ୍ତୁତ । କିନ୍ତୁ ମହାମନ୍ତ୍ରୀ ବିଦୁର ରାଜି ହେଲେ ନାହିଁ । ସେମାନଙ୍କ ଖାଣ୍ଡବପ୍ରସ୍ଥକୁ ଯିବା ନିମିତ୍ତ କିଛି ନିର୍ଦ୍ଦିଷ୍ଟ ବ୍ୟବସ୍ଥାମାନ କରିବାକୁ ହେବ । ସେଥିପାଇଁ ସମୟ ଲାଗିବ । ତେଣୁ ସେ ମହରାଜଙ୍କୁ ଅନ୍ତତଃପକ୍ଷେ ଦୁଇ-ତିନି ଦିନ ଅପେକ୍ଷା କରିବାପାଇଁ କଲେ ଅନୁରୋଧ । ଦୁର୍ଯ୍ୟୋଧନ ଓ ମହାମନ୍ତ୍ରୀ ଉଭୟଙ୍କ ଚାପରେ ଅସ୍ତବ୍ୟସ୍ତ ମହାରାଜା ଶେଷରେ ଉଭୟଙ୍କ କଥା ରଖି ଅନୁସରଣ କଲେ ମଧ୍ୟମ ପନ୍ଥାଟିଏ । ପାଣ୍ଡବମାନଙ୍କୁ ଆସନ୍ତା କାଲି ହସ୍ତିନାପୁର ଛାଡ଼ିବାକୁ ହେବ । ସେଥିପାଇଁ ଆବଶ୍ୟକ ବ୍ୟବସ୍ଥାମାନ ଶୀଘ୍ର କରିବାପାଇଁ ଦୃଢ଼ ନିର୍ଦ୍ଦେଶ ଦେଲେ ବିଦୁରଙ୍କୁ । ବାଧ୍ୟ ହୋଇ ସେହି ଦିଗରେ ଲାଗିପଡ଼ିଲେ ବିଦୁର ।

ଦୁର୍ଯ୍ୟୋଧନ କେବଳ ଏତିକିରେ ସନ୍ତୁଷ୍ଟ ନୁହନ୍ତି । ତାଙ୍କ ଇଚ୍ଛା ଯେଉଁମାନେ କୌରବମାନଙ୍କ ଅନ୍ନରେ ପ୍ରତିପାଳିତ ହୋଇ ପାଣ୍ଡବମାନଙ୍କ ଗୁଣଗାନ କରୁଛନ୍ତି, ସେମାନେ ମଧ୍ୟ ଛାଡ଼ନ୍ତୁ ହସ୍ତିନାପୁର । ଯାଆନ୍ତୁ ପାଣ୍ଡବମାନଙ୍କ ସହିତ ଖାଣ୍ଡବପ୍ରସ୍ଥକୁ । ସେମାନଙ୍କ ପାଇଁ ସ୍ଥାନ ନାହିଁ ଏଠାରେ । ଅବଶ୍ୟ ସେ କାହାଙ୍କ ନାଁ ଧରୁ ନ ଥାନ୍ତି । ସେ ଯେ ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, କୃପାଚାର୍ଯ୍ୟ ଓ ବିଦୁରଙ୍କୁ ଲକ୍ଷ୍ୟ କରି ଏ କଥା କହୁଛନ୍ତି,

ପରିଷ୍କାର ଭାବରେ ତାହା ଜଣାପଡ଼ିଯାଉଥିଲା । ସମୁଦ୍ର ମଧ୍ୟରେ ଲୁକ୍କାୟିତ ଥିବା ବରଫଖଣ୍ଡର ବାହାରକୁ ଦୃଶ୍ୟମାନ ଅଗ୍ରଭାଗରୁ ହିଁ କଳିହେଉଥିଲା ତାହାର ବିରାଟତ୍ୱର ସ୍ୱରୂପ ।

ବିଦୁର ଚାହୁଁଥିଲେ ପାଣ୍ଡବମାନେ ସେମାନଙ୍କ ରାଜ୍ୟଭାଗ ପାଆନ୍ତୁ । କିନ୍ତୁ ଏପରି ଅପ୍ରତ୍ୟାଶିତ ଭାବରେ ସେମାନଙ୍କୁ ଯେ ଖାଣ୍ଡବପ୍ରସ୍ଥ ମିଳିବ ଏ ଆଶଙ୍କା ସେ କରି ନ ଥିଲେ । ତେଣୁ ଥିଲେ ଦୁଃଖିତ । ପିତାମହଙ୍କର ମଧ୍ୟ ଅନୁରୂପ ମାନସିକ ସ୍ଥିତି ।

ଖବର ପାଇଲି, ବିଦୁର କୁଆଡ଼େ ଯାଇ ଏଇ କଥା ନିବେଦନ କଲେ ପିତାମହଙ୍କୁ । କ'ଣ କରିବାକୁ ହେବ ବୋଲି ତାଙ୍କ ପରାମର୍ଶ ମାଗିଲେ । ପିତାମହ ତାଙ୍କୁ ଓଲଟି ପଚାରିଲେ, ''ବତ୍ସ ବିଦୁର ! ତୁମେ କ'ଣ ଭାବୁଛ ନିଜ ପାଇଁ ଏ ସଂପର୍କରେ ? କ'ଣ କଲେ ଭଲ ହେବ ବୋଲି ବିଚାରୁଛ ?''

''ମୁଁ ଭାବୁଛି, ମୋର ଏଠାରେ ରହିବା ଉଚିତ । କାରଣ ଆଗାମୀ ଦିନମାନଙ୍କରେ ମହାରାଜଙ୍କ ପାଇଁ ନାନା ସଂକଟ ଆସିବାର ସମ୍ଭାବନା ଦେଖିପାରୁଛି । ତାଙ୍କୁ ସୁପରାମର୍ଶ ଦେବାପାଇଁ ମୋର ତାଙ୍କ ପାଖେ ପାଖେ ରହିବା ଆବଶ୍ୟକ ।'' ବିଦୁର ହୃଦୟଖୋଲା ଉତ୍ତର ଦେଲେ ।

''ଯେ ଯାହା କରୁ ପଛକେ, ମୁଁ କିନ୍ତୁ ଯିବି ନାହିଁ କୁଆଡ଼େ । ମୋ' ଜନ୍ମସ୍ଥାନ ହସ୍ତିନାପୁରକୁ ଛାଡ଼ିଯିବି ନାହିଁ । ଏହାର ରାଜଶକ୍ତିର ସୁରକ୍ଷାକବଚ ହୋଇ ରହିଥିବି ଚିରଦିନ । ସ୍ୱର୍ଗତ ପିତାଙ୍କୁ କଥା ଦେଇଛି । ସେଇ ପବିତ୍ର ଶପଥକୁ ଭାଙ୍ଗିପାରିବି ନାହିଁ । ତାହାଛଡ଼ା ମାତା ଗଙ୍ଗାଙ୍କୁ ବି ଛାଡ଼ି ଯାଇପାରିବି ନାହିଁ । ଏଇଠି ମୋର ଜନ୍ମ । ଏଇଠି ଛାଡ଼ିବି ଶେଷ ନିଃଶ୍ୱାସ । ତୁମେ ବି ଯାହା ଭାବିଛ, ସେଇଆ କର । ହସ୍ତିନାପୁର ଛାଡ଼ି ଯାଅ ନାହିଁ । ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟଙ୍କୁ ମଧ୍ୟ ମୁଁ ସେହି ପରାମର୍ଶ ଦେବି ।'' ପିତାମହଙ୍କର ବିଷାଦ ଗଭୀର ସ୍ୱରରେ କରୁଣାୟିତ ସାରା କକ୍ଷ ।

''ହେ ତାତ ! ଆମେ କ'ଣ ଏମିତି ନୀରବରେ ଏତେ ଏତେ ଅନ୍ୟାୟ, ଅବିଚାର, ଅଧର୍ମ ସହିଯିବା ? କୁରୁରାଜସଭାର ପବିତ୍ରତା ନଷ୍ଟ କରିବାକୁ ଦେବା ?'' ବିଦୁରଙ୍କ ପ୍ରତିପ୍ରଶ୍ନରେ କରୁଣ ଅସହାୟତାର ସନ୍ତରଣ । ସେ ମଧ୍ୟ ସମଧିକ ବ୍ୟଥିତ ।

''ନା, ତାହା କଦାପି ନୁହେଁ । ଏଣିକି ଆମେ ପ୍ରତିବାଦ କରିବା । ଦୃଢ଼ଭାବରେ ପ୍ରତିବାଦ କରିବା । ଯାହା ନ୍ୟାୟସଙ୍ଗତ ତାହାହିଁ କହିବା । ଆଜି ନ ହେଲେ ବି କାଲିର ଇତିହାସ ତ ଆମକୁ ମନେପକାଇବ ।''

''କିନ୍ତୁ ଏ ପ୍ରତିବାଦ ଯେ ସବୁ କ୍ଷେତ୍ରରେ ମହାରାଜ ଗ୍ରହଣ କରିବେ, ସେ ଆଶା ମୋର ନାହିଁ ।'' ପୁନର୍ବାର ହତାଶ କଣ୍ଠରେ କହିଲେ ବିଦୁର ।

''ଗ୍ରହଣ ନ କରନ୍ତୁ । ସେଥିରେ କିଛି ଯାଏଆସେ ନାହିଁ । ସମୟ ଅନନ୍ତ । କେବେ ତ କେହି ଜଣେ ଏହାକୁ ଗ୍ରହଣ କରିବେ । ସେତେବେଳକୁ ହୁଏତ ଯାହା ହେବାର ହୋଇ ଯାଇଥିବ ! ସମୟ ହୋଇଥିବ ଅତିକ୍ରାନ୍ତ । କିନ୍ତୁ ଆମର ଦୁଃଖ କରିବାର ନାହିଁ ସେଥିରେ ।

ବିନା ପ୍ରତିବାଦରେ ପାପକୁ ଆମେ ଗ୍ରହଣ କରିଗଲୁ ବୋଲି କଳଙ୍କ ଯେମିତି ଆମ ନାମରେ ଲେଖା ନ ହେଉ ଭବିଷ୍ୟତର ଇତିହାସ ପୃଷ୍ଠାରେ ।'' ପିତାମହଙ୍କ କଣ୍ଠସ୍ୱରରେ ଦୃଢ଼ତାର ଝଙ୍କାର ।

''ଆପଣ ହୁଏତ ଠିକ୍ କହୁଛନ୍ତି ତାତ ।'' ଏହା କହି ବିଦୁର ପିତାମହଙ୍କଠାରୁ ବିଦାୟ ନେଇ ଫେରି ଆସିଲେ ।

ଆଉ କାହାଙ୍କର ପାଣ୍ଡବମାନଙ୍କର ସହଗମନ ଅଥବା ଅନୁଗମନ କରିବାର ନୋହିଲା ।

ପୁଣି ଖବର ପାଇଲି ଯେ ରାଜସଭା ବସିବାର ପରଦିନ ହିଁ ପାଣ୍ଡବମାନେ ମାତା ଓ ପତ୍ନୀଙ୍କ ସହିତ ଯାତ୍ରା କଲେ ଖାଣ୍ଡବପ୍ରସ୍ଥକୁ । ନାଗରିକମାନେ ସାଶ୍ରୁ ଲୋଚନରେ ବିଦାୟ ଦେଲେ ସେମାନଙ୍କୁ । କାଳଦ୍ୱାରା କବଳିତ ହୋଇ ସେମାନେ ସିନା ଏବେ ହସ୍ତିନାପୁର ଛାଡ଼ିଲେ । ଭବିଷ୍ୟତରେ ତାହାରିଦ୍ୱାରା କବଳିତ ହୋଇ ଆଉ କେଉଁମାନଙ୍କୁ କ'ଣ ଛାଡ଼ିବାକୁ ହେବ, ସେହି ବିଷୟ ଥିଲା କଳ୍ପନାର ଅତୀତ । କେହି ଜାଣି ନ ଥିଲେ କିମ୍ବା ଭାବି ବି ପାରୁ ନ ଥିଲେ ସେ କଥା । ମଣିଷର ଏଇ ବୃଥା ଆସ୍ଫାଳନକୁ ଶତ ଧିକ୍‌କାର କରି ହୁଏତ ତାଚ୍ଛଲ୍ୟର ହସ ହସି ସେହି କାଳ କହୁଥିଲା – ଆରେ ମୂର୍ଖ ମଣିଷ ! କେତେଦିନ ଆଉ ଧାଉଁଥିବୁ ତୁ ହିଂସା, ଦ୍ୱେଷ, ଲୋଭର ମୃଗତୃଷ୍ଣା ପଛରେ ? ଡେରି ହେଲେ ବି ଆଖି ଏବେ ଖୋଲ୍ ଭଲା । ଅମୃତତ୍ୱ ଚାଖି ନ ପାରିଲେ ବି ତାହାର ଛାପି-ଛାପିକିଆ ଛାଇଆଲୁଅ ଟିକିଏ ପାଇଯା' ଭଲା !

କିନ୍ତୁ ଅବୋଧ ମଣିଷ ବିଚରା ! ଆଖି କ'ଣ ତା'ର ଖୋଲୁଛି ?

ଜନ୍ମାନ୍ଧ ମହାରାଜ ଧୃତରାଷ୍ଟ୍ରଙ୍କ ଭଳି ସେ ମଧ୍ୟ ଜନ୍ମାନ୍ଧ । ଅମୃତତ୍ୱକୁ ଛାଡ଼ି ସେ ମଧ୍ୟ ମୃତ୍ୟୁର ବିଷକୁ ପିଇ ପିଇ ଚାଲିଛି ଆକଣ୍ଠ ! ଖାଲି ଦେଖେଇ ହେଉଛି କ'ଣ ନା ସେ ବୁଦ୍ଧିମାନ୍ । ସେ ପ୍ରଜ୍ଞାବାନ୍ । ଆଉ ବି ଅନେକ କିଛି । ହାୟ ରେ ଦୁର୍ଭାଗା ମଣିଷ ! କେବେ ହେବ ତା'ର ଜ୍ଞାନୋଦୟ ?

## ଏକାବନ

ଧାଉଁଥିବା ଦିନ, ମାସ ଓ ବର୍ଷ ପରସ୍ପରର ହାତ ଧରାଧରି ହୋଇ ଧାଇଁ ଚାଲିଥାନ୍ତି ଠିକ୍ ଖେଳ ପାଇଁ ଛୋଟ ଛୋଟ ପିଲାମାନଙ୍କ ଭଳି । ମଣିଷ ବି ଏଇ ସମୟ ସହିତ ତାଳ ରଖି ଧାଇଁ ଧାଇଁ ଚାଲିଥାଏ ତା'ର ଲୀଳା-ଖେଳା ଦେଖାଇ ଦେଖାଇ । ଖେଳୁଆଡ଼ ପିଲାମାନଙ୍କ ଭଳି କେତେବେଳେ ପଡ଼େ ତ ଆଉ କେତେବେଳେ ଉଠେ । ଏଇ ପଡ଼ିବା-ଉଠିବା ଦେଇ ତା'ର ଗତି ଚାଲିଥାଏ ଅବିରତ । କାରଣ ଗତି ହିଁ ଜୀବନ । ଗତିହୀନତା ମୃତ୍ୟୁ । ଏଇ ଗତିଶୀଳତା ମଧ୍ୟ ଦେଇ ବିତିଗଲା ଏକ ବର୍ଷ । ଏହା ଭିତରେ ଏତେ ବ୍ୟସ୍ତ ଥିଲି ଯେ ଏଇ ଏକ ବର୍ଷର ବ୍ୟବଧାନ ମୁହୂର୍ତ୍ତଟିଏ ଭଳି ଲାଗିଲା ମତେ ।

ଇତିମଧ୍ୟରେ ନୂତନ କରି ସ୍ୱାତନ୍ତ୍ର୍ୟ ପାଇଥିବା ଅଙ୍ଗରାଜ୍ୟକୁ ପ୍ରତିଷ୍ଠିତ କରାଇପାରିଛି ଏକ ସ୍ଥିର ଭିତ୍ତିଭୂମି ଉପରେ । ମୋର ଜନ୍ମସ୍ଥାନ ଚମ୍ପାପୁର ହିଁ ଏବେ ତାହାର ରାଜଧାନୀ ।

ରୂପରେଖ ତାହାର ବଦଳିଯାଇଛି ସଂପୂର୍ଣ୍ଣରୂପେ । ତାହା ଏବେ ଲୋକାରଣ୍ୟ ଓ ନାନା ପ୍ରକାର ସମୃଦ୍ଧିରେ ଭରପୂର । ନାନାଦି ପ୍ରଜାହିତକର କାର୍ଯ୍ୟମାନ ସଂପାଦନ କରିବାରେ ମନ ଦେଇଛି । ନୂଆ କରି ରାଜଭବନ ନିର୍ମିତ ଗଙ୍ଗାକୂଳରେ ଆଦିତ୍ୟ ମନ୍ଦିର ନିକଟରେ । ଅଧିକାଂଶ କୃଷିକ୍ଷେତ୍ର ଏବେ ପୟଃପ୍ରଣାଳୀଦ୍ୱାରା ସେଚିତ । ଶସ୍ୟ ଉତ୍ପାଦନ ବଢ଼ିଛି ଯଥେଷ୍ଟ ପରିମାଣରେ । ରାଜଧାନୀର ମୁଖ୍ୟ ରାଜଭଣ୍ଡାର ଓ ଅନ୍ୟାନ୍ୟ ସ୍ଥାନରେ ଥିବା ଶାଖା ରାଜଭଣ୍ଡାରମାନ ଏବେ ଧନ, ରତ୍ନ ଓ ଶସ୍ୟରେ ପରିପୂର୍ଣ୍ଣ । ଅନ୍ୟାନ୍ୟ ରାଜ୍ୟମାନଙ୍କରୁ ପ୍ରଜାମାନେ ଆସି ଅଙ୍ଗରାଜ୍ୟରେ ବସତିସ୍ଥାପନ କରିବାକୁ ଲାଗିଗଲେଣି । ବିଶେଷକରି ପୂର୍ବ ସୀମାନ୍ତରେ ଥିବା ମଗଧରାଜ୍ୟରୁ ଏଇ ସୁଅ ଛୁଟିଛି ପ୍ରବଳ ଭାବରେ । ସେଠାକାର ରାଜା ଜରାସନ୍ଧ । ସ୍ୱର୍ଗତ କଂସାସୁରର ଶ୍ୱଶୁର । ତାଙ୍କ ପ୍ରତାପରେ ସାରା ଆର୍ଯ୍ୟାବର୍ତ୍ତ ଥରହର । ତାଙ୍କ ଅତ୍ୟାଚାରରେ ପୀଡ଼ିତ ହୋଇ ପ୍ରଜାମାନେ ବହୁ ସଂଖ୍ୟାରେ ଚାଲିଆସୁଛନ୍ତି ପ୍ରଜାମାନେ ଆମ ରାଜ୍ୟକୁ । ସେଥିନେଇ ଭିତରେ ଭିତରେ ସେ ମୋ' ଉପରେ ରୁଷ୍ଟ । କିନ୍ତୁ ଏପର୍ଯ୍ୟନ୍ତ ଆମ ରାଜ୍ୟ ଉପରେ ଆକ୍ରମଣ କରିବାକୁ ସାହସ କରିପାରି ନାହାନ୍ତି । ବୋଧହୁଏ ମୋର ପୃଷ୍ଠପୋଷକ କୁରୁରାଜଶକ୍ତିକୁ ଭୟ । ତଥାପି ସମ୍ଭାବ୍ୟ ଆକ୍ରମଣର ସମ୍ମୁଖୀନ ହେବାପାଇଁ ପୂର୍ବ ସୀମାନ୍ତରେ ସର୍ବଦା ଆମ ସୈନ୍ୟବାହିନୀ ଅଛନ୍ତି ପ୍ରସ୍ତୁତ । ଅନେକ ଦୁର୍ଗର ନିର୍ମାଣ ଶେଷ । ଏବେ ବି ନିର୍ମାଣକାର୍ଯ୍ୟ ଚାଲିଛି ତ୍ୱରାନ୍ୱିତ ଗତିରେ ।

ଚମ୍ପାପୁର ଗ୍ରାମର ବହୁ ପୁରାତନ ଆଦିତ୍ୟ ମନ୍ଦିର ଜୀର୍ଣ୍ଣ ହୋଇଯାଇଥିଲା । ଜୀର୍ଣ୍ଣ-ସଂସ୍କାର ସଙ୍ଗେ ସଙ୍ଗେ ତାହାର କରାଯାଇଛି ଆମୂଳଚୂଳ ପରିବର୍ତ୍ତନ ଓ ପରିବର୍ଦ୍ଧନ । ତାହା ପାର୍ଶ୍ୱରେ ଏକ ସୁନ୍ଦର ଦାନମଣ୍ଡପ ନିର୍ମିତ । ମୁଁ ଯେତେଦିନ ରାଜଧାନୀ ଚମ୍ପାପୁରରେ ରହୁଛି, ସେତେଦିନ ପ୍ରତ୍ୟହ ଗଙ୍ଗାସ୍ନାନ ପରେ ଏହିଠାରେ ଠିଆହୋଇ ମୁକ୍ତ ହସ୍ତରେ ଦାନ କରୁଛି ଅର୍ଥୀମାନଙ୍କୁ । ସେହିପରି ଏକ ଆଦିତ୍ୟ ମନ୍ଦିର ଓ ଦାନମଣ୍ଡପ ମଧ୍ୟ କରାଇଛି ହସ୍ତିନାପୁରରେ ଠିକ୍ ଗଙ୍ଗାକୂଳରେ । ତାହାରି ପାର୍ଶ୍ୱରେ ହିଁ ମୋର ରାଜଭବନ ।

ଦୁର୍ଯ୍ୟୋଧନଙ୍କ ଅନୁରୋଧ ସତ୍ତ୍ୱେ ଏବେ ସବୁବେଳେ ରହିପାରୁ ନାହିଁ ହସ୍ତିନାପୁରରେ । କାରଣ ଚମ୍ପାନଗରୀରେ ମୋ' ପାଇଁ ରାଜକାର୍ଯ୍ୟର ଭାର ବଢ଼ିଉଠିଛି ଅନେକ ମାତ୍ରାରେ । ମାସକୁ ଅତି କମ୍‌ରେ ପାଞ୍ଚଦିନ କଟାଇବାକୁ ପଡୁଛି ଚମ୍ପାନଗରୀରେ ।

ଦିନକର କଥା । ସେତେବେଳେ ହସ୍ତିନାପୁରରେ ରହୁଥାଏ । ରାଜକାର୍ଯ୍ୟ ଉପଲକ୍ଷେ ଯିବା ପୂର୍ବରୁ ହଠାତ୍ କାହିଁକି ଇଚ୍ଛା ହେଲା ରାଣୀ ପଦ୍ମାଙ୍କୁ ଦେଖିବାକୁ । ହଠାତ୍ ମୁହାଁଇଲି ତାଙ୍କ କକ୍ଷଆଡ଼କୁ । କିନ୍ତୁ ସଂବାଦ ନ ଦେଇ ପଶିଗଲି କକ୍ଷ ମଧ୍ୟରେ । ପଦ୍ମା ସେତେବେଳେ ଥିଲେ ପ୍ରସାଧନରତା । ସୁବର୍ଣ୍ଣଖଚିତ ଦର୍ପଣରେ ଦେଖୁଥାନ୍ତି ମୁଖ । ଦାସୀ ଧୀରେ ଧୀରେ ଚଳାଉଥାଏ କଙ୍କତିକା । ଦର୍ପଣରେ ମୋର ପ୍ରତିବିମ୍ବ ଦେଖି ହଠାତ୍ ଚମକି ପଡ଼ିଲେ ସେ । ଦାସୀକୁ ଇଙ୍ଗିତ ଦେଲେ ଚାଲିଯିବା ପାଇଁ । ସେ ଚାଲିଗଲା ।

"ହଠାତ୍ ଏମିତି ଆସିଗଲେ ଯେ ଆର୍ଯ୍ୟପୁତ୍ର !" ମତେ ବସିବାକୁ ଆସନ ଦେଇ ଚକିତ ପ୍ରଶ୍ନ କଲେ ପଦ୍ମା । ସେ ମଧ୍ୟ ବସିଲେ ପାଖରେ ।

''ଗୋଟିଏ ସୁସଂବାଦ ରାଣୀ । ତୁମକୁ ନିଜେ ଶୁଣାଇବାପାଇଁ ଧାଇଁଆସିଲି । ହସି ହସି କହିଲି ।

''କି ସୁସଂବାଦ ଶୁଣେ ?'' ଚଟୁଳ ନୟନଯୁଗଳ ଥରାଇ ଥରାଇ ତାଙ୍କର ପ୍ରତିପ୍ରଶ୍ନ ।

''ତୁମେ ଏବେ ଜଣେ ସଖୀ ପାଇଯିବ ରାଜଭବନରେ ।''

''ଖୁବ୍ ଭଲ ହେବ । ଅନେକ ସମୟରେ ଏକୁଟିଆ ଏକୁଟିଆ ଲାଗୁଥିଲା । ଏବେ ଜଣେ ସଖୀଙ୍କୁ ପାଇଯିବି ।'' ତାଙ୍କ ସ୍ୱର ଆହତ ଅଭିମାନରେ ଜରଜର । ସେ ହୁଏତ ଭାବୁଥିଲେ ତାଙ୍କର କେହି ଜଣେ ପତ୍ନୀ ଆସିଯାଉଛନ୍ତି । ଅନ୍ତରର ଆଘାତକୁ ଗୋପନ କରି ଏଭଳି କଥା କହୁଥିଲେ ସେ । ବାହାରକୁ ପ୍ରକାଶ କରୁଥିଲେ ଆନନ୍ଦ । ଅଥଚ ଭିତରେ ଜଳି ମରୁଥିରେ ଈର୍ଷାରେ । ନାରୀ ଆଉ କ'ଣ କି ? ସେ ତ ଈର୍ଷାର ଏକ ସ୍ତୂପୀକୃତ ବିଗ୍ରହ । କେତେବେଳେ ଜଳିବ ଅଥବା ଜଳି ଜଳି ହସିବାର ଅଭିନୟ କରିବ ତାହା ତାକୁ ହିଁ ଜଣା ।

ବଡ଼ କୌତୁକମୟ ଲାଗୁଥିଲା ମତେ ଏ ପରିସ୍ଥିତି । ଅତ୍ୟନ୍ତ ବିନୋଦପୂର୍ଣ୍ଣ ବି । ଜଣେ ନାରୀକୁ ତା ପ୍ରଣୟର ଭାଗୀଦାର ହେବାକୁ ଯାଉଥିବା ଆଉ ଜଣେ ନାରୀ କଥା ଉଲ୍ଲେଖ କରି ତା' ମନରେ ଈର୍ଷାଭାବ ଜନ୍ମାଇବାଠାରୁ ଆଉ ଅଧିକ ବିନୋଦପୂର୍ଣ୍ଣ କ'ଣ ବା ହୋଇପାରେ ?

କିଛି ସମୟ ପରେ ସେ ପୁଣି ପଚାରିଲେ, ''କହନ୍ତୁ ତ ଆର୍ଯ୍ୟପୁତ୍ର, କିଏ ସେହି ଭାଗ୍ୟବତୀ ନାରୀ ଯେ ଆପଣଙ୍କ ଦ୍ୱିତୀୟା ହେବାକୁ ଯାଉଛି ?'' କଣ୍ଠସ୍ୱରରେ ଅସହିଷ୍ଣୁତାର ଅଭିପ୍ରକାଶ ।

''ଦ୍ୱିତୀୟା ଆଉ ଆସିବେ କ'ଣ ? ସେ ତ ଆସିଯାଇଛନ୍ତି ।''

''ଆସିଯାଇଛନ୍ତି ମାନେ ?'' ଚକିତା-ବିସ୍ମିତା ସେ ।

''ହଁ, ଆସି ଯାଇଛନ୍ତି ଦୀର୍ଘଦିନ ହେଲା ।'' ମୁଁ ଦର ଦର ହସୁଥାଏ ସେମିତି ଏବଂ ଉପଭୋଗ କରୁଥାଏ ଏଇ ବିନୋଦପୂର୍ଣ୍ଣ ପରିସ୍ଥିତିକୁ ପୂର୍ଣ୍ଣ ପ୍ରାଣରେ ।

''ସେ କିଏ ?'' ବିସ୍ଫାରିତ ନୟନରେ ତାଙ୍କର ଆଶ୍ଚର୍ଯ୍ୟଭରା ପ୍ରଶ୍ନ । ସନ୍ଦେହ ଆହୁରି ଘନୀଭୂତ । ତାଙ୍କ ଅଜଣାରେ ଯେ ମୋର ଜଣେ ଦ୍ୱିତୀୟା ପତ୍ନୀ ଅଥବା ପ୍ରେମିକା କିଏ ଅଛନ୍ତି ଏଇ ଧାରଣା ବିଚଳିତ କରୁଥାଏ ତାଙ୍କୁ ।

''ସେଇ ଦ୍ୱିତୀୟାଜଣକ ଏଇଠି ଠିଆ ହୋଇଛନ୍ତି ମୋ' ଆଗରେ ।'' ହସି ହସି କହିଲି ।

''ତା' ହେଲେ ପ୍ରଥମା ଜଣକ ପୁଣି କିଏ ?'' କାନ୍ଦ କାନ୍ଦ ହୋଇଉଠୁଥିଲେ ସେ । ଆଖି ଲୁହରେ ଛଳ ଛଳ । ଆଉ ଟିକକ ବିଳମ୍ବରେ ଫାଟିପଡ଼ିବେ ହୁଏତ ବିକଳ ବିଳାପରେ !

ହାୟ ରେ ସରଳା ନାରୀ ! ତା'କୁ ବୁଝିବାଟା କଷ୍ଟକର । ଅଥଚ ବୁଝାଇବାଟା ଭାରି ସହଜ । ପଦେ ଦି' ପଦ ଚାଟୁ କଥା ଅଥବା ଆଶ୍ୱାସନାଭରା କଥା । ସେତିକିରେ ତା'ର କ୍ରୋଧ ଅଭିମାନର ପାହାଡ଼ ହୋଇଯାଏ ଚୂର୍ଣ୍ଣ ବିଚୂର୍ଣ୍ଣ !

''ସେଇ ପ୍ରଥମାଙ୍କୁ ମୁଁ ବିବାହ କରିସାରିଛି ବହୁଦିନ ତଳେ । ବିଦ୍ୟାୟତନରେ ଶିକ୍ଷା ପାଇବା ଅବସରରେ । ତାହା ଧନୁର୍ବିଦ୍ୟା । ତାହା ସହିତ ମୋର ଚିରନ୍ତନ ବୈବାହିକ ସଂପର୍କ ।'' ତାଙ୍କ ମନର ସନ୍ଦେହକୁ ମୋଚନ କରିଦେଇ କହିଲି । ସେ ଆଶ୍ୱସ୍ତା ହେଲେ । କହିଲେ, ''ଧେତ୍ ! ଏଇ କଥାଟାକୁ ଏତେ ବଙ୍କେଇ-ବଙ୍କେଇ କହିଲେ ଆର୍ଯ୍ୟପୁତ୍ର ! ମୁଁ ତ ସନ୍ଦେହରେ ପଡ଼ିଯାଇଥିଲି ।''

''କାରଣ ତୁମେ ବାସରରାତ୍ରିର ପ୍ରଦୀପ ନିକଟରେ କରିଥିବା ଶପଥଟିକୁ ଭୁଲି ଯାଇଥିଲ ।'' ମୋ' କଣ୍ଠସ୍ୱର ଥିଲା କିଛିଟା ଗମ୍ଭୀର । ଆମେ ଦୁହେଁ ପତିପତ୍ନୀ ଭାବରେ ପରସ୍ପର ପ୍ରତି ବିଶ୍ୱାସ ଅକ୍ଷୁଣ୍ଣ ରଖିବୁ ବୋଲି ଯେଉଁ ପ୍ରତିଶ୍ରୁତି ପରସ୍ପରକୁ ଦେଇଥିଲୁ ତାହାକୁ ଯେ ସେ ଭୁଲିଯାଇଛନ୍ତି ଏହି ବିଷୟ ସୂଚାଇଦେଲି ତାଙ୍କୁ । ତଥାପି ପରିସ୍ଥିତିକୁ ହାଲୁକା ରଖିବାପାଇଁ ବିନୋଦପୂର୍ଣ୍ଣ ହସ ହସୁଥିଲି ।

ଜିଭଟାକୁ କାଢ଼ିଦେଇ ତାହାକୁ ଦନ୍ତରେ ଚାପି ରଖି ଅପରାଧିନୀ ଭାବରେ ସେ କହିଲେ, ''ମୋର ଭୁଲ ହୋଇଗଲା ଆର୍ଯ୍ୟପୁତ୍ର ।''

ଏତିକିରେ ହସିଉଠିଲି ମୁଁ ଠୋ ଠୋ କରି । ଆଉ ସେ ମଧ୍ୟ । କିଛି ସମୟ ପରେ ସେ ପୁଣି ପଚାରିଲେ, ''ଆଚ୍ଛା, ଆର୍ଯ୍ୟପୁତ୍ର ! କହୁଥିଲେ ପରା ଆମ ରାଜଭବନକୁ ମୋର ଜଣେ ସଖୀ ଆସିବେ ବୋଲି । ସେ ପୁଣି କିଏ ?''

''ଆମ ରାଜଭବନକୁ ନୁହେଁ ରାଣୀ ।''

''ଆଉ ?''

''କୁରୁରାଜଭବନକୁ । ମିତ୍ର ଦୁର୍ଯ୍ୟୋଧନ ବିବାହ କରୁଛନ୍ତି । ତାଙ୍କର ବଧୂ ଆସିବେ ରାଜଭବନକୁ । ସେ ତୁମର ସଖୀ ହେବେ ନାହିଁ ?''

''ନିଶ୍ଚୟ । ନିଶ୍ଚୟ । ସେ ନିଶ୍ଚୟ ହେବେ ମୋର ପ୍ରିୟସଖୀ । ଅନେକ ସମୟ ମୋର କଟିଯିବ ତାଙ୍କ ସାଥିରେ ସୁଖାଳାପ କରି । ପାଣ୍ଡବବଧୂ କୃଷ୍ଣା ଆସିଲେ ଯେ ଆସିଲା ପରି ଲାଗିଲା ନାହିଁ । କେତୋଟି ମୁହୂର୍ତ୍ତ ମାତ୍ର ରହିଲେ ରାଜଭବନରେ । କିଛି ଦିନ ବିଦୁରଭବନରେ ରହି ଚାଲିଗଲେ ଖାଣ୍ଡବପ୍ରସ୍ଥକୁ । ଆଚ୍ଛା, ରାଜବଧୂ ପୁଣି କିଏ ?''

''ଭାନୁମତୀ । କଳିଙ୍ଗରାଜଙ୍କ କନ୍ୟା ।''

''ବିବାହ କେବେ ?''

''ଆଉ ପନ୍ଦର ଦିନ ପରେ ମାତ୍ର । ଆଜି ହିଁ ତିଥି, ବାର, ନକ୍ଷତ୍ର ସବୁ ଠିକ୍ ହୋଇଯାଇଛି । ଏଇଟା କ'ଣ ତୁମପାଇଁ ସୁଖବର ନୁହେଁ ରାଣୀ ?''

''ଏ କଥା ଆଉ ପଚାରିବାକୁ ଅଛି ଆର୍ଯ୍ୟପୁତ୍ର ? ଏହା ତ ଆମ ସମସ୍ତଙ୍କ ପାଇଁ ଅତି ଉତ୍ତମ ଖବର ।'' ଖୁବ୍ ପ୍ରସନ୍ନ ମୁଖରେ କହିଲେ ସେ ।

ଲକ୍ଷ୍ୟ କଲି, ଦୈନନ୍ଦିନ ଦେହଚର୍ଯ୍ୟା ମଝିରେ ଅଟକିଯାଇ କେମିତି ଗୋଟାଏ ଅସ୍ୱସ୍ତିକର ବୋଧ କରୁଛନ୍ତି ସେ । ଆବୃତଯୋଗ୍ୟ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ଯଥାରୀତି କରିପାରୁ ନ ଥାନ୍ତି ଆବୃତ । ଭାରି ଅପ୍ରସ୍ତୁତ । ଆଉ ଅଧିକ କଷ୍ଟ ତାଙ୍କୁ ନ ଦେଇ ଶୀଘ୍ର ଶୀଘ୍ର ବାହାରି ଆସିଲି ତାଙ୍କ କକ୍ଷରୁ ।

## ବାଉନ

ପରୀକ୍ଷା । ପରୀକ୍ଷା ଓ ପରୀକ୍ଷା । ଜୀବନଟା ଗୋଟାଏ ଯେମିତି ପରୀକ୍ଷାର ଏକ ମଞ୍ଜୁଳ ଫୁଲହାର । ଏଇ ହାରରେ ବି ବେଳେବେଳେ କଣ୍ଟା ଥାଏ । ଆଉ ଥାଏ ବି ଲୁଚିଛପି ରହିଥିବା କୌଣସି ବିଷାକ୍ତ ମକ୍ଷିକାର ଦଂଶନଜ୍ୱାଳା । ତାହା ସତ୍ତ୍ୱେ ହାରର ମଞ୍ଜୁଳତା କିନ୍ତୁ ନଷ୍ଟ ହୋଇ ନ ଥାଏ । ବରଂ ତାହା ଉଜଳି ଉଠିଥାଏ ଆହୁରି ଅଧିକ ତେଜୋମୟ ରୂପ ଧରି । ଅଗ୍ନିଦଗ୍ଧ ସ୍ୱର୍ଣ୍ଣଭୂଷଣ ଯେମିତି । ମୋ' ଜୀବନରେ ସେମିତି ଅନେକ କିଛି ପରୀକ୍ଷା ଘଟିଯାଇଛି । ଖାଲି ତ' ପରୀକ୍ଷା ନୁହେଁ । ପରୀକ୍ଷାର ଗୋଟିଏ ଗୋଟିଏ ରଣକ୍ଷେତ୍ର । ପଛଘୁଞ୍ଚା ଦେଇ ନାହିଁ କେଉଁଥିରେ । ସବୁର ହୋଇଛି ସମ୍ମୁଖୀନ । କେଉଁଥିରେ ଜିତିଛି ତ କେଉଁଥିରେ ହାରିଛି । ଏଇ ହାରିବାଟା ହିଁ ମୋ' ପକ୍ଷରେ ଭାବୀ ବିଜୟର ସମ୍ଭାବନାକୁ କରାଇଛି ଉଜ୍ଜ୍ୱଳତର । ପରବର୍ତ୍ତୀ ପରୀକ୍ଷାପାଇଁ ଯୋଗାଇଛି ଯଥେଷ୍ଟ ଆତ୍ମବଳ ଓ ସାହସ ।

ସେହିପରି ଗୋଟିଏ ବିଚିତ୍ର ପରୀକ୍ଷାର ସମ୍ମୁଖୀନ ହୋଇଥିଲି ଠିକ୍ ଦୁର୍ଯ୍ୟୋଧନଙ୍କ ବିବାହକୁ ନେଇ ପଦ୍ମାଙ୍କ ସାଥିରେ ବିନୋଦ କରିବାର ପରଦିନ ।

ସମୟ ସକାଳ । ସୂର୍ଯ୍ୟ ଏଇ ମାତ୍ର ଉଇଁଆସିଛନ୍ତି । ଆଷାଢ଼-ବାରିଦର ଆବରଣ କିଛି କ୍ଷଣ ପାଇଁ ଏବେ ଅପସୃତ । ଗଙ୍ଗାରେ ସ୍ନାନ କରି ଫେରିଆସିଛି ଦାନମଣ୍ଡପକୁ । ପ୍ରାର୍ଥୀମାନଙ୍କ ଲମ୍ବା ଧାଡ଼ି ଲାଗିରହିଛି ଦାନ ଗ୍ରହଣ କରିବାପାଇଁ । ବ୍ରାହ୍ମଣମାନଙ୍କ ସହିତ ଅନ୍ୟାନ୍ୟ ବର୍ଣ୍ଣଗୁଡ଼ିକର ପ୍ରାର୍ଥୀମାନେ ସମବେତ । ଅବଶ୍ୟ କ୍ଷତ୍ରିୟ କେହି ନ ଥାନ୍ତି । କାରଣ ଭିକ୍ଷାଗ୍ରହଣ କ୍ଷତ୍ରିୟମାନଙ୍କ ପାଇଁ ନିଷିଦ୍ଧ । ଜଣଙ୍କ ପରେ ଜଣେ କରି ଦାନ ଗ୍ରହଣ କରୁଛନ୍ତି ନିଜ ପ୍ରାର୍ଥନା ଅନୁସାରେ । ବହୁ ଦୂର ଦୂରାନ୍ତରୁ ଆସିଛନ୍ତି । ସେମାନଙ୍କ ଧାରଣା ଯେ ମୋ' ପାଖରୁ କୁଆଡ଼େ କେହି ଖାଲି ହାତରେ ଫେରନ୍ତି ନାହିଁ । ସମସ୍ତଙ୍କ ଇଚ୍ଛା ହୁଏ ପୂର୍ଣ୍ଣ । ସେଥିପାଇଁ ମହାଦାନୀ ବୋଲି ମୋ' ନାଁରେ ପିଟନ୍ତି ଡେଙ୍ଗୁରା । ଶୁଣିବାକୁ ଭାରି ଲାଜ ଲାଗେ ମତେ । ଆତ୍ମପ୍ରଶଂସା କରିବା ଯେତିକି ଲାଜର କଥା, ତାହା ଶୁଣି ଆନନ୍ଦ ଓ ଅଭିମାନରେ ଫୁଲିଉଠିବା ବି ସେତିକି କିମ୍ବା ତାହାଠାରୁ ଅଧିକ ଲାଜର କଥା । ମତେ ଲାଗେ, ମୁଁ ଯେମିତି ଚେଷ୍ଟା କରି କିମ୍ବା ଇଚ୍ଛା କରି ଦାନ କରୁ ନାହିଁ । ଆପେ ଆପେ ଦେଇହୋଇଯାଉଛି । ତାହା ହୋଇଉଠିଛି ମୋ'ପାଇଁ ପ୍ରବୃତ୍ତିଗତ ଠିକ୍ ଖାଇବା, ପିଇବା, ଶୋଇବା ଆଦି ଭଳି । ଯେଉଁ ଆଦ୍ୟଗୁରୁ ଆଦିତ୍ୟଦେବଙ୍କୁ ସାକ୍ଷୀ ରଖି ଏଇ ଦାନ ଦେଇଆସୁଛି ତାଙ୍କୁ ବାରମ୍ବାର ପ୍ରାର୍ଥନା କରୁଛି, ଯେମିତି ଏଭଳି ଦାନ ଦେବାଲାଗି ମୋ' ଭଣ୍ଡାର ପୂର୍ଣ୍ଣ ରହିଥାଉ ସଦା-ସର୍ବଦା । ମନ ବି ମୋର ରହିଥାଉ ଚିର ଉଦାର । ଅପରର ଦୁଃଖ ଦେଖି ତା' ମୁହଁରେ ହସର ପାଖୁଡ଼ା କେତୋଟିକୁ ବିକଶିତ କରାଇବା ପାଇଁ ଯେମିତି ହୋଇଉଠୁଥାଏଁ ଚିର ଆଗ୍ରହୀ । ହେ ଗୁରୁଦେବ ! ହେ ପ୍ରଭୋ ! ଏଇ ଆଶୀର୍ବାଦ ମତେ ଦିଅନ୍ତୁ ।

ହଁ, ସେ ଦିନର ଦାନ କଥା କହୁଥିଲି ପରା । ଏବେ ଶୁଣନ୍ତୁ । ଦାନକର୍ମ ଚାଲିଛି । ଅଳ୍ପ କେତେ ଜଣ ମାତ୍ର ଦାନ ନେଇସାରିଛନ୍ତି । ଲମ୍ବା ଧାଡ଼ି ସରିବାକୁ ବେଶ୍ କିଛି ଡେରି ହେବ ।

ଆସିଲେ ଜଣେ ବୃଦ୍ଧ ବ୍ରାହ୍ମଣ । ଯଷ୍ଟିଭରା ଦେଇ ଆସୁଥାନ୍ତି ଥରି ଥରି । ଲୋଳିତ ଚର୍ମ । ପଳିତ ଦଣ୍ଡ । ମୁଣ୍ଡିତ ମସ୍ତକର ପୁଚ୍ଛଦେଶରେ ଶୋଭିତ ଶୁକ୍ଳ କେଶଗୁଚ୍ଛ । ଦେହର ରଙ୍ଗ ଶ୍ୟାମଳ । ପଡ଼ିଉଠି ଧାଇଁଥାନ୍ତି । ପ୍ରାର୍ଥୀମାନଙ୍କ ଲମ୍ବା ଧାଡ଼ିଟିର ଶେଷରେ ଆସି ଠିଆ ହେଲେ । ସୂର୍ଯ୍ୟଙ୍କ ତେଜ ଧୀରେ ଧୀରେ ବଢ଼ି ଉଠୁଥାଏ । ଲଣ୍ଡିତ ମସ୍ତକକୁ ଖୁବ୍ କଷ୍ଟ ଦେଉଥାଏ ବୋଧହୁଏ । ପତ୍ରନିର୍ମିତ ଆତପତ୍ରଟିକୁ ସୂର୍ଯ୍ୟଙ୍କ ଆଡ଼କୁ ଢାଳିଦେଇଥାନ୍ତି । ଥରିଲା ଥରିଲା ଦେହରେ ଅପେକ୍ଷା କରିଥାନ୍ତି ତାଙ୍କ ପାଳିକୁ । କପାଳରେ ଭାଙ୍ଗ । ସମ୍ଭାବ୍ୟ ବିଳମ୍ବ ଲାଗି ଚିନ୍ତିତ ବୋଧହୁଏ । ବିଚରା ଦରିଦ୍ର ବୃଦ୍ଧ ବ୍ରାହ୍ମଣ ! ମୋର ଭାରି ଦୟା ହେଲା । ପ୍ରାର୍ଥୀମାନଙ୍କୁ ଅନୁରୋଧ କଲି ତାଙ୍କୁ ଆଗକୁ ବଢ଼ି ଦାନ ଗ୍ରହଣର ଅନୁମତି ଦେବାପାଇଁ । ତାଙ୍କ ଅବସ୍ଥା ଦେଖି ରାଜି ହୋଇଗଲେ ସମସ୍ତେ । ତାଙ୍କୁ ଆଗକୁ ବଢ଼ିବାରେ ସାହାଯ୍ୟ କରିବାପାଇଁ ପଠାଇଲି ଜଣେ ରାଜକର୍ମଚାରୀଙ୍କୁ । ସେ ତାଙ୍କ ହାତ ଧରି ଯଥାସ୍ଥାନରେ ଆଣି ଠିଆ କରାଇଦେଲେ ।

ଆଦର-ସମ୍ମାନ ସହିତ ପଚାରିଲି, ''ହେ ବ୍ରାହ୍ମଣବର ! କହନ୍ତୁ ଆପଣ କ'ଣ ଚାହାନ୍ତି ଏ ଲୋକସେବକ କର୍ଣ୍ଣଠାରୁ ?''

''ଭାବିଚିନ୍ତି ଦେଖ । ଦେଇପାରିବ ତ ?'' ତାଙ୍କ ଦନ୍ତହୀନ ମୁଖରେ ରହସ୍ୟମୟ ହସର ଝଲକ । ତାହା ମୁଖକୁ ବିକୃତ ନ କରି ବରଂ ବଢ଼ାଉଥାଏ ବାର୍ଦ୍ଧକ୍ୟର ଧୀର ସ୍ଥିର ସୌନ୍ଦର୍ଯ୍ୟକୁ । ତାହାର ସୌମ୍ୟତା ଓ ଗାମ୍ଭୀର୍ଯ୍ୟକୁ । ଜୀବନ-ସଙ୍ଗୀତର ଶେଷ ପଦଟିର ମୂର୍ଚ୍ଛନା ଯେମିତି !

''କାହିଁକି ପାରିବି ନାହିଁ ପ୍ରଭୋ ? ଆପଣଙ୍କ ଆଶୀର୍ବାଦରୁ ଏ ପର୍ଯ୍ୟନ୍ତ ସମସ୍ତ ପ୍ରାର୍ଥୀଙ୍କ ପ୍ରାର୍ଥନା ପୂରଣ କରିଛି ଏଇ କର୍ଣ୍ଣ । କଥା ଦେଉଛି, ଆଜି ମଧ୍ୟ ତାହା ପୂରଣ କରିବ ସେ । ବିନା ଦ୍ୱିଧାରେ ପ୍ରକାଶ କରନ୍ତୁ ଆପଣଙ୍କ ଇଚ୍ଛା ।'' ବିନୟର ସହିତ କହିଲି । ବାଣୀରେ ମୋର ଦାନ ଦେବାର ପ୍ରବଳ ଆଗ୍ରହ । ଦାନୀ ହେବାର ଅଭିମାନ କିନ୍ତୁ ନୁହେଁ ।

''ଯାହା ମାଗିବି ତାହା ଅବଶ୍ୟ ଦୁର୍ଲଭ । ଦେଇପାରିବ ?''

''ମୋ' ରାଜଭବନ ଅନେକ ଦୁର୍ଲଭ ଧନରତ୍ନରେ ପରିପୂର୍ଣ୍ଣ । ଯାହା ମାଗିବେ, ତାହା ଦେବି । ବିନା ସଂକୋଚରେ କହନ୍ତୁ କ'ଣ ଚାହାନ୍ତି ?''

''ମୋର ଧନରତ୍ନ ଲୋଡ଼ା ନାହିଁ । ଶୁଷ୍କ ଚନ୍ଦନକାଷ୍ଠର ଯଜ୍ଞସମିଧ ଲୋଡ଼ା । ଏଇ ବର୍ତ୍ତମାନ ଦେଇପାରିବ ?''

''କାହିଁକି ନୁହେଁ ? ନିଶ୍ଚୟ ଦେବି ।'' ଆବେଗଭରା କଣ୍ଠରେ ଜଣାଇଲି ସ୍ୱୀକୃତି ।

ଆଷାଢ଼ ମାସ । ଏଇ ମାତ୍ର ବର୍ଷା ବନ୍ଦ ହୋଇଛି । ତାହା ପୂର୍ବରୁ ବର୍ଷା ହେଉଥିଲା ମୂଷଳ ଧାରାରେ । ସମସ୍ତ କାଷ୍ଠ ଆର୍ଦ୍ର । ଏଭଳି ସମୟରେ ଶୁଷ୍କ ଚନ୍ଦନକାଷ୍ଠ ମିଳିବ କେମିତି ? ପୁଣି ରାଜଭବନରେ ? ଦାନ ଦେବା ନିମିତ୍ତ ଥିବା ମାନସିକ ବ୍ୟଗ୍ରତା ହେତୁ ଭାବିପାରି ନ ଥିଲି ଏତେ କଥା । ଦାନକାର୍ଯ୍ୟ ଉପଲକ୍ଷେ ନିଯୁକ୍ତ ଥିବା ଅମାତ୍ୟଜଣକ ଚେତାଇଦେଲେ ମତେ । ଚିନ୍ତା କଲି କ୍ଷଣ କାଳ । ଦାନ ଦେବାର ଉପାୟ ଖୋଜିବା ସହିତ ଦାନର ବିଚିତ୍ରତା କଥା ଭାବୁଥାଏ । କିଏ ଏହି ଅଦ୍ଭୁତ ପ୍ରାର୍ଥୀ ଆଜି ମାଗୁଛନ୍ତି ମାତ୍ର ଶୁଷ୍କ

ଚନ୍ଦନକାଷ୍ଠର ସମିଧ ବିଡ଼ାଟିର ଦାନ ? ପୁଣି ରାଜଗୃହରୁ ? ଆଉ ପୁଣି ବୃଷ୍ଟିମୁଖର ଆଷାଢ଼ ମାସରେ ? କିଛି ପାରୁ ନ ଥାଏ ସ୍ଥିର କରି । ସହଜରେ ଜୁଟୁ ନ ଥାଏ ଉପାୟ ।

ଏଇ ମାନସିକ ଚିନ୍ତା ଓ ଦ୍ୱିଧା ମଧ୍ୟରେ ବିତିଗଲା କେତୋଟି ମୁହୂର୍ତ୍ତ । ମୋର ନୀରବତା ଓ ଅଚଳାବସ୍ଥା ଦେଖି ବୃଦ୍ଧ ବ୍ରାହ୍ମଣ କହିଲେ, ''ଯଦି ଏଭଳି ଦାନ ଅଙ୍ଗରାଜ ଦେଇ ନ ପାରିବେ ତା'ହେଲେ ମୁଁ ଫେରିଯାଉଛି ।''

ତାଙ୍କୁ ବାରଣ କରି କହିଲି ଆକୁତିଭରା ସ୍ୱରରେ, ''ହେ ବ୍ରାହ୍ମଣଦେବତା ! ରହନ୍ତୁ । କ୍ଷଣେ ମାତ୍ର ରହନ୍ତୁ । ଫେରିଯାଆନ୍ତୁ ନାହିଁ । ଏଇ ସଙ୍ଗେ ସଙ୍ଗେ ପୂରଣ କରୁଛି ଆପଣଙ୍କ ମନସ୍କାମନା ।'' ଏହା କହି ଝଡ଼ବେଗରେ ଚାଲିଗଲି ରାଜଭବନକୁ ।

ହଠାତ୍ ମୋ' କକ୍ଷର ଦ୍ୱାରଦେଶରେ ଗୁରୁ ଗୁରୁ କୁଠାରାଘାତ । ତାହାର ଦ୍ୱାରଟି ନିର୍ମିତ ଚନ୍ଦନକାଷ୍ଠରେ । ତାହାଛଡ଼ା ରାଜଭବନରେ ଆଉ କେଉଁଠି ନ ଥିଲା ଶୁଷ୍କ ଚନ୍ଦନକାଷ୍ଠ । ତାହାକୁ ନିଜ ହସ୍ତରେ କାଟିଲି ଖଣ୍ଡ ଖଣ୍ଡ କରି । ପରେ ସମିଧ ଆକୃତି କରି ସେହିପରି ଝଡ଼ବେଗରେ ଚାଲିଆସିଲି ଦାନମଣ୍ଡପକୁ ସମିଧ ବିଡ଼ାଟିକୁ ଧରି । ବୃଦ୍ଧ ବ୍ରାହ୍ମଣସମେତ ଅବଶିଷ୍ଟ ପ୍ରାର୍ଥୀଗଣ ଚାହିଁ ରହିଛନ୍ତି ଉଦ୍‌ବେଗଭରା ମନ ନେଇ । ସମିଧ ବିଡ଼ାଟି ବ୍ରାହ୍ମଣଙ୍କ ହସ୍ତରେ ଅର୍ପଣ କରି ବିନୟଭରା ସ୍ୱରରେ କହିଲି, ''ନିଅନ୍ତୁ ବ୍ରାହ୍ମଣବର ଆପଣଙ୍କ ଈପ୍ସିତ ଦାନ । ଗ୍ରହଣ କରି ମତେ ଧନ୍ୟ କରାନ୍ତୁ ।''

''ସାଧୁ, ସାଧୁ ଅଙ୍ଗରାଜ କର୍ଣ୍ଣ ।'' ମତେ ସାଧୁବାଦ ଦେଉଥିବା ଅବସରରେ ଗ୍ରହଣ କଲେ ସେ ସମିଧଦାନ । ଦାନ ଯେମିତି ବିଚିତ୍ର, ପରିସ୍ଥିତି ବି ଅନୁରୂପ ଭାବରେ କୌତୁକାବହ । ସମବେତ ପ୍ରାର୍ଥୀଗଣ ନିର୍ବାକ୍-ନିଷ୍ପନ୍ଦ । ମୋର ମଧ୍ୟ ବିସ୍ମୟର ସୀମା ନାହିଁ । କ'ଣ ଗୋଟାଏ ଭାବିବାପାଇଁ ମୁହୂର୍ତ୍ତକଲାଗି ବନ୍ଦ ହୋଇଗଲା ମୋ' ଆଖି । ଆଖି ଖୋଲିଲା ପରେ ଦେଖିଲି ଆହୁରି ଅଧିକ ଚମତ୍କାର ଓ ଅଭାବନୀୟ ଦୃଶ୍ୟ । ବୃଦ୍ଧ ବ୍ରାହ୍ମଣ ଜଣକ ଚାଲିଯାଇଛନ୍ତି ବହୁତ ଦୂରକୁ । ଧୀରେ ଧୀରେ ଗତି ତାଙ୍କର ବଢ଼ିଉଠୁଛି । ଏଣିକି ଜଣା ପଡୁ ନାହାନ୍ତି ବୃଦ୍ଧ ବୋଲି । ଯଷ୍ଟିହୀନ ହୋଇ ଚାଲୁଛନ୍ତି ସିଧା-ସଳଖ । ଗତି ଯୁବକର ଗତି ଭଳି ତୀବ୍ର । ହଠାତ୍ ବୃକ୍ଷ ଅନ୍ତରାଳରୁ ବାହାରିଲା ଏକ ରଥ । ତହିଁରେ ବସି ସେ ଚାଲିଗଲେ । ଗଲାବେଳକୁ ମୋ' ଆଡ଼କୁ ଥରେ ମାତ୍ର ଚାହିଁଦେଲେ ରହସ୍ୟମୟ ହସ ହସି । ଜାଣିଲି, ସେ ଆଉ କେହି ନୁହନ୍ତି । ଦ୍ୱାରିକାଧିପତି କୃଷ୍ଣ । ଜାଣିପାରିଲି ନାହିଁ ସେ କାହିଁକି ଆସିଥିଲେ ? ପୁଣି ସାମାନ୍ୟ ସମିଧଦାନଟିଏ ନେଇ କାହିଁକି ବା ଚାଲିଗଲେ ? ଶୁଣିଛି ସେ କୁଆଡ଼େ ଭଗବାନ୍‌ଙ୍କ ଅବତାର । ବ୍ୟାସଦେବଙ୍କର ତ ଧାରଣା, ସେ ଅବତାର ନୁହନ୍ତି, ଅବତାରୀ । ସ୍ୱୟଂ ଭଗବାନ୍ । ପିତାମହ ଭୀଷ୍ମଙ୍କର ବି ସେହି ମତ । ମନରେ ମୋର ବାରମ୍ବାର ପ୍ରଶ୍ନ – ସେ କ'ଣ ମୋ' ଦାନର ମହତ୍ତ୍ୱ ପରୀକ୍ଷା କରିବାପାଇଁ ଆସିଥିଲେ ? କିନ୍ତୁ କିଛି ହେଲେ ସମାଧାନ ଜୁଟୁ ନ ଥିଲା ମନକୁ ।

ଏହିଭଳି ଅନ୍ୟମନସ୍କତା ମଧ୍ୟରେ କୌଣସିମତେ ମନକୁ ସ୍ଥିର ରଖି ଦାନକର୍ମ ଶେଷ କରି ଫେରିଲି ରାଜଭବନକୁ ।

ଆଉ ଏକ ବିଚିତ୍ର ଦୃଶ୍ୟ ସେଠାରେ ଅପେକ୍ଷା କରି ରହିଥିଲା ମୋ'ପାଇଁ । ଦେଖିଲି, ମୋ' ଗୃହର ଚନ୍ଦନକାଷ୍ଠର କବାଟଟି ରହିଛି ପୂର୍ବଭଳି ଅକ୍ଷୁଣ୍ଣ । ବରଂ ତାହାର ବାସନା ଚହଟିଉଠୁଛି ଆହୁରି ଅଧିକ ମହ ମହ ହୋଇ । ଅତି ମାତ୍ରାରେ ଚକିତ-ବିସ୍ମିତ ମୁଁ । ହଠାତ୍ ବିଶ୍ୱାସ କରିପାରିଲି ନାହିଁ ଏଇ ଅଭାବନୀୟ ଦୃଶ୍ୟକୁ । ବାରମ୍ବାର ଆଖି ମଳି ଚାହିଁଲି । କବାଟକୁ ଦୃଢ଼ ଭାବରେ ସ୍ପର୍ଶ କଲି । ତାହା ପରେ ଯାଇ ହେଲା ବିଶ୍ୱାସ ।

''ବଡ଼ ବିଚିତ୍ର ଏ କୃଷ୍ଣ ! ଅଲୌକିକ ଯାଙ୍କ ଶକ୍ତି !'' ସ୍ୱଗତୋକ୍ତି କଲି ପୁଲକଜର୍ଜର ଭାବରେ । କୃଷ୍ଣଙ୍କ ସଂପର୍କରେ ଯେଉଁ ଧାରଣା ମାତୁଳ ଶକୁନି ମୋ' ମୁଣ୍ଡରେ ପୂରାଇଥିଲେ ତାହା ଛାଏଁ ଛାଏଁ ହୋଇଗଲା ଅପସାରିତ ଉଷାଲୋକରେ ନିଶୀଥ ଅନ୍ଧକାର ଅପସରି ଗଲା ଭଳି । କୃଷ୍ଣ ଯେ ସାଧାରଣ ଲୋକ ନୁହନ୍ତି, ଏ ଧାରଣା ମୋର ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା ।

## ତେପନ

ସମୟର ସୁପର୍ଣ୍ଣଟି ଡେଣା ଝାଡ଼ି ଝାଡ଼ି ଉଡ଼ିଯାଉଥିବା ଅବସରରେ ପନ୍ଦରଟି ଦିନ କେମିତି ଯେ ଚାଲିଗଲା, ଆଦୌ ଜାଣିପାରି ନ ଥିଲି । ଲାଗୁଥିଲା ପନ୍ଦରଟି ମୁହୂର୍ତ୍ତ ଭଳି ।

ମିତ୍ର ଦୁର୍ଯ୍ୟୋଧନଙ୍କ କଳିଙ୍ଗରାଜକୁମାରୀ ଭାନୁମତୀଙ୍କ ସହିତ ବିବାହ । ଦୀର୍ଘ ଆକାଙ୍‌କ୍ଷିତ ସେଇ ଶୁଭ ଦିନଟି ଏବେ ଆସିଗଲା । ଖୁବ୍ ଘନଘଟାର ସହିତ ସମ୍ପନ୍ନ ହେଲା ବିବାହ । ପ୍ରିୟପୁତ୍ର ଦୁର୍ଯ୍ୟୋଧନଙ୍କ ବିବାହ । ପୁଣି ଭାନୁମତୀ ହେବେ ହସ୍ତିନାପୁର ରାଜଭବନର ଅନ୍ତେବାସିନୀ ପ୍ରଥମ ପୁତ୍ରବଧୂ । କୃଷ୍ଣା ପ୍ରଥମ ପୁତ୍ରବଧୂ ଥିଲେ ମଧ କେତୋଟି ମାତ୍ର ମୁହୂର୍ତ୍ତ ପାଇଁ ରାଜଭବନକୁ ଛୁଇଁଥିଲେ । ଗୋଟିଏ ହେଲେ ରାତି ବି କଟାଇ ନାହାନ୍ତି ଏଠାରେ । ସେଥିପାଇଁ ପୁତ୍ରସ୍ନେହରେ ଅନ୍ଧରାଜା ଧୃତରାଷ୍ଟ୍ର ଭାରି ଖୁସି । ଅକାତରେ ରାଜକୋଷରୁ ଖର୍ଚ୍ଚ କରିଚାଲିଛନ୍ତି ଅର୍ଥ । ରାଜମାତା ଓ ପିତାମହ ଭୀଷ୍ମ ମଧ ସମଧିକ ଆନନ୍ଦିତ ।

ବରଯାତ୍ରୀମାନଙ୍କ ଲମ୍ବା ଧାଡ଼ିଟି କଳିଙ୍ଗ ରାଜଧାନୀ କଳିଙ୍ଗପତ୍ତନର ରାଜଦାଣ୍ଡରେ ଯେତେବେଳେ ନୃତ୍ୟ, ଗୀତ, ବାଦ୍ୟ ଆଦିର ସମନ୍ୱିତ ସୌନ୍ଦର୍ଯ୍ୟ ମଧ୍ୟରେ ଆଗେଇ ଚାଲିଥିଲା, ସେତେବେଳେ କଳିଙ୍ଗର ନରନାରୀ ଦେଇଥିଲେ ଉଚ୍ଛ୍ୱସିତ ସଂବର୍ଦ୍ଧନା । ଚାହିଁ ରହିଥିଲେ ବିସ୍ମୟଭରା ନେତ୍ରରେ ଏଇ ବର୍ଣ୍ଣାଢ଼୍ୟ ଅଭାବନୀୟ ଦୃଶ୍ୟକୁ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ ଆଦିଙ୍କ ସମେତ ହସ୍ତିନାପୁରର ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଯାଇଥିଲେ ବରଯାତ୍ରୀମାନଙ୍କ ଗହଣରେ । ଖାଣ୍ଡବପ୍ରସ୍ଥରୁ ପାଣ୍ଡବମାନେ ମଧ ଯାଇଥିଲେ । ଅନେକ ରାଜା-ମହାରାଜା ଓ ରାଜକୁମାର ବି ଯାଇଥିଲେ । ମୁଁ ମଧ ଯାଇଥିଲି । ମିତ୍ର ଦୁର୍ଯ୍ୟୋଧନ ମତେ ଏକ ବିଶେଷ ଅନୁରୋଧ କରିଥିଲେ । ବରଯାତ୍ରୀମାନଙ୍କ ଯଥାଯଥ ଚର୍ଚ୍ଚାରେ ଯେମିତି ହେଳା ନ ହୁଏ, ତାହା ମତେ ହିଁ ଦେଖିବାକୁ ହେବ । ସାମାନ୍ୟ କିଛି ଅସୁବିଧା ଅଥବା ତ୍ରୁଟି ଥିଲେ କଳିଙ୍ଗର ସଂପୃକ୍ତ ଅମାତ୍ୟଙ୍କ ଦୃଷ୍ଟିକୁ

ଅଣାଇ ତାହାଙ୍କୁ ସଙ୍ଗେ ସଙ୍ଗେ ସୁଧାରିବାକୁ ହେବ । ଏଇ କର୍ତ୍ତବ୍ୟଟି ନିଷ୍ଠାର ସହିତ ନିଭାଇଥିଲି ।

ଯଥାଲଗ୍ନରେ ବିବାହ ସମ୍ପନ୍ନ ହେଲା ଭଲରେ ଭଲରେ । ବରକନ୍ୟା ଫେରିଆସିଲେ ହସ୍ତିନାପୁରକୁ । ଆଉ ବରଯାତ୍ରୀମାନେ ବି । ମୁଁ କିନ୍ତୁ ସଙ୍ଗେ ସଙ୍ଗେ ଫେରିଆସି ନ ଥିଲି । ମୋର ଭାରି ଇଚ୍ଛା, ମହେନ୍ଦ୍ରଗିରିର ପାଦଦେଶରେ ଥିବା କୁମୁଦପୁର ନିଷାଦ ଗ୍ରାମର ସେହି ନିଷାଦୀ ମାଉସୀଙ୍କୁ ଥରେ ଦେଖିବି । ମିତ୍ର ଦୁର୍ଯ୍ୟୋଧନଙ୍କୁ କହି କଳିଙ୍ଗରେ ରହିଗଲି ଚାରି-ପାଞ୍ଚ ଦିନ ।

କଳିଙ୍ଗରାଜଙ୍କ ଜାମାତାଙ୍କର ପ୍ରିୟ ମିତ୍ର ମୁଁ । ତେଣୁ କଳିଙ୍ଗରେ ଅବସ୍ଥାନ ଅବସରରେ ମୋର ଆଦର ଅଭ୍ୟର୍ଥନାରେ କିଛି ତ୍ରୁଟି କରି ନ ଥିଲେ ସେ । ବରଂ ଯଥାଯୋଗ୍ୟ ଆଦର-ଅଭ୍ୟର୍ଥନାରୁ ଯଥେଷ୍ଟ ଅଧିକ ପାଉଥିଲି । ଏତେ ଅଧିକ ଯେ ବେଳେବେଳେ ସରମରେ ବୁଡ଼ିଯିବାକୁ ପଡୁଥିଲା । କଳିଙ୍ଗରାଜକୁମାର ତ ମୋ' ପାଖ ହିଁ ଛାଡୁ ନ ଥିଲେ । ତାଙ୍କ ସହିତ କଳିଙ୍ଗର କେତୋଟି ଦର୍ଶନୀୟ ସ୍ଥାନକୁ ବି ବୁଲିବାକୁ ଯାଇଥିଲି । ସର୍ବତ୍ର ବିପୁଳ ଅଭ୍ୟର୍ଥନାର ଘନଘଟା ।

ରାଜଧାନୀ ନିଜେ ହିଁ ତ ଏକ ଦର୍ଶନୀୟ ସ୍ଥାନ । ଏକ ବିଶିଷ୍ଟ ପୋତାଶ୍ରୟନଗରୀ ଭାବରେ ସାରା ଆର୍ଯ୍ୟାବର୍ତ୍ତରେ ପ୍ରସିଦ୍ଧ । ବଂଶଧାରାର ମୁହାଣରେ ଅବସ୍ଥିତ ଏହି ପୋତାଶ୍ରୟକୁ ଦେଖିବାର ସୁଯୋଗ ପାଇଥିଲି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମତେ । କ୍ଷୁଦ୍ର ବୃହତ୍ ଅନେକ ସମୁଦ୍ରଯାନର ସମାବେଶ । ରାଜକୁମାରୀଙ୍କ ବିବାହ ଉପଲକ୍ଷେ ସବୁଗୁଡ଼ିକ ସୁନ୍ଦର ଭାବରେ ସଜ୍ଜିତ । ପୋତାଶ୍ରୟରେ ବିରାଟ ଏକ ଦୀପସ୍ତମ୍ଭ । ଶୁଣିଲି, ଏହାର ଆଲୋକ କୁଆଡ଼େ ସମୁଦ୍ରବକ୍ଷରେ ଯାଉଥିବା ସମୁଦ୍ରଯାନମାନଙ୍କୁ ଦେଖାଯାଏ ଦଶ କ୍ରୋଶ ଦୂରରୁ । ଧନ, ରତ୍ନ, ମଣି, ମୁକ୍ତା, ଖାଦ୍ୟ, ଶସ୍ୟ ଆଦି ନାନାଦି ଦ୍ରବ୍ୟର ବଣିଜ ଚାଲେ ଏହ ପୋତମାନଙ୍କ ମାଧ୍ୟମରେ । ସେଥିପାଇଁ କଳିଙ୍ଗରାଜ୍ୟ ଏତେ ସମୃଦ୍ଧ । ଏଭଳି ସମୃଦ୍ଧ ରାଜ୍ୟ ସହିତ ବୈବାହିକ ସମ୍ବନ୍ଧ ସ୍ଥାପିତ କରିବାଦ୍ୱାରା କୁରୁବଂଶର ଯେ ଉପକାର ହେବ ଏଥିରେ ସନ୍ଦେହ ନାହିଁ । ବାସ୍ତବିକ, ପରବର୍ତ୍ତୀ ଯାହା ଘଟଣାମାନ ଘଟିଗଲା, ସବୁଥିରେ କୌରବମାନଙ୍କ ସପକ୍ଷରେ ରହିଲେ କଳିଙ୍ଗରାଜ । ମହାଭାରତ ଯୁଦ୍ଧରେ କଳିଙ୍ଗସେନାବାହିନୀ କୌରବମାନଙ୍କ ସପକ୍ଷରେ ଥାଇ ଯେଉଁ ପରାକ୍ରମ ଦେଖାଇଲେ ତାହା ଅନନ୍ୟ । ମନେ ମନେ ନୂତନ ଭାବରେ ଗଢ଼ିଉଠିଥିବା ଏଇ ବୈବାହିକ ବନ୍ଧୁତାର ଖୁବ୍ ସାଧୁବାଦ କରୁଥିଲି ମୁଁ ।

ପୁଣି ବି ଯଥାସମୟରେ ଯାଇଥିଲି ମୋ' ଈପ୍‌ସିତ ଗ୍ରାମ କୁମୁଦପୁରକୁ । ସାଥିରେ କଳିଙ୍ଗରାଜକୁମାର ନିଜେ । ସେଠାରେ ମଧ୍ୟ ସେମିତି ବିପୁଳ ଆଦର-ଅଭ୍ୟର୍ଥନା । ଅବଶ୍ୟ ଏହି ଅଭ୍ୟର୍ଥନା ସଭ୍ୟସମାଜର ଅଭ୍ୟର୍ଥନାଠାରୁ ପୃଥକ୍ । ଆରଣ୍ୟକ ପରିବେଶରେ ଆରଣ୍ୟକ ଶୈଳୀରେ ଅଭ୍ୟର୍ଥନା । ପୁଣି ଆରଣ୍ୟକ ନିଷାଦମାନଙ୍କ ଦ୍ୱାରା । ସଭ୍ୟ ଜଗତର ମାପକାଠିରେ ଘନଘଟାର ଚାକଚକ୍ୟ ନାହିଁ । କିନ୍ତୁ ଅଛି ଆରଣ୍ୟକ ସରଳତା ।

ଆଉ ଅଛି ବି ହୃଦୟବତ୍ତା । କୃତ୍ରିମତାଠାରୁ ବହୁତ ଦୂରରେ । ନିଷାଦମାନଙ୍କ ଆତିଥେୟତା ଆର୍ଷ ଆତିଥେୟତା ଭଳି ସରଳ, ଅଥଚ ଉଦାର ! ପତ୍ରପୁଷ୍ପରେ ଶୋଭିତ ବିରାଟ ଅଭ୍ୟର୍ଥନାମଣ୍ଡପ । ଆଖପାଖ କେତୋଟି ଗାଁର ଲୋକେ ସମବେତ । ଗ୍ରାମର ସୀମାରୁ ପ୍ରାୟ ଏକକ୍ରୋଶ ଦୂରରୁ ଆମକୁ ଅଭ୍ୟର୍ଥନା କରିଆଣିଲେ ସଭାମଣ୍ଡପକୁ । ଗୋଟିଏ ବିରାଟ ଯାତ୍ରାର ଆୟୋଜନ । ନୃତ୍ୟ, ଗୀତ, ବାଦ୍ୟ ଓ ମଦ୍ୟର ଅଦମନୀୟ ପ୍ରବାହ । ଏଇ ସରଳ-ହୃଦୟ ନିଷାଦମାନଙ୍କ ଅଭ୍ୟର୍ଥନା ମୋ'ପାଇଁ ଥିଲା ଅତି ସ୍ୱାଦ୍ୟ । ଖୁବ୍ ହୃଦ୍ୟ । ଭାରି ଭଲ ଲାଗିଲା ମତେ । ଏବେ ବି ଅଙ୍କିତ ହୋଇରହିଛି ମୋ' ଚିତ୍ତତଳେ । ସେଥିପାଇଁ ତ ସେଇ ସ୍ମରଣୀୟ ଘଟଣାଟି ଆଜି ସ୍ଥାନ ପାଇଛି ମୋ' ଆତ୍ମକାହାଣୀରେ ।

ସେଠି ଦାରୁଣ ଖବରଟିଏ ପାଇଲି । ନିଷାଦୀ ମାଉସୀ ଆଉ ନାହାନ୍ତି । ଛଅ ମାସ ହେଲା ତାଙ୍କର କାଳ ହୋଇଯାଇଛି । ମନରେ ଭାରି ଦୁଃଖ । ଏତେ ଦୂର ଆସିଲି । ଅଥଚ ଦେଖିପାରିଲି ନାହିଁ ତାଙ୍କୁ । ତାଙ୍କ ସହାୟତା ଓ ସ୍ନେହପୂର୍ଣ୍ଣ ଆଗ୍ରହ ପାଇ ନ ଥିଲେ ହୁଏତ ଆଚାର୍ଯ୍ୟ ପରଶୁରାମଙ୍କ ପାଖରୁ ବ୍ରହ୍ମାସ୍ତ୍ର ସଂପର୍କରେ ଶିକ୍ଷାଲାଭ କରିବା ସମ୍ଭବପର ହୋଇ ନ ଥାନ୍ତା ମୋ' ଜୀବନରେ । ତେଣୁ ତାଙ୍କ ନିକଟରେ ଚିରଋଣୀ ମୁଁ । ତାଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଶତ ପ୍ରଣାମ କଲି । ସେଇ ସ୍ମୃତିର କଅଁଳାବାଛୁରୀଟି ଏବେ ବି ମୋ' ମନ ଅଗଣାରେ ଡିଆଁ-ଡେଇଁ କରୁଛି । ତେଣୁ ଜୀବନର ଏଇ ଅନ୍ତିମ ମୁହୂର୍ତ୍ତରେ ତାଙ୍କ ଉଦ୍ଦେଶ୍ୟରେ ଢାଳୁଛି ଶତ ପ୍ରଣାମ । ମନର ଆଶା, ହୁଏତ ସେ ପୁରରେ ଦେଖା ହୋଇପାରେ ତାଙ୍କ ସହିତ । ଦେଖା ହେଲେ ତାଙ୍କ ଚରଣଧୂଳି ମୁଣ୍ଡରେ ମାରି ନିଜକୁ ପୁଣି ଥରେ ଧନ୍ୟ ମନେ କରାଇବି ।

ତାଙ୍କ ପର୍ଣ୍ଣକୁଟୀରଟିକୁ ଦେଖିବାକୁ ଗଲି । ଅବସ୍ଥା ଅତି ଜରାଜୀର୍ଣ୍ଣ । କାନ୍ଥ ଓ ଚାଳ ଅର୍ଦ୍ଧଭଗ୍ନ । ବହିରଙ୍ଗନରେ ନିଷାଦୀ ମାଉସୀଙ୍କୁ ଦିଆଯାଇଛି ସମାଧି । ସମାଧିପୀଠରେ ବିରାଟ ଏକ ପ୍ରସ୍ତରଖଣ୍ଡ ପ୍ରୋଥିତ । ମୁଁ ଯାଇ ସେଇ ସମାଧିପ୍ରସ୍ତର ମୂଳରେ ପୂଜାନୈବେଦ୍ୟ ସ୍ୱରୂପ ଢାଳିଦେଲି ଅଞ୍ଜଳିଭରା କୁଟଜକୁସୁମର ଅର୍ଘ୍ୟ । ମୋର ଶେଷ ପ୍ରଣତି । ଆଖି ଉଠିଲା ଛଳଛଳେଇ ଆଉ ସେହି ସମାଧିପୀଠକୁ ଦେଖିବାର ସୌଭାଗ୍ୟ ଜୁଟି ନାହିଁ ଜୀବନରେ ।

ଚାହିଁଲି ଉତ୍ତୁଙ୍ଗ ମହେନ୍ଦ୍ରଗିରିର ଆକାଶଭେଦୀ ସୌମ୍ୟ ସୁଷମାକୁ । ଖୁସି ହେଲି । ଆଚାର୍ଯ୍ୟ ପରଶୁରାମଙ୍କୁ ଦେଖିବାର ଇଚ୍ଛା ଥିଲେ ବି ଯାଇପାରି ନ ଥିଲି ସେଠାକୁ । କାରଣ ମିତ୍ର ଦୁର୍ଯ୍ୟୋଧନ ହସ୍ତିନାପୁରକୁ ଫେରିବା ପର ଦିନ ହିଁ ମୋ' ପାଇଁ ତୁରିତଗାମୀ ଅଶ୍ୱବାହକ ହସ୍ତରେ ପଠାଇଛନ୍ତି ଏକ ବିଶେଷ ସନ୍ଦେଶ – ଆଉ କାଳ ବିଳମ୍ବ ନ କରି ମତେ ଫେରିଯିବାକୁ ହେବ ହସ୍ତିନାପୁରକୁ । ଏକ ଜରୁରୀ ପରାମର୍ଶ ଅଛି ତାଙ୍କର ମୋ' ସହିତ । ତେଣୁ ମହେନ୍ଦ୍ରଗିରିର ପାଦଦେଶରେ ଆଚାର୍ଯ୍ୟଙ୍କ ଉଦ୍ଦେଶ୍ୟରେ କଲି ସଭକ୍ତି ପ୍ରଣାମ ଓ ଫେରିଆସିଲି ଭାରି ଛାତି ଧରି ! ନୀରଭିଜା ନେତ୍ର ଧରି !

## ଚଉବନ

ବାସ୍ତବିକ, ଦୁର୍ଯ୍ୟୋଧନ ଚାତକ ଭଳି ଚାହିଁରହିଥିଲେ ମୋ' ଫେରିବାକୁ । ଚରଠାରୁ ପାଣ୍ଡବମାନଙ୍କ ସଂପର୍କରେ ଯେଉଁ ସଂବାଦ ପାଇଛନ୍ତି ସେଥିରେ ବିଚଳିତ ସେ । ମୁଁ ହସ୍ତିନାପୁରରେ ପହଞ୍ଚିବାର ଗୋଟିଏ ଘଡ଼ି ଉତ୍ତାରୁ ହିଁ ତାଙ୍କୁ ସାକ୍ଷାତ୍ କରିଥିଲି ମନ୍ତ୍ରଣାକକ୍ଷରେ । ପାଖରେ ଥିଲେ ମାତୁଳ ଶକୁନି । କେଜାଣି କାହିଁକି ଦୁଃଶାସନ ନ ଥିଲେ ।

ତାଙ୍କ ପାଖରେ ପହଞ୍ଚିବା ପୂର୍ବରୁ ହିଁ ଦ୍ୱାରଦେଶରେ ଶୁଣିବାକୁ ପାଇଲି ମାତୁଳ ଶକୁନିଙ୍କ ଚକ୍ରାନ୍ତବାଣୀରୁ କିଛିଟା ଅଂଶ । ସେ ଦୁର୍ଯ୍ୟୋଧନଙ୍କୁ କହୁଥାନ୍ତି, "ଜାଣିଲ ଭଣଜା ଦୁର୍ଯ୍ୟୋଧନ ! ପୂର୍ବରୁ ତ ତୁମର ପାଞ୍ଚ ଶତ୍ରୁ ଥିଲେ । ଏବେ ଷଷ୍ଠ ଜଣେ ବାହାରିଲେଣି । ପାଣ୍ଡବମାନଙ୍କୁ ଶେଷ କରିବା କଥା ବିଚାରିବାକୁ ଗଲା ବେଳେ ତାଙ୍କ କଥା ବି ବିଚାରିବାକୁ ହେବ । ସେ ହେଉଛନ୍ତି ଦ୍ୱାରିକାଧିପତି କୃଷ୍ଣ । ସବୁ ନାଟର ଗୋବର୍ଦ୍ଧନ ।"

ମନେ ମନେ ଭାବିଲି, ଏ କି ସୁପରାମର୍ଶ ନା କୁପରାମର୍ଶ ଦେଉଛନ୍ତି ମାତୁଳ ଶକୁନି ? ପାଣ୍ଡବମାନେ କ'ଣ ତାଙ୍କ ଭାଗିନେୟ ନୁହନ୍ତି ? ତାଙ୍କୁ ଶେଷ କରିଦେବା ପାଇଁ ଏଭଳି ଚକ୍ରାନ୍ତ କରୁଛନ୍ତି କାହିଁକି ? ପୁଣି ନିଜେ ନ କରି କରାଇବାକୁ ଯାଉଛନ୍ତି ଆଉ ଜଣେ ଭାଗିନେୟ ଦୁର୍ଯ୍ୟୋଧନଙ୍କ ହାତରେ । ପାଣ୍ଡବମାନେ ତ ସେମାନଙ୍କ ରାଜଭାଗ ନେଇ ଶାନ୍ତିରେ ରହିଛନ୍ତି ଖାଣ୍ଡବପ୍ରସ୍ଥରେ । ହସ୍ତିନାପୁରଠାରୁ ବହୁତ ଦୂରରେ । ତା'ହେଲେ ଅଯଥା ଭାଇ ଭାଇ ମଧ୍ୟରେ ବିବାଦର ନିଆଁକୁ ଘୃତାହୁତି ଦେଇ ଅଧିକ ପ୍ରଖର କରି ଜଳାଉଛନ୍ତି କାହିଁକି ? ଏବେ ପୁଣି କୃଷ୍ଣଙ୍କୁ ନବୀନ ଶତ୍ରୁ ରୂପରେ ଠିଆ କରାଇବାକୁ ଚାହୁଁଛନ୍ତି । ଏ ପର୍ଯ୍ୟନ୍ତ ତାଙ୍କର କେହି ଜଣେହେଲେ ଶତ୍ରୁ ବି ନାହାନ୍ତି ତିଷ୍ଠିପାରି । ପ୍ରବଳ ପ୍ରତାପୀ କଂସାସୁର ବି ପାରିଲା ନାହିଁ । କୃଷ୍ଣ ଜଣେ ଅଲୌକିକ ପୁରୁଷ । ବହୁ ଦିବ୍ୟଶକ୍ତିର ଆଧାର । ମୋର ତାଙ୍କ ବିଷୟରେ ଯାହା କିଛି ଧାରଣା ଥିଲା ଆଗରୁ, ତାହା ଏବେ ଆରମ୍ଭ କଲାଣି ବଦଳିବାକୁ । ମହର୍ଷି ବ୍ୟାସଦେବ ଓ ପିତାମହ ଭୀଷ୍ମ ତାଙ୍କୁ ଯେଉଁ ଭଗବାନ୍ ବିଷ୍ଣୁଙ୍କ ମାନ୍ୟତା ଦେଇଆସୁଛନ୍ତି, ମୋ' ମତ ବି ଧୀରେ ଧୀରେ ଢଳିବାକୁ ଆରମ୍ଭ କଲାଣି ସେହି ଦିଗକୁ । ତାଙ୍କୁ ଶତ୍ରୁଦୃଷ୍ଟିରେ ଚାହିଁବା ଅର୍ଥ ନିଜ ବିନାଶକୁ ନିଜେ ଡାକି ଆଣିବା । ଗାନ୍ଧାରରାଜ ଶକୁନି କ'ଣ ଏହା ଜାଣି ନାହାନ୍ତି ? ତାଙ୍କଠାରୁ ପୁଣି ଚତୁର ବ୍ୟକ୍ତି ଆଉ ଅଛି ବା କିଏ ? ସବୁ ଜାଣିଛନ୍ତି । ଅଥଚ ଦୁର୍ଯ୍ୟୋଧନଙ୍କୁ ଦେଉଛନ୍ତି ଏଭଳି ପରାମର୍ଶ ! ମୋର କାହିଁକି ଭାରି ସନ୍ଦେହ ଆସିଲା ତାଙ୍କ ପ୍ରତି । ସେ ହୁଏତ ଦୁର୍ଯ୍ୟୋଧନଙ୍କ ହିତାକାଙ୍କ୍ଷୀ ନୁହନ୍ତି । ହିତାକାଙ୍କ୍ଷୀର ଛଳନା କରି ତାଙ୍କୁ ଧୀରେ ଧୀରେ ଟାଣି ନେଉଛନ୍ତି ବିନାଶର ପଥକୁ । ଅମୃତର ମରୀଚିକାକୁ ନଚାଇ ନଚାଇ ଟାଣି ନେଉଛନ୍ତି ଉତ୍ତପ୍ତ ବିଷାୟିତ ମରୁବାଲି ବୁକୁତଳକୁ ।

ମୁଁ ବା କ'ଣ କରିପାରିବି ? ଦୁର୍ଯ୍ୟୋଧନଙ୍କ ମନଃସ୍ଥିତି ଯାହା ସେ ମାତୁଳ ଶକୁନିଙ୍କ କଥାକୁ ବିଶ୍ୱାସ କରିବେ ହିଁ କରିବେ । ମତେ ତ ପରିଷ୍କାର ଦେଖାଯାଉଛି, ଯଦି ଭବିଷ୍ୟତରେ କେବେ କୌରବ-ପାଣ୍ଡବମାନଙ୍କ ମଧ୍ୟରେ ସଂଘର୍ଷ ହୁଏ, ତେବେ କୃଷ୍ଣ

ରହିବେ ପାଣ୍ଡବମାନଙ୍କ ପକ୍ଷରେ । ମହର୍ଷି ବ୍ୟାସଦେବ ବହୁବାର କହିଥିବାର ଶୁଣିଛି – 'ଯତୋ କୃଷ୍ଣ ସ୍ତତୋ ଜୟଃ' । କୃଷ୍ଣ ଯେଉଁଠି, ଜୟ ସେଇଠି । ଏଭଳି ସଂଘର୍ଷରେ ମୁଁ ତ ବାଧ୍ୟ ହୋଇ ଦୁର୍ଯ୍ୟୋଧନଙ୍କ ପକ୍ଷକୁ କରିଯିବି ଅନ୍ଧ ଭାବରେ ସମର୍ଥନ ଠିକ୍ ମହାରାଜ ଧୃତରାଷ୍ଟ୍ରଙ୍କ ଭଳି । ଲଢ଼ିବି ପରାଜିତ ଯୁଦ୍ଧ । ତେଣୁ ଏପରି ସଂଘର୍ଷକୁ ଏଡ଼ାଇ ଦେବାପାଇଁ ପାଗୁପର୍ଯ୍ୟନ୍ତ କରିବି ଚେଷ୍ଟା । ତେଣିକି ଦୈବର ଇଚ୍ଛା ହିଁ ହେବ ଫଳବତୀ ।

ଏଇ ଭାବନାରେ ଅନୁପ୍ରାଣିତ ହୋଇ ପ୍ରବେଶ କଲି କକ୍ଷ ମଧ୍ୟରେ । ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପଚାରିଲି, ''ମିତ୍ର ଦୁର୍ଯ୍ୟୋଧନ ! ଶୁଣିଲି, କ'ଣ ଆଲୋଚନା ପଡ଼ିଥିଲା କୃଷ୍ଣଙ୍କୁ ନେଇ । କଥା କ'ଣ ?''

''ଏଇ ମାମୁ କହୁଥିଲେ, ପାଣ୍ଡବମାନଙ୍କର ଯାହା କିଛି ଉନ୍ନତି ଘଟୁଛି, ତାହା କୃଷ୍ଣଙ୍କୁ ନେଇ । ସେମାନେ ଧୀରେ ଧୀରେ ଅଧିକ ବଳବାନ୍ ହୋଇଉଠୁଛନ୍ତି । କୃଷ୍ଣଙ୍କର ସେମାନଙ୍କ ପ୍ରତି ଖୁବ୍ ପ୍ରେମଭାବ ।''

''ହେବା ସ୍ୱାଭାବିକ । ସେମାନେ କୃଷ୍ଣଙ୍କ ପିଉସୀପୁଅ ଭାଇ । ତାହା ଛଡ଼ା ସେମାନେ ଖୁବ୍ ଉଦ୍ୟମୀ ।''

ମଝିରେ ପଡ଼ି ଗାନ୍ଧାରରାଜ କହିଲେ, ''ଖାଲି ସେତିକି ନୁହେଁ । କୃଷ୍ଣ ବଡ଼ କପଟୀ । ଆଉ ଚତୁର ମଧ୍ୟ । ଇନ୍ଦ୍ରଜାଲ ବି ଜାଣନ୍ତି । ନାନା ପ୍ରକାର ଇନ୍ଦ୍ରଜାଲ ଦେଖାଇ ଲୋକମାନଙ୍କୁ ଦିଅନ୍ତି ମୋହି । କେତେବେଳେ ଯେ କ'ଣ ପରାମର୍ଶ ଦେଉଥିବେ କିଏ ଜାଣେ ? ତେଣୁ ତାଙ୍କ କାର୍ଯ୍ୟକଳାପକୁ ବିଶ୍ୱାସ କରିବା ଉଚିତ ନୁହେଁ । ହଁ, ଅଙ୍ଗରାଜ ।''

''ଆପଣ ତା'ହେଲେ କ'ଣ କହୁଛନ୍ତି ?''

''ପାଣ୍ଡବମାନେ କୌରବମାନଙ୍କର ପ୍ରଥମ ଶତ୍ରୁ ଅବଶ୍ୟ । ସେ ସେମାନଙ୍କ ସହାୟକ ହୋଇଥିବାରୁ ଦ୍ୱିତୀୟ ଶତ୍ରୁ ।'' କୃଷ୍ଣ ଓ ପାଣ୍ଡବମାନଙ୍କ ପ୍ରତି ଦୁର୍ଯ୍ୟୋଧନଙ୍କ ଦ୍ୱେଷଭାବକୁ ତେଜେଇଦେବା ଉଦ୍ଦେଶ୍ୟରେ ସେ କହିଲେ ।

''ମୋ' ମତରେ ସେମାନଙ୍କୁ ନେଇ ଏବେ ମୁଣ୍ଡ ଖେଳାଇବା ଉଚିତ ନୁହେଁ । ଆଚ୍ଛା, କହନ୍ତୁ ତ ମାମୁ, ବର୍ତ୍ତମାନ କି ନୂଆ ପରିସ୍ଥିତି ଘଟିଲା ଯେ ଆପଣ ଏମିତି କହୁଛନ୍ତି ?''

''କ'ଣ ଆଉ ନ ଘଟିଛି ?'' ଦୀର୍ଘନିଃଶ୍ୱାସ ପକାଇଲେ ସେ । ସତେଯେମିତି କୌରବମାନଙ୍କ ଭବିଷ୍ୟତର ସ୍ୱପ୍ନମୁଖର କିଛି ଗୋଟାଏ ବାଧକ ଦେଖିପାରି ଭାରି ବ୍ୟଥିତ ! ଖୁବ୍ ଚିନ୍ତାନ୍ୱିତ । ଦେହରେ ଶତ କଣ୍ଟକର ପୀଡ଼ା !

ସତ୍ୟ ଓ ଛଳନା । ଏଇ ଦୁଇଟି ମଧ୍ୟରେ କେତେ ଆକାଶ ପାତାଳ ଫରକ ସତେ ! ବାହାରକୁ ଦେଖିବାପାଇଁ ସତ୍ୟ ନିଷ୍ଠୁର ଓ ନିର୍ମମ । ଅଥଚ ଛଳନା ଅତି ସରଳ ଓ କୋମଳ । ବହିଃସୌନ୍ଦର୍ଯ୍ୟରେ ବଳିଯାଏ ସତ୍ୟକୁ । କିନ୍ତୁ ଅସଲ ରୂପଟି ଜଣାପଡ଼େ ପରିଣତିରେ । ସତ୍ୟ ଅମୃତମୟ ଫଳ ଦିଏ । ଅଥଚ ଛଳନା ବିଷମୟ ଫଳ ଦିଏ । କିନ୍ତୁ ମୂର୍ଖ ମଣିଷ ଛଳନାକୁ ଖୁବ୍ ବିଶ୍ୱାସ କରେ । ସେଥିପାଇଁ ତା'କୁ ପିଇବାକୁ ପଡ଼ିଥାଏ ପରିଣତିର ବିଷ । ଦୁର୍ଯ୍ୟୋଧନଙ୍କୁ ସେଇ ବିଷ ପଛରେ ଧାଇଁବାପାଇଁ ବାର ବାର

ଅନୁପ୍ରେରିତ କରୁଛନ୍ତି ମାତୁଳ ଶକୁନି । ତାଙ୍କର ତଥାକଥିତ ହିତାକାଙ୍‌କ୍ଷୀ ଗୁରୁଜନ ! ବିଚରା ନିର୍ବୋଧ ଦୁର୍ଯ୍ୟୋଧନ ! ଖାଲି ତ ଏକା ଦୁର୍ଯ୍ୟୋଧନ ନୁହନ୍ତି । ମୁଁ ମଧ୍ୟ ସମବେଦନାର ପାତ୍ର । ବିବଶ ହେଲେ ବି । କାରଣ ସବୁ ଜାଣି-ଶୁଣି ବି ସମର୍ଥନ କରୁଛି ଅସତ୍ୟକୁ । ଠିଆ ହୋଇଛି ଅଧର୍ମ ପଛରେ । ଆଶ୍ୱାସଭରା ହସ୍ତ ରଖିଛି ଦୁର୍ଯ୍ୟୋଧନଙ୍କ ସ୍କନ୍ଧରେ । ଏଇ ଚିନ୍ତାରେ ସେତେବେଳେ ହୋଇଉଠୁଥିଲି ଗୁରୁ ଗୁରୁ ଆନ୍ଦୋଳିତ !

"ମାମୁ କ'ଣ କହିବେ ? ମୁଁ କହୁଛି ଶୁଣ ମିତ୍ର ।" ଏହା କହି ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ସମୃଦ୍ଧି ନେଇ ଯାହା କିଛି ସମ୍ବାଦ ସଂଗ୍ରହ କରିଛନ୍ତି ଗୁପ୍ତଚର ପାଖରୁ ତାହା ଖୋଲିଦେବାକୁ ଆରମ୍ଭ କଲେ ।

ହସ୍ତିନାପୁର ଛାଡ଼ି ପାଣ୍ଡବମାନେ ଯାଆନ୍ତି ଖାଣ୍ଡବପ୍ରସ୍ଥ ଅଭିମୁଖରେ । ଯାଇ ଦେଖନ୍ତି ସେଠାରେ ଥିବା ପୁରାତନ ରାଜପ୍ରାସାଦଟି ସଂପୂର୍ଣ୍ଣରୂପେ ରହିବାର ଅନୁପଯୁକ୍ତ । ତେଣୁ କିଛି ଦିନ ପାଇଁ ପର୍ଣ୍ଣକୁଟୀର ନିର୍ମାଣ କରି ରହନ୍ତି ତାହାରି ନିକଟରେ । ଧୀରେ ଧୀରେ ଖାଣ୍ଡବବନକୁ ପୋଡ଼ି ଭୂମିକୁ ସମତଳ ଓ ବାସୋପଯୋଗୀ କରାନ୍ତି । ପୁରାତନ ରାଜପ୍ରାସାଦର ଉନ୍ନତିସାଧନ କରି ନିର୍ମାଣ କରନ୍ତି ଏକ ଦିବ୍ୟସୁନ୍ଦର ରାଜପ୍ରାସାଦ । ତାହାର ଚାରିପଟେ ଧୀରେ ଧୀରେ ଗଢ଼ିଉଠେ ରାଜଧାନୀ ଓ ଘନ ଲୋକବସତି । ତାହା ଏବେ ଇନ୍ଦ୍ରପ୍ରସ୍ଥ ନାମରେ ବିଦିତ । ଇକ୍ଷୁମତୀ ଓ ଯମୁନା ନଦୀଦ୍ୱୟର ସଙ୍ଗମସ୍ଥଳରେ ଅବସ୍ଥିତ । ତାହାର ଶୋଭା ଓ ସମୃଦ୍ଧି ହସ୍ତିନାପୁରକୁ ବଳିକରି । ଶୁଣାଯାଏ, ତାହା କୁଆଡ଼େ ଦ୍ୱିତୀୟ ଇନ୍ଦ୍ରପୁରୀ ।

ପୂର୍ବରୁ ଶୁଣିଥିଲି ଓ ପଢ଼ିଥିଲି ବି ପ୍ରାଚୀନ ଇନ୍ଦ୍ରପ୍ରସ୍ଥ ବିଷୟରେ । ଏହା ହୋଇଯାଇଥିଲା ଇତିହାସର କାହାଣୀ । କାଳକ୍ରମେ ଏହା ପରିଣତ ହୋଇଯାଇଥିଲା ଘଞ୍ଚ ଅରଣ୍ୟପୂର୍ଣ୍ଣ ଖାଣ୍ଡବପ୍ରସ୍ଥରେ । ପାଣ୍ଡବମାନେ ଏବେ ଫେରାଇଆଣିଛନ୍ତି ତାହାର ହୃତ ଗୌରବଟିକୁ । ଏଥିରେ ଦୁର୍ଯ୍ୟୋଧନ ଏମିତି ଜଳିଉଠୁଛନ୍ତି କାହିଁକି ? ଏହା ତ ଦିନେ କୁରୁବଂଶରେ ରାଜଧାନୀ ଥିଲା । ତାହାର ମୂକ ସାକ୍ଷୀ ପୁରାତନ ଜୀର୍ଣ୍ଣ ରାଜପ୍ରାସାଦ । ପରେ ରାଜା ହସ୍ତୀଙ୍କ ଦ୍ୱାରା ହସ୍ତିନାପୁରୀ ହୁଏ ସ୍ଥାପିତ । ସେଇ ହିଁ ରାଜଧାନୀକୁ ସ୍ଥାନାନ୍ତରିତ କରନ୍ତି ନବନିର୍ମିତ ହସ୍ତିନାପୁରକୁ । କୁରୁବଂଶର ଦାୟାଦ ହୋଇ ପାଣ୍ଡବମାନେ ଯଦି ସେମାନଙ୍କ ପିତୃଗଣଙ୍କ ହୃତ ଗୌରବକୁ ଫେରାଇ ଆଣିପାରିଲେ, ତେବେ ଏଥିରେ ଖୁସି ହେବାର କଥା । ସେମାନେ ତ ଏଥିପାଇଁ ଦୁର୍ଯ୍ୟୋଧନଙ୍କ ସହାୟତା ମାଗି ନାହାନ୍ତି । ପୂର୍ବଦତ୍ତ ରାଜ୍ୟଭାଗରୁ କିଛି ଅଧିକ ଚାହିଁ ନାହାନ୍ତି । ଅଥଚ ଦୁର୍ଯ୍ୟୋଧନଙ୍କର ଏଭଳି ଭିନ୍ନ ମତିଗତି କାହିଁକି ? ଆଚମ୍ବିତ ହୋଇଉଠୁଥିଲି ମୁଁ ।

ଦୁର୍ଯ୍ୟୋଧନ ମୋ' ଚିନ୍ତାକୁ ବ୍ୟାହତ କରିବାକୁ ଯାଇ ପୁଣି କହିଲେ, "ଜାଣିଲ ମିତ୍ର, ଏ ସବୁର ମୂଳରେ କେଉଁମାନେ ଅଛନ୍ତି ?"

"କେଉଁମାନେ ?" ତାଙ୍କ ମୁଖକୁ ଚାହିଁ ମୋର ପ୍ରତିପ୍ରଶ୍ନ ।"

"କେବଳ ଦୁଇ ଜଣ । କୃଷ୍ଣ ଓ ଅର୍ଜୁନ ।"

''ସବୁ କଥା ଖୋଲିକରି କହ ମିତ୍ର ।'' ଅର୍ଜୁନଙ୍କ ନାଁଟା ଶୁଣି ମତେ କେମିତି କେମିତି ଲାଗିଲା । ତାଙ୍କ ପ୍ରତି ଥିବା ମୋର ସ୍ପର୍ଦ୍ଧାଭାବ ବହୁ ପୁରାତନ । ଆଚାର୍ଯ୍ୟ ଦ୍ରୋଣଙ୍କ ବିଦ୍ୟାୟତନରେ ଶିକ୍ଷା ନେବା ଦିନଠାରୁ । ପରେ ପରେ ଯାହା ସବୁ ଘଟଣା ଘଟିଗଲା, ବିଶେଷକରି ରାଜକୁମାରମାନଙ୍କ ଅସ୍ତ୍ରସ୍ପର୍ଦ୍ଧା, କୃଷ୍ଣାଙ୍କ ସ୍ୱୟଂବରରେ ଅର୍ଜୁନଙ୍କ ଲକ୍ଷ୍ୟଭେଧ ଓ ମୋ' ପ୍ରତି ଅପମାନ, ତାହା ସବୁ ଏହି ଦ୍ୱେଷଭାବର ଅଗ୍ନିକୁ କରିଦେଇଛି ଅଧିକ ତେଜୀୟାନ୍ । ତେଣୁ ଏ କ୍ଷେତ୍ରରେ ଅର୍ଜୁନଙ୍କ ସିଦ୍ଧିକୁ ଆଦୌ ସହିପାରୁ ନ ଥାଏ । ମନରେ ମୋର ସ୍ୱାଭାବିକ ଈର୍ଷାଭାବ ।

ଦୁର୍ଯ୍ୟୋଧନ ପୁଣି ଆଗେଇ ଚାଲନ୍ତି, ''ଖାଣ୍ଡବବନର ଦହନ କୃଷ୍ଣ ଓ ଅର୍ଜୁନ ଏକତ୍ର ମିଶି କରନ୍ତି । ଅଗ୍ନିଦେବ ଏଥିରେ ସନ୍ତୁଷ୍ଟ ହୁଅନ୍ତି । ଇନ୍ଦ୍ରଦେବ ତାହାକୁ ରକ୍ଷା କରିବା ଉଦ୍ଦେଶ୍ୟରେ ପ୍ରବଳ ବୃଷ୍ଟିପାତ କରାନ୍ତି । କିନ୍ତୁ ତାଙ୍କ ଚେଷ୍ଟା ହୁଏ ବିଫଳ । ସେ ପରାଜୟ ସ୍ୱୀକାର କରନ୍ତି ।''

ଆଶ୍ଚର୍ଯ୍ୟ ମୁଁ ଅର୍ଜୁନଙ୍କ ଏଭଳି ସିଦ୍ଧିରେ । ବିଶେଷକରି ଇନ୍ଦ୍ରାଦି ଦେବତାମାନଙ୍କୁ ଏକାକୀ ପରାସ୍ତ କରିପାରିବାରେ ।

ପଚାରିଲି, ''ଆଚ୍ଛା, ଏକାକୀ ଅର୍ଜୁନ ଏତେ କାମ କଲେ ବା କେମିତି ? କି ବିଶେଷ ଅସ୍ତ୍ରର ସାହାଯ୍ୟ ନେଲେ ? ଏ ଖବର କିଛି ଗୁପ୍ତଚର ସଂଗ୍ରହ କରିଛି ?''

''ହଁ, କରିଛି । ଅଗ୍ନିଦେବ ପ୍ରସନ୍ନ ହୋଇ ଅର୍ଜୁନଙ୍କୁ ଦିଅନ୍ତି ଗୋଟିଏ ଦିବ୍ୟ ଧନୁ । ତାହାର ନାଁ ଗାଣ୍ଡୀବ । ଆଉ ବି ଦିଓଟି ଅକ୍ଷୟତୂଣୀର । ଯେତେ ବାଣ ମାରିଲେ ବି ତାହାର ଭଣ୍ଡାର ସରିବ ନାହିଁ । ପୁଣି ବି ଏକ ବିଚିତ୍ର ରଥ ଯାହାର ବର୍ଣ୍ଣ ଶ୍ୱେତ । ପୁଣି ଅଶ୍ୱମାନଙ୍କ ବର୍ଣ୍ଣ ବି ଶ୍ୱେତ । ଆଉ କୃଷ୍ଣଙ୍କର କ'ଣ ଲାଭ ହେଲା ଶୁଣିବ ମିତ୍ର ?''

''ହଁ, ହଁ, କହ ମିତ୍ର କୃଷ୍ଣ କ'ଣ ପାଇଲେ ?'' ମୋର ଉଦଗ୍ର ଉତ୍କଣ୍ଠା । ସବୁ କିଛି ମତେ ଐନ୍ଦ୍ରଜାଲିକର ମାୟା ଭଳି ଲାଗୁଥିଲା ।

''କୃଷ୍ଣ ଥିଲେ ଅର୍ଜୁନଙ୍କ ସାରଥି । ଉତ୍ତମ ସାରଥିସେବା ହେତୁ ସେ ଅଗ୍ନିଦେବଙ୍କଠାରୁ ପାଇଲେ ଦିବ୍ୟ ଚକ୍ର । ଅଖଣ୍ଡ ତାହାର ଶକ୍ତି ।''

''ବଡ଼ ଆଶ୍ଚର୍ଯ୍ୟ କଥା ।'' ନୟନ ଯୁଗଳ ମୋର ବିସ୍ମୟବିସ୍ଫାରିତ ।

''ଖାଲି ସେତିକି ନୁହେଁ ମିତ୍ର । ଇନ୍ଦ୍ରଦେବ ମଧ୍ୟ ଅର୍ଜୁନଙ୍କୁ ବର ଦେଇଛନ୍ତି । ଆମପାଇଁ ତାହା ବଡ଼ ଭୟାନକ ।'' ଦୁର୍ଯ୍ୟୋଧନଙ୍କ ଗୌର ମୁଖମଣ୍ଡଳରେ ଆତଙ୍କର ଛାୟା । ମଧ୍ୟାହ୍ନର ସୂର୍ଯ୍ୟଙ୍କୁ ହଠାତ୍ କଳାମେଘ ଘୋଡ଼ାଇ ଦେଇଛି ଯେମିତି ।

''କ'ଣ ଅର୍ଜୁନଙ୍କ ହସ୍ତରେ ପରାସ୍ତ ହୋଇ ବି ତାଙ୍କୁ ପୁଣି ବର ଦେଇଛନ୍ତି ?''

''ହଁ ମିତ୍ର, ତାହାହିଁ ତ ଆଶ୍ଚର୍ଯ୍ୟ କଥା । ସେ ବର ଦେଇ କହିଛନ୍ତି ଭବିଷ୍ୟତରେ ସୁଯୋଗ ଆସିଲେ ତାଙ୍କୁ ଦିବ୍ୟାସ୍ତ୍ରମାନ ଦେବେ ଅବଶ୍ୟ ତାହା ପୂର୍ବରୁ ତାଙ୍କୁ ଶଙ୍କରଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିବ ।''

ମାତୁଳ ଶକୁନି ଏତିକିବେଳେ ଯୋଗ ଦେଇ କହିଲେ, ''ଏଇଟା ଆଉ କେତେ ଦୂର ? ଶଙ୍କର ତ ଅଳ୍ପକରେ ଓ ଖୁବ୍ ଶୀଘ୍ର ସନ୍ତୁଷ୍ଟ ହେବା ଦେବତା । ସେଥିପାଇଁ ନାଁ ତାଙ୍କର ଆଶୁତୋଷ । ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ଅର୍ଜୁନଙ୍କୁ ବା କେତେ ସମୟ ଲାଗିବ ?''

''ଏହାର ଅର୍ଥ, ସେ ଇନ୍ଦ୍ରଙ୍କଠାରୁ ଶୀଘ୍ର ଦିବ୍ୟାସ୍ତ୍ରମାନ ପାଇଯିବେ । ଏଥିରେ ପାଣ୍ଡବମାନେ ଆମଠାରୁ ଅଧିକ ବଳବାନ୍ ହୋଇଉଠିବେ । ତତ୍ପୂର୍ବରୁ ଆମକୁ କିଛି କରିବାକୁ ହେବ ।'' ଦୁର୍ଯ୍ୟୋଧନଙ୍କ କଥାରେ ବ୍ୟଥା ଓ ଚିନ୍ତାର ସନ୍ତରଣ । କପାଳରେ ଭାଙ୍ଗ ।

ମୋ' ମନଟା କେମିତି କେମିତି ହୋଇଗଲା । ମୁଁ ଅବଶ୍ୟ ନ ଥିଲି ପାଣ୍ଡବବିଦ୍ୱେଷୀ । କିନ୍ତୁ ଥିଲି ଅର୍ଜୁନବିଦ୍ୱେଷୀ ବ୍ୟକ୍ତିଗତ କାରଣରୁ । ମନରେ ମୋର ଗୋଟିଏ ମାତ୍ର ଅତୃପ୍ତ କାମନା ରହିଯାଇଛି । ସୁଯୋଗ ଆସିଲେ ଅର୍ଜୁନଙ୍କ ସହିତ କରିବି ଅସ୍ତ୍ରସ୍ପର୍ଦ୍ଧା । ସେଭଳି ସୁଯୋଗ ତ ଆଜି ସୁଦ୍ଧା ପାଇପାରି ନାହିଁ । କିନ୍ତୁ ବର୍ତ୍ତମାନ ପରିସ୍ଥିତି ଯାହା ଦେଖୁଛି, ଭବିଷ୍ୟତରେ କେବେ ଆମ ଦୁହେଁ ପରସ୍ପରର ମୁହାଁମୁହିଁ ହେଲେ ତାଙ୍କୁ ଜାଣିପାରିବି କି ନାହିଁ ସନ୍ଦେହ । କାରଣ ସେ ଧୀରେ ଧୀରେ ଅଧିକରୁ ଅଧିକ ହୋଇଉଠୁଛନ୍ତି ବଳବାନ୍ । ପୁଣି ଭବିଷ୍ୟତରେ ଇନ୍ଦ୍ରଙ୍କଠାରୁ ଦିବ୍ୟାସ୍ତ୍ରମାନ ପାଇବାର ରହିଛି ସମ୍ଭାବନା । ତାହା ପାଇଲେ ମୁଁ ଆଉ କ'ଣ ଜିଣିପାରିବି ତାଙ୍କୁ ଯୁଦ୍ଧରେ ? ପୁଣି ଦେଖୁଛି, ତାଙ୍କର କୃଷ୍ଣଙ୍କ ସହିତ ରହିଛି ନିବିଡ଼ ସଖ୍ୟ । ବାରମ୍ବାର ସାକ୍ଷାତ ହେଉଛି ଉଭୟଙ୍କର । ଏଭଳି ଜଣେ ଅଲୌକିକ ବ୍ୟକ୍ତିଙ୍କ ସମର୍ଥନ ଯାହାଙ୍କ ପଛରେ ଅଛି, ତାଙ୍କୁ ଜିଣିବା କ'ଣ ସହଜ କଥା ? ମୋ' ମନକୁ କିଭଳି ଏକ ନୈରାଶ୍ୟ ଓ ଭୟ ଛୁଇଁବାକୁ ଲାଗିଲା । ଲକ୍ଷ୍ୟ କଲି, ଦୁର୍ଯ୍ୟୋଧନଙ୍କର ମଧ ଅନୁରୂପ ଅବସ୍ଥା ।

ଭୟ । ମଣିଷର ଏହା ଏକ ସହଜାତ ପ୍ରବୃତ୍ତି । ଖାଲି ତ ମଣିଷର ନୁହେଁ ସକଳ ଜୀବଙ୍କର । କିନ୍ତୁ ଭୟ ହିଁ ଭୟରୁ ଦେଇଥାଏ ମୁକ୍ତ କରି । ଭୟର ସମ୍ମୁଖୀନ ହେବାପାଇଁ ଦେଇଥାଏ ଆତ୍ମବଳ ଓ ସାହସ । ଭୟ ନ ଥିଲେ ମଣିଷର ଆଉ ବଳସଞ୍ଚୟ କରିବାର ଆବଶ୍ୟକତା ନ ଥାନ୍ତା । ନ ଥାନ୍ତା ବି ସ୍ପୃହା । ବ୍ୟାଘ୍ରର ଭୟ ହିଁ ମୃଗର ପାଦ ଚାରୋଟିରେ ଦେଇଥାଏ ଧାଇଁବାର ଅସୀମ ଶକ୍ତି । ସେ ଦ୍ରୁତ ଗତିରେ ଧାଇଁ ଆତ୍ମରକ୍ଷା କରେ । ହୁଏତ ଅଶ୍ୱତ୍ଥାମାଙ୍କ ଭଳି ଜଣେ ବ୍ରହ୍ମବିତ୍ ଥିଲେ କହିଥାନ୍ତେ ଭୟଟା ଅବିଦ୍ୟାର ଲକ୍ଷଣ । ଅଜ୍ଞାନର ଲକ୍ଷଣ । ବେଦାନ୍ତର ଉଦାହରଣ ଦେଇ କହିଥାନ୍ତେ 'ଦ୍ୱିତୀୟାଦ୍ ବା ବିଭେତି' । ମନୁଷ୍ୟର ଦ୍ୱିତୀୟତ୍ୱର ଧାରଣା ହେଲେ ଭୟ ଆସେ । ଏହା ତ ଖାଲି କହିଦେଲେ ହେବ ନାହିଁ । ଉପଲବ୍ଧି କେତେ ଜଣଙ୍କର ? କୋଟିକରୁ ଗୋଟିଏ ଏଭଳି ବ୍ୟକ୍ତି ପାଇବା କଷ୍ଟକର । ତେଣୁ ସାଧାରଣ ମଣିଷ ପାଇଁ ଭୟ ସ୍ୱାଭାବିକ । ଆମେ ତେଣୁ ମନେ ମନେ ଭୟଭୀତ ହୋଇଯାଇଥିଲୁ ।

ଏହି ମାନସିକ ସ୍ଥିତିର ସୁଯୋଗ ନେଲେ ଚତୁର ମାତୁଳ ଶକୁନି । ସେ ଆମ ଭୟକୁ ଆହୁରି ବଢ଼ାଇଦେବାକୁ ଯାଇ କହିଲେ, ''ଖାଲି ଏତିକି ନୁହେଁ, ପାଣ୍ଡବମାନେ ଏବେ କୁରୁସାମ୍ରାଜ୍ୟର ସମକକ୍ଷ ହେବାକୁ ବସିଲେଣି । ଭୀମ, ଅର୍ଜୁନ, ନକୁଳ, ସହଦେବ ଚାରି

ଦିଗକୁ ଯାଇ ସେହି ସେହି ଦେଶର ରାଜାମାନଙ୍କୁ ଜୟ କରିସାରିଲେଣି । ଏହି ରାଜ୍ୟଗୁଡ଼ିକର ଏକାଙ୍ଗଚକ୍ରବର୍ତ୍ତୀ ଏବେ ରାଜା ଯୁଧିଷ୍ଠିର । ଭବିଷ୍ୟତରେ ଯଦି ଅର୍ଜୁନ ଇନ୍ଦ୍ରଙ୍କ ପାଖରୁ ଦିବ୍ୟାସ୍ତ୍ରମାନ ପାଆନ୍ତି, ତା'ହେଲେ କ'ଣ ହେବ କେଜାଣି ?'' ତାଙ୍କ କଣ୍ଠସ୍ୱରରେ ଆତଙ୍କିତ ବ୍ୟଥାର ଗୁଞ୍ଜରଣ ଯଦିଓ ଏହାର ନିଷ୍ଠା ଓ ଗଭୀରତା ବିଷୟରେ ମୁଁ ଥିଲି ସନ୍ଦିହାନ ।

''ଏଭଳି ସ୍ଥିତି ଆସିବା ପୂର୍ବରୁ ଆମକୁ ଶୀଘ୍ର କିଛି ବ୍ୟବସ୍ଥା କରିବାକୁ ହେବ ।'' ଦୁର୍ଯ୍ୟୋଧନ ଦୃଢ଼ ଭାବରେ କହିଲେ । ପାଣ୍ଡବମାନଙ୍କ ସମୃଦ୍ଧି ସଂପର୍କରେ ଆଉ କିଛି ଶୁଣିବା ଲାଗି ତାଙ୍କ ଧୈର୍ଯ୍ୟର ସୀମା ତୁଟି ଯାଇଥିଲା ।

''ବ୍ୟବସ୍ଥା କରିବାକୁ ତ ହେବ । କିନ୍ତୁ ଶୀଘ୍ର ନୁହେଁ ।'' କହିଲେ ମାତୁଳ ଶକୁନି ।

''ତା'ହେଲେ କ'ଣ ନେଡ଼ି-ଗୁଡ଼ କହୁଣିକୁ ବହିଯିବା ପରେ ?'' ଦୁର୍ଯ୍ୟୋଧନଙ୍କ ବିରକ୍ତିଭରା ସ୍ୱର ।

''ତାହା ବି ନୁହେଁ ଭଣଜା । ନେଡ଼ି-ଗୁଡ଼ କହୁଣିକୁ ବହି ନ ଥିବ । ଉପଯୁକ୍ତ ସମୟ ଆସିଥିବ । ସେତେବେଳେ ଯାଇ କରିହେବ ଯାହା କିଛି ।''

''କିଛି ବୁଝିପାରିଲି ନାହିଁ ମାମୁ । କ'ଣ କହିବାକୁ ଚାହାନ୍ତି ଖୋଲି କରି କହନ୍ତୁ ।''

''କେତେଥର ପରା କହିଛି, ରାଜନୀତିରେ ସବୁ କଥା ଖୋଲା ଯାଏନା । ସମୟ ଆସିଲେ ତାହା ଆପେ ଆପେ ଖୋଲି ହୋଇଯାଏ । ତାହାକୁ ଆଗରୁ ଖୋଲିଦେବା ଅର୍ଥ କଳିକାଟିକୁ ବଳପୂର୍ବକ ସମୟ ପୂର୍ବରୁ ଫୁଟାଇବା ପାଇଁ ଅପଚେଷ୍ଟା କରିବା । ତୁମେ ତେଣୁ ଧୈର୍ଯ୍ୟ ଧର । ମୁଁ ଉପାୟ ଖୋଜୁଛି ।'' ତାଙ୍କ ଅଧରତଳେ ରହସ୍ୟମୟ ହସ । ସେଥିରୁ କିଛିଟା ଆଶ୍ୱାସନା ବି ମିଳୁଥିଲା ।

''ହେଉ, ଯାହା ଆପଣଙ୍କ ଇଚ୍ଛା ।'' ଦୁର୍ଯ୍ୟୋଧନଙ୍କ ବାଣୀରେ କିଛିଟା ଆଶ୍ୱସ୍ତିର ଝଲକ ।

ସେ ଦିନର ଆଲୋଚନା ସାଙ୍ଗ ହେଲା ସେତିକିରେ ।

ମତେ ଲାଗୁଥାଏ, ସତେଯେମିତି ହସ୍ତିନାପୁରର ଆକାଶରେ କି ଏକ ଦୁରନ୍ତ ଝଞ୍ଜାର ସୃଷ୍ଟି ହେବାକୁ ଆଗାମୀ ଦିନମାନଙ୍କରେ ଦୂରରୁ ଭାସିଆସୁଥିବା ତାହର ସୁ ସୁ ଗର୍ଜନର କ୍ଷୀଣ ଆଭାସ ମାତ୍ର ବାଜୁଛି କାନରେ ! ଏହା କାହାକୁ ରଖିବ ଓ କାହାକୁ ଉଡ଼ାଇନେବ କେଜାଣି ?

## ପଞ୍ଚାବନ

''ମହାରାଜ ! ଅନ୍ତଃପୁରରୁ ପରିଚାରିକା ଚିତ୍ରା କ'ଣ ଗୋଟାଏ ବିଶେଷ ସଂବାଦ ଧରି ଆସିଛି । କହୁଛି, ମହାରାଜଙ୍କୁ ହଠାତ୍ ଦର୍ଶନ କରିବ ।'' ମନ୍ତ୍ରଣାକକ୍ଷରେ ଏକ ଜରୁରୀ ବିଷୟ ନେଇ ଆମ ରାଜଧାନୀ ଚମ୍ପାନଗରୀରୁ ଆସିଥିବା ସେନାପତିଙ୍କ ସହିତ ଆଲୋଚନା କରୁଥିବା ସମୟରେ ଦ୍ୱାରୀ ଆସି ମତେ କହିଲା । ସହସା ଆଲୋଚନା ବନ୍ଦ

କଲି । ଚିତ୍ରାର ନାଁ ଶୁଣି ଚମକି ପଡ଼ିଲି । ଚିତ୍ରା ଥିଲା ମାଆଙ୍କ ବ୍ୟକ୍ତିଗତ ଦାସୀ । ଅତି ପ୍ରିୟଜନ । ସବୁବେଳେ ପାଖେ ପାଖେ ଥାଏ । ଦିନରାତି ସେବା କରୁଥାଏ । ଏଇ କେତେ ଦିନ ହେଲା ମାଆଙ୍କ ଦେହ ଭଲ ରହୁ ନାହିଁ । ଅବିରତ ରାଜବୈଦ୍ୟ ଲାଗିଛନ୍ତି ଚିକିତ୍ସାରେ । କିନ୍ତୁ କିଛି ନାହିଁ ସୁଫଳ । ବରଂ ଦେହ ଦିନକୁ ଦିନ ଖରାପ ହେବାରେ ଲାଗିଛି ।

ଭାବିଲି, ମାଆଙ୍କ ଦେହ ହୁଏତ ଅଧିକ କିଛି ଖରାପ ହୋଇଉଠିଛି । ଦ୍ୱାରୀକୁ ଆଦେଶ ଦେଇ କହିଲି, ''ଶୀଘ୍ର ପଠାଇଦିଅ ଚିତ୍ରାକୁ ।''

ଚିତ୍ରା ଆସି ସଂଭ୍ରମର ସହିତ ଅଭିବାଦନ କଲା ମତେ ଏବଂ କହିଲା, ''ମହାରାଜ ! ରାଜମାତାଙ୍କ ଦେହ ଭାରି ଖରାପ । ବାଉଳି-ଚାଉଳି ହେଉଛନ୍ତି ।''

ବଡ଼ ବ୍ୟସ୍ତ ହୋଇଉଠିଲି । ସେନାପତିଙ୍କୁ କରିଦେଲି ବିଦାୟ । କହିଲି, ''ଏଇ ମୁଁ ଯାଉଛି । ରାଜବୈଦ୍ୟଙ୍କୁ ଖବର ଦିଆଯାଇଛି ?''

''ହଁ ମହାରାଜ ! ରାଜବୈଦ୍ୟ ଆସି ସାରିଛନ୍ତି ।''

''ହଉ ଚାଲ ଚିତ୍ରା ।'' ଏହା କହି ଚିତ୍ରା ସହିତ ହିଁ ଚାଲିଲି ମାତାଙ୍କ କକ୍ଷ ଅଭିମୁଖରେ ।

ସେଠାରେ ପହଞ୍ଚି ଯାହା ଦେଖିଲି, ସେଥିରେ ସମ୍ଭାଳି ପାରିଲି ନାହିଁ କୋହ । ଭୋ ଭୋ ହୋଇ କାନ୍ଦିଉଠିଲି ଶିଶୁ ଭଳି ଏବଂ ଲୋଟିପଡ଼ିଲି ତାଙ୍କ ଜୀର୍ଣ୍ଣଶୀର୍ଣ୍ଣ ପାଦତଳେ । ସେ ଥିଲେ ମୂର୍ଚ୍ଛିତା । ରାଜବୈଦ୍ୟ ବାରମ୍ବାର ଚେଷ୍ଟା କରୁଥିଲେ ଚେତା ଫେରାଇ ଆଣିବାକୁ । ଶଯ୍ୟାଧାରର ଗୋଟିଏ ପାର୍ଶ୍ୱରେ ଠିଆ ହୋଇଥାନ୍ତି ପିତା ଓ ମୋର ଦୁଇ ଅନୁଜ । ସମସ୍ତଙ୍କ ଆଖି ଲୁହରେ ଛଳ ଛଳ । ଏଇ ମୋ' ମମତାମୟୀ ମାଆ ରାଧା । ବିଗତ ଦିନର ସୂତ ଅଧିରଥଙ୍କ ପତ୍ନୀ । ଆଉ ଆଜି ଅଙ୍ଗରାଜ କର୍ଣ୍ଣଙ୍କ ମାତା । ସୂତପତ୍ନୀରୁ ଉଠି ଉଠି ରାଜମାତା ପାଇବାର ଯେଉଁ ସୌଭାଗ୍ୟ, ତାହାକୁ ପାଇ କେତେ ଖୁସି ହେଉ ନ ଥିଲେ ସେ ! ଅଥଚ ଆଜି ଶଯ୍ୟାଧାରରେ ନୀରବ-ନିଶ୍ଚଳ । କଳ କଳ ଛଳ ଛଳ ସ୍ରୋତସ୍ୱିନୀ ଗଙ୍ଗା ଯେମିତି ହଠାତ୍ ଆଜି ଯାଇଛି ଶୁଖି କି ଏକ ଦାରୁଣ ଅଭିଶାପରେ ! ଭାରି ଦୁଃଖ ଲାଗୁଥିଲା ମତେ ।

ରାଜବୈଦ୍ୟ ମତେ ସାନ୍ତ୍ୱନା ଦେବାକୁ ଯାଇ କହିଲେ, ''ମହାରାଜ ! ଆପଣ ଏମିତି ଅଧୈର୍ଯ୍ୟ ହେଲେ ଚଳିବ ? ଆପଣ ରାଜମାତାଙ୍କ ଜ୍ୟେଷ୍ଠସନ୍ତାନ । ଆପଣଙ୍କ ଉପରେ ଗୁରୁଦାୟିତ୍ୱ । ମୁଁ ତ ଚେଷ୍ଟା କରୁଛି ଚେତା ଫେରାଇ ଆଣିବା ପାଇଁ । ଧୈର୍ଯ୍ୟ ଧରନ୍ତୁ ।''

ସତରେ ମୁଁ ହୋଇଉଠିଥିଲି ଖୁବ୍ ଅଧୈର୍ଯ୍ୟ । ଯେଉଁ କର୍ଣ୍ଣ ପଥର ଭଳି ଏତେ ଏତେ ନିର୍ଯାତନା, ଅପମାନ, ଅବହେଳା ଓ ଉପେକ୍ଷା ସହିଆସିଛି ଜୀବନରେ ସେ ଆଜି ଅଧୈର୍ଯ୍ୟ । ଯେଉଁ କର୍ଣ୍ଣ ବଜ୍ରକୀଟର ଦାରୁଣଦଂଶନକୁ ଅକାତରେ ସହିଆସିଛି ଗୁରୁଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିଭାବ ଦେଖାଇବାକୁ ଯାଇ ସେ ଆଜି ଅସ୍ଥିର । ଭାବିପାରୁ ନ ଥାଏ କାହିଁକି ଆଜି ତରଳି ଯାଉଛି ସୂର୍ଯ୍ୟାଂଶୁର ପରଶରେ ଲହୁଣୀ ଭଳି ? କୌଣସିମତେ ଧୈର୍ଯ୍ୟ ଧରି ପଚାରିଲି ରାଜବୈଦ୍ୟଙ୍କୁ, ''କ'ଣ ହୋଇଛି ମାଆଙ୍କର ?''

''ହୃତ୍‌ସ୍ପନ୍ଦନ ତାଙ୍କର ଧୀରେ ଧୀରେ କମିବାରେ ଲାଗିଛି । ସାମାନ୍ୟ ଟିକିଏ ହୃଦ୍‌ଘାତ ହୋଇଛି । ବାର୍ଦ୍ଧକ୍ୟ ଅବସ୍ଥା । ସହିପାରୁ ନାହାନ୍ତି ।'' ବିଷଣ୍ଣତାଭରା ସ୍ୱରରେ କହିଲେ ସେ । ମୁଖମଣ୍ଡଳରେ ଆଶଙ୍କାର ଛାୟା । ପରକ୍ଷଣରେ କିନ୍ତୁ ଆମକୁ ଆଶ୍ୱାସନା ଦେବାକୁ ଯାଇ କହିଲେ, ''କିଛି ବ୍ୟସ୍ତ ହୁଅନ୍ତୁ ନାହିଁ । ଏଇ ରସ ଦୁଇ ଟୋପା ନାସାରନ୍ଧ୍ରରେ ଦେଉଛି । ହୃଦୟକୁ ଗତିଶୀଳ କରାଇବାରେ ସାହାଯ୍ୟ କରି ବା ରାଜମାତା ଚେତା ଫେରିପାଇବେ ।'' ଏହା କହି ସେ ସଙ୍ଗେ ସଙ୍ଗେ ଦୁଇ ଟୋପା ରସ ମାଆଙ୍କ ନାସାରନ୍ଧ୍ରରେ ଦେଲେ ।

ସେ ସତ କହିଥିଲେ । ହଠାତ୍ ଚଞ୍ଚଳ ହୋଇଉଠିଲେ ମାଆ ତଡ଼ିତ୍ ଗତିରେ । ଆଖି ଖୋଲି ଚାହିଁଲେ । ମୁଁ ପ୍ରଥମେ ପଡ଼ିଲି ତାଙ୍କ ଆଖିରେ । ପ୍ରସନ୍ନ ହସଟିଏ ହସି ଥରାଇ ଦେଲେ ତାଙ୍କ ଓଠ । ଡାକିଲେ, ''ବାପା ବନ୍ଧୁ....'' କରିପାରିଲେ ନାହିଁ ବସୁ ବୋଲି ଉଚ୍ଚାରଣ । ଆଉ କଥା ନାହିଁ । ଏତିକିରେ ନୀରବ । ପୁଣି ମୂର୍ଚ୍ଛିତା । ସେଇ ଆଖି ବନ୍ଦ କଲେ ଯେ ଆଉ ଖୋଲିଲେ ନାହିଁ । ତାହା ବନ୍ଦ ହୋଇଗଲା ଚିରଦିନ ଲାଗି । ମୁଁ ଓ ମୋର ଭାଇ ଦୁହେଁ – ଆମେ ହୋଇଗଲୁ ମାତୃହୀନା । ମାଆଙ୍କ ପଣତକାନିର ଛାୟା ଆମପାଇଁ ଦୂର ହୋଇଗଲା ଚିରଦିନ ପାଇଁ । ହାୟ ଆମ ଭାଗ୍ୟ !

ଦୁଃଖ ପରେ ଦୁଃଖ । ବିପଦ ପରେ ବିପଦ । ମାଆଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସରିବାର ପର ଦିନ ହିଁ ପିତା ଚାଲିଗଲେ ସେ ପୁରକୁ । ଆମେ ଭାଇମାନେ ହୋଇଗଲୁ ପିତୃହୀନ । ଭାଇ-ବନ୍ଧୁମାନେ କହିଲେ, ସୂତଦମ୍ପତି ଖୁବ୍ ଭାଗ୍ୟବାନ୍ । ପତ୍ନୀ ସଧବା ଥାଇ ଗଲେ ସେ ପୁରକୁ । ପତି ବି ଗଲେ ତାଙ୍କ ପଛେ ପଛେ । ସତେଯେମିତି ଦୁହେଁ ଡକାଡକି ହୋଇ ଚାଲିଗଲେ । ଗୋଟିଏ ଆଦର୍ଶ ଦମ୍ପତିର ପ୍ରଶଂସା । କିନ୍ତୁ ଆମେ କ'ଣ ପାଇଲୁ ? ଖାଲି ସିନା ମୁଠିଏ ମୁଠିଏ ଚିତାଭସ୍ମ । ତାହାକୁ ହିଁ ସ୍ମୃତିଜଳରେ ପଖାଳିବା ହେଲା ସାର ! ପିତାମାତା କେବଳ ଆମ ସ୍ମୃତିରେ ହିଁ ରହିଗଲେ ।

ଅନେକ ଦିନ ଧରି ପିତାମାତାଙ୍କୁ ହରାଇ ଦୁଃଖରେ ବୁଡ଼ି ରହିଥିଲି । ଏଇ ଦୁଃଖ କିଛିଟା ଉପଶାନ୍ତ ହେଲା ଯେତେବେଳେ ବର୍ଷର ଶେଷ ଭାଗରେ ହେଲି ଏକ ପୁତ୍ରସନ୍ତାନର ଜନକ । ମନରେ ମୋର ଏତିକି କ୍ଷୋଭ ଯେ ଜୀବିତାବସ୍ଥାରେ ପିତାମାତା ଦେଖିପାରିଲେ ନାହିଁ ନବଜାତ ପୌତ୍ରର ମୁଖ । ଅଥଚ କେତେ ବ୍ୟାକୁଳ ହେଉଥିଲେ ସେଥିଲାଗି ! କେତେ ଦୁଃଖ କରୁଥିଲେ କୁଳରକ୍ଷା ଲାଗି ଏକ କୁଳର ପ୍ରଦୀପକୁ ଦେଖିପାରି ନ ଥିବା କାରଣରୁ !

ପିତାଙ୍କ ସ୍ମୃତିକୁ ଚିର ଉଜ୍ଜୀବିତ ରଖିବାପାଇଁ ନବଜାତକଟିର ନାମକରଣ ହେଲା ବୃଷସେନ ବୋଲି । କାରଣ ବୃଷ ନାମଟି ଥିଲା ତାଙ୍କର ଅତି ପ୍ରିୟ । ପୁଣି ବୃଷ ବି ଥିଲା ମୋ' ପ୍ରିୟ ଗୁରୁ ଆଦିତ୍ୟଦେବଙ୍କ ନାମାନ୍ତର । ସେହି ବୃଷସେନ ଭବିଷ୍ୟତରେ ହେଲେ ଜଣାଶୁଣା ଆଉ ଏକ ନାମରେ, ବୃଷକେତୁ ବୋଲି । ନାମରେ ଯେତେ ଯାହା ଯୋଗ ହେଉ ନା କାହିଁକି, ଅକ୍ଷୁଣ୍ଣ ରହିଥିଲା ପିତାଙ୍କ ପ୍ରିୟ ନାମ ବୃଷ ।

ମନରେ କେତେ ଆଶା ରଖିଥିଲି କନ୍ୟା ସନ୍ତାନଟିଏ ଯଦି ହୁଏ, ତେବେ ତା'ର ନାଁ ଦେଇଥାନ୍ତି ବୃଷଭାନୁଜା ବୋଲି । ଏଥିରେ ମାଆଙ୍କ ସ୍ମୃତି ରଖିଥାନ୍ତି । ଆଉ ରଖି ବି ଥାନ୍ତି ପିତାଙ୍କ ସ୍ମୃତି ତାଙ୍କର ଅତି ପ୍ରିୟ ବୃଷ ନାମଟିକୁ ପ୍ରୟୋଗ କରି । କିନ୍ତୁ ତାହା ଆଶାରେ ହିଁ ରହିଗଲା । କନ୍ୟାସନ୍ତାନର ଜନକ ହୋଇପାରିଲି ନାହିଁ ।

ଧୀରେ ଧୀରେ ଚନ୍ଦ୍ରକଳା ଭଳି ବଢ଼ିବାକୁ ଲାଗିଲା ନବଜାତକ । ମୁଁ ମଧ ଧୀରେ ଧୀରେ ଭୁଲିଯିବାକୁ ଲାଗିଲି ପିତାମାତାଙ୍କ ମୃତ୍ୟୁଜନିତ ଶୋକକୁ ।

## ଛପନ

ସମୟ ଯେତେ ଅତିକ୍ରାନ୍ତ ହେଉଥାଏ, ପାଣ୍ଡବମାନଙ୍କର ଉନ୍ନତି ସେତେ ହେଉଥାଏ ଅଧିକରୁ ଅଧିକ । ମିତ୍ର ଦୁର୍ଯ୍ୟୋଧନଙ୍କ ସେମାନଙ୍କ ପ୍ରତି ଥିବା ଈର୍ଷା ସେତେ ଉଠୁଥାଏ ବଢ଼ି । ମାତୁଳ ଶକୁନିଙ୍କ ପ୍ରତିକ୍ରିୟାର ପ୍ରକୃତ ରୂପାୟନ ଦେଖିବାକୁ ମିଳି ନ ଥାଏ ଏ ପର୍ଯ୍ୟନ୍ତ । କେବଳ ମଝିରେ ମଝିରେ ଦୁଇ-ଚାରି ପଦ କଥା କହି ଦୁର୍ଯ୍ୟୋଧନଙ୍କ ମନରେ ସେ ପାଣ୍ଡବବିଦ୍ୱେଷକୁ ବଢ଼ାଉଥାନ୍ତି ମାତ୍ର । ଅଜଗରସାପଟି ଭଳି ଶୋଇ ରହିଥାନ୍ତି ପଥରଟି ଭଳି । ବିଷାକ୍ତ ନିଃଶ୍ୱାସପବନରେ ରାଜଭବନର ବାତାବରଣକୁ କରୁଥାନ୍ତି ଜର୍ଜର । ଅଧୈର୍ଯ୍ୟ ନ ହୋଇ ପଡ଼ି ରହିଥାନ୍ତି ସୁଯୋଗର ଅପେକ୍ଷାରେ । କେତେବେଳେ ତାହା ଶିକାରଟିର ରୂପ ଧରି ଆସିଲେ ଭିଡ଼ିଧରିବେ ତନୁର ବଳୟରେ ଓ କରିବେ ଉଦରସାତ୍ ।

ଗୋଟିକ ପରେ ଗୋଟିଏ କରି ବିଚିତ୍ର ସଂବାଦମାନ ଆସି ପହଞ୍ଚୁଥାଏ ପାଣ୍ଡବମାନଙ୍କ ସଂପର୍କରେ । ଦ୍ୱାରିକାଧିପତି କୃଷ୍ଣଙ୍କର ସେମାନଙ୍କ ସହିତ ମିଳନ ଘଟୁଥାଏ ବାରମ୍ବାର । କେତେବେଳେ ପ୍ରକାଶ୍ୟରେ ତ ଆଉ କେତେବେଳେ ପ୍ରଚ୍ଛନ୍ନରେ । କିଛି ଗୋଟାଏ ଗୁରୁତର ବିଷୟ ନେଇ ଆଲୋଚନା କରୁଥାନ୍ତି ବୋଧହୁଏ । ରାଜା ଯୁଧିଷ୍ଠିର ମଧ୍ୟେ ମଧ୍ୟେ ଭାଇମାନଙ୍କୁ ସାଥିରେ ଧରି ଯାଉଥାନ୍ତି ମହର୍ଷି ବ୍ୟାସଦେବଙ୍କ ଆଶ୍ରମକୁ । ତାଙ୍କ ପରାମର୍ଶ ନେଉଥାନ୍ତି । ଆଉ ପୌତ୍ର ଭାବରେ ପାଉଥାନ୍ତି ତାଙ୍କ ଆଶୀର୍ବାଦ । ଲକ୍ଷ୍ୟ କରି ଆସୁଛି, ପିତାମହ ଭୀଷ୍ମଙ୍କ ଭଳି ପିତାମହ ବ୍ୟାସଦେବଙ୍କର ମଧ ପାଣ୍ଡବମାନଙ୍କ ପ୍ରତି ଅଛି ବିଶେଷ ସ୍ନେହଭାବ । ଇନ୍ଦ୍ରପ୍ରସ୍ଥ ଯେ ଏକ ସୁଶାସିତ ରାଜ୍ୟ ଏ ବିଷୟରେ ଡିବି ଡିବି ହୋଇ ଡିଣ୍ଡିମ ପିଟା ଯାଉଥାଏ ଚାରିଆଡ଼େ । ଅତି ପ୍ରାଚୀନ କାଳରେ ଏହାର ଯାହା କିଛି ଗୌରବ ଥିଲା, ତାହା ତ କେବଳ ଫେରିଆସି ନ ଥାଏ, ତାହା ବରଂ ଅଧିକ ଗୁଣରେ ଯାଇଥାଏ ବଢ଼ି । ଇନ୍ଦ୍ରପ୍ରସ୍ଥ ଏବେ ହସ୍ତିନାପୁରଠାରୁ ଅଧିକ ସମୃଦ୍ଧିସମ୍ପନ୍ନ । କୁରୁ-ରାଜ୍ୟରୁ ଅନେକ ପ୍ରଜା ଯାଇ ରହିବାକୁ ଲାଗିଥାନ୍ତି ଏଠାରେ । ଏହାର ଅରଣ୍ୟମାନ ଏବେ ଋଷି-ମୁନିମାନଙ୍କ ଆଶ୍ରମଗୁଡ଼ିକରେ ସମାକୀର୍ଣ୍ଣ । ଧର୍ମନନ୍ଦନ ଯୁଧିଷ୍ଠିରଙ୍କ ରାଜ୍ୟରେ କେବଳ ଧର୍ମର ହିଁ ରାଜୁତି । ପାପ, ଅଧର୍ମ, ଅନ୍ୟାୟ, ଅତ୍ୟାଚାର ଆଦି କାହିଁ କେଉଁ ଅନ୍ଧାରୁଆ ଗୁହାରେ ଲୁଚାଇ ଦେଇଥାନ୍ତି ମୁହଁ ଯେମିତି । ଏହାହିଁ ଏବେ ଲୋକମୁଖରେ ପ୍ରଚାରିତ ।

ହଠାତ୍ ଦିନେ ଗୋଟିଏ ସଂବାଦ ଆମ ସମସ୍ତଙ୍କୁ କରିଦେଲା ଚମତ୍କୃତ । ମଗଧର ରାଜା ପ୍ରବଳପ୍ରତାପୀ ଜରାସନ୍ଧ ଆଉ ଜଗତରେ ନାହାନ୍ତି । ଭୀମସେନ ତାଙ୍କୁ ପଠାଇ ଦେଇଛନ୍ତି ଆରପୁରକୁ ମଲ୍ଲଯୁଦ୍ଧ ମାଧ୍ୟମରେ । ତାଙ୍କଦ୍ୱାରା ବନ୍ଦୀ ଅବସ୍ଥାରେ ଥିବା ଶତ ଶତ ରାଜା ଏବେ ମୁକ୍ତ । ସେମାନେ ସମସ୍ତେ ନିଜ ନିଜ ରାଜ୍ୟକୁ ଫେରିଯାଇ ବଶ୍ୟତା ସ୍ୱୀକାର କରିଛନ୍ତି ରାଜା ଯୁଧିଷ୍ଠିରଙ୍କର । ଇନ୍ଦ୍ରପ୍ରସ୍ଥ ଶାସନର ସୀମାର ବଳୟ ଏବେ ବଢ଼ିଯାଇଛି ବହୁଗୁଣ ଭାବରେ । ହସ୍ତିନାପୁର ତ ତାହା ତୁଳନାରେ କିଛି ହିଁ ନୁହେଁ । ବିରାଟ ଏକ ତୁମ୍ବିଫଳ ନିକଟରେ କ୍ଷୁଦ୍ର ତିଳ ଦାନା ସହିତ ସମାନ ।

ପ୍ରଥମେ ବିଶ୍ୱାସ କରିପାରି ନ ଥିଲି ଏ ସମ୍ବାଦକୁ । କାରଣ ଜାଣିଥିଲି, ଜରାସନ୍ଧ ଭୀମସେନଙ୍କଠାରୁ ଯଥେଷ୍ଟ ଅଧିକ ବଳଶାଳୀ । ମଲ୍ଲଯୁଦ୍ଧରେ ସାରା ଜଗତରେ ତାଙ୍କ ସମାନ ଦ୍ୱିତୀୟ ଜଣେ ନାହାନ୍ତି କେହି । ତାଙ୍କ ଭୟରେ ସ୍ୱୟଂ କୃଷ୍ଣଙ୍କୁ ବି ତ ଲୁଚି ରହିବାକୁ ପଡ଼ିଛି ପଶ୍ଚିମ ସମୁଦ୍ରରେ ଏକ ସ୍ୱତନ୍ତ୍ର ଓ ସୁରକ୍ଷିତ ନଗରୀ ନିର୍ମାଣ କରି ଯାହା ଏବେ ଦ୍ୱାରକା ବୋଲି ବିଖ୍ୟାତ । କିନ୍ତୁ ଯେତେବେଳେ ଶୁଣିଲି ଯେ କୃଷ୍ଣଙ୍କ ସହାୟତା ନେଇ ଭୀମସେନ ଏହା କରିଛନ୍ତି ବୋଲି, ସେତେବେଳେ ମୋର ବିଶ୍ୱାସ ନ କରିବାକୁ ଆଉ ନ ଥିଲା ଗତ୍ୟନ୍ତର । କାରଣ ମୁଁ ଜାଣିଥିଲି କୃଷ୍ଣଙ୍କ ଶତ୍ରୁ ହୋଇ କେହି ବଞ୍ଚି ରହିପାରିବେ ନାହିଁ ଏ ଜଗତରେ । ସବୁ କଥା ତାଙ୍କୁ ଜଣା । ତ୍ରିକାଳଦର୍ଶୀ ସେ । ଅତ୍ୟନ୍ତ ଚତୁର । କେଉଁ କାମ କେତେବେଳେ ଓ କିପରି କରିବାକୁ କିମ୍ବା କରାଇବାକୁ ହେବ ତାଙ୍କୁ ଜଣା ଭଲଭାବରେ । ହୁଏତ ମାତୁଳ ଶକୁନିଙ୍କ ଭାଷାରେ ସେ ଚିରକପଟୀ । କପଟୀମାନଙ୍କ ଗୁରୁ । କିନ୍ତୁ ମୋ' ମତରେ ସେ ଜଣେ ଅଲୌକିକ ବ୍ୟକ୍ତିତ୍ୱ । ଆମେ ଯେଉଁମାନେ ତାଙ୍କୁ ନିଜ ଜୀବଦ୍ଦଶାରେ ଦେଖିବାକୁ ପାଇଥାଇଁ ସେମାନେ ବାସ୍ତବିକ ଧନ୍ୟ । ଅର୍ଜୁନଙ୍କ ଭଳି ଯେଉଁ ବୀର ତାଙ୍କୁ ପାଇଛନ୍ତି ନିଜ ସଖା ଓ ବନ୍ଧୁ ଭାବରେ ସେ ଯେ କେତେଦୂର ଧନ୍ୟ, ତାହା କଳନା ହିଁ କରିହେବ ନାହିଁ । ଏଇ କଥା ଭାବିଲା ବେଳକୁ ମୁଁ ଆପେ ଆପେ ଦବିଯାଏ । ନୈରାଶ୍ୟର ବନ୍ୟାରେ ହୁଏ ଆପ୍ଳୁତ । ଏଭଳି କୃଷ୍ଣସଖ ଅର୍ଜୁନଙ୍କ ସହିତ କ'ଣ ମୁଁ ସଫଳ ଭାବରେ ଅପ୍ରସ୍ପର୍ଦ୍ଧା କରିପାରିବି ? ଶୂନ୍ୟ ଆକାଶରେ ପ୍ରାସାଦଟିଏ ଗଢ଼ି ତୋଳିପାରିବି ? କେମିତି କେମିତି ହତାଶାଭାବ ଆସେ ମନରେ ।

ହଁ, ଜରାସନ୍ଧଙ୍କ ବଧ କଥା କହୁଥିଲି ପରା । ଭୀମସେନ ଓ କୃଷ୍ଣ ଦୁହେଁ ଯାଆନ୍ତି ମଗଧର ରାଜଧାନୀ ରାଜଗୃହକୁ ବ୍ରାହ୍ମଣରୂପରେ । ଜରାସନ୍ଧକୁ ମାଗନ୍ତି ମଲ୍ଲଯୁଦ୍ଧର ଦାନ । ଏଇ ଅଦ୍ଭୁତ ଯାଚନାରେ ଠୋ ଠୋ ହୋଇ ହସିଉଠନ୍ତି ମଗଧରାଜ । ଦୁହିଁଙ୍କ ମଧ୍ୟରୁ ଭୀମସେନଙ୍କୁ ସୁସ୍ଥ-ସବଳ ଦେଖି ତାଙ୍କୁ ହିଁ ଚୟନ କରନ୍ତି ମଲ୍ଲଯୁଦ୍ଧର ପ୍ରତିଦ୍ୱନ୍ଦୀ ଭାବରେ । ପ୍ରବଳ ମଲ୍ଲଯୁଦ୍ଧ ଆରମ୍ଭ ହୋଇଯାଏ ଉଭୟଙ୍କ ମଧ୍ୟରେ । ଭୀମସେନ ଧୀରେ ଧୀରେ ହୋଇଉଠନ୍ତି ଦୁର୍ବଳ ଓ ଅବସନ୍ନ । ଆଉ କେତୋଟି ମୁହୂର୍ତ୍ତରେ ହୁଏତ କବଳିତ ହେବେ ଜରାସନ୍ଧଙ୍କ ଦ୍ୱାରା । ଏତିକିବେଳେ କୃଷ୍ଣ ଆପଣାର ଉତ୍ତରୀୟକୁ ଚିରି ଦିଅନ୍ତି ଦୁଇ ଖଣ୍ଡ କରି । ଏହାର ତାତ୍ପର୍ଯ୍ୟ ବୁଝିପାରନ୍ତି ଭୀମସେନ । ସଙ୍ଗେ ସଙ୍ଗେ ପ୍ରବଳ ବିକ୍ରମ ଦେଖାଇ ଜରାସନ୍ଧଙ୍କ ଦୁଇ ଗୋଡ଼ ଧରି ତାଙ୍କୁ ଚିରି ଦିଅନ୍ତି ଦୁଇ ଫାଳ କରି । ସଙ୍ଗେ ସଙ୍ଗେ ଭୀଷଣ

ଆର୍ତ୍ତନାଦ କରି ପ୍ରାଣ ହରାନ୍ତି ଜରାସନ୍ଧ । ଏଭଳି ଅଭିଶପ୍ତ ମରଣରେ ସେ ଅଧିକାରୀ ବୋଲି ଆଗରୁ ଜାଣିଥାନ୍ତି ତ୍ରିକାଳଦର୍ଶୀ କୃଷ୍ଣ ଓ ସେ ବିଷୟରେ ପୂର୍ବସୂଚନା ଦେଇଥାନ୍ତି ଭୀମସେନଙ୍କୁ । ଭୀମସେନ କିନ୍ତୁ ମଲ୍ଲଯୁଦ୍ଧର ବ୍ୟସ୍ତତାରେ ଭୁଲି ଯାଇଥାନ୍ତି । ଉତ୍ତରୀୟଟିକୁ ଦୁଇ ଫାଳ କରି ଚିରିଦେବା ଦ୍ୱାରା କୃଷ୍ଣ ତାହା ମନେ ପକାଇଦିଅନ୍ତି ମାତ୍ର ।

ଭୀମସେନଙ୍କ ହସ୍ତରେ ଜରାସନ୍ଧଙ୍କ ମୃତ୍ୟୁ ହୋଇଥିବାର ସଂବାଦ ଶୁଣି ମିତ୍ର ଦୁର୍ଯ୍ୟୋଧନ ଖୁବ୍ ଆତଙ୍କିତ ହୋଇଉଠିଥିଲେ । ଆଉ ହୋଇଉଠିଥିଲେ ବି ମ୍ରିୟମାଣ । କିନ୍ତୁ ପିତାମହ ଭୀଷ୍ମ ଖୁବ୍ ଆନନ୍ଦିତ । ଯେତେହେଲେ ଭୀମସେନ ତ ତାଙ୍କ ପୌତ୍ର । ତାଙ୍କରି ବଂଶର ଗୌରବ । କୁରୁବଂଶର ମଧ୍ୟମଣି ଭଳି ଜାଜ୍ୱଲ୍ୟମାନ । ସେଦିନ ଖୁସିରେ ସେ କରିଥିଲେ ମିଷ୍ଟାନ୍ନ-ବଣ୍ଟନ ।

ଏ ତ ଗଲା ଭୀମସେନଙ୍କ କଥା । ଅର୍ଜୁନଙ୍କ ବିଷୟ ନେଇ ବି ସେମିତି ଶୁଣିବାକୁ ମିଳିଲା ବିଚିତ୍ର ସମ୍ବାଦମାନ ।

ଦ୍ରୌପଦୀଙ୍କ ପଞ୍ଚପତି । କାହାଙ୍କ ସହିତ କେମିତି ସେ ସମୟ ବିତାଇବେ ଏଥର ଏକ ବିଚିତ୍ର ବ୍ୟବସ୍ଥା କରିଥାନ୍ତି ପାଣ୍ଡବମାନେ । ଆଉ ଏଇ ବ୍ୟବସ୍ଥାଟିକୁ ପାଳୁଥାନ୍ତି ଖୁବ୍ କଡ଼ାକଡ଼ି ଭାବରେ । ପଞ୍ଚପତିଙ୍କ ମଧ୍ୟରେ ଏକ ପତ୍ନୀଙ୍କର ସମୟ ବିଭାଜନ ନେଇ କିଛି ହିଁ ଭୁଲ ବୁଝାମଣା ହେଉ ନ ଥାଏ ଏହାଦ୍ୱାରା । ଦ୍ରୌପଦୀ ବରିଷ୍ଠତା ଅନୁକ୍ରମରେ ପ୍ରତ୍ୟେକ ପତିଙ୍କ ସହିତ ରହିବେ ଏକ ବର୍ଷ ଧରି । ସେ ଜଣେ କୌଣସି ପତିଙ୍କ ସହିତ କକ୍ଷରେ ଥିଲେ ଅନ୍ୟ ପତିଙ୍କର ବାରଣ ତାହା ମଧ୍ୟରେ ପ୍ରବେଶ କରିବାପାଇଁ । ଏହି ବାରଣକୁ ଯଦି କେହି ନ ମାନନ୍ତି, ତେବେ ତାଙ୍କୁ ଦଣ୍ଡ ଗ୍ରହଣ କରିବାକୁ ହେବ । ଏମିତି ସେମିତି ଦଣ୍ଡ ନୁହେଁ । ଦୀର୍ଘ ବାର ବର୍ଷ ପାଇଁ ବନବାସ କରିବାକୁ ହେବ ।

ଦିନକର କଥା । ସେଦିନ ଦ୍ରୌପଦୀଙ୍କ ସହିତ ଗୋଟିଏ କକ୍ଷରେ ସମୟ ବିତାଉଥାନ୍ତି ରାଜା ଯୁଧିଷ୍ଠିର । ଏକ ଜରୁରୀ ଆବଶ୍ୟକତା ନେଇ ଅର୍ଜୁନଙ୍କୁ ପ୍ରବେଶ କରିବାକୁ ହୁଏ ସେଇ କକ୍ଷରେ । ତାହା ଅବଶ୍ୟ ଥାଏ ରାଜକାର୍ଯ୍ୟ ପାଇଁ । ଜଣେ ବ୍ରାହ୍ମଣଙ୍କ ଗୋଧନ ଅପହରଣ କରିନେଉଥିବା ଦସ୍ୟୁକୁ ପ୍ରତିହତ କରିବାପାଇଁ ଅର୍ଜୁନଙ୍କୁ ଅସ୍ତ୍ର ସଂଗ୍ରହ କରିବାକୁ ପଡ଼େ ସେହି କକ୍ଷରୁ । ନଚେତ୍ ବ୍ରାହ୍ମଣ ଅଭିଶାପ ଦେବେ ରାଜାଙ୍କୁ । ଏଥିପାଇଁ ଧମକ ବି ଦେଇଥାନ୍ତି । ରାଜାଙ୍କୁ ଅଭିଶାପରୁ ମୁକ୍ତ କରିବା ଓ ନିଜେ ବନବାସଦଣ୍ଡ ଭୋଗିବା – ଏଇ ଦୁଇଟିରୁ ବନବାସଦଣ୍ଡକୁ ସ୍ୱାଗତ କରିନିଅନ୍ତି ଅର୍ଜୁନ । ବ୍ରାହ୍ମଣ ତାଙ୍କ ହୃତ ଗୋଧନ ଫେରିପାଆନ୍ତି । କିନ୍ତୁ ପୂର୍ବ ପ୍ରତିଶ୍ରୁତିକୁ ରକ୍ଷା କରି ଅର୍ଜୁନ ଭୋଗନ୍ତି ଦୀର୍ଘ ବାରବର୍ଷର ବନବାସ ଦଣ୍ଡ ।

କିନ୍ତୁ ଏଇ ବନବାସରେ ଅନେକ କିଛି ଲାଭ ହୁଏ ତାଙ୍କର । ସୌଭାଗ୍ୟକ୍ରମେ ପଶୁପତି ଶଙ୍କରଙ୍କୁ ତୁଷ୍ଟ କରନ୍ତି ସେ । ତାଙ୍କଠାରୁ ପାଆନ୍ତି ପାଶୁପତ ଅସ୍ତ୍ର । ଇନ୍ଦ୍ର ପୂର୍ବ ପ୍ରତିଶ୍ରୁତି ରକ୍ଷା କରି ତାଙ୍କୁ ଦିଅନ୍ତି ସକଳ ଦିବ୍ୟାସ୍ତ୍ରର ଜ୍ଞାନ । ଏଥିରେ ସେ ହୋଇଉଠନ୍ତି ଅମିତ ପରାକ୍ରମୀ । ସେଭଳି ସୌଭାଗ୍ୟ ତ ମୋ' ଜୀବନରେ ଘଟି ନାହିଁ । ଘଟିବାର ମଧ୍ୟ ଆଶା ନାହିଁ । କାରଣ ଦୈବଦ୍ୱାରା ଅଭିଶପ୍ତ ମୁଁ ସୂତପୁତ୍ର କର୍ଣ୍ଣ । ତେଣୁ ମନରେ ମୋର ସନ୍ଦେହ ।

ହୁଏତ ଅସ୍ତ୍ରସ୍ପର୍ଦ୍ଧାରେ ଆଉ ହୋଇପାରିବି ନାହିଁ ତାଙ୍କ ସମକକ୍ଷ । ଅର୍ଜୁନ ରହିଯିବେ ଶ୍ରେଷ୍ଠତମ ବୀର ହୋଇ । ତଥାପି କେଜାଣି କାହିଁକି ମନରେ ମୋର ବାରମ୍ବାର ଜାଗିଉଠୁଛି ବାସନା, ଥରେ ହେଲେ ତାଙ୍କର ମୁହାଁମୁହିଁ ହେବାପାଇଁ । ତାଙ୍କ ସହିତ ଯୁଦ୍ଧ କରି ବୀରଗତି ପାଇଲେ ବି ମନରେ କିଛି କ୍ଷୋଭ ରହିବ ନାହିଁ । ବଣମଲ୍ଲୀ ଭଳି ଝଡ଼ି ପଡ଼ିବା ପୂର୍ବରୁ ମୋର ମହକ ଟିକକ ତ ଦେଇଯାଇଥିବି ଏଇ ଜଗତକୁ । ଜଗତ ତ କହିବ ଯେ କର୍ଣ୍ଣ ମରି ନାହିଁ ଭୀରୁ ଅଥବା କାପୁରୁଷ ଭଳି । ବରଂ ମରିଛି ବୀରର ମରଣ । ହଁ, ବୀରର ମରଣ ଯାହା ସକଳ ବୀରଙ୍କ କାମ୍ୟ । ପ୍ରଭୁଙ୍କୁ ମୋର ପ୍ରାର୍ଥନା ଥରେ ହେଲେ ସେଇ ସୁଯୋଗଟି ଆସୁ ମୋ' ଜୀବନରେ ।

ଇନ୍ଦ୍ରଭୁବନରେ ଥିଲା ବେଳେ ଅର୍ଜୁନଙ୍କ ଜୀବନରେ ଘଟେ ଏକ ବିପର୍ଯ୍ୟୟ । ସେ ଦେବାଙ୍ଗନା ଉର୍ବଶୀଙ୍କ ଦ୍ୱାରା ହୁଅନ୍ତି ଅଭିଶପ୍ତ । ଉର୍ବଶୀଙ୍କ ପ୍ରଣୟପ୍ରାର୍ଥନାକୁ ପ୍ରତ୍ୟାଖ୍ୟାନ କରନ୍ତି ବିନୀତ ଭାବରେ ତାଙ୍କୁ ମାତୃମାନ୍ୟତା ଦେଇ । କିନ୍ତୁ କୁପିତା ଉର୍ବଶୀ ତାଙ୍କୁ ଚିରଦିନ ନପୁଂସକ ରହିବାର ଅଭିଶାପ ଦିଅନ୍ତି । ବଡ଼ ଭୀଷଣ ଅଭିଶାପ । କାମନାରେ ଜଳିପୋଡ଼ି ମରୁଥିବା ଜଣେ ନାରୀର ବ୍ୟର୍ଥତାରେ କୁହୁଳୁଥିବା ଅଭିଶାପ ! ଇନ୍ଦ୍ର ଏ କଥା ଜାଣିପାରନ୍ତି । ଦୈବ ଅଭିଶାପ ତ ଲଂଘନ କରାଯାଇପାରେନା । ତେଣୁ ଅଭିଶାପକୁ କୋହଳ କରିଦେଇ ଇନ୍ଦ୍ର କହନ୍ତି, ''ହେ ଅର୍ଜୁନ ! ତୁମକୁ ଏଇ ଦୈବ ଅଭିଶାପ ଭୋଗିବାକୁ ହିଁ ପଡ଼ିବ । କିନ୍ତୁ ସାରା ଜୀବନ ଧରି ନୁହେଁ । ଗୋଟିଏ ମାତ୍ର ବର୍ଷ ପାଇଁ । ଏହା ସେତେବେଳେ ତୁମ ପାଇଁ ଆଶୀର୍ବାଦ ଭଳି ହେବ ।'' ଏ ସଂବାଦ ପାଇଲା ବେଳେ ଜାଣିପାରି ନ ଥିଲି ଏହାର ରହସ୍ୟ । ଅଭିଶାପ କିପରି ଆଶୀର୍ବାଦ ହେବ ପାରି ନ ଥିଲି କଳ୍ପନା କରି । ପରେ କିନ୍ତୁ ଘଟଣାପ୍ରବାହରେ ଯାହା କିଛି ଘଟିଗଲା, ତହିଁରୁ ବୁଝିପାରିଲି ଏହାର ରହସ୍ୟ । ସେ କଥା ପରେ ଖୋଲିକରି କହିବି ।

ବାସ୍ତବିକ ଗୋଟିଏ ଦୃଷ୍ଟିରୁ ଦେଖିଲେ ଅର୍ଜୁନଙ୍କ ବାରବର୍ଷର ଦଣ୍ଡବିଧାନ ହୁଏ ପତ୍ନୀଲାଭରେ ପୁଷ୍ପିତ ଓ ଫଳାନ୍ୱିତ । ସେ ଜଣଙ୍କ ପରେ ଜଣେ କରି ପାଆନ୍ତି ନୂତନ ପତ୍ନୀ । ନାଗରାଜ କୁମାରୀ ଉଲୁପୀ ଓ ମଣିପୁରର ରାଜକୁମାରୀ ଚିତ୍ରାଙ୍ଗଦା ସେମାନଙ୍କ ମଧ୍ୟରୁ ଜଣେ ଜଣେ । ଶୁଣିଥିଲି, ଚିତ୍ରାଙ୍ଗଦାଙ୍କ ହୃଦୟ କୁଆଡ଼େ ଭାରି କଠିନ । ସର୍ବଦା ପୁରୁଷବେଶ । ପୁରୁଷ ଭଳି ଆଚରଣ । ତାଙ୍କ ହୃଦୟକୁ ଯେ ଅର୍ଜୁନ କିପରି ଜିଣିପାରିଲେ ଏହା ବଡ଼ ଆଶ୍ଚର୍ଯ୍ୟର କଥା । ତୃତୀୟା ପତ୍ନୀ କୃଷ୍ଣଙ୍କ ଭଗିନୀ ସୁଭଦ୍ରା । ରୈବତକ ପର୍ବତରେ ସେ ପୂଜା କରୁଥିବା ଅବସରରେ ତାଙ୍କୁ ଅପହରଣ କରନ୍ତି ଅର୍ଜୁନ । ସବୁ କଥା ଅବଶ୍ୟ କୃଷ୍ଣଙ୍କ ଜ୍ଞାତସାରରେ । ଯାଦବବାହିନୀଙ୍କ ସହିତ ତାଙ୍କର ହୁଏ ଘୋର ଯୁଦ୍ଧ । ବଡ଼ ଆଶ୍ଚର୍ଯ୍ୟ କଥା ! ଏଇ ଯୁଦ୍ଧରେ ସ୍ୱୟଂ ସୁଭଦ୍ରା ହିଁ ଧରିଥାନ୍ତି ଅର୍ଜୁନଙ୍କ ରଥର ବାଗ୍‌ଡୋର । ନିଜ ଇଚ୍ଛା ଅନୁସାରେ ଯେ ସେ ଅପହୃତା ଏହା ଜଣାପଡ଼େ । କୃଷ୍ଣଙ୍କ ପ୍ରରୋଚନାରେ ବଳରାମସମେତ ଅନ୍ୟାନ୍ୟ ଯାଦବବୀରମାନେ ଏହା ଜାଣିପାରି ଶେଷରେ ବିରତ ହୁଅନ୍ତି ଯୁଦ୍ଧରୁ । ଅର୍ଜୁନ ସ୍ୱପତ୍ନୀ ସୁଭଦ୍ରାଙ୍କୁ ଧରି ଫେରିଆସନ୍ତି ଇନ୍ଦ୍ରପ୍ରସ୍ଥ ନଗରୀକୁ । ସେତେବେଳକୁ ତାଙ୍କ ବନବାସର ଅବଧି ସରିଯାଇଥାଏ ।

ସୁଭଦ୍ରାଙ୍କୁ ବିବାହ କରିବା ପରେ ଅର୍ଜୁନଙ୍କର କୃଷ୍ଣଙ୍କ ସହିତ ବନ୍ଧନ ହୋଇଉଠେ ଆହୁରି ନିବିଡ଼ତର । ପ୍ରଥମେ ସେ କୃଷ୍ଣଙ୍କ ପିଉସୀ ପୁଅ ଭାଇ । ଦ୍ୱିତୀୟରେ ସଖା । ଏବେ ହୁଅନ୍ତି ତାଙ୍କର ଭଗିନୀପତି । ଅତି ସୁଗଭୀର ବନ୍ଧନରେ ଆବଦ୍ଧ । ଏଥିରେ ଲାଭବାନ୍ ହୁଅନ୍ତି ପାଣ୍ଡବମାନେ । ସେମାନଙ୍କର ଯଦୁବଂଶ ସହିତ ବନ୍ଧୁତା ହୋଇଉଠେ ପୂର୍ବଠାରୁ ଅଧିକ ନିବିଡ଼ତର । କୃଷ୍ଣଙ୍କ ଭଳି ଜଣେ ଅଲୌକିକ ବ୍ୟକ୍ତିଙ୍କ ଅଭୟଦ ବାହୁଛାୟା ତଳେ ପାଆନ୍ତି ଅଶେଷ ଶାନ୍ତି । ଲୋକମୁଖରେ ସେମାନଙ୍କ ପ୍ରାଧାନ୍ୟ ବି ବଢ଼ିଯାଏ । ବଢ଼ିଯାଏ ବି ଗୌରବ, ଖ୍ୟାତି ଓ ମାନ-ସମ୍ମାନ ।

ଏଇଭଳି ପରିସ୍ଥିତିରେ ଇନ୍ଦ୍ରପ୍ରସ୍ଥର ଶ୍ରୀବୃଦ୍ଧି ଘଟୁଥାଏ ଦିନକୁ ଦିନ । ତାହା ସହିତ ସମତାଳ ରଖି ରାଜକୁମାର ଦୁର୍ଯ୍ୟୋଧନଙ୍କ ପାଣ୍ଡବବିଦ୍ୱେଷ ମଧ୍ୟ ବଢ଼ି ଉଠୁଥାଏ । ସଂଧ୍ୟାର ଛାପି-ଛାପିକିଆ ଅନ୍ଧକାର ଗଭୀର ନିଶୀଥର ଘନଘୋର ତମିସ୍ରା ଆଡ଼କୁ ଆଗେଇ ଚାଲିଥାଏ ଯେମିତି । ସୂର୍ଯ୍ୟୋଦୟରେ ଅବଶ୍ୟ ରାତ୍ରିର ଅନ୍ଧକାର ଦୂର ହୁଏ । ଦୁର୍ଯ୍ୟୋଧନଙ୍କ ମନରେ ଜମାଟ ବାନ୍ଧି ଉଠିଥିବା ଏଇ ଅନ୍ଧକାର କିନ୍ତୁ କେବେ ଦୂର ହେବ କେଜାଣି ? ଅଥବା ସେ ଚିରଦିନ ସଢ଼ି ମରୁଥିବେ ଏଇ ଅନ୍ଧକାରରେ ? ବାରମ୍ବାର ମନରେ ମୋର ଏଇ ପ୍ରଶ୍ନବାଚୀ ।

## ସତାବନ

ଅତୀତ ଘଟଣାବଳୀର ଧୂଳିକୁ ଦେହରେ ବହନ କରି ସମୟର ରଥ ଚାଲିଥାଏ ନିରବଚ୍ଛିନ୍ନ ଭାବରେ । ଧୂଳି-ଧୂସରିତ ତନୁ ଲାଗି ବିକାର ନାହିଁ । ଅଥବା ପୁଷ୍ପରେଣୁର ଅନୁଲେପ ବୋଳିହେବା ପାଇଁ ଆଗ୍ରହ ବି ନାହିଁ । ମୌନ-ନିର୍ବାକ୍ ମହାମୁନି ସେ । ଚିର ଅଟଳ ନିର୍ବିକାର । ଅଥଚ ଚଳଚଞ୍ଚଳ । ତାହା ସହିତ ସମତାଳ ରଖି ମୋ' ମନର ରଥ ବି ଚାଲିଥାଏ ଗଡ଼ି ଗଡ଼ି । ଦେହସାରା ସ୍ମୃତିର ଧୂଳିରେ ଧୂସରିତ । କାଳଦଣ୍ଡ ଯେତେ ଦୀର୍ଘ ହେଲେ ହେଁ ସ୍ମୃତିସମୂହର ଧୂଳିକୁ ପୋଛିଦେବା ପାଇଁ ଏକାନ୍ତ ଅସମର୍ଥ । ବିଶେଷକରି ଯେଉଁ ସ୍ମୃତିଗୁଡ଼ିକ କଟୁତାର ଆଲିମ୍ପନ ଧରିରଖିଛି, ସେଗୁଡ଼ିକୁ ଭୁଲିବା ମଣିଷ ପକ୍ଷେ ଅସମ୍ଭବ । ସେଗୁଡ଼ିକ ନାନା ରୂପ-ରଙ୍ଗ ନେଇ ନାଚିବାକୁ ଲାଗିଥାନ୍ତି ମନର ଅଗଣାରେ । ମନକୁ କରିଦେଇଥାନ୍ତି ଉଦ୍‌ବିଗ୍ନ । କରିଦେଇଥାନ୍ତି ଚଞ୍ଚଳ ।

ପାଞ୍ଚାଳରାଜ୍ୟରେ ସ୍ୱୟଂବର ଅବସରରେ ସମସ୍ତ ରାଜାଙ୍କ ଗହଣରେ ଯେଉଁ ଅପମାନ ପାଇଥିଲି ସ୍ୱୟଂ କୃଷ୍ଣାଙ୍କ ନିକଟରୁ ତାହା ବାରମ୍ବାର ମତେ କରୁଥାଏ ଦଂଶନ । ଯେତେ ଚେଷ୍ଟା କଲେ ବି ଅବ୍ୟାହତି ପାଉ ନ ଥାଏ ସେଥିରୁ । ସମୟ ଯେତେ ଗଡ଼ି ଯାଉଥାଏ, ସେହି ସ୍ମୃତି ନୂଆ-ନୂଆ ଘଟଣାବଳୀ ଦ୍ୱାରା ହୋଇଉଠୁଥାଏ ପରିପୁଷ୍ଟ ଓ ମୋ'ପାଇଁ ଆଣି ଦେଉଥାଏ ଅଧିକରୁ ଅଧିକ ଯନ୍ତ୍ରଣା । ଭୁଲିଥାନ୍ତି ବା କେମିତି ? ସ୍ତ୍ରୀମୁଖରୁ ପାଇଥିବା ଅପମାନ କ'ଣ ଯୋଦ୍ଧା କେବେ ସହଜରେ ଭୁଲିପାରେ ? ସେଦିନ ସେ ଯାହା ଯାହା କହିଗଲେ ତାହାର ଅର୍ଥ, କର୍ଣ୍ଣର ବଞ୍ଚି ରହିବାଟା ହୀନତା, ଉପେକ୍ଷା, ବଞ୍ଚନା ଓ ଅପମାନ

ଛଡ଼ା ଆଉ କିଛି ନୁହେଁ । ଯୋଦ୍ଧା ପାଇଁ ଏହାଠାରୁ ବଳିକରି ଭୟାନକ ମୃତ୍ୟୁ ଆଉ କ'ଣ ବା ଥାଇପାରେ ? କର୍ଣ୍ଣ ସିନା ଆଜି ଅଙ୍ଗରାଜ ହୋଇ ବାହାରକୁ ଦେଖାଗଲା ଭଳି ଜୀବନ ଧରି ବଞ୍ଚିରହିଛି । କୁରୁରାଜ୍ୟର ପ୍ରସାଦ, ଅନୁକମ୍ପା, ସହାୟତା ସବୁ କିଛି ପାଇଛି । ଦୁର୍ଯ୍ୟୋଧନ ଓ ଅଶ୍ୱତ୍ଥାମା ଆଦି ମିତ୍ରମାନଙ୍କ ସ୍ନେହ-ଶ୍ରଦ୍ଧାରେ ପରିସ୍ନାତ । ମହାବୀର ଓ ମହାଦାନୀ ବୋଲି ଶତମୁଖରେ ପ୍ରଶଂସା । କିନ୍ତୁ ଏ ସବୁ କ'ଣ ତା'ର ପୋଡ଼ିଯାଇଥିବା ଜୀବନ-ଗଛଟିକୁ କଅଁଳାଇପାରିଛି ? କଦାପି ନୁହେଁ । କର୍ଣ୍ଣ ବହୁଦିନରୁ ମୃତ । ଖାଲି ଜୀଇଁ ରହିଥିବାର ଛଳନା ହିଁ କରିଚାଲିଛି । ନିଶିଦିନ ମୋ' ଅନ୍ତରତଳେ ଯେଉଁ ଜୀବନ-ସଙ୍ଗୀତର କରୁଣ ମୂର୍ଚ୍ଛନା ଉଠୁଛି ଲହରାଇ, ତାହା କିଏ ବା ଶୁଣୁଛି ? କିଏ ବା ବୁଝୁଛି ? ମୋ' ମନରେ ଯେ ପ୍ରତିଶୋଧର ନିଆଁ ଜଳୁ ନାହିଁ ତାହା ନୁହେଁ । କିନ୍ତୁ ସୁଯୋଗ କାହିଁ ତାହାକୁ ସାକାର କରିବା ଲାଗି ? କୃଷ୍ଣା ଏବେ ପାଣ୍ଡବମାନଙ୍କ ପତ୍ନୀ । ସେମାନଙ୍କ ଆଶ୍ରିତା ଥିବା ଅବସରରେ ତାଙ୍କ ଉପରେ କ'ଣ ପ୍ରତିଶୋଧ ନେଇହେବ ? ପୁଣି ଏବେ କୃଷ୍ଣଙ୍କ ପ୍ରସାଦ ଓ ସହାୟତା ପାଇ ପାଣ୍ଡବମାନେ ଅଧିକରୁ ଅଧିକ ବଳଶାଳୀ । ଏହା ଭାବିଲେ ନୈରାଶ୍ୟ ଛୁଉଁଛି ମନକୁ । ପ୍ରାଣ ହୋଇଉଠୁଛି ଅଶାନ୍ତ । ସତେ କ'ଣ ଏଇ ପ୍ରତିଶୋଧର ନିଆଁ ଆଦୌ ପ୍ରଶମିତ ହେବ ନାହିଁ ? ଏମିତି ଚିରଦିନ ଅନ୍ତର ତଳେ ଜଳି ଜଳି ମତେ ଜାଳିଦେଇଯିବ ? ଏଇ ଦୁର୍ଭାଗା କର୍ଣ୍ଣର ଭାଗ୍ୟ କ'ଣ ଖାଲି ଜଳିବାପାଇଁ ? ଜଳାଇବା ପାଇଁ କିନ୍ତୁ ନୁହେଁ ?

ଏଇ ଚିନ୍ତା ସେଦିନ କେଜାଣି କାହିଁକି ବାରମ୍ବାର ଆସୁଥିଲା ମନରେ । ଭାରାକ୍ରାନ୍ତ ମନଟିକୁ ନେଇ କୌଣସି ମତେ ନିତ୍ୟକର୍ମ ସାରିଲି । ରାଜକାର୍ଯ୍ୟକୁ ଯିବା ପୂର୍ବରୁ ଥରେ ମିତ୍ର ଦୁର୍ଯ୍ୟୋଧନଙ୍କୁ ଦେଖା କରିବାକୁ ଚାହିଁଲି । ଇଚ୍ଛା, ତାଙ୍କ ସହିତ କିଛି ସମୟ ଆଳାପ-ଆଲୋଚନା କରି ହୁଏତ ହାଲୁକା କରିବି ମନକୁ ।

ତାଙ୍କ ପାଖକୁ ଯିବାପାଇଁ ପ୍ରସ୍ତୁତ ହେଉଛି, ଏହି ସମୟରେ ଦ୍ୱାରୀ ଆସି ମତେ ଅଭିବାଦନ କରି ଜଣାଇଲା, ''ମହାରାଜ ! ଇନ୍ଦ୍ରପ୍ରସ୍ଥରୁ ଜଣେ ବିଶେଷ ଦୂତ ଆସିଛନ୍ତି । ଆପଣଙ୍କୁ ଦର୍ଶନ କରିବାକୁ ଚାହାନ୍ତି ।''

''ତାଙ୍କ ରହିବାର ବ୍ୟବସ୍ଥା କରାଯାଉ । ରାଜସଭାରେ ତାଙ୍କୁ ଦର୍ଶନ ଦେବି ।''

''ସେ କହୁଛନ୍ତି, ମହାରାଜଙ୍କ ଦର୍ଶନ ଅତ୍ୟନ୍ତ ଜରୁରୀ । ତାଙ୍କର ପୁଣି ଅନ୍ୟାନ୍ୟ ରାଜାମାନଙ୍କୁ ଦର୍ଶନ କରିବାର ଅଛି । ଗତକାଲିଠାରୁ ହସ୍ତିନାପୁରରେ ହିଁ ଅପେକ୍ଷା କରି ରହିଛନ୍ତି ।'' ଦ୍ୱାରୀର ବିନୀତ କଣ୍ଠସ୍ୱର । ମୋର ଆଦେଶ ଶୁଣିବାପାଇଁ ଉଦଗ୍ର ଆଗ୍ରହ ।

''ଆଚ୍ଛା, ତାଙ୍କୁ ସ୍ୱାଗତ-କକ୍ଷକୁ ଡକାଯାଉ । ମୁଁ ସେଇଠି ତାଙ୍କୁ ଦର୍ଶନ ଦେବି । ଏଇ କିଛି ସମୟ ପରେ ଯାଉଛି ।'' ପରିସ୍ଥିତିଟି ହୃଦୟଙ୍ଗମ କରି ଆଦେଶ ଦେଲି ।

''ଯେ ଆଜ୍ଞା ମହାରାଜ ।'' ଦ୍ୱାରୀ ଯଥାବିଧି ବିଦାୟ ଅଭିବାଦନ ଜଣାଇ ଚାଲିଗଲା ।

ରାଜଦୂତଙ୍କୁ ଯଥାଶୀଘ୍ର ସାକ୍ଷାତ ଦେଲି ସ୍ୱାଗତ-କକ୍ଷରେ । ରାଜା ଯୁଧିଷ୍ଠିରଙ୍କଠାରୁ ନିମନ୍ତ୍ରଣପତ୍ର ଧରି ଆସିଥାନ୍ତି ସେ । ଇନ୍ଦ୍ରପ୍ରସ୍ଥରେ ଯୁଧିଷ୍ଠିର ରାଜସୂୟ ଯଜ୍ଞର ଆୟୋଜନ

କରୁଛନ୍ତି । ଯଜ୍ଞବେତ୍ତା ସ୍ୱୟଂ ଦ୍ୱାରକାଧିପତି କୃଷ୍ଣ । ଆର୍ଯ୍ୟାବର୍ତ୍ତର ସମସ୍ତ ରାଜା-ମହାରାଜା ଏଥିପାଇଁ ନିମନ୍ତ୍ରିତ । ରାଜଦୂତ ଗତକାଲିଠାରୁ ଆସି ହସ୍ତିନାପୁରରେ ମହାରାଜସମେତ ଅନ୍ୟମାନଙ୍କୁ ନିମନ୍ତ୍ରଣପତ୍ର ଦେଇ ସାରିଛନ୍ତି । ସମୟ ଅଭାବରୁ ମତେ କାଲି ଦେଇପାରି ନ ଥିଲେ । ରାତ୍ରିଟା ବିଶ୍ରାମ କରି ଆଜି ତାହା ଦେଉଛନ୍ତି ।

ନିମନ୍ତ୍ରଣପତ୍ରଟି ଗ୍ରହଣ କରି ତାଙ୍କୁ ବିଦାୟ ଦେଲି ।

ପ୍ରଥମେ ତ ମନ ଆଦୌ ଚାହୁଁ ନ ଥିଲା ସେଠାକୁ ଯିବାପାଇଁ । କାରଣ ପାଣ୍ଡବବନ୍ଧୁ କୃଷ୍ଣଙ୍କୁ ସେଠାରେ ଦେଖିବି । ଯାହାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଅନ୍ତର ମୋର ନିରନ୍ତର କୁହୁଳୁଛି, ତାଙ୍କ ଦର୍ଶନକୁ ସହିପାରିବି ବା କେମିତି ? ଆଉ ଭୀମସେନ ବି ତ କିଛି କମ୍ ନୁହନ୍ତି । ରଙ୍ଗଭୂମିରେ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବା ଅବସରରେ ମତେ ସୂତପୁତ୍ର ବୋଲି କହି କରିଥିଲେ ଅପମାନିତ । ଦାରୁଣ ଅଟ୍ଟହାସ ହସି କରିଥିଲେ ପରିହାସ । ତାହା କ'ଣ କେବେ ଭୁଲିହୁଏ ? ତାଙ୍କୁ ବି ଦେଖିବାର ସମ୍ଭାବନା ଅଛି । ଆଉ ସହଜେ ତ ଅର୍ଜୁନ ମୋର ଚିରସ୍ପର୍ଦ୍ଧୀ । ତାଙ୍କ ସହିତ ସାକ୍ଷାତ୍କାରକୁ ସୁସ୍ଥମନ ଦେଇ ଗ୍ରହଣ କରିବି କେମିତି ? ମନରେ ଚାପିହୋଇ ରହିଛି ଯେଉଁ ମୋର ଭରା କ୍ରୋଧ ଓ ଅଭିମାନ, ହଠାତ୍ କାଳେ ତାହାର ବିସ୍ଫୋରଣ ଘଟିବ । ଏକ ବିଚିତ୍ର ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହେବ ଇନ୍ଦ୍ରପ୍ରସ୍ଥରେ । ତେଣୁ ମୋର ସେଠାକୁ ନ ଯିବାଟା ହିଁ ଭଲ ।

କିନ୍ତୁ ପରକ୍ଷଣରେ ଅମାନିଆ ମନ ମୋର ଉଚ୍ଛନ୍ନ । ବାରମ୍ବାର ଅନୁଚିନ୍ତା । ରାଜସୂୟ ଯଜ୍ଞର ଯଜ୍ଞବେତ୍ତା ସ୍ୱୟଂ କୃଷ୍ଣ । ଅଲୌକିକ ମହାପୁରୁଷ ସେ ଆସୁଛନ୍ତି । ତାଙ୍କୁ ଭଲ କରି ଅତି ନିକଟରେ ଦେଖିବାର ସୁଯୋଗ ପାଇବି । ମହାପୁରୁଷଙ୍କ ଏଇ ସାନ୍ନିଧ ଟିକକ କ'ଣ ସ୍ପୃହଣୀୟ ନୁହେଁ ମୋ' ପାଇଁ ? ଶାସ୍ତ୍ର ପରା କହିଛି ଯେ ବିଭୁକୃପା ନ ଥିଲେ ମହାପୁରୁଷଙ୍କ ସାନ୍ନିଧ ମଣିଷ ପାଇପାରେନା । ଆଜି ଯଦି ସେଇ ସାନ୍ନିଧର ସୁଯୋଗ ଆସିଛି ମୋ' ଜୀବନରେ ତାହାକୁ ଜାଣି-ଶୁଣି ଏଡ଼ାଇଦେବି ବା କେମିତି ? ନା, ମୁଁ ନିଶ୍ଚୟ ଯିବି । ଆଉ ଥରେହେଲେ ତାଙ୍କ ଦର୍ଶନ ପାଇବି । ତାଙ୍କ କଥା ଦୁଇ-ଚାରି ପଦ ଶୁଣିବାକୁ ପାଇବି । ସେଥିରେ ଜୀବନକୁ କରାଇବି ଧନ୍ୟ ।

ଇନ୍ଦ୍ରପ୍ରସ୍ଥକୁ ଯିବାପାଇଁ ଦୃଢ଼ପ୍ରତିଜ୍ଞ ହୋଇଗଲି ମନେ ମନେ । ମିତ୍ର ଦୁର୍ଯ୍ୟୋଧନଙ୍କ ପ୍ରତିକ୍ରିୟା ଜାଣିବା ଉଦ୍ଦେଶ୍ୟରେ ଶୀଘ୍ର ଗଲି ତାଙ୍କ ପାଖକୁ ।

ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ସେ ପଚାରିଲେ, ''ମିତ୍ର ଅଙ୍ଗରାଜ କର୍ଣ୍ଣ ! ଜାଣିଥିବ ତ ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥରେ ରାଜସୂୟ ଯଜ୍ଞର ଆୟୋଜନ କରୁଛନ୍ତି ।''

''ହଁ, ଜାଣେ । ସେଥିପାଇଁ ନିମନ୍ତ୍ରଣ ମଧ୍ୟ ପାଇଛି ।''

''ପିତାମହ, ମହାରାଜ ଆଦି ଆମେ ସମସ୍ତେ ବି ପାଇଛୁ ନିମନ୍ତ୍ରଣ । ଆଚ୍ଛା, ତୁମେ ଯିବା ବିଷୟରେ କ'ଣ ଠିକ୍ କରିଛ ?''

''ଯିବାକୁ ତ ମନ ଆଦୌ ବଳୁ ନାହିଁ । କିନ୍ତୁ ଗୋଟିଏ କାରଣରୁ ଯିବାପାଇଁ ଭାବୁଛି ।''

''କ'ଣ କାରଣ ଶୁଣେ ?'' ତାଙ୍କର ସାଶ୍ଚର୍ଯ୍ୟ ଜିଜ୍ଞାସାଭରା ପ୍ରଶ୍ନ ।

''ଦ୍ୱାରକାଧିପତି କୃଷ୍ଣ ସେଠାକୁ ଆସୁଛନ୍ତି ଯଜ୍ଞବେତ୍ତା ଭାବରେ । ଯଜ୍ଞର ପ୍ରଥମ ପୁରୁଷ ହେବେ । ତାଙ୍କୁ ଦେଖିବାର ପ୍ରବଳ ଇଚ୍ଛା । ସେଥିପାଇଁ ଯିବାର ଆଗ୍ରହ । ତେଣୁ ଯିବି ବୋଲି ଠିକ୍ କରିଛି ।''

''ଜଣେ ରାଜାଙ୍କର ଆଉ ଜଣେ ରାଜାଙ୍କୁ ଦେଖିବାର ଆଗ୍ରହ ! ପୁଣି ବହୁକାଳ ଧରି ଗୋପାଳକୁଳରେ ପରିପୋଷିତ ସେ । ତାଙ୍କୁ ଦେଖିବାପାଇଁ ଏଭଳି ଉତ୍କଣ୍ଠା ଶୋଭା ପାଏନା ମିତ୍ର ।'' ମତେ ଇନ୍ଦ୍ରପ୍ରସ୍ଥ ଯାତ୍ରା ଲାଗି ବାରଣ କରିବାର ଉଦ୍ୟମ କରି ସେ କହିଲେ ।

''ସେ କେବଳ ଜଣେ ରାଜା ନୁହନ୍ତି ଅଥବା ଗୋପକୁଳରେ ପରିପାଳିତ ବ୍ୟକ୍ତି ନୁହନ୍ତି । ସେ ଜଣେ ଅଲୌକିକ ପୁରୁଷ । ତାଙ୍କ ସାହଚର୍ଯ୍ୟରେ ଲାଭ ଅଛି ।'' କଣ୍ଠସ୍ୱରରେ ମୋର ଦୃଢ଼ତା ।

''କେଉଁଦିନୁ ତୁମେ ପିତାମହ ଭୀଷ୍ମଙ୍କ ଶିଷ୍ୟ ହୋଇଗଲଣି ମିତ୍ର ? ସେ ତ କହନ୍ତି ଯେ କୃଷ୍ଣ ଭଗବାନ୍‌ଙ୍କ ଅବତାର ! ଆଉ ପିତାମହ ବ୍ୟାସଙ୍କ ଭାଷାରେ ସ୍ୱୟଂ ଭଗବାନ୍ । କି ଉଦ୍ଭଟ କଳ୍ପନା ।'' ଅଟ୍ଟହାସରେ କକ୍ଷର ବାତାବରଣକୁ ଆନ୍ଦୋଳିତ କରିଦେଲେ ସେ । ତାଚ୍ଛଲ୍ୟଭରା ଅଟ୍ଟହାସ । ମତେ କିନ୍ତୁ ଖୁବ୍ ଅସ୍ୱସ୍ତିକର ଲାଗୁଥାଏ । ମିତ୍ରଜ୍ଞାନରେ କରିପାରୁ ନ ଥାଏ କିଛି ପ୍ରତିବାଦ ।

''ଜାଣେନା ସେ ଭଗବାନ୍‌ଙ୍କ ଅବତାର କିମ୍ବା ସ୍ୱୟଂ ଭଗବାନ୍ କି ନୁହନ୍ତି । ଏତିକି ମାତ୍ର ଜାଣେ ଯେ ସେ ଜାଣେ ମହାପୁରୁଷ । ତେଣୁ ତାଙ୍କୁ ଦେଖିବାପାଇଁ ମୋର ପ୍ରବଳ ଇଚ୍ଛା । ମୁଁ ନିଶ୍ଚୟ ଯିବି । ଆଚ୍ଛା, ତୁମେ କ'ଣ ଠିକ୍ କରିଛ ମିତ୍ର ? ଯିବ ନା ନାହିଁ ?''

''ମୋର ତ ଆଦୌ ଆଗ୍ରହ ନାହିଁ କି ଇଚ୍ଛା ବି ନାହିଁ । କିନ୍ତୁ ଗୋଟିଏ କାରଣରୁ ବିବଶ ମୁଁ ।''

''କ'ଣ ସେଇ କାରଣଟି ଶୁଣେ ?''

''ପିତାମହ ତ ନିଜେ ଯାଉଛନ୍ତି । ଆଉ ମହାରାଜ ବି । ପିତାମହଙ୍କ ଦୃଢ଼ ନିର୍ଦ୍ଦେଶ ଯେ ଆମେ କୌରବ ଭାଇମାନେ ସମସ୍ତେ ଯିବୁ । ମହାରାଜ ମଧ୍ୟ ସେଇଆ ଚାହାନ୍ତି ।''

''ଭଲ ହେବ । ତୁମେ ଯାଅ ମିତ୍ର । ତୁମ ଭାଇମାନେ ମଧ୍ୟ ଯାଆନ୍ତୁ । ନ ଯିବାଟା ବରଂ ଲୋକଚକ୍ଷୁରେ ହେବ ନିନ୍ଦିତ ।''

''ଲୋକନିନ୍ଦାକୁ ମୋର ଭୟ ନାହିଁ । ଭୟ କେବଳ ପିତାମହଙ୍କ ନିର୍ଦ୍ଦେଶକୁ । ମହାରାଜଙ୍କର ମଧ୍ୟ ତାଙ୍କୁ ଭୟ ।''

''କିନ୍ତୁ ମୋର ଧାରଣା, ସେ ତ ପ୍ରାୟ ସର୍ବଦା ପରାମର୍ଶ ହିଁ ଦେଇଥାନ୍ତି, ନିର୍ଦ୍ଦେଶ କିନ୍ତୁ ନୁହେଁ ।''

''ତୁମେ ଠିକ୍ କହିଛ ମିତ୍ର । ସେ ପ୍ରାୟ ପରାମର୍ଶ ହିଁ ଦେଇଥାନ୍ତି । ଆମେ ତାହାକୁ ଗ୍ରହଣ ନ କଲେ କିଛି ପ୍ରତିବାଦ କରି ନ ଥାନ୍ତି । ହୁଏତ ମନେ ମନେ ବ୍ୟଥିତ ହେଉଥିବେ । କିନ୍ତୁ ଏ କ୍ଷେତ୍ରରେ ଦେଇଛନ୍ତି ଆଦେଶ । ତାହାକୁ ନ ପାଳି ଆଉ ଗତି ନାହିଁ ।'' କଣ୍ଠରେ ଅନ୍ତର୍ବେଦନା ଓ ପ୍ରତିବାଦର ମର୍ମର ।

''ତା'ହେଲେ ଆମେ ସାଙ୍ଗ ହୋଇ ଯିବା । ମିତ୍ର ଅଶ୍ୱତ୍ଥାମାଙ୍କୁ ବି ସାଥିରେ ନେବା । ନା କ'ଣ ମିତ୍ର ?''

''ହଉ ।''

ସେ ସ୍ୱୀକୃତି ଦେଇ କହିଲେ । ଲକ୍ଷ୍ୟ କରିପାରିଲି ତାଙ୍କ ଅନିଚ୍ଛାକୃତ ସ୍ୱୀକୃତି ତଳେ ତଳେ ଲହରାଉଥିବା ବ୍ୟଥାର ଗୁଞ୍ଜରଣକୁ । କଳିପାରିଲି ତାଙ୍କ ଘୃଣାପୂର୍ଣ୍ଣ ଦୀର୍ଘଶ୍ୱାସର ଉଷ୍ଣତାକୁ ।

ତାହା ପରେ ଇନ୍ଦ୍ରପ୍ରସ୍ଥକୁ ଯିବାର ପ୍ରସ୍ତୁତିପର୍ବ ଆରମ୍ଭ ।

## ଅଠାବନ

ମୁଁ, ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନ ଓ ଦୁଃଶାସନ— ଆମେ ଚାରି ଜଣ ଏକ ରଥରେ ବସି ଆସିଥିଲୁ । ଇନ୍ଦ୍ରପ୍ରସ୍ଥର ରାଜଭବନରେ ମହାଦ୍ୱାରରେ ଅଟକିଗଲୁ । ପାଣ୍ଡବମାନଙ୍କ ଅମାତ୍ୟ ମହାଦ୍ୱାର ନିକଟରେ ରହିଥାନ୍ତି ଆଗନ୍ତୁକ ଅତିଥିମାନଙ୍କୁ ସ୍ୱାଗତ କରିବାପାଇଁ । ସେ ଆମ୍ଭମାନଙ୍କୁ ସ୍ୱାଗତ କରି ଭିତରକୁ ପ୍ରବେଶ କରିବାପାଇଁ ଅନୁରୋଧ କଲେ । କିନ୍ତୁ ଦୁର୍ଯ୍ୟୋଧନ ମହାମାନୀ । ସେ ଭିତରକୁ ନ ଯାଇ ଦ୍ୱାରଦେଶରେ ଠିଆ ହୋଇ ରହିଲେ ସେମିତି । ମୁଁ ମଧ୍ୟ । କାରଣ ମୁଁ ବି ଥିଲି ଅଙ୍ଗଦେଶର ରାଜା । ସାଧାରଣ ଜଣେ ଅମାତ୍ୟଙ୍କ ସ୍ୱାଗତ-ସତ୍କାର ଯଥେଷ୍ଟ ନ ଥିଲା ମୋ'ପାଇଁ । ଏହା ରାଜକୀୟ ଶିଷ୍ଟାଚାରର ବିରୋଧୀ । ଧର୍ମରାଜ ଯୁଧିଷ୍ଠିରଙ୍କ ଏଭଳି ବ୍ୟବସ୍ଥା ନେଇ ଆଶ୍ଚର୍ଯ୍ୟ ବି ହେଉଥିଲି । ଆମକୁ ସାଥି ଦେବାଲାଗି ଅଶ୍ୱତ୍ଥାମା ଓ ଦୁଃଶାସନ ବି ସେମିତି ରହିଲେ ଠିଆ ହୋଇ । ହଠାତ୍ ଆମେ ଦୃଷ୍ଟିରେ ପଡ଼ିଗଲୁ ରାଜା ଯୁଧିଷ୍ଠିରଙ୍କର । ସେ ଥିଲେ ଯଜ୍ଞମଣ୍ଡପରେ । କ'ଣ କାର୍ଯ୍ୟ ପରୀକ୍ଷା-ନିରୀକ୍ଷା କରୁଥିଲେ ବୋଧହୁଏ । ଆମକୁ ଦେଖିବାମାତ୍ରେ ଧାଇଁଆସିଲେ ଓ ହାତ ଧରି ପାଛୋଟି ନେଲେ । ମୋ' ନାକ ଓ ଆଖି ଦୁଇଟିକୁ ବାରମ୍ବାର ଚାହିଁବାକୁ ଲାଗିଲେ ଚକିତ-ବିସ୍ମିତ ହୋଇ । ତାଙ୍କର ଧାରଣା ଯେ ମୋ' ନାକ ଓ ଆଖି ଦିଓଟି କୁଆଡ଼େ ତାଙ୍କ ମାତା କୁନ୍ତୀଦେବୀଙ୍କ ଭଳି । ଯେତେବେଳେ ସେ ମତେ ଦେଖନ୍ତି, ତାଙ୍କ ଦୃଷ୍ଟି ଆପେ ଆପେ ଟାଣିହୋଇଯାଏ ମୋ' ଆଖି ଓ ନାକ ପ୍ରତି । ମତେ ଭାରି ଲାଜ ଲାଗେ । ସେଦିନ ବି ଲାଜେଇ ଯାଇଥିଲି ଖୁବ୍ ତାଙ୍କର ଏଇ ଆଚରଣରେ ।

ଅଶ୍ୱତ୍ଥାମା ପଚାରିଲେ, ''ହେ ରାଜନ୍ ! ଯଜ୍ଞର ସମସ୍ତ ପ୍ରସ୍ତୁତି ସରିଯାଇଥିବ ବୋଧହୁଏ ।''

''ହଁ, ଗୁରୁକୁମାର ! ସବୁ ପ୍ରସ୍ତୁତି ଶେଷ । କେବଳ ଯଜ୍ଞବେତ୍ତା ଦ୍ୱାରକାଧିପତି କୃଷ୍ଣଙ୍କ ଅପେକ୍ଷାରେ ଅଛୁ । ଯଜ୍ଞର ପ୍ରଥମ ପୁରୁଷ ସେ । ଅଗ୍ରଣୀ ଅତିଥି । ସେ ଆସିଗଲେ ଯଜ୍ଞ ଆରମ୍ଭ ହେବ ।''

''ତା' ହେଲେ କୃଷ୍ଣଙ୍କ ଆସିବା ମଧ୍ୟରେ ଆମେ ସମସ୍ତେ ରାଜଭବନ ଟିକିଏ ବୁଲି ଦେଖିନେଲେ କେମିତି ହୁଅନ୍ତା ?'' ହସି ହସି ପ୍ରଶ୍ନ କଲେ ଅଶ୍ୱତ୍ଥାମା ।

''ଖୁବ୍ ଭଲ ହୁଅନ୍ତା । ତାହା ତ ମୋର ଭାଗ୍ୟ । ଏବେ ଚାଲନ୍ତୁ ସମସ୍ତେ ।'' ଯୁଧିଷ୍ଠିର ଖୁସି ହୋଇ କହିଲେ ଓ ଅନ୍ତଃପୁରାଧ୍ୟକ୍ଷଙ୍କୁ ଡକାଇ ପଠାଇଦେଲେ ଆମ ସାଥିରେ ।

ଆମେ ସମସ୍ତେ ଯଜ୍ଞମଣ୍ଡପ ମଧ୍ୟ ଦେଇ ରାଜଭବନର ସୋପାନଶ୍ରେଣୀ ଆଡ଼କୁ ଆଗେଇଲୁ । ଇତିମଧ୍ୟରେ ଆଖି ପକାଇନେଲି ଯଜ୍ଞମଣ୍ଡପରେ ସମବେତ ଅତିଥିବୃନ୍ଦଙ୍କୁ । ପ୍ରାୟ ସାରା ଆର୍ଯ୍ୟାବର୍ତ୍ତର ସମସ୍ତ ରାଜା-ମହାରାଜା ସମବେତ । ଋଷିବ୍ରାହ୍ମଣମାନେ ଓ ପ୍ରଧାନ ପ୍ରଧାନ ନାଗରିକମାନେ ବି ନିଜ ନିଜ ଆସନରେ ଆସୀନ । ସେମାନଙ୍କ ମଧ୍ୟରେ ପରାଶର, ବ୍ୟାସଦେବ, ଶୁକଦେବ, ବୈଶମ୍ପାୟନ ଆଦି ମହର୍ଷିମାନେ ଥାଆନ୍ତି । ଥାଆନ୍ତି ବି ଦେବର୍ଷି ନାରଦ । ଗୋଟିଏ ଆସନ ଖାଲି ପଡ଼ିଥିଲେ ବି କେହି ବସି ନ ଥାନ୍ତି ସେଥିରେ । ତାହା ମହର୍ଷି ଦୁର୍ବାସାଙ୍କ ପାଇଁ ଉଦ୍ଦିଷ୍ଟ । ଜଣେ ସ୍ୱତନ୍ତ୍ର କର୍ମଚାରୀ ସେଠାରେ ଥାଇ ତାଙ୍କ ଆଗମନକୁ ଅପେକ୍ଷା କରିଥାନ୍ତି । ଅନ୍ୟ କାହାଙ୍କୁ ସେଠାରେ ବସିବାକୁ ଦେଇ ନ ଥାନ୍ତି । ତାଙ୍କ ଅଗ୍ନିବର୍ଷୀ କ୍ରୋଧକୁ ସମସ୍ତଙ୍କର ଭୟ । କିଛି ନ ବିଚାରି ହଠାତ୍ କ୍ରୁଦ୍ଧ ହୋଇଯିବେ ଓ ଅଭିଶାପ ଦେଇ ବସିବେ । ବିଚିତ୍ର ଋଷି-ଚରିତ୍ର ! ଆଚାର୍ଯ୍ୟ ଦ୍ରୋଣ ଓ କୃପାଚାର୍ଯ୍ୟ ମଧ୍ୟ ସମାସୀନ ସେମାନଙ୍କ ଯୋଗ୍ୟ ଆସନରେ । ରାଜନ୍ୟମଣ୍ଡଳୀଙ୍କ ପାଇଁ ଉଦ୍ଦିଷ୍ଟ ଆସନଗୁଡ଼ିକ ପ୍ରାୟ ଭରପୂର କହିଲେ ଚଳେ । ପ୍ରଥମ ପଙ୍‌କ୍ତିରେ ସମାସୀନ ପିତାମହ, ରାଜା ଧୃତରାଷ୍ଟ୍ର ଆଦି ରାଜାମାନେ । ଗାନ୍ଧାରରାଜ ଶକୁନି, ରାଜା ଅଚଳ, ବୃଷକ, ବାହ୍ଲିକ, ସୋମଦତ୍ତ, ସିନ୍ଧୁରାଜ ଜୟଦ୍ରଥ, ଚେଦିରାଜ ଶିଶୁପାଳ, ଦ୍ରୁପଦ, ଶାଲ୍ୱ, ଭଗଦତ୍ତ, ବିରାଟ ଓ ଅନ୍ୟମାନେ ବି ଥାଆନ୍ତି । ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଉତ୍ତର ଆଦି ରାଜକୁମାରମାନେ ମଧ୍ୟ ଉପସ୍ଥିତ । ଆଉ ଉପସ୍ଥିତ ବି କଳିଙ୍ଗରାଜ ଚିତ୍ରଭାନୁ । କୃଷ୍ଣଙ୍କ ଅଗ୍ରଜ ବଳରାମ, ସାତ୍ୟକି ଆଦି ଯଦୁବଂଶୀ ବୀରମାନଙ୍କ ଗହଣରେ ଆସୀନ । ସମବେତ ବିଶିଷ୍ଟ ଅତିଥିମାନଙ୍କ ମଧ୍ୟରେ ଥାଆନ୍ତି ମହାମନ୍ତ୍ରୀ ବିଦୁର ଓ ଅନ୍ୟମାନେ । ଦେବତାମାନେ ତ ଦେଖାଯାଉ ନ ଥାନ୍ତି । ହୁଏତ ସେମାନେ ଲୁକ୍‌କାୟିତ ଭାବରେ ଥିବେ ଶୂନ୍ୟାସନରେ ନିଜ ନିଜ ବିମାନରେ । ଯଜ୍ଞମଣ୍ଡପର ଭବ୍ୟ ଓ ମନୋରମ ରୂପ ଦେଖି ସମସ୍ତେ ଯେମିତି ଚମତ୍କୃତ । ସତ କହୁଛି, ପାଣ୍ଡବମାନେ ଯେ ଏହା ଭିତରେ ଏତେ ସମୃଦ୍ଧ ହୋଇଗଲେଣି ଏ ଧାରଣା ମୋର ନ ଥିଲା । ଯେତେ ଆଗକୁ ଆଗକୁ ରାଜଭବନ ଭିତରକୁ ବଢ଼ିଲି, ବିସ୍ମୟର ସୀମା ମୋର ସେତେ ବଢ଼ିଯିବାକୁ ଲାଗିଲା । ଦୁର୍ଯ୍ୟୋଧନ ତ ସହଜରେ ଈର୍ଷାଳୁ । ଈର୍ଷା କରୁଥିବେ ନିଶ୍ଚୟ । ମୋ' ମନରେ ମଧ୍ୟ ବେଳେବେଳେ ଆସିଯାଉଥାଏ ଅନୁରୂପ ଈର୍ଷାଭାବ । ତାହାକୁ ଦମନ କରୁଥାଏ କୌଣସିମତେ ।

ଧୀରେ ଧୀରେ ଆମେ ସୋପାନଗୁଡ଼ିକୁ ଅତିକ୍ରମ କରି ପ୍ରବେଶ କଲୁ ରାଜଭବନ ମଧ୍ୟରେ । ଅନ୍ତଃପୁରାଧ୍ୟକ୍ଷ ଆମକୁ ଦେଖାଇ ଦେଉଥାନ୍ତି ରାଜଭବନର ବିଭିନ୍ନ ଭାଗଗୁଡ଼ିକୁ । ବିଶେଷ ବିଶେଷ ଦୃଶ୍ୟଗୁଡ଼ିକୁ ଦେଉଥାନ୍ତି ବୁଝାଇ । ବାସ୍ତବିକ ଇନ୍ଦ୍ରଭବନ ଯେମିତି ଖାଣ୍ଡବଦାହରୁ ରକ୍ଷା ପାଇଯାଇଥିବା ମୟାସୁରଦ୍ୱାରା ନିର୍ମିତ । ଦ୍ୱିତୀୟ ବିଶ୍ୱକର୍ମା ସେ । ତେଣୁ ତାଙ୍କ ବାସ୍ତୁଗଠନ ଶୈଳୀରେ ବାରିବାକୁ ନାହିଁ କିଛି । ପ୍ରତିଟି ଭିତ୍ତିରେ ନାନା ପ୍ରକାର ସୁନ୍ଦର ସୁନ୍ଦର ଚିତ୍ର ଶୋଭମାନ । କୁରୁବଂଶର ସାମଗ୍ରିକ ଇତିହାସ ଏଇ ଭିତ୍ତିଚିତ୍ରଗୁଡ଼ିକରେ ପ୍ରତିଫଳିତ । ରାଜା ହସ୍ତୀଙ୍କ ଦ୍ୱାରା ନୂତନ ଭାବରେ ପ୍ରତିଷ୍ଠିତ ହେବାକୁ ଯାଉଥିବା ହସ୍ତିନାପୁରର ଭିତ୍ତିପ୍ରସ୍ତର ସ୍ଥାପନର ଚିତ୍ର ଖୁବ୍ ମନୋରମ । ତାହାଠାରୁ ଅଧିକତର ମନୋରମ ତାଙ୍କର ହସ୍ତିନାପୁରରେ ପ୍ରବେଶ ଅବସରରେ ବାସ୍ତୁପୂଜା । ମହାରାଜ ଶାନ୍ତନୁ ମୃଗୟାବିନୋଦରେ ଗୋଟିଏ ମୃଗ ପଛରେ ଧନୁର୍ବାଣ ଧରି ଧାଉଁଛନ୍ତି ଆଉ ଏକ ଚିତ୍ରରେ । ପରବର୍ତ୍ତୀ ଚିତ୍ରରେ ଧୀବରକନ୍ୟା ସତ୍ୟବତୀଙ୍କୁ ନଦୀତଟରେ ଦେଖି ମୁଗ୍ଧ ହୋଇଉଠୁଛନ୍ତି ସେ । ପ୍ରପିତାମହୀ ସତ୍ୟବତୀ ଯେ ଏତେ ସୁନ୍ଦରୀ ଥାଇପାରନ୍ତି ଯୌବନରେ ଏହା ଥିଲା ମୋର କଳ୍ପନାତୀତ । ତାଙ୍କୁ ତ ଦେଖି ନାହିଁ ଦୁଇ ଆଖିରେ । ଚିତ୍ରାଙ୍କିତ ଛବିଟିରୁ ଅନୁମାନ କରିପାରୁଛି ମହାରାଜ ଶାନ୍ତନୁଙ୍କର ପ୍ରଥମ ଦର୍ଶନରେ ହିଁ ତାଙ୍କ ପ୍ରତି ଆକୃଷ୍ଟ ହେବାଟା ଥିଲା କେତେ ଯଥାର୍ଥ । ଖାଲି ମହାରାଜ ଶାନ୍ତନୁ କାହିଁକି, ଦିନେ ତ ମହର୍ଷି ପରାଶର ବି ବାନ୍ଧି ହୋଇ ଯାଇଥିଲେ ତାଙ୍କ ପ୍ରଣୟଜାଲରେ । ପିତାମହ ଭୀଷ୍ମଙ୍କ ଦ୍ୱାରା କାଶିରାଜଙ୍କ ଦୁଇ କନ୍ୟାଙ୍କୁ ଅପହରଣର ଚିତ୍ର ମଧ୍ୟ ଖୁବ୍ ଚିତ୍ତାକର୍ଷକ । ମୃଗୟାବିନୋଦରେ ମୃଗ ପଛେ ପଛେ ଧାଉଁଥିବା ମହାରାଜ ପାଣ୍ଡୁଙ୍କ ଚିତ୍ରଟି ବି ଦେଖିଲି । ପରବର୍ତ୍ତୀ ଚିତ୍ରଟିରେ ତାଙ୍କଦ୍ୱାରା ଆହତ ହୋଇଥିବା ମୃଗଟିର ଏକ ଅଭିନବ ରୂପ । ଜଣେ ମୁନିବରଙ୍କ ରୂପ । ସେ କ୍ରୋଧିତ ହୋଇ ଅଭିଶାପ ଦେଉଛନ୍ତି ରାଜାଙ୍କୁ ଏବଂ ରାଜା ତାଙ୍କ ଚରଣତଳେ ପ୍ରଣିପାତ କରି ମାଗୁଛନ୍ତି କ୍ଷମା । ଆଉ ଗୋଟିଏ ଚିତ୍ରରେ ଦେଖିଲି ଉତ୍ତୁଙ୍ଗ ହିମାଳୟ ପର୍ବତକୁ । ତାହାରି ଅରଣ୍ୟ ମଧ୍ୟରେ ଋଷିବେଶଧାରୀ ମହାରାଜ ପାଣ୍ଡୁ ଆଶ୍ରମର ଏକ ଉପଳାସନରେ ଆସୀନ । ଆଖପାଖରେ ଦୁଇ ପତ୍ନୀ କୁନ୍ତୀ ଓ ମାଦ୍ରୀ କାର୍ଯ୍ୟରତ । ଅଙ୍ଗନରେ କ୍ରୀଡ଼ାବିନୋଦରେ ମାତିଛନ୍ତି ପଞ୍ଚପୁତ୍ର । ସେଦିନର ବନାଶ୍ରମରେ ଧୂଳିଖେଳରେ ମାତିଥିବା ଏ ପଞ୍ଚପାଣ୍ଡବ ଆଜି ମହାବୀର । ଜ୍ୟେଷ୍ଠପାଣ୍ଡବ ଆଜି ଇନ୍ଦ୍ରପ୍ରସ୍ଥର ଅଧିପତି । ଏତେ ଏତେ ସମୃଦ୍ଧିର ଅଧିକାରୀ । ଭାଗ୍ୟ ସତେ କ'ଣ ନ କରେ !

ସବୁ ଚିତ୍ରର ତାତ୍‌ପର୍ଯ୍ୟ ବୁଝିପାରିଲି କେବଳ ଗୋଟିଏ ଚିତ୍ର ଛଡ଼ା । ବଡ଼ ବିଚିତ୍ର ଓ ଅଦ୍ଭୁତ ସେ ଚିତ୍ରଟି । କୁଆଡ଼େ ରାଜାମାତା କୁନ୍ତୀଦେବୀଙ୍କ ନିର୍ଦ୍ଦେଶରେ ଅଙ୍କିତ । ଆହୁରି ବିଚିତ୍ର କୁନ୍ତୀଦେବୀଙ୍କ ପ୍ରତ୍ୟହ ଏହାରି ପାଖରେ ଅଶ୍ରୁଭରା ନେତ୍ରରେ କିଛି ସମୟ ବିତାଇବା ଓ ଏଥିରେ ଅଙ୍କିତ ଭାସମାନ ପେଟିକାଟିକୁ ବାରମ୍ବାର ନିଜ କରାଙ୍ଗୁଳିରେ ସାଉଁଳିଦେବା । ଏ କଥା ମତେ ଅନ୍ତଃପୁରାଧ୍ୟକ୍ଷ କହିଲେ । ଭାବିଲି, ଚିତ୍ରଟିରେ ହୁଏତ ଅନେକ କିଛି ରହସ୍ୟ ଲୁଚିରହିଛି ଯାହା ସହିତ ଅଛି କୁନ୍ତୀଦେବୀଙ୍କ ଜୀବନର ସଂପର୍କ । ଅଥଚ ଇନ୍ଦ୍ରପ୍ରସ୍ଥ କିମ୍ବା ହସ୍ତିନାପୁରରେ ଜଣା ନାହିଁ କାହାକୁ । ନଦୀଟିଏ ବହିଯାଉଛି । ଜଳରେ ଭରପୂର । ଜଣେ

ଦାସୀ ନଦୀକୂଳରେ କଳସଟିଏ ରଖିଛି । ଆଣ୍ଠୁଏ ପାଣିରେ ପଶି ନଇଁପଡ଼ି ପେଟିକାଟିକୁ ଭସାଇ ଦେଉଛି ନଦୀସ୍ରୋତରେ । କୂଳରେ ଠିଆ ହୋଇଛନ୍ତି ଜଣେ ସ୍ତ୍ରୀ । ବେଶଭୂଷାରୁ ଜଣାପଡୁଛି ହୁଏତ ରାଜବଂଶିନୀ ମହିଳା ଜଣେ ହେବେ । ଦୁଇ ହାତରେ ମୁହଁକୁ ଘୋଡ଼ାଇ ରଖି କାନ୍ଦୁଛନ୍ତି । ନଦୀକୂଳରେ ଧେନୁଟିଏ ତା'ର ବତ୍ସାକୁ କରୁଛି ସ୍ତନ୍ୟଦାନ । ପବନରେ ଆକୁଳିତ ନାରୀଜଣଙ୍କର ଉତ୍ତରୀୟ । ସୁବିପୁଳ ଅମୃତସ୍ୟନ୍ଦୀ ବକ୍ଷର ସ୍ଫୁରିତ ସୁଷମା । ବକ୍ଷକୁ ଆବୃତ କରିଥିବା କଞ୍ଚୁକ ସାମାନ୍ୟ ସିକ୍ତ । ହୁଏତ ସ୍ତନ୍ୟବୃନ୍ତରୁ ସ୍ୱତଃ ସ୍ରବିତ ଅମୃତଧାରର ସ୍ୱାକ୍ଷର ବହନ କରିଛି । ବଡ଼ ଦୁର୍ବୋଧ ଏ ଚିତ୍ରର ରହସ୍ୟ । କିଛି ହେଲେ ପଶୁ ନ ଥାଏ ମୋ' ମୁଣ୍ଡରେ କିମ୍ବା ମୋ' ସାଥୀମାନଙ୍କ ମୁଣ୍ଡରେ । ଆମେ ସମସ୍ତେ ସମାନ ଭାବରେ ଆଶ୍ଚର୍ଯ୍ୟ-ଚକିତ । ସମାନ ଭାବରେ ବିମୂଢ଼ । ଜିଜ୍ଞାସୁ ହୋଇ ପଚାରିଲି ଅନ୍ତଃପୁରାଧକ୍ଷଙ୍କୁ, ''ଏ ଚିତ୍ରଟିର ଅର୍ଥ କ'ଣ ?''

''କେହି ଜାଣନ୍ତି ନାହିଁ ଅଙ୍ଗରାଜ ।''

''କହୁଥିଲେ ପରା ରାଜମାତାଙ୍କ ନିର୍ଦ୍ଦେଶରେ ଏହା ଅଙ୍କିତ ବୋଲି । ତାଙ୍କୁ କ'ଣ ଏହାର ଅର୍ଥ ଅଜଣା ?''

''ତାଙ୍କୁ ପଚରା ଯାଇଥିଲା । ନିଜେ ରାଜା ଯୁଧିଷ୍ଠିର ପଚାରିଥିଲେ । କିନ୍ତୁ ତାଙ୍କ ଉତ୍ତର ଥିଲା ଆହୁରି ବିଚିତ୍ର ଓ ରହସ୍ୟମୟ ।''

''କ'ଣ କହିଥିଲେ ସେ ?'' ଜିଜ୍ଞାସୁ ମନ ମୋର ହୋଇ ଉଠୁଥିଲା ଅସ୍ଥିର ।

''ସେ କହିଥିଲେ— ଏହାର ରହସ୍ୟ କେବଳ ଦୁଇଜଣଙ୍କୁ ଜଣା । ଜଣେ ଋଷି ଦୁର୍ବାସା । ଦ୍ୱିତୀୟ ଜଣକ ସ୍ୱୟଂ ସୂର୍ଯ୍ୟଦେବ ।''

''ବଡ଼ ବିଚିତ୍ର !!'' ଆପେ ଆପେ ବାହାରିଆସିଲା ମୋ' କଣ୍ଠରୁ । ମୋ' ସାଥିରେ ଥିବା ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନ ଓ ଦୁଃଶାସନ ମଧ୍ୟ ସମଧିକ ବିସ୍ମିତ ।

ମୋର ଇଚ୍ଛା ହେଉଥିଲା ଦୁର୍ବାସା ଋଷିଙ୍କୁ ପଚାରି ସେଇ ଚିତ୍ରଟିର ରହସ୍ୟ ବୁଝିନେବା ପାଇଁ । ବିଶେଷକରି ସେହି ପେଟିକାରେ କ'ଣ ଥିଲା ଜାଣିବାପାଇଁ । କିନ୍ତୁ ଦୁର୍ଭାଗ୍ୟକୁ ସେ ସେଦିନ ଯଜ୍ଞସଭାରେ ଥିଲେ ଅନୁପସ୍ଥିତ । ତାଙ୍କ ପାଇଁ ଉଦ୍ଦିଷ୍ଟ ଆସନଟି ସେମିତି ଶୂନ୍ୟ ପଡ଼ିଲା ସିନା, ସେ ଆଉ ଆସି ନ ଥିଲେ । ପରେ ଅବଶ୍ୟ ଅନେକବାର ମୁଁ ସଂଧ୍ୟାତର୍ପଣ କରୁଥିବା ସମୟରେ ପଚାରିଥିଲି ମୋ' ଆଦ୍ୟଗୁରୁ ସୂର୍ଯ୍ୟଦେବଙ୍କୁ, ''କହନ୍ତୁ ଗୁରୁଦେବ, କ'ଣ ଥିଲା ସେ ପେଟିକା ମଧ୍ୟରେ ?'' ଖାଲି ଯାହା ଶୁଣିପାରିଥିଲି ସେଇ ସୂର୍ଯ୍ୟମଣ୍ଡଳ ମଧ୍ୟରୁ ଭାସି ଆସୁଥିବା ଖଳ ଖଳ ହସର ଲହରୀ । ମତେ ଜଣାପଡୁଥିଲା ସେ ଯେମିତି କହୁଛନ୍ତି ହସି ହସି, ''ସେଥିରେ ମୁଇଁ ଥିଲି ପୁତ୍ର କର୍ଣ୍ଣ । ହଁ, ମୁଇଁ ହିଁ ଥିଲି । ଥିଲା ମୋର ଆତ୍ମା ।'' ଏଥିରେ ରହସ୍ୟର କୁହେଳିକା ମୋର ଘନତର ହେଲା ସିନା, କିଛି କମିଲା ନାହିଁ । କାଳକ୍ରମେ ପାସୋରି ବସିଲି ଏ ସବୁ କଥା ଜୀବନର ସଂଗ୍ରାମର ଘଟଣାବହୁଳ ପ୍ରେକ୍ଷାପଟରେ ।

ହଁ, ଇନ୍ଦ୍ରପ୍ରସ୍ଥର ରାଜଭବନ କଥା କହୁଥିଲି ପରା । ଆମେ ସେଇ ରହସ୍ୟମୟ ଚିତ୍ରଟି ପାଖରୁ ଚାଲିଲୁ ଆଗକୁ ଆଗକୁ । ଯେଉଁଠି ଯାହା ଦେଖିଲୁ ସବୁଠି ଲାଗିଲା ଆଖି ଖୋସି ହୋଇଗଲା ଭଳି । ଦୁର୍ଯ୍ୟୋଧନଙ୍କ ଭଳି ଜଣେ ଲକ୍ଷ୍ମୀବନ୍ତ ପୁରୁଷ ବି ଏଇ ସମୃଦ୍ଧି ଦେଖି ହୋଇଉଠୁଥିଲେ ଆଚମ୍ବିତ ।

ଅନ୍ତଃପୁରାଧ୍ୟକ୍ଷ ଆମକୁ ଅନ୍ତର୍ଭବନ ଦେଖାଇଦେଲେ । ଗୋଟିଏ ଗୋଲାକୃତି ଅଙ୍ଗନ । ତାହାର ଚତୁର୍ଦ୍ଦିଗରେ ସୁନ୍ଦର ସୁନ୍ଦର କକ୍ଷଟିମାନ । ସ୍ତମ୍ଭଗୁଡ଼ିକରେ ଖଞ୍ଜାଯାଇଛି ମୋତି, ମାଣିକ୍ୟ, ବୈଦୁର୍ଯ୍ୟ ଆଦି ନାନାଦି ରତ୍ନ । ଭିତ୍ତିଗୁଡ଼ିକ ମଧ୍ୟ ସମଧିକ ରତ୍ନସଜ୍ଜିତ । ଦୁର୍ଯ୍ୟୋଧନ ଆମ ଆଗେ ଆଗେ ଚାଲୁଥାନ୍ତି । ତଳକୁ ଲମ୍ବି ଯାଇଥିବା କେତୋଟି ସୋପାନ ଅତିକ୍ରମ କରିବାପରେ ପଡ଼ିଲା ଏକ ସଲିଳପୂର୍ଣ୍ଣ ଅଙ୍ଗନ । ଅନ୍ତତଃ ସେମିତି ଦିଶୁଥାଏ ଆମ ଆଖିକୁ । ଦୁର୍ଯ୍ୟୋଧନ ପୋଷାକ ଆଦି ଆଣ୍ଠୁ ପର୍ଯ୍ୟନ୍ତ ଟେକି ଆଗେଇବାକୁ ଲାଗିଲେ । ପ୍ରଥମ ପାଦ ପକାଇବା ମାତ୍ରେ ବୁଝିପାରିଲେ ତାଙ୍କ ଭ୍ରମ । ପ୍ରକୃତରେ ତାହା ଥିଲା ଶୁଦ୍ଧ ସ୍ଫଟିକ ନିର୍ମିତ ଏକ ଅଙ୍ଗନ । ପାଖ କକ୍ଷରୁ ଦାସୀମାନଙ୍କ ଖିଲି ଖିଲି ହସର କଳରବ । ଲକ୍ଷ୍ୟ କଲି କୃଷ୍ଣା ମଧ୍ୟ ଗବାକ୍ଷର ଅନ୍ତରାଳରେ ଥାଇ ହସୁଥାନ୍ତି । ଅପ୍ରସ୍ତୁତ ହୋଇଗଲେ ମହାମାନୀ ଦୁର୍ଯ୍ୟୋଧନ । ଆଗକୁ ବଢ଼ିଚାଲିଲୁ ଆମେ । ଦୁର୍ଯ୍ୟୋଧନ ଗାମ୍ଭୀର୍ଯ୍ୟର ସହିତ ଆଗେଇ ଚାଲିଲେ ଦ୍ରୁତଗତିରେ । କେତୋଟି ସୋପାନର ଆରୋହଣ ଓ ପରେ ପରେ ଆଉ କେତୋଟି ସୋପାନର ଅବରୋହଣ । ତାହା ପରେ ଏକ ଦୀର୍ଘାୟତନ ଅଙ୍ଗନ । ଦୁର୍ଯ୍ୟୋଧନ ଦୁମ୍ ଦୁମ୍ କରି ଚାଲିବାକୁ ଲାଗିଲେ ତାହା ଉପରେ । ତାହା ଥିଲା ଏକ ଜଳକୁଣ୍ଡ । ଦିଶୁଥିଲା ସ୍ଫଟିକର ଅଙ୍ଗନ ଭଳି । ସମସ୍ତ ପରିଚ୍ଛଦ ତାଙ୍କର ସିକ୍ତ । ଏଥରକ ରମଣୀମାନଙ୍କ ପରିହାସର କଳରବ ଆହୁରି ମୁଖର । ସରମରେ ମରିଗଲେ ଦୁର୍ଯ୍ୟୋଧନ । ସମସ୍ତ ଅଭିମାନ ତାଙ୍କର ଚୂର୍ଣ୍ଣ ହୋଇଗଲା ଯେମିତି ।

"ଅନ୍ଧପିତାଙ୍କ ପୁତ୍ର ଅନ୍ଧ ହେବେ ନାହିଁ ତ ଆଉ କ'ଣ ?" ଗବାକ୍ଷର ଅନ୍ତରାଳରୁ ଭାସିଆସିଲା ଏକ ଶ୍ଳେଷପୂର୍ଣ୍ଣ ବାଣୀ । କୃଷ୍ଣା ହସି ହସି କହୁଥିଲେ ।

ନିର୍ବାକ୍ ନିଷ୍ପନ୍ଦ ମୁଁ । ଏଭଳି ବିନୋଦପୂର୍ଣ୍ଣ ପରିସ୍ଥିତିରେ ସାମାନ୍ୟତମ ଭାବରେ ଲଘୁ ଭାବନା ଚିନ୍ତା କଲା ନାହିଁ ମୋ' ମନକୁ । ମନେ ମନେ ଖୁବ୍ କ୍ରୋଧିତ ହୋଇଉଠିଲି । ନାସିକା ମୋର ଘୃଣାରେ ଆକୁଞ୍ଚିତ । ଭାବୁଥାଏ, ପାଣ୍ଡବବଧୂ କୃଷ୍ଣା ପୁଣି ଏମିତି କଥା କହିଲେ ? ଦୁର୍ଯ୍ୟୋଧନ ହୋଇପାରନ୍ତି ତାଙ୍କ ଦେବର । ତେଣୁ ପରିହାସର ପାତ୍ର । ସେ ତ ଆଜି ଇନ୍ଦ୍ରପ୍ରସ୍ଥର ରାଜଭବନରେ ଜଣେ ମାନ୍ୟଗଣ୍ୟ ଅତିଥି । ତାଙ୍କ ପ୍ରତି ପୁଣି ଏଭଳି କ୍ରୂର ପରିହାସ । ଏହା କ'ଣ ରାଜମହିଷୀସୁଲଭ ଶିଷ୍ଟାଚାର ? ଏହା କ'ଣ ଆର୍ଯ୍ୟସୁଲଭ ଆତିଥେୟତାର ନିଦର୍ଶନ ? ଅତିଥିଙ୍କୁ ପରା ଦେବତାଜ୍ଞାନରେ ପୂଜା କରିବା କଥା । ଏଇଭଳି ପୂଜାର ବିଧି କ'ଣ ଶିଖିଛନ୍ତି ଦ୍ରୁପଦନନ୍ଦିନୀ କୃଷ୍ଣା ? ଛି ! ଛି ! ପୁଣି ମହାରାଜ ଧୃତରାଷ୍ଟ୍ର ତାଙ୍କ ଜ୍ୟେଷ୍ଠ ଶ୍ୱଶୁର । ତାଙ୍କ ପ୍ରତି ପୁଣି ଏଭଳି ଆକ୍ଷେପପୂର୍ଣ୍ଣ ବାଣୀର ପ୍ରହାର ! ପୂର୍ବରୁ ତ ତାଙ୍କ ଉପରେ ପ୍ରତିଶୋଧ ନେବାର ଇଚ୍ଛା ମୋର ଥିଲା ପ୍ରବଳ । ଆଜିର

ଆଚରଣରେ ତାହା ହୋଇଉଠିଲା ପ୍ରବଳତର । ମନେ ମନେ ସ୍ଥିର କରିନେଲି, ନିଶ୍ଚୟ ଦିନେ ନା ଦିନେ ନେବି ଏହାର ପ୍ରତିଶୋଧ । ହଁ, ନିଶ୍ଚୟ ନେବି ।

ଅନ୍ତଃପୁରାଧ୍ୟକ୍ଷ ସଙ୍ଗେ ସଙ୍ଗେ ଜଣେ ଦାସୀକୁ ଆଦେଶ ଦେଲେ ନୂତନ ବସ୍ତ୍ର ଆଣିବାପାଇଁ । ତାହା ପିନ୍ଧି ଦୁର୍ଯ୍ୟୋଧନ ଫେରିଆସିଲେ ଯଜ୍ଞସଭାକୁ । ଆମେ ମଧ୍ୟ ଫେରିଆସିଲୁ ତାଙ୍କ ସାଥିରେ । ସେତିକିରେ ବନ୍ଦ ହେଲା ଆମ ରାଜଭବନ ଦେଖିବା ।

ଦୁର୍ଯ୍ୟୋଧନଙ୍କୁ ଏଭଳି ବିମର୍ଷ ବଦନ ଧରି ଫେରିଆସିବାର ଦେଖି ପିତାମହ ଭୀଷ୍ମ ସ୍ତମ୍ଭିତ-ଚକିତ । ପଚାରିଲେ, ''କ'ଣ ହୋଇଛି ତୁମର ପୁତ୍ର ଦୁର୍ଯ୍ୟୋଧନ ?''

ଦୁର୍ଯ୍ୟୋଧନ କିନ୍ତୁ ନିରୁତ୍ତର ।

ବାରମ୍ବାର ପିତାମହ ପଚାରିବାରେ ସେ କହିଲେ, ''ପିତାମହ ! ମୁଁ ବର୍ତ୍ତମାନ ହସ୍ତିନାପୁରକୁ ଫେରିଯିବା ପାଇଁ ଚାହୁଁଛି ।''

''କାହିଁକି ?''

''ସେ କଥା ପରେ କହିବି ।''

''କିନ୍ତୁ ବର୍ତ୍ତମାନ ଫେରିଗଲେ କ'ଣ ଠିକ୍ ହେବ ? ପୁତ୍ର ଯୁଧିଷ୍ଠିର କ'ଣ ଭାବିବେ ? ଅନ୍ୟମାନେ ବି କ'ଣ ଭାବିବେ ? ଯଜ୍ଞ ଯେ ଆରମ୍ଭ ହୋଇ ନାହିଁ । ତେଣୁ ଯଜ୍ଞ ଶେଷ ପର୍ଯ୍ୟନ୍ତ ତୁମର ରହିବା ଉଚିତ ହେବ ।'' ଜଣେ ହିତାକାଙ୍କ୍ଷୀ ବ୍ୟକ୍ତି ଭାବରେ ଉପଦେଶ ଦେବାକୁ ଯାଇ କହିଲେ ପିତାମହ । ଅଶ୍ୱତ୍ଥାମା ଓ ମୁଁ – ଆମେ ମଧ୍ୟ ବୁଝାଇଲୁ । ଶେଷକୁ ସେ ରହିବାପାଇଁ ରାଜି ହେଲେ ଏବଂ ବସିଲେ ଯାଇ ନିଜ ଆସନରେ ।

ଲକ୍ଷ୍ୟ କଲି, ମନରେ ତାଙ୍କର ଆଦୌ ନ ଥାଏ ସ୍ଫୂର୍ତ୍ତିଭାବ । ନିରନ୍ତର ଚିନ୍ତିତ । ଅନ୍ୟମନସ୍କ ବି । ଅନ୍ତର୍ବେଦନାରେ କୁହୁଳୁଥାନ୍ତି ଅବିରତ । ମଝିରେ ମଝିରେ ଆଖି ଦୁଇଟି କ୍ରୋଧରେ ହୋଇଉଠୁଥାଏ ଆରକ୍ତ । ସଜଫୁଟା ମନ୍ଦାରଫୁଲ ଯେମିତି !

ହଠାତ୍ ସଭା ମଧ୍ୟରେ ମୃଦୁ ଗୁଞ୍ଜରଣ । ଦ୍ୱାରକାଧିପତି କୃଷ୍ଣ ଆସିଗଲେ । ଆଜିର ଯଜ୍ଞବେତ୍ତା ଆସିଗଲେ । ଆଜିର ଯଜ୍ଞାନୁଷ୍ଠାନରେ ଅଗ୍ରପୂଜା ପାଇବାର ଅଧିକାରୀ ଆସିଗଲେ । ସମସ୍ତଙ୍କ ଦୃଷ୍ଟି ଯଜ୍ଞସଭାର ମହାଦ୍ୱାରରେ ସନ୍ନିବଦ୍ଧ । ମୁଁ ମଧ୍ୟ ସେହି ଦିଗକୁ ଚାହିଁଲି ସତୃଷ୍ଣ ନୟନରେ । କୃଷ୍ଣ ସର୍ବପ୍ରଥମେ ଜ୍ୟେଷ୍ଠ ଭ୍ରାତୃଜ୍ଞାନରେ ଯୁଧିଷ୍ଠିରଙ୍କୁ କଲେ ପ୍ରଣାମ । ତାହା ପରେ ଆଲିଙ୍ଗନ କଲେ ଅର୍ଜୁନଙ୍କୁ ସଖାପ୍ରେମରେ । ଯୁଧିଷ୍ଠିର ତାଙ୍କ ହାତ ଧରି ଆଗେଇନେଲେ ଯଜ୍ଞମଣ୍ଡପସ୍ଥ ସ୍ୱର୍ଣ୍ଣ-ସିଂହାସନ ନିକଟକୁ । ତାଙ୍କର ଆଉ ଗୋଟିଏ ହାତ ଆଶ୍ରା କରିଥାଏ ଅର୍ଜୁନଙ୍କ ସ୍କନ୍ଧକୁ । ତିନିଜଣଯାକ ଆଗେଇ ଚାଲିଥାନ୍ତି ଯଜ୍ଞମଣ୍ଡପ ଦିଗକୁ । ଯୁଧିଷ୍ଠିରଙ୍କର ସ୍ୱର୍ଣ୍ଣାଭ ତନୁଶ୍ରୀ । କୃଷ୍ଣ ଓ ଅର୍ଜୁନ ଉଭୟଙ୍କ ବର୍ଣ୍ଣ ଶ୍ୟାମଳ । ସେମାନଙ୍କ ଧୀର ଚାଲିରୁ ଜଣାପଡୁଥାଏ ସତେ ଯେମିତି ବିଜୁଳିର ରେଖାକୁ ଧାରେ ଧାରେ ବହି ଦୁଇ ମେଘଖଣ୍ଡ ଲଗା-ଲଗି ହୋଇ ଭାସି ଭାସି ଯାଉଛନ୍ତି ପବନରେ ! କୃଷ୍ଣ ସଭାମଣ୍ଡପରେ ପ୍ରବେଶ କରିବାମାତ୍ରେ ତାଙ୍କୁ ମାନ୍ୟତା ଦେଖାଇବାକୁ ଯାଇ ସମସ୍ତେ

ଆସନ ଛାଡ଼ି ଠିଆ ହୋଇଗଲେ କେବଳ ଜଣଙ୍କ ଛଡ଼ା । ଆସନରେ ସ୍ଥିର ହୋଇ ଦମ୍ଭ ଦେଖାଇ ବସିଥିବା ବ୍ୟକ୍ତିଜଣଙ୍କ ଆଉ କେହି ନୁହନ୍ତି । ସେ ଚେଦିରାଜ ଶିଶୁପାଳ । ବହୁ କାରଣରୁ ତାଙ୍କର କୃଷ୍ଣଙ୍କ ସହିତ ଶତ୍ରୁତା । ଏଇ ଶତ୍ରୁତା ବଢ଼ିଯାଇଥିଲା ସେହିଦିନଠାରୁ ଯେଉଁଦିନ କୃଷ୍ଣ ଅପହରଣ କରିନେଇଥିଲେ ଭୀଷ୍ମକନନ୍ଦିନୀ ରୁକ୍ମିଣୀଙ୍କୁ ଏବଂ ବରବେଶୀ ଶିଶୁପାଳ ଫେରିଯାଇଥିଲେ ବ୍ୟର୍ଥମନୋରଥ ହୋଇ । କୃଷ୍ଣଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରିବାକୁ ଯାଇ ସଦର୍ପରେ ବସିରହିଲେ ନିଜ ଆସନରେ । ସଂପୂର୍ଣ୍ଣ ଉପେକ୍ଷାଭାବ ।

କୃଷ୍ଣ ତାଙ୍କ ଲାଗି ଉଦ୍ଦିଷ୍ଟ ଆସନରେ ଯାଇ ବସିଲେ । ତାଙ୍କ ପରେ ଆଗନ୍ତୁକ ଅତିଥିମାନେ ମଧ୍ୟ ବସିଲେ ନିଜ ଆସନରେ ।

ଯୁଧିଷ୍ଠିର ଆଗେଇ ଆସିଲେ ତାଙ୍କୁ ପାଦ୍ୟ-ଅର୍ଘ୍ୟ ଦେଇ ତାଙ୍କର ଯୋଗ୍ୟ ଅଗ୍ରପୂଜା କରିବାପାଇଁ ।

ହଠାତ୍ ସାରା ସଭାମଣ୍ଡପକୁ ଗୁଞ୍ଜରିତ କରିଦେଉଥିବା ଏକ କର୍କଶ ଶବ୍ଦ ତାଙ୍କୁ ବାରଣ କଲା ସେହି ଉଦ୍ୟମରୁ । ଚେଦିରାଜ ଶିଶୁପାଳ ନିଜ ଆସନରୁ ଉଠି ଉଚ୍ଚସ୍ୱରରେ କହୁଥାନ୍ତି, ''ରହନ୍ତୁ ରାଜା ଯୁଧିଷ୍ଠିର, ରହନ୍ତୁ ।''

''କାହିଁକି ?'' ଯୁଧିଷ୍ଠିରଙ୍କର ସ୍ତମ୍ଭିତଚକିତ ପ୍ରଶ୍ନ । ମୁଖରେ ତାଙ୍କର ବିରକ୍ତିଭାବ । କିନ୍ତୁ ତାହାକୁ ପ୍ରକାଶ କରିପାରୁ ନ ଥାନ୍ତି ବାକ୍ୟରେ ଆତିଥେୟତା ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ଯାଇ । ଭୀମସେନଙ୍କ ପକ୍ଷରେ ଯଜ୍ଞକାର୍ଯ୍ୟରେ ଏଭଳି ବାଧା ସୃଷ୍ଟି କରିବା ଥାଏ ଅସହ୍ୟ । ସେ ରାଗିଯାଇ ଗଦା ଉଠାଇବା ଲାଗି ଉଦ୍ୟତ । ଭୀଷ୍ମ ତାଙ୍କୁ ବୁଝାଇ-ସୁଝାଇ ସାନ୍ତ୍ୱନା ଦେବାକୁ ଲାଗିଲେ । କୌଣସିମତେ ଶାନ୍ତ ହେଲେ ସେ ।

ଶିଶୁପାଳ ଗର୍ଜିଉଠି କହିଲେ, ''ହେ ରାଜା ଯୁଧିଷ୍ଠିର ! ସଭା ମଧ୍ୟରେ ଏତେ ଏତେ ରାଜା-ମହାରାଜା ବସିଛନ୍ତି । ପିତାମହ ଭୀଷ୍ମଙ୍କ ଭଳି ବୀର ପୁରୁଷ ଅଛନ୍ତି । ପରାଶର, ବ୍ୟାସ ଆଦି ମୁନିଋଷିମାନେ ଅଛନ୍ତି । ଅଛନ୍ତି ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା ଆଦି ବ୍ରହ୍ମବିତ୍ ବ୍ରାହ୍ମଣମାନେ । ଅଥଚ ସେମାନଙ୍କ ମଧ୍ୟରୁ କାହାଙ୍କୁ ଜଣଙ୍କୁ ଅଗ୍ରପୂଜା ଲାଗି ଚୟନ ନ କରି ଆପଣ ଚୟନ କରିଛନ୍ତି କୃଷ୍ଣ ଭଳି ଜଣେ ସାମାନ୍ୟ ଗୋପାଳ ବାଳକକୁ ! ଜଣେ ବ୍ୟଭିଚାରୀ ଭ୍ରଷ୍ଟ ପୁରୁଷକୁ । ଜଣେ ମାତୁଳଙ୍କ ହତ୍ୟାକାରୀକୁ । ବଡ଼ ଆଶ୍ଚର୍ଯ୍ୟ କଥା ! ଆପଣ ତେଣୁ ବନ୍ଦ କରନ୍ତୁ ଏ ଅଗ୍ରପୂଜା । ନିଜ ନିଷ୍ପତ୍ତିର ପୁନର୍ବିଚାର କରନ୍ତୁ ।''

କୃଷ୍ଣସଖା ଅର୍ଜୁନ ସହିପାରିଲେ ନାହିଁ ନିଜ ପ୍ରିୟସଖାଙ୍କ ପ୍ରତି ଏଭଳି ଅପମାନ । ପ୍ରବଳ ପ୍ରଭଞ୍ଜନ ପରି ଉତ୍କ୍ଷିପ୍ତ ସେ । ଗାଣ୍ଡୀବ ଧନୁ ଉତ୍ତୋଳନ କରି ଆକ୍ଷେପକାରୀ ଶିଶୁପାଳଙ୍କ ଉପରକୁ ବାଣପ୍ରହାର କରିବାକୁ ଉଦ୍ୟତ । କୃଷ୍ଣ ହସ୍ତର ଇଙ୍ଗିତ-ଦ୍ୱାରା ତାଙ୍କୁ ବାଧା ଦେଲେ । ଆଉ ସ୍ୱୟଂ ରାଜା ଯୁଧିଷ୍ଠିର ବି ।

ଯୁଧିଷ୍ଠିର ବିନୀତ ଭାବରେ କହିଲେ, ''ହେ ମହାମାନ୍ୟ ଅତିଥିବର । ଆପଣଙ୍କର ଏଭଳି କହିବା ଅନୁଚିତ । ଆମ ସମସ୍ତଙ୍କ ମଧ୍ୟରେ କୃଷ୍ଣ ନିଶ୍ଚିତ ଭାବରେ ଅଗ୍ରଗଣ୍ୟ । ସେ ଭଗବାନ୍‌ଙ୍କ ଅବତାର ଖାଲି ନୁହନ୍ତି । ସ୍ୱୟଂ ଭଗବାନ୍ । ଆପଣ କହିଥିବା କଟୁ କଥା

ଫେରାଇ ନିଅନ୍ତୁ । ହୁଅନ୍ତୁ ନାହିଁ କୃଷ୍ଣଦ୍ରୋହୀ ।'' ପିତାମହ ଭୀଷ୍ମ, ବ୍ୟାସଦେବ ଆଦି ମଧ୍ୟ ତାଙ୍କ କଥାର ସମର୍ଥକ । ମୁନିଋଷିମାନଙ୍କର ମଧ୍ୟ ବାରମ୍ବାର ଯୁଧିଷ୍ଠିରଙ୍କର ସାଧୁବାଦ ଓ ଶିଶୁପାଳଙ୍କର ନିନ୍ଦାବାଦ । କିନ୍ତୁ ଏହାର କିଛି ହିଁ ପ୍ରଭାବ ନାହିଁ ଶିଶୁପାଳଙ୍କ ଉପରେ । ସେ ତାଙ୍କ ପୂର୍ବ କଥାରେ ଅଟଳ ।

''ହୁଁ ! ଫେରାଇନେବି ନା ଆହୁରି ବେଶି କହିବି ?'' ତାଙ୍କ କଣ୍ଠରେ ତାଚ୍ଛଲ୍ୟର ସ୍ୱର । ସେ ପୁଣି ଦୃଢ଼ତାର ସହିତ କହିଲେ, ''ମୁଁ ଶହେବାର, ହଜାରବାର କହିବି, କୃଷ୍ଣ ଅଗ୍ରପୂଜାର ଅଯୋଗ୍ୟ । ନିତାନ୍ତ ଅଯୋଗ୍ୟ । ଏଠାରେ ଉପସ୍ଥିତ ଥିବା ଅନେକଙ୍କ ପାଦଧୂଳିଠାରୁ ହୀନ । ତାଙ୍କୁ ଶତ ପଦାଘାତ କରୁଛି ।'' ଏହା କହି ଭୂମିକୁ ଖୁବ୍ ଜୋର୍‌ରେ ଆଘାତ କଲେ । ବଜ୍ର ପଡ଼ିଲା ଭଳି ଶବ୍ଦ ଶୁଭିଲା । ସମସ୍ତେ ଭୀତ-ଚକିତ । କୃଷ୍ଣଙ୍କ ସମ୍ଭାବ୍ୟ ପ୍ରତିକ୍ରିୟା ବିଷୟରେ ଅନୁମାନ କରିପାରୁଥିଲେ ବୋଧହୁଏ ।

ମୁଁ ଭାବୁଥାଏ, ପାପର କଳସ ଏବେ ପୂରିଗଲା । ଶିଶୁପାଳଙ୍କର ଆଉ ନିସ୍ତାର ନାହିଁ । କୃଷ୍ଣ ନିଶ୍ଚୟ ତାଙ୍କୁ ଦଣ୍ଡ ଦେବେ ଏଇ ଅପରାଧ ପାଇଁ । ହୁଏତ ମୃତ୍ୟୁଦଣ୍ଡ ବି ହୋଇପାରେ । ହାୟ ! ବିଚରା ନିର୍ବୋଧ ଶିଶୁପାଳ ।

ମୋ' ପାଖରେ ବସିଥିବା ମିତ୍ର ଦୁର୍ଯ୍ୟୋଧନ କ'ଣ କହିବାପାଇଁ ଉଠୁଥିଲେ । ତାଙ୍କ ମୁଖଭଙ୍ଗୀରୁ ଜଣାପଡୁଥିଲା, ହୁଏତ ଶିଶୁପାଳଙ୍କ ସମର୍ଥନରେ କିଛି କହିଥାନ୍ତେ । ଅଶ୍ୱତ୍ଥାମା ଓ ମୁଁ ମିଶି କୌଣସିମତେ ଶାନ୍ତ କରାଇଲୁ ତାଙ୍କୁ । ସେ ରହିଗଲେ ।

ଏ ପର୍ଯ୍ୟନ୍ତ କୃଷ୍ଣଙ୍କ ରଙ୍ଗାଧର ତଳେ ମୃଦୁ ମୃଦୁ ହସର ଧାରା ଉଠୁଥିଲା ଲହରାଇ । ପ୍ରଥମେ ପ୍ରଥମେ ଏଇ ବାକ୍ୟବାଣର କୌତୁକକୁ ଉପଭୋଗ କରୁଥିଲେ ସେ । କେବଳ ଉପଭୋଗ ତ ନୁହେଁ ଉପେକ୍ଷା ବି । ସିଂହ ନିକଟରେ ଶୃଗାଳର ବ୍ୟର୍ଥଚିତ୍କାର ଉପେକ୍ଷଣୀୟ ଯେମିତି । କିନ୍ତୁ ହଠାତ୍ ଏବେ ପରିବର୍ତ୍ତିତ ତାଙ୍କ ଭାବମୂର୍ତ୍ତି । ମୁଖମଣ୍ଡଳ ଗମ୍ଭୀର । ଚକ୍ଷୁଯୁଗଳ ଆରକ୍ତ । ସାରା ତନୁ ଫୁଲିଉଠିବା ଭଳି ଲାଗୁଥାଏ । ଧୀରେ ଧୀରେ ଏଇ ଭାବମୂର୍ତ୍ତି ଧରିବାକୁ ଯାଉଥାଏ ଏକ ଭୀମ ସଂହାରକ ରୂପ । ସତେ ଯେମିତି ମହାପ୍ରଳୟର ଏକ ଆଦ୍ୟ ସୂଚନା ! ସେ ଆସନରୁ ଉଠି ସଭାସଦ୍‌ମାନଙ୍କ ପ୍ରତି ଲକ୍ଷ୍ୟ କରି କହିଲେ, ''ହେ ଆଗନ୍ତୁକ ଅତିଥିବୃନ୍ଦ ! ହେ ମୋର ପୂଜାସ୍ପଦ ବ୍ୟକ୍ତିବୃନ୍ଦ ! ଆପଣମାନେ ସମସ୍ତେ ଶୁଣନ୍ତୁ । ମୁଁ ଶିଶୁପାଳର ମାଆଙ୍କୁ ବର ଦେଇ କହିଥିଲି, ଯାର ଶହେ ଅପରାଧ ପର୍ଯ୍ୟନ୍ତ ସହିଯିବି । ଏ ପର୍ଯ୍ୟନ୍ତ ସେହି ପ୍ରତିଶ୍ରୁତିକୁ ପାଳିଆସିଛି ଅକ୍ଷୁଣ୍ଣ ଭାବରେ । ଏହାଠାରୁ ଅଧିକ ଅପରାଧ ଅସହନୀୟ । ଆଜି ଯେ ଭରା ସଭା ମଧ୍ୟରେ ମତେ ଯେଉଁଭଳି ଭାବରେ ଅପମାନିତ କରିଛି, ତାହାଦ୍ୱାରା କରିବସିଛି ଏକୋତ୍ତର ଶତତମ ଅପରାଧ । ଏହା ତେଣୁ ଅକ୍ଷମଣୀୟ । ଏହି ଅପରାଧ ପାଇଁ ଯେ ଦଣ୍ଡ ପାଇବାର ପାତ୍ର । ମୁଁ ଯାକୁ ଏଇ ବର୍ତ୍ତମାନ ହିଁ ସମୁଚିତ ଦଣ୍ଡ ଦେଉଛି । ଯାର ମୁହଁକୁ ବନ୍ଦ କରିଦେଉଛି ଚିରଦିନ ପାଇଁ ।'' ଏହା କହି ସେ ମନେ ମନେ କ'ଣ ସ୍ମରଣ କରିବାକୁ ଲାଗିଲେ । ଆଖି ଦିଓଟି ସେମିତି ଜଳୁଥାଏ ଦପ୍ ଦପ୍ ହୋଇ ।

ସଙ୍ଗେ ସଙ୍ଗେ ଏକ ଭୀଷଣ ଘର୍ଘର ନାଦରେ କମ୍ପିଉଠିଲା ସଭାମଣ୍ଡପ । ଚାରିଆଡ଼େ ଅପୂର୍ବ ତେଜ ବିଚ୍ଛୁରିତ । ତାହା ସହିତ ଅତ୍ୟୁଜ୍ଜ୍ୱଳ ଆଲୋକ ବି । ସତେ ଯେମିତି ଶତ ଶତ ବିଦ୍ୟୁତ୍‌ର ଏକତ୍ର ବୃନ୍ଦନୃତ୍ୟ ! ସାରା ସଭାମଣ୍ଡପରେ ଜ୍ୱଳନ୍ତ ଅଗ୍ନିଶିଖାର ତୀବ୍ର ଝଲକ । ଦାରୁଣ ଉତ୍ତାପରେ ସମସ୍ତେ ପୀଡ଼ିତ । କୃଷ୍ଣଙ୍କ ହସ୍ତରେ ଦେଖାଦେଲା ଏକ ଭୀମ ଭୟଙ୍କର ଚକ୍ର । ମୁହୂର୍ତ୍ତକ ମଧ୍ୟରେ ତାହା ଆସି ପଡ଼ିଲା ଶିଶୁପାଳଙ୍କ ଶିରରେ । ତାଙ୍କ ମୁଣ୍ଡଗଣ୍ଡି ଅଲଗା ହୋଇଗଲା । ମୃତ ଦେହ ଲୋଟିଲା ସଭାସ୍ଥାନରେ । କୃଷ୍ଣବିଦ୍ୱେଷୀ ରାଜାଙ୍କର ଯାହା ହେବାର କଥା ତାହାହିଁ ହେଲା । ଆମେ ସମସ୍ତେ ଆଶ୍ଚର୍ଯ୍ୟ-ଚକିତ ହୋଇ ଚାହିଁ ରହିଥିଲୁ ଏଇ ବିସ୍ମୟକର ଦୃଶ୍ୟକୁ । ଏହାର ଅନ୍ତିମ ପର୍ଯ୍ୟାୟରେ ଆଖି ବୁଜିହୋଇ ଯାଇଥିଲା ଭୟରେ । ଆଖି ଖୋଲି ଦେଖିଲୁ, ସବୁ ପୁଣି ଆଶ୍ଚର୍ଯ୍ୟଜନକ ଭାବରେ ଶାନ୍ତ । ଚକ୍ର କୁଆଡ଼େ ଯାଇଛି ଉଭେଇ । କୃଷ୍ଣଙ୍କ ଭୀମ-ଭୈରବ ମୂର୍ତ୍ତି ଆଉ ନାହିଁ । ହସ ହସ ମୁଖ ଧରି ବସିଛନ୍ତି ସେ ଆସନରେ । ସ୍ୱର୍ଣ୍ଣମୟ ଆସନରେ ତାଙ୍କ ଶ୍ୟାମଳ କୋମଳ ତନୁର ସୁଷମା ଖୁବ୍ ଶୋଭମାନ । ବିଜୁଳି ସିନା ମେଘକୋଳରେ ଖେଳେ ଏଠି ଏକ ଅଦ୍ଭୁତ ଦୃଶ୍ୟ ଚହଟାଇ ବିଜୁଳି କୋଳରେ ଖେଳୁଛି ମେଘ ଯେମିତି ! ସଂପୂର୍ଣ୍ଣ ନିର୍ବିକାର ! ନିସ୍ତରଙ୍ଗ ! କିଛି ଯେମିତି ଘଟି ନାହିଁ । ସଭାସ୍ଥଳରେ ପଡ଼ିଛି ଶିଶୁପାଳଙ୍କ ରକ୍ତଲିପ୍ତ ତନୁ ନିତାନ୍ତ ବିକଳ-ଅସହାୟ ଭାବରେ । ଏତେ ଦମ୍ଭ ଓ ସ୍ପର୍ଦ୍ଧାର ଆଧାର ଏବେ ଜଡ଼ ନିଷ୍ପନ୍ଦ !

ରାଜକର୍ମଚାରୀମାନେ ତାଙ୍କ ଶବକୁ ଉଠାଇନେଲେ । ପରେ ପରେ ମନ୍ତ୍ରସିକ୍ତ ଜଳଦ୍ୱାରା ପରିଶୋଧିତ କରାଗଲା ସ୍ଥାନଟିକୁ । ପୂର୍ବ ବ୍ୟବସ୍ଥା ଅନୁସାରେ ରାଜା ଯୁଧିଷ୍ଠିର ପାଦ୍ୟ ଅର୍ଘ୍ୟ ଦେଇ କୃଷ୍ଣଙ୍କର ଅଗ୍ରପୂଜା କଲେ । ତାହା ପରେ ଆରମ୍ଭ ହେଲା ଯଜ୍ଞ । ପୂତପବିତ୍ର ବେଦମନ୍ତ୍ରର ଝଙ୍କାରରେ ମୁଖରିତ ହେବାକୁ ଲାଗିଲା ଗଗନପବନ ।

ଆମେ ସମସ୍ତେ ଏମିତି ମନ୍ତ୍ରମୁଗ୍ଧ ହୋଇଯାଇଥିଲୁ ଯେ ଯଜ୍ଞର ଆରମ୍ଭ ଓ ଶେଷ ମଧ୍ୟରେ ଥିବା ସମୟର ବ୍ୟବଧାନଟିକୁ ଆଦୌ ଜାଣିପାରି ନ ଥିଲୁ । ମୁଁ ଖାଲି ଅନେକ ସମୟ ଧରି ବାରମ୍ବାର ଚାହୁଁଥାଏ କୃଷ୍ଣଙ୍କ ଶାନ୍ତ-କାନ୍ତ କମନୀୟ ମୁଖମଣ୍ଡଳକୁ । ଯେତେ ଦେଖୁଥାଏ, ସେତେ ଦେଖିବାକୁ ମନ ହେଉଥାଏ । ସେତେ ପହଁରୁଥାଏ ବିସ୍ମୟର ମହାପାରାବାରରେ । ଏତେ ଶାନ୍ତକାନ୍ତ କୋମଳ ରୂପଶ୍ରୀ ! ତାହା ଭିତରେ ପୁଣି ଛପିରହିଛି ଏତେ କଠିନତା ! ଏତେ ନିଷ୍ଠୁରତା ! ଏତେ ବୀର୍ଯ୍ୟ-ବିକ୍ରମ !

ବାରମ୍ବାର ମୋ' ମନରେ ପ୍ରଶ୍ନ — ଏଇ ଯେଉଁ କୃଷ୍ଣ ନାମଧାରୀ ଅଲୌକିକ ବ୍ୟକ୍ତିତ୍ୱ, ସେ କିଏ ? ସତରେ ସେ କିଏ ? ସେ କ'ଣ କେବଳ ଅର୍ଜୁନଙ୍କ ସଖା ? ଅଥବା ଯଦୁକୁଳନନ୍ଦନ ? କିମ୍ବା ଦ୍ୱାରକାଧିପତି ? ଅଥବା ଏହାଠାରୁ ଆହୁରି ଅଧିକ ? ଆହୁରି ବଡ଼ ?

ଏମିତି ରହସ୍ୟର ମହାଜାଲ ମଧ୍ୟରେ ଛନ୍ଦିହୋଇରହିଥିବା ମନଃସ୍ଥିତିକୁ ନେଇ ଯଥାସମୟରେ ଫେରିଆସିଲି ହସ୍ତିନାପୁରକୁ ।

# ଅଣଷଠି

ଇନ୍ଦ୍ରପ୍ରସ୍ଥନଗରୀର ବାତାବରଣରୁ ରାଜସୂୟ ଯଜ୍ଞର ଘୃତାହୁତିର ଗନ୍ଧ ମରିଯିବା ପୂର୍ବରୁ ଏଣେ ହସ୍ତିନାପୁରରେ ଆରମ୍ଭ ହେବାକୁ ଲାଗିଲା ଆଉ ଏକ ଅଦ୍ଭୁତ ଯଜ୍ଞର ଆୟୋଜନ ! ଦ୍ୟୂତଯଜ୍ଞର ଆୟୋଜନ । ଯଜ୍ଞବେତ୍ତା ଆଉ କେହି ନୁହନ୍ତି । ସ୍ୱୟଂ କୁଟିଳବୁଦ୍ଧି ମାତୁଳ ଶକୁନି ! ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ଦ୍ୟୂତକ୍ରୀଡ଼ା ହେବ । ସେଥିପାଇଁ ଏକ ବିରାଟ ବ୍ୟବସ୍ଥା ହେବାକୁ ଯାଉଛି । ସ୍ୱତନ୍ତ୍ର ଏକ ସଭା ଡକା ଯାଉଛି । ମହାରାଜ ସ୍ୱୟଂ, ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଆଦି ସମସ୍ତଙ୍କ ଉପସ୍ଥିତିରେ ହେବ ଦ୍ୟୂତକ୍ରୀଡ଼ା । ମହାରାଜ ଏଥିପାଇଁ ଅନୁମତି ଦେଇସାରିଛନ୍ତି । ଶୁଣିଲି, ସେ କୁଆଡ଼େ ପ୍ରଥମେ ପ୍ରଥମେ ରାଜି ହେଉ ନ ଥିଲେ ଏଥିରେ । ଦ୍ୟୂତକ୍ରୀଡ଼ା ଅବଶ୍ୟ ବାରଣ ନାହିଁ କ୍ଷତ୍ରିୟମାନଙ୍କ ପାଇଁ । କିନ୍ତୁ ଏହି କ୍ରୀଡ଼ା ବେଳେବେଳେ ମୋହଗ୍ରସ୍ତ କରିଦିଏ ଖେଳାଳିମାନଙ୍କୁ । ସେମାନେ ସ୍ୱକର୍ତ୍ତବ୍ୟ ଭୁଲି ସର୍ବଦାହିଁ ମାତି ରହିଥାନ୍ତି ଏହି କ୍ରୀଡ଼ାରେ । ପରସ୍ପର ମଧ୍ୟରେ ଥିବା ବିବାଦ ଘନୀଭୂତ ହେବାର ଆଶଙ୍କା ବି ଅଛି । ଏଇ ସମ୍ଭାବ୍ୟ ପରିସ୍ଥିତିରୁ ନିଜ ପୁତ୍ରଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ମହାରାଜ ବାରମ୍ବାର ବାରଣ କରିଥିଲେ ଦୁର୍ଯ୍ୟୋଧନଙ୍କୁ । ପରାମର୍ଶ ଦେଇଥିଲେ ଏଥିରୁ ନିବୃତ୍ତ ରହିବାପାଇଁ । କିନ୍ତୁ ସବୁ ହେଲା ବୃଥା । ତାହା ସତ୍ତ୍ୱେ ସେ ବସିଲେ ଜିଦ୍ ଧରି । ତାଙ୍କ ଇଚ୍ଛା, କୌଣସିମତେ ଯୁଧିଷ୍ଠିରଙ୍କୁ ଦ୍ୟୂତକ୍ରୀଡ଼ାରେ ହରାଇଦେବେ । ନିଜର ଭବ୍ୟ ଓ ପ୍ରଶଂସନୀୟ କ୍ରୀଡ଼ାନୈପୁଣ୍ୟକୁ ଦେଖାଇବେ । ତାଙ୍କ ମୁହଁକୁ ଲାଜରେ ରଙ୍ଗାଇଦେବେ ! ସଦ୍ୟ ରାଜସୂୟ ଯଜ୍ଞରେ ସିଦ୍ଧି ହାସଲ କରି ଯେଉଁ ଗର୍ବ ଅନୁଭବ କରୁଛନ୍ତି ସେ, ତାହାକୁ କରିଦେବେ ଚୂର୍ଣ୍ଣ-ବିଚୂର୍ଣ୍ଣ । କୌରବମାନେ ଯେ ପାଣ୍ଡବମାନଙ୍କଠାରୁ ବଡ଼ ଏହା କରାଇବେ ପ୍ରତିପାଦିତ ।

ମହାରାଜ ଏହା ଶୁଣି କହିଥିଲେ, ''ପୁତ୍ର ଦୁର୍ଯ୍ୟୋଧନ ! ଦ୍ୟୂତକ୍ରୀଡ଼ାରେ ଯେ ତୁମେ ଜିତିବ ଏଥିରେ କେଉଁ ଠିକଣା ଅଛି ?''

''ମୁଁ ସେଥିର ବ୍ୟବସ୍ଥା କରିସାରିଛି ମହାରାଜ ।''

''କ'ଣ ?''

''ମୋ' ପକ୍ଷରୁ ମାମୁ ପଶାକାଠି ଚଳାଇବେ । ଆପଣ ତ ଜାଣନ୍ତି ସେ କେମିତି ପଶାଖେଳରେ ଧୁରନ୍ଧର । ଏଥିରେ ଯୁଧିଷ୍ଠିରଙ୍କର ଆଉ ନ ହାରିବାର ଗତି ଅଛି ? ସେ ନିଶ୍ଚୟ ହାରିବେ ।''

ତଥାପି ମହାରାଜଙ୍କ ମନରେ ଦ୍ୱିଧାଭାବ । ତାଙ୍କୁ ପାଣ୍ଡବମାନଙ୍କ ବିରୋଧରେ ଉତ୍ତେଜିତ କରିଦେବାର ପ୍ରୟାସ କରି ଦୁର୍ଯ୍ୟୋଧନ କହିଲେ, ''ଆପଣଙ୍କୁ ତ କହିଛି ମହାରାଜ, ସେଦିନ କୃଷ୍ଣା କିପରି ମତେ ଅପମାନିତ କରିଥିଲେ । ଆଉ ଆପଣଙ୍କୁ ବି । ଏହା ଯୁଧିଷ୍ଠିର ଓ ତାଙ୍କ ଭାଇମାନଙ୍କ କୁଶିକ୍ଷାର ଫଳ ଛଡ଼ା ଆଉ କିଛି ନୁହେଁ । କୃଷ୍ଣା ଏକା ଏକା ଏଭଳି କରିବାକୁ ସାହସ କରି ନାହାନ୍ତି । ମୁଁ ଏହାର ପ୍ରତିଶୋଧ ନେବି ।''

''ସତରେ କ'ଣ ପାଣ୍ଡବବଧୂ କୃଷ୍ଣା ମତେ ଆକ୍ଷେପ କରି କହିଲେ'' ?

''ସତ ନୁହଁ, ଆଉ କ'ଣ ମିଛ କହୁଛି ? କର୍ଣ୍ଣ, ଅଶ୍ୱତ୍ଥାମା ଓ ଭାଇ ଦୁଃଶାସନ ବି ଥିଲେ । ଆପଣ ସେମାନଙ୍କୁ ପଚାରି ବୁଝିନେଇପାରନ୍ତି ।''

''ଆଚ୍ଛା, ପରେ ବିଚାର କରି ଦେଖିବି ।'' ଏହା କହି ମହାରାଜ ନିଜ ନିଷ୍ପତ୍ତିକୁ ଏଡ଼ାଇଦେଲେ ସେତେବେଳେ ।

ପରେ ଅବଶ୍ୟ ମତେ ପଚାରି କଥାଟାର ସତ୍ୟତା ପରୀକ୍ଷା କରି ନେଲେ । ମୁଁ ସବୁ କଥା ଖୋଲିକରି କହିଦେଲି । ଶୁଣିଲି, ସେ କୁଆଡ଼େ ଅଶ୍ୱତ୍ଥାମାଙ୍କୁ ମଧ୍ୟ ଏ ବିଷୟରେ ପଚାରିଛନ୍ତି । ଦୁଃଶାସନଙ୍କୁ ପଚାରିଛନ୍ତି କି ନାହିଁ ମତେ ଅଜଣା । ଏଥିରୁ ପରୀକ୍ଷା କରିନେଲେ ଦୁର୍ଯ୍ୟୋଧନଙ୍କ କଥାର ସତ୍ୟାସତ୍ୟ ।

ମନ ତାଙ୍କର କ୍ଷୁଣ୍ଣ । ଚିତ୍ତ ବିକ୍ଷୁବ୍ଧ । ନିଜ ବଧୂଙ୍କର ଏଭଳି ଆକ୍ଷେପମୂଳକ ବାଣୀ । ଏହାଠାରୁ ବଳି ଅପମାନ ଆଉ କ'ଣ ହୋଇପାରେ ? ହୁଏତ ପାଣ୍ଡବମାନଙ୍କର ବି ସମର୍ଥନ ଥାଇପାରେ ଏହା ପଛରେ । ମନେ ମନେ ଭାବୁଥାନ୍ତି ବୋଧହୁଏ ।

ସେ ଅବିଳମ୍ବେ ଦୁର୍ଯ୍ୟୋଧନଙ୍କୁ ଡକାଇ ନିଜ ସ୍ୱୀକୃତି ଜଣାଇଲେ । ମହାମନ୍ତ୍ରୀ ବିଦୁରଙ୍କୁ ଆଦେଶ ଦେଲେ ଦ୍ୟୂତକ୍ରୀଡ଼ାର ସମସ୍ତ ବ୍ୟବସ୍ଥା କରିବାକୁ । ତାଙ୍କ ଶତଅନୁରୋଧକୁ କଲେ ଭ୍ରୂକ୍ଷେପ । ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ କରିଥିଲେ ବାରଣ । ପିତାମହ ଭୀଷ୍ମ ଶେଷ ମୁହୂର୍ତ୍ତ ଯାଏ ଚେଷ୍ଟା କରିଥିଲେ ଦ୍ୟୂତକ୍ରୀଡ଼ାକୁ ବନ୍ଦ କରିବାପାଇଁ । କିନ୍ତୁ ହେଲେ ଅସଫଳ । ଶେଷରେ ବିରକ୍ତ ଓ କ୍ଷୁଣ୍ଣ ହୋଇ କହିଲେ, ''ପୁତ୍ର ଧୃତରାଷ୍ଟ୍ର ! ତୁମେ ଯାହା କରିବାକୁ ଯାଉଛ ତାହା ଭଲ ନୁହେଁ । ଏହାର ବିଷମୟ ଫଳ ତୁମେ ହିଁ ଭୋଗିବ । ଆଉ ଭୋଗିବ ଏଇ କୁରୁବଂଶ । ଭବିଷ୍ୟତର ଇତିହାସ ତୁମକୁ କ୍ଷମା ଦେବ ନାହିଁ ।''

ତଥାପି ମହାରାଜ ଅଟଳ ନିଜ ନିଷ୍ପତ୍ତିରେ । ଦ୍ୟୂତକ୍ରୀଡ଼ା ହେବ ହିଁ ହେବ । ପୁଣି ଶକୁନି ସ୍ଥିର କରିଥିବା କୃଷ୍ଣା ଚତୁର୍ଦ୍ଦଶୀ ତିଥିରେ । କିଏ ଜାଣେ ଏଇ ଅଶୁଭ ତିଥିରେ ହେବାକୁ ଥିବା ଯଜ୍ଞରେ କାହାଙ୍କୁ ଦିଆଯିବ ଆହୁତି ? ପାଣ୍ଡବମାନଙ୍କୁ ନା କୌରବମାନଙ୍କୁ ? ହସ୍ତିନାପୁରକୁ ନା ଇନ୍ଦ୍ରପ୍ରସ୍ଥକୁ ? ଅଥବା ଚିରାଚରିତ ଆର୍ଯ୍ୟମୂଲ୍ୟବୋଧଗୁଡ଼ିକୁ କିମ୍ବା କୁରୁବଂଶର ଉଚ୍ଚ ପରମ୍ପରାକୁ ?

ମତେ ଲାଗୁଥିଲା, ହସ୍ତିନାପୁରର ଆକାଶରେ ଯେମିତି ପ୍ରଳୟର ମହାମେଘ-ଖଣ୍ଡମାନେ ଘୋଟି ଆସୁଛନ୍ତି ଚାରିଦିଗରୁ ।

ଏଇ ଅଭାବନୀୟ ଆତଙ୍କିତ ପରିସ୍ଥିତି ମଧ୍ୟରେ ମହାରାଜଙ୍କ ସ୍ୱାକ୍ଷର ବହନ କରିଥିବା ନିମନ୍ତ୍ରଣପତ୍ରଟି ପଠାଗଲା ପାଣ୍ଡବ ରାଜଧାନୀ ଇନ୍ଦ୍ରପ୍ରସ୍ଥ ନଗରୀକୁ ।

## ଷାଠିଏ

ମହାରାଜଙ୍କ ନିମନ୍ତ୍ରଣ ରକ୍ଷା କରିଛନ୍ତି ଯୁଧିଷ୍ଠିର । ଦ୍ୟୂତକ୍ରୀଡ଼ାପାଇଁ ଜଣାଇଛନ୍ତି ସମ୍ମତି । ସଦଳବଳେ ଉପନୀତ ହସ୍ତିନାପୁରରେ । ଶକୁନିଙ୍କ ନିର୍ଦ୍ଧାରିତ ଅମାବାସ୍ୟା ତିଥିରେ ହିଁ ଆରମ୍ଭ ହୋଇଯାଇଛି ଦ୍ୟୂତକ୍ରୀଡ଼ା ।

ମନେ ମନେ ଭାବୁଥାଏ, ଏଭଳି ଗୋଟାଏ ଅଶୁଭ ତିଥି ସେ ସ୍ଥିର କଲେ କାହିଁକି ? ମହାମନ୍ତ୍ରୀ ବିଦୁର କୁଆଡ଼େ ପରାମର୍ଶ ଦେଇଥିଲ ଅନ୍ୟ ଏକ ତିଥିପାଇଁ । ରାଜଜ୍ୟୋତିଷ ମଧ୍ୟ ବାରଣ କରିଥିଲେ । କିନ୍ତୁ ତଥାପି ଶକୁନିଙ୍କର ଜିଦ୍ । ନା, ସେଇ ତିଥିରେ ହିଁ ହେବ । ମିତ୍ର ଦୁର୍ଯ୍ୟୋଧନ ବି ତାଙ୍କ କଥାରେ ବିଶ୍ୱାସ ରଖି ଜିଦ୍ ଧରିବସିଲେ ସେଇ ତିଥିଟି ଲାଗି । ମହାରାଜଙ୍କର ସ୍ୱୀକୃତି ଦେବା ଛଡ଼ା ଆଉ କିଛି ହିଁ ନ ଥିଲା ଗତ୍ୟନ୍ତର । ମନ୍ତ୍ରମୁଗ୍ଧ ବଳିପଶୁଟି ଭଳି ସେ ଯଜ୍ଞର ଯୂପକାଷ୍ଠଟିରେ ନିଜ ବେକଟିକୁ ନେଇ ରଖିଦେଲେ ଯେମିତି ।

ପୁଣି ଭାବୁଥାଏ, ଗନ୍ଧର୍ବରାଜ ଶକୁନି ପରା କୌରବମାନଙ୍କର ହିତାକାଙ୍‌କ୍ଷୀ । ସେମାନଙ୍କ ହିତସାଧନ କରିବା ଉଦ୍ଦେଶ୍ୟରେ ନିଜ ରାଜ୍ୟ ଛାଡ଼ି ହସ୍ତିନାପୁରରେ ଆସି ରହୁଛନ୍ତି । ରାଜ୍ୟଶାସନର ଭାର ପୁତ୍ର ଉଲୂକଙ୍କ ଉପରେ କରିଛନ୍ତି ସମର୍ପଣ । ସେ ତା' ହେଲେ କାହାଙ୍କ ଶୁଭ ମନାସିଛନ୍ତି ଏଇ ତିଥି ନିର୍ବାଚନରେ ? କ'ଣ ଦୁର୍ଯ୍ୟୋଧନଙ୍କର ନା ଯୁଧିଷ୍ଠିରଙ୍କର ? ନିଜ ଭଗିନୀପତି ରାଜା ଧୃତରାଷ୍ଟ୍ରଙ୍କର ନା ଭଗିନୀ ଗାନ୍ଧାରୀଦେବୀଙ୍କର ? ଅଥବା ନିଜର ? କୁରୁବଂଶର ଅଭ୍ୟୁଦୟ ନା ଧ୍ୱଂସ ଚାହାନ୍ତି ସେ ? ଚିରକପଟୀ ସେ । ତାଙ୍କ ଚିନ୍ତାଧାରାର ବ୍ୟୂହଟିକୁ ସାମାନ୍ୟତମ ଭାବରେ ବି ଭେଦ କରିପାରୁ ନ ଥିଲି । କେବଳ କାଳର ଗତିକୁ ଅପେକ୍ଷା କରି ରହିଥିଲି ଧୈର୍ଯ୍ୟର ସହିତ ।

ଦ୍ୟୂତକ୍ରୀଡ଼ାର ବିରାଟ ଆୟୋଜନ । ସେଥିପାଇଁ ଅସ୍ଥାୟୀ ଭାବେ ଏକ ସ୍ୱତନ୍ତ୍ର ଦ୍ୟୂତ-ମଣ୍ଡପ ନିର୍ମିତ । ମଣ୍ଡପକୁ ମୁହଁକରି ଅର୍ଦ୍ଧ ବୃତ୍ତାକାରରେ ପଡ଼ିଛି ଆସନମାନ ଦର୍ଶକମାନଙ୍କ ପାଇଁ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ମହାମନ୍ତ୍ରୀ ବିଦୁର ଓ ଅନ୍ୟାନ୍ୟ ଅମାତ୍ୟ ତଥା ମାନ୍ୟଗଣ୍ୟ ନାଗରିକମାନଙ୍କ ଦ୍ୱାରା ଭରପୂର ସଭାକକ୍ଷ । ମହାରାଜ ଧୃତରାଷ୍ଟ୍ର ଓ ରାଜମାତା ଗାନ୍ଧାରୀଦେବୀ ବସିଛନ୍ତି ସ୍ୱତନ୍ତ୍ର ଭବ୍ୟ ଆସନ ଦୁଇଟିରେ । ଅନ୍ୟାନ୍ୟ ପୁରନାରୀମାନେ ବି ଅଛନ୍ତି । କିନ୍ତୁ କୁନ୍ତୀଦେବୀ ନାହାନ୍ତି । ସେ ରହିଯାଇଛନ୍ତି ଇନ୍ଦ୍ରପ୍ରସ୍ଥନଗରୀରେ । ଋଷିବ୍ରାହ୍ମଣମାନେ ବି ବସିଛନ୍ତି ନିଜ ନିଜ ଲାଗି ଉଦ୍ଦିଷ୍ଟ ଆସନରେ । ଏହା କୁଆଡ଼େ ଧର୍ମପୂର୍ଣ୍ଣ ଦ୍ୟୂତକ୍ରୀଡ଼ା । ତେଣୁ ସବୁ କିଛି ଅନୁଷ୍ଠିତ ହେଉଛି ପ୍ରକାଶ୍ୟରେ । ଗୋପନରେ କିଛି ନୁହେଁ । ଧର୍ମଦେବତା ହୁଏତ ଅଦୃଶ୍ୟରେ ଥାଇ ଦେଖୁଥିବେ ଏଇ ଦ୍ୟୂତକ୍ରୀଡ଼ା । ଆଉ ମନକୁ ମନ କହି ହେଉଥିବେ — ଛି ! ଛି ! ମୋ' ନାମରେ ଏ କି ଛଳନା !

ଏକ ପକ୍ଷରେ ଯୁଧିଷ୍ଠିର । ଅନ୍ୟ ପକ୍ଷରେ ଦୁର୍ଯ୍ୟୋଧନ । କିନ୍ତୁ ଦୁର୍ଯ୍ୟୋଧନଙ୍କ ପକ୍ଷରୁ ପଶାକାଠି ଚଳାଉଛନ୍ତି ଗାନ୍ଧାରରାଜ ଶକୁନି । ଯୁଧିଷ୍ଠିର ପ୍ରଥମେ ଏଇ ବ୍ୟବସ୍ଥାରେ ଅନିଚ୍ଛୁକ ଥିଲେ ହେଁ ପରେ ରାଜି ହୋଇଯାଇଛନ୍ତି ।

ମୁଁ ଦ୍ୟୂତଭବନକୁ ପ୍ରବେଶ କରିବା ପୂର୍ବରୁ କ୍ରୀଡ଼ା ଆରମ୍ଭ ହୋଇ ଯାଇଥିଲା । ଉଭୟ ପକ୍ଷର ଗୋଟିଗୁଡ଼ିକ ଅଗ୍ରସର ହୋଇଯାଇଥିଲା କିଛିଦୂର । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମତେ ଯୁଧିଷ୍ଠିରଙ୍କ ସମ୍ମୋହିତ ଅବସ୍ଥା ଦେଖି । ମନ୍ତ୍ରମୁଗ୍ଧ ସର୍ପଟି ଭଳି ଏକ ଲୟ ଓ ଏକ ମନ । ଅତି ନିଷ୍ଠାର ସହିତ ଖେଳୁଥାନ୍ତି । ପଶାର ନିଶା ଘାରି ଦେଇଥାଏ ସଂପୂର୍ଣ୍ଣ ରୂପେ । ଚତୁର ମାତୁଳ ଶକୁନିଙ୍କ ଅଧରତଳେ ମୃଦୁ ମୃଦୁ ଦୁଷ୍ଟ ହସ । ସେ ହାରିଯାଉଥାନ୍ତି । ତଥାପି ହସର

ନ ଥାଏ ବିରାମ । ତାଙ୍କ ହାରିବାରେ ଯୁଧିଷ୍ଠିର ଅଧିକରୁ ଅଧିକ ଉତ୍ସାହିତ । ଭାବିଲି, ଶକୁନି କ'ଣ ହାରିବା ପାଇଁ ଖେଳୁଛନ୍ତି ? ସେଥିପାଇଁ କ'ଣ ଏତେ ବଡ଼ ଦ୍ୟୁତସଭାର ଆୟୋଜନ ? ଅଥବା ସେ ଜାଣିଜାଣି ହାରୁଛନ୍ତି ଯୁଧିଷ୍ଠିରଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ? ନିଜ କପଟଜାଲରେ ପକାଇବା ଉଦ୍ଦେଶ୍ୟରେ ?

ହଠାତ୍ ଯୁଧିଷ୍ଠିର ଉଚ୍ଚ ସ୍ୱରରେ ଡାକ ଦେଇ ପଶାକାଠି ଚାଳିଦେଲେ, "ଛଅ ତିନି ନଅ ।" ତାହା ପରେ ପୁଣି ଡାକ "ଛଅ ଚାରି ଦଶ" । ଏମିତି ଗୋଟିକ ପରେ ଗୋଟିଏ ଡାକ । ପ୍ରତ୍ୟେକଥରର ଦାନ ତାଙ୍କ ବୋଲ ମାନି ପଡୁଥାଏ ଠିକ୍ ରୂପେ । ସତେଯେମିତି ପଶାକାଠିଗୁଡ଼ିକ ତାଙ୍କ ଆଜ୍ଞାଧୀନ ଭୃତ୍ୟ । ଅଥବ ବଶମ୍ବଦା ଅନୁରାଗିଣୀ ପତ୍ନୀ !!

ଶକୁନିଙ୍କ ଦ୍ୱାରା ଚଳାଯାଇଥିବା ସମସ୍ତ ଗୋଟି ଏବେ ମୃତ ।

ଆନନ୍ଦରେ ଉଲ୍ଲସିତ ହୋଇ ଚିତ୍କାର କଲେ ଯୁଧିଷ୍ଠିର, "ମାମୁ ! ଆପଣ ହାରିଗଲେ ।"

"ହଁ ଭଣଜା ଯୁଧିଷ୍ଠିର ମୁଁ ହାରିଗଲି । ପୁଣି ଥରେ ଖେଳାଯାଉ ।"

"କିଛି ଆପତ୍ତି ନାହିଁ । ଖେଳାଯାଉ ।" ଉତ୍ସାହିତ ହୋଇ କହିଲେ ଯୁଧିଷ୍ଠିର । ଧୀରେ ଧୀରେ ଛନ୍ଦି ହୋଇଯାଉଥାନ୍ତି ସେ ଶକୁନିଙ୍କ ମୋହକ ମାୟାଜାଲରେ । ଖାଦ୍ୟଲୋଭରେ ନିରୀହ କପୋତଟିଏ ଯେମିତି !

"କିନ୍ତୁ ଭାଇ ଯୁଧିଷ୍ଠିର ! ଏଥିରେ ଜମା ମଜା ନାହିଁ । ବାଜି ରଖାଯାଇ ଖେଳାଯାଉ ।" ଦୁର୍ଯ୍ୟୋଧନ କହିଲେ ।

"ସେଥିରେ ବି ଆପତ୍ତି ନାହିଁ । ମୁଁ ମୋର ଯେଉଁ ଜୈତ୍ର ରଥଟିରେ ଆସିଛି ତାହାକୁ ବାଜି ରଖୁଛି ।" ଯୁଧିଷ୍ଠିରଙ୍କ ସମ୍ମୋହିତ ଉତ୍ତର ।

ଶକୁନି ବାଜିରଖିଲେ ଦଶସହସ୍ର ନିଷ୍କ ।

ମହାମନ୍ତ୍ରୀ ବିଦୁର ଅବଶ୍ୟ ବାଜି ରଖି ଖେଳିବାର ସମ୍ଭାବ୍ୟ କୁପରିଣତି ସଂପର୍କରେ ସୂଚାଇ ଦେଇଥିଲେ ସେମାନଙ୍କୁ । କିନ୍ତୁ କେହି ତାଙ୍କ କଥା ଶୁଣିବାକୁ ନ ଥିଲେ ପ୍ରସ୍ତୁତ । ନା ଦୁର୍ଯ୍ୟୋଧନ ନା ଶକୁନି ନା ଯୁଧିଷ୍ଠିର । ପୂର୍ବଠାରୁ ଅଧିକତର ଉଷ୍ମତା ନେଇ ଆଗେଇ ଚାଲିଲା ଦ୍ୟୁତକ୍ରୀଡ଼ା । କିନ୍ତୁ ଯୁଧିଷ୍ଠିରଙ୍କ ଭାଗ୍ୟ ବିପରୀତ । କ୍ଷଣକ ପୂର୍ବରୁ ବଶମ୍ବଦ ଭୃତ୍ୟ ଭଳି ଦାନ ଦେଖାଇ ଗଡ଼ିଯାଉଥିବା ପଶାକାଠିଗୁଡ଼ିକ ଆଉ ଏବେ ତାଙ୍କ ଡାକ ମାନିବାକୁ ନାରାଜ । ଅଥଚ ଶକୁନିଙ୍କ ସମସ୍ତ ଡାକ ଅନୁସାରେ ପଡୁଥାଏ ଦାନ । ଯୁଧିଷ୍ଠିର ହାରିଯାଉଥାନ୍ତି । ଶକୁନି ଜିତୁଥାନ୍ତି । ବାଜି ରଖିଥିବା ଜୈତ୍ର ରଥଟିକୁ ହାରିଯାଇ ମଧ୍ୟ ଶିକ୍ଷା ପାଇଲେ ନାହିଁ ଯୁଧିଷ୍ଠିର । ପୁଣି ଚାହିଁଲେ ଖେଳିବାକୁ । ତଥାପି ଛାଡ଼ି ନ ଥାନ୍ତି ଜିଣିବାର ଆଶା ।

ମଣିଷର ଆଶା ସତେ କି ଦୁର୍ବାର ! ତାହାରି ଜାଲରେ ଛନ୍ଦିହୋଇ ଛଟପଟ ହେବାର ଶେଷ ପରିଣତିଟିକୁ ବୁଝିପାରେନା ସେ । ନିରନ୍ତର ଧାଉଁଥାଏ ତାହାର ପଛରେ ପ୍ରାପ୍ତ୍ୟାଶାର ସୁଗନ୍ଧକୁ ଆଘ୍ରାଣ କରି କରି । ବିଚରା ବିବଶ ମଣିଷ !

ଶକୁନି ଦାନର ଡାକରା ଦେଲେ, 'କଚେ ପୁଅ ବାର ।' ଦାନ ଠିକ୍ ଭାବରେ ପଡ଼ିଲା । ଯୁଧିଷ୍ଠିର ହାରିଗଲେ । ଶକୁନି କଟାକ୍ଷ କରି କହିଲେ, ''ତୁମେ ହାରିଗଲ ଭଣଜା ଯୁଧିଷ୍ଠିର । ଆଉ ଖେଳିବ ?''

''କାହିଁକି ନୁହେଁ ? କାହିଁକି ନୁହେଁ ? ମୁଁ ଆହୁରି ଖେଳିବି । ଏଥରକ କିନ୍ତୁ ମୁଁ ଜିତିବି ମାମୁ ।'' ଉତ୍ସାହ ନ ହରାଇ କହିଲେ ଯୁଧିଷ୍ଠିର । ସେ ତ ଖାଲି ସମ୍ମୋହିତ ନ ଥାନ୍ତି । ଥାଆନ୍ତି ଉନ୍ମତ୍ତପ୍ରାୟ । ସବୁ କିଛି ଯାଇଥାନ୍ତି ଭୁଲି । ତାଙ୍କ ପରି ଜଣେ ଧର୍ମନିଷ୍ଠ ଓ ବୁଦ୍ଧିମାନ୍ ରାଜାଙ୍କର ପୁଣି ଏଭଳି ଅବସ୍ଥା । ସଂଯମ, ନିଗ୍ରହ ଓ ଧର୍ମାଧର୍ମ ଉପଦେଶ ଦେବାର କ୍ଷମତା ଥିବା ବିବେକୀ ଯୁଧିଷ୍ଠିରଙ୍କର ପୁଣି ଏଭଳି ସ୍ଖଳନ ! ଦ୍ୟୂତ ପ୍ରତି ଏଭଳି ଆସକ୍ତି ! ବଡ଼ ଆଶ୍ଚର୍ଯ୍ୟ ଲାଗୁଥାଏ ମତେ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମହାମନ୍ତ୍ରୀ ବିଦୁର ଆଦି ହିତାକାଙ୍କ୍ଷୀ ଜନମାନଙ୍କ ମୁଖମଣ୍ଡଳରେ ଆତଙ୍କର ଛାୟା । ଅଥଚ ଶକୁନିଙ୍କ ବିଜୟରେ ମହାରାଜଙ୍କ ଅଧର ତଳେ ମୃଦୁ ମୃଦୁ ହସ । ସନ୍ତୋଷର ଓ ଆନନ୍ଦର ।

ସେଥରକ ମଧ୍ୟ ଯୁଧିଷ୍ଠିର ହାରିଗଲେ । ପରବର୍ତ୍ତୀ ବାଜିମାନଙ୍କରେ ପର୍ଯ୍ୟାୟକ୍ରମେ ହରାଇବସିଲେ ନିଜର ସମସ୍ତ ଧନରତ୍ନ, ରାଜ୍ୟ ସଂପତ୍ତି ଓ ସେବକ-ସେବିକା ଆଦିଙ୍କୁ । ତାହା ପରେ ଜଣ ଜଣ କରି ହାରିଗଲେ ସମସ୍ତ ଅନୁଜଙ୍କୁ । ନିଜକୁ ବି ହାରିଗଲେ ଶେଷରେ ।

''ହେ ରାଜା ଯୁଧିଷ୍ଠିର ! ଦ୍ୟୂତକ୍ରୀଡ଼ାରେ ତୁମେ ସମସ୍ତ ସମ୍ପତ୍ତି ହରାଇ ବସିଛ । ନିଜ ଅନୁଜମାନଙ୍କୁ ବି । ନିଜକୁ ବି ହରାଇଛ । ଏତିକିରେ ଏ କ୍ରୀଡ଼ା ଏବେ ବନ୍ଦ ହେଉ ।'' ଚେତାବନୀ ଶୁଣାଇଲେ ମହାମନ୍ତ୍ରୀ ବିଦୁର ।

''ହଁ, ଏତିକିରେ ବନ୍ଦ ହେଉ ।'' ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ କହିଲେ ସମସ୍ୱରରେ ।

ଏ କଥା ଯୁଧିଷ୍ଠିରଙ୍କ କର୍ଣ୍ଣପଟହରେ ବାଜି ଫେରିଆସିଲା ବୋଧହୁଏ । କାରଣ ମୁଁ ଦେଖିପାରିଲି ତାଙ୍କର କିଛି ହିଁ ନାହିଁ ପ୍ରତିକ୍ରିୟା ସେଥିପ୍ରତି । ଆସକ୍ତିର ମହାପାରାବାରରେ ବୁଡ଼ି ବୁଡ଼ି ହେଲେଣି ଅଣନିଃଶ୍ୱାସୀ । ତଥାପି ନାହିଁ ଜ୍ଞାନୋଦୟ । କି ଏକ ସମ୍ମୋହନ ମନ୍ତ୍ରରେ ବଶୀଭୂତ ସେ ! ଅଥଚ ପ୍ରତିକ୍ରିୟା ଦେଖାଇଲେ କପଟୀ ଗାନ୍ଧାରରାଜ ଶକୁନିଙ୍କ ବାଣୀ ପ୍ରତି ସେ ଯେତେବେଳେ କହିଲେ, ''ଏଥରକ ଆଉ କ'ଣ ବାଜି ଲଗାଇବାର ଅଛି ଭଣଜା ?''

''ଅଛି, ମାମୁ ଅଛି ।'' ଏହା କହି କିଛି ସମୟ ଚିନ୍ତା କରି ବସିଲେ । କିନ୍ତୁ କୌଣସି ବାଜି ନିର୍ଣ୍ଣୟ କରିପାରିଲେ ନାହିଁ ହଠାତ୍ । ନୀରବ ରହିଲେ । ମୁଖ ଆପେ ଆପେ ଅବନତ । ତହିଁରେ ଅସହାୟତାର ଛାୟା ।।

''ଇନ୍ଦ୍ରପ୍ରସ୍ଥର ରାଜା ତ ସବୁ ହରାଇ ବସିଛନ୍ତି । ଆଉ କ'ଣ ବାଜି ରଖିବେ ? କେବଳ ପତ୍ନୀ ଦ୍ରୌପଦୀଙ୍କ ଛଡ଼ା ଆଉ ତାଙ୍କର କ'ଣ ବା ଅଛି ନିଜର କହିବାକୁ ?'' ଦୁର୍ଯ୍ୟୋଧନଙ୍କ ତାଚ୍ଛଲ୍ୟଭରା ବାଣୀ ମୁଖରିତ କରିଦେଲା ଦ୍ୟୂତମଣ୍ଡପକୁ । ଏଥିରେ ଯେଉଁ ଖଳ ଇଙ୍ଗିତ

ଛପି ରହିଥିଲା ତାହାର ତାତ୍ପର୍ଯ୍ୟ ବୁଝିପାରିଲେ ପିତାମହ ଆଦି ହିତାକାଙ୍‌କ୍ଷୀମାନେ । ବୁଝିପାରିଲେ ବି ପାଣ୍ଡବ ଅନୁଜମାନେ । ସମସ୍ତଙ୍କ ମୁଖମଣ୍ଡଳରେ ଆତଙ୍କର ଛାୟା । ସମସ୍ତେ ହୁଏତ ଭାବୁଥାନ୍ତି, ଏ କି ଭୟଙ୍କର ଇଙ୍ଗିତ ଦେଉଛନ୍ତି ଦୁର୍ଯ୍ୟୋଧନ ! କି ପ୍ରତିକ୍ରିୟା ଦେଖାଇବେ ବିବେକୀ ରାଜା ଯୁଧିଷ୍ଠିର ? କ'ଣ ବନ୍‌ସିକଣ୍ଟାର ଏଇ ଥୋପଟିକୁ ଗିଳିଦେବେ ନା ଚତୁର ମତ୍ସ୍ୟଟିଏ ଭଳି ଦୂରେଇ ଯିବେ ?

ଯୁଧିଷ୍ଠିରଙ୍କୁ ହଠାତ୍ ଦିଶିଗଲା ବାଟ । କିଏ କିଛି କହିବା ପୂର୍ବରୁ ସେ କହିଦେଲେ, ''ମୁଁ ଏବେ ଦ୍ରୌପଦୀଙ୍କୁ ବାଜି ରଖିଲି । ଏଥରକ ଖେଳ ଚାଲୁ ।''

''ନା, ତାହା ହୋଇପାରେନା । ରାଜବଧୂ ଦ୍ୟୁତକ୍ରୀଡ଼ାରେ ବାଜି ରଖିବାର ଯୋଗ୍ୟା ନୁହନ୍ତି । ନିଜ କଥାକୁ ଫେରାଇନିଅ ପୁତ୍ର ଯୁଧିଷ୍ଠିର ।'' ରାଜମାତା ଗାନ୍ଧାରୀଦେବୀ ପ୍ରତିବାଦ କରି କହିଲେ ।

''ରାଜା ଯୁଧିଷ୍ଠିର ଜଣେ ସତ୍ୟସନ୍ଧ ପୁରୁଷ । ସେ ଯଦି ଥରେ କଥା ଦେଇ ତାହାକୁ ଫେରାଇନେବେ, ତେବେ ମୋର କିଛି କହିବାର ନାହିଁ । ନା କ'ଣ ମାମୁ ?'' ଦୁର୍ଯ୍ୟୋଧନଙ୍କ କଟୁ ଆକ୍ଷେପୋକ୍ତି । ପରୋକ୍ଷରେ ବାରଣ କରୁଥାନ୍ତି ଯୁଧିଷ୍ଠିରଙ୍କୁ ବାକ୍ୟ ପ୍ରତିହାର କରିବାପାଇଁ ।

''ମୋର ମଧ୍ୟ ସେଇଆ ମତ । ସେ ତାଙ୍କ କଥା ଫେରାଇ ନିଅନ୍ତୁ । ତା' ହେଲେ ଦ୍ୟୁତକ୍ରୀଡ଼ା ବନ୍ଦ ହୋଇଯିବ ଏତିକିରେ ।'' ଶକୁନି ଦୁର୍ଯ୍ୟୋଧନଙ୍କ କଥାକୁ ସମର୍ଥନ କରି କହିଲେ । ଓଠକଣରେ ତାଙ୍କ କୁଟିଳ ହସଟିକକ ବିଷଭରା ଚର୍ଚ୍ଚରିକାରୁ ନିଃସୃତ ଜଳଧାରା ଭଳି ଲାଗୁଥିଲା । ବିଷ ନିଃସରଣ ଏତିକିରେ ଶେଷ ନା ଆଉ କିଛି ଅଛି ସେ କଥା କିଏ କହିପାରିବ ? ତାଙ୍କ କପଟ ମଞ୍ଜୁଷାର ଆବରଣଟିକୁ କିଏ ବା କରିପାରିବ ଅନାବରଣ ?

''ନା, ବାକ୍ୟ ପ୍ରତିହାର କରିବାକୁ ଚାହେଁନା ମୁଁ । ଦ୍ରୌପଦୀଙ୍କ ବାଜିରେ ଏବେ ଦ୍ୟୁତକ୍ରୀଡ଼ା ଚାଲିବ ।'' ସମସ୍ତଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇ କହିଲେ ଯୁଧିଷ୍ଠିର । ତାହା ପରେ ରାଜମାତାଙ୍କୁ ଲକ୍ଷ୍ୟ କରି କହିଲେ, ''ଏ ଅଧମ ପୁତ୍ରର ଦୋଷକୁ କ୍ଷମା କରିବେ ମାଆ । ଆପଣଙ୍କ ଆଦେଶକୁ ପାଳିପାରୁ ନାହିଁ । କାରଣ କଥା ଦେଇସାରିଛି । ଜଣେ ରାଜାର କଥା ଧନୁନିର୍ଗତ ବାଣ ସହିତ ସମାନ । ଥରେ ଛୁଟିଲେ ଆଉ ଫେରିଆସି ପାରେନା ।'' ତାଙ୍କ ମୁଖମଣ୍ଡଳରେ ଚମକିତ ଅସହାୟତାର ଛାଇ ସମବେଦନା ଉଦ୍ରେକ କରୁଥିଲା ସମସ୍ତଙ୍କ ମନରେ । ନିଜ ସୃଷ୍ଟ ବାକ୍ୟଜାଲରେ ଏବେ ବନ୍ଦୀ ସେ । ହାୟ ! ବିଚରା ଯୁଧିଷ୍ଠିର !

ପୂର୍ବ ଭଳି ଚାଲିଲା ଦ୍ୟୁତକ୍ରୀଡ଼ା ଅଧିକତର ଉତ୍ତାୟିତ ବାତାବରଣ ମଧ୍ୟରେ । ପ୍ରଥମେ ପ୍ରଥମେ କିଛିଟା ସଫଳତା ପାଇଲେ ଯୁଧିଷ୍ଠିର । ଶକୁନିଙ୍କର ଅନେକ ଗୋଟି ମଲେ । କିନ୍ତୁ ଶେଷକୁ ସେ ଧୀରେ ଧୀରେ ମୁହାଁଇଲେ ପରାଜୟ ଦିଗକୁ । ସାରା ମୁଖମଣ୍ଡଳ ତାଙ୍କର ସ୍ୱେଦମୁକ୍ତିତ । ଉତ୍କଣ୍ଠା ଯେତିକି ଭୟ ତାହାଠାରୁ ଅଧିକ । ଶକୁନି ଶେଷ ଦାନ ଫିଙ୍ଗିବାକୁ ଯାଇ ଡାକରା ଦେଲେ, ''ପାଞ୍ଚ ତିନି ଆଠ ।'' ପଶାକାଠିଗୁଡ଼ିକ ଅନୁଗତ ଶ୍ୱାନ ଭଳି ତାଙ୍କ

ଡାକ ମାନିଲେ । ତାଙ୍କ ଈପ୍‌ସିତ ଦାନଟି ପଡ଼ିଲା । ଯୁଧିଷ୍ଠିର ହାରିଗଲେ । ଶକୁନି ଜିତିଗଲେ ।

ଆନନ୍ଦର ଉଲ୍ଲାସରେ ଡେଇଁପଡ଼ିଲେ ଶକୁନି । ନାଚି ନାଚି କହିଲେ ବଡ଼ ପାଟିରେ, ''ତୁମେ ସର୍ବସ୍ୱ ହାରିଗଲ ଯୁଧିଷ୍ଠିର । ଶେଷରେ ନିଜ ପତ୍ନୀଙ୍କୁ ବି ହାରିଗଲ । ତୁମେ ଏବେ ରାଜ୍ୟହୀନ ଓ ପତ୍ନୀହୀନ । ଦୁର୍ଯ୍ୟୋଧନଙ୍କ ଇଙ୍ଗିତରେ ଏଣିକି ତୁମ୍ଭେମାନେ ହେବ ଚାଳିତ ।''

ଯୁଧିଷ୍ଠିର କିନ୍ତୁ ନିର୍ବାକ୍-ନିଷ୍ପନ୍ଦ । ଲଜ୍ଜାରେ ମଥା ଅବନତ । ଭୀମସେନ ଶକୁନିଙ୍କୁ କପଟୀ ବୋଲି କହି ତାଙ୍କ ଉପରେ ଗଦାଦ୍ୱାରା ଆକ୍ରମଣ କରିବାକୁ ଉଦ୍ୟତ । ଯୁଧିଷ୍ଠିର ତାଙ୍କୁ ଶାନ୍ତ କରାଇଲେ । ଜନ୍ତାରେ ପଡ଼ିଥିବା ପଶୁରାଜ ସିଂହ ଭଳି ଭୀମସେନ ଅସହାୟ ଗର୍ଜନ ଛାଡୁଥାନ୍ତି । କିଛି ହିଁ କରିପାରୁ ନ ଥାନ୍ତି । ଅନ୍ୟାନ୍ୟ ପାଣ୍ଡବମାନଙ୍କର ମଧ୍ୟ ଅନୁରୂପ ଅବସ୍ଥା । ଯୁଧିଷ୍ଠିର ହିଁ କେବଳ ବସିଥାନ୍ତି ଅଧୋବଦନରେ ଚିତ୍ରପ୍ରତିମାଟି ଭଳି ସ୍ଥିର-ନିଶ୍ଚଳ ହୋଇ । ଅଟଳ ନିର୍ବିକାର । ଧୈର୍ଯ୍ୟର ଏକ ପ୍ରମୂର୍ତ୍ତ ବିଗ୍ରହ ଠିକ୍ ଧରଣୀ ଭଳି । ସେ ଅବଶ୍ୟ ଦ୍ୟୂତକ୍ରୀଡ଼ାରେ ଏବେ ପରାଜିତ । କିନ୍ତୁ ପରାଜୟର ଗ୍ଲାନିକୁ ରୂପାନ୍ତରିତ କରିଦେଇଥାନ୍ତି ପରାଜୟର ମହିମାରେ । କାହାରି ପ୍ରତି କ୍ରୋଧ ନାହିଁ । ନାହିଁ ବି ଆକ୍ରୋଶ । ନିଜେ ଅର୍ଜିଥିବା ଶେଷ ପରିଣତି ପାଇଁ ହୁଏତ ଦାୟୀ କରୁ ନ ଥାନ୍ତି କାହାକୁ । ମତେ ଲାଗୁଥାଏ, ସେ ଯେମିତି ପରାଜିତ ହୋଇ ଆଜି ବିଜୟୀ । ଅଥଚ ମାତୁଳ ଶକୁନି ଓ ଦୁର୍ଯ୍ୟୋଧନ ଆଦି କୌରବମାନେ । ସଂକୀର୍ଣ୍ଣ ମନ ଧରି ଏମାନେ ବିଜୟର ଗ୍ଲାନିରେ ଅବସନ୍ନ । ଗୋଟିଏ ପକ୍ଷ ପରାଜୟରେ ବିଜୟୀ ହେଲାବେଳେ ଅନ୍ୟ ପକ୍ଷଟି ବିଜୟରେ ପରାଜିତ ।

ଅଟ୍ଟହାସ ହସି କହିଲେ ଶକୁନି, ''ଆରେ ଭୀମସେନ ! ତୋ'ର ଏତେ ଆସ୍ଫାଳନ କାହିଁକି ? ତୁ ଓ ତୋ' ଭାଇମାନେ ସମସ୍ତେ ଏଣିକି କୌରବମାନଙ୍କ ଦାସ । ପାଞ୍ଚାଳୀ ବି ସେମାନଙ୍କ ଦାସୀ । ଆଉ ତୋ'ର ଏଇ ଗଦାଟି । ଏହା ମଧ୍ୟ କୌରବମାନଙ୍କର । ତୋ'ର କିଛି ହିଁ ଅଧିକାର ନାହିଁ ଏଥିରେ ।''

ଦୁଃଶାସନ ଆଦି ଅନ୍ୟ କୌରବମାନେ ମଧ୍ୟ ସମର୍ଥନ କଲେ ଶକୁନିଙ୍କୁ । ଦୁଃଶାସନ ତ ଫାଟିପଡ଼ିଲେ ଆହୁରି ଅଧିକ ଅଟ୍ଟହାସରେ । ଶତ କୌରବଭ୍ରାତାଙ୍କ ମଧ୍ୟରୁ କେବଳ ଜଣଙ୍କର ଥିଲା ପ୍ରତିବାଦସ୍ୱର । ସେ ବିକର୍ଣ୍ଣ । ସେ ଆସନରୁ ଉଠିପଡ଼ି କହିଲେ, ''ଏହା କିନ୍ତୁ ଅନ୍ୟାୟ । ଘୋର ଅନ୍ୟାୟ । ମାମୁ ଭାରି ଅନ୍ୟାୟ କରିଛନ୍ତି । ପାପ କରିଛନ୍ତି । ଛଳଦ୍ୟୂତ ଖେଳି ରାଜା ଯୁଧିଷ୍ଠିରଙ୍କୁ ହରାଇଛନ୍ତି । ଏ ବିଜୟକୁ ମୁଁ ସ୍ୱୀକାର କରେନା ।''

''ତୁମେ ପିଲାଲୋକ ବିକର୍ଣ୍ଣ । ପୁଣି ମୋର ଅନୁଜ । ସେଥିପାଇଁ ତୁମକୁ କ୍ଷମା ଦେଲି । ତୁମ ସ୍ୱୀକୃତିର କ'ଣ ବା ମୂଲ୍ୟ ଅଛି ? ମୁଁ ସ୍ୱୀକାର କରୁଛି । ମହାରାଜ ସ୍ୱୀକାର କରୁଛନ୍ତି । ସଭାସ୍ଥ ଅନ୍ୟାନ୍ୟ ବୟୋବୃଦ୍ଧ ବ୍ୟକ୍ତିମାନେ ସ୍ୱୀକାର କରୁଛନ୍ତି । ତୁମେ ପାଟି ବନ୍ଦ କର ।'' ଦୁର୍ଯ୍ୟୋଧନ ଆକଟ କରି କହିଲେ ।

"ଭାଇ ! ମୁଁ ଅବଶ୍ୟ ପାଟି ବନ୍ଦ କରିବି । ଆପଣଙ୍କ ଆଦେଶ ପାଳିବି । କିନ୍ତୁ ଭବିଷ୍ୟତ୍‌ର ଇତିହାସର ପାଟିକୁ ଆପଣ କିମ୍ବା ଆଉ କେହି ବନ୍ଦ କରିପାରିବେ ନାହିଁ । ତାହା ଶତମୁଖ ହୋଇ କହିବ, ଏହା କପଟ ଦ୍ୟୁତ । ଏହା କପଟ ବିଜୟ ।" ଏତିକି କହି ସେ ପ୍ରତିବାଦରେ ଛାଡ଼ି ଚାଲିଗଲେ ଦ୍ୟୂତସଭା ।

ସମବେତ ଅତିଥି ଦର୍ଶକମାନେ ସମସ୍ତେ ନିର୍ବାକ୍-ନିଷ୍ପନ୍ଦ । ମୁହୂର୍ତ୍ତକ ପରେ ଏଇ ନୀରବତାକୁ ଭଙ୍ଗ କରି ଗର୍ଜିଉଠିଲେ ଦୁର୍ଯ୍ୟୋଧନ, "ଦାସୀ ଦ୍ରୌପଦୀକୁ ଏଠାକୁ ନେଇ ଆସ ।" ଏହା ଥିଲା ପ୍ରତିକାମୀ ପ୍ରତି ଆଦେଶ ।

"ଯେ ଆଜ୍ଞା ରାଜନ୍ ।" ଆଜ୍ଞାବହ ସେବକ ପ୍ରତିକାମୀ ଅଭିବାଦନ କରି ଚାଲିଗଲା ।

"ହେ ରାଜନ୍ ! ରାଜବଧୂ ସଭାକୁ ଆସିପାରିବେ ନାହିଁ ।" କିଛି ସମୟ ପରେ ଅନ୍ତଃପୁରରୁ ଫେରିଆସି ନିବେଦନ କଲା ସେ ।

"ରାଜବଧୂ କ'ଣ ? ଦାସୀ ବୋଲି କହ ।" ଦୁର୍ଯ୍ୟୋଧନଙ୍କ କ୍ରୋଧଭରା ଆକ୍ଷେପପୂର୍ଣ୍ଣ ଆଦେଶ ।

"ହଁ ପ୍ରଭୋ !" ପ୍ରତିକାମୀ ନିଜ ଭୁଲ ଲାଗି ଭୟ ଓ ଲଜ୍ଜାରେ ସଙ୍କୁଚିତ ।

"ଆଚ୍ଛା, ଆସିପାରିବେ ନାହିଁ କାହିଁକି ?" ଦୁର୍ଯ୍ୟୋଧନଙ୍କ ଜିଜ୍ଞାସାଭରା ପ୍ରଶ୍ନ ।

"ସେ ରଜସ୍ୱଳା ଓ ଏକବସ୍ତ୍ରା ।" ପ୍ରତିକାମୀର ବିନୀତ ଉତ୍ତର ।

"ପୁଣି ଥରେ ଯାଇ କହ ଦାସୀ ଦ୍ରୌପଦୀକୁ– ତୋ'ର ସ୍ୱାମୀ ଡାକିଛନ୍ତି । ତତେ ଯିବାକୁ ହିଁ ହେବ ।"

ପ୍ରତିକାମୀ ଆଦେଶ ମାନି ଗଲା ଆହୁରି ଦୁଇ ଦୁଇ ଥର । କିନ୍ତୁ ଫେରିଆସିଲା ବିଫଳ ମନୋରଥ ହୋଇ । ଦ୍ରୌପଦୀ ଆସିଲେ ନାହିଁ ଦ୍ୟୂତସଭାକୁ ।

"ଆଚ୍ଛା, ଏମିତି କଥା ?" ଦୁର୍ଯ୍ୟୋଧନଙ୍କ ସ୍ୱର କ୍ରୋଧିତ । ଦୁଃଶାସନଙ୍କ ପ୍ରତି ଲକ୍ଷ୍ୟ କରି କହିଲେ, "ଅନୁଜ ଦୁଃଶାସନ । ତୁମ ଛଡ଼ା ଏଇ କାମଟିକୁ କେହି କରିପାରିବେ ନାହିଁ । ତୁମେ ନିଜେ ଯାଇ ଦାସୀ ଦ୍ରୌପଦୀକୁ ବଳପୂର୍ବକ ନେଇଆସ ଏଠାକୁ । ସାମାନ୍ୟ ଦାସୀଟାର ଗର୍ବ କେତେ, ଦମ୍ଭ କେତେ ଏବେ ଦେଖିନେବି ।" ଆଖି ଦୁଇଟି ତାଙ୍କର କୁରାଳ ଚକ୍ର ଭଳି ଘୂର୍ଣ୍ଣାୟମାନ । ଅଧରତଳ ବାରମ୍ବାର ସ୍ଫୁରିତ । ସ୍ୱୀୟ ଦନ୍ତଦ୍ୱାରା ଦଷ୍ଟ ବି । ଧୀରେ ଧୀରେ ପ୍ରବଳ ପ୍ରଭଞ୍ଜନର ରୂପ ଧରିଆସୁଥାନ୍ତି ସେ ।

ଧନୁର୍ନିର୍ଗତ ବାଣ ଭଳି ତୀବ୍ର ଗତିରେ ଛୁଟିଲେ ଦୁଃଶାସନ ଓ କେତୋଟି ମାତ୍ର ମୁହୂର୍ତ୍ତ ପରେ ଦ୍ରୌପଦୀଙ୍କୁ ଟାଣି ଟାଣି ଆଣିଲେ ଦ୍ୟୂତଭବନକୁ । ଏକବସ୍ତ୍ରା ଦ୍ରୌପଦୀ । ଏଭଳି ଅବସ୍ଥାରେ ସଭା ମଧ୍ୟକୁ ଆସିବାପାଇଁ ଘୋର କୁଣ୍ଠିତା । କୌଣସିମତେ ସଜାଡ଼ି ଧରିଥାନ୍ତି ଅସଂଯତ ବସ୍ତ୍ରାବରଣକୁ । ମୁକୁଳିତ କେଶଭାର । ଦୃଢ଼ ମୁଷ୍ଟିରେ ତାହାକୁ ଧରି ଟାଣୁଥାନ୍ତି ଦୁଃଶାସନ । ତାଙ୍କ ଅର୍ଦ୍ଧନଗ୍ନ ତନୁର ସୁଷମାକୁ ଦେଖି ବୀଭତ୍ସ ହସ ହସୁଥାନ୍ତି ଦୁର୍ଯ୍ୟୋଧନ । ବିକଳ ହୋଇ ଚିତ୍କାର କରୁଥାନ୍ତି ଦ୍ରୌପଦୀ । ଦ୍ୟୂତଭବନର ବାତାବରଣ କରୁଣାୟିତ ।

ଦୁର୍ଯ୍ୟୋଧନ ଆଦେଶ ଦେଲେ, ''ଭାଇ ଦୁଃଶାସନ । ଏ ଦାସୀକୁ ବିବସ୍ତ୍ରା କରିଦିଅ । ଆଉ ବସାଅ ଆଣି ମୋ' ଜାନୁରେ ।'' ଏହା କହି ନିଜ ଜାନୁଦେଶକୁ ସଂକେତଦ୍ୱାରା ଦେଖାଇଦେଲେ ।

ସେତେବେଳେ ମୋର ମନେ ପଡ଼ିଲା ପାଞ୍ଚାଳ ରାଜସଭାରେ ପାଞ୍ଚାଳୀଙ୍କ ଦ୍ୱାରା ମୋ' ପ୍ରତି ଦିଆଯାଇଥିବା ଅପମାନ । ସୂତପୁତ୍ର ବୋଲି କହି ମତେ କରିଥିଲେ ହେୟ ଜ୍ଞାନ । ତାହାରି ପ୍ରତିଶୋଧ ନେବାପାଇଁ କହିଲି, ''ପଞ୍ଚପତିଙ୍କ ପତ୍ନୀଙ୍କୁ ଜଣେ ଗଣିକା ଛଡ଼ା ଆଉ କଣ କୁହାଯିବ ? ଯୁବରାଜ ଦୁର୍ଯ୍ୟୋଧନଙ୍କ ଜାନୁ ଉପରେ ବସିବାପାଇଁ ତା'ର ସଂକୋଚ ରହିବ କାହିଁକି ?'' ଆତ୍ମପରିଚୟ ଜାଣି ନ ପାରି ପୁତ୍ରୀସମା ଦ୍ରୌପଦୀଙ୍କୁ ଏଇ ଯେଉଁ କଟୁ କଥା ସେଦିନ କହିଥିଲି ତାହାର ଦଂଶନ ଏବେ ବି ମତେ ଘାରୁଛି । ସେଇ ଦଂଶନର ପୀଡ଼ା ଧରି ମତେ ଆଖି ବୁଜିବାକୁ ହେବ ହୁଏତ ଚିରଦିନ ପାଇଁ । ମୁଁ ମହାପାପୀ । ମହା ଅପରାଧୀ । ଏ ପାପ ଓ ଅପରାଧର କ୍ଷମା ନାହିଁ !

ଲକ୍ଷ୍ୟ କଲି ସେତେବେଳେ ପିତାମହଙ୍କ ମୁହଁକୁ । ତହିଁରେ ଦାରୁଣ ଅନ୍ତର୍ବେଦନାର ପ୍ରତିଫଳନ । ଅଥଚ ତାହା ଖୋଲିପାରୁ ନ ଥାଏ । ବିବଶ ସେ । କୌରବମାନଙ୍କ ଅନ୍ନରେ ପ୍ରତିପାଳିତ । ଏତେ ବଡ଼ ମହାବୀର ଆଜି ନିର୍ବୀର୍ଯ୍ୟ ! କ୍ରୋଧରେ ମଝିରେ ମଝିରେ ଟାଣି ଆଣୁଥାନ୍ତି ନିଜ କୋଷବଦ୍ଧ ତରବାରିକୁ । ତାହାର ତୀକ୍ଷ୍ଣଧାରର ସ୍ପର୍ଶରେ କରତଳ ରକ୍ତରଞ୍ଜିତ । ସେଥିପ୍ରତି ଭ୍ରୂକ୍ଷେପ ନ ଥାଏ ତାଙ୍କର । ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମହାମନ୍ତ୍ରୀ ବିଦୁର ଆଦିଙ୍କ ଅବସ୍ଥା ମଧ୍ୟ ତଦ୍ରୂପ । ସମସ୍ତେ ବେଦନାରେ ଜଳିଯାଉଥାନ୍ତି ।

ଗାନ୍ଧାରୀଦେବୀ ମୁହଁ ଖୋଲି କହିଲେ, ''ଏ ତୁମେ କ'ଣ କରୁଛ ପୁତ୍ର ଦୁର୍ଯ୍ୟୋଧନ ? କୁଳବଧୂଙ୍କୁ ଏଭଳି ଅପମାନିତା କରୁଛ ଭରାସଭାରେ ! ଧର୍ମ ଆଡ଼କୁ ଟିକିଏ ଆଖି ପକାଅ ।''

''ମୋ' ଆଖି ଥାଇ ଆଜି ଅନ୍ଧ ମୁଁ । ଏଇ ଦାସୀକୁ ପଚାରନ୍ତୁ ମାଆ – ସେଦିନ ଇନ୍ଦ୍ରପ୍ରସ୍ଥର ରାଜଭବନରେ ମତେ କ'ଣ କହିଥିଲା ? ମୁଁ ଧର୍ମ ଆଦି ସବୁ କିଛିକୁ ଆଖି ବୁଜିଦେଇ ଦୋଷୀକୁ ଦଣ୍ଡ ଦେବାକୁ ଯାଉଛି । ଏଥିରେ ଭୁଲ କେଉଁଠି ?''

ଭାବିଲି, ଦୁର୍ଯ୍ୟୋଧନଙ୍କ ଦୃଷ୍ଟିକୋଣ ଗୋଟିଏ ଦୃଷ୍ଟିରୁ ଠିକ୍ ।

ରାଜମାତା ତଥାପି ଧୈର୍ଯ୍ୟ ନ ହରାଇ କହିଲେ, ''ପୁତ୍ର ଦୁର୍ଯ୍ୟୋଧନ ! ତୁମେ କ୍ଷମା ଦିଅ ଦ୍ରୌପଦୀଙ୍କୁ । କ୍ଷମା ଏକ ବିଶିଷ୍ଟ ରାଜଧର୍ମ ।''

''ମାଆ, କ୍ଷମା କ'ଣ ଦୁର୍ଯ୍ୟୋଧନ ଜାଣେନା । ସେ ଦୋଷୀକୁ ଦଣ୍ଡ ଦେବ ହିଁ ଦେବ ।'' ଦୁର୍ଯ୍ୟୋଧନଙ୍କ ଦୃଢ଼ ସ୍ୱର ପ୍ରକମ୍ପିତ କରିଦେଲା ଦ୍ୟୂତଭବନକୁ । ରାଜମାତାଙ୍କ ବିଫଳତା ପରେ ଆଉ କାହାରି ପ୍ରତିବାଦ କରିବାର ସାହସ ନ ଥିଲା । ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାର ଦୁର୍ଯ୍ୟୋଧନଙ୍କ ଆଦେଶ ବଳବତ୍ତର । ତାହା ପାଳିବାକୁ ଏବେ ଉଦ୍ୟମରତ ଦୁଃଶାସନ ।

ଲକ୍ଷ୍ୟ କରୁଥାଏ ମହାରାଜଙ୍କ ଭାବମୂର୍ତ୍ତିକୁ । ସେ ନୀରବ-ନିଶ୍ଚଳ ହୋଇ ବସିଥାନ୍ତି । ସାମାନ୍ୟତମ ବିକାର ନାହିଁ ମୁଖମଣ୍ଡଳରେ । ବୋଧହୁଏ ଏଇ ସବୁ କାର୍ଯ୍ୟକୁ କରୁଥାନ୍ତି

ସମର୍ଥନ । ସେତେବେଳେ ତ ମୁଁ ଥିଲି କ୍ରୋଧରେ ଅନ୍ଧ । ପ୍ରତିହିଂସାର ନିଆଁରେ ଜଳୁଥିଲି । ତେଣୁ ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ, ଧର୍ମ-ଅଧର୍ମ ମଧ୍ୟରେ କିଛି ହିଁ ବୁଝିପାରୁ ନ ଥିଲି ପ୍ରଭେଦ । ଦ୍ରୌପଦୀ ଅପଦସ୍ତା ହେବାରୁ ଯେଉଁ କୁତ୍ସିତ ଆନନ୍ଦ, ତାହାକୁ ଉପଭୋଗ କରୁଥିଲି ପ୍ରାଣ ଭରି । କିନ୍ତୁ ଏବେ ଶାନ୍ତ ମନ ନେଇ ଭାବୁଛି, ମହାରାଜ ଯଦି ସେତେବେଳେ ପଦଟିଏ ପ୍ରତିବାଦ କରିଥାନ୍ତେ, ତେବେ ହୁଏତ ମହାଭାରତ ଯୁଦ୍ଧ ହୋଇ ନ ଥାନ୍ତା । ହୋଇ ନ ଥାନ୍ତା କୁରୁବଂଶର ଧ୍ୱଂସସାଧନ । କିନ୍ତୁ ପୁତ୍ରପ୍ରେମରେ ଅନ୍ଧ ଅଦୂରଦର୍ଶୀ ରାଜା ତାହା କଲେନି । ଚିରଦିନ ପାଇଁ ନିଜ ନାମରେ ରଖିଗଲେ କଳଙ୍କ । ଇତିହାସ-ବକ୍ଷରେ ଏକ କୁତ୍ସିତ ଦାଗ !

ଦ୍ରୌପଦୀ ଦେଖିଲେ, ଆଉ କୌଣସି ଉପାୟ ନାହିଁ । ଦୁଃଶାସନ ନିଶ୍ଚୟ ତାଙ୍କୁ କରାଇବେ ବିବସ୍ତ୍ରା । ସେ ଶେଷ ଉଦ୍ୟମ କରିବାକୁ ଯାଇ ମହାରାଜଙ୍କ ଆଡ଼କୁ ଚାହିଁ ନିବେଦନ କଲେ, "ମହାରାଜ ! ଆପଣ ନ୍ୟାୟର ଅବତାର । ପ୍ରଜ୍ଞାଚକ୍ଷୁ ବୋଲି ବିଖ୍ୟାତ । ମୁଁ ରାଜବଧୂ ହିସାବରେ ନୁହେଁ, ଜଣେ ସାଧାରଣ ନ୍ୟାୟପ୍ରାର୍ଥିନୀ ନାରୀ ଭାବରେ ଗୋଟିଏ ନିବେଦନ କରିବି ଆପଣଙ୍କ ପାଖରେ । ଅନୁମତି ଦେଲେ କହିବି ।"

"କହ ପୁତ୍ରବଧୂ, କହ । ଅନୁମତି ଦେଲି ।" ମହାରାଜ କହିଲେ ଦ୍ୱିଧାହୀନ କଣ୍ଠରେ ।

"ମହାରାଜ ! ଆପଣ ଧର୍ମାବତାର । ରାଜଧର୍ମରେ ସଂପୂର୍ଣ୍ଣ ଅଭିଜ୍ଞ । କହନ୍ତୁ ତ ଦ୍ୟୁତକ୍ରୀଡ଼ାରେ କିଏ କେଉଁ ଧନକୁ ବାଜି ରଖିପାରିବେ ?"

"ଖେଳାଳି ବାଜି ରଖିପାରିବେ କେବଳ ନିଜସ୍ୱ ଧନକୁ । ଏଥିରେ ଆଉ ସନ୍ଦେହ କ'ଣ ଅଛି ପାଞ୍ଚାଳୀ ?" ମହାରାଜଙ୍କ ସ୍ପଷ୍ଟ ମନ୍ତବ୍ୟ ।

"ମୁଁ ଅବଶ୍ୟ ମୋ' ପତିଙ୍କ ଧନ । ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଯେତେବେଳେ ନିଜକୁ ହାରିଗଲେ, ସେତେବେଳେ ତାଙ୍କର ଆଉ ମୋ' ଉପରେ ପତି ହିସାବରେ କେଉଁ ଅଧିକାର ରହିଲା ? ମୁଁ ତ ରହି ସମୟଠାରୁ ହୋଇଗଲି ସ୍ୱାଧୀନା । ସେ ଆଉ ମତେ ବାଜି ରଖିପାରିବେ କିପରି ? ତାଙ୍କର ମତେ ବାଜି ରଖିବାଟା ଅନ୍ୟାୟ । ତେଣୁ ମୁଁ ଆଉ କୌରବମାନଙ୍କର ଦାସୀ ହେଲି କିପରି ? ମୁଁ ବରଂ ଜଣେ ସ୍ୱାଧୀନା ନାରୀ । ଅବଳା ଭାବି ମୋ' ଉପରେ ଏଇ ଯେଉଁ ଅତ୍ୟାଚାର କରାଯାଉଛି, ତାହାର ପ୍ରତିକାର କରନ୍ତୁ ମହାରାଜ । କୁରୁରାଜସଭାରୁ ମତେ ନ୍ୟାୟ ମିଳୁ ।" ବିନୟଭରା ଅଥଚ ଦୃଢ଼ କଣ୍ଠ ତାଙ୍କର । ମହାରାଜ କିନ୍ତୁ ନୀରବ । କିଛି ଉତ୍ତର ନ ଦେଇ ମୁଖ କଲେ ଅବନତ । ପ୍ରଜ୍ଞାଚକ୍ଷୁ ବୋଲି ବିଖ୍ୟାତ ସେ । ଅଥଚ ଜାଣି-ଶୁଣି ଏଡ଼ାଇ ଦେଲେ ଏଇ ଯୁକ୍ତିଯୁକ୍ତ ପ୍ରଶ୍ନଟିକୁ । ଦ୍ରୌପଦୀଙ୍କ ପ୍ରତି ମୋର ଦ୍ୱେଷଭାବ ଥିଲେ ମଧ୍ୟ ତାଙ୍କ କଥାର ଯୁକ୍ତିଯୁକ୍ତତାକୁ ହୃଦୟଙ୍ଗମ କରିପାରୁଥିଲି ଗଭୀର ଭାବରେ । କିନ୍ତୁ ଉତ୍ତର ଦେଇ ନ ଥିଲି; କାରଣ କେହି ମୋର ପରାମର୍ଶ ଚାହିଁ ନ ଥିଲେ ।

ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଆଦି ସମସ୍ତଙ୍କୁ ସେ କଲେ ଅନୁରୂପ ପ୍ରଶ୍ନ ଓ ଅନୁରୂପ ପ୍ରାର୍ଥନା । ସମସ୍ତେ କିନ୍ତୁ ନୀରବ । କେହି ତାଙ୍କର ହୋଇପାରିଲେ ନାହିଁ ସହାୟକ ।

"ମୁଁ ଜାଣେ, ଆପଣମାନେ କେହି ଉତ୍ତର ଦେଇପାରିବେ ନାହିଁ । କାରଣ ଆପଣମାନଙ୍କ ରକ୍ତର ପ୍ରତି ବିନ୍ଦୁରେ କୌରବମାନଙ୍କ ଅନ୍ନର ସ୍ପନ୍ଦନ । ମୁଁ ତେଣୁ ନିଜକୁ ନିଜେ ରକ୍ଷା କରୁଛି ।"

ଏହା କହି ସେ କୃଷ୍ଣଙ୍କୁ ସ୍ମରଣ କଲେ ଆତ୍ମରକ୍ଷା ପାଇଁ । ଦୁଃଶାସନ ବଳପୂର୍ବକ ଟାଣୁଥାନ୍ତି ତାଙ୍କ ବସ୍ତ୍ର । ତାହାକୁ ସେ ବାଧା ଦେଉଥାନ୍ତି ଗୋଟିଏ ହସ୍ତରେ । ଅପର ହସ୍ତଟି ଟେକି ଡାକୁଥାନ୍ତି କୃଷ୍ଣଙ୍କୁ । ଶେଷରେ ଧୈର୍ଯ୍ୟ ତାଙ୍କର ତୁଟିଗଲା । ଦୁଃଶାସନଙ୍କ ଅପାର ବଳ ନିକଟରେ ହାର ମାନିଲା ତାଙ୍କ ଦୁର୍ବଳ ଉଦ୍ୟମ । ଆଉ ଉପାୟ ନ ଦେଖି ଦୁଇ ହାତ ଟେକି ଡାକିଲେ କୃଷ୍ଣଙ୍କୁ ସହାୟତା ଲାଗି । ମୁଦ୍ରିତ ଚକ୍ଷୁଦ୍ୱୟରୁ ଝର ଝର ଅଶ୍ରୁର ପ୍ରବାହ ।

ହଠାତ୍ ଘଟିଲା ଏକ ବିସ୍ମୟକର ଘଟଣା । କି ଏକ ଦିବ୍ୟ ଆଲୋକର ଛଟା ଆସି ପଡ଼ିଲା ତାଙ୍କ ସାରା ତନୁଯଷ୍ଟିରେ । ସେ ତ ବୁଜିଦେଇଥିଲେ ଆଖି । ତେଣୁ ହୁଏତ ଦେଖିପାରି ନ ଥିବେ ଏଇ ଆଲୋକର ମହୋତ୍ସବକୁ । କିନ୍ତୁ ଅନୁଭବ କରିପାରିଥିବେ ନିଶ୍ଚୟ । ଆମେ ସମସ୍ତେ ଚାହିଁରହିଲୁ ଆଶ୍ଚର୍ଯ୍ୟଚକିତ ନୟନରେ । ଦୁଃଶାସନ ଯେତେ ବସ୍ତ୍ର ଟାଣୁଥାନ୍ତି, ସେତେ ନୂତନ ବସ୍ତ୍ରଟିଏ ଦେଖା ଦେଉଥାଏ ତାଙ୍କ ଅଙ୍ଗରେ । ବସ୍ତ୍ରର ବିରାଟ ବିରାଟ ଗଦା କେତୋଟିର ସୃଷ୍ଟି । ତଥାପି ସରୁ ନାହିଁ ବସ୍ତ୍ର । ସେ ହୋଇପାରୁ ନାହାନ୍ତି ବିବସ୍ତ୍ରା । ଦୁଃଶାସନ ବି ବସ୍ତ୍ର ଟାଣି ଟାଣି କ୍ଳାନ୍ତ ଅବସନ୍ନ । ଶେଷରେ ଥକ୍କା ମାରି ବସିପଡ଼ିଲେ ନିଜ ଆସନରେ । ସାରା ଦେହ ସ୍ୱେଦକ୍ଳିନ୍ନ । ଘୋର ଯୁଦ୍ଧରୁ ପ୍ରତ୍ୟାବୃତ କ୍ଳାନ୍ତ ରଥୀଟିଏ ଯେମିତି !

ସମସ୍ତେ ଚମତ୍କୃତ । କୃଷ୍ଣାଙ୍କ ଉପରେ ଯେ କୃଷ୍ଣଙ୍କ ଅଭୟ ଛତ୍ର ରହିଛି ସଦାସର୍ବଦା, ଏ ବିଷୟରେ ସମସ୍ତେ ଏବେ ନିଶ୍ଚିତ । କୃଷ୍ଣାଙ୍କ ସମେତ ପାଣ୍ଡବମାନଙ୍କ ବିରୋଧୀ ହେବା ଅର୍ଥ କୃଷ୍ଣଙ୍କ ବିରୋଧୀ ହେବା । କୃଷ୍ଣାଙ୍କ ବିରୋଧୀ ହୋଇ ଏଇ ପୃଥିବୀରେ ବଞ୍ଚିରହିବା ଯେ ଅସମ୍ଭବ, ଏ କଥା କଂସ, ଶିଶୁପାଳ, ଜରାସନ୍ଧ ଆଦି ଜୀବନ କାହାଣୀରୁ ପ୍ରମାଣିତ । ତେଣୁ କୌରବମାନଙ୍କ ମନକୁ ମଧ ଭୟ ଛୁଉଁଥିଲା କିଛି ମାତ୍ରାରେ । ସେମାନଙ୍କ ମୁଖଭଙ୍ଗୀ ଥିଲା ଏହାର ସୂଚକ ।

ଗିରିଗୁହାକୁ ପ୍ରକମ୍ପିତ କରି ଗର୍ଜି ଉଠୁଥିବା ସିଂହ ଭଳି ଗର୍ଜି ଉଠିଲେ ଭୀମସେନ, "ଆଜି ଏ ଭରା ସଭାରେ ମୁଁ ପ୍ରତିଜ୍ଞା କରି କହୁଛି, ଦିନେ ନା ଦିନେ ଏଇ ପାପୀ ଦୁଃଶାସନର ବାହୁଦ୍ୱୟକୁ ଦ୍ୱନ୍ଦ୍ୱଯୁଦ୍ଧରେ ଉପାଡ଼ି ଦେବି । ଆଉ ତା'ର ରକ୍ତକୁ କରିବି ଆକଣ୍ଠ ପାନ । ପୁଣି ଅଞ୍ଜଳିଭରା ସେଇ ରକ୍ତରେ ବାନ୍ଧିବି କୃଷ୍ଣାଙ୍କ ଉନ୍ମୁକ୍ତ ବେଣୀ । ସେତେଦିନ ପର୍ଯ୍ୟନ୍ତ ତାଙ୍କ ବେଣୀ ରହିଥିବ ମୁକୁଳା । ପୁଣି ବି ପ୍ରତିଜ୍ଞା କରି କହୁଛି, ଏଇ ଦୁଷ୍ଟ ଦୁର୍ଯ୍ୟୋଧନ ଯେଉଁ ଜାନୁ ଦେଖାଇ ସେଥିରେ ବସିବା ପାଇଁ କୃଷ୍ଣାଙ୍କୁ ଦେଇଛି ଇଙ୍ଗିତ, ତାହାକୁ ଗଦାଯୁଦ୍ଧରେ ଭାଙ୍ଗି କରିଦେବି ଚୂର୍ଣ୍ଣ-ବିଚୂର୍ଣ୍ଣ । ଏହା ମୋର ତ୍ରିବାର ଶପଥ ।"

ଆଉ କ'ଣ କହିଥାନ୍ତେ । ଯୁଧିଷ୍ଠିର ତାଙ୍କୁ ଶାନ୍ତ କରାଇବାରେ ବସିପଡ଼ିଲେ । କିନ୍ତୁ ଉତ୍‌ଫଣ ନାଗ ଭଳି ଫଁ ଫଁ ହେଉଥାନ୍ତି ।

ଭୀମସେନଙ୍କ ଏଇ ପ୍ରତିଜ୍ଞାରେ ଶିହରି ଉଠିଲେ ମହାରାଜ । ଦ୍ୟୂତକ୍ରୀଡ଼ାର ଏଭଳି ପରିଣତି ହେବ ବୋଲି ଆଶା କରି ନ ଥିଲେ ସେ । ତାଙ୍କ ମୁଖମଣ୍ଡଳକୁ ଛାଇଦେଲା ଶଙ୍କା ଓ ବିଷାଦର କଳା ମେଘ । ପିତାମହ ଭୀଷ୍ମ ଆଦି ମଧ୍ୟ ସମଧିକ ଆତଙ୍କିତ ।

ବିଦୁର ମହାରାଜଙ୍କ କର୍ଣ୍ଣମୂଳରେ ଧୀରେ ଧୀରେ କ'ଣ କହିଲେ । ସେ ମୁଣ୍ଡ ହଲାଇ ଦେଲେ ସମ୍ମତି । ତାହା ପରେ ମୁହଁ ଖୋଲିଲେ, ''ମାଆ ଦ୍ରୌପଦୀ ! ତୁମକୁ ଅଭୟ ଦେଉଛି । ତୁମ ପ୍ରତି ଆଉ କିଛି ବିପଦ ନାହିଁ । ତୁମ ଆଚରଣରେ ଖୁବ୍ ପ୍ରସନ୍ନ ମୁଁ । ତୁମକୁ ବର ଦେବାକୁ ଚାହେଁ । ମାଗ, ତୁମର କ'ଣ ବର ?''

''ମହାରାଜ ! ଯଦି ଆପଣ ମୋ' ଉପରେ ପ୍ରସନ୍ନ, ତେବେ ମୋର ପ୍ରାର୍ଥନା, ମୋ' ପତିମାନଙ୍କୁ ଦାସତ୍ୱର ବନ୍ଧନରୁ ମୁକ୍ତ କରନ୍ତୁ । ଆଉ ଫେରାଇଦିଅନ୍ତୁ ବି ମହାରାଜ ଯୁଧିଷ୍ଠିର ହାରି ବସିଥିବା ଇନ୍ଦ୍ରପ୍ରସ୍ଥ ରାଜ୍ୟ ଓ ଅନ୍ୟାନ୍ୟ ସକଳ ଧନସମ୍ପତ୍ତି ।'' ଦ୍ରୌପଦୀଙ୍କ ବିନୀତ ନିବେଦନ ଗୁଞ୍ଜରିତ ହୋଇଉଠିଲା ।

''ତଥାସ୍ତୁ ।'' ମହାରାଜଙ୍କ ସଂକ୍ଷିପ୍ତ ଆଦେଶ ।

ଦ୍ୟୂତସଭା ଭଙ୍ଗ ହେଲା । ପାଣ୍ଡବମାନେ ଫେରିଗଲେ ଇନ୍ଦ୍ରପ୍ରସ୍ଥକୁ ।

କୌଣସିମତେ ଆଗ୍ନେୟଗିରିର ଉଦ୍‌ଗତ ଜ୍ୱାଳାମୁଖୀକୁ ପ୍ରସ୍ତରର ଆବରଣ ତଳେ ଅସ୍ଥାୟୀ ଭାବରେ ଚପାଇ ଦିଆଗଲା ସିନା, ଭବିଷ୍ୟତରେ ଏହାର ଉଦ୍‌ଗିରଣର ସମ୍ଭାବନାକୁ ଦୂର କରାଯାଇପାରି ନ ଥିଲା । ସମସ୍ତଙ୍କ ମନରେ ଆଶଙ୍କା, ଏଇ ବିଷାକ୍ତ ଉଦ୍‌ଗିରଣ ଦିନେ ନା ଦିନେ ହେବ । ହଁ, ନିଶ୍ଚୟ ହେବ । ଏହା ଅପରିହାର୍ଯ୍ୟ । କିନ୍ତୁ କେବେ ହେବ ତାହାର କଳ୍ପନା ଥିଲା ସମସ୍ତଙ୍କ ସାଧନାତୀତ ॥ ବୃକ୍ଷ କୋଟରର ଅନ୍ଧକାରରୁ ଖାଲି ଯାହା ଶୁଣାଯାଉଥିଲା କେଉଁ ଅଶୁଭ ପେଚକର ଦୁରନ୍ତ ହୁଁ ହୁଁ ଧ୍ୱନିର କ୍ଷୀଣ ଝଙ୍କାର ! ଇସ୍ ! କି ବିକଟ ଓ ଭୀତିପ୍ରଦ ସେଇ ଶବ୍ଦ ! କାହାର ମୃତ୍ୟୁର ଆବାହନୀ ସଙ୍ଗୀତ କେଜାଣି ?

## ଏକଷଠି

ଦ୍ୟୂତକ୍ରୀଡ଼ା । ମଣିଷଜୀବନଟା ଦ୍ୟୂତକ୍ରୀଡ଼ା ଛଡ଼ା ଆଉ କ'ଣ ବା ହୋଇପାରେ ? ନିରନ୍ତର ମାତିଥାଏ ସେ ଏଇ ଦ୍ୟୂତକ୍ରୀଡ଼ାରେ । ଭାଗ୍ୟ ସହିତ । ସାମ୍ପ୍ରତିକ ଘଟଣାବଳୀ ସହିତ । ସୁଦୂର ଭବିଷ୍ୟତର ଇତିହାସ ସହିତ । ପଶାକାଠିଗୁଡ଼ିକର ଦାନ କେତେବେଳେ ପଡ଼େ ତା' ସପକ୍ଷରେ । ଆଉ କେତେବେଳେ ବିପକ୍ଷରେ । କେତେବେଳେ ସେ ହାରେ । ପୁଣି କେତେବେଳେ ଜିତେ । ଖେଳର କିନ୍ତୁ ବିରାମ ନ ଥାଏ । ମଣିଷ ବିଚରା ଦୂରରୁ ସୂତ୍ରଦ୍ୱାରା ନିୟନ୍ତ୍ରିତ କ୍ରୀଡ଼ନକଟି ଭଳି ଖେଳି ଖେଳି ଚାଲିଥାଏ । କାଳ ସେଇ ନିୟନ୍ତ୍ରଣକାରୀ । ଅଥଚ ନିଜେ ସାଜିଥାଏ ଦର୍ଶକ । ନିରପେକ୍ଷ ନିର୍ବିକାର ହୋଇ ଦେଖି ଚାଲିଥାଏ ଏଇ ଖେଳ । ମଣିଷ କିନ୍ତୁ ଦେଖିପାରେ ନାହିଁ ତା'କୁ । ବୁଝିପାରେ ନାହିଁ ତା'

ଇଙ୍ଗିତର ଅନ୍ତର୍ନିହିତ ମର୍ମଟିକୁ । ବହିରିଙ୍ଗିତଦ୍ୱାରା ପରିଚାଳିତ ହୋଇ ଖାଲି ଖେଳି ଚାଲିଥାଏ ସମ୍ମୋହିତ ଭାବରେ ଖଳିକାର ନିକଟରେ ସର୍ପଟିଏ ଭଳି । ବିଚରା ମଣିଷ !

ଦୁର୍ଯ୍ୟୋଧନ ସେମିତି କାଳର ଅପରିହାର୍ଯ୍ୟ ଇଙ୍ଗିତରେ କରିଥିଲେ ଦ୍ୟୂତକ୍ରୀଡ଼ା । ଉଦ୍ଦେଶ୍ୟ, ପାଣ୍ଡବମାନଙ୍କୁ କେମିତି କରିବେ ପରାଭୂତ । କପଟ ଦ୍ୟୂତର ଜାଲ ବିଛାଇ ନିରୀହ କପୋତପକ୍ଷୀ ଭଳି ଥିବା ପାଣ୍ଡବମାନଙ୍କୁ ଛନ୍ଦିଦେବେ ସେଥିରେ । ଆଉ ଅପହରଣ କରିବେ ବହୁ କଷ୍ଟରେ ଅର୍ଜିତ ସେମାନଙ୍କ ରାଜବୈଭବକୁ । ଉଦଗ୍ର ଏ ପିପାସା । ଦୁରନ୍ତ ଏ ଲୋଭ । ଫଳ ହେଲା କ'ଣ ? ସେ ଛଳନାର ଜାଲ ବିଛାଇ ଜିତିଲେ । କିନ୍ତୁ ତାହା କ୍ଷଣକ ପାଇଁ ମାତ୍ର । ଯାଦୁକରର ଯାଦୁବିଦ୍ୟାରେ ପ୍ରସ୍ତୁତ ବସ୍ତୁଟିଏ ଯେମିତି । ପରକ୍ଷଣରେ ଜିତିଥିବା ଧନକୁ ହରାଇବସିଲେ । ସେଥିପାଇଁ ମନରେ ଘୋର ଦୁଃଖ । ଦ୍ୟୂତକ୍ରୀଡ଼ାର ପରଦିନ ତାଙ୍କୁ ଯେତେବେଳେ ସାକ୍ଷାତ କରିବାକୁ ଯାଇଥିଲି, ଏଇ କଥା ସେ କହିଥିଲେ ମତେ । ମନରେ ତାଙ୍କର ଭାରି ରାଗ ଓ ଅଭିମାନ ମହାରାଜଙ୍କ ଉପରେ । ମହାରାଜ ଦ୍ରୌପଦୀଙ୍କୁ ବର ଦେବାରୁ ସିନା ଏଭଳି ଘଟିଲା । ସେ ନିଜ ପତିମାନଙ୍କ ମୁକ୍ତି ଚାହିଁଲେ । ଆଉ ଚାହିଁଲେ ବି ସେମାନଙ୍କ ହୃତ ରାଜ୍ୟକୁ ଫେରିପାଇବାପାଇଁ । ବିବଶ ହୋଇ ମହାରାଜ ତାଙ୍କ ପ୍ରାର୍ଥନା ପୂରଣ କଲେ । ମହାରାଜ ଏ ବର ଦେବା କଥା ନ କହିଥିଲେ କ'ଣ ହୋଇଥାନ୍ତା ?

ଏଇ ପ୍ରଶ୍ନଟି ତାଙ୍କ ମନକୁ ଆନ୍ଦୋଳିତ କରୁଥିବା ଅବସରରେ ସେ ପଚାରିଲେ ମତେ, "ମିତ୍ର ଅଙ୍ଗରାଜ କର୍ଣ୍ଣ ! କହ ତ ମହାରାଜ ଦ୍ରୌପଦୀଙ୍କୁ ଏଭଳି ବର ଦେଇ କ'ଣ ଠିକ୍ କଲେ ?"

"ଭୁଲ କଲେ ବୋଲି କାହିଁକି ଭାବୁଛ ମିତ୍ର ?" ମୋର ପ୍ରତିପ୍ରଶ୍ନ ।

"ମୋର ସବୁ ଉଦ୍ୟମ ଗଲା ଫସରଫାଟି । ପାଣ୍ଡବମାନେ ପୂର୍ବଠାରୁ ଆହୁରି ଅଧିକ ସମୃଦ୍ଧ ହେବାର ସୁଯୋଗ ପାଇଲେ ।" ସ୍ୱରରେ ତାଙ୍କର ନୈରାଶ୍ୟ ଓ ବିଷଣ୍ଣତାର ଲହରୀ ।

"କିନ୍ତୁ ମିତ୍ର, ଗୋଟିଏ ତ ଶୁଭ ଫଳ ମିଳିବ ଏଥିରୁ । ଏଣିକି ପାଣ୍ଡବ କୌରବମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଦୃଢ଼ ହେବ । ଉଭୟ ପକ୍ଷ ରହିବେ ଶାନ୍ତିରେ ।"

"ଅସମ୍ଭବ, ଅସମ୍ଭବ ମିତ୍ର । ସୌହାର୍ଦ୍ଦ୍ୟ କେବଳ ସମାନ ପକ୍ଷମାନଙ୍କ ମଧ୍ୟରେ ସମ୍ଭବ । ପାଣ୍ଡବମାନଙ୍କ ଗର୍ବ, ଦମ୍ଭ ଓ ଅହଙ୍କାର ଏଣିକି ବଢ଼ିବ । ଆଉ ଶୁଣିଲ ତ ଭୀମସେନ କ'ଣ ପ୍ରତିଜ୍ଞା କରିଛି ଦ୍ୟୂତସଭାରେ ? ଖୁବ୍ ପ୍ରତିଶୋଧପରାୟଣ ସେ । ପ୍ରତିଶୋଧ ନେଇ ସାରିବା ପରେ ମଧ୍ୟ ତା'ର କ୍ରୋଧ ଯାଏନା । ଏଥିରେ ଆମ ଦୁଇ ପକ୍ଷ ମଧ୍ୟରେ ଶାନ୍ତି ଆସିବ କୁଆଡୁ ?"

"ତୁମେ ତା'ହେଲେ କ'ଣ କହୁଛ ମିତ୍ର ?"

"ଏ କୁରୁ ରାଜ୍ୟର ଅଧିକାରୀ କେବଳ ହେବି ମୁଇଁ । ତା'ହେଲେ ଯାଇ ଶାନ୍ତି ।"

"ଆଉ ଯୁଧିଷ୍ଠିର ? ସେ ତ କୁରୁ ରାଜ୍ୟରୁ ଖାଣ୍ଡବପ୍ରସ୍ଥ ଭାଗଟି ନେଇଛନ୍ତି । ପୁଣି ସେ ମଧ ମହାରାଜ ପାଣ୍ଡୁଙ୍କ ପୁତ୍ର । ଆଉ ସମସ୍ତ କୁରୁବଂଶୀ ରାଜକୁମାରଙ୍କ ମଧ୍ୟରେ ଜ୍ୟେଷ୍ଠ ।"

"ଜାଣେ ଅଙ୍ଗରାଜ, ଜାଣେ । ଆଉ ଜାଣେ ବି ପାଣ୍ଡବମାନଙ୍କ ବଳବୀର୍ଯ୍ୟ । ସେମାନଙ୍କ ପଛରେ ଯେ ଯାଦୁକର କୃଷ୍ଣଙ୍କ ସହାୟତା ଅଛି, ତାହା ବି ଜାଣେ । ତେଣୁ ସେମାନଙ୍କୁ କୌଣସିମତେ ଦୂରେଇ ଦେବାକୁ ହେବ ଇନ୍ଦ୍ରପ୍ରସ୍ଥରୁ ।" ବଡ଼ ଆତ୍ମବିଶ୍ୱାସ ରଖି କହିଲେ ସେ ।

କୃଷ୍ଣଙ୍କୁ ଯାଦୁକର କହିବାଟା ଅସ୍ୱସ୍ତିକର ଲାଗୁଥିଲା ମତେ । ମାତୁଳ ଶକୁନିଙ୍କ ମତକୁ ଯେ ସେ ଦୋହରାଉଛନ୍ତି ଏଥିରେ ଥିଲି ସ୍ଥିରନିଶ୍ଚୟ । ଆଉ ସ୍ଥିରନିଶ୍ଚୟ ବି ଥିଲି ଏହାର କୁପରିଣତି ସଂପର୍କରେ । ଜଣେ ହିତାକାଙ୍‌କ୍ଷୀ ମିତ୍ର ଭାବରେ ତାଙ୍କୁ ପରାମର୍ଶ ଦେଇ କହିଲେ, "ହେ ମିତ୍ର ! କୃଷ୍ଣ ଜଣେ ମହାପୁରୁଷ । ଅଲୌକିକ ତାଙ୍କ ମହିମା । ତାଙ୍କ ବିଷୟରେ ଏଭଳି ମନ୍ତବ୍ୟ ଦେବା ଅନୁଚିତ । ଦେଖିଲ ତ ଦ୍ୟୂତସଭାରେ ତାଙ୍କ ଶକ୍ତିର ମହିମା ? କେହି ଦ୍ରୌପଦୀଙ୍କୁ ଦେଇପାରିଲେ ନାହିଁ ସୁରକ୍ଷା । ଅଥଚ ସେ ଦେଲେ । ପୁଣି ଅତି ଅଲୌକିକ ଭାବରେ ।"

"ମାମୁ କହୁଥିଲେ, ସବୁ କୁହୁକ । ସବୁ କପଟ ମାୟାରେ ଆଚ୍ଛନ୍ନ ଇନ୍ଦ୍ରଜାଲ । ମୁଁ ବି ସେଥିରେ ହୋଇଯାଇଥିଲି ମୋହିତ । ତୁମେ ତେଣୁ କିଛି ଗୁରୁତ୍ୱ ଦିଅ ନାହିଁ ଏଥିରେ ।" କୃଷ୍ଣଙ୍କ ପ୍ରତି ତାଙ୍କର ଅବମାନନାସୂଚକ ସ୍ୱର ।

"ତଥାପି ତୁମକୁ ପରାମର୍ଶ ଦେବି କୃଷ୍ଣ ବିରୋଧୀ ନ ହେବା ପାଇଁ । ଆଉ ଏ କଥା ବି ପରିଷ୍କାର କରି କହୁଛି, ଯଦି ଦୁର୍ଭାଗ୍ୟବଶତଃ ତୁମେ କେବେ କୃଷ୍ଣବିରୋଧୀ ହୁଅ, ତଥାପି ମଧ ତୁମ ପକ୍ଷ ସମର୍ଥନ କରିବି । ସାରା ଜଗତ ହୁଏତ ତୁମକୁ ଛାଡ଼ିଦେଇପାରେ ଏ କର୍ଣ୍ଣ କିନ୍ତୁ ନୁହେଁ ।" କଣ୍ଠସ୍ୱରରେ ମୋର ଉଚ୍ଛଳ ଭାବପ୍ରବଣତା । ବିପଥଗାମୀ ମିତ୍ରଙ୍କର ଚିରନ୍ତନ ରକ୍ଷାକବଚ ହେବା ଲାଗି ନିଷ୍କପଟ ଆଗ୍ରହ । ଯେତେ ହେଲେ ସେ ମୋ' ମିତ୍ର । ମୁଁ ତାଙ୍କ ନିକଟରେ ଚିରଋଣୀ । ଯେତେ ବୁଝାଇଲେ ଅବୁଝା ହେଉଛନ୍ତି, ସେଥିପାଇଁ ଗଭୀର ଦୁଃଖିତ ହେଲି ମନେ ମନେ ।

ଆଖି ତାଙ୍କର ଛଳ ଛଳ ହୋଇଉଠିଲା । ସ୍ଖଳିତ କଣ୍ଠରେ ମତେ କହିଲେ, "ସବୁ ଜାଣେ ମିତ୍ର, ଜାଣେ । ତୁମେ ମୋ' ପାଖେ ପାଖେ ଥିଲେ ମତେ କାହାକୁ ଡର ନାହିଁ । ସ୍ୱୟଂ ଯମରାଜଙ୍କୁ ବି ।" ଏହା କହି ସେ ଦୃଢ଼ ଭାବରେ ମୋର କରପୀଡ଼ନ କଲେ । ଦୁଇ ମିତ୍ରଙ୍କ ତନୁ-ମନ ଗୁରୁ ଗୁରୁ ସ୍ପନ୍ଦିତ !

ଭାବପ୍ରବଣତାରେ କେତୋଟି ମୁହୂର୍ତ୍ତ କଟିଯିବାରୁ ପ୍ରଶ୍ନ କଲି, "ଆଚ୍ଛା ମିତ୍ର ! ଏଇ ଟିକକ ପୂର୍ବରୁ କହୁଥିଲ ପରା ପାଣ୍ଡବମାନଙ୍କୁ ଦୂରେଇଦେବ ବୋଲି । କ'ଣ ତାହାର ଅର୍ଥ ? କ'ଣ ସେମାନଙ୍କ ସହିତ ଯୁଦ୍ଧ କରିବ ?"

"ସେ ଭୁଲ ବର୍ତ୍ତମାନ କରିବି ନାହିଁ । ସମୟ ଆସିଲେ ପରେ ହୁଏତ ଯୁଦ୍ଧ କରିପାରେ ।" ଅଳ୍ପ ଅଳ୍ପ ହସି କହିଲେ ସେ ।

"ତେବେ ବର୍ତ୍ତମାନ ?" ମୋର ଜିଜ୍ଞାସୁ ପ୍ରଶ୍ନ ।

"ମାମୁଙ୍କ ସହିତ ଗତ ରାତ୍ରିରେ ହିଁ କରିଛି ପରାମର୍ଶ । ପୁଣି ଥରେ ଯୁଧିଷ୍ଠିରଙ୍କ ସହିତ ଦ୍ୟୂତକ୍ରୀଡ଼ା ହେବ ।"

"ଆହୁରି ଦ୍ୟୂତକ୍ରୀଡ଼ା ? ତାହା କରନା ମିତ୍ର । ତାହା ଶତ୍ରୁତାର ବୀଜବପନ କରିବ ସିନା କିଛି ଲାଭ ହେବ ନାହିଁ ।" ମୋର ଆତଙ୍କଭରା କଣ୍ଠସ୍ୱର ।

"ଲାଭ ଅଛି ମିତ୍ର, ଅଛି । ଯୁଧିଷ୍ଠିରଙ୍କୁ ପୁଣି କପଟ ଦ୍ୟୂତରେ ହରାଇବାକୁ ହେବ । ତାହା ଫଳରେ ସେ ଭାଇମାନଙ୍କ ସହିତ ରାଜ୍ୟରୁ ହେବେ ନିର୍ବାସିତ । ମୁଁ ହେବି ସମଗ୍ର କୁରୁରାଜ୍ୟର ସ୍ୱାମୀ । ହୁଏତ ସେଇ ବନବାସର ଅବଧି ମଧ୍ୟରେ ସେମାନଙ୍କ ମୃତ୍ୟୁ ହୋଇପାରେ ।"

"ମୃତ୍ୟୁ ହୋଇ ବି ନ ପାରେ । ବନବାସର ଅବଧି ପୂରିଲେ ସେମାନେ ତ ପୁଣି ଦିନେ ନା ଦିନେ ଫେରିବେ । ଆଉ ରାଜ୍ୟଭାଗ ମାଗିବେ । ସେତେବେଳେ ?"

"ସେମାନଙ୍କ ନ ଫେରିବାର ବ୍ୟବସ୍ଥା କରାଯିବ । ଯଦି ତାହା ସତ୍ତ୍ୱେ ଫେରନ୍ତି, ତେବେ ବିନା ଯୁଦ୍ଧରେ ସେମାନଙ୍କୁ ରାଜ୍ୟ ଦେବି ନାହିଁ । ଏଭଳି ଦୁର୍ବଳ ଅବସ୍ଥା ନେଇ ସେମାନେ ଆଉ ସାହସ କରିବେ ନାହିଁ ମୋ' ସହିତ ଯୁଦ୍ଧ କରିବାକୁ । ପୁଣି ବନବାସୀ-ଜୀବନ ବିତାଇବେ ପୂର୍ବ ଭଳି ।" ଦୃଢ଼ କଣ୍ଠରେ କହିଲେ ସେ । ସତେ ଯେମିତି ଜଣେ ଭବିଷ୍ୟତର ଦ୍ରଷ୍ଟା ! ଆକାଶକୁସୁମ ତୋଳିବାପାଇଁ ଯେ ଏହା ଏକ ବୃଥା ପ୍ରୟାସ ତାହା ବୁଝିପାରୁଥିଲି ।

"କଥାଟା ଏତେ ସହଜ ନୁହେଁ ମିତ୍ର । ମତେ କିଛି ଭଲ ଦିଶୁ ନାହିଁ । ତୁମେ ଏହି କର୍ମରୁ ନିବୃତ୍ତ ହୁଅ । ଭଲ ହେବ ।" ପ୍ରତିକ୍ରିୟା ପ୍ରକାଶ କରି କହିଲି ।

"ଧୈର୍ଯ୍ୟ ଧରି ରହ ମିତ୍ର କର୍ଣ୍ଣ । ଦେଖ କ'ଣ ହେଉଛି ?" ତାଙ୍କ ମୁଖମଣ୍ଡଳରେ ବୃଥା ଆତ୍ମବିଶ୍ୱାସଭରା ମୃଦୁ ମୃଦୁ ହାସର ଝଲକ । ମତେ କିନ୍ତୁ ଆଦୌ ଭଲ ଲାଗୁ ନ ଥିଲା ।

ଆଉ କିଛି ପ୍ରତିବାଦ ନ କରି ଫେରିଆସିଲି ତାଙ୍କ ପାଖରୁ ।

ଫେରିଲା ବେଳେ ସ୍ମୃତିଚାରଣ କରୁଥାଏ ଗତ ଦିବସର ଘଟଣାଗୁଡ଼ିକୁ । ବିଶେଷକରି ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାର ଉଦ୍ୟମକୁ । ଆଉ ଦୁର୍ଯ୍ୟୋଧନ ତାଙ୍କୁ ନିଜ ଜାନୁ-ଦେଶରେ ବସାଇବା ପାଇଁ ଦେଇଥିବା ଇଙ୍ଗିତ ଅବସରରେ ମୋର କଟୁ ମନ୍ତବ୍ୟକୁ । ପର ସ୍ତ୍ରୀ ସେ । ତାଙ୍କୁ କହିଲି ଗଣିକା ବୋଲି । ଅବଶ୍ୟ ପ୍ରତିହିଂସାରେ ଜଳୁଥିଲି ମୁଁ ସେତେବେଳେ । ସେହି ଅବସ୍ଥାରେ ପାଟିରୁ ଖସିଗଲା ସେ କଥା । ଏହା କହି କ'ଣ ଠିକ୍ କଲି ? ଜଣେ ମର୍ଯ୍ୟାଦାବାନ୍ ରାଜା ଭାବରେ ମୋର ଯେଉଁ ସୁନାମ ଥିଲା, ତାହା କ'ଣ କ୍ଷୁଣ୍ଣ ହେଲା ନାହିଁ ଏଥିରେ !! କ'ଣ ଭାବିଥିବେ ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଆଦି ଗୁରୁଜନମାନେ ? କି ପ୍ରତିକ୍ରିୟା ହୋଇଥିବ ଦର୍ଶକ ଆସନରେ ବସିଥିବା ଋଷି ବ୍ରାହ୍ମଣମାନଙ୍କର ? ପୁଣି ରାଜମାତା ଗାନ୍ଧାରୀ । ତାଙ୍କର ଯେଉଁ ଉଚ୍ଚ ଧାରଣା ଥିଲା ମୋ' ସଂପର୍କରେ ତାହା କ'ଣ

ଆଉ ଥିବ ? ଅନ୍ୟାନ୍ୟ ନାଗରିକମାନଙ୍କ ଆଖିରେ ସତେ କେତେ ଛୋଟ ହୋଇଗଲି ମୁଁ ! ରାଜମାତା କୁନ୍ତୀଙ୍କର ମୋ' ପ୍ରତି କେତେ ସ୍ନେହ ! କେତେ ଶ୍ରଦ୍ଧା ! କେତେ ଅନୁକମ୍ପା ! ସେ ଯେତେବେଳେ ଏ କଥା ଶୁଣିବେ ସେତେବେଳେ କ'ଣ ଭାବିବେ ?

ଏଇ ଚିନ୍ତାରେ ଅତି ମାତ୍ରାରେ କ୍ଷୁଣ୍ଣ ମୁଁ ।

କିନ୍ତୁ ପରକ୍ଷଣରେ ସାନ୍ତ୍ୱନା ଦେଉଥାଏ ନିଜକୁ – ଯାହା କରିଛି ତାହା ଭୁଲ ନୁହେଁ । ମୁଁ ସିନା ପ୍ରତିହିଂସାପରାୟଣ ହୋଇ ଏଭଳି କରିଛି । ସେହି ଦିଗରେ ନ ଭାବିଥିଲେ ବି ଏହାର ପରିଣତି ହୋଇଛି ଖୁବ୍ ଭଲ । ଏଥିରେ ଦ୍ରୌପଦୀଙ୍କ ମହିମା ହୋଇଛି ପ୍ରକଟିତ । କୃଷ୍ଣଙ୍କ ପ୍ରତି ତାଙ୍କ ଅପାର ଭକ୍ତିର ମିଳିଛି ନିଦର୍ଶନ । ଆଉ ଭକ୍ତଜନଙ୍କ ପ୍ରତି ଥିବା କୃଷ୍ଣଙ୍କ ଅପାର କରୁଣା ହୋଇଛି ପ୍ରମାଣିତ । ସେ ଯେ ଅଲୌକିକ, ଏହା ପରିଷ୍କାର ହୋଇଯାଇଛି ଦ୍ୟୂତସଭାରେ । ଅଜ୍ଞାତରେ ହେଲେ ବି ଭଲ କାମଟିଏ ତ କରିବସିଛି ମୁଁ । ତେଣୁ ମନରେ କ୍ଷୋଭ ଆଣିବି କାହିଁକି ? ପଶ୍ଚାତ୍ତାପ କରିବି କାହିଁକି ? ମର୍ଯ୍ୟାଦାହାନି ହେଲା ବୋଲି ଭାବିବି କାହିଁକି ? କାହିଁକି ବା ଭାବିବି ନାହିଁ ଯେ ମୋ' କର୍ମଦ୍ୱାରା ପରୋକ୍ଷ ଭାବରେ ଧର୍ମ ପରିପୁଷ୍ଟ ହୋଇଛି ବୋଲି ?

ଏଇ ସାନ୍ତ୍ୱନାର ଜଳରେ ଆପେ ଆପେ ଅନୁସିକ୍ତ ଥିବା ଅବସ୍ଥାରେ କେତେବେଳେ ଯେ ମୋ' ରଥଚକ୍ର ଗଡ଼ି ଗଡ଼ି ଆସି ନିଜ ଭବନଦ୍ୱାର ନିକଟରେ ଲାଗି ଯାଇଥିଲା, ତାହା ଜାଣିପାରି ନ ଥିଲି ।

## ବାଷଠି

ଦୁର୍ଯ୍ୟୋଧନ ଠିକ୍ କହୁଥିଲେ । ଖୁବ୍ ଶୀଘ୍ର ହିଁ ତାଙ୍କ ଯୋଜନା ହେଲା ସାକାର । ଦ୍ୱିତୀୟ ଥର ଲାଗି ଯୁଧିଷ୍ଠିରଙ୍କୁ ମହାରାଜ ନିମନ୍ତ୍ରଣ କଲେ ଦ୍ୟୂତକ୍ରୀଡ଼ା ପାଇଁ । ଶୁଣିଲି, ରାଜମାତା କୁନ୍ତୀ କୁଆଡ଼େ ମନା କରୁଥିଲେ ତାଙ୍କୁ ଦ୍ୟୂତକ୍ରୀଡ଼ାରେ ଯୋଗ ଦେବା ନିମିତ୍ତ । କିନ୍ତୁ ତାହା ସତ୍ତ୍ୱେ ସେ ଆସିଲେ । ମହାରାଜଙ୍କ ନିମନ୍ତ୍ରଣ । ଜ୍ୟେଷ୍ଠତାତ । ସେ ତାଙ୍କ ଆଦେଶକୁ ଲଂଘିଯିବେ କେମିତି ? ତାହା ଛଡ଼ା କ୍ଷତ୍ରିୟ ସେ । କ୍ଷତ୍ରିୟଙ୍କ ପାଇଁ ଦୁଇଟିର ନିମନ୍ତ୍ରଣକୁ ଉପେକ୍ଷା କରିବା ଅଧର୍ମ । ଆଉ କାପୁରୁଷତାର ଲକ୍ଷଣ ବି । ପ୍ରଥମଟି ଯୁଦ୍ଧ । ଦ୍ୱିତୀୟଟି ଦ୍ୟୂତକ୍ରୀଡ଼ା । ଏହି ଯୁକ୍ତିର ଉପସ୍ଥାପନ ସେ କରିଥିଲେ ମାଆଙ୍କ ଆଗରେ । ଶେଷରେ ମାଆ ତାଙ୍କୁ ଅନୁମତି ଦେଇଥିଲେ ଦ୍ୟୂତକ୍ରୀଡ଼ା ପାଇଁ । କିନ୍ତୁ ବିଦାୟ ଦେଲା ବେଳେ ସାବଧାନୀ ବାଣୀ ଶୁଣାଇଥିଲେ, ''ପୁତ୍ର ଯୁଧିଷ୍ଠିର ! ଦ୍ୟୂତକ୍ରୀଡ଼ା ବେଳେ ଗୋଟିଏ କଥା ମନେ ରଖିଥିବ ।''

''କ'ଣ ମାଆ ?'' ଜିଜ୍ଞାସୁ ପ୍ରତିପ୍ରଶ୍ନ ପଚାରିଲେ ଯୁଧିଷ୍ଠିର ।

''ନିଜ ଭାଇମାନଙ୍କୁ କିମ୍ବା ପତ୍ନୀଙ୍କୁ କେବେହେଲେ ପଣ ରଖିବ ନାହିଁ ।''

''ଯେ ଆଜ୍ଞା ମାଆ ! ମୁଁ ଏଇ ଆଦେଶକୁ ଅକ୍ଷରେ ଅକ୍ଷରେ ପାଳିବି ।''

ଦ୍ୟୁତକ୍ରୀଡ଼ାରେ ରଖାଯାଇଥିଲା ଅଦ୍ଭୁତ ସର୍ତ୍ତ । ପରାଜିତ ପକ୍ଷକୁ ତେର ବର୍ଷ ବନବାସ କରିବାକୁ ହେବ । ଏଥିରୁ ଗୋଟିଏ ବର୍ଷ ହେବ ଅଜ୍ଞାତବାସ । ଯଦି ଅଜ୍ଞାତବାସ ସମୟରେ ତାଙ୍କ ସନ୍ଧାନ ମିଳିଯାଏ, ତେବେ ପୁଣି ଅନୁରୂପ ଭାବରେ କରିବାକୁ ହେବ ତେର ବର୍ଷ ବନବାସ । ଏହିପରି ଭାବରେ ଘୂରୁଥିବ ବନବାସର ଚକ୍ର । ଭାବିଲି, କପଟୀ ଗାନ୍ଧାରରାଜଙ୍କ ମୁଣ୍ଡରୁ ବାହାରିଛି ଏଇ ଯେଉଁ ଯୋଜନା, ତାହା ବଡ଼ ବିଚିତ୍ର । ଖୁବ୍ ବୁଦ୍ଧି ଖେଳାଇ କରାଯାଇଛି । କୌଣସିମତେ ପାଣ୍ଡବମାନଙ୍କୁ ବନବାସର ଅବଧି ସମାପ୍ତ କରି ରାଜ୍ୟଦାବି କରିବାର ଅବକାଶ ଦିଆଯିବ ନାହିଁ । ହୁଏତ ସେଇ ବନବାସ ସମୟରେ ସେମାନଙ୍କ କାଳ ହୋଇଯାଇପାରେ କିମ୍ବା ଚକ୍ରାନ୍ତ କରି ମାରି ଦିଆଯାଇପାରେ ସେମାନଙ୍କୁ । ବଡ଼ ଭୟଙ୍କର ଏ ଯୋଜନା । ଏଇ ଚିନ୍ତାରେ ମନ ମୋର ଖୁବ୍ ବିଷାକ୍ତ ତାଙ୍କ ପ୍ରତି । ଦୁର୍ଯ୍ୟୋଧନ ଅଥବା ମହାରାଜ । ଏ ଦୁହେଁ ତ ଦୁଇଟି କ୍ରୀଡ଼ନକ ତାଙ୍କ ହାତରେ । ପ୍ରଥମ ଜଣଙ୍କର ଅତ୍ୟଧିକ ଲୋଭ । ଆଉ ଅପରଙ୍କର ଅତ୍ୟଧିକ ପୁତ୍ରସ୍ନେହ । ଦୁହିଁଙ୍କ ଚରିତ୍ରକୁ ଅତି ଚତୁର ଭାବରେ ଶୋଷି ଚାଲିଛନ୍ତି ସେ ।

ଯୋଜନା ଅନୁସାରେ ଦ୍ୟୁତକ୍ରୀଡ଼ାରେ ଯୁଧିଷ୍ଠିର ହୁଅନ୍ତି ପରାସ୍ତ । ରାଜ୍ୟ ଛାଡ଼ି ପତ୍ନୀ ଦ୍ରୌପଦୀ ଓ ଅନୁଜମାନଙ୍କ ସହିତ ଯାଆନ୍ତି ବନବାସ ଅଭିମୁଖରେ । ତେର ବର୍ଷ ବନବାସ କରିବେ । ବୃଦ୍ଧାବସ୍ଥା ହେତୁ କୁନ୍ତୀଦେବୀ ରହିଯା'ନ୍ତି ହସ୍ତିନାପୁରରେ ବିଦୁରଙ୍କ ଭବନରେ ।

ପ୍ରଥମ ଦ୍ୟୁତକ୍ରୀଡ଼ାର ମାତ୍ର ପନ୍ଦରଟା ଦିନ ମଧ୍ୟରେ ପରିସ୍ଥିତି ସଂପୂର୍ଣ୍ଣ ଓଲଟପାଲଟ ।

ପାଣ୍ଡବମାନେ ଏବେ ଦ୍ୱୈତବନରେ କାଟୁଛନ୍ତି ବନବାସୀ ଜୀବନ । ଏଇ କଥାଟାକୁ ତ ପ୍ରଥମେ ବିଶ୍ୱାସ କରିହେଉ ନ ଥିଲା । ମଣିଷ ବିଶ୍ୱାସ କରୁ କି ନ କରୁ, ସତ୍ୟ ହିଁ ସବୁବେଳେ ସତ୍ୟ । ଅଚାନକ ଆସିଥାଏ ଅବିଶ୍ୱସନୀୟ ପରିସ୍ଥିତି ମଧ୍ୟରେ । ସାପ ତାହାର କାତିକୁ ଛାଡ଼ିଗଲା ଭଳି ବହୁ ଶ୍ରମଦ୍ୱାରା ଅର୍ଜିତ ଇନ୍ଦ୍ରପ୍ରସ୍ଥ ଭଳି ସମୃଦ୍ଧ ରାଜ୍ୟକୁ ଛାଡ଼ି ଯାଇଛନ୍ତି ସେମାନେ । ସାଥେ ସାଥେ ଛାଡ଼ିଯାଇଛନ୍ତି ମଣି, ମାଣିକ୍ୟ, ବୈଦୁର୍ଯ୍ୟ ଆଦି ରତ୍ନରାଶି ଓ ମର୍ମର ପ୍ରସ୍ତରରେ ଚକିତ ସୁରମ୍ୟ ରାଜଭବନ । ଖାଲି ସେତିକି ନୁହେଁ, ଗଲା ବେଳେ ଦେହରୁ ରାଜବସ୍ତ୍ର ବି ଓହ୍ଲାଇ ଦେଇଛନ୍ତି । ଏହି ନିରାଟ ସତ୍ୟକୁ ଅସ୍ୱୀକାର କରିବାର କିଛି ହିଁ ନ ଥିଲା କାରଣ ।

ମନେ ମନେ ଭାବୁଥାଏ, ଯୁଧିଷ୍ଠିର ଏତେ ବଡ଼ ଧାର୍ମିକ ପୁରୁଷ ! ଏଭଳି ସତ୍ୟନିଷ୍ଠ ! ତାଙ୍କ ଅନୁଜମାନେ ବି ସମଧିକ ଧର୍ମପରାୟଣ । ପତ୍ନୀ ଦ୍ରୌପଦୀଙ୍କ ନାମ ମଧ୍ୟ ଜଣେ ପତିବ୍ରତା ନାରୀ ବୋଲି ବିଖ୍ୟାତ । ସର୍ବୋପରି କୃଷ୍ଣଙ୍କ ଭଳି ଜଣେ ମହାପୁରୁଷଙ୍କ ଅନୁକମ୍ପା ରହିଛି ସେମାନଙ୍କ ଉପରେ । ସେମାନେ କାଲି କରୁଥିଲେ ରାଜଭୋଗ । ଆଜି ଭୋଗୁଛନ୍ତି ବନବାସୀଜୀବନ । ସେମାନେ ତେବେ କ'ଣ ପାଇଲେ ଜୀବନରେ ?

ଅନୁରୂପ ଭାବରେ ମୁଁ ବି କ'ଣ ପାଇଛି ଜୀବନରେ ? ଉପେକ୍ଷା, ଅବହେଳା, ଅବିଚାର ଓ ଘୃଣା ଛଡ଼ା ଆଉ କ'ଣ ? ଦୋଷ ମୋର ଏତିକି ଯେ ମୁଁ ସୂତପୁତ୍ର । ଆଉ ପୁଣି ତାହାଠାରୁ ଅଧିକ ଦୋଷ ହେଲା, ମୁଁ ଉପରକୁ ଉଠିବାକୁ ଚାହେଁ । କୂପମଣ୍ଡୂକର ନୀରନ୍ଧ୍ର କୂପଜଳ ମଧ୍ୟରୁ ବାହାରି ବିହଗସମ ଆକାଶରେ ଚାହେଁ ଉଡ଼ିବାକୁ । ସୂର୍ଯ୍ୟଦେବଙ୍କ

ଝଳ ଝଳ କିରଣରେ ଆପଣାର ଡେଣା ଦୁଇଟିକୁ ପରିସ୍ନାତ କରିବାକୁ । ମଣିଷ ଜୀବନକୁ ଅନୁଧ୍ୟାନ କରି ଯାହା ଦେଖୁଛି, ଏହା କେବଳ କେତେଗୁଡ଼ିଏ ବିଡ଼ମ୍ବିତ ଦୁର୍ଘଟଣାର ସମାହାର । ଏହାରି ଜାଲରେ ଛନ୍ଦିହୋଇ ମଣିଷ ବିଚରା ଛଟପଟ । ବାରମ୍ବାର କାତର ସ୍ୱରରେ ଚିତ୍କାର କରୁଛି ମୁକ୍ତି ପାଇଁ । କିନ୍ତୁ କାହିଁ ସେଇ ଚିର ଈପ୍ସିତ ମୁକ୍ତି ? ତାହା କ'ଣ ସମ୍ଭବ ଏ ଜୀବନରେ ? ତା'ହେଲେ କ'ଣ ଏମିତି ଛଟପଟ ହୋଇ କେତୋଟି ବର୍ଷ ବିତାଇଦେବା ଜୀବନର ଲକ୍ଷ୍ୟ ? ଯଦି ତାହାହିଁ ସତ୍ୟ, ତା' ହେଲେ ଜୀବନ ଏକ ବେଦନାଦାୟକ ଦୁର୍ଘଟଣା ଛଡ଼ା କ'ଣ ବା ହୋଇପାରେ ?

ନିଜ କକ୍ଷରେ ବସିଥିବା ସମୟରେ ଖୁବ୍ ବିଷଣ୍ଣ ହୋଇଉଠୁଥିଲି ମନେ ମନେ । ଏତିକି ବେଳେ ଦ୍ୱାରୀ ଆସି ଖବର ଦେଲା ଗୁରୁପୁତ୍ର ଅଶ୍ୱତ୍ଥାମା ଆସିଛନ୍ତି ବୋଲି । ତାଙ୍କର ଯେ ମୋ' କକ୍ଷ ମଧ୍ୟରେ ପ୍ରବେଶ କରିବାର ଅବାଧ ଅଧିକାର ଅଛି, ଏ କଥା ତାଙ୍କୁ କହିଥିଲି ଅନେକବାର । ତଦନୁଯାୟୀ ଆଦେଶ ଦେଇଥିଲି ବି ସେବକମାନଙ୍କୁ । ତାହା ସତ୍ତ୍ୱେ ସେ ପ୍ରତ୍ୟେକଥର ଆସିଲେ ମୋ' ଦର୍ଶନ ପାଇଁ ଚାହୁଁଥିଲେ ଅନୁମତି । ନିଜ ମର୍ଯ୍ୟାଦା ଓ ରାଜକୀୟ ମର୍ଯ୍ୟାଦା ଉଭୟକୁ ରକ୍ଷା କରିବାକୁ ସତତ ଯତ୍ନଶୀଳ ସେ । ଅତି ମର୍ଯ୍ୟାଦାବନ୍ତ ସାଧୁ ପୁରୁଷ ମୋ' ମିତ୍ର ।

ସଙ୍ଗେ ସଙ୍ଗେ ଖବର ପଠାଇଲି ତାଙ୍କୁ ଆସିବାପାଇଁ । ଆସିବାମାତ୍ରେ ମୋ' ମୁହଁକୁ ଚାହିଁଦେଇ ହଠାତ୍ ପ୍ରଶ୍ନ କଲେ, ''ମିତ୍ର ଅଙ୍ଗରାଜ ! କ'ଣ ଭାବି ଭାବି ଏମିତି ବିଷଣ୍ଣ ଅଛ ? କଥା କ'ଣ ?''

''କହ ମିତ୍ର ଅଶ୍ୱତ୍ଥାମା, ଜୀବନଟା କ'ଣ ଖାଲି ଏକ ଦୁର୍ଘଟଣାର ସମଷ୍ଟି ?'' ମୋର ପ୍ରତିପ୍ରଶ୍ନଟି ସତେ ଯେମିତି ଆଶାୟୀ ହୋଇ ଚାହିଁ ରହିଥିଲା ତାଙ୍କ ପ୍ରଶ୍ନକୁ ! ଆପେ ଆପେ ବାହାରିଗଲା ।

''ଏଭଳି ପ୍ରଶ୍ନ କାହିଁକି କରୁଛ ମିତ୍ର ?''

''କାରଣ ମୁଁ ଦେଖୁଛି, ସମସ୍ତଙ୍କ ଜୀବନରେ ଛାଇହୋଇ ରହିଛି ଦୁର୍ଘଟଣାର ଜାଲ । ସମସ୍ତଙ୍କର ବିକଳ ଚିତ୍କାର ! ଏଥିରୁ କ'ଣ ମୁକ୍ତି ନାହିଁ ?''

''ନାହିଁ କାହିଁକି ? ଅଛି । ନିଶ୍ଚିତ ଭାବରେ ଅଛି । ଜାଲରେ ଛନ୍ଦିହୋଇ ମୁକ୍ତ ଭାବରେ ବିଚରଣ କରୁଥିବା ମତ୍ସ୍ୟମାନେ ଅବଶ୍ୟ ମରନ୍ତି । କିନ୍ତୁ ବୃହଦାକାର ମତ୍ସ୍ୟ ତାହାକୁ ଡେଇଁ କିମ୍ବା କାଟି ମୁକ୍ତି ପାଇଯାଏ । ଆଦୌ ଧରା ପଡ଼େ ନାହିଁ । ସେମିତି ମଣିଷ ମଧ୍ୟରେ ମଧ୍ୟ ଅନୁରୂପ ମତ୍ସ୍ୟଟିଏ ଅଛି, ଯାହାକୁ ଏଇ ଜାଲର ବନ୍ଧନ ବାନ୍ଧିରଖି ପାରେନା ।''

''ସେ କିଏ ?''

''ଆତ୍ମା । ଏଇ ଆତ୍ମାର ସ୍ଥାୟୀ ଭାବ ଦିବ୍ୟ ଆଲୋକ । ଦିବ୍ୟ ଆଲୋକ ଶରୀର ମଧ୍ୟରେ ଥିବା ଚେତନାର ପରିଭାଷା । ଏଇ ଚେତନାରେ ଯଦି ମଣିଷ ହେଲା ଉଦ୍‌ବୁଦ୍ଧ, ତା'ହେଲେ ତା'ର ଜୀବନ-ଜାଲରେ ଛନ୍ଦିହେବାର ଅବକାଶ ହିଁ ନାହିଁ । ତେଣୁ ଏଇ ଚେତନା କ'ଣ ତାହା ଜାଣିବା ଉଚିତ । ଏହା ଜାଣିବାକୁ ହେଲେ ଶ୍ରଦ୍ଧା ଥିବା ଆବଶ୍ୟକ ଜୀବନ ପ୍ରତି । ହଁ, ଅସୀମ ଶ୍ରଦ୍ଧା । ଅତି ନିରୋଳା ।''

''ଶ୍ରଦ୍ଧା ? ମଣିଷ ତା'ହେଲେ କେଉଁ କେଉଁ ଜନିଷ ଉପରେ ଶ୍ରଦ୍ଧା ରଖିବ ? ଶ୍ରଦ୍ଧାର ପ୍ରକୃତ ଅର୍ଥ କ'ଣ ? ଜୀବନର ଘାତପ୍ରତିଘାତର ମହାଝଞ୍ଜାରେ ଯଦି ଏଇ ଶ୍ରଦ୍ଧାର ନୌକାଟି କେବେ କେବେ ବୁଡ଼ିଯାଏ, ତେବେ ବିଚରା ମଣିଷ କରିବ କ'ଣ ?'' ତାଙ୍କୁ ଅଧିକରୁ ଅଧିକ ତତ୍ତ୍ୱ କଥା କହିବାକୁ ଉତ୍ତେଜିତ କରିବାଲାଗି ମୋର ଉଦ୍ୟମ । ବାସ୍ତବିକ ଏଭଳି ଭାବରେ ଉତ୍ତେଜିତ ଥିବା ଅବସ୍ଥାରେ ବ୍ରହ୍ମବିତ୍ ଅଶ୍ୱତ୍‌ଥାମାଙ୍କ ବାଣୀ ଥାଏ ଅଧିକତର ପୁଷ୍ପିତ । ଆଉ ସେଇ ପୁଷ୍ପର ସୌରଭ ମୋ'ପାଇଁ ଥାଏ ପ୍ରାଣ ଭରି ଆଘ୍ରାଣର ଯୋଗ୍ୟ । ଅତି ହୃଦ୍ୟ !

ମୋର ଏଇ ପ୍ରଶ୍ନରେ ତାଙ୍କ ଆଖି ଦୁଇଟିରୁ ବ୍ରହ୍ମତେଜରେ ସ୍ଫୁଲିଙ୍ଗ ହେବାକୁ ଲାଗିଲା ଉଦ୍‌ଗୀର୍ଣ୍ଣ । ସାରା ମୁଖମଣ୍ଡଳରେ ସମଧିକ ତେଜସ୍ୱିତା । ଓଠକୁ ଥରାଇ ଥରାଇ ତାଙ୍କ ସଂବେଗଭରା ବାଣୀ ମୁଖରିତ କରିଦେଲା କକ୍ଷକୁ, '' ଜାଣିଲ ମିତ୍ର ରାଧେୟ ! ତୁମେ ଶ୍ରଦ୍ଧାର ଅର୍ଥ ଠିକ୍ ଭାବରେ ବୁଝିପାରି ନାହଁ । ତେଣୁ ଏଭଳି ପ୍ରଶ୍ନ କରୁଛ । ଯେ ପ୍ରକୃତରେ ଶ୍ରଦ୍ଧାବାନ୍ ସେ କେବେହେଲେ ହୋଇପାରନ୍ତି ନାହିଁ ଶ୍ରଦ୍ଧାହୀନ । ମୃତ୍ୟୁର ଦ୍ୱାରରେ ଥିଲେ ବି ଶ୍ରଦ୍ଧାକୁ ସେ ହରାଇ ନ ଥାନ୍ତି । ମଣିଷର ନିଜ ଜୀବନ ପ୍ରତି ଶ୍ରଦ୍ଧା ରହିବା ଉଚିତ । ଯାହାର ନିଜ ଉପରେ ଶ୍ରଦ୍ଧା ନାହିଁ, ନିଜ ମଧ୍ୟରେ ଥିବା ଦିବ୍ୟତ୍ୱ ଉପରେ ଶ୍ରଦ୍ଧା ନାହିଁ, ତା'ର ବଞ୍ଚିରହିବା ଅର୍ଥହୀନ । ସେ ସଂସାର ପାଇଁ କିଛି ହିଁ କରିପାରିବ ନାହିଁ ।''

''ଦୁର୍ଯ୍ୟୋଧନଙ୍କର କୁରୁରାଜ୍ୟକୁ ଏକାକୀ ଭୋଗ କରିବାପାଇଁ ଅସୀମ ଶ୍ରଦ୍ଧା । ସେଥିପାଇଁ ସେ ଆଜି କଳେ, ବଳେ, କୌଶଳେ ପାଣ୍ଡବମାନଙ୍କୁ ପଠାଇ ଦେଇଛନ୍ତି ବନକୁ । ଏଇଭଳି ଶ୍ରଦ୍ଧା କଥା ତୁମେ କହୁଛ ତ ମିତ୍ର ?''

ମୋ' କଥା ଶୁଣି ଠୋ ଠୋ ହୋଇ ହସିଲେ ସେ । କହିଲେ, ''ଦୁର୍ଯ୍ୟୋଧନଙ୍କର ଏହା ଶ୍ରଦ୍ଧା ନୁହେଁ । ଗୋଟିଏ ଲୋଭ ହେଲେ ଅପରଟି ବିଦ୍ୱେଷ । ସ୍ୱାର୍ଥସିଦ୍ଧି ଏହାର ଲକ୍ଷ୍ୟ । ତେଣୁ ଏହାକୁ ଶ୍ରଦ୍ଧା କୁହାଯାଇପାରିବ ନାହିଁ ।''

''ଲକ୍ଷ୍ୟ ହୋଇପାରେ ସ୍ୱାର୍ଥସିଦ୍ଧି । କିନ୍ତୁ ଏହା ହିଁ ତ ଜୀବନ । ମଣିଷ କ'ଣ ସ୍ୱାର୍ଥକୁ ଛାଡ଼ି ରହିପାରିବ ?'' ମୋର ଅନୁସନ୍ଧିତ୍ସାଭରା ପ୍ରଶ୍ନ । ତାର୍କିକତାର କିଛିଟା ରଙ୍ଗରେ ଅନୁରଞ୍ଜିତ । ଏହାରି ମାଧ୍ୟମରେ ତାଙ୍କ ମୁହଁରୁ ସାରତତ୍ତ୍ୱକୁ ନିଃସାରିତ କରାଇବାର ଉଦ୍ୟମ ।

''ସ୍ୱାର୍ଥସାଧନର ଗୋଟିଏ ସୀମା ଅଛି । ଯେମିତି ଜୀବନ ପ୍ରତି ମମତା ରଖିବା, ସନ୍ତାନମାନଙ୍କୁ ସ୍ନେହ କରିବା ଇତ୍ୟାଦି । ଏହା ସ୍ୱଭାବଜ କିନ୍ତୁ ଲୋଭ, ମୋହ, ଅସହିଷ୍ଣୁତା ଆଦି ସ୍ୱଭାବଜ ନୁହେଁ । ଏହା ଅର୍ଜିତ । ଏହାଠାରୁ ଦୂରରେ ରହିବାକୁ ହେବ । ଏ କ୍ଷେତ୍ରରେ ପ୍ରବୃତ୍ତି ନୁହେଁ, ନିବୃତ୍ତି ବରଂ ସ୍ପୃହଣୀୟ ।'' ସ୍ୱର ତାଙ୍କର ଗମ୍ଭୀରତର ହୋଇଉଠୁଥିଲା ଯଦିଓ ଓଠତଳେ ମୃଦୁ ମୃଦୁ ହସ ସେମିତି ଥିଲା ଅତୁଟ । ପୁଣି ମୁହୂର୍ତ୍ତକ ନୀରବତା ପରେ କହିଲେ, ''ଜୀବନକୁ କେବଳ ଘଟଣା ଅଥବା ଦୁର୍ଘଟଣା-ସମୂହର ସମାହାର ବୋଲି ଭାବିବା ଠିକ୍ ନୁହେଁ । ଏଗୁଡ଼ିକ ନୁହେଁ ଜୀବନର ଲକ୍ଷ୍ୟ । କର୍ମସାଧନ କରୁ କରୁ ଏଗୁଡ଼ିକ ଘଟିଯାଇଥାଏ ଆପେ ଆପେ ।''

''ବୁଝିଲି ମିତ୍ର । ଜୀବନ ଧନ୍ୟ ହେଲେ ଘଟଣାପ୍ରବାହ ହେଲା ତୁଷ । ତା'ହେଲେ ଏହାର ସାର ଜିନିଷ ତଣ୍ଡୁଳ ପୁଣି କ'ଣ ?''

''ମୁକ୍ତି''

''ମୁକ୍ତିର ଅର୍ଥ କ'ଣ ବେଦନାହୀନ ମୃତ୍ୟୁ ? ଏହାହିଁ କ'ଣ ତୁମ ମତ ?''

ପୁଣି ସେଇ ରହସ୍ୟମୟ ହସ । ପୁଣି ମୁଖମଣ୍ଡଳରେ ତାଙ୍କର ତେଜୋମୟ ଦୀପ୍ତି । ସେଇ ଦୀପ୍ତିର ବଳୟକୁ ମଧୁରାୟିତ କରି ସେ କହିଲେ, ''ମୁଁ ତୁମକୁ ଅନେକବାର କହିଛି ମିତ୍ର, ଜୀବନ ଓ ମୃତ୍ୟୁ ଅନନ୍ତ ଜୀବନର ଗୋଟିଏ ଗୋଟିଏ ଅଂଶ ମାତ୍ର । ଗୋଟିଏ ଜନ୍ମ କିମ୍ବା ଗୋଟିଏ ମୃତ୍ୟୁରେ ଏଇ ଚକ୍ର ସରିଯାଏ ନାହିଁ । ଏହା ସରେ କେବଳ ମୁକ୍ତିରେ । ଏଇ ମୁକ୍ତି ଭବିଷ୍ୟତରେ ଏକ ସିଦ୍ଧି ନୁହେଁ । ନୁହେଁ ବି ପରଜୀବନରେ ଏକ ସ୍ଥିତି । ଏହା ଚିରଦିନର ଉପଲବ୍ଧି । ଜୀବନର ପ୍ରତିଟି ମୁହୂର୍ତ୍ତରେ ଏହାକୁ ଉପଲବ୍ଧି କରିବାକୁ ହେବ ।'' ଏକ ଦୀର୍ଘ ଭାଷଣ ଦେବା ଭଙ୍ଗୀରେ କହିଲେ ସେ ।

ତାଙ୍କ କହିବା କଥା ଅବଶ୍ୟ ସତ୍ୟ । ଆଗରୁ ସେ ବହୁବାର ଏ ବିଷୟରେ କହିଛନ୍ତି । ତାହାକୁ ମୁଁ ସେଇ ମୁହୂର୍ତ୍ତରେ ହିଁ ବୁଝିଛି । କିନ୍ତୁ ପର ମୁହୂର୍ତ୍ତରେ ଯାଇଛି ଭୁଲି । ତେଣୁ କଥାଟିକୁ ପୁନର୍ବାର ସ୍ପଷ୍ଟତର କରିବାକୁ ଯାଇ ପ୍ରଶ୍ନ କଲି, ''ଏଇ ଉପଲବ୍ଧିର ସ୍ୱରୂପ କ'ଣ ?''

''କହିଲି ତ ଉପଲବ୍ଧି ବୋଲି । ଏହାକୁ ଶବ୍ଦରେ କେମିତି ବା ପ୍ରକାଶ କରିବି ? ରସନା ତ ଉପଲବ୍ଧିର ଇନ୍ଦ୍ରିୟ ନୁହେଁ । ଯେତେ କହିଲେ ବି ତାହା ଉପଲବ୍ଧିଠାରୁ ଊଣା ହେବ । ତେବେ ଏତିକି ଜାଣିଥାଅ ଯେ ମୁକ୍ତି ନାସ୍ତିବାଚକ ନୁହେଁ । ଏହା ଅସ୍ତିବାଚକ । ଏହା ଶୂନ୍ୟ ନୁହେଁ । ସଂପୂର୍ଣ୍ଣ ପରିପୂର୍ଣ୍ଣ । ଏକ ଅଖଣ୍ଡ ଆଲୋକର ଅଭିପ୍ରକାଶ । ଚେତନାମୟ, ଆଲୋକମୟ ଓ ଭାବମୟ ଅସ୍ତିତ୍ୱ । ବସ୍ତୁଗତ ସ୍ଥିତି ସମାନ କିନ୍ତୁ ନୁହେଁ ।'' ତାଙ୍କ ଭାବଗମ୍ଭୀର ମୁଖରେ ଉତ୍ତେଜନାର କାରଣରୁ ପଳାଶର ରଙ୍ଗିମା !

ଆଲୋଚନାଟି ତଥାପି ସରି ନ ଥାଏ । ଏତିକିବେଳେ ଦ୍ୱାରୀ ଆସି ନିବେଦନ କଲା, ''ମହାରାଜ ! ଆଚାର୍ଯ୍ୟ ଦ୍ରୋଣ ଖବର ପଠାଇଛନ୍ତି ।

''ଖବର କ'ଣ ?''

''ସେ ଗୁରୁପୁତ୍ର ଅଶ୍ୱତ୍ଥାମାଙ୍କୁ ଦେଖିବାକୁ ଚାହୁଛନ୍ତି । କ'ଣ ଜରୁରୀ କଥା ଅଛି ।''

ଅଶ୍ୱତ୍ଥାମା କହିଲେ, ''ଯାଉଛି ମିତ୍ର ଅଙ୍ଗରାଜ । ଆଜିର ଆଲୋଚନା ଏତିକିରେ ଥାଉ । ପରେ କେତେବେଳେ ସୁବିଧା ହେଲେ କରିବା ।''

''ହଁ, ମିତ୍ର । ମୁଁ ମଧ୍ୟ ଯିବି ତୁମ ସାଥିରେ । ମୋ' ରଥରେ ବସି ଆମେ ଦୁହେଁ ଯିବା । ଆଚାର୍ଯ୍ୟଙ୍କୁ ବନ୍ଦନ କରିଦେଇ ଆସିବି ।''

''ଆଚ୍ଛା ହେଉ ।''

ଆମେ ଦୁହେଁ ରଥରେ ବସି ବାହାରିଲୁ ଦ୍ରୋଣାଚାର୍ଯ୍ୟଙ୍କ କୁଟୀର ଅଭିମୁଖରେ ।

ଯଥାସମୟରେ ତାଙ୍କୁ ବନ୍ଦନ କରି ପୁଣି ଫେରିଆସିଲି ରାଜଭବନକୁ । ଫେରିଲା ବେଳେ ବାରମ୍ବାର ଅଶ୍ୱତ୍ଥାମାଙ୍କ ଗମ୍ଭୀର ବାଣୀ କୁହରିତ ହୋଇଉଠୁଥାଏ ମୋ' କର୍ଣ୍ଣମୂଳରେ – ଜୀବନ ଘଟଣାବଳୀ କିମ୍ବା ଦୁର୍ଘଟଣାବଳୀର ସମାହାର ନୁହେଁ । ଏହାର ଲକ୍ଷ୍ୟ ମୁକ୍ତି । ହଁ, ସେଇ ମୁକ୍ତି, ଯାହାକୁ ଜୀବନର ପ୍ରତିଟି ମୁହୂର୍ତ୍ତରେ କରିବାକୁ ହେବ ଉପଲବ୍ଧି । ତା' ହେଲେ ଜୀବନ ଓ ମୃତ୍ୟୁ ଆପେ ଆପେ ହେବ ବେଦନାହୀନ, ଭୟହୀନ ଓ ଶଙ୍କାହୀନ । ଭାବିଲି, ତେବେ ଜୀବନରେ ସାମୟିକ ବିପର୍ଯ୍ୟୟ ପାଇଁ ବ୍ୟସ୍ତ ହେବି କାହିଁକି ? ବ୍ୟଥିତ ହେବି କାହିଁକି ? ହତାଶାରେ ଭାଙ୍ଗିପଡ଼ିବି କାହିଁକି ? ମୁକ୍ତି ଉପଲବ୍ଧିର ସେଇ ତେଜୋମୟ ଆଲୋକର ବନ୍ୟାରେ ନିଶିଦିନ ପହଁରିବି ନାହିଁ କାହିଁକି ? ଏଇ ଯେଉଁ ଚେତନାର କଳିକାଟିକୁ ଜାଗରୂକ କରାଇଲେ ଅଶ୍ୱତ୍ଥାମା, ମୋ' ଅନ୍ତରର ଉପବନରେ, ତାହାକୁ ପୂର୍ଣ୍ଣ ବିକଶିତ ଫୁଲଟିଏ ହେବାର ସୁଯୋଗ ଦେବି ନାହିଁ କାହିଁକି ? ନିଶ୍ଚୟ ଦେବି ! ନିଶ୍ଚୟ ଦେବି !

ଏଇ ଭାବନାରେ ସକଳ ଦୁର୍ଭାବନାର କାତିକୁ ଫିଙ୍ଗିଦେଇ ନିଜ ମନକୁ ମାଜି ନେଉଥିଲି ବାରମ୍ବାର । ତାହା କରି ପାଉଥିଲି ଗଭୀର ଆଶ୍ୱସ୍ତି ଓ ଶାନ୍ତି ! ସୁଦୃଢ଼ ଆତ୍ମବଳ ଓ ଆତ୍ମବିଶ୍ୱାସ ! ଜୀବନ-ସଂଗ୍ରାମରେ ଲଢ଼ିବାପାଇଁ ଅନନ୍ୟ ସାହସ !!

## ତେଷଠି

"ଶୁଣନ୍ତୁ ବିଜ୍ଞ ସଭାସଦମାନେ ! ଆଜି ଏକ ନୂତନ ତଥ୍ୟ ମୁଁ ଉପସ୍ଥାପିତ କରିବାକୁ ଯାଉଛି ଏଇ ରାଜସଭାରେ । ଅତ୍ୟନ୍ତ ଚମକପ୍ରଦ । ବହୁ ଅନୁସନ୍ଧାନ ପରେ ଜଣାପଡ଼ିଛି ଯେ ପାଣ୍ଡବମାନେ ମହାରାଜ ପାଣ୍ଡୁଙ୍କ ପୁତ୍ର ନୁହନ୍ତି । ମିଛଟାରେ ଦାବି କରୁଛନ୍ତି ପାଣ୍ଡବ ବୋଲି କେବଳ ରାଜ୍ୟଲୋଭ ଆଶାରେ ।" ରାଜସଭାର ଆରମ୍ଭ ମାତ୍ରେ ସିଂହ ଭଳି ଗର୍ଜନ କରି କହିଲେ ଦୁର୍ଯ୍ୟୋଧନ । ସାରା ସଭା ଅବାକ୍ । ସମସ୍ତେ ବିସ୍ମିତ । ନୀରବରେ ଚାହୁଁଥାନ୍ତି ପରସ୍ପରଙ୍କ ମୁହଁକୁ । ଲକ୍ଷ୍ୟ କଲି, ପିତାମହ ଭୀଷ୍ମଙ୍କ ମୁଖମଣ୍ଡଳ ଧୀରେ ଧୀରେ ହୋଇଉଠୁଥାଏ ଆରକ୍ତ । ଓଠ ଥରି ଉଠୁଥାଏ ଆବେଗରେ । କିଛି କହିବା ପାଇଁ ଚାହୁଁଥାନ୍ତି ହୁଏତ । କିନ୍ତୁ ପାଟି ଫିଟାଇପାରୁ ନ ଥାନ୍ତି । ସମ୍ଭବତଃ ଅପେକ୍ଷା କରି ରହିଥାନ୍ତି ଦୁର୍ଯ୍ୟୋଧନଙ୍କ ବକ୍ତବ୍ୟର ଶେଷ ପର୍ଯ୍ୟନ୍ତ । ମହାରାଜଙ୍କ ମୁଖରେ କିନ୍ତୁ ମୃଦୁ ମୃଦୁ ହସର ଝଲକ । ଭାବିଲି, ପିତା-ପୁତ୍ର ଦୁହେଁ ବୋଧହୁଏ ଏ ବିଷୟରେ କରିଛନ୍ତି ପୂର୍ବାଲୋଚନା । ତାହା ପରେ ଆହୂତ ଏହି ରାଜସଭା । କିନ୍ତୁ ଅଧିକାଂଶ ସଭାସଦଙ୍କ ମୁଖମଣ୍ଡଳରେ ଦୁଃଖ ଓ ବିରକ୍ତିର ଏକ ମିଶ୍ରିତ ପ୍ରଲେପ । ମୁଁ ବି ଥିଲି ଏଇ ଅଧିକାଂଶଙ୍କ ଭିତରୁ ଅନ୍ୟତମ । ବଡ଼ ଅସ୍ୱସ୍ତିକର ଲାଗୁଥିଲା ଏଇ କଟୁ ମନ୍ତବ୍ୟ । ଜଣେ ସଭାସଦ୍ ଉଠି ପଚାରିଲେ କଥାଟା ପରିଷ୍କାର କରି କହନ୍ତୁ ଯୁବରାଜ । ଆଉ ଦେଖାନ୍ତୁ ବି ପ୍ରମାଣ । ନ ହେଲେ ସହଜରେ ବିଶ୍ୱାସ କରିବୁ ନାହିଁ ।"

ଦୁର୍ଯ୍ୟୋଧନ କହି ଚାଲିଲେ, ''ସେମାନଙ୍କର ପାଣ୍ଡୁଙ୍କ ଔରସରୁ ଜନ୍ମ ବୋଲି କ'ଣ ବା ପ୍ରମାଣ ଅଛି ? ସେମାନଙ୍କ ଜନ୍ମ ତ ହିମାଳୟର ବନାଶ୍ରମରେ । ତାତ ପାଣ୍ଡୁ ଓ ମାତା ମାଦ୍ରୀଙ୍କ ମୃତ୍ୟୁ ହୁଏ ବନବାସୀଜୀବନ ବିତାଇବା ଅବସରରେ । ଦିନେ କେତେକ ମୁନି ଆସି ରାଜମାତା କୁନ୍ତୀଙ୍କ ସହିତ ପାଞ୍ଚଟି ପୁତ୍ର ସନ୍ତାନଙ୍କୁ ଉପସ୍ଥାପିତ କରାଇଲେ କୁରୁ-ରାଜଭବନରେ ଅତି ଅଚାନକ ଭାବରେ । ଆଉ କହିଲେ ଯେ ଏମାନେ ପାଣ୍ଡବ । ସେମାନଙ୍କ କଥାକୁ ବିଶ୍ୱାସ କରି ଧରିନିଆଗଲା ଏମାନେ ପାଣ୍ଡବ ବୋଲି । ଏହା ଛଡ଼ା ଏମାନେ ପାଣ୍ଡବ ବୋଲି ଆଉ ଅଧିକ ପ୍ରମାଣ କ'ଣ ବା ଅଛି ?''

ରାଜସଭାରେ ମୃଦୁ ଗୁଞ୍ଜରଣ । ସମର୍ଥନ ଓ ବିରୋଧରେ ବାକ୍ୟବାଣର ଆଘାତ-ପ୍ରତିଘାତ । କୂଳର ଢେଉ ବେଳାଭୂମିରେ ବାଜି ଅଟକିଗଲା ଭଳି ହଠାତ୍ ନୀରବିତ ସେଇ ଗୁଞ୍ଜରଣ ଯେତେବେଳେ ଦୁର୍ଯ୍ୟୋଧନ ପୁଣି କହିବାକୁ ଉଠିଲେ । ଦେଖିଲି, ମାତୁଳ ଶକୁନିଙ୍କ ଆଖିକଣରେ କପଟ ହସର କଳଙ୍କିତ ବିଳାସ ! ସେ ନୀରବ ଥାଇ ମଧ୍ୟ ଦୁର୍ଯ୍ୟୋଧନଙ୍କ ସମର୍ଥନରେ କହିଯାଉଥାନ୍ତି ଅନେକ କିଛି କଥା । ତାଙ୍କ ଆଚରଣରୁ ସ୍ପଷ୍ଟ ଜଣାପଡୁଥାଏ, ସେ ଯେମିତି ଏଇ କୁଚକ୍ରର ମୁଖ୍ୟ ସୂତ୍ରଧର !

ଦୁର୍ଯ୍ୟୋଧନ ମୁହଁ ଖୋଲିଲେ, ''ମୋ' ପାଖରେ କିନ୍ତୁ ପ୍ରମାଣ ଅଛି ଯେ ସେମାନେ ପାଣ୍ଡବ ନୁହନ୍ତି । ଆପଣମାନଙ୍କ ପାଖରେ ବି ଅଛି । କିନ୍ତୁ ଆପଣମାନେ ସେଇଟିକୁ ଖୋଜି ବାହାର କରିବାର ଚେଷ୍ଟା କରି ନାହାନ୍ତି । କରି ବି ନାହାନ୍ତି ଗଭୀର ଭାବରେ ଅନୁଧ୍ୟାନ ।''

ପିତାମହଙ୍କ ମୁଖମଣ୍ଡଳର ରକ୍ତିମା ବଢ଼ି ଉଠୁଥାଏ । ଆପେ ଆପେ ତାଙ୍କ ଦକ୍ଷିଣହସ୍ତ ଚାଲି ଯାଉଥାଏ କୋଷବଦ୍ଧ ଖଡ୍‌ଗ ଆଡ଼କୁ । ତାହାର ମୁଷ୍ଟିଭାଗକୁ ସାମାନ୍ୟ ଟାଣିଦେଇ ପୁଣି ଖସାଇଦେଉଥାନ୍ତି ଖୁବ୍ ଜୋର୍‌ରେ । ଝଣ୍ କରି ଶବ୍ଦ ହେଉଥାଏ । ତାହା ଭୟ ସଞ୍ଚାର କରୁଥାଏ ସମସ୍ତଙ୍କ ମନରେ । ପିତାମହଙ୍କ ଭଳି ମହାବୀର ଯାହାଙ୍କ ପାଖରୁ ସ୍ୱୟଂ ଭୃଗୁବୀର ପରଶୁରାମ ବି ପରାଜିତ, ଯଦି କ୍ରୋଧିତ ହେଲେ ଆଉ ଜଗତକୁ ରଖିବେ ? କୌଣସିମତେ କ୍ରୋଧକୁ ସଂଯତ କରି ରଖୁଥାନ୍ତି ସେ । ମୁହଁ ଖୋଲୁ ନ ଥାନ୍ତି । ଧୈର୍ଯ୍ୟ ତୁଟିବା ପର୍ଯ୍ୟନ୍ତ ଅପେକ୍ଷା ।

ମତେ କିନ୍ତୁ ଦୁର୍ଯ୍ୟୋଧନଙ୍କ ଆଚରଣ ଭଲ ଲାଗୁ ନ ଥାଏ । ମାତୁଳ ଶକୁନି ଯେ ତାଙ୍କୁ ପଶାକାଠି ଭଳି ବ୍ୟବହାର କରି ନିଜ କୁଚକ୍ରର ପଶାଖେଳ ଖେଳି ଚାଲିଛନ୍ତି, ଏ କଥା ସେ ଜାଣିପାରୁ ନ ଥାନ୍ତି ହୁଏତ । ବିଚରା ନିର୍ବୋଧ ଦୁର୍ଯ୍ୟୋଧନ ! ଅଦମ୍ୟ ରାଜ୍ୟପ୍ରାପ୍ତିର ଲାଳସାରେ ଚିରନିପୀଡ଼ିତ ବିବଶ ଦୁର୍ଯ୍ୟୋଧନ !

ଦୁର୍ଯ୍ୟୋଧନ ତାଙ୍କ ତୂଣୀରରୁ ଶେଷ ବାଣ ପ୍ରୟୋଗ କରି କହିଲେ, ''ଆପଣମାନେ ତ ଜାଣନ୍ତି, ମୃଗୟା-ବିନୋଦରେ ମାତିଥିବା ଅବସରରେ ମହାରାଜ ପାଣ୍ଡୁ ହୁଅନ୍ତି ଋଷିଙ୍କ ଦ୍ୱାରା ଅଭିଶପ୍ତ—ପତ୍ନୀଙ୍କ ସହିତ ମିଳନ ବେଳେ ତାଙ୍କର ମୃତ୍ୟୁ ହେବ । ସେହି କାରଣରୁ ହିଁ ସେ ରାଜ୍ୟଭୋଗ ଛାଡ଼ି ଆଦରି ନିଅନ୍ତି ବନବାସୀଜୀବନ । ମାତା ମାଦ୍ରୀଙ୍କ ସହିତ ମିଳିତ ହେବା ମାତ୍ରେ ତାଙ୍କର ମୃତ୍ୟୁ ହୁଏ । ପରେ ମାତା ମାଦ୍ରୀ ଚିତାରେ ପତିଙ୍କ ସହଗମନ କରନ୍ତି । ପୂର୍ବରୁ କୁନ୍ତୀଙ୍କ ଗର୍ଭରୁ ତିନି ପୁତ୍ର ଓ ମାଦ୍ରୀଙ୍କ ଗର୍ଭରୁ ଦୁଇ ପୁତ୍ର ଜନ୍ମିଥାନ୍ତି

ହିମାଳୟର ବନାଶ୍ରମରେ । ପତିଙ୍କ ସହିତ ମିଳିତ ନ ହୋଇ ଏଇ ଦୁଇ ମାତା କିପରି ହେଲେ ପୁତ୍ରବତୀ ? ଆଉ ଏଇ ପୁତ୍ରମାନେ କିପରି ହେଲେ ପାଣ୍ଡୁଙ୍କ ଔରସଜାତ ପୁତ୍ର ? ଏମାନଙ୍କୁ କିପରି ଆମେ ଗ୍ରହଣ କରିବା ପାଣ୍ଡବ ବୋଲି ? ଏମାନେ ବନବାସରୁ ଫେରି ହୁଏତ ପୁଣି ରାଜ୍ୟଦାବି କରିପାରନ୍ତି । ତେଣୁ ବନବାସୀଜୀବନ କାଟୁଥିବା ଅବସ୍ଥାରେ ହିଁ ଆମେ ସେମାନଙ୍କୁ ହତ୍ୟା କରିବା । ଏଇ କଳଙ୍କକୁ ଚିରଦିନ ପାଇଁ ଲିଭାଇଦେବା ।'' ତାଙ୍କର ଏଇ ଦୀର୍ଘ ବକ୍ତବ୍ୟରେ କିଛିଟା ଯୁକ୍ତିଯୁକ୍ତତା ଥିଲା । ଅନ୍ତତଃ ସେଇଭଳି ଲାଗୁଥିଲା । ଅଧିକାଂଶ ସଭାସଦ ଏଇ ଯୁକ୍ତରେ ବିହ୍ୱଳିତ । ସଂଗୀତମୁଗ୍ଧ ମୃଗମାନେ ଯେମିତି । ସେମାନେ ସମସ୍ୱରରେ ଚିତ୍କାର କରିଉଠିଲେ, ''ଏମାନେ ପାଣ୍ଡବ ନୁହନ୍ତି । କଦାପି ନୁହନ୍ତି । ବରଂ ଭଣ୍ଡ ପ୍ରବଞ୍ଚକ । ଏମାନଙ୍କୁ ହତ୍ୟା କରିବା । ହଁ, ନିଶ୍ଚୟ ହତ୍ୟା କରିବା ।'' ଏହାର ପ୍ରତିବାଦରେ ମଧ୍ୟ ଉଠୁଥାଏ ସମଧିକ ଦୃଢ଼ ସ୍ୱର । ସଭାସ୍ଥଳ ବାଦ-ପ୍ରତିବାଦର ଗୋଟିଏ ଖଣ୍ଡଯୁଦ୍ଧରେ ପରିଣତ ହୋଇଯାଇଥାଏ ଯେମିତି ।

ଲକ୍ଷ୍ୟ କଲି, ମାତୁଳ ଶକୁନିଙ୍କ କପଟ ହସ ଆହୁରି ଅଧିକ ବିସ୍ତାରିତ ।

''ବନ୍ଦ କର । ବନ୍ଦ କର ଏ ପ୍ରଳାପର ନାଟକ ।'' ହଠାତ୍ ଏକ ବଜ୍ର ଗର୍ଜନରେ ସମସ୍ତେ ସ୍ତମ୍ଭୀଭୂତ । ସଭାସ୍ଥଳରେ ବାଦ-ପ୍ରତିବାଦର ଯେଉଁ ଗୁଞ୍ଜରଣର ଅଗ୍ନିଶିଖା ଉଠୁଥିଲା ଜିହ୍ୱା ମେଲାଇ, ତାହା ହଠାତ୍ ପ୍ରଶମିତ ଏଇ ଗର୍ଜନର ବାରିବର୍ଷଣରେ । ପିତାମହ ଭୀଷ୍ମ ଥରି ଥରି କହୁଥିଲେ । ସାରା ମୁଖମଣ୍ଡଳ ଆରକ୍ତ । ଆଖି ଦୁଇଟି ବି । ଦୀର୍ଘ ଶ୍ମଶ୍ରୁରାଶି ଆବେଗରେ ସ୍ଫୁରିତ । ଇତିମଧ୍ୟରେ ସେ ବଳପୂର୍ବକ ମହାରାଜଙ୍କ ହସ୍ତରୁ ରାଜଦଣ୍ଡଟିକୁ ଛଡ଼ାଇଆଣି ନିଜେ ଧରି ନେଇଥିଲେ ।

ସେ ଦୃଢ଼ତାର ସହିତ କହି ଚାଲିଲେ, ''ଶୁଣନ୍ତୁ ସଭାସଦଗଣ ! ମୁଁ ହସ୍ତିନାପୁରର ଅନ୍ତିମ କୁରୁରାଜ ଶାନ୍ତନୁନନ୍ଦନ ଭୀଷ୍ମ କହୁଛି । ଖାଲି କହୁ ନାହିଁ । ଆଦେଶ ବି ଦେଉଛି । ମୁଇଁ ହିଁ ହସ୍ତିନାପୁରର କୁରୁବଂଶୀ ରାଜା । ପାଣ୍ଡବମାନେ କିମ୍ବା କୌରବମାନେ କେହି କୁରୁବଂଶୀ ନୁହନ୍ତି । ଧୃତରାଷ୍ଟ୍ର ଓ ପାଣ୍ଡୁ ମଧ୍ୟ ନୁହନ୍ତି । ଆଉ ନୁହନ୍ତି ବି ଦୁହିଁଙ୍କ ଅନୁଜ ବିଦୁର । କାରଣ ସେମାନେ ବିଚିତ୍ରବୀର୍ଯ୍ୟଙ୍କ ପୁତ୍ର । ଆଉ ଏଇ ବିଚିତ୍ରବୀର୍ଯ୍ୟ କ'ଣ କୁରୁବଂଶୀ ? ନା, ଆଦୌ ନୁହେଁ । ସେ ବ୍ୟାସଦେବଙ୍କ ଔରସରୁ ଜାତ । ମୁଇଁ ହିଁ କେବଳ କୁରୁରାଜ ଶାନ୍ତନୁଙ୍କ ଔରସଜାତ ପୁତ୍ର । ତେଣୁ କୁରୁବଂଶର ଶେଷ ରାଜା । ମୁଁ ଯେତେବେଳେ ଚାହିଁବି ସେତେବେଳେ ହସ୍ତିନାପୁରର ସିଂହାସନରେ ବସିପାରିବି । କାରଣ ହସ୍ତିନାପୁରର ସୁରକ୍ଷା ଲାଗି ମୁଁ ପ୍ରତିଶ୍ରୁତିବଦ୍ଧ ଦିବଂଗତ ପିତାଙ୍କ ନିକଟରେ ।''

''ଆପଣ ରାଜା ହେଲେ ଆମେ ସମସ୍ତେ ଖୁବ୍ ଆନନ୍ଦିତ ହେବୁ । ଆପଣ କୁରୁ ସିଂହାସନରେ ବସନ୍ତୁ ।'' ସମସ୍ତ ସଭାସଦଙ୍କ ଏକ ସ୍ୱରରେ ସାରା ରାଜସଭା ମୁଖରିତ ।

''ମୁଁ ମଧ୍ୟ ସିଂହାସନ ଛାଡ଼ିଦେଉଛି ତାତ ଭୀଷ୍ମଙ୍କ ଉଦ୍ଦେଶ୍ୟରେ ।'' ଏହା କହି ମହାରାଜ ସିଂହାସନରୁ ଉଠିପଡୁଥିଲେ । ପିତାମହ କିନ୍ତୁ ହାତ ଧରି ତାଙ୍କୁ ପୁଣି ବସାଇଦେଲେ ସେଥିରେ ଏବଂ କହିଲେ, ''ତୁମେ ହିଁ ବସ ସିଂହାସନରେ ପୁତ୍ର । ମୁଁ ରାଜା ହେବି ନାହିଁ ବୋଲି ପିତାଙ୍କ ନିକଟରେ ପୂର୍ବରୁ ପ୍ରତିଶ୍ରୁତିବଦ୍ଧ ।'' ତାହା ପରେ ସଭାସଦମାନଙ୍କୁ ଲକ୍ଷ୍ୟ କରି କହିଲେ, ''ହେ ସଭାସଦଗଣ ! ଆପଣମାନେ ମୋ' କଥାକୁ

ରାଜସିଂହାସନର ଦାବି ବୋଲି ଭାବିଛନ୍ତି । ତାହା ଭୁଲ ଧାରଣା । କିଏ କୁରୁବଂଶୀ ଓ କିଏ ନୁହନ୍ତି, ସେଇ କଥାଟାକୁ ସ୍ପଷ୍ଟ କରିଦେବା ଲାଗି ଏପରି କହିଛି । ମୋ' କହିବାର ଆଉ ଏକ ଉଦ୍ଦେଶ୍ୟ ବି ଅଛି । ସତ୍ୟ ନାମରେ ମିଥ୍ୟାର ଓ ଅପପ୍ରଚାରର ଯେଉଁ ଅଭିନୟ ଆଜି କୁରୁସଭାରେ ଚାଲିଛି, ତାହାକୁ ଚିରଦିନ ଲାଗି ବନ୍ଦ କରିଦେବି । ନିତାନ୍ତ ଘୃଣ୍ୟ ଏ ଅପପ୍ରଚାର ।''

''ଆପଣଙ୍କର କ'ଣ ମତ ଯେ ଯୁଧିଷ୍ଠିର ଆଦି ପଞ୍ଚଭ୍ରାତା ସମସ୍ତେ ପାଣ୍ଡବ ?'' ସଭାସଦମାନଙ୍କ ମଧ୍ୟରୁ ଜଣେ ସାହସୀ ବିଜ୍ଞ ଅନୁସନ୍ଧିତ୍ସୁ ବ୍ୟକ୍ତିଙ୍କର ପ୍ରଶ୍ନ ।

''ହଁ, ନିଶ୍ଚୟ । ସେମାନେ ପାଣ୍ଡବ । ଏଥିରେ ସନ୍ଦେହର ଅବକାଶ ନାହିଁ । ମୁଁ ଜାଣେ ସେମାନଙ୍କ ଜନ୍ମର ରହସ୍ୟ । ଏଇ ଶୁଣନ୍ତୁ ତେବେ ଆପଣମାନେ । ଦୁର୍ବାସା ଋଷିଙ୍କ ପ୍ରସାଦରୁ ରାଜବଧୂ କୁନ୍ତୀଙ୍କୁ ମିଳେ ଏକ ନିର୍ଦ୍ଦିଷ୍ଟ ମନ୍ତ୍ର । ତାହାକୁ ଜପି ସେ ହୁଅନ୍ତି ତିନି ପାଣ୍ଡବଙ୍କ ମାତା । ଆଉ ସେହି ମନ୍ତ୍ର ସେ ଶିଖାଇ ଦିଅନ୍ତି ତାଙ୍କ ସପତ୍ନୀ ମାଦ୍ରୀଙ୍କୁ । ଫଳରେ ସେ ବି ହୁଅନ୍ତି ଦୁଇ ପାଣ୍ଡବଙ୍କ ମାତା । ଏହିପରି ଭାବରେ ହୁଏ ପଞ୍ଚପାଣ୍ଡବଙ୍କ ଜନ୍ମ । ତେଣୁ ସେମାନଙ୍କୁ ପାଣ୍ଡବ ବୋଲି ନ କହିବା ହେବ ଅନ୍ୟାୟ । ଅନୁରୂପ ଭାବରେ ସତୀ କୁନ୍ତୀ ଓ ମାଦ୍ରୀଙ୍କ ଉପରେ କଳଙ୍କର ଆରୋପ କରିବା ମଧ୍ୟ ହେବ ଅନ୍ୟାୟ । ଏଇ ମିଥ୍ୟା ଅପବାଦକୁ ସହିନେବା ପାଇଁ ମୁଁ ଏଠି ବସି ନାହିଁ । କିଛି ସମୟ ନୀରବ ରହିବା ପରେ ପୁଣି କହିଲେ, ''ଏଇ ରହସ୍ୟରୁ ବଳିକରି ଅଛି ଆଉ ଏକ ରହସ୍ୟ । ପଞ୍ଚପାଣ୍ଡବଙ୍କୁ ଛାଡ଼ି ଆଉ ଜଣେ ଅଛନ୍ତି ଷଷ୍ଠ ପାଣ୍ଡବ ।''

ସାରା କୁରୁସଭା ଚକିତ-ବିସ୍ମିତ । ସମସ୍ତ ସଭାସଦଙ୍କ ହୃଦୟରେ ଚମକ । ଏକ ସ୍ୱରରେ ଜିଜ୍ଞାସାଭରା ପ୍ରଶ୍ନ, ''ସେଇ ଷଷ୍ଠ ପାଣ୍ଡବ ଜଣକ କିଏ ?''

ମହାରାଜ ବି ବିସ୍ମୟଭରା ସ୍ୱରରେ ପ୍ରଶ୍ନ କଲେ, ''ସେଇ ଷଷ୍ଠ ପାଣ୍ଡବ ଜଣକ କିଏ ତାତ ?'' ହୁଏତ ଭାବୁଥିବେ, ତାଙ୍କ ପୁତ୍ରମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ହୋଇ ପଞ୍ଚପାଣ୍ଡବ ଅଛନ୍ତି ବୋଲି ତ ତାଙ୍କ ଧାରଣା । ଏଇ ଷଷ୍ଠ ପ୍ରତିଦ୍ୱନ୍ଦ୍ୱୀ ଜଣକ ପୁଣି କିଏ ?

ପିତାମହଙ୍କ ଚକ୍ଷୁକୋଣରେ ମୁକ୍ତିତ ଅଶ୍ରୁ ଢଳ ଢଳ । ସାରା ମୁଖମଣ୍ଡଳରେ ବିଷଣ୍ଣତାର ଛାଇ । ସେ କରୁଣିମାଭରା ଚକ୍ଷୁ ଢାଳି ମୁହୂର୍ତ୍ତକ ପାଇଁ ଚାହିଁଲେ ମୋ' ଆଡ଼େ । ବିଶେଷ କରି ମୋ' କବଚ-କୁଣ୍ଡଳକୁ । ଆଉ ନାକ ଓ ଆଖିକୁ । ଲାଜେଇଗଲି ମୁଁ । ମୁହଁ ତଳକୁ କଲି । ବିଷାଦଭରା କଣ୍ଠରେ କହିଲେ ସେ, ''ମୁଁ ମଧ୍ୟ ତାଙ୍କୁ ଖୋଜୁଛି ପୁତ୍ର । କିନ୍ତୁ ଏ ପର୍ଯ୍ୟନ୍ତ ପାଇ ନାହିଁ । ଦୁର୍ଭାଗା ସେ । ଏ ପର୍ଯ୍ୟନ୍ତ ବି ସେ ନିଜେ ଖୋଜି ହେଉଛନ୍ତି ଆତ୍ମପରିଚୟ । ସବୁ ଥାଇ କିଛି ନାହିଁ ଯେମିତି ତାଙ୍କର ? କେବେ ପରିଚୟ ପାଇବେ କେଜାଣି ?'' ଏତିକି କହି ନୀରବ ରହିଲେ ସେ । ଶ୍ମଶ୍ରୁଳ ଦୁଇ ଗଣ୍ଡକୁ ପ୍ଳାବିତ କରି ବହିଗଲା ଦୁଇ ଧାର ଅଶ୍ରୁ ! ବ୍ୟଥାର ଅନ୍ତର୍ଦାହରେ ତୀବ୍ର ନିପୀଡ଼ିତ ଯେମିତି !

ପିତାମହଙ୍କ ଦୁଃଖ ହେଉଛି ବୋଲି ଜାଣିପାରି ଆଉ କେହି କିଛି ପ୍ରଶ୍ନ କଲେ ନାହିଁ ତାଙ୍କୁ । କିନ୍ତୁ ଅଭିମାନୀ ଦୁର୍ଯ୍ୟୋଧନ । ସେ କିନ୍ତୁ ରହିପାରିଲେ ନାହିଁ ନୀରବ । ସେ ଉଠିପଡ଼ି କହିଲେ, ''ମୁଁ ଏହାର ପ୍ରତିବାଦ କରୁଛି ।''

ଆଉ କ'ଣ କହିଥାନ୍ତେ । କିନ୍ତୁ ଆଚାର୍ଯ୍ୟ ଦ୍ରୋଣ ତାଙ୍କୁ ବାଧା ଦେଇ କହିଲେ, ''ଗୁରୁଜନଙ୍କ ଆଗରେ କିପରି କଥା କହିବାକୁ ହେବ, ତାହା ଶିଖ ଆୟୁଷ୍ମାନ୍ ଦୁର୍ଯ୍ୟୋଧନ ।''

ମହାରାଜଙ୍କର ମଧ ଅନୁରୂପ ସ୍ୱର । ସେ କହିଲେ, ''ତୁମେ ନୀରବ ରହ ପୁତ୍ର । ଶେଷ କଥା ତାତ କହି ସାରିଛନ୍ତି । କୁରୁରାଜସଭାର ତାହା ହିଁ ନିଷ୍ପତ୍ତି ।''

ଦୁର୍ଯ୍ୟୋଧନଙ୍କ ପ୍ରତିବାଦର ସ୍ୱର କୁଆଡ଼େ ମିଳାଇଗଲା ସୂର୍ଯ୍ୟରଶ୍ମିର ସମ୍ପାତରେ । କୁହେଳିକା ମିଳାଇଗଲା ଭଳି । ସେ ବାଧ୍ୟ ହୋଇ ବସିପଡ଼ିଲେ ନିଜ ଆସନରେ ।

କୁରୁସଭା ଭଙ୍ଗ ହେଲା ।

ସେଦିନ ରାତିରେ କିନ୍ତୁ ଶୋଇପାରି ନ ଥିଲି ଜମା । ପିତାମହଙ୍କ ବାଣୀ ବାରମ୍ବାର ହାତୁଡ଼ି ଭଳି ଆଘାତ କରୁଥିଲା ମୋ' କର୍ଣ୍ଣପଟହରେ । ଅନ୍ତରତଳେ ବହୁ ଚିନ୍ତାର ଘାତ-ପ୍ରତିଘାତ । ସେଥିରେ ଅସ୍ଥିର ମୁଁ । ବାରମ୍ବାର ମନରେ ପ୍ରଶ୍ନ – ଏଇ ଷଷ୍ଠ ପାଣ୍ଡବ ଜଣକ କିଏ ? ପିତାମହ କହୁଥିଲେ ସେ କୁଆଡ଼େ ଭାରି ଦୁଃଖୀ । ଅତି ଅନାଦର ଓ ଅବହେଳାର ଶରବ୍ୟ । ଏହା କହୁଥିଲା ବେଳେ ସେ ମୋ' ଆଡ଼କୁ ଏଭଳି କରୁଣ ଦୃଷ୍ଟିରେ ଚାହୁଁଥିଲେ କାହିଁକି ? ବିଶେଷ କରି ମୋ' ନାକ ଓ ଆଖିକୁ ? ଆଉ କବଚକୁଣ୍ଡଳକୁ ? ଯୁଧିଷ୍ଠିର ବି ତ ସେମିତି ଚାହାନ୍ତି । ରାଜମାତା କୁନ୍ତୀଦେବୀଙ୍କର ମୋ' ପ୍ରତି ଏତେ ଦରଦ କାହିଁକି ? ଆଚାର୍ଯ୍ୟ ପରଶୁରାମ ତ ସେଦିନ କହୁଥିଲେ ମୁଁ କ୍ଷତ୍ରିୟ ସନ୍ତାନ ବୋଲି । ଅନୁରୂପ ଭାବରେ ସଂକେତ ଦେଇଥିଲେ ପିଲାଦିନେ ସେଇ ରହସ୍ୟମୟ ସନ୍ନ୍ୟାସୀ ଜଣକ । ଏ ସବୁର ଅର୍ଥ କ'ଣ ? ଏ ସବୁକୁ ଯୋଡ଼ିଦେଲେ ମୁଣ୍ଡ ମୋର ଏଭଳି ଘୂରାଇ ଦେଉଥିଲା ଯେ କିଛି ବୁଦ୍ଧି ସ୍ଫୁରୁ ନ ଥିଲା । ରହସ୍ୟ ହୋଇଉଠୁଥିଲା ଆହୁରି ଘନତର । ମୁଁ ତା'ହେଲେ କିଏ ? ମୁଁ କ'ଣ ସୂତପୁତ୍ର ନୁହେଁ ? ଆତ୍ମପରିଚିତି କ'ଣ ମୋର ଏ ପର୍ଯ୍ୟନ୍ତ ବାକି ଅଛି ?

ମତେ ଲାଗୁଥିଲା, ମୁଁ ଯେମିତି ମୁଁ ନୁହେଁ । ଆଉ କେହି । ହଠାତ୍ ଯେମିତି ବିରାଟ ଏକ ଶୂନ୍ୟତା ମତେ ଗ୍ରାସିଦେଇଛି । ସେଇ ମହାଶୂନ୍ୟତା ମଧରେ ମୁଁ ଯାଇଛି ମିଶି !

## ଚଉଷଠି

ଦୀର୍ଘ ଦିନର ବ୍ୟବଧାନ ପରେ ଛୋଟ-ବଡ଼ ହୋଇ ଅନେକ କିଛି ଘଟଣା ଘଟିଯାଇଛି ଏହା ଭିତରେ । କେତୋଟି ଘଟଣା ମାତ୍ର ମନେଅଛି । କିନ୍ତୁ ଗୋଟିଏ ଘଟଣା ଏ ପର୍ଯ୍ୟନ୍ତ ଅତି ସଜାଗ ସ୍ମୃତିପଟରେ । ତାହା ତ କେବଳ ଘଟଣା ନୁହେଁ । ବରଂ ଥିଲା ଏକ ଦୁର୍ଘଟଣା । ଉଭୟ ମୋ' ପାଇଁ ଓ ଦୁର୍ଯ୍ୟୋଧନଙ୍କ ପାଇଁ । ଜୀବନରେ ପ୍ରଥମଥର ପାଇଁ ପରାଜୟ ପାଇଲି ଯୁଦ୍ଧକ୍ଷେତ୍ରରେ । ଦୁର୍ଯ୍ୟୋଧନଙ୍କ ଅବସ୍ଥା ମଧ ଅନୁରୂପ । ଖାଲି ତ ପରାଜିତ ହୋଇ ନ ଥିଲେ, ଶତ୍ରୁଦ୍ୱାରା ହୋଇଥିଲେ ବନ୍ଦୀ । ପୁଣି ସେହି ବନ୍ଧନରୁ ତାଙ୍କୁ ମୁକ୍ତ କରିଥିଲେ ସ୍ୱୟଂ ମଧମ ପାଣ୍ଡବ ଅର୍ଜୁନ ଯାହାଙ୍କୁ ଚିରଶତ୍ରୁ ରୂପେ ଧରିଆସିଛନ୍ତି ସେ ।

ଏହା କ'ଣ କମ୍ ବଡ଼ ଅପମାନଜନକ ପରିସ୍ଥିତି ? ସେ ଏଭଳି ଅଧୀର ହୋଇପଡ଼ିଥିଲେ ଯେ ପ୍ରାୟୋପବେଶନ କରି ଜୀବନ ହାରିଦେବା ଉପରେ ଥିଲେ । ଖୁବ୍ ବୁଝାଇଲି ତାଙ୍କୁ । ବହୁ କଷ୍ଟରେ କ୍ଷାନ୍ତ ହେଲେ ପ୍ରାୟୋପବେଶନ ଉଦ୍ୟମରୁ ।

ଏହା ଘଟିଲା କାହିଁକି ? ମନେ ମନେ ଯେତେବାର ଏଇ ପ୍ରଶ୍ନ କରୁଛି, ତାହାର ପାଉଛି ସେଇ ଗୋଟିଏ ମାତ୍ର ଉତ୍ତର । ଦୁର୍ଯ୍ୟୋଧନଙ୍କ ଅହେତୁକ ଲୋଭ ହିଁ ଏହାର କାରଣ । ଦୁର୍ଯ୍ୟୋଧନଙ୍କର କ'ଣ ନ ଥିଲା ? କେଉଁ ଜିନିଷର ଅଭାବ ବା ଥିଲା ? ନିଜ ଆବଶ୍ୟକତାଠାରୁ ଅଧିକ ଥିଲା ତାଙ୍କ ପାଖରେ । ପାଣ୍ଡବମାନଙ୍କର ସର୍ବସ୍ୱ ଅପହରଣ କରି ସେମାନଙ୍କୁ ପଠାଇଦେଇଥିଲେ ବନକୁ । ତଥାପି ମନ ତାଙ୍କର ଅଶାନ୍ତ । ବାରମ୍ବାର ମନ ମଧ୍ୟରେ ସଂଘର୍ଷ – ବଞ୍ଚିତ ପାଣ୍ଡବମାନଙ୍କୁ ପୀଡ଼ିତ କରିବେ । କରିବେ ବି ଅପମାନିତ ଓ ଲାଞ୍ଛିତ । ସେଇଥିରୁ ପାଇବେ ସୁଖ । ଅନ୍ୟମାନଙ୍କ ଚିତାଭସ୍ମ ଉପରେ ମହକାଇବେ ନିଜ କଳ୍ପନାର ଫୁଲବନକୁ । ଏଥିପାଇଁ କରିଥିଲେ ସୁପରିକଳ୍ପିତ ଯୋଜନା । ଏଥିପାଇଁ ନିଶିଦିନ ଘାଣ୍ଟି ହେଉଥିଲେ ମାନସିକ ସଂଘର୍ଷରେ । ଆଉ ବିଚରା ମୁଁ । ବିବଶତାର ମାର୍ଜାର ମତେ ମୂଷିକଟିଏ ଭଳି ମାରୁ ନ ଥିଲା କି ଛାଡୁ ନ ଥିଲା । ନିରନ୍ତର ଦନ୍ତାଘାତରେ କରୁଥିଲା ଜର୍ଜରିତ । ବାଧ୍ୟ ହୋଇ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଅବତୀର୍ଣ୍ଣ ହୋଇଥିଲି ଏକ ଆକସ୍ମିକ ରଣକ୍ଷେତ୍ରରେ ଯଦିଓ ଜାଣିଥିଲି ଯେ ଆମ ସୈନିକବଳ ଅପର୍ଯ୍ୟାପ୍ତ । ଶେଷରେ ପାଇଥିଲି ପରାଜୟର ଗ୍ଲାନି । ପୁଣି ବିଧିର ବିଡ଼ମ୍ବନା ଏପରି ଯେ ଯେଉଁ ଶତ୍ରୁ ହସ୍ତରେ ପରାସ୍ତ ହୋଇଥିଲି, ତା' ଉପରେ ପୁଣି ବିଜୟ ହାସଲ କରିଥିଲେ ମୋର ଚିରସ୍ପର୍ଦ୍ଧୀ ପାଣ୍ଡବ ଅର୍ଜୁନ । ଏଥିରେ ଖୁବ୍ ହୀନମ୍ମନ୍ୟତା ଗ୍ରାସ କରିଥିଲା ମତେ । ତାଙ୍କପାଖରୁ ମାନସିକ ସ୍ତରରେ ହୋଇଉଠିଥିଲି ଅତ୍ୟନ୍ତ ଦୁର୍ବଳ । ସତ କହୁଛି, ନିଜ ବଳବିକ୍ରମ ନେଇ ଯେତେ ଦମ୍ଭ-ଅଭିମାନ ମୋର ଥିଲା ସେହିଦିନଠାରୁ ତାହା ଗଲା ଉଭେଇ । ମାନସିକ ସ୍ତରରେ ହୋଇଥିଲି ପରାଜିତ । ଏହା ମୋ'ପାଇଁ କମ୍ କ୍ଷତିକାରକ ନ ଥିଲା । ଏଥିପାଇଁ ଦାୟୀ ଦୁର୍ଯ୍ୟୋଧନ ଓ ତାଙ୍କ ବିକାରଗ୍ରସ୍ତ ମନର ସଂଘର୍ଷ ।

ଘଟଣାଟି ଘଟିଥିଲା ଏହିଭଳି ।

ପାଣ୍ଡବମାନେ ସେତେବେଳ ବନବାସୀଜୀବନ ବିତାଉଥାନ୍ତି ଦ୍ୱୈତବନରେ । ମଝିରେ ମଝିରେ ଗୁପ୍ତଚର ମାଧ୍ୟମରେ ସେମାନଙ୍କ ସମସ୍ତ ଖବର ରଖୁଥାନ୍ତି ଦୁର୍ଯ୍ୟୋଧନ ।

ଦିନେ ସେ ଡାକି ମତେ କହିଲେ, ''ମିତ୍ର ! ଆଜି ତୁମକୁ ଗୋଟିଏ ସୁସମ୍ବାଦ ଦେଉଛି ।''

''କ'ଣ ସେ ସଂବାଦଟି ? କ'ଣ ମିତ୍ର ମୋର ପିତା ହେବାକୁ ଯାଉଛନ୍ତି ?'' ହସି ହସି କଲି ବିନୋଦଭରା ପ୍ରତିପ୍ରଶ୍ନ ।

''ନାଇଁ ସେମିତି କିଛି ନୁହେଁ । ମହାରାଜଙ୍କ ପାଖରୁ ଖୁବ୍ କଷ୍ଟରେ ଅନୁମତିଟା ନେଇଆସିଛି ।'' ତାଙ୍କ ଅଧରତଳେ ବି ହସର ମୃଦୁ ମୃଦୁ ସ୍ଫୁରଣ ।

''କେଉଁଥିପାଇଁ ?'' ମୋର ଜିଜ୍ଞାସୁ ପ୍ରଶ୍ନ ।

"ମୁଁ ଘୋଷଯାତ୍ରାରେ ଯିବି । ସାଥିରେ ତୁମେ ଯିବ । ମାମୁ ମଧ ଯିବେ । ତୁମେ ତ ଜାଣ ମିତ୍ର, ଆମର ପ୍ରାୟ ଏକ ଲକ୍ଷ ଗୋମହିଷାଦି ପଶୁ ଦ୍ୱୈତବନ ନିକଟରେ ଗୋଟିଏ ବଡ଼ ଗୋଷ୍ଠରେ ଅଛନ୍ତି । ମୁଁ ସେଇ ଗୋଷ୍ଠର ପରିଦର୍ଶନରେ ଯିବି ।"

"ଭଲ କଥା । ଅରଣ୍ୟରେ ବି ମୃଗୟାର ସୁଯୋଗ ମିଳିବ । ଆନନ୍ଦରେ କଟିଯିବ ଯାତ୍ରାର ଦିନଗୁଡ଼ିକ ।"

"ଆଚ୍ଛା, କେବେ ଯିବାକୁ ହେବ ?"

"ଆଉ ମାତ୍ର ସାତ ଦିନ ପରେ ।" ସେଥିପାଇଁ ଚାଲିଛି ପ୍ରସ୍ତୁତି ।"

"ଘୋଷଯାତ୍ରା ପାଇଁ ଏତେ ଦିନର ପ୍ରସ୍ତୁତି କ'ଣ ଆବଶ୍ୟକ ମିତ୍ର ?"

"ଆବଶ୍ୟକ ଅଛି । ସାଥିରେ ଏକ ଅକ୍ଷୌହିଣୀ ସୈନ୍ୟ ଯିବେ । ସେମାନଙ୍କ ଲାଗି ଆବଶ୍ୟକ ଖାଦ୍ୟଭଣ୍ଡାର, ଅସ୍ତ୍ରଶସ୍ତ୍ର ଆଦି ବି ଯିବ ।"

"ଏତେ ସୈନ୍ୟ କାହିଁକି ଯିବେ ? ଆଉ ଅସ୍ତ୍ରଶସ୍ତ୍ର ବି । କ'ଣ କୌଣସି ଦିଗ୍‌ବିଜୟରେ ବାହାରୁଛ ନା କ'ଣ ?"

"ନା, ଦିଗ୍‌ବିଜୟ ନୁହେଁ । ଆତ୍ମରକ୍ଷା ପାଇଁ । ତୁମେ ତ ଜାଣ, ପାଣ୍ଡବମାନେ ନିକଟରେ ଆଶ୍ରମ କରି ରହୁଛନ୍ତି । ସେମାନଙ୍କ ପାଖରୁ କିଛି ବିପଦ ଆସିପାରେ ।"

ମନରେ କିନ୍ତୁ ମୋର ତଥାପି ଆଶଙ୍କା । ଦୁର୍ଯ୍ୟୋଧନଙ୍କର ଘୋଷଯାତ୍ରାଟା ବୋଧହୁଏ ଛଳନା । ପାଣ୍ଡବମାନେ ଏବେ ବନବାସୀ । ରହୁଛନ୍ତି ପର୍ଣ୍ଣକୁଟୀରରେ । ପୂର୍ବର ରାଜବୈଭବ ନାହିଁ । ସେ ସବୁର ଅଧିକାରୀ ଏବେ ସ୍ୱୟଂ ଦୁର୍ଯ୍ୟୋଧନ । ବୁଦ୍ଧିର ଖେଳରେ ହରାଇ ଦେଇଛନ୍ତି ଯୁଧିଷ୍ଠିରଙ୍କୁ । ଏଇ ନେଇ ଗର୍ବିତ । ସେଇ ଗର୍ବ, ଦମ୍ଭ ଓ ବୈଭବର ପ୍ରଦର୍ଶନ ଲାଗି ବୋଧହୁଏ ତାଙ୍କର ଏଇ ଘୋଷଯାତ୍ରା । ସୈନ୍ୟବଳ ସହିତ ଯିବାରେ ହୁଏତ ତାଙ୍କର ପାଣ୍ଡବମାନଙ୍କୁ ଆକ୍ରମଣ କରିବାର ଦୁରଭିସନ୍ଧି ବି ଥାଇପାରେ । ମନରେ ତେଣୁ ମୋର ଖୁବ୍ ଦୁଃଖ । ଯଦି ପ୍ରକୃତରେ ଦୁର୍ଯ୍ୟୋଧନଙ୍କ ମନ୍ଦ ଉଦ୍ଦେଶ୍ୟ ଥାଏ ପାଣ୍ଡବମାନଙ୍କ ଦୁର୍ବଳତାର ସୁଯୋଗ ନେଇ ସେମାନଙ୍କୁ ଆକ୍ରମଣ କରିବାପାଇଁ, ତା'ହେଲେ ମୁଁ କରିବି କ'ଣ ? ବିବଶତାର ଅଧୀନ ଥାଇ ମତେ ବି ତ ଅସ୍ତ୍ର ଧରିବାକୁ ପଡ଼ିବ ସେମାନଙ୍କ ବିପକ୍ଷରେ । ତାହା ଯଦି ଘଟେ, ତେବେ ସାରା ସଂସାର ମତେ କହିବ କ'ଣ ? ଆର୍ଯ୍ୟାବର୍ତ୍ତର ରାଜା-ମହାରାଜାମାନେ କହିବେ କ'ଣ ? ସାନ୍ଧ୍ୟପୂଜା ସମୟରେ କିପରି ବା ଏଇ କଳଙ୍କିତ ଦୁଇ ହାତରେ ଅର୍ଘ୍ୟ ଟେକିଦେବି ମୋ' ଆଦ୍ୟଗୁରୁ ସବିତାଦେବୀଙ୍କ ଉଦ୍ଦେଶ୍ୟରେ ? ଜାଣିଶୁଣି ଦୁର୍ବଳ ପକ୍ଷ ଉପରେ ଆକ୍ରମଣ କରିବା ଅର୍ଥ ରାଜଧର୍ମରୁ ସ୍ଖଳନ । ବୀରଧର୍ମର ଅବମାନନା । କିପରି ହେବି ମୁଁ ଏଇ ପାପରେ ଭାଗୀ ? ଏଇ ଦ୍ୱନ୍ଦ୍ୱରେ ବାରମ୍ବାର ପୀଡ଼ିତ ମୁଁ ।

ମୋର ଦ୍ୱନ୍ଦ୍ୱପୀଡ଼ିତ ମନଃସ୍ଥିତି ଦେଖି ଦୁର୍ଯ୍ୟୋଧନ ପୁଣି ପଚାରିଲେ, "କ'ଣ ଭାବୁଛ ଏତେ ମିତ୍ର ?"

"ନାଇଁ କିଛି ନୁହେଁ ।" କୃତ୍ରିମ ସରଳତା ପ୍ରକାଶ କରି କହିଲି ଏବଂ ତାଙ୍କର ସହଗମନ ପାଇଁ ଦେଲି ସ୍ୱୀକୃତି ।

ଯଥାସମୟରେ ଆରମ୍ଭ ହେଲା ଘୋଷଯାତ୍ରା । ଏକ ଅକ୍ଷୌହିଣୀ ସେନାବଳର ଯାତ୍ରା । ରଥଚକ୍ରର ଘର୍ଘର ଧ୍ୱନି ସହିତ ଭାରବାହୀ ଗୋରଥଗୁଡ଼ିକର କେଁ-କଟର ଧ୍ୱନି ମିଶି ସୃଷ୍ଟି କରୁଥାଏ ଏକ ଅପୂର୍ବ ଝଙ୍କାର । ଅଶ୍ୱକ୍ଷୁରୋର ଧୂଳିରେ ଚାରିଦିଗ ଆଚ୍ଛାଦିତ । ଆଗେଇ ଚାଲିଥାଏ ଘୋଷଯାତ୍ରୀ ଦୁର୍ଯ୍ୟୋଧନଙ୍କ ସଦଳବଳ ଶୋଭାଯାତ୍ରା । ଲାଗୁଥାଏ, ସତେଯେମିତି ଏକ ଯୁଦ୍ଧଯାତ୍ରା ! ଆଶ୍ଚର୍ଯ୍ୟ-ଚକିତ ପ୍ରଜାଗଣ । ମନରେ ହୁଏତ ଭାବୁଥିବେ, କେଉଁ ଉଦ୍ଦେଶ୍ୟରେ ଏଇ ଯୁଦ୍ଧଯାତ୍ରା ଅଥବା ଶୋଭାଯାତ୍ରା ?

ବସନ୍ତ ସମୟ । ଶୀତର ଜଡ଼ତା କୁଆଡ଼େ ଯାଇଛି ଉଭେଇ । ଧରଣୀ ଯେମିତି ସାରା ବର୍ଷ ଧରି କରିଥିବା ଧ୍ୟାନଫଳରେ ପାଇଛି ଏଇ ବସନ୍ତର ଧନକୁ । ତରୁଲତାରେ ନବକିଶଳୟର ରକ୍ତଶିଖାର ଚମକ । ବସନ୍ତ ଉଦ୍ଦେଶ୍ୟରେ ଅର୍ପିତ ଧରଣୀର ରକ୍ତ ହୋମାନଳ ଯେମିତି । ଫୁଲରେ ଫୁଲରେ ପ୍ରଗଲ୍‌ଭ ଭ୍ରମରର ଗୁଞ୍ଜରଣ । ଆମେ ଘୋଷଯାତ୍ରୀଦଳ ଚାଲିଥାଉ ଆଗେଇ । ଉଦ୍ଦେଶ୍ୟ, କିପରି ସଂଧ୍ୟା ପୂର୍ବରୁ କୁରୁରାଜଙ୍କ ଗୋଷ୍ଠ ନିକଟରେ ପହଞ୍ଚିଯିବୁ । ଅଥଚ ଦୁର୍ଯ୍ୟୋଧନଙ୍କ ମନର ରଥ । ଏଇ ସୁଗନ୍ଧିତ ବାସନ୍ତିକ ପୁଷ୍ପରେଣୁ କ'ଣ ବିଞ୍ଚିହୋଇ ପଡୁଥିବ ତାହା ଉପରେ ? ମୋର କାହିଁକି ଆଦୌ ବିଶ୍ୱାସ ହେଉ ନ ଥିଲା । ଈର୍ଷାର ଉନ୍ମତ୍ତ ଅଶ୍ୱଗୁଡ଼ିକ ହୁଏତ ଟାଣିନେଉଥିବେ ତାହାକୁ ପାଣ୍ଡବମାନଙ୍କ ଆଶ୍ରମ ଅଭିମୁଖରେ ! ମନେ ମନେ ଭାବୁଥାଏ, ଏତେ ସମ୍ପଦ ପାଇ ମଧ୍ୟ ସେ ଯେପରି କିଛି ପାଇ ନାହାନ୍ତି । ଆହୁରି ପାଇବାକୁ ଇଚ୍ଛା । ଖାଲି ପାଇବାର ଇଚ୍ଛା ଥିଲେ ହୁଏତ ଚଳନ୍ତା । ତାଙ୍କର କିନ୍ତୁ ଇଚ୍ଛା, ଅନ୍ୟମାନଙ୍କ ଧନକୁ ଅପହରଣ କରି ନିଜେ ଧନୀ ହେବାପାଇଁ । ସତରେ କ'ଣ ଧନୀ ହୋଇପାରିଛନ୍ତି ସେ ? ବରଂ ହୋଇଛନ୍ତି ଦରିଦ୍ରରୁ ଦରିଦ୍ରତର । ଧନହୀନଠାରୁ ଆହୁରି ନିଧନ । ବିଚରା । ଚିରଦୁଃଖୀ ଦରିଦ୍ର ରାଜକୁମାର ଦୁର୍ଯ୍ୟୋଧନ !

ମନରେ ମୋର ଏଇ ଚିନ୍ତାର ଆନ୍ଦୋଳନ ଚାଲିଥିଲାବେଳେ ହଠାତ୍ ଆମ ଯାତ୍ରା ଅଟକିଗଲା । ଆମେ ପହଞ୍ଚିଯାଇଥିଲୁ ଲକ୍ଷ୍ୟସ୍ଥଳରେ । ଅଳ୍ପ ଦୂରରେ କୁରୁରାଜଙ୍କ ଗୋଷ୍ଠ । ସେଇଠି ପଡ଼ିଲା ଆମ ଶିବିର । ରାତିଟା ସେଇଟି କଟାଇଲୁ ।

ପରଦିନ ସକାଳବେଳା କୌଣସିମତେ ବିଧିରକ୍ଷା କରିବାପାଇଁ ଦୁର୍ଯ୍ୟୋଧନ ଗୋଷ୍ଠପରିଦର୍ଶନ କାର୍ଯ୍ୟଟି ସାରିଦେଲେ । ଆଦେଶ ଦେଲେ ତୁରନ୍ତ ଯିବାପାଇଁ ଦ୍ୱୈତବନ ଅଭିମୁଖରେ । ଅପରାହ୍ଣରେ ଦ୍ୱୈତସରୋବରରେ କରିବେ ଜଳକ୍ରୀଡ଼ା । ଆଦେଶ ତାଙ୍କର ତୁରନ୍ତ ହେଲା ପାଳିତ । ଅର୍ଦ୍ଧପଥରେ ସେ ରଥ ଅଟକାଇଲେ ଏବଂ କହିଲେ, "ହେ ମିତ୍ର ରାଧେୟ ।" ଆଗକୁ ରାସ୍ତା ରଥ ପାଇଁ ଅନୁପଯୁକ୍ତ । ଆମେ ତେଣୁ ଏହିଠାରୁ ଯିବା ଅଶ୍ୱପୃଷ୍ଠରେ । ଆମ ସାଥିରେ ଯିବେ ଏକସହସ୍ର ସଶସ୍ତ୍ର ଅଶ୍ୱାରୋହୀ । ଏହା ଯଥେଷ୍ଟ ହେବ ନା ନାହିଁ ?"

"କାହିଁକି ନୁହେଁ ? ଆମେ ତ ଯୁଦ୍ଧ କରିବାକୁ ଯାଉ ନାହୁଁ ।"

"ଯୁଦ୍ଧ ହେବ ନାହିଁ କେମିତି ? ତାହା ହେବ ହିଁ ହେବ । ପ୍ରକାଶ୍ୟ ଯୁଦ୍ଧ । ଜଣଙ୍କ ସାଥିରେ ନୁହେଁ । ପାଞ୍ଚଜଣଙ୍କ ସାଥିରେ ।" ହସି ହସି କହିଲେ ସେ ।

ବୁଝିଲି, ସେ ଏ କଥା କହୁଛନ୍ତି କେଉଁମାନଙ୍କୁ ଲକ୍ଷ୍ୟ କରି । ଆଉ କିଛି ଦୂର ଗଲେ ପାଣ୍ଡବମାନଙ୍କ ଆଶ୍ରମ ପଡ଼ିବ । ତେବେ ସେମାନଙ୍କ ଉପରେ ଆକ୍ରମଣ କରିବାର ଏହା ଏକ ଛଳନାପୂର୍ଣ୍ଣ ଯୋଜନା । ହସ୍ତିନାପୁର ଛାଡ଼ିଲାବେଳେ ଯେଉଁ ସନ୍ଦେହ ଉଙ୍କି ମାରୁଥିଲା ମୋ' ମନରେ, ତାହା ଏବେ ପରିଣତ ହେବାକୁ ଯାଉଛି ସତ୍ୟରେ । ମନେ ମନେ ଖୁବ୍ ଦୁଃଖିତ ମୁଁ । ଏଭଳି ଛଳନାପୂର୍ଣ୍ଣ ଆଚରଣରେ ତାଙ୍କ ପ୍ରତି ବିତୃଷ୍ଣ । କହିଲି, "ମିତ୍ର ଦୁର୍ଯ୍ୟୋଧନ ! ଏହା କିନ୍ତୁ ଠିକ୍ ହେବ ନାହିଁ ।"

"କାହିଁକି ନୁହେଁ ? ଶତ୍ରୁ ଦୁର୍ବଳ ଥିବା ଅବସ୍ଥାରେ ତା' ଉପରେ ଆକ୍ରମଣ କରିବା ଉଚିତ । ଏହା ତ ରାଜଧର୍ମ ।"

"ରାଜଧର୍ମ ପୁଣି ତ କହୁଛି ଯେ ସନ୍ନ୍ୟାସୀ ଜୀବନ ଯାପୁଥିବା ବ୍ୟକ୍ତିମାନଙ୍କୁ ଆଶ୍ରୟ ଦେବା ଉଚିତ । ରକ୍ଷା କରିବା ଉଚିତ । ସେ କଥା କାହିଁକି ଭାବୁ ନାହଁ ?" ଯୁକ୍ତି ଦର୍ଶାଇ କହିଲି ।

"ପାଣ୍ଡବମାନେ କିନ୍ତୁ ଛଳ ସନ୍ନ୍ୟାସୀ । ପ୍ରକୃତ ଲକ୍ଷ୍ୟ ସେମାନଙ୍କର କୁରୁରାଜ୍ୟକୁ ଅଧିକାର କରିନେବା । ଦେଖୁ ନାହଁ ମିତ୍ର, ସେମାନେ ପ୍ରଜାମାନଙ୍କୁ କି ମନ୍ତ୍ର ପଢ଼ାଇଛନ୍ତି ? ଅଧିକାଂଶ ପ୍ରଜା ସେମାନଙ୍କ ସମର୍ଥକ । ସେମାନେ ବଞ୍ଚିଥିବା ପର୍ଯ୍ୟନ୍ତ ମୋର ନିଷ୍କଣ୍ଟକ ରାଜ୍ୟଭୋଗ ଅସମ୍ଭବ । ଆଜି ଯୁଦ୍ଧ ହେବ ହିଁ ହେବ । ମତେ ଖାଲି ଏତିକି କହ, ତୁମେ ମୋ' ପକ୍ଷରେ ଲଢ଼ିବ କି ନାହିଁ ?"

ତାଙ୍କ କଥାରେ ବିରକ୍ତିମିଶା ଧୈର୍ଯ୍ୟହୀନତାର ଉଦ୍‌ବେଳନ ।

"ମୁଁ ତ ସବୁବେଳେ ତୁମ ପକ୍ଷରେ ହିଁ ରହିଆସିଛି ମିତ୍ର । ଏଥିରେ ସନ୍ଦେହ କରିବାର କ'ଣ ଅଛି ?" ବିବଶତା ପ୍ରକାଶ କରିଦେଲି ଅନିଚ୍ଛାକୃତ ସମ୍ମତି ।

"ଆଉ ଏଇ ଏକ ସହସ୍ର ଅଶ୍ୱାରୋହୀଙ୍କ କଥା । ଏମାନେ ଯଥେଷ୍ଟ ହେବେ ତ ?"

"ହଁ, ଯଥେଷ୍ଟ ।"

"ତେବେ ଚାଲ ମିତ୍ର, ଆମେ ଆଗେଇବା ।"

ବୁଝିଲି, ଏହିଠାରୁ ଆରମ୍ଭ ହେଲା ତାଙ୍କ ପ୍ରକୃତ ଘୋଷଯାତ୍ରା ଯାହା ସେ ଗୁରୁଜନମାନଙ୍କଠାରୁ ରଖିଥିଲେ ଗୁପ୍ତ । ମତେ ଓ ଅନ୍ୟମାନଙ୍କୁ ମଧ୍ୟ ତାହା ଥିଲା ଅଜଣା କେବଳ ମାତୁଳ ଶକୁନି ଆଦି କେତେକ ଘନିଷ୍ଠ ବ୍ୟକ୍ତିଙ୍କ ଛଡ଼ା ।

ଆମେ ସମସ୍ତେ ସଶସ୍ତ୍ର ହୋଇ ଅଶ୍ୱପୃଷ୍ଠରେ ଆଗେଇ ଚାଲିଲୁ । ପଥ ପରିଷ୍କାର କରିବା ପାଇଁ ଆଗୁଆ ଚାଲିଲେ ପାଞ୍ଚଜଣ ଅଶ୍ୱାରୋହୀ ସୈନ୍ୟ । କିନ୍ତୁ ଅଳ୍ପ କିଛି ସମୟ ପରେ ଫେରିଆସିଲେ ଦ୍ରୁତଗତିରେ । ନିବେଦନ କଲେ ଦୁର୍ଯ୍ୟୋଧନଙ୍କୁ, "ହେ ରାଜନ୍ !

ଦ୍ୱୈତବନର ସମସ୍ତ ପ୍ରବେଶପଥ ବନ୍ଦ । ସବୁଠାରେ ଚିତ୍ରସେନ ଗନ୍ଧର୍ବଙ୍କ ସୈନ୍ୟମାନେ ଜଗି ରହିଛନ୍ତି । କାହାକୁ ଦ୍ୱୈତବନ ଭିତରକୁ ଯିବାକୁ ଦେଉ ନାହାନ୍ତି ।''

''ଆମ ପରିଚୟ ସେମାନଙ୍କୁ ଦିଆଗଲା ତ ?'' ଗମ୍ଭୀର ଓ ବିରକ୍ତିଭରା କଣ୍ଠରେ କହିଲେ ଦୁର୍ଯ୍ୟୋଧନ ।

''ହଁ, ରାଜନ୍ । ତାହା ସତ୍ତ୍ୱେ ସେମାନେ ଅରାଜି । ଚିତ୍ରସେନ କୁଆଡ଼େ ଦ୍ୱୈତ ସରୋବରରେ ନିଜ ନାରୀମାନଙ୍କ ସହିତ ଜଳକ୍ରୀଡ଼ାରେ ରତ । ସେଥିପାଇଁ ଦ୍ୱୈତବନକୁ ବାହାରର କେହି ପଶିବାପାଇଁ ତାଙ୍କର ଏଭଳି ନିଷେଧାଜ୍ଞା ।''

''ଆମେ କ'ଣ ଚିତ୍ରସେନଙ୍କ ଆଜ୍ଞାଧୀନ ପ୍ରଜା ? ଆମେ ତାହା କଦାପି ମାନିବୁ ନାହିଁ । ଦ୍ୱୈତବନ କିମ୍ବା ତାହା ମଧ୍ୟରେ ଥିବା ସରୋବର କିଛି ପୈତୃକ ସମ୍ପତ୍ତି ନୁହେଁ ତାଙ୍କର । ଆମେ ମଧ୍ୟ ସେଠାରେ କରିବୁ ଜଳକ୍ରୀଡ଼ା ।'' କ୍ରୋଧଭରା ଆରକ୍ତ ନୟନ ତୋଳି କହିଲେ ସେ ।

''ସେମାନେ ବାଧା ଦେବେ । ଯୁଦ୍ଧ କରିବେ ।''

''ଯୁଦ୍ଧ କରନ୍ତେ ନାହିଁ ଆଉ କ'ଣ ଫୁଲମାଳା ଦେଇ ଅଭ୍ୟର୍ଥନା କରନ୍ତେ ? ଆମେ ମଧ୍ୟ ଯୁଦ୍ଧ କରିବା । ସେମାନଙ୍କୁ ହରାଇଦେଇ ବଳପୂର୍ବକ ପ୍ରବେଶ କରିବା ଦ୍ୱୈତବନରେ ।'' ଗମ୍ଭୀର ଆଦେଶରେ ଥରିଉଠିଲା ଦ୍ୱୈତବନର ଉପାନ୍ତ ଭୂମି । ବିକ୍ରମର ସ୍ପର୍ଦ୍ଧା ଦେଖାଇ ନିଜ ଗଦାଟିକୁ ବାରମ୍ବାର ଘୂରାଇବାକୁ ଲାଗିଲେ ସେ ।

ତାହାପରେ ସହଗାମୀମାନଙ୍କୁ ଲକ୍ଷ୍ୟ କରି କହିଲେ, ''ସମସ୍ତେ ଏବେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ । ଆଜି ଦୁଇ ଦୁଇଟା ଯୁଦ୍ଧ ହେବ । ଗୋଟିଏ ଗନ୍ଧର୍ବମାନଙ୍କ ସହିତ । ଅପରଟି ପାଣ୍ଡବମାନଙ୍କ ସହିତ ।''

ସଙ୍ଗେ ସଙ୍ଗେ ଏଇ ଆଦେଶ ପାଳିତ ହେଲା । ସମସ୍ତେ ଆସନ୍ନ ଯୁଦ୍ଧ ପାଇଁ ପ୍ରସ୍ତୁତ । ଅଶ୍ୱବାହିନୀ ଆଗେଇ ଚାଲିଲା ଅତି ଦ୍ରୁତ ଗତିରେ । ଗନ୍ଧର୍ବବାହିନୀ ଆମ ଗତିବିଧିକୁ ଲକ୍ଷ୍ୟ କରୁଥିଲା ବୋଧହୁଏ । ଆମେ ଆକ୍ରମଣ କରିବା ପୂର୍ବରୁ ହିଁ ଆମ ଉପରେ ହଠାତ୍ ଆରମ୍ଭ ହୋଇଗଲା ତାହାର ଆକ୍ରମଣ । ଗନ୍ଧର୍ବସୈନ୍ୟଙ୍କ ସଂଖ୍ୟା ଆମଠାରୁ ଯଥେଷ୍ଟ ଅଧିକ । ସେମାନଙ୍କ ରାଜା ଚିତ୍ରସେନ ବି ଜଣେ ଅତି ବଳବାନ୍ ବୀରପୁରୁଷ । ନାନା ପ୍ରକାର ଦିବ୍ୟାସ୍ତ୍ର ଓ ପାରମ୍ପରିକ ଅସ୍ତ୍ରରେ ନିପୁଣ । ପୁଣି ଖଡ୍‌ଗଯୁଦ୍ଧରେ ଅତ୍ୟନ୍ତ ବିଶାରଦ । ସେ କୌଶଳ କରି ଆମ ସୈନ୍ୟବଳକୁ ଦୁଇ ଭାଗ କରିଦେଲେ । ଦୁର୍ଯ୍ୟୋଧନ ଓ ମୁଁ ପରସ୍ପରଠାରୁ ଏବେ ବିଚ୍ଛିନ୍ନ । ମାତୁଳ ଶକୁନି ଓ ଅନ୍ୟାନ୍ୟ କୌରବଭ୍ରାତାମାନେ ରହିଗଲେ ମୋ' ଦଳରେ । ଦୁର୍ଯ୍ୟୋଧନ ସ୍ୱଳ୍ପ କେତେକ କୌରବ ସୈନିକଙ୍କ ସୁରକ୍ଷା-ବଳୟରେ ଏକାକୀ । ଲକ୍ଷ୍ୟ କରୁଥାଏ, ସେ ଖୁବ୍ ପ୍ରଚଣ୍ଡ ବେଗରେ ଲଢୁଥାନ୍ତି । ଚେଷ୍ଟା କରୁଥାନ୍ତି ଗନ୍ଧର୍ବସେନାର ଘେରାଉକୁ ଭାଙ୍ଗି ମୋ' ସହିତ ପୁନର୍ବାର ମିଳିତ ହେବାପାଇଁ । କିନ୍ତୁ ପାରୁ ନ ଥାନ୍ତି । ଏଣେ ମୋ' ଉପରେ ବି ପ୍ରଚଣ୍ଡ ଆକ୍ରମଣ । ସ୍ୱୟଂ ଚିତ୍ରସେନ କରୁଥାନ୍ତି ବାଣ ଉପରେ ବାଣର ବରଷା । ପୁଣି ବେଳେବେଳେ ଖଡ୍‌ଗଦ୍ୱାରା ବି ଆଘାତ । ସବୁ କିନ୍ତୁ ବିଫଳ । ସମସ୍ତ ଆଘାତ ମୋ' ଅଭେଦ୍ୟ କବଚରେ ବାଜି ପ୍ରତିହତ ।

''ହେ ବୀରମାନେ ! କର୍ଣ୍ଣଙ୍କ ଅଭେଦ୍ୟ କବଚକୁ ଭେଦ କରିବା ଅସମ୍ଭବ । ତାଙ୍କୁ ବଶ କରିବାର ଏକ ମାତ୍ର ଉପାୟ ହେଲା ଘେରାଉ କରିନେବା ଓ ପରେ ପରେ ବନ୍ଦୀ କରି ରଖିବା ।'' ବଜ୍ରନିର୍ଘୋଷ ଭଳି ଆଦେଶ ଦେଲେ ଚିତ୍ରସେନ ଗନ୍ଧର୍ବ ଯୋଦ୍ଧାମାନଙ୍କୁ ।

ଧୀରେ ଧୀରେ ଅଗଣିତ ଗନ୍ଧର୍ବ ବୀର ଘେରିଯିବାକୁ ଲାଗିଲେ ମତେ । ଏହା ମଧ୍ୟରେ ମୋ' ପାଖରେ ଥିବା ଅଧିକାଂଶ ସୈନ୍ୟ ମୃତ । ଆତ୍ମରକ୍ଷା କରିବାର ଏକ ମାତ୍ର ଉପାୟ ପଛଘୁଞ୍ଚା । ତେଣୁ ପଛଘୁଞ୍ଚାର ଗୋଟିଏ ପଥ ଆବିଷ୍କାର କରି ଅବଶିଷ୍ଟ ସ୍ୱଳ୍ପ କେତେକ ସୈନ୍ୟ ଧରି କଲି ପଳାୟନ । ଲକ୍ଷ୍ୟ, କୁରୁରାଜଙ୍କ ଗୋଷ୍ଠ ନିକଟରେ ପଡ଼ିଥିବା ସ୍କନ୍ଧାବାର । ଆଶା କରୁଥିଲି ଦୁର୍ଯ୍ୟୋଧନ ବି ଯୋଗ ଦେବେ ମୋ' ସହିତ । କିନ୍ତୁ କିଛି ବାଟ ଯିବା ପରେ ଜାଣିପାରିଲି ସେ ନାହାନ୍ତି । ଆଉ ନାହାନ୍ତି ମଧ୍ୟ ତାଙ୍କ ସହିତ ଥିବା ସୈନ୍ୟଦଳ । ମନରେ ମୋର ଘୋର ଆଶଙ୍କା । ତାଙ୍କ ଉପରେ କିଛି ବିପଦ ପଡ଼ିଛି ବୋଧହୁଏ । କାଳବିଳମ୍ବ ନ କରି ପୁଣି ଅଶ୍ୱ ଫେରାଇଲି ଦ୍ୱୈତବନ ଅଭିମୁଖରେ ।

ଅଳ୍ପ କିଛି ଦୂର ଆଗେଇବା ପରେ ଦେଖିଲି ସେ ଆସୁଛନ୍ତି ଅଶ୍ୱପୃଷ୍ଠରେ । କ୍ଷତବିକ୍ଷତ ତନୁ । ମଳିନ ମୁଖଶ୍ରୀ । ସାଙ୍ଗରେ ମାତ୍ର ଛଅ ଜଣ ସଶସ୍ତ୍ର ସୈନିକ । ଦୁଇ ଜଣ ଆଗରେ । ଦୁଇ ଜଣ ପଛରେ । ପୁଣି ଜଣେ ଲେଖାଏଁ ଉଭୟ ପାର୍ଶ୍ୱରେ । ଖୁବ୍ ଦୁଃଖ ଲାଗିଲା ତାଙ୍କର ଏଭଳି ଦୟନୀୟ ଅବସ୍ଥା ଦେଖି ।

ସମବେଦନା ପ୍ରକାଶ କରି କହିଲି, ''କ'ଣ ହେଲା ମିତ୍ର ଦୁର୍ଯ୍ୟୋଧନ ? ଅନ୍ୟ ସୈନ୍ୟମାନେ କାହାନ୍ତି ?''

''ସେମାନେ ସମସ୍ତେ ମୃତ । ଆଉ ମୁଁ ମଧ୍ୟ ଯାଉଛି ମରିବାକୁ ।'' କଣ୍ଠରେ ତାଙ୍କର ନୈରାଶ୍ୟର ବାଣୀ ।

''ଏ କି କଥା କହୁଛ ମିତ୍ର ? ତୁମେ କୁରୁସିଂହାସନର ଭାବୀ ଅଧିକାରୀ । ହସ୍ତିନାପୁରର ଭାବୀ ରାଜା । ତୁମ ମୁଖରେ ଏଭଳି କଥା ଶୋଭା ପାଏନା । କ'ଣ ଘଟିଲା ପରିଷ୍କାର କରି କହ ?''

ଶକୁନି ଓ ଅନ୍ୟାନ୍ୟ କୌରବମାନେ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଥାନ୍ତି ତାଙ୍କୁ ଘଟଣା କ'ଣ ଜାଣିବାପାଇଁ । ସେ ଯାହା କହିଲେ, ତାହା ଶୁଣି ଆମେ ସମସ୍ତେ ସ୍ତମ୍ଭୀଭୂତ । ଚିତ୍ତତଳେ ମୋର ଚକିତ-ଚମକ । ବିଶେଷ କରି ଅର୍ଜୁନଙ୍କ ଅଦ୍ଭୁତ ପରାକ୍ରମ ବିଷୟ ଶୁଣି । ବାରମ୍ବାର ହୀନମ୍ମନ୍ୟତାର ମୁଦ୍‌ଗର ଆଘାତରେ ଜୀର୍ଣ୍ଣ ମୁଁ । ଭାବୁଥାଏ, ଏତେ ବଡ଼ ବୀର ମଧ୍ୟମ ପାଣ୍ଡବ । ମୁଁ କ'ଣ ହୋଇପାରିବି ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ? ଯଦି ହୋଇ ନ ପାରିବି, ତେବେ ଜୀବନରେ ମୋର ସକଳ ସାଧନା ବ୍ୟର୍ଥ ସିନା !

ତାଙ୍କ କଥାନୁସାରେ ମୋ'ଠାରୁ ବିଚ୍ଛିନ୍ନ ହେବା ପରେ ତାଙ୍କ ନିକଟରେ ଥିବା ସୈନ୍ୟବଳ ଧରି ସେ ଘୋର ଯୁଦ୍ଧ କରନ୍ତି ଗନ୍ଧର୍ବସେନା ସହିତ । କିନ୍ତୁ ଧୀରେ ଧୀରେ ତାଙ୍କ ସୈନ୍ୟବଳ ହୁଏ କ୍ଷୟ । କିଛି ସମୟ ପରେ ଚିତ୍ରସେନ ନିଜେ ଆସି ଯୋଗ ଦିଅନ୍ତି ଯୁଦ୍ଧରେ । ଶେଷରେ ତାଙ୍କର ହୁଏ ପରାଜୟ । ଅବଶିଷ୍ଟ ଛଅଜଣ ସୈନିକ ରହନ୍ତି ।

ଅନ୍ୟମାନେ ପାଆନ୍ତି ବୀରଗତି । ତାଙ୍କୁ ଚିତ୍ରସେନଙ୍କ ଆଦେଶରେ ତାଙ୍କୁ ଗନ୍ଧର୍ବ ସୈନ୍ୟମାନେ ବନ୍ଦୀ କରନ୍ତି । ଏହି ସମୟରେ ଘଟେ ଏକ ଅଦ୍ଭୁତ ଘଟଣା । ଦୂରରୁ ଶୁଭେ ଅର୍ଜୁନଙ୍କ ଗାଣ୍ଡୀବ-ଟଙ୍କାର । ମୁହୂର୍ତ୍ତକ ମଧ୍ୟରେ ସେ ଆସି ଦେଖାଦିଅନ୍ତି ଯୁଦ୍ଧ କ୍ଷେତ୍ରରେ । ତାଙ୍କର ଚିତ୍ରସେନଙ୍କ ସହିତ ହୁଏ ଘୋର ଯୁଦ୍ଧ । ଅର୍ଜୁନ ଏକାକୀ । ଏଣେ ଚିତ୍ରସେନ ତାଙ୍କ ବିରାଟ ଗନ୍ଧର୍ବସେନା ସହିତ ଯୁଦ୍ଧରତ । ଶେଷରେ ଅର୍ଜୁନଙ୍କର ବିଜୟ ହୁଏ ଏବଂ ଦୁର୍ଯ୍ୟୋଧନ ଚିତ୍ରସେନଙ୍କ ବନ୍ଧନରୁ ହୁଅନ୍ତି ମୁକ୍ତ । ଏଇ ଛଅଜଣ ମାତ୍ର ସୈନିକଙ୍କୁ ଧରି ସେ ଏବେ ଚାଲୁଛନ୍ତି କୁରୁ ସ୍କନ୍ଧାବାର ଅଭିମୁଖରେ ।

ଘଟଣାଟି ବର୍ଣ୍ଣନା କଲାବେଳେ ତାଙ୍କ ମୁଖମଣ୍ଡଳରେ ଲଜ୍ଜା ଓ ଅପମାନର କାଳିମା ଛାଇହୋଇ ଯାଇଥାଏ । ଆଖି-କଣରୁ ବହିଯାଉଥାଏ ଦୁଃଖର ଦରଦର ଅଶ୍ରୁ । ସେ ଯେମିତି ଭାଙ୍ଗିପଡୁଥାନ୍ତି ପ୍ରବଳ ଝଞ୍ଜାପବନରେ ଉଚ୍ଚ ଶାଳଗଛଟି ଭଳି ! ତୁଟି ଯାଇଥାଏ ସକଳ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ।

ସେ ପୁଣି କହିଲେ, ''ମିତ୍ର ରାଧେୟ ! ଯେଉଁ ପାଣ୍ଡବମାନଙ୍କୁ ବିରୋଧ କରିଥିଲି, ପୁଣି ସେହିମାନଙ୍କ କୃପାବଳରେ ମୁକ୍ତ ହେଲି ଶତ୍ରୁଙ୍କବଳରୁ । ଜୀବନ ଧରି ଫେରିପାରିଲି । ଏହାଠାରୁ ବଳି ଆଉ ଅଧିକ ଲାଜ ଓ ଅପମାନର କଥା କ'ଣ ଥାଇପାରେ ? ସମସ୍ତେ ଜାଣନ୍ତି ମୁଁ ମହାମାନୀ । ଏଭଳି ଘଟଣା ଘଟିବା ପରେ ମୁଁ ଯଦି ଜୀବନ ଧରି ରହୁଛି ତା'ହେଲେ ଲୋକେ ମତେ କ'ଣ କହିବେ ? ମୋ' ବୀରତ୍ୱ ଓ ଅଭିମାନର ଗୌରବ ଆଉ କ'ଣ ବା ରହିବ ? ମୁଁ ତେଣୁ ପ୍ରାଣ ହାରିଦେବି ।''

ଏହା ନ କରିବା ପାଇଁ ମୁଁ, ମାତୁଳ ଶକୁନି ଓ ଅନ୍ୟ କୌରବ ଭ୍ରାତାମାନେ, ଆମେ ସମସ୍ତେ ମିଶି ବୁଝାଇଲୁ । କିନ୍ତୁ ସେ ଆଦୌ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ଅବଶ୍ୟ କୌଣସି ମତେ କୁରୁ-ସ୍କନ୍ଧାବାରକୁ ଫେରିଲେ । କିନ୍ତୁ ସେଠାରୁ ଆଉ ପାଦେ ହେଲେ ଆଗକୁ ଯିବାପାଇଁ ଅନିଚ୍ଛୁକ । ହସ୍ତିନାପୁରକୁ ଫେରିବାର ପ୍ରଶ୍ନ ଉଠିବ ବା କୁଆଡୁ ? ସେଇଠି ବସିଗଲେ ପ୍ରାୟୋପବେଶନରେ । ମନରେ ଦୃଢ଼ ପ୍ରତିଜ୍ଞା, କିଛି ନ ଖାଇ ନ ପିଇ ପ୍ରାଣ ହାରିଦେବେ ପଛକେ ଏଇ ନିର୍ଲଜ ମୁହଁ କାହାକୁ ଦେଖାଇବେ ନାହିଁ ।

''ମିତ୍ର ! ତୁମକୁ ହସ୍ତିନାପୁରକୁ ଫେରିଯିବାକୁ ହିଁ ପଡ଼ିବ । ତାହାରି ଗଗନର ସୂର୍ଯ୍ୟ ତୁମେ । ଜାଣିରଖ ମିତ୍ର, ସୂର୍ଯ୍ୟଙ୍କୁ ବି ବେଳେ ବେଳେ ଗ୍ରସ୍ତ ହେବାକୁ ପଡ଼ିଥାଏ । ତାହା ବୋଲି କ'ଣ ସେ ଉଦୟ ହୁଅନ୍ତି ନାହିଁ ଆଉ ? ଜରାସନ୍ଧଦ୍ୱାରା ସତର ବାର ପରାସ୍ତ ହୋଇ କୃଷ୍ଣ ଯାଇ ଦ୍ୱାରକାରେ ନୂତନ ନଗରୀ ସ୍ଥାପନ କଲେ । ପରଶୁରାମ ବି ପିତାମହ ଭୀଷ୍ମଙ୍କଦ୍ୱାରା ହୋଇଥିଲେ ପରାଜିତ । ସେମାନଙ୍କୁ କ'ଣ କିଏ କହୁଛି ଭୀରୁ କାପୁରୁଷ ବୋଲି ? ସେମାନେ କ'ଣ ଜୀବନ ହାରିଦେଇଛନ୍ତି ? ଯୁଦ୍ଧ କରିବା ବୀରର ଧର୍ମ । କ୍ଷତ୍ରିୟର ଜୀବିକା । ଜୟ ଅଥବା ପରାଜୟ ନିୟନ୍ତ୍ରିତ କରେ ଆଉ ଜଣେ । ଦୈବ । ଏଥିରେ ବିବ୍ରତ ହେବାର କ'ଣ ବା କାରଣ ଅଛି ? କ୍ଷତ୍ରିୟ ପକ୍ଷରେ ପ୍ରାୟୋପବେଶନ ମହାପାପ । ତା' ପକ୍ଷରେ ଯୁଦ୍ଧରେ ବୀରଗତି ହିଁ ଶ୍ରେୟସ୍କର । ତୁମେ ତେଣୁ ଉଠ ମିତ୍ର । ଜାଗିଉଠ ନୂତନ ଉତ୍ସାହରେ । ନୂତନ ଉଦ୍ଦୀପନାରେ । ଯାହା ଘଟିଯାଇଛି ତାହାକୁ

ଭୁଲିଯାଅ । ଯାହା ଘଟିବାକୁ ଅଛି ତାହା ପାଇଁ ପ୍ରସ୍ତୁତ ହୁଅ ।'' ତାଙ୍କୁ ଉତ୍ସାହିତ କରିବାକୁ ଯାଇ କହିଲି । ନିଜ ଉତ୍ତରୀୟରେ ତାଙ୍କ ଲୁହକୁ ପୋଛିଦେଲି । ତାଙ୍କ ହାତ ଦୁଇଟିକୁ ଅତି ଆବେଗରେ ଧରି ରଖିଲି ମୋ' ଦୁଇ ହାତରେ ।

ତାଙ୍କ ମୁହଁରେ ଧୀରେ ଧୀରେ ଫୁଟିଉଠିଲା ହସର ଫୁଲ । ନିଷ୍ପଲକ ଆଖି ଦିଓଟି ମୋ' ଉପରେ ନିବଦ୍ଧ । କି ଏକ ଉତ୍ତେଜନାରେ ଉଠିପଡ଼ି ମତେ ବାନ୍ଧିରଖିଲେ ଆଲିଙ୍ଗନ ପାଶରେ ଓ ଭାବଗଦ୍‌ଗଦ କଣ୍ଠରେ କହିଲେ, ''ହେ ରାଧେୟ ! ଲୋକେ କହୁଛନ୍ତି ତୁମକୁ ସୂତପୁତ୍ର ବୋଲି । କିନ୍ତୁ ତୁମ କଥା ଶୁଣିବା ପରେ ମୋର ତାହା ବିଶ୍ୱାସକୁ ଆସୁ ନାହିଁ । ମୁଁ ଯିବି ନିଶ୍ଚୟ ହସ୍ତିନାପୁରକୁ । ଏଠି ହୀନକୀଟଟିଏ ଭଳି ମରିବାକୁ ଚାହେଁନା । ବରଂ ଚାହେଁ କ୍ଷତ୍ରିୟର ତେଜରେ ଜଳି-ଜଳାଇ ମରିବାପାଇଁ । ଚାଲ, ଆମେ ହସ୍ତିନାପୁରକୁ ଫେରିଯିବା ।''

ଆମେ ତାହା ପରେ ଫେରିଆସିଲୁ ହସ୍ତିନାପୁରକୁ । ଆନନ୍ଦ ଓ ଦୁଃଖର ମିଶ୍ରିତ ଅନୁଭବ । ଆନନ୍ଦ ଏଇଥିପାଇଁ ଯେ ଦୁର୍ଯ୍ୟୋଧନ ବିରତ ହୋଇଛନ୍ତି ପ୍ରାୟୋପବେଶନର ଉଦ୍ୟମରୁ । ଦୁଃଖ ଏଇଥିପାଇଁ ଯେ ପରାଜୟର ଗ୍ଳାନିରେ ଆମେ କ୍ଳିନ୍ନ ।

## ପଞ୍ଚଷଠି

ହସ୍ତିନାପୁରକୁ ଫେରିଆସିବା ପରେ ବହୁତ ନିନ୍ଦାର କଥା ଶୁଣିଲି । ସମସ୍ତଙ୍କ ମୁହଁରେ ଏକଇ କଥା — କର୍ଣ୍ଣ ମହାବୀର ବୋଲି ବୃଥା ଏତେ ଦମ୍ଭ ଦେଖାଉଥିଲେ । ଜନ୍ମଜାତ କବଚ-କୁଣ୍ଡଳ ନେଇ ଗର୍ବ କରୁଥିଲେ । ଅଥଚ ଆଜି ଚିତ୍ରସେନ ଗନ୍ଧର୍ବଙ୍କ ହାତରେ ହେଲେ ପରାସ୍ତ । ଧିକ୍ ତାଙ୍କ ବୀରତ୍ୱର ଅଭିମାନ ! ଏଥିପାଇଁ ମନେ ମନେ ଖୁବ୍ ହୀନ ମନେ କରୁଥିଲି ନିଜକୁ । ଏଭଳି ହୀନମ୍ମନ୍ୟତାରେ ସଢ଼ି ସଢ଼ି କୁରୁରାଜସଭାକୁ ଯିବା ପ୍ରାୟ ବନ୍ଦ କରିଦେଇଥିଲି କିଛି ଦିନପାଇଁ । ଦିନେ କିନ୍ତୁ ନ ଯାଇ ରହିପାରି ନ ଥିଲି । ମହାରାଜ ବାରମ୍ବାର ଖବର ପଠାଇଲେ ରାଜସଭାକୁ ଯିବାପାଇଁ । ଆଉ ମିତ୍ର ଦୁର୍ଯ୍ୟୋଧନ ବି ମୋ' ଭବନକୁ ଆସି ବ୍ୟକ୍ତିଗତ ଭାବରେ ମତେ ଯିବାପାଇଁ ଅନୁରୋଧ କଲେ ।

ରାଜସଭାରେ ପହଞ୍ଚିବା ମାତ୍ରେ ପିତାମହ ଭୀଷ୍ମ କହିଉଠିଲେ, ''ଏଇ ତ ସୂତପୁତ୍ର କର୍ଣ୍ଣ ଆସିଗଲେଣି ।'' ତାଚ୍ଛଲ୍ୟଭରା ବାଣୀ । ମୋ' ନୀଚବଂଶକୁ ସ୍ମରଣ କରାଇଦେବା ପାଇଁ ଉଦ୍ଦିଷ୍ଟ ଯେମିତି । ଲେଶମାତ୍ର ଚିହ୍ନବର୍ଣ୍ଣ ନାହିଁ ଆଦରପୂର୍ଣ୍ଣ ଭାଷାର ।

ମତେ ଅଙ୍ଗରାଜ ବୋଲି ଡାକିବାକୁ ମନରେ ତାଙ୍କର କୁଣ୍ଠା । ସବୁବେଳେ ଡାକନ୍ତି ସୂତପୁତ୍ର ବୋଲି । ଆଉ ତାଚ୍ଛଲ୍ୟ କରନ୍ତି ମୋ' ବୀରତ୍ୱକୁ । ତାଙ୍କ ଧାରଣା ଯେ ପୃଥିବୀର ସର୍ବଶ୍ରେଷ୍ଠ ଧନୁର୍ଦ୍ଧର ବୀର ଅର୍ଜୁନ । ତାଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା ଲାଗି ଯେଉଁ ଅଭିଳାଷ ମୁଁ ପାଞ୍ଚିଛି ମନରେ, ତାହାକୁ କହନ୍ତି ବାମନର ଚନ୍ଦ୍ରକୁ ଛୁଇଁବାର ଅପଚେଷ୍ଟା ସହିତ ସମାନ । ସେ ଦିନ କିନ୍ତୁ ସଂକୁଚିତ ମନ ନେଇ ଯାଇଥିବାରୁ କି କ'ଣ ତାଙ୍କର ଏ ସୂତପୁତ୍ର ଡାକ ମତେ ଖୁବ୍ ପୀଡ଼ା ଦେଇଥିଲା । କିନ୍ତୁ କିଛି ପ୍ରତିବାଦ କରି ନ ଥିଲି । କାହିଁକି ବା କରିଥାନ୍ତି ? ମୁଁ

କ'ଣ ସୂତପୁତ୍ର ନୁହେଁ କି ? ତାହା ତ ମୋ' ମୌଳିକ ପରିଚୟ ! କୌଳିକ ସ୍ଥିତି । ସେ ତ ନିରାଟ ସତ୍ୟ କଥା ହିଁ କହିଛନ୍ତି । କିଛି ନ କହି ମହାରାଜଙ୍କୁ ମାନ୍ୟତା ଦର୍ଶାଇ ଗ୍ରହଣ କଲି ନିଜ ଆସନ ।

ମହାରାଜ କହିଲେ, ''ଅନୁଜ ପାଣ୍ଡୁ ଯେଉଁ ରାଜ୍ୟମାନ ଜୟ କରି କୁରୁରାଜ୍ୟରେ ମିଶାଇ ଦେଇଥିଲେ ସେଗୁଡ଼ିକ ମଧ୍ୟରୁ ଅନେକ ରାଜ୍ୟ ଏବେ ସ୍ୱାଧୀନ ହୋଇଗଲେଣି । ଆଉ କେତେକ ସ୍ୱାଧୀନ ନ ହୋଇଥିଲେ ବି କର ଦେବା ବନ୍ଦ କରିଦେଇଛନ୍ତି । ନା କ'ଣ ମହାମନ୍ତ୍ରୀ ବିଦୁର ?''

''ହଁ, ମହାରାଜ । କୌରବ-ପାଣ୍ଡବମାନଙ୍କ ମଧ୍ୟରେ ଦୀର୍ଘଦିନ ଧରି ଲାଗିରହିଥିବା ବିବାଦର ସୁଯୋଗ ନେଇଛନ୍ତି ସେମାନେ । ଅଧିକ କର ନ ଆସିବା ଫଳରେ ରାଜଭଣ୍ଡାରର ଗଚ୍ଛିତ ଧନ କ୍ରମେ ସରି ସରି ଆସୁଛି ।'' ଉତ୍ତର ଦେଲେ ମହାମନ୍ତ୍ରୀ ।

''ଏହି ସ୍ଥିତିରୁ ରକ୍ଷା ପାଇବାର ଉପାୟ କ'ଣ ?''

''ପୁନର୍ବାର ସେହି ରାଜ୍ୟଗୁଡ଼ିକୁ ଜୟ କରିବା । ଯଦି ସମ୍ଭବ ହୁଏ, ତେବେ ଆଉ କେତୋଟି ଅଧିକ ରାଜ୍ୟ ମଧ୍ୟ ଜୟ କରିବା ।'' ମହାମନ୍ତ୍ରୀଙ୍କ ବିନମ୍ର ପରାମର୍ଶ ।

''ସଭାସଦମାନଙ୍କର ଏ ବିଷୟରେ ମତ କ'ଣ ?'' ମହାରାଜ ରାଜସଭାକୁ ଲକ୍ଷ୍ୟ କରି ପ୍ରଶ୍ନ କଲେ ।

''ଅତି ସାଧୁ ପ୍ରସ୍ତାବ । ଖୁବ୍ ଉତ୍ତମ ।'' ସମସ୍ତ ସଭ୍ୟଙ୍କ ସହମତିସୂଚକ ବାଣୀ ।

''ତଥାସ୍ତୁ ।'' ମହାରାଜଙ୍କ ସଂକ୍ଷିପ୍ତ ଅଥଚ ଦୃଢ଼ ଆଦେଶ ।

''ଏ ଯୁଦ୍ଧଯାତ୍ରା ତ ପାଞ୍ଚ ସାତ ଦିନପାଇଁ ନୁହେଁ । ଏଥିରେ ଦୀର୍ଘଦିନ ଲାଗିଯିବ । ହୁଏତ ବର୍ଷେ ଟପିଯାଇପାରେ । କିଏ ଏ ଯୁଦ୍ଧଯାତ୍ରାରେ ନେତୃତ୍ୱ ନେବେ ?'' ମହାମନ୍ତ୍ରୀଙ୍କର ରାଜସଭାର ମତ ଓ ମହାରାଜଙ୍କ ଆଦେଶ ଜାଣିବା ଉଦ୍ଦେଶ୍ୟରେ ପ୍ରତିପ୍ରଶ୍ନ ।

କେହି କିଛି ମତ ଦେବା ପୂର୍ବରୁ ଦୁର୍ଯ୍ୟୋଧନ ଉଠିପଡ଼ି କହିଲେ, ''କାହିଁକି ? ଅଙ୍ଗରାଜ କର୍ଣ୍ଣ ଅଛନ୍ତି । ମହାବୀର ସେ । ଜନ୍ମଜାତ କବଚ-କୁଣ୍ଡଳରେ ଚିରସୁରକ୍ଷିତ । ତାଙ୍କ ଛଡ଼ା ଆଉ କିଏ ବା ଯୋଗ୍ୟ ବ୍ୟକ୍ତି ଅଛନ୍ତି ହସ୍ତିନାପୁରରେ ଏଇ ଅଭିଯାନର ନେତୃତ୍ୱ ନେବାପାଇଁ ? ମୋ' ମତରେ ତାଙ୍କୁ ହିଁ ଏହି ଦାୟିତ୍ୱ ଦିଆଯାଉ ।''

ମାତୁଳ ଶକୁନି ମଧ୍ୟ ତାଙ୍କ କଥାକୁ କଲେ ସମର୍ଥନ ।

''ଚିତ୍ରସେନ ଗନ୍ଧର୍ବଙ୍କ ଦ୍ୱାରା ଏଇ ନିକଟ ଅତୀତରେ ପରାସ୍ତ ହେବାପରେ ପୁଣି ତାଙ୍କୁ ଏତେ ବଡ଼ କାର୍ଯ୍ୟର ଦାୟିତ୍ୱ ଦେବାପାଇଁ ପ୍ରସ୍ତାବ ! ଏହାର ସମର୍ଥକ ପୁଣି ଗାନ୍ଧାରରାଜ ଶକୁନି ଯେ ସ୍ୱୟଂ ବି ଚିତ୍ରସେନଙ୍କ ଦ୍ୱାରା ପରାଜିତ । ଅତି ଅଦ୍ଭୁତ ପ୍ରସ୍ତାବ । ହାଃ ! ହାଃ ! ହାଃ !'' ପିତାମହ ଅଟ୍ଟହାସ ମାଧ୍ୟମରେ ପ୍ରକାଶ କଲେ ନିଜ ପ୍ରତିକ୍ରିୟା । ଏଇ ପ୍ରତିକ୍ରିୟାର ଝଙ୍କାର ବିଷାକ୍ତ ନାଗସାପ ଭଳି ମତେ ଦଂଶନ କରୁଥିଲା ଯେମିତି । ଅଧିକରୁ ଅଧିକ

ମ୍ରିୟମାଣ ହୋଇଉଠୁଥିଲି ମୁଁ । ପିତାମହଙ୍କ ପ୍ରତି ଥିବା ମାନ୍ୟତା ଜ୍ଞାନରେ ସହିଯାଉଥିଲି ସବୁ କିଛି । ହେଲେ ମନ ଭିତରେ କ୍ରୋଧର ଅନଳ ଜଳି-ଉଠୁଥିଲା ହୁତୁ ହୁତୁ ହୋଇ । ଅନ୍ୟ କାହାକୁ ଜଳାଇବା ପରିବର୍ତ୍ତେ ମତେ ହିଁ ଦେଉଥିଲା ଜାଳି । ହୃଦୟ ମୋର ଖୁବ୍ ବେଦନାକ୍ତ !

କିଛି ସମୟ ପାଇଁ ସଭାସ୍ଥଳରେ ନୀରବତା । ପିତାମହଙ୍କ କଥା ଉପରେ ମନ୍ତବ୍ୟ ଦେବାପାଇଁ କିମ୍ବା ପ୍ରତିବାଦର ସ୍ୱର ଉଠାଇବା ପାଇଁ ସାହସ ନ ଥିଲା କାହାରି । ଦୁର୍ଯ୍ୟୋଧନ ନିଜେ ବି ସାହସୀ ନ ଥିଲେ । କାରଣ ଚିତ୍ରସେନଙ୍କ ଦ୍ୱାରା ବନ୍ଦୀ ହେବା ପରେ ଅର୍ଜୁନଙ୍କ ଦ୍ୱାରା ମୁକ୍ତି ପାଇବା ନେଇ ସେ ନିଜେ ବି ସଂକୁଚିତ । ହରାଇ ବସିଥାନ୍ତି ନୈତିକ ବଳ । ତାଙ୍କ ସ୍ୱାଭାବିକ ଅଭିମାନ ପାରୁ ନ ଥାଏ ମୁଣ୍ଡ ଟେକି । ତୀବ୍ର ଶିଖା ଟେକି ଜଳି ଉଠୁଥିବା ଅଗ୍ନିରେ ସହସ୍ର ଭାର ଜଳ ଢାଳିଦେଇଥାଏ କିଏ ଯେମିତି ।

ତାଙ୍କ ମନଃସ୍ଥିତିକୁ ବୋଧହୁଏ ବୁଝିପାରୁଥିଲେ ମହାରାଜ । କ୍ଷଣକ ନୀରବତାକୁ ଭଙ୍ଗ କରି ସେ ପଚାରିଲେ, ‘‘ଆଚ୍ଛା, ଏଥିରେ ସ୍ୱୟଂ ଅଙ୍ଗରାଜ କର୍ଣ୍ଣଙ୍କର ମତ କ’ଣ ? ସେ ଏହି ଦାୟିତ୍ୱଟି ବହନ କରିବାକୁ ପ୍ରସ୍ତୁତ ତ ?’’

‘‘ମୁଁ ପ୍ରସ୍ତୁତ ମହାରାଜ !’’ ବିନୀତ କଣ୍ଠରେ ଉତ୍ତର ଦେଲି ।

‘‘ଦୁର୍ଯ୍ୟୋଧନ କହିଲେ, ‘‘ଅଙ୍ଗରାଜଙ୍କୁ ଚାରି ଅକ୍ଷୌହିଣୀ ସୈନ୍ୟବାହିନୀର ଅଧକ୍ଷ କରାଯାଉ । ମୋର ବିଶ୍ୱାସ, ସେ ନିଶ୍ଚୟ ବିଜୟୀ ହୋଇ ଫେରିଆସିବେ ।’’

‘‘ମୋର ବି ତ ସେହି ବିଶ୍ୱାସ ଅଛି ପୁତ୍ର । ତୁମ ପ୍ରସ୍ତାବ ଗୃହୀତ । କର୍ଣ୍ଣ ଚାରି ଅକ୍ଷୌହିଣୀ ସୈନ୍ୟ ଧରି ଦିଗ୍‌ବିଜୟରେ ବାହାରିବେ । ମହାମନ୍ତ୍ରୀ ଆବଶ୍ୟକ ବ୍ୟବସ୍ଥାମାନ କରନ୍ତୁ ।’’

‘‘ତୁରନ୍ତ ତାହା କରାଯିବ ମହାରାଜ ।’’ ବିଦୁରଙ୍କ ସଂକ୍ଷିପ୍ତ ଉତ୍ତର ।

‘‘ମହାରାଜ ! ଆପଣଙ୍କ ଆଦେଶ ମୋର ଶିରୋଧାର୍ଯ୍ୟ । ଯଥାସାଧ୍ୟ ଚେଷ୍ଟା କରିବି ଆପଣଙ୍କ ଆଶା ଓ ବିଶ୍ୱାସକୁ ସାକାର କରିବାପାଇଁ । ମୁଁ ଯେ ବିଜୟୀ ହୋଇ ଫେରି ଆସିବି ଏ ଆତ୍ମବିଶ୍ୱାସ ମୋର ଅଛି ।’’ ବିନୟୀ ଅଥଚ, ଦୃଢ଼ ଭାବରେ କହିଲି ।

‘‘ବୃଥା ଆସ୍ଫାଳନ କର୍ଣ୍ଣ ! ଏହା ତୁମର ବୃଥା ଅସ୍ଫାଳନ ! ଅତୀତରେ ଏମିତି ଆସ୍ଫାଳନ ଦେଖାଇଛ ଅନେକଥର । କିନ୍ତୁ ସବୁ ହୋଇଛି ବ୍ୟର୍ଥ । ଯାହା କହୁଛ, ତାହା କାର୍ଯ୍ୟରେ ଦେଖାଇପାରିବ ତ ? ପୁଣି ଥରେ ଭାବିଚିନ୍ତି ଦେଖ । ଏବେ ମଧ୍ୟ ସମୟ ଅଛି । ଏବେ ବି ନିବୃତ୍ତ ହୋଇପାର ଦିଗ୍‌ବିଜୟ-ଯାତ୍ରାରୁ । ଲୋକହସା ହେବା ଅପେକ୍ଷା ନିବୃତ୍ତ ହେବା ବରଂ ଭଲ ।’’ ମୋ’ ପ୍ରତି ପିତାମହଙ୍କର ଶ୍ଳେଷପୂର୍ଣ୍ଣ ଆକ୍ଷେପ । ତଥାପି ତାଙ୍କ ମନରେ ଦ୍ୱନ୍ଦ୍ୱ । ମୋ’ ସଫଳତା ନେଇ ସନ୍ଦେହ ।

‘‘ମୁଁ କଥା ଦେଉଛି ପିତାମହ, ନିଶ୍ଚୟ ଦିଗ୍‌ବିଜୟ କରି ଫେରିଆସିବି । ମତେ ଆଶୀର୍ବାଦ କରନ୍ତୁ ।’’

''ମୋର ତ ତୁମ କ୍ଷମତା ଓ ଶକ୍ତି ଉପରେ ବିଶ୍ୱାସ ନାହିଁ । ତେଣୁ ଆଶୀର୍ବାଦ କରିପାରୁ ନାହିଁ । କାରଣ ଜାଣୁଛି ଯେ ତାହା ହେବ ବୃଥା ଆଶୀର୍ବାଦ ।'' ତାଙ୍କର କଠୋର ବାଣୀ ଖୁବ୍ ଆଘାତ ଦେଲା ମତେ ।

ମୁହଁ ଶୁଖାଇଦେଇ କହିଲି, ''ପିତାମହ ସବୁବେଳେ ମୋ' ପ୍ରତି ବିରାଗ । କାରଣ କ'ଣ ଜାଣିପାରୁ ନାହିଁ । କିଛି ଅପରାଧ କରିଥିଲେ କ୍ଷମା କରନ୍ତୁ ମତେ ।'' କଣ୍ଠରେ ମୋର ଅନୁନୟଭରା କାତରତା ।

ସେ କିଛି ସମୟ ପାଇଁ କ'ଣ ଭାବିଲେ । ତାହା ପରେ ଆଖି ଛଳ ଛଳ କରି କହିଲେ, ''ତୁମର କିଛି ଦୋଷ ନାହିଁ କର୍ଣ୍ଣ । ଦୋଷ ହସ୍ତିନାପୁରର, ଭାଗ୍ୟର । ଦୋଷ ବିଧାତାର ।'' ଆଉ କିଛି କହି ପାରିଲେ ନାହଁ । କଣ୍ଠ ତାଙ୍କର ଆବେଗରେ ହୋଇଉଠିଲା ରୁଦ୍ଧ ଓ ବାଣୀ ସ୍ଖଳିତ । କୌଣସିମତେ ନିଜକୁ ସଂଯତ ରଖି ପରେ କହିଲେ, ''ତୁମେ ଯାଅ କର୍ଣ୍ଣ । ବିଜୟୀ ହୋଇ ଫେରିଲେ ହସ୍ତିନାପୁରର ମହାଦ୍ୱାରରେ ତୁମକୁ ସର୍ବପ୍ରଥମେ ଅଭିନନ୍ଦନ କରିବ ଏଇ ପିତାମହ ଭୀଷ୍ମ ।''

ଅତି ଅଦ୍ଭୁତ ଏ ପିତାମହ ! ବିଚିତ୍ର ଯାଙ୍କ ଆଚରଣ ! ବାହାରକୁ ଜଣାପଡ଼ନ୍ତି ଭାରି କଠିନ ଓ କଠୋର । ଅଥଚ ଭିତରେ ଫୁଲ ପରି କୋମଳ । ମୋ' ପ୍ରତି ଏଭଳି ଆକ୍ଷେପୋକ୍ତି । ଅଥଚ ମୋ' ଅନ୍ତର୍ବେଦନା ପ୍ରତି ଏଭଳି ସମବେଦନା ! ମୋ' ପାଇଁ ଛାତି ତଳେ ଏତେ ଦରଦ ! ଆଖି କଣରେ ଏତେ ଲୁହ ! ଏଇ ରହସ୍ୟମୟ ଆଚରଣରେ ଅଭିଭୂତ ମୁଁ । କାରଣ କ'ଣ ଜାଣିପାରୁ ନ ଥାଏ ଜମା । ପିତାମହଙ୍କ ଏଇ ରହସ୍ୟମୟ ଆଚରଣ ମୋ' ଜନ୍ମରହସ୍ୟ ସହିତ ସଂପୃକ୍ତ କି ନୁହେଁ ତାହା ଥାଏ ମୋ' ଅବଧାରଣାର ଅତୀତ ।

ଯଥାସମୟରେ ରାଜସଭା ଭଙ୍ଗ ହେଲା । ନିଜ ଭବନକୁ ଫେରିଆସି ଦିଗ୍‌ବିଜୟ-ଯାତ୍ରାର ପ୍ରସ୍ତୁତିରେ ଲାଗିପଡ଼ିଲି ।

## ଛଅଷଠି

ସ୍ୱାର୍ଥ । ହଁ, ସ୍ୱାର୍ଥ । ଏହା ମଣିଷକୁ ଅତି ନିଷ୍ଠୁର କରିଦେଇଥାଏ । ତା' ଭିତରେ ଥିବା ସ୍ୱାଭାବିକ ଦେବତ୍ୱକୁ ମାରି ଦେଇଥାଏ । ତାହା ଜାଗାରେ ଆଣି ଥୋଇଥାଏ ବୀଭତ୍ସ ଓ ବିକଟାଳ ରାକ୍ଷସତ୍ୱ । ମଣିଷ-ରକ୍ତ ପିଇବାର ଉଦଗ୍ର ପିପାସା । ମଣିଷ-ମାଂସ ଖାଇବାର ଭୟଙ୍କର ବୁଭୁକ୍ଷା । ସିଂହ କେବଳ କ୍ଷୁଧାରେ ଆତୁର ହେଲେ ହେଁ ଶିକାର କରେ । ଯେ କୌଣସି ପ୍ରାଣୀ ଆଗରେ ପଡ଼ିଲେ ତାହାକୁ ମାରି ଖାଏ । କିନ୍ତୁ କଦାପି ଆଉ ଗୋଟିଏ ସିଂହକୁ ମାରି ଖାଏନା । କିନ୍ତୁ ମଣିଷ ଯେତେବେଳେ ହୁଏ ସ୍ୱାର୍ଥାନ୍ଧ, ସେତେବେଳେ ତା' ପାଖରେ ନିଜ ପ୍ରଜାତି ପ୍ରତି ନ ଥାଏ ବାଛବିଚାର ଅଥବା ଅନୁକମ୍ପା କିମ୍ବା ଦରଦ । ଭୋକ କରୁ ନ ଥିଲେ ବି ସେ ମଣିଷ ମାରି ଖାଏ । ନିଜେ ଖୁସି ହୁଏ । ଫୁଲି ଫୁଲି ନାଚେ । ଅନ୍ୟମାନଙ୍କୁ ଯନ୍ତ୍ରଣା ଦିଏ । ସେଇ ଯନ୍ତ୍ରଣା ଦେବାରେ ବି ତା'ର ଆନନ୍ଦ ! ବଡ଼ ଅଦ୍ଭୁତ ଓ

ବିଚିତ୍ର ପ୍ରାଣୀ ଏ ମଣିଷ । ସବୁ ପ୍ରାଣୀ ଅବଶ୍ୟ ନିଜ ସ୍ୱାର୍ଥକୁ ଜଗି ରଖିଥାନ୍ତି । କିନ୍ତୁ ତାହାର ଗୋଟାଏ ସୀମା ଥାଏ । ସର୍ବନିମ୍ନ ଆବଶ୍ୟକତାର ପରିପୂର୍ତ୍ତି ଥାଏ ସେଇ ସ୍ୱାର୍ଥର ଲକ୍ଷ୍ୟ । ଅଥଚ ମଣିଷ । ତାହାର ସ୍ୱାର୍ଥ ସର୍ବନିମ୍ନ ଆବଶ୍ୟକତାର ପରିସୀମା ମଧ୍ୟରେ ଆବଦ୍ଧ ରହେନା । ତାହାକୁ ଟପି ଚାଲିଯାଏ କାହିଁ କେତେ ଦୂରକୁ । ଉଚ୍ଚ ଗଗନ ଭେଦି କାହିଁ କେଉଁ ଅନ୍ତରୀକ୍ଷର ଆର ପାଖକୁ । ଦୁର୍ଯ୍ୟୋଧନ ଆଜି ସେଇ ସ୍ୱାର୍ଥରେ ଅନ୍ଧ ହୋଇ ପାଣ୍ଡବମାନଙ୍କୁ ଦେଇଚାଲିଛନ୍ତି କଷଣ ଉପରେ କଷଣ । କରିଚାଲିଛନ୍ତି ଅତ୍ୟାଚାର ଉପରେ ଅତ୍ୟାଚାର । ଅନୁକ୍ଷଣ ଭରି ଚାଲିଛନ୍ତି ପାପର ଭାଣ୍ଡଟିକୁ । ଆଉ ମୁଁ ବି ସେଇ ସ୍ୱାର୍ଥ ଲାଗି ତାଙ୍କୁ କରିଚାଲିଛି ସମର୍ଥନ । ତାହାକୁ ଆଖ୍ୟା ଦେଇଛି ବିବଶତା ବୋଲି । ଏହା ଯୌକ୍ତିକତାର ଏକ ଛଳନାପୂର୍ଣ୍ଣ ପୁଟ ଛଡ଼ା ଆଉ କିଛି ନୁହେଁ । ଆଜି ପୁଣି ଥରେ ହେବାକୁ ଯାଉଛି ସ୍ୱାର୍ଥର ଯଜ୍ଞ । ସ୍ୱାର୍ଥକୁ ଆହୁତି ଦେବାପାଇଁ ନୁହେଁ ବରଂ ତାହାର ପରିପୂର୍ତ୍ତି ପାଇଁ । ଆହୁତି ଦିଆଯିବ ମଣିଷର ରକ୍ତ, ମାଂସ, ମେଦ ଆଦିକୁ । ଦିଗ୍‌ବିଜୟର ଅବସରରେ ଅନେକ ଜୀବନ ହାନି ଘଟିବ । ସେହି ଲୋକମାନେ ହେବେ ଏହାର ଯଜ୍ଞପଶୁ । ମାନବବାଦ ପ୍ରତି ଏହା ଏକ ବିଡ଼ମ୍ବିତ ପରିହାସ ହେଲେହେଁ ସତ୍ୟ । କୁହାଯାଉଛି ରାଜନୈତିକ ଆବଶ୍ୟକତା ଅଛି ଏଥିପାଇଁ । ମହାରାଜ ଧୃତରାଷ୍ଟ୍ରଙ୍କ ସ୍ୱାର୍ଥ ସଂରକ୍ଷିତ ହେବ ନୂତନ ନୂତନ ରାଜ୍ୟମାନ ତାଙ୍କ ସାମ୍ରାଜ୍ୟରେ ମିଶିବା ଦ୍ୱାରା । ରାଜଭଣ୍ଡାର ହେବ ବିପୁଳରୁ ବିପୁଳତର । ମୋର ବି ସ୍ୱାର୍ଥ ଅଛି । କାରଣ ମୋର ଯଶଃ ବଢ଼ିବ । ଚାରିଆଡ଼େ ରଟିବ ସୁନାମ । ସମସ୍ତେ ପ୍ରଶଂସା କରିବେ ଦିଗ୍‌ବିଜୟୀ ବୀର ବୋଲି । ପିତାମହ ଭୀଷ୍ମ ଆଦର-ଅଭ୍ୟର୍ଥନା କରିବେ । ଚିତ୍ରସେନ ଗନ୍ଧର୍ବଙ୍କଠାରୁ ପରାଜୟ ଲଭିବାର ଯେଉଁ ସାମୟିକ ଗ୍ଲାନି ତାହା ଦୂର ହୋଇଯିବ ଅଚିରେ ଉଷାର ଆଗମନରେ ରାତ୍ରିର ଅନ୍ଧକାର ଦୂର ହୋଇଯାଏ ଯେମିତି । ତେଣୁ ସମସ୍ତ ବିଚାରକୁ ଆଡ଼େଇଦେଇ ମୁଁ ଆଜି ପ୍ରସ୍ତୁତ ଦିଗ୍‌ବିଜୟ ଉପଲକ୍ଷେ ଯାତ୍ରା କରିବାପାଇଁ ।

ଅନୁଜ ସଂଗ୍ରାମଜିତ୍ । ଅସ୍ତ୍ରବିଦ୍ୟା ସଂପର୍କରେ ତାଙ୍କର ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ ମୁଁ ନିଜେ । ଏବେ ଜଣେ ପ୍ରବୀଣ ଅସ୍ତ୍ରବିତ୍ ସେ । ମହାବୀର ବି । ବିଶେଷକରି ଶୂଳଯୁଦ୍ଧ ଓ ଖଡ଼୍‌ଗଯୁଦ୍ଧରେ ପ୍ରବୀଣ । ଯୌବନର ଦୀପ୍ତିରେ ଜ୍ୱଳମାନ । ତାଙ୍କର ବି ଇଚ୍ଛା ଦିଗ୍‌ବିଜୟ ଅବସରରେ ମୋର ସହଗମନ କରିବାପାଇଁ । ଭାବିଲି, ସେ ମଧ୍ୟ କାମରେ ଆସିବେ ଦିଗ୍‌ବିଜୟ ଅଭିଯାନରେ । ତେଣୁ ତାଙ୍କୁ ବି ନେଲି ସାଥିରେ । ଚାରି ଅକ୍ଷୌହିଣୀ କୁରୁସେନାର ମହାସେନାପତି ମୁଁ । ଆଉ ସେ ମୋ' ଅଧୀନରେ ସେନାପତି ।

କାର୍ତ୍ତିକ ମାସ ପରେ ମାର୍ଗଶୀର୍ଷ ମାସର ଅର୍ଦ୍ଧେକ ଶେଷ । ରାସ୍ତାଘାଟ ପରିଷ୍କାର । କର୍ଦ୍ଦମର ନାମଗନ୍ଧ ନାହିଁ । ଗଗନମଣ୍ଡଳ ନିର୍ମେଘ । ପ୍ରାଭାତିକ ସୂର୍ଯ୍ୟରଶ୍ମି ପ୍ରାନ୍ତରର ଦୂର୍ବାଶଯ୍ୟା ଉପରେ ପଡ଼ିଥିବା ଶିଶିରବିନ୍ଦୁର ଦର୍ପଣରେ ଦେଖୁଛି ମୁହଁ । ଶୀତର ସାମାନ୍ୟ ଆରମ୍ଭ ମାତ୍ର । ସାରା ଦିନ ଶ୍ରମ କଲେ ବି ଦେହ ସ୍ୱେଦକ୍ଳିନ୍ନ ହେବାର ଆଶଙ୍କା ନାହିଁ । ନାହିଁ ବି କ୍ଳାନ୍ତି ଅଥବା ଅବସାଦ । ଅଭିଯାନର ସର୍ବୋତ୍କୃଷ୍ଟ ସମୟ ।

ଦିଗ୍‌ବିଜୟ ଅଭିଯାନ ଆରମ୍ଭ ହେଲା ସେଇ ମାର୍ଗଶୀର୍ଷମାସର ଶୁକ୍ଳ ପକ୍ଷ ଦଶମୀ ତିଥିରେ । ମହେନ୍ଦ୍ର ବେଳା ଦେଖି ବାହାରିଲି । ବ୍ରାହ୍ମଣମାନଙ୍କ ସ୍ୱସ୍ତ୍ୟୟନ ମନ୍ତ୍ରର ପବିତ୍ର ଝଙ୍କାର । ଶଙ୍ଖ, କାହାଳୀ, ଭେରୀ ଆଦିର ମିଶ୍ରିତ ଧ୍ୱନି । ତାହା ସାଥେ ସାଥେ ହସ୍ତିନାପୁର ରାଜଭବନରେ ମହାଦ୍ୱାରର ଉଭୟ ପାର୍ଶ୍ୱରେ ରଖା ଯାଇଥିବା ବିରାଟ ଭୂମିଦୁନ୍ଦୁଭି ଦିଓଟିର ବଜ୍ର ନିର୍ଘୋଷ । ସାଥେ ସାଥେ ତାଳ ଦେଇ ଗର୍ଜି ଉଠୁଥାଏ ଅଭିଯାତ୍ରୀ ସେନାବଳ ନିକଟରେ ଥିବା କ୍ଷୁଦ୍ର କ୍ଷୁଦ୍ର ଦୁନ୍ଦୁଭିଟିମାନ । ବୃଷଭର ଲାଞ୍ଜ ପିଟି ବଜାଯାଉଥିବା ଏଇ ଦୁନ୍ଦୁଭିଗୁଡ଼ିକର ଶବ୍ଦ ଜଣାପଡୁଥାଏ ଶିବଙ୍କ ପ୍ରଳୟକାଳୀନ ମହାତାଣ୍ଡବ ଅବସରରେ ତାଙ୍କ ବୃଷଭର ରହି ରହି ଉଠୁଥିବା ଗୁରୁ ଗୁରୁ ଗର୍ଜନ ଭଳି । ଅତି ହିଁ ଭୀତିପ୍ରଦ ।

ସହସା ମୋ' ସୈନ୍ୟବାହିନୀ ମଧ୍ୟରୁ ଆକାଶକୁ ଥରାଇ ଦେଇ ଉଠିଲା ଜୟନାଦ, ''ଅଙ୍ଗରାଜ କର୍ଣ୍ଣଙ୍କର ଜୟ !'' ତାହା ସହିତ ସମତାଳ ଦେଇ ଭାଟମାନଙ୍କ ସ୍ତୁତିଗାନର ମିଳିତ କଣ୍ଠସ୍ୱର, ''ଜୟତୁ ଜୟତୁ ଅଙ୍ଗରାଜ କର୍ଣ୍ଣ.... ଜୟତୁ...''

ଧୀରେ ଧୀରେ ମୋ' ରଥଚକ୍ରଗୁଡ଼ିକ ଗଡ଼ିଚାଲିଲା ହସ୍ତିନାପୁରର ରାଜଦାଣ୍ଡରେ । ପରେ ପରେ ଚାରି ଅକ୍ଷୌହିଣୀ ସୈନ୍ୟଙ୍କର ଦୀର୍ଘ ପଙ୍‌କ୍ତି । ହସ୍ତିନାପୁରର ବିଶାଳ ବୁକୁତଟରେ ପଡ଼ିଥିବା ଚିତ୍ରିତ ଉତ୍ତରୀୟଟିଏ ଯେମିତି । ନବୀନ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଆଗେଇ ଚାଲିଲା ମୋର ରୋମାଞ୍ଚକ ଯୁଦ୍ଧଯାତ୍ରା । ମୁଁ ଇତିହାସ ସୃଷ୍ଟି କରୁଥିଲି କି ଆଗାମୀ ଦିନର ଇତିହାସ ମତେ ପରିହାସ କରୁଥିଲା ତାହା ଅବଶ୍ୟ ଜାଣି ନ ଥିଲି । କେବଳ ଆଗେଇ ହିଁ ଚାଲିଥିଲି । ମନ୍ତ୍ରମୁଗ୍ଧ ସର୍ପଟିଏ ଭଳି ସମ୍ମୋହିତ ମନଃସ୍ଥିତି ନେଇ । ଯଶଃ ଓ କୀର୍ତ୍ତି ଅର୍ଜନର ନିଶାରେ ମାତାଲ ହୋଇ ।

ପ୍ରଥମ ଅଭିଯାନର ଆରମ୍ଭ କାମ୍ପିଲ୍ୟ ରାଜ୍ୟରୁ । ମନେପଡୁଥାଏ ବିଗତ କେତେ ଦିନ ତଳର ସ୍ମୃତି । ଏଇଠି ସ୍ୱୟଂବରସଭାରେ ମତେ ପାଞ୍ଚାଳୀ କରିଥିଲେ ଅପମାନିତ । ସାମାନ୍ୟ ସୂତପୁତ୍ର ବୋଲି କହି କରିଥିଲେ ଭର୍ତ୍ସନା । ତାହାର ପ୍ରତିଶୋଧ ନେବାପାଇଁ ରକ୍ତ ମୋର ଟକ-ମକ । ଯୁଦ୍ଧ ପୂର୍ବରୁ ସଂବାଦ ପଠାଇଲି ରାଜା ଦ୍ରୁପଦଙ୍କ ପାଖକୁ ବିନା ଯୁଦ୍ଧରେ ଅଧୀନତା ସ୍ୱୀକାର କରିବାପାଇଁ । ଦୂତ ମୋର ଫେରିଆସି ଜଣାଇଲା, ''ହେ ଅଙ୍ଗରାଜ ! ଆପଣଙ୍କ ପ୍ରସ୍ତାବ ସେମାନେ ପ୍ରତ୍ୟାଖ୍ୟାନ କଲେ । ଯୁବରାଜ ଧୃଷ୍ଟଦ୍ୟୁମ୍ନ ତ ରାଗରେ ନିଆଁ । କହିଲେ....'' ଅବଶିଷ୍ଟ କଥା କହିବାକୁ ସଂକୁଚିତ ସେ । ସାହସ ନ ଥାଏ ହୁଏତ ।

ତା'କୁ ଉତ୍ସାହିତ କରିବାକୁ ଯାଇ କହିଲି, ''କହ ଦୂତ, କହ କ'ଣ କହିଲେ ସେ ? ନିର୍ଭୟରେ ସବୁ କଥା କହିଯାଅ ।''

''କହିଲେ – ସାମାନ୍ୟ ସୂତପୁତ୍ରର ଏଭଳି ଆସ୍ଫାଳନ ! କ'ଣ ଜନ୍ମଜାତ କବଚକୁଣ୍ଡଳ ପାଇଛି ବୋଲି ନିଜକୁ ଏମିତି ବୀର ବୋଲି ମନେ କରୁଛି ? ବାଘ ଘରକୁ ଆସି ମୃଗଟାଏ ବୃଥା ନାଟ କରିବାର ଉଦ୍ୟମ କରୁଛି । ହାଃ ! ହାଃ ! ହାଃ ! ହାଃ ! ଏହା କହି ଅଟ୍ଟହାସରେ ଉଡ଼ାଇଦେଲେ ମୋ' କଥାକୁ । ଆଉ ଯୁଦ୍ଧ ପାଇଁ ଆହ୍ୱାନ କଲେ ଆପଣଙ୍କୁ ।'' ସାହସ ସଞ୍ଚୟ କରି କହିଲା ସେ ।

କ୍ରୋଧାନ୍ଧ ହୋଇ ହଠାତ୍ କହିପକାଇଲି, ''ଆଚ୍ଛା, ହେଉ । ଦେଖିବା କେତେ ବୀରତ୍ୱ ଅଛି ତା'ଠାରେ ? ଏଇ ମୋ' କବଚ-କୁଣ୍ଡଳ ଯେ କେବଳ ଦୀପ୍ତିରେ ଜଳିବାପାଇଁ ନୁହେଁ ଏବଂ ଆବଶ୍ୟକ ହେଲେ ଯେ ଶତ୍ରୁକୁ ଜାଳିଦେବ, ସେ କଥା ମଧ ଦେଖାଇଦେବି ମୁଁ ।''

ପାଞ୍ଚାଳ ଉପରେ ଆକ୍ରମଣ କରିବାପାଇଁ ଦେଲି ଆଦେଶ ।

ମୋ' ଆଦେଶ ସଙ୍ଗେ ସଙ୍ଗେ ହେଲା ପାଳିତ । ଆମ ପରାକ୍ରମୀ ସୈନ୍ୟବାହିନୀ ଚାରିଦିଗରୁ ଘେରାଉ କରିନେଲେ କାମ୍ପିଲ୍ୟ ନଗରୀକୁ । ଘୋର ଯୁଦ୍ଧ ଲାଗିଗଲା ଦୁଇ ପକ୍ଷ ମଧ୍ୟରେ । ରକ୍ତର ସ୍ରୋତରେ କାମ୍ପିଲ୍ୟ ନଗରୀ ପରିସ୍ନାତ । ପରିଶେଷରେ ଧୃଷ୍ଟଦ୍ୟୁମ୍ନ ହେଲେ ବନ୍ଦୀ । ବୃଦ୍ଧ ରାଜା ଦ୍ରୁପଦ ଅତି ବ୍ୟସ୍ତ ହୋଇ ଏକତରଫା ଘୋଷଣା କଲେ ଯୁଦ୍ଧବିରତି । ଆସନ୍ନ ପରାଜୟକୁ ସ୍ପଷ୍ଟ ଦେଖିପାରିଥିଲେ ସେ । ଆମ ସହିତ ସନ୍ଧି କରିବାକୁ ଇଚ୍ଛା ପ୍ରକାଶ କରି ମତେ ନିବେଦନ କଲେ, ''ହେ ଅଙ୍ଗରାଜ ! ରାଜକୁମାର ଧୃଷ୍ଟଦ୍ୟୁମ୍ନଙ୍କୁ ମୁକ୍ତି ଦିଅନ୍ତୁ । ତାହାର ବିନିମୟରେ କ'ଣ ଚାହାନ୍ତି କହନ୍ତୁ ।''

''ବିନିମୟରେ ଚାହେଁ କର । ଆପଣ ମହାରାଜ ଧୃତରାଷ୍ଟ୍ରଙ୍କୁ କର ଦେବେ । ତାଙ୍କ ଅଧୀନତା ସ୍ୱୀକାର କରିବେ । ଆପଣ ତ ମହାରାଜଙ୍କ ସମ୍ବନ୍ଧୀ । ତେଣୁ ଆପଣଙ୍କର ବିଶେଷ କିଛି କ୍ଷତି କରିବାକୁ ଚାହେଁନା ।'' ମୋ' ସର୍ତ୍ତ ଉପସ୍ଥିତ କରି କହିଲି ।

''ତଥାସ୍ତୁ । ମୁଁ ଏଥିରେ ସଂପୂର୍ଣ୍ଣ ସମ୍ମତ ।'' ମୋ' ପ୍ରସ୍ତାବରେ ସ୍ୱୀକୃତି ଦେଲେ ସେ । ତାହା ପରେ ଧୃଷ୍ଟଦ୍ୟୁମ୍ନ ମୁକ୍ତ । ଏହି ସଂବାଦ ହସ୍ତିନାପୁରକୁ ପଠାଇଦେଇ ବାହାରିଲି ଅନ୍ୟ ରାଜ୍ୟ ଅଭିମୁଖରେ ।

ତାହା ପରେ କୋଶଳ ରାଜ୍ୟକୁ । ସେଠି ବି ପାଇଲି ବିଜୟ । ଏମିତି ବିଦେହ, ମଗଧ, ବଙ୍ଗ, ପ୍ରାଗ୍‌ଜ୍ୟୋତିଷ, ବିଦର୍ଭ, ଦଶାର୍ଣ୍ଣ, ଚେଦି, ମାଳବ, ଆନର୍ତ୍ତ, ସୁରାଷ୍ଟ୍ର ଆଦି ଅନେକ ଛୋଟ-ବଡ଼ ରାଜ୍ୟକୁ ଗଲି । ସର୍ବତ୍ର ମୋ' ବିଜୟର ଡକ୍‌କା । ବିଜୟର ବାନା ଫରଫର । କେଉଁଠି ଯୁଦ୍ଧ ତ ଆଉ କେଉଁଠି ରାଜାଙ୍କର କର ଦେବାପାଇଁ ସ୍ୱେଚ୍ଛାକୃତ ସମ୍ମତି । କଳିଙ୍ଗ ରାଜ୍ୟକୁ ବି ଯାଇଥିଲି । ତାହା ତ ଦୁର୍ଯ୍ୟୋଧନଙ୍କ ଶ୍ୱଶୁରଙ୍କ ରାଜ୍ୟ । ତେଣୁ ସେଠାରେ ଯୁଦ୍ଧ କରିବାକୁ ପଡ଼ି ନ ଥିଲା । ବରଂ କଳିଙ୍ଗରାଜ ଆମ ସୈନ୍ୟବାହିନୀକୁ କରିଥିଲେ ଉପଯୁକ୍ତ ସ୍ୱାଗତ ସତ୍କାର ଏବଂ କର ଦେବାପାଇଁ ଦେଇଥିଲେ ସମ୍ମତି । ଆହୁରି ବି ଅନେକ ରାଜ୍ୟକୁ ଯାଇଥିଲି ଏବଂ ବିଜୟ ହାସଲ କରିଥିଲି ସେଗୁଡ଼ିକ ଉପରେ । କିନ୍ତୁ ସେ ସବୁର ନାଁ ଏବେ ମନେପଡୁ ନାହିଁ । ମୋଟ ଉପରେ ପ୍ରାୟ ସାରା ଆର୍ଯ୍ୟାବର୍ତ୍ତକୁ ମୋ' ଅଭିଯାନର କ୍ଷେତ୍ର କରିପାରିଥିଲି ଆସନ୍ତା ବର୍ଷାଋତୁ ପୂର୍ବରୁ । ପୂର୍ବରୁ ଯୋଜନା ଥିଲା, ବର୍ଷା ଚାରିମାସ କୌଣସି ଗୋଟିଏ ବିଜିତ ରାଜ୍ୟରେ ନେବି ବିଶ୍ରାମ । ବର୍ଷା ପରେ ଅବଶିଷ୍ଟ ଅଭିଯାନ ସାରି ଫେରିଆସିବି ହସ୍ତିନାପୁରକୁ । କିନ୍ତୁ ଭାଗ୍ୟ ମୋର ଉଜ୍ଜ୍ୱଳ । ଗୋଟିଏ ଅଭିଯାନ ବର୍ଷରେ ହିଁ ଜିଣିଗଲି ସମଗ୍ର ଆର୍ଯ୍ୟାବର୍ତ୍ତକୁ । ତାହା ପରେ ଆରମ୍ଭ ମୋର ହସ୍ତିନାପୁରକୁ ପ୍ରତ୍ୟାବର୍ତ୍ତନ । ସାଥିରେ ଶତ ଶତ ଶକଟରେ ପରିପୂର୍ଣ୍ଣ ବିଜିତ ରାଜ୍ୟମାନଙ୍କରୁ ମିଳିଥିବା ଧନ, ରତ୍ନ, ମଣି, ମାଣିକ୍ୟ ଆଦି ଅନେକ ଉପଢ଼ୌକନ ।

ଆଉ ମାତ୍ର ଅଳ୍ପ ଦିନ ପରେ ବର୍ଷାଋତୁର ଆରମ୍ଭ । ତାହା ପରେ ରାସ୍ତାଘାଟ ହେବ ଅଗମ୍ୟ । ଆଉ ଫେରିହେବ ନାହିଁ । ତେଣୁ ଶୀଘ୍ର ଶୀଘ୍ର ଫେରିବା ଆରମ୍ଭ କରିଦେଲି । ରଥଚକ୍ରଗୁଡ଼ିକର ଘର୍ଘର ନାଦରେ ଗଗନପବନକୁ ମୁଖରିତ କରିଦେଇ ଆମ ସେନାଦଳ ଫେରିବାକୁ ଲାଗିଲେ ପ୍ରିୟ ହସ୍ତିନାପୁର ଅଭିମୁଖରେ । ସମସ୍ତେ ଗୃହାଭିମୁଖୀ । ପ୍ରିୟଜନମାନଙ୍କୁ ଦେଖିବାପାଇଁ ସମସ୍ତଙ୍କ ମନ ନିରନ୍ତର ଉଦ୍‌ବେଗରେ ଉଚ୍ଛଳ । ହସ୍ତିନାପୁର ମାଟିର ଗନ୍ଧ ଆକୃଷ୍ଟ କରୁଥାଏ ସମସ୍ତଙ୍କୁ କି ଏକ ମୋହକ ଶକ୍ତି ବଳରେ ! ଆମେ ଗତିକୁ ଅଧିକ ଅଧିକ କରୁଥାଉ ତ୍ୱରାନ୍ୱିତ ।

ପରିଶେଷରେ ସ୍ପର୍ଶ କଲି ହସ୍ତିନାପୁରର ମହାଦ୍ୱାରକୁ । ତିଥିଟି ଅତି ଶୁଭ । ଜ୍ୟେଷ୍ଠ ପୂର୍ଣ୍ଣିମାର ତିଥି । ଏଇ ତିଥିରେ ବିଜୟର ଶୁଭ ସଂବାଦ ଧରି ଫେରି ଆସିବାଟା ଏକ ବିଚିତ୍ର ଯୋଗାଯୋଗ । ସମସ୍ତଙ୍କ ମନ ବିଜୟନାଦରେ ଉଲ୍ଲସିତ । ଅଭିଯାତ୍ରୀମାନଙ୍କର ଓ ନାଗରିକମାନଙ୍କର ବି । ଅନ୍ୟମାନଙ୍କ ସହିତ ସ୍ୱୟଂ କୁଳବୃଦ୍ଧ ପିତାମହ ଭୀଷ୍ମ ମତେ ସ୍ୱାଗତ କରିନେଲେ । ତାଙ୍କୁ ପ୍ରଣାମ କରିବା ଅବସରରେ ସେ କହିଲେ, ‘‘ବିଜୟ ଲାଗି ତୁମକୁ ସ୍ୱାଗତ କରୁଛି ଅଙ୍ଗରାଜ କର୍ଣ୍ଣ । ଦୀର୍ଘଜୀବୀ ହୁଅ ।’’

ଭାରି ଭଲ ଲାଗିଲା ମତେ ତାଙ୍କ କଥା । ଜୀବନରେ ଏଇ ପ୍ରଥମଥର ପାଇଁ ତାଙ୍କଠାରୁ ସୂତପୁତ୍ରର କଟାକ୍ଷଭରା ସଂବୋଧନ ଶୁଣି ନ ଥିଲି । ସମ୍ଭବତଃ ବିଜୟର ଏଇ ଶୁଭ ଅବସରରେ ସେ ଚାହିଁ ନ ଥିଲେ ମୋ’ ହୃଦୟରେ ଆଘାତ ଦେବାପାଇଁ । ସେଦିନ ଯେଉଁ ଉଚ୍ଛ୍ୱସିତ ସଂବର୍ଦ୍ଧନା ପାଇଲି ସେଥିରେ ଭୁଲିଗଲି ଅତୀତରେ ଚିତ୍ରସେନ ଗନ୍ଧର୍ବଙ୍କଠାରୁ ପାଇଥିବା ପରାଜୟକୁ ଓ ତଜ୍ଜନିତ ଗ୍ଲାନିକୁ । ଜୀବନ ମୋ’ର ପୁଣି ଲହରାଇ ଉଠିଲା ନବୀନ ଉତ୍ସାହରେ ! ମୁଁ ଆଗକୁ ବଢ଼ିବି ! ଆହୁରି ଆଗକୁ ବଢ଼ିବି ! ନୂତନ ଇତିହାସ ସୃଷ୍ଟି କରିବି !!

## ସତଷଠି

ଦିଗ୍‌ବିଜୟରୁ ଫେରିବା ପରେ ପ୍ରଥମ କେତେ ମାସ କଟିଗଲା ସୁଖ-ଆନନ୍ଦ ମଧ୍ୟରେ । ପ୍ରାପ୍ତିର ସନ୍ତୋଷ ମଧ୍ୟରେ । ଅପ୍ରାପ୍ତ ବସ୍ତୁର ପ୍ରାପ୍ତି ଲାଗି ଉଦ୍ୟମ ଶିଥିଳ । ଦୀର୍ଘ କେତେ ମାସର ସଂଘର୍ଷ ପରେ ମାନସିକ ଶାନ୍ତିର ଉପଭୋଗ ପୂର୍ଣ୍ଣ ବିଶ୍ରାମ ।

ଦିନକର ଘଟଣା । ସେଦିନ ଥାଏ ଆଶ୍ୱିନର ଶୁକ୍ଳ ଚତୁର୍ଦ୍ଦଶୀ ତିଥି । ଧରଣୀ ସାରା ଖଳ ଖଳ ଜ୍ୟୋତ୍ସ୍ନାର ପ୍ରବାହ । ବର୍ଷା ଚାଲିଯାଇଥାଏ । ଶୀତ ଆସି ନ ଥାଏ । ଏଇ ମଧ୍ୟବର୍ତ୍ତୀ ସମୟରେ ନିଶୀଥଟି ଥାଏ ଖୁବ୍ ସ୍ୱାଦ୍ୟ ଓ ହୃଦ୍ୟ । ଖୁବ୍ ଉପଭୋଗ୍ୟ । ରାଜୋଦ୍ୟାନରୁ ଆସୁଥିବା ଶରଦୀୟ କୁସୁମମାନଙ୍କର ମହକ ଉଚ୍ଚାଟ କରିଦେଉଥାଏ ରାଜଭବନକୁ । ମୋ’ କକ୍ଷର ଚାରିକୋଣରେ ଚାରୋଟି ରତ୍ନ ପ୍ରଦୀପ ଦୀପ୍ତ । ସୁବାସିତ ତୈଳର ଗନ୍ଧରେ ସାରା କକ୍ଷ ଆମୋଦିତ । ହାତୀଦାନ୍ତର ପଲଙ୍କରେ ସୁସଜ୍ଜିତ ତୂଳିତଳ୍ପ । ଏମିତି ଏକ ମୁଗ୍ଧ ପରିବେଶରେ ଦିବସର ସମସ୍ତ କାର୍ଯ୍ୟ ସାରି ଗଲି ଶୋଇବାକୁ । ଆଜି ଟିକିଏ ଅଧିକ

କ୍ଲାନ୍ତ । କାରଣ ରାଜକାର୍ଯ୍ୟ ନେଇ ଅଧିକ ଭାବରେ ଥିଲି ବ୍ୟସ୍ତ । ଶଯ୍ୟା ଧରିବାର ଅଳ୍ପ କିଛି ସମୟ ପରେ ଆଶ୍ରୟ ନେଲି ନିଦ୍ରାଦେବୀଙ୍କ କୋଳରେ । ଧୀରେ ଧୀରେ ନିଦ୍ରା ଗାଢ଼ତର ହେବାକୁ ଲାଗିଲା । ତାହା ପରେ ଦୀର୍ଘ କିଛି ସମୟ ପାଇଁ ସୁଷୁପ୍ତି !

ପାହାନ୍ତା ପହରକୁ ଦେଖିଲି ଏକ ବିଚିତ୍ର ସ୍ୱପ୍ନ । ସ୍ୱପ୍ନରେ ଦେଖିଲି, ସମୟ ପ୍ରାତଃକାଳ । ବାଳସୂର୍ଯ୍ୟ ଆକାଶର ଭାଲପଟରେ ସିନ୍ଦୂରବିନ୍ଦୁ ଭଳି ଶୋଭମାନ । ଗଙ୍ଗାର ଛଳ ଛଳ ପ୍ରବାହରେ ତାଙ୍କ ପୀତଲୋହିତ ରଶ୍ମି ପଡ଼ି କରୁଛି ଚିକ୍ ଚିକ୍ । ତାହାରି ତେଜରେ ମୋହିତ ହୋଇ ଦଳକୁ ଦଳ ମାଛମାନେ ପହଁରୁଛନ୍ତି । ଗଙ୍ଗାତଟସ୍ଥ ଚମ୍ପକବୃକ୍ଷର ଶାଖାରେ ପ୍ରଭାତୀ ବିହଗର ସ୍ୱାଗତିକା ଧ୍ୱନି । ମୁଁ ପ୍ରାତଃସ୍ନାନ ସାରି ସୂର୍ଯ୍ୟଦେବଙ୍କୁ ପ୍ରଣାମ କରିବା ଅବସରରେ ତାଙ୍କ ଉଦ୍ଦେଶ୍ୟରେ ଅର୍ଘ୍ୟ ଅର୍ପଣ କରି ଗାଉଛି ସ୍ତୁତିମନ୍ତ୍ର –

ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ ।
ହିରଣ୍ୟେନ ସବିତା ରଥେନାଃ ଦେବୋ ଯାତି ଭୁବନାନି ପଶ୍ୟନ୍ ।
ଆଦିତ୍ୟାୟ ନମଃ ।

ହଠାତ୍ ଦେଖିଲି ସୂର୍ଯ୍ୟମଣ୍ଡଳରେ ପ୍ରତିଭାତ ମୋର ଚିରପରିଚିତ ଆଦ୍ୟଗୁରୁଙ୍କ ମୁଖମଣ୍ଡଳ । କନକ ମୁଖମଣ୍ଡଳରେ ଛଳ ଛଳ ଦିବ୍ୟ ହସ ଓ ଆଖିକଣରେ ଅମୃତଭରା ଚାହାଣି । ଆଶୀର୍ବାଦ-ମୁଦ୍ରାରେ କର ତୋଳି ମତେ କହିଲେ, ''ଶୁଣ ବତ୍ସ କର୍ଣ୍ଣ ! ତୁମପାଇଁ ବିଷମ ପରୀକ୍ଷାର ସମୟ ଏବେ ଆସିଯାଇଛି ।''

''ସାରା ଜୀବନ ତ ମୋର ପରୀକ୍ଷାରେ ହିଁ କଟିଗଲା । ଏବେ ପୁଣି କି ପରୀକ୍ଷା ପ୍ରଭୋ ?'' ମୋର ବିନୀତ ପ୍ରତିପ୍ରଶ୍ନ ।

''ତୁମ ଦାନର ପରୀକ୍ଷା । ତାହା ସହିତ ତୁମ ଜୀବନ-ମରଣର ସଂପର୍କ । ତେଣୁ ଏକ ସଂକଟମୟ ପରୀକ୍ଷା ।'

''ମୋ'ଠାରେ ଆତ୍ମବଳ ଦିଅନ୍ତୁ ପ୍ରଭୋ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ।'' ପ୍ରାର୍ଥନାଭରା କଣ୍ଠରେ କହିଲି । ପୁଣି ପଚାରିଲି, ''ତେବେ କହନ୍ତୁ ପରୀକ୍ଷାର ରୂପରେଖଟି କ'ଣ ?''

''କାଲି ତୁମ ପାଖକୁ ଆସିବେ ଜଣେ ବୃଦ୍ଧ ବ୍ରାହ୍ମଣ । ମାଗିବେ ଏକ ବିଚିତ୍ର ଦାନ ।''

''ମାଗନ୍ତୁ । ଯାହା ମାଗିବେ ଦେଇଦେବି । ଏପରିକି ମୋ' ଜୀବନ ମାଗିଲେ ବି ଦେଇଦେବି । ଏଇ ସାମାନ୍ୟ ପରୀକ୍ଷା ପାଇଁ ମତେ ଏମିତି ସତର୍କ କରିଦେବାର କିଛି ହିଁ ନାହିଁ ଆବଶ୍ୟକତା ।'' ଅତି ସହଜ ଓ ଆତ୍ମବିଶ୍ୱାସଭରା କଣ୍ଠରେ କହିଲି ।

''ଅଛି ବତ୍ସ, ଅଛି । ଏ ପ୍ରାର୍ଥୀ ଜଣକ ଆଉ କେହି ନୁହନ୍ତି । ସ୍ୱୟଂ ଇନ୍ଦ୍ରଦେବ । ତୁମକୁ ଶକ୍ତିହୀନ କରିଦେବାର ଅଭିସନ୍ଧି ରଖିଛନ୍ତି ମନରେ । ଅର୍ଜୁନଙ୍କ ସହିତ ତୁମର ଯେ ଦିନେ ନା ଦିନେ ଯୁଦ୍ଧ ହେବ ଏ ବିଷୟରେ ସେ ସ୍ଥିରନିଶ୍ଚୟ । ତେଣୁ ଅର୍ଜୁନଙ୍କ ପ୍ରାଣ ବଞ୍ଚାଇବା

ଉଦ୍ଦେଶ୍ୟରେ ଚାହାନ୍ତି ତୁମକୁ ଦୁର୍ବଳ କରିଦେବାପାଇଁ । ତୁମର ସତର୍କ ରହିବା ଆବଶ୍ୟକ ।''

''ମୋର ତ ବଡ଼ ଭାଗ୍ୟ ହେବ ସେଥିରେ ପ୍ରଭୋ । କାରଣ ସ୍ୱୟଂ ଇନ୍ଦ୍ରଦେବ ହେବେ ମୋ' ନିକଟରେ ପ୍ରାର୍ଥୀ । ଆଉ ମୁକ୍ତର ହସ୍ତରେ ପୂରାଇବି ତାଙ୍କ ପ୍ରାର୍ଥନା । ଆଚ୍ଛା, କହନ୍ତୁ ତ ଦେଖି ଅର୍ଜୁନଙ୍କ ପାଇଁ ତାଙ୍କର ଏଭଳି ଦରଦ କାହିଁକି ? କ'ଣ ଅର୍ଜୁନ ତାଙ୍କର ଜଣେ ବଡ଼ ଭକ୍ତ ନା ଆଉ କିଛି କାରଣ ଅଛି ?'' ମୋର ଜିଜ୍ଞାସାଭରା ପ୍ରତିପ୍ରଶ୍ନ ।

''ଭକ୍ତ ତ ନିଶ୍ଚୟ । ତାହା ଛଡ଼ା ଆଉ ଗୋଟିଏ ବି ବିଶେଷ କାରଣ ଅଛି । ତାହା ଅତ୍ୟନ୍ତ ଅନ୍ତରଙ୍ଗ ଓ ଗୋପନୀୟ ।''

''କ'ଣ ସେହି କାରଣ ?''

''କହିଲି ପରା ଅତ୍ୟନ୍ତ ଅନ୍ତରଙ୍ଗ ଓ ଗୋପନୀୟ ବୋଲି । ଖୁବ୍ ବ୍ୟକ୍ତିଗତ । ତୁମକୁ ବର୍ତ୍ତମାନ କହିପାରିବି ନାହିଁ । କିନ୍ତୁ ସମୟ ଆସିଲେ ନିଜେ ସବୁ ଜାଣିପାରିବ । ତେବେ ଗୋଟିଏ ପରାମର୍ଶ ଏବେ ଦେଉଛି । ତାହା ନିଶ୍ଚିତ ଭାବରେ ପାଳିବ । ସେ ଯେଉଁ ଦାନ ଚାହିଁବେ ତାହା ଦେବ ନାହିଁ ।''

''କାହିଁକି ? କି ଦାନ ସେ ଚାହିଁବେ ?'' ମୋର ଉତ୍କଣ୍ଠିତ ପ୍ରଶ୍ନ ।

''ତୁମ ଜନ୍ମଜାତ କବଚ-କୁଣ୍ଡଳର ଦାନ ।'' ତାଙ୍କର ସଂକ୍ଷିପ୍ତ ଉତ୍ତର ।

''ହେ ପ୍ରଭୋ ! ମୋ' ପକ୍ଷରେ ତ ପ୍ରାର୍ଥୀଙ୍କ ପ୍ରାର୍ଥନାକୁ ପୂରଣ ନ କରିବା ଅସମ୍ଭବ । ତାହା ଛଡ଼ା କବଚ-କୁଣ୍ଡଳ ତ ମୋ' ନିଜସ୍ୱ ସମ୍ପତ୍ତି । ତାହା ମାଗିଲେ ନ ଦେବି କେମିତି ?'' ମୋର ଅନୁନୟଭରା ପ୍ରତିପ୍ରଶ୍ନ ।

''ତାହା କଲେ ତୁମେ ହେବ ଶକ୍ତିହୀନ । ନିଜ ଜୀବନ ହେବ ବିପନ୍ନ । ତେଣୁ ପୁଣି ଥରେ ଭାବିଦେଖ ବତ୍ସ ! ତୁମ ଭଲ ପାଇଁ କହୁଛି ।''

''ସେଥିପାଇଁ ଅଶେଷ ଋଣୀ ମୁଁ ପ୍ରଭୋ ! ଆପଣଙ୍କ ଶୁଭ ପରାମର୍ଶକୁ କିନ୍ତୁ ରକ୍ଷା କରିପାରୁ ନାହିଁ । ତେଣୁ କ୍ଷମା ଦେବେ । ଇନ୍ଦ୍ର ହୁଅନ୍ତୁ ବା ଯେ କେହି ହୁଅନ୍ତୁ, ମୋ' ଆଗରେ ହାତ ପତାଇ ଦାନ ମାଗିଲେ ମୁଁ ମନା କରିଦେଇପାରିବି ନାହିଁ । କର୍ଣ୍ଣର ଜନ୍ମ ତ କେବଳ ଦେବାପାଇଁ, କିଛି ନେବାପାଇଁ ନୁହେଁ । ଏ ପର୍ଯ୍ୟନ୍ତ ସେ ନେଇଆସିଛି ସମାଜର ଉପେକ୍ଷା, ଅବହେଳା ଓ ଅପମାନ । ନୀଚକୁଳରେ ଜନ୍ମ ହେବାର ନିଷ୍ଠୁର ଫଳଶ୍ରୁତି । ତାହା ନେଇଚାଲିଥିବ ପଛକେ ପ୍ରାର୍ଥୀଙ୍କୁ ତାଙ୍କ ଈପ୍ସିତ ଦାନ ଦେଇଚାଲିଥିବ । କେବେହେଲେ ନିରାଶ କରିବ ନାହିଁ । ''ମୋ' କଣ୍ଠରେ ସଂବେଗଭରା ବାଣୀ ଛଳଛଳେଇ ଉଠୁଥିଲା । ଆଦ୍ୟଗୁରୁଙ୍କ ପରାମର୍ଶକୁ ଗ୍ରହଣ କରିପାରୁ ନାହିଁ ବୋଲି ଥିଲି କ୍ଷୁବ୍ଧ ।

''ଯଦି ଦାନ ଦେବ ବୋଲି ଠିକ୍ କରିଛ, ତା'ହେଲେ ଶୁଣ ବତ୍ସ, ମୋର ଆଉ ଗୋଟିଏ ପରାମର୍ଶ । ଇନ୍ଦ୍ରଙ୍କଠାରୁ ତାଙ୍କ ମହାଶକ୍ତିଟିକୁ ମାଗିନେବ । ତା' ହେଲେ ତୁମେ ହୋଇଉଠିବ ଶକ୍ତିମାନ୍ ।'' ମୋ' ହିତ ଲାଗି ତାଙ୍କ ବାଣୀରେ ଉଦ୍‌ବେଗର ସନ୍ତରଣ ।

ଭବିଷ୍ୟତ୍‌ରେ ଅର୍ଜୁନଙ୍କ ସହିତ ଯେଉଁ ସମ୍ଭାବ୍ୟ ଅସ୍ତ୍ରସ୍ପର୍ଦ୍ଧାର ଆଶା ପୋଷଣ କରିଛି ହୃଦୟରେ, ସେଥିରେ ମୁଁ କିପରି ପ୍ରତିସ୍ପର୍ଦ୍ଧୀଙ୍କ ସମକକ୍ଷ ଯୋଦ୍ଧା ଭାବରେ ଠିଆ ହେବି, ସେଥିପାଇଁ ପ୍ରବଳ ଆଗ୍ରହୀ ସେ । ଜଣେ ଭକ୍ତ ଲାଗି ପୁଣି ଏତେ ଦରଦ ! ଏତେ ଅନୁକମ୍ପା ! ଏହା ଭାବିଲା ବେଳେ ହୃଦୟ ମୋର ପୂରିଉଠୁଥିଲା ଆନନ୍ଦରେ, କୃତଜ୍ଞତାରେ । ଶିର ମୋର ଆପେ ଆପେ ନଇଁ ଆସୁଥିଲା ବିନୟରେ । କହିଲି, "ହେ ଦେବ ! ଏ ପର୍ଯ୍ୟନ୍ତ ତ ମୁଁ କାହାଙ୍କୁ ହାତ ପତାଇ କିଛି ମାଗି ନାହିଁ । ଇନ୍ଦ୍ରଙ୍କୁ ମହାଶକ୍ତି ମାଗିବି କେମିତି ? ହେଲେ, ସେ ଯଦି ସ୍ୱେଚ୍ଛାରେ ବରସ୍ୱରୂପ ମତେ ମହାଶକ୍ତିଟିକୁ ଦେବେ, ତେବେ ତାହା ଗ୍ରହଣ କରିବାରେ କିଛି ଆପତ୍ତି ରହିବ ନାହିଁ ମୋର ।"

"ପୁଣି ଥରେ ଭାବିଦେଖ ବତ୍ସ । ଜୀବନ ତୁମର ବିପନ୍ନ ।" ତାଙ୍କର ପୁନର୍ବାର ମୋ' ଉଦ୍ଦେଶ୍ୟରେ ସାବଧାନୀ ବାଣୀ ।

"ଆଉ ଭାବିବାର ଆବଶ୍ୟକତା ନାହିଁ ପ୍ରଭୋ । ବହୁ ଭାବିଚିନ୍ତି ଆଦରି ନେଇଛି ଗୋଟିଏ ଧର୍ମକୁ । ଦାନ କରି ଚାଲିଥିବି । ସେଥିରୁ ପଦେ ହେଲେ ଟଳିବି ନାହିଁ ।" କଣ୍ଠସ୍ୱରରେ ମୋର ଆବେଗାକୁଳ ଦୃଢ଼ତା ।

ଆଶ୍ଚର୍ଯ୍ୟ-ଚକିତ ସୂର୍ଯ୍ୟଦେବ । କହିଲେ, "ବଡ଼ ଅଦ୍ଭୁତ ତୁମେ ବତ୍ସ କର୍ଣ୍ଣ ! ଧନ୍ୟ ତୁମର ଧର୍ମନିଷ୍ଠା ! ତୁମେ ଦୀର୍ଘାୟୁ ହୁଅ ।"

"କେବଳ ଦୀର୍ଘାୟୁ ହେଲେ କ'ଣ କରିବି ପ୍ରଭୋ ଯଦି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦାନ କରିପାରୁ ନ ଥିବି ? ମତେ ତେଣୁ ଆଶୀର୍ବାଦ କରନ୍ତୁ, ମୁଁ ଯେପରି ଦାନ କରିବାର ସାମର୍ଥ୍ୟ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଧରି ରଖିଥାଏ ।"

"ତଥାସ୍ତୁ । ମହାଦାନୀ ଭବ ।" ହସି ହସି କହିଲେ ସେ ଏବଂ ପର ମୁହୂର୍ତ୍ତରେ ଲୀନ ହୋଇଗଲେ ସୂର୍ଯ୍ୟଗୋଲକ ମଧ୍ୟରେ ।

ହଠାତ୍ ନିଦ ମୋର ଭାଙ୍ଗିଗଲା ଚାଉଁକରି । ଚମକି ପଡ଼ିଲି ଏ ସ୍ୱପ୍ନରେ । ଆହୁରି ଚମକିତ ହେଲି କକ୍ଷ ମଧ୍ୟରେ ଥିବା ଦିବ୍ୟ ଗନ୍ଧକୁ ଆଘ୍ରାଣ କରି । ଆଃ । କି ମନୋମୁଗ୍ଧକର ଗନ୍ଧ ! ସତେଯେମିତି ଶତ ପାରିଜାତ ଏକତ୍ର ବିକଶିତ ! ଅଥବା କେତୋଟି ମୁହୂର୍ତ୍ତ ପୂର୍ବରେ କକ୍ଷ ମଧ୍ୟରେ ରଚିତ ହୋଇଯାଇଛି ଶତ କସ୍ତୁରିମୃଗଙ୍କ ମିଳନମେଳା ! ଏହା ସ୍ୱପ୍ନ ନା ସତ୍ୟ ବୁଝିବାରେ ଥିଲି ଏକାନ୍ତ ଅସମର୍ଥ । ମନରେ ମୋର ଦୃଢ଼ ଧାରଣା, ସତରେ ହୁଏତ ସୂର୍ଯ୍ୟଦେବ ଆସିଥିଲେ ମୋ' କକ୍ଷକୁ ସମସ୍ତଙ୍କ ଅଗୋଚରରେ ଅତି ଗୋପନରେ । ଆଉ ସ୍ୱପ୍ନରେ ଦେଖା ଦେଇ କହି ଯାଇଛନ୍ତି ଏତେ କଥା । ମୁଁ ଯେ କିପରି ବାବଦୂକ ଭଳି ଏତେ ଏତେ ଉତ୍ତର ଦେଇପାରିଥିଲି ତାଙ୍କୁ ତାହା ଭାବି ଖୁବ୍ ଆଶ୍ଚର୍ଯ୍ୟ ହେଲି ।

ଗବାକ୍ଷର ସୀମାକୁ ଲକ୍ଷ୍ୟ କଲି । ତାହା ମଧ୍ୟ ଦେଇ ଉଦୟମୁଖୀ ସୂର୍ଯ୍ୟଙ୍କ ଆଦ୍ୟ କିରଣର ଆଭାସ କ୍ଷୀଣଧାରାରେ ପଶି ଆସୁଥିଲା କକ୍ଷ ମଧ୍ୟକୁ ।

"ଆରେ ! ଏତେ ଡେରି ହୋଇଗଲାଣି !" ଏହା କହି ଶଯ୍ୟାତ୍ୟାଗ କଲି ଓ ଲାଗିଗଲି ନିତ୍ୟକର୍ମରେ । ଅନେକ କିଛି ସମୟ ଧରି ସେଇ ନିଶୀଥ-ସ୍ୱପ୍ନଟି କୁତୁ କୁତୁ କରିଦେଉଥିଲା

ମୋ' ମନକୁ । ମନେ ମନେ ଭାବୁଥାଏ, ପ୍ରକୃତ କ'ଣ ଏଇ ସ୍ୱପ୍ନ ସତ୍ୟରେ ପରିଣତ ହେବ ? ନା ଏହା ମୋ' ଅବଚେତନ ମନର ଏକ ବିକାର ?

## ଅଠଷଠି

"ମହାରାଜ ! ଏବେ ଚାଲନ୍ତୁ । ଦାନକାର୍ଯ୍ୟ ସମାପ୍ତ । ସମସ୍ତ ପ୍ରାର୍ଥୀ ଚାଲିଗଲେଣି । ଆଉ କେହି ନାହାନ୍ତି ।" ପରଦିନ ଦାନମଣ୍ଡପରେ ମତେ ନିବେଦନ କଲେ ସଂପୃକ୍ତ ଅମାତ୍ୟ । ମୁଁ କିନ୍ତୁ ଚାଲି ନ ଯାଇ ଠିଆ ହୋଇ ରହିଛି ସେମିତି ଅଚଳ ଭାବରେ । କିଛି ସମୟ ନୀରବ ରହିବା ପରେ କହିଲି, "କେମିତି ଯିବି ଅମାତ୍ୟବର ? ଏ ପର୍ଯ୍ୟନ୍ତ ଆଉ କିଏ କେହି ଜଣେ ହୁଏତ କେଉଁଠି ରହିଥାଇ ପାରନ୍ତି ।" ମୋର ସ୍ୱର ଗମ୍ଭୀର ।

ଅମାତ୍ୟ ଅପ୍ରସ୍ତୁତ ନିଜ ତ୍ରୁଟି ପାଇଁ । ଜିଭ କାମୁଡ଼ି ପକାଇଲେ । ମୁଁ ନିୟମ କରିଦେଇଥାଏ ଦାନକାର୍ଯ୍ୟ ଶେଷ ହେବା ପରେ ଆଉ କେହି ପ୍ରାର୍ଥୀ ଅଛନ୍ତି କି ନାହିଁ ବୋଲି ତିନି ଥର ପ୍ରଶ୍ନ ପଚରାଯିବ । କେହି ପ୍ରାର୍ଥୀ ନ ଆସିଲେ ଦାନକାର୍ଯ୍ୟ ସମାପ୍ତ ବୋଲି ଘୋଷଣା କରାଯିବ । ତାହା ପରେ ଯାଇ ଦାନମଣ୍ଡପକୁ ତ୍ୟାଗ କରିବି । କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଅମାତ୍ୟ ଭୁଲିଯାଇଥାନ୍ତି ତିନି ଥର ପ୍ରଶ୍ନ କରିବାକୁ ଓ ଦାନକାର୍ଯ୍ୟ ସମାପ୍ତ ବୋଲି ଘୋଷଣା କରିବାକୁ । ମୋର କିନ୍ତୁ ମନେ ଥାଏ । ସେଥିପାଇଁ ଛାଡୁ ନ ଥିଲି ସଭାମଣ୍ଡପ । କାଳେ କୌଣସି ପ୍ରାର୍ଥୀ ଆସି ଦାନ ନ ପାଇ ଫେରିଯିବେ ।

"ଭୁଲିଯାଇଥିଲି ମହାରାଜ । ଅନିଚ୍ଛାକୃତ ଅପରାଧ ପାଇଁ କ୍ଷମା ଦେବେ ।" ଅମାତ୍ୟଙ୍କ ବିନୟଭରା ସ୍ୱର ।

"ହଉ, ହଉ । ଏବେ ପଚାରନ୍ତୁ ।" ଅଳ୍ପ ହସି କହିଲି ।

ମନ୍ତ୍ରୀ ପଚାରିଲେ, "ଆଉ କେହି ପ୍ରାର୍ଥୀ ଅଛନ୍ତି ? ମହାରାଜ ଦାନବୀର କର୍ଣ୍ଣ ଠିଆ ହୋଇଛନ୍ତି ଦାନ ଦେବାପାଇଁ । କାହାର କିଛି ଦାନ ଆବଶ୍ୟକ ଥିଲେ ଦୟା କରି ଆସନ୍ତୁ ।"

ଦୁଇ ଥର ପଚାରିଲେ ଏମିତି । କାହାରି ପ୍ରତିକ୍ରିୟା ନାହିଁ । କେହି ଆସୁ ନାହାନ୍ତି । ତୃତୀୟଥରର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଜଣେ କାହାଙ୍କର ପ୍ରତିକ୍ରିୟା, "ମୁଁ ରହି ଯାଇଛି । ଅପେକ୍ଷା କରନ୍ତୁ ।" କଣ୍ଠସ୍ୱର କ୍ଷୀଣ । ଆଉ ସ୍ଖଳିତ ମଧ୍ୟ । ତାହା ସହିତ ମିଳିତ ଆଶ୍ରୟଯଷ୍ଟିର ଠକ୍ ଠକ୍ ଶବ୍ଦ । ଭାବିଲି, ପ୍ରାର୍ଥୀ କେହି ଜଣେ ବୃଦ୍ଧ ହେବେ ବୋଧହୁଏ । ଟିକିଏ ଦୂରରେ ରହିଯାଇଛନ୍ତି । ଉଦଗ୍ର ନୟନରେ ମୋର ତାଙ୍କ ପାଇଁ ଅପେକ୍ଷା । କିଛି ମୁହୂର୍ତ୍ତ ଅପେକ୍ଷା କଲା ପରେ ଦେଖାଗଲା ତାଙ୍କ ସ୍ୱରୂପ । ଅନୁମାନ ମୋର ଠିକ୍ । ପ୍ରକୃତରେ ସେ ଜଣେ ବୃଦ୍ଧ । ଯଷ୍ଟିକୁ ଆଶ୍ରୟ କରି ଧୀରେ ଧୀରେ ଚାଲୁଛନ୍ତି । କେଶ ଓ ଶ୍ମଶ୍ରୁ ଶୁକ୍ଳ । ଦନ୍ତ ସ୍ଖଳିତ । ଚର୍ମ ଗଳିତ । ବୟସର ଭାରରେ ଅବନମିତ ଶରୀର । ଦେହରେ ଶୋଭିତ ଯଜ୍ଞୋପବୀତ । ଶେଷକୁ ଆସି ଦାନ ମଣ୍ଡପ ନିକଟରେ ଠିଆ ହେଲେ । ମୁଁ ପ୍ରଣାମ କରିବାରେ ମତେ ଆଶୀର୍ବାଦ କଲେ ।

ପଚାରିଲି, ''ହେ ବ୍ରାହ୍ମଣବର ! କହନ୍ତୁ ଆପଣଙ୍କର କ'ଣ ପ୍ରାର୍ଥନା ? କି ଦାନ ଚାହାନ୍ତି ?''

''ମୋ' ଦାନ କିନ୍ତୁ ଅନ୍ୟମାନଙ୍କ ଦାନଠାରୁ ପୃଥକ୍ । ଦେଇପାରିବ ?''

''କାହିଁକି ନୁହେଁ ? କର୍ଣ୍ଣ ନିକଟରେ କିଛି ଅଦେୟ ନାହିଁ । ଆବଶ୍ୟକ ପଡ଼ିଲେ ସାରା ରାଜ୍ୟ ବି ଦେଇଦେବ ଏବଂ ଭିକ୍ଷୁକ ସାଜି ଏଠୁ ଚାଲିଯିବ । ବିନା ସଂକୋଚରେ ପ୍ରକାଶ କରନ୍ତୁ ଆପଣଙ୍କ ପ୍ରାର୍ଥନା ।''

''କ'ଣ ନିଜ ଜୀବନକୁ ଦେଇପାରିବ ?'' ତାଙ୍କର ତିର୍ଯ୍ୟକ୍ ଦୃଷ୍ଟି ମୋ' ପ୍ରତି । ବାଣୀ ମଧ୍ୟ ସମଧିକ ତିର୍ଯ୍ୟକ୍ ।

''ଆପଣଙ୍କର ଯଦି ତାହାହିଁ ପ୍ରାର୍ଥନା, ତେବେ କହନ୍ତୁ । ମୁଁ ଏଇ ସଙ୍ଗେ ସଙ୍ଗେ ଛିନ୍ନ ଶିରକୁ ନିବେଦନ କରୁଛି ଆପଣଙ୍କ ପାଦତଳେ ।'' ଦ୍ୱିଧାହୀନ ଓ ନିର୍ବିକାର ମୋ' ଉତ୍ତର । ସାମାନ୍ୟତମ ଉତ୍ତେଜନା ନାହିଁ । ଯେମିତି ଚିରାଚରିତ ଦାନଟିଏ ଦେବାକୁ ଯାଉଛି । କୋଷମୁକ୍ତ ଖଡ୍‌ଗ ଧରି ପ୍ରସ୍ତୁତ ମୁଁ ଜୀବନଦାନ ଦେବାପାଇଁ ।

ମୋ ଉଦ୍ୟମକୁ ବାରଣ କରିବାକୁ ଯାଇ ସେ କହିଲେ, ''ନାଇଁ ଅଙ୍ଗରାଜ କର୍ଣ୍ଣ, ମୁଁ ତାହା ଚାହେଁ ନା ।''

''ତେବେ କ'ଣ ଚାହାନ୍ତି ଆପଣ ?'' ମୋର ଜିଜ୍ଞାସୁ ପ୍ରଶ୍ନବାଚୀ ।''

''ତୁମ କବଚ ଓ କୁଣ୍ଡଳ ।'' ତାଙ୍କର ନିର୍ବିକାର ଅଥଚ ଦୃଢ଼ ଉତ୍ତର ।

''କିନ୍ତୁ କବଚ-କୁଣ୍ଡଳ ଯେ ମୋର ଜନ୍ମଜାତ । ତାହା ମୋ' ଦେହ ସହିତ ଚିରସଂଲଗ୍ନ । ଅସ୍ତ୍ରଦ୍ୱାରା ଉଦ୍‌ଭିନ୍ନ ନ କରି ତାହାକୁ ଦେଇପାରିବିବା କେମିତି ?''

''କେମିତି ଦେବ ସେ ଚିନ୍ତା ତୁମର ଅଙ୍ଗରାଜ । ତୁମେ ହିଁ ନିର୍ଣ୍ଣୟ କର ଉପାୟ । ମୋର କିନ୍ତୁ ସେହି ଦାନ ହିଁ ଆବଶ୍ୟକ ।''

''ତାହାର ବିନିମୟରେ ମୋର ସମସ୍ତ ଧନସମ୍ପତ୍ତି ସହିତ ସାରା ରାଜ୍ୟ ଦାନ ଦେଲେ ଆପଣ ଖୁସି ହେବେ କି ବ୍ରାହ୍ମଣବର ?''

''ନା, କଦାପି ନୁହେଁ । ମୋ'ର କିନ୍ତୁ ସେଇ ଗୋଟିଏ ଦାନ ହିଁ ଆବଶ୍ୟକ । ତୁମ କବଚ-କୁଣ୍ଡଳ ।'' ତାଙ୍କ କଣ୍ଠସ୍ୱର ଧୀରେ ଧୀରେ ହୋଇଉଠୁଥିଲା ଦୃଢ଼ତର ।

ଏଇ ଅଦ୍ଭୁତ ଦାନର ଯାଚନା ଶୁଣି ଉପସ୍ଥିତ ଅମାତ୍ୟ ଓ ଅନ୍ୟାନ୍ୟ ରାଜକର୍ମଚାରୀମାନେ ସମସ୍ତେ ଚକିତ-ବିସ୍ମିତ । ମୁଁ କିନ୍ତୁ ନୁହେଁ । ଗତ ରାତ୍ରିରେ ଆଦ୍ୟ ଗୁରୁ ସୂର୍ଯ୍ୟଦେବଙ୍କଠାରୁ ପାଇଥିଲି ସଙ୍କେତ । ଶୁଣିଥିଲି ସାବଧାନୀ ବାଣୀ । ସେଇଥିପାଇଁ ଅବିଚଳିତ ଓ ନିରୁଦ୍‌ବେଗ । ବର୍ତ୍ତମାନ ସୁନିଶ୍ଚିତ ଯେ ଯେ ଦେବରାଜ ଇନ୍ଦ୍ରଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ଅର୍ଜୁନଙ୍କୁ ସୁରକ୍ଷା ଦେବାକୁ ଯାଇ ମୋ' ସୁରକ୍ଷାକୁ କରୁଛନ୍ତି ବିପନ୍ନ ।

ଭାବୁଥାଏ, ମଣିଷର ସିନା ଦୁର୍ନାମ ସ୍ୱାର୍ଥାନ୍ଧ ବୋଲି । ନିଜ ସ୍ୱାର୍ଥକୁ ଜାବୁଡ଼ିଧରେ ନିରନ୍ତର । ଅନ୍ୟର ଲାଭ-କ୍ଷତି ପ୍ରତି ସଂପୂର୍ଣ୍ଣ ନିସ୍ପୃହ । ଆଜି ପୁଣି ଏ କ'ଣ ଦେଖୁଛି ନିଜ ଆଖିରେ ? କୁଆଡ଼େ କେତେ ପୁଣ୍ୟ କଲେ ଅନେକ ଜନ୍ମରେ ଯାଇ ମଣିଷ ଜନ୍ମ ହୁଏ

ଦେବତା । ପୁଣି ବହୁ ସାଧନାରେ ପାଏ ଇନ୍ଦ୍ରତ୍ୱ । ଅଥଚ ଦେବରାଜ ଇନ୍ଦ୍ର ସ୍ୱୟଂ ଆଜି ଏ କ'ଣ କରିବାକୁ ଯାଉଛନ୍ତି ? ନିଜ ସ୍ୱାର୍ଥ ଲାଗି ଅପରର ସ୍ୱାର୍ଥକୁ ବଳି ଦେବାକୁ ଯାଉଛନ୍ତି । ସ୍ୱାର୍ଥ କ'ଣ ଏତେ ଭୟଙ୍କର ? ଜନ୍ମ ଜନ୍ମ ପରେ କୋଟି ସାଧନା ଫଳରେ ବି କ'ଣ ଛାଡ଼େ ନାହିଁ ମଣିଷକୁ ? ଏପରିକି ତା'ର ଦେବତା ଭାବରେ ରୂପାନ୍ତର ହେଲେ ବି ? ମୁଁ କିନ୍ତୁ ଆଜି ସାରା ଜଗତକୁ ଦେଖାଇଦେବି ମଣିଷ କିପରି ଦେବତା ଆଗରେ ବଡ଼ ? କିପରି ଧର୍ମରକ୍ଷା ଲାଗି ନିଜ ସ୍ୱାର୍ଥକୁ ବଳି ଦେଇପାରେ ? ସ୍ୱର୍ଗ କିପରି ଚିରନତ ମାଟିର ଧରଣୀ ଆଗରେ ଭିକ୍ଷାଥାଳଟି ଧରି ? ହଁ, ଦେଖାଇଦେବି । ନିଶ୍ଚୟ ଦେଖାଇଦେବି । ଛଦ୍ମବେଶୀ ଦେବରାଜ ଇନ୍ଦ୍ରଙ୍କ ପ୍ରାର୍ଥନାକୁ ପୂରଣ କରିବି । ଏଇ ନିର୍ଣ୍ଣୟରେ ଅଟଳ ମୁଁ । ମେରୁପର୍ବତ ଯେମିତି ।

''ଏଇ ନିଅନ୍ତୁ ଆପଣଙ୍କ ଈପ୍‌ସିତ ଦାନ ।'' ଏହା କହି ଛୁରିକାସ୍ତ୍ର ଦ୍ୱାରା ମୋ' କବଚ ଓ କୁଣ୍ଡଳକୁ ଉଦ୍‌ଭିନ୍ନ କରି ସମର୍ପଣ କଲି ତାଙ୍କ ହାତରେ । ହାତ ପାତି ଗ୍ରହଣ କରିନେଲେ ସେ । ସାରା ତନୁ ମୋର ରୁଧିରାକ୍ତ । କ୍ଷତ ସ୍ଥାନରେ ତୀବ୍ର ପୀଡ଼ା । ଧୈର୍ଯ୍ୟର ସହିତ ସବୁ କିଛି ସହିଯାଉଥିଲି । ସାମାନ୍ୟ ଟିକିଏ ହେଲେ ବି ନାହିଁ ବେଦନାର ବିକାର । ଦାନ ପରେ ତନୁ କିମ୍ବା ମନରେ କୌଣସି ପ୍ରକାର କଷ୍ଟ ଅଣାଇଲେ ଦାନ ହୁଏ ଭ୍ରଷ୍ଟ । ତାହାର ପୁଣ୍ୟ ହୁଏ କ୍ଷୟ । ଏ କଥା ଜାଣିଥିଲି । ତେଣୁ ଯଥାସାଧ୍ୟ ସଂଯତ କରି ରଖିଥିଲି ନିଜକୁ । ସମସ୍ତ ଯାତନାକୁ ମାରିଦେଇଥିଲି ଦେହରେ ।

ହଠାତ୍ ଦୃଶ୍ୟପଟରେ ବିଚିତ୍ର ପରିବର୍ତ୍ତନ । ଯାଦୁକରର ମୁହୁର୍ମୁହୁଃ ପରିବର୍ତ୍ତିତ ରଙ୍ଗମଞ୍ଚର ଦୃଶ୍ୟ ଯେମିତି । ବୃଦ୍ଧ ବ୍ରାହ୍ମଣଙ୍କ ସ୍ଥାନରେ ଠିଆ ହୋଇଛନ୍ତି ଏକ କମନୀୟ ଲୋଭନୀୟ ଦେବମୂର୍ତ୍ତି । ସାରା ସଭାମଣ୍ଡପର ପରିବେଶ ତାଙ୍କ ତେଜରେ ପ୍ରଦୀପ୍ତ । ମୁଁ ତାଙ୍କ ପରିଚୟ ପଚାରିବା ପୂର୍ବରୁ ସେ କହିଲେ, ''ମୁଁ ଦେବରାଜ ଇନ୍ଦ୍ର । ଧନ୍ୟ ତୁମେ ଦାନବୀର କର୍ଣ୍ଣ । ଏଇ ଯେଉଁ ଦାନ ତୁମେ ଆଜି ଦେଲ, ତାହା ପୂର୍ବରୁ କେହି ଦେଇ ନାହାନ୍ତି । ଆଉ ଭବିଷ୍ୟତରେ କେହି ଦେବେ ବି ନାହିଁ । ତୁମେ ଚିରଯଶସ୍ୱୀ ହୁଅ ।

''ମୁଁ ମଧ୍ୟ ସମଧିକ ଧନ୍ୟ ଦେବରାଜ । ଆପଣଙ୍କ ଭଳି ଜଣେ ଦେବତା ମୋ' ଯଜ୍ଞମଣ୍ଡପରେ ଆଜି ପାଦ ଦେଲେ ଏବଂ ମୋ'ଠାରୁ ଦାନ ଗ୍ରହଣ କଲେ ।'' ତାଙ୍କୁ ଯଥାବିଧି ପ୍ରଣାମପୂର୍ବକ କହିଲି ।

''ମୁଁ ତୁମ ଉପରେ ଖୁବ୍ ପ୍ରୀତ । ବିନିମୟରେ କିଛି ପ୍ରତିଦାନ ଦେବାକୁ ଚାହେଁ । କହ ତୁମେ କ'ଣ ଚାହଁ ?''

''ହେ ଦେବରାଜ ! ଆପଣ ତ ସର୍ବଜ୍ଞ । ଆପଣଙ୍କୁ ରାଜଧର୍ମ କ'ଣ ବା ବୁଝାଇବି ? ମୁଁ ଜଣେ ରାଜା । କେବଳ ଦାନ ହିଁ ଦେଇ ଜାଣେ । ତାହାହିଁ ମୋ'ର ଧର୍ମ । ପ୍ରତିଦାନରେ କିଛି ଗ୍ରହଣ କରିବା ଅଧର୍ମ । ଆପଣଙ୍କ ଇଚ୍ଛା ପୂରଣ କରିପାରୁ ନାହିଁ । କ୍ଷମା ଦେବେ ।'' ସ୍ୱର ମୋର ବିନୀତ ।

''ହେ ରାଜନ୍ ! ମୁଁ ଦେବତା । ଆଉ ତୁମେ ମନୁଷ୍ୟ । ଦେବତା ହିସାବରେ ତୁମକୁ ବର ଦେଇପାରିବି । ତୁମର ତାହା ଗ୍ରହଣ କରିବାରେ କିଛି ହିଁ ପାପ ନାହିଁ । ତେଣୁ ଆପତ୍ତି କାହିଁକି ?'' ବକ୍ତବ୍ୟର ଯୌକ୍ତିକତା ଦର୍ଶାଇ କହିଲେ ।

"ହଁ ପ୍ରଭୋ ! ଆପଣ କେବଳ ସ୍ୱେଚ୍ଛାରେ ବର ଦେଲେ ତାହା ଗ୍ରହଣ କରିପାରିବି । କିନ୍ତୁ ଦାନର ବିନିମୟରେ କିଛି ପ୍ରତିଦାନ ନେଇପାରିବି ନାହିଁ ।" ବିନୀତ ଅଥଚ ଦୃଢ଼ କଣ୍ଠରେ କହିଗଲି ।

"ଆଚ୍ଛା, ଠିକ୍ ଅଛି । ମୁଁ ତେବେ ତୁମକୁ ଗୋଟିଏ ବର ଦେଉଛି । କେଉଁ ବର ମାଗୁଛ ମାଗ ।" ହସି ହସି କହିଲେ ଦେବରାଜ । ମୋର ବାକ୍‌ଚାତୁରୀରେ ପରାଭୂତ ବୋଲି କିଛି କ୍ଷୋଭ ନାହିଁ ମନରେ । ବରଂ ମୁଖମଣ୍ଡଳ ଫୁଲ୍ଲ କମଳ ଭଳି ପ୍ରସନ୍ନ । ଦେବସୁଲଭ କରୁଣା ଓ ଉଦାରତା ଦ୍ୱାରା ଅନୁପ୍ରେରିତ ତାଙ୍କ ଅନ୍ତସ୍ତଳର ପ୍ରତିବିମ୍ୱ !

"ଆପଣଙ୍କ ଅମୋଘ ମହାଶକ୍ତିଟି ମତେ ଦିଅନ୍ତୁ ।"

"ତଥାସ୍ତୁ ।" ମୋ' ଯାଚିତ ବରଦାନ କରି କହିଲେ । ପରେ ପରେ ପୁଣି କହିଲେ, "ମୋର ମହାଶକ୍ତିଟି ତୁମକୁ ଦେଉଛି ଗୋଟିଏ ସର୍ତ୍ତରେ । ତାହାକୁ ତୁମେ ଥରେ ମାତ୍ର ଜୀବନ-ସଂକଟ ସମୟରେ ପ୍ରୟୋଗ କରିପାରିବ କୌଣସି ଜଣେ ବୀରଙ୍କ ଉପରେ । ପ୍ରଥମ ପ୍ରୟୋଗ ପରେ ତାହା ଆପେ ଆପେ ଫେରିଆସିବ ମୋ' ପାଖକୁ ।"

ତାହାର ପ୍ରୟୋଗବିଧି ମଧ୍ୟ ଶିଖାଇଦେଲେ ମତେ । ଧ୍ୟାନର ସହିତ ତାଙ୍କଠାରୁ ଶିଖିଗଲି ସଂପୃକ୍ତ ମନ୍ତ୍ରଟିକୁ । ଯତ୍ନର ସହିତ ମନେରଖିଲି । ଏବେ କିନ୍ତୁ ମନେ ନାହିଁ । ପ୍ରଥମ ପ୍ରୟୋଗ ପରେ ହିଁ ତାହା ହୋଇଯାଇଛି ବିସ୍ମୃତ ।

ଦେବରାଜ ଇନ୍ଦ୍ର ତାହା ପରେ ସଭାମଣ୍ଡପ ନିକଟରୁ ହେଲେ ଅନ୍ତର୍ହିତ ।

ଏଇ ଦୃଶ୍ୟ ଦେଖି ଅମାତ୍ୟ ଓ ଅନ୍ୟାନ୍ୟ କର୍ମଚାରୀମାନେ ତଟସ୍ଥ । ସୂର୍ଯ୍ୟଦେବଙ୍କ ଚିକ୍ ଚିକ୍ ତେଜୋମୟ ରଶ୍ମିରେଖା ଝଟକି ଉଠୁଥାଏ ସଭାମଣ୍ଡପର ସୁସଜ୍ଜିତ ତୋରଣ ଉପରେ । ଆଉ ମୋ' ମୁଣ୍ଡ ଉପରେ ବି । ସତେଯେମିତି ସେ ଢାଳି ଦେଉଥାନ୍ତି ଶତ ଆଶୀର୍ବାଦର ଧାରା ! ସଭାମଣ୍ଡପରେ । ଆଉ ମୋ ଉପରେ ବି ।

ଧୀରେ ଧୀରେ ଚାଲିଲି ରାଜଭବନ ଅଭିମୁଖରେ ଚିତ୍ତମନ ଓ ତନୁରେ ପୁଲକର ଆଲିଙ୍ଗନ ବୋଳି ବୋଳି ! ଇନ୍ଦ୍ରଙ୍କ ମହାଶକ୍ତିର ଅଧିକାରୀ ହୋଇପାରିଛି ବୋଲି ଗର୍ବରେ କିନ୍ତୁ ନୁହେଁ । ବରଂ ତାଙ୍କ ଈପ୍‌ସିତ ଦାନଟିକୁ ଦେବାର ପୁଣ୍ୟ ଅର୍ଜନ କରିଛି ବୋଲି । ନିଜ ସ୍ୱାର୍ଥକୁ ବଳିଦେଇ ଅପରର ସ୍ୱାର୍ଥକୁ ପୂରଣ କରିଛି ବୋଲି । ମାଟିର ମଣିଷଠାରେ ଯେ ଦେବତ୍ୱର ଗନ୍ଧ ଅଛି ତାହା ସ୍ୱର୍ଗର ଦେବତାଙ୍କୁ ଦେଖାଇ ଦେଇପାରିଛି ବୋଲି ।

ସେତେବେଳେ ମୋ ଅନ୍ତରର ନିଭୃତତମ କୋଣରେ ଲହରାଇ ଉଠୁଥିଲା ମିତ୍ର ଅଶ୍ୱତ୍ଥାମାଙ୍କ କଣ୍ଠରୁ ବାରମ୍ବାର ନିଃସୃତ ହେଉଥିବା ବୈଦିକ ମନ୍ତ୍ରର ଝଙ୍କାର, 'ଯସ୍ୟ ଛାୟାମୃତଂ ଯସ୍ୟ ମୃତ୍ୟୁଃ' । ମଣିଷର ଦୁଇଟି ଛାୟା । ଗୋଟିଏ ଅମୃତର । ଆଉ ଅପରଟି ମୃତ୍ୟୁର । ଭଗବାନ୍‌ଙ୍କ ନିକଟରେ ମୋର ଆକୁଳ ପ୍ରାର୍ଥନା – ମୁଁ କିପରି ସେଇ ଅମୃତର ଛାୟାଚ୍ଛନ୍ନ ଜୀବନ ନିରନ୍ତର ବିତାଏଁ !

## ଅଣସ୍ତରି

"ତୁମେ ଏ କ'ଣ କଲ ମିତ୍ର ଅଙ୍ଗରାଜ କର୍ଣ୍ଣ ? ମୋର ସମସ୍ତ ଆଶା-ଭରସାକୁ ଦଳି ଚକଳିଚକାନ୍ତ କରିଦେଲ ! ଜନ୍ମଜାତ କବଚ-କୁଣ୍ଡଳକୁ ହରାଇ ବସିଲ ! ଯାହା ଦେଖାଯାଉଛି, ପାଣ୍ଡବମାନଙ୍କ ସହିତ ରାଜ୍ୟଭାଗ ନେଇ ଭବିଷ୍ୟତରେ ମୋର ନିଶ୍ଚୟ ଯୁଦ୍ଧ ହେବ ହିଁ ହେବ । କେଉଁ ଭରସାରେ ସେତେବେଳେ ନିର୍ଭର କରିବି ତୁମ ଉପରେ ?" ଦୀର୍ଘ ପନ୍ଦର ଦିନ ପରେ କ୍ଷତର ଉପଶମ ହେବା ଉତ୍ତାରୁ ଦୁର୍ଯ୍ୟୋଧନଙ୍କୁ ଦର୍ଶନ କଲା ବେଳେ ସେ ମତେ ଅତି ବିଷଣ୍ଣ ଭାବରେ ଏହି କଥା କହିଲେ । ତାଙ୍କୁ ଆଶ୍ୱାସନା ଦେବାକୁ ଯାଇ କହିଲି, "କେଉଁ କାରଣରୁ ମୋ' ଉପରେ ଭରସା ରଖିବ ନାହିଁ ବୋଲି ଭାବୁଛ ମିତ୍ର ? ମୁଁ କ'ଣ କିଛି ବିଶ୍ୱାସଘାତକତା କରିଛି ?"

"ନା, ସେ କଥା ନୁହେଁ । କର୍ଣ୍ଣ ଓ ଦୁର୍ଯ୍ୟୋଧନ ଚାହିଁଲେ ବି ପରସ୍ପର ପ୍ରତି ବିଶ୍ୱାସଘାତକ ହୋଇପାରିବେ ନାହିଁ ।" ସହଜ କଣ୍ଠରେ ପରିସ୍ଥିତିକୁ ହାଲୁକା କରିବାକୁ ଯାଇ କହିଲେ ସେ । ଓଠ କଣରେ ମୃଦୁ ମୃଦୁ ହସ । ତାହା ସତ୍ତ୍ୱେ ସେଇ ହସର ଧାରେ ଧାରେ କିଛିଟା କରୁଣିମାର ଝଲକ !

"ତେବେ ?"

"କବଚ-କୁଣ୍ଡଳ ଦେଇଦେବା ଫଳରେ ତୁମେ ଶକ୍ତିହୀନ ହୋଇଯାଇଛ । ସେଥିପାଇଁ ଏମିତି କହିଲି ।"

"ଅବଶ୍ୟ କିଛିଟା ଶକ୍ତିହୀନ ହୋଇଛି । କିନ୍ତୁ ସଂପୂର୍ଣ୍ଣ ରୂପେ ନୁହେଁ । ତୁମକୁ ସଂକଟ ସମୟରେ ସହାୟତା ଦେବାର ଯଥେଷ୍ଟ ଶକ୍ତି ଅଛି ମୋ'ଠାରେ । ମୁଁ ଏବେ ଇନ୍ଦ୍ରଙ୍କ ମହାଶକ୍ତିର ଅଧିକାରୀ । ଆଘାତ ତାହାର ଅବ୍ୟର୍ଥ । ତାହା ମୋ' ପାଖେ ଥିବା ପର୍ଯ୍ୟନ୍ତ ତୁମେ ପାଣ୍ଡବମାନଙ୍କ ନିକଟରେ ରହିଥିବ ଅପରାଜେୟ ହୋଇ ।" ତାଙ୍କୁ ସାହସ ଦେଇ କହିଲି । କିଛିଟା ଉତ୍ସାହିତ ହେଲେ ସେ । ତାହା ପରେ ତାଙ୍କୁ ପଚାରିଲି, "ଆଚ୍ଛା ମିତ୍ର, ପାଣ୍ଡବମାନଙ୍କ ବାରବର୍ଷ ବନବାସର ଅବଧି ତ ସରିଗଲାଣି ଅନେକ ଦିନୁ । ଏକ ବର୍ଷର ଅଜ୍ଞାତବାସର ଅବଧି ସରିବା ଉପରେ । ସେମାନଙ୍କର କିଛି ସନ୍ଧାନ ମିଳିଲା ନା ନାହିଁ ?"

"ସେହି କଥା ତ ବ୍ୟଥିତ କରୁଛି ମତେ ମିତ୍ର । ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ଆଦି ଦିଗଗୁଡ଼ିକର ସମସ୍ତ ରାଜ୍ୟକୁ ଗୁପ୍ତଚର ପଠାଇଲି । ସେହି ଗୁପ୍ତଚରମାନଙ୍କ କାର୍ଯ୍ୟ-କଳାପ ଉପରେ ଦୃଷ୍ଟି ଦେବାପାଇଁ ଆହୁରି ବି ଗୁପ୍ତଚର ପଠାଇଲି । କିନ୍ତୁ କେଉଁଠି ହେଲେ କିଛି ସନ୍ଧାନ ପାଇଲି ନାହିଁ । ମତେ ଲାଗୁଛି, ସେମାନେ ଯେମିତି ପବନରେ କୁଆଡ଼େ ମିଳାଇ ଯାଇଛନ୍ତି । ଅଥବା ଇନ୍ଦ୍ର ତାଙ୍କୁ କେଉଁଠି ଲୁଚାଇ ରଖିଛନ୍ତି ସ୍ୱର୍ଗରେ ।"

"ମୋର କାହିଁକି ବିଶ୍ୱାସ, ସେମାନେ ଏଇ ଆର୍ଯ୍ୟାବର୍ତ୍ତରେ ହିଁ କେଉଁଠି ଅଛନ୍ତି । ଛଦ୍ମବେଶରେ ରହିଥିବେ । ତେଣୁ ଜଣାପଡୁ ନାହାନ୍ତି ।"

"ହୁଏତ ଅଲଗା ଅଲଗା ରାଜ୍ୟମାନଙ୍କରେ କେଉଁଠି ରହିଥାଇପାରନ୍ତି ।"

"ନାହିଁ । ବିଶେଷ କରି ପତ୍ନୀ ଦ୍ରୌପଦୀ ଯେତେବେଳେ ପାଖରେ ଅଛନ୍ତି, ତାଙ୍କ ସୁରକ୍ଷା ଲାଗି ନିଶ୍ଚୟ ତାଙ୍କ ପାଖରେ ହିଁ ଥିବେ । ଆଚ୍ଛା, ଦ୍ରୁପଦଭବନରେ ଖୋଜାଖୋଜି କରିଛନ୍ତି ?"

"ସେ କଥା କ'ଣ ଛାଡ଼ିଛି ? ଆମର କେତେଜଣ ଗୁପ୍ତଚର ବେଶ ବଦଳାଇ ରାଜାଙ୍କ ସେବକ ଭାବରେ ରହିଛନ୍ତି । ଦ୍ୱାରକାରେ ମଧ୍ୟ କୃଷ୍ଣଙ୍କ ଭବନରେ ସେମିତି କେତେକ ସେବକ ଅଛନ୍ତି । କିନ୍ତୁ କେହି କିଛି ଖବର ଆଣିପାରି ନାହାନ୍ତି । ସେଠାରେ ମଧ୍ୟ ପାଣ୍ଡବମାନେ କୁଆଡ଼େ ଗଲେ ବୋଲି ଚାଲିଛି ଚର୍ଚ୍ଚା ।"

"ପ୍ରାଗ୍‌ଜ୍ୟୋତିଷ ରାଜ୍ୟ ଖୁବ୍ ଦୂରରେ । ତାହା ଛଡ଼ା ତାହା ଅରଣ୍ୟସଂକୁଳ ବି । ସେଠାକୁ ଗୁପ୍ତଚର ଯାଇଛନ୍ତି ?"

"ହଁ, ଏକାଧିକ ଗୁପ୍ତଚର ଯାଇଛନ୍ତି । ସେଠାକାର ରାଜା ତ ମୋର ବନ୍ଧୁ । ତାଙ୍କ ପାଖକୁ ଆଗରୁ ସଂବାଦ ପଠାଇଥିଲି । ସେ ମଧ୍ୟ ଏ ବିଷୟରେ ଅନେକ କିଛି ଅନୁସନ୍ଧାନ କରାଇଛନ୍ତି । ସବୁ କିନ୍ତୁ ବିଫଳ ।"

"ଆଚ୍ଛା, ଆଉ କେଉଁ କେଉଁ ରାଜ୍ୟକୁ ଗୁପ୍ତଚରମାନେ ଯାଇଛନ୍ତି ଶୁଣେ ?"

"କାମ୍ବୋଜ, କାଶ୍ମୀର, ଗାନ୍ଧାର, ସିନ୍ଧୁ, ପଞ୍ଚନଦ, କୁଳିନ୍ଦ, ତଙ୍ଗଣ, ବିଦେହ, କୋଶଳ, କିରାତ, କାମରୂପ, ବଙ୍ଗ, ମଗଧ, ଚେଦି, ଦଶାର୍ଣ୍ଣ, କଳିଙ୍ଗ, ଆନ୍ଧ୍ର, ପୁଳିନ୍ଦ, ବିଦର୍ଭ, ଅବନ୍ତୀ, ସୌରାଷ୍ଟ୍ର, ଆନର୍ତ୍ତ, ମଥୁରା, ମତ୍ସ୍ୟ, ତ୍ରିଗର୍ତ୍ତ ଓ ଆହୁରି ଅନେକ ରାଜ୍ୟକୁ ଯାଇଛନ୍ତି । ପାଣ୍ଡବମାନଙ୍କ ସନ୍ଧାନ ନେବାପାଇଁ ଆମ ପକ୍ଷରୁ ଜଣେ ସ୍ୱତନ୍ତ୍ର ଅମାତ୍ୟ ବି ଏବେ ନିଯୁକ୍ତ । ଦିନରାତି କାର୍ଯ୍ୟରତ ସେ । ଆମକୁ ଦେଖାଇବା ପାଇଁ ଖାଲି ଭୂର୍ଜପତ୍ରର ଏକ ବିରାଟ ସ୍ତୂପ ଗଢ଼ିଛନ୍ତି ସିନା, ଆଉ କିଛି ଫଳ ନାହିଁ ।" ତାଙ୍କ କଣ୍ଠସ୍ୱର ନୈରାଶ୍ୟଭରା । ମୁଖଶ୍ରୀ ମଳିନ ।

ଏତିକିବେଳେ ଦ୍ୱାରୀ ଆସି ଦୁର୍ଯ୍ୟୋଧନଙ୍କୁ ଅଭିବାଦନ କରି ଜଣାଇଲା, "ହେ ରାଜନ୍ ! ମତ୍ସ୍ୟରାଜ୍ୟରୁ ଗୁପ୍ତଚର ଏଇ ଆସି ହସ୍ତିନାପୁରରେ ପହଞ୍ଚିଛି । ଚାହୁଁଛି ଆପଣଙ୍କୁ ତୁରନ୍ତ ଦର୍ଶନ କରିବାପାଇଁ ।"

"ତା'କୁ ତୁରନ୍ତ ପଠାଇଦିଅ ଏଇ କକ୍ଷକୁ ।"

ରାଜକୀୟ ଶିଷ୍ଟାଚାରକୁ ରକ୍ଷା କରିବାକୁ ଯାଇ ମୁଁ ଉଠିଯାଉଥିଲି । ଦୁର୍ଯ୍ୟୋଧନ କିନ୍ତୁ ମତେ ବାଧ୍ୟ କଲେ ବସି ରହିବାକୁ । କହିଲେ, "ମିତ୍ର ଅଙ୍ଗରାଜ କର୍ଣ୍ଣ ! ତୁମ ପାଖରେ ମୋର ଗୋପନୀୟ ବୋଲି କିଛି ନାହିଁ । ଆମେ ଦୁହେଁ ତ ଗୋଟିଏ ଆତ୍ମା । ଶରୀର କେବଳ ହିଁ ଭିନ୍ନ । ତୁମେ ତେଣୁ ବସିଥାଅ ।"

ସମର୍ଥନସୂଚକ ସ୍ମିତହାସ୍ୟ ହସି ବସିରହିଲି ନିଜ ଆସନରେ ।

ଭାବୁଥାଏ, ମିତ୍ର ଦୁର୍ଯ୍ୟୋଧନଙ୍କର ସତେ କି ଗଭୀର ବିଶ୍ୱାସ ମୋ'ଠାରେ ! କି ଭରସା ମୋ' ଉପରେ ! ରାଜକୀୟ ଗୋପନୀୟତାକୁ ଖୋଲି ଦେଉଛନ୍ତି ମୋ' ଆଗରେ ! ଏଥିରେ ମୁଁ କିପରି ବା କରିପାରିବି ତାଙ୍କ ପ୍ରତି ବିଶ୍ୱାସଘାତକତା ? ଛାଡ଼ି ଦେଇପାରିବି

ତାଙ୍କ ପକ୍ଷ ? ଚନ୍ଦ୍ରକିରଣ କ'ଣ ଚନ୍ଦ୍ରଙ୍କୁ ଛାଡ଼ିଦେଇପାରେ ? ଅଥବା ସୁଗନ୍ଧି କୁସୁମକୁ ? ତେଣୁ ଆଜୀବନ ରହିଥିବି ତାଙ୍କ ପ୍ରତି ବିଶ୍ୱାସୀ ହୋଇ । ପ୍ରାଣର ବିନିମୟରେ ରକ୍ଷା କରିବି ତାଙ୍କୁ । ବୁଝୁଛି, ସେ ଏବେ କଣ୍ଟକମୟ ପଥର ଯାତ୍ରୀ । ମିତ୍ର ହିସାବରେ ତାଙ୍କର ସହଯାତ୍ରୀ ହୋଇ ନିଜ ପାଦକୁ ରକ୍ତାକ୍ତ କଲେ କ୍ଷତି କ'ଣ ? ଅଧର୍ମ କେଉଁଠି ? ମାନସିକ ସ୍ତରରେ ଦୃଢ଼ କରାଇ ନେଲି ତାଙ୍କ ପ୍ରତି ଥିବା ପ୍ରତିବଦ୍ଧତା ।

ଏମିତି ଭାବାବେଗରେ ବୁଡ଼ି ରହିଥିବା ଅବସରରେ ଗୁପ୍ତଚର ଆସି ନିବେଦନ କଲା ତା'ର ବକ୍ତବ୍ୟ ଓ ପରେ ପରେ ଚାଲିଗଲା । ସେ ଯାହା କହିଲା, ସେଥିରେ ମୁଁ ଓ ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ-ଚକିତ । ଅସମ୍ଭବ ଘଟଣାଟିଏ ଏବେ ଘଟିଯାଇଛି ବିରାଟ ନଗରର ନାଟ୍ୟଶାଳାରେ । ରାଜାଙ୍କ ଶ୍ୟାଳକ କୀଚକଙ୍କ ମୃତ ଦେହ ଲୋଟୁଛି ସେଠି । ଶୁଣାଯାଉଛି, କୀଚକଙ୍କର କୁଆଡ଼େ କାମନାପୂର୍ଣ୍ଣ ଦୃଷ୍ଟି ଥିଲା ରାଣୀ ସୁଦେଷ୍ଣାଙ୍କ ଦାସୀ ସୈରିନ୍ଧ୍ରୀ ପ୍ରତି । ସୈରିନ୍ଧ୍ରୀର ଅନିଚ୍ଛାସତ୍ତ୍ୱେ ବାରମ୍ବାର ସେ ପ୍ରେମନିବେଦନ କରିଥିଲେ ତା' ପ୍ରତି । ଶେଷରେ ବଳାତ୍କାର କରିବାକୁ ବସିଥିଲେ । ଏହା ଜାଣିପାରି ତା'ର ଗନ୍ଧର୍ବପତି ମଲ୍ଲଯୁଦ୍ଧ କରି ତାଙ୍କୁ ମାରି ଦେଇଛନ୍ତି ।

କଥାଟା ଅବିଶ୍ୱସନୀୟ ବୋଲି ଲାଗୁଥିଲେ ବି ସତ୍ୟ । କୀଚକଙ୍କର ପ୍ରକୃତରେ ମୃତ୍ୟୁ ଘଟିଛି ମଲ୍ଲଯୁଦ୍ଧରେ । ଭାବୁଥାଏ, ଏହା ସମ୍ଭବ ହେଲା କିପରି ? କୀଚକଙ୍କ ପରି ଆଉ ଦ୍ୱିତୀୟ ଜଣେ ମଲ୍ଲଯୋଦ୍ଧା ଏଇ ଜଗତରେ ଅଛନ୍ତି ବୋଲି ମୋର ବିଶ୍ୱାସ ହେଉ ନାହିଁ । ବିରାଟ ସିନା ମତ୍ସ୍ୟଦେଶର ରାଜା ନାମରେ ଖ୍ୟାତ । କିନ୍ତୁ ପ୍ରକୃତ ରାଜା ଥିଲେ କୀଚକ । ତାଙ୍କରି ବାହୁବଳରେ ହିଁ ବିରାଟ ରାଜା । ରାଜା ନିଜେ ତାଙ୍କୁ କୌଶଳ କରି ମରାଇ ଦେଇଥିବା ସମ୍ଭବ ନୁହେଁ । କାରଣ ସେ ଜାଣନ୍ତି, କୀଚକଙ୍କ ବିନା ତାଙ୍କ ରାଜ୍ୟର ଅସ୍ତିତ୍ୱ ହିଁ ନାହିଁ । ତାହାହେଲେ ସେ ହୋଇଯିବେ ଅତ୍ୟନ୍ତ ଦୁର୍ବଳ ଏବଂ ପଡ଼ିବେ ଶତ୍ରୁମାନଙ୍କ ଶ୍ୟେନ-ଦୃଷ୍ଟିରେ । ତେଣୁ ତାଙ୍କ ହତ୍ୟାକାରୀ ନିଶ୍ଚୟ ଆଉ କେହି ଜଣେ । ହୁଏତ ଭୀମସେନ ତାଙ୍କ ସମକକ୍ଷ । କିନ୍ତୁ ତାଙ୍କ ସ୍ଥିତି ବିଷୟରେ ତ କିଛି ଠିକଣା ନାହିଁ । ପାଣ୍ଡବମାନେ ଯେ ବିରାଟନଗରରେ ନାହାନ୍ତି, ଏ କଥା ଦୁର୍ଯ୍ୟୋଧନଙ୍କ ଗୁପ୍ତଚରମାନେ ଆଗରୁ ଜଣାଇ ଦେଇଛନ୍ତି । ତେବେ ଏଇ ହତ୍ୟାକାରୀଜଣକ କିଏ ହୋଇପାରନ୍ତି ? ଏଇ ଚିନ୍ତାରେ ମସ୍ତିଷ୍କ ମୋର ଘୂରୁଥିଲା ବାତଚକ୍ର ଭଳି । କିଛି ନିର୍ଣ୍ଣୟରେ ପହଞ୍ଚିପାରୁ ନ ଥିଲି ।

ମୋର ଚିନ୍ତାନ୍ୱିତ ଭାବମୂର୍ତ୍ତି ଦେଖି ଦୁର୍ଯ୍ୟୋଧନ ପଚାରିଲେ, ''କ'ଣ ଏତେ ଭାବୁଛ ମିତ୍ର କର୍ଣ୍ଣ ?''

''ଭାବୁଛି କୀଚକଙ୍କ ହତ୍ୟାକାରୀ କଥା । ମୋର ସନ୍ଦେହ ଭୀମସେନ ହିଁ ଏଇ ହତ୍ୟାକାରୀ ।''

''କିନ୍ତୁ ଆମ ଗୁପ୍ତଚରମାନେ ତ ଖବର ଦେଇଛନ୍ତି ପାଣ୍ଡବମାନେ ସେଠାରେ ନାହାନ୍ତି ବୋଲି ।''

"ସେମାନଙ୍କ ଅନୁସନ୍ଧାନ ହୁଏତ ଭ୍ରମାତ୍ମକ । ଭୀମସେନ ସେଇ ବିରାଟନଗରରେ ହିଁ ଅଛନ୍ତି । ସୈରିନ୍ଧ୍ରୀ ସ୍ୱୟଂ ଦ୍ରୌପଦୀ ।"

"ଆଉ ଅନ୍ୟ ପାଣ୍ଡବ ଭ୍ରାତାମାନେ ?"

"ସେମାନେ ମଧ୍ୟ ସେଇଠି ଥିବେ ବିଭିନ୍ନ ଛଦ୍ମବେଶରେ । ଆମକୁ ଅଜଣା ।"

"ଆମକୁ ତେଣୁ ବିରାଟନଗର ଉପରେ ଆକ୍ରମଣ କରିବାକୁ ହେବ । ତାହାହେଲେ ପାଣ୍ଡବମାନେ ରାଜାଙ୍କୁ ସହାୟତା ଦେବାପାଇଁ ଆସିବେ ଏବଂ ଆମ ଆଖିରେ ଧରା ପଡ଼ିଯିବେ । ଧରା ପଡ଼ିଗଲେ ପୁଣି ବାର ବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତବାସ ଭୋଗିବେ ।" ଖୁବ୍ ଉତ୍ସାହ ପ୍ରକାଶ କରି କହିଲେ ଦୁର୍ଯ୍ୟୋଧନ ।

"କିନ୍ତୁ ରାଜା ବିରାଟ ତ କୁରୁରାଜଙ୍କ ମିତ୍ର । ମହାରାଜ ଏ ଆକ୍ରମଣ ପାଇଁ ଅନୁମତି ଦେବେ କି ନାହିଁ ସନ୍ଦେହ ।" ମୁଁ ସନ୍ଦେହ ପ୍ରକାଶ କରି କହିଲି ।

"ତାଙ୍କଠାରୁ ଅନୁମତି ଆଣିବାର ଉପାୟ ମତେ ଜଣା । ଗୋଧନବୃଦ୍ଧି କରିବା ଲାଗି ତାଙ୍କର ଖୁବ୍ ଦୁର୍ବଳତା । ରାଜା ବିରାଟ ବିପୁଳ ଗୋଧନର ଅଧିକାରୀ । ତାଙ୍କ ଗୋଧନ ଅପହରଣର ପ୍ରସ୍ତାବ ତାଙ୍କୁ ଦେଲେ ମହାରାଜ ନିଶ୍ଚୟ ରାଜି ହୋଇଯିବେ ।"

"ଆଚ୍ଛା, ଚେଷ୍ଟା କରି ଦେଖ ।"

ଦୁର୍ଯ୍ୟୋଧନଙ୍କ ପ୍ରସ୍ତାବର ରୂପାୟନ ନେଇ ତଥାପି ମୋ' ମନରେ ସନ୍ଦେହ । ଏ ପ୍ରସ୍ତାବର ସମର୍ଥକ ଥିଲି କେବଳ ଗୋଟିଏ କାରଣରୁ । ମୁଁ ତ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଥାଇ ଲଢ଼ିବି ନିଶ୍ଚୟ । ଅର୍ଜୁନ ବଞ୍ଚିଥିଲେ ନିଶ୍ଚୟ ଆସିବେ ଯୁଦ୍ଧଭୂମିକୁ । ସେତେବେଳେ ଆମେ ଦୁହେଁ ସମ୍ମୁଖୀନ ହେବୁ ପରସ୍ପରର । ତାଙ୍କ ଆଗରେ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବା ଲାଗି ମୋର ଯେଉଁ ଚିରସଞ୍ଚିତ ପିପାସା, ତାହା ମିଟିଯିବ ! କର୍ଣ୍ଣର କର୍ଣ୍ଣତ୍ୱ ହେବ ପ୍ରକଟିତ ! ସେଥିପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ।

ପରେ ପରେ ତାଙ୍କଠାରୁ ବିଦାୟ ନେଇ ଚାଲିଆସିଲି ।

ଫେରିଲାବେଳେ ମନରେ ବାରମ୍ବାର ଏଇ ଚିନ୍ତା ଆସୁଥିଲା— କ'ଣ ପ୍ରକୃତରେ କୀଚକଙ୍କ ହତ୍ୟାକାରୀ ଭୀମସେନ ? ଆଉ ସୈରିନ୍ଧ୍ରୀ କ'ଣ ପ୍ରକୃତରେ ଦ୍ରୌପଦୀ ? ତା'ହେଲେ ଅନ୍ୟ ପାଣ୍ଡବମାନେ ଗଲେ କୁଆଡ଼େ ? ଯେତେ ଭାବୁଥାଏ, ସେତେ ରହସ୍ୟର ଜାଲରେ ଛନ୍ଦି ହୋଇଯାଉଥାଏ ।

## ସତୁରି

ଅଦୃଷ୍ଟ... ଅଦୃଷ୍ଟ... ଅଦୃଷ୍ଟ । କିଏ କହେ ତାହାକୁ ଭାଗ୍ୟ ବୋଲି । ଆଉ କିଏ କହେ ଦଇବ ବୋଲି । ସବୁ ଗୋଟିଏ । ସବୁ ମହାକାଳ ଦ୍ୱାରା ନିୟନ୍ତ୍ରିତ । ଏକ ଦୃଢ଼ ରଜ୍ଜୁରେ ବନ୍ଧା । ଛିଣ୍ଡିବାର ଉପାୟ ନାହିଁ । ନାହିଁ ବି ମୁକ୍ତି ପାଇବାର ବାଟ । ନିତାନ୍ତ ଅଲଂଘନୀୟ । ମଣିଷ ଭାବିଥାଏ ଗୋଟିଏ କାମ କରିବାକୁ । ଗୋଟିଏ ନିର୍ଦ୍ଦିଷ୍ଟ ସିଦ୍ଧି ହାସଲ କରିବାକୁ ।

କିନ୍ତୁ ଅଦୃଷ୍ଟ ତା'କୁ ଆଉ ଗୋଟିଏ କାମ କରାଇଦିଏ । ତା' ପାଇଁ ଆଣିଦିଏ ଆଉ ଗୋଟିଏ ଫଳ । ନିତାନ୍ତ ଅପ୍ରତ୍ୟାଶିତ । ଆଉ ଅସ୍ପୃହଣୀୟ ବି । ମନ ନ ଚାହିଁଲେ ବି ତାହାକୁ ଚାଖିବାକୁ ପଡ଼େ ବିବଶ ହୋଇ । ଦୁର୍ଯ୍ୟୋଧନଙ୍କ ଜୀବନରେ ତାହା ହିଁ ଘଟିଲା । ସେ ଭାବିଥିଲେ ଅଜ୍ଞାତବାସ ସମୟରେ ପାଣ୍ଡବମାନଙ୍କୁ ଖୋଜି ବାହାର କରିଦେବେ । ଦିଆଇବେ ଆଉ ବାର ବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ । କିନ୍ତୁ ଫଳ ହେଲା ବିପରୀତ । ସେମାନେ ଅଜ୍ଞାତବାସ ଅବଧି ପୂରା କରି ଶେଷରେ ନିଜ ରାଜ୍ୟଭାଗ ଦାବି କରିବସିଲେ ।

ଗୋଟିକ ପରେ ଗୋଟିଏ ଘଟଣା ଏମିତି ଯାଏ ଘଟି ।

ଦୁର୍ଯ୍ୟୋଧନ ବୁଦ୍ଧି ପ୍ରୟୋଗ କରି ମହାରାଜଙ୍କ ପାଖରୁ ଅନୁମତି ନେଇଆସନ୍ତି ରାଜା ବିରାଟଙ୍କ ମତ୍ସ୍ୟରାଜ୍ୟକୁ ଆକ୍ରମଣ କରିବାପାଇଁ । ଉଦ୍ଦେଶ୍ୟ ସୀମିତ । କେବଳ ତାଙ୍କ ଗୋଧନ ଅପହରଣ । ଆଉ ଯାହା ଅନ୍ତର୍ନିହିତ ଉଦ୍ଦେଶ୍ୟ ତାହା କେବଳ ଆମ ଦୁଇଜଣଙ୍କୁ ଜଣା । ମତେ ଓ ଦୁର୍ଯ୍ୟୋଧନଙ୍କୁ । ଯଥାଶୀଘ୍ର ବିରାଟନଗର ଉପରେ ଆକ୍ରମଣ କରିବାପାଇଁ ଚାଲେ କୁରୁ-ସେନାବାହିନୀର ଅଭିଯାନ । ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ଗାନ୍ଧାରରାଜ ଶକୁନି, କୌରବ ଶତଭ୍ରାତା ଓ ମୁଁ ନିଜେ ଆମେ ସମସ୍ତେ ଥାଉ ସେନାଦଳରେ । ସାମାନ୍ୟ କ୍ଷୁଦ୍ର ମତ୍ସ୍ୟଦେଶ ଉପରେ ବିଜୟ ହାସଲ ପାଇଁ ଆମ ସୈନ୍ୟବାହିନୀ ଥାଏ ଯଥେଷ୍ଟରୁ ଅତ୍ୟଧିକ । ପ୍ରଜାମାନେ ସମସ୍ତେ ଆଶ୍ଚର୍ଯ୍ୟ-ଚକିତ । ପଚାରୁଥାନ୍ତି ନିଜକୁ ହଠାତ୍ ଚତୁରଙ୍ଗ କୌରବବାହିନୀର ଏଇ ବିରାଟ ଅଭିଯାନ କେଉଁଥିପାଇଁ ? ଆମକୁ ସହାୟକ ହୁଅନ୍ତି ତ୍ରିଗର୍ତ୍ତର ରାଜା । ତାଙ୍କର ବିରାଟରାଜଙ୍କ ଉପରେ ନେବାକୁ ଥାଏ ପ୍ରତିଶୋଧ । କାରଣ ଅତୀତର ଗୋଟିଏ ସଂଘର୍ଷରେ ସେ ହୋଇଥାନ୍ତି ବିରାଟରାଜଙ୍କ ଦ୍ୱାରା ପରାସ୍ତ ଓ ବନ୍ଦୀ । ଶେଷରେ ନିଜ ରାଜ୍ୟରୁ କିଛି ଅଂଶ ତାଙ୍କୁ ଛାଡ଼ିଦେଇ ହୋଇଥାନ୍ତି ବନ୍ଧନମୁକ୍ତ । ତ୍ରିଗର୍ତ୍ତସେନା ଆକ୍ରମଣ କରନ୍ତି ଉତ୍ତରରୁ । ଆଉ କୁରୁସେନା ଦକ୍ଷିଣରୁ । ଆକସ୍ମିକ ଏଇ ଆକ୍ରମଣ ଦ୍ୱିମୁଖୀ ପାଇଁ ଆଦୌ ପ୍ରସ୍ତୁତ ନ ଥାନ୍ତି ବିରାଟ ସେନାବାହିନୀ । ଯୁଦ୍ଧ ନ କରି ଦିଅନ୍ତି ଛତ୍ରଭଙ୍ଗ । ଦୁଃଶାସନ ବିନା ବାଧାରେ ଆଗେଇଯାଇ ଖୋଲିଦିଅନ୍ତି ବିରାଟରାଜଙ୍କ ଗୋଶାଳାର ଦ୍ୱାର । ଶତ ଶତ, ସହସ୍ର ସହସ୍ର ଧେନୁ ବାହାରିଆସନ୍ତି ପଦାକୁ । କୁରୁସେନା ସେମାନଙ୍କୁ ଅଡ଼ାଇ ଅଡ଼ାଇ ଚଳାଇନିଅନ୍ତି କୁରୁରାଜ୍ୟର ସୀମା ନିକଟକୁ ।

ହଠାତ୍ ପଛରୁ ଶୁଭେ ବଜ୍ର ସମାନ ଧନୁଷ୍ଟଙ୍କାର । ସେହି ଶବ୍ଦ କ୍ରମେ ନିକଟରୁ ନିକଟତର ହେବାକୁ ଲାଗେ । ଆମ ସେନାବାହିନୀ ଏବେ ଆଗକୁ ଚାଲିବାକୁ ଅସମର୍ଥ । ବାଣ ଉପରେ ବାଣ ବରଷି ସେମାନଙ୍କ ଆଗେଇବାର ସମସ୍ତ ପଥ ରୁଦ୍ଧ । ପିତାମହ ଭୀଷ୍ମ କହନ୍ତି ଆଚାର୍ଯ୍ୟ ଦ୍ରୋଣଙ୍କୁ, "ହେ ଆଚାର୍ଯ୍ୟ ! ଶୁଣୁଛନ୍ତି ? ଏହା ପୁତ୍ର ଅର୍ଜୁନଙ୍କ ଗାଣ୍ଡୀବ ଧନୁର ଟଙ୍କାର ଭଳି ଲାଗୁଛି । ଆପଣଙ୍କ ମତ କ'ଣ ?"

ଦ୍ରୋଣାଚାର୍ଯ୍ୟ ଅତି ସାବଧାନ ଭାବରେ ଅଧିକତର ଉତ୍କର୍ଣ୍ଣ ହୋଇ ଶୁଣନ୍ତି ସେ ଟଙ୍କାର । ଯେତେ ବିଳମ୍ବ ହେଉଥାଏ ଟଙ୍କାରର ଶବ୍ଦ ସେତେ ହୋଇଉଠୁଥାଏ ଘନତର ।

ଦୂର ଚକ୍ରବାଳରୁ ଉଡ଼ି ଆସୁଥିବା ରଥଚକ୍ରଗୁଡ଼ିକର ଧୂଳି ମଧ୍ୟ ଉଠୁଥାଏ ଘନାଇ । ଏଣିକି ରଥ ଉପରେ ଉଡୁଥିବା ପତାକାର ଅଗ୍ରଭାଗ ଦୃଶ୍ୟମାନ । ସ୍ପଷ୍ଟ ଦେଖାଯାଉଥାଏ ଗୋଟିଏ ରଥ ଆଗେଇ ଆସୁଥିବା ଭଳି । ଏହାକୁ ଲକ୍ଷ୍ୟ କରି ଓ ଟଙ୍କାର ଶବ୍ଦ ଧ୍ୱନର ସହିତ ଶୁଣି ଆଚାର୍ଯ୍ୟ ଦ୍ରୋଣ ମତ ଦିଅନ୍ତି, "ହଁ, ଗଙ୍ଗାପୁତ୍ର ! ଏହା ଅର୍ଜୁନଙ୍କ ଧନୁଷ୍ଟଙ୍କାରର ଶବ୍ଦ । ସମ୍ଭବତଃ ସେଇ ହିଁ ଆଗେଇ ଆସୁଛନ୍ତି ରଥରେ ବସି । ଯୁଦ୍ଧର ଆହ୍ୱାନ ଦେଉଛନ୍ତି !" ମୁଖମଣ୍ଡଳ ତାଙ୍କର ଖୁବ୍ ପ୍ରସନ୍ନ । କୃପାଚାର୍ଯ୍ୟଙ୍କର ମଧ୍ୟ । ହୁଏତ ସେମାନେ ଭାବୁଥାନ୍ତି, "ଯାହା ହେଉ । ଅର୍ଜୁନ ଏବେ ଜୀବିତ । ଅନ୍ୟାନ୍ୟ ପାଣ୍ଡବମାନେ ଓ ଦ୍ରୌପଦୀ ବି ଜୀବିତ ଥିବେ ନିଶ୍ଚୟ ।" ଦୁର୍ଯ୍ୟୋଧନ ମଧ୍ୟ ସମଧିକ ସୁପ୍ରସନ୍ନ । କିନ୍ତୁ ଅନ୍ୟ କାରଣରୁ । ପାଣ୍ଡବମାନଙ୍କ ଅଜ୍ଞାତବାସ ଆଜି ପାଇଯିବ ପ୍ରକାଶ । ସେମାନଙ୍କୁ ପୁଣି ଥରେ ବାର ବର୍ଷ ବନବାସର ଓ ଏକବର୍ଷ ଅଜ୍ଞାତବାସର ଜୀବନ କଟାଇବାକୁ ହେବ । ଏଣିକି ସେ ନିଜେ ହେବେ କୁରୁରାଜ୍ୟର ଏକଛତ୍ର ଅଧିକାରୀ । ପାଣ୍ଡବମାନେ ହେବେ ଚିରବନବାସୀ । ଆଃ ! କି ସୌଭାଗ୍ୟ !

ଆମେ ସମସ୍ତେ ମୁହଁ ଫେରାଇ ପ୍ରସ୍ତୁତ ହେଉ ନିକ୍ଷିପ୍ତ ବାଣସମୂହର ପ୍ରତ୍ୟୁତ୍ତର ଦେବାପାଇଁ । ଅତି ତୀକ୍ଷ୍ଣ ଦୃଷ୍ଟି ପକାଇ ଦେଖେ ମୁଁ । ଆଶ୍ଚର୍ଯ୍ୟର ସୀମା ରହେ ନାହିଁ ମୋର । ସେତେବେଳକୁ ଆମକୁ ଅନୁସରଣ କରୁଥିବା ରଥଟି ଅତି ପାଖେଇ ଯାଇଥାଏ । ଆରେ ! ଏ କ'ଣ ଦେଖୁଛି ମୁଁ ? ରଥନୀଡ଼ରେ ନାହାନ୍ତି କେହି ଧନୁର୍ଦ୍ଧର ବୀର । ବରଂ ଜଣେ ବୀରା ନାରୀ । ମୁହଁ କିନ୍ତୁ ତାଙ୍କର ଜଳୁଛି ତେଜୋମୟ ଦୀପ୍ତିରେ । ଚିହ୍ନିପାରିଲି ତାଙ୍କ ଧନୁକୁ । ଏହା ଗାଣ୍ଡୀବଧନୁ ଛଡ଼ା ଆଉ କିଛି ନୁହେଁ । ଅତି ବିରାଟ ଓ ସୁଦୃଢ଼ । ସାଧାରଣ ଚାରିହାତିଆ ଧନୁଠାରୁ ବଡ଼ । ଏତ ପ୍ରକୃତରେ ଗାଣ୍ଡୀବ ଧନୁ ! କିଏ ଏହି ବୀରା ନାରୀ ଯେ ଅର୍ଜୁନଙ୍କ ଗାଣ୍ଡୀବ ଧନୁ ଧରିଛନ୍ତି ହାତରେ ? ପୁଣି କିଏ ସାରଥି ଯେ ଅଛନ୍ତି ଜଣେ ରଥିବେଶରେ, ଅଥଚ ଧରିଛନ୍ତି ରଥାଶ୍ୱମାନଙ୍କ ବାଗ୍‌ଡୋର ? ନାନା ପ୍ରକାର ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ନେଇପାରୁ ନ ଥାଏ କିଛି ନିର୍ଣ୍ଣୟ ।

ମୋର ସମସ୍ତ ସନ୍ଦେହ ହୁଏ ଅପସାରିତ ଯେତେବେଳେ ଧନୁର୍ଦ୍ଧାରିଣୀଙ୍କ ଧନୁରୁ ଛୁଟୁଥିବା ଗୋଟିଏ ବାଣ ଆସି ପିତାମହ ଭୀଷ୍ମଙ୍କ ପାଦତଳର ଭୂମିକୁ ସ୍ପର୍ଶ କରେ । ପରେ ପରେ ଗୋଟିକ ପରେ ଗୋଟିଏ କରି ବାଣ ଆସି ଆଚାର୍ଯ୍ୟ ଦ୍ରୋଣ ଓ କୃପାଚାର୍ଯ୍ୟଙ୍କ ପାଦଭୂମିକୁ ବି ସ୍ପର୍ଶ କରେ । ଏହାର ପ୍ରତ୍ୟୁତ୍ତରରେ ବୀର ତିନିଜଣ ଆଶୀର୍ବାଦ କରି ପ୍ରତ୍ୟେକେ ଛାଡ଼ନ୍ତି ଗୋଟିଏ ଲେଖାଏଁ ବାଣ । ବାଣ ତିନୋଟି ଧନୁର୍ଦ୍ଧାରିଣୀଙ୍କ ଶିର ଉପରେ ଦେଇ ଚାଲିଯାଏ । ବୀରୋଚିତ ପ୍ରଣାମ ଓ ଆଶୀର୍ବାଦର ଆଦାନ-ପ୍ରଦାନ । ଏବେ ମୋର ଦୃଢ଼ ଧାରଣା ଜନ୍ମେ ଯେ ଅର୍ଜୁନ ନାରୀବେଶରେ ଅଛନ୍ତି ରଥାସୀନ । ସମ୍ଭବତଃ ରଥର ସାରଥି ସ୍ୱୟଂ ମତ୍ସ୍ୟରାଜ ବିରାଟଙ୍କ ପୁତ୍ର ଉତ୍ତର ।

ଦୁଇ ପକ୍ଷ ମଧ୍ୟରେ ଯୁଦ୍ଧର ଘନଘଟା ଧୀରେ ଧୀରେ ଜମିଉଠେ । ଗୋଟିଏ ପକ୍ଷରେ ଭୀଷ୍ମ, ଦ୍ରୋଣ, କୃପ, ଅଶ୍ୱତ୍ଥାମା ଆଦି ମହାବୀରମାନଙ୍କ ଦ୍ୱାରା ମଣ୍ଡିତ କୌରବବାହିନୀର ଚତୁରଙ୍ଗ ସେନାଦଳ । ଅପରପକ୍ଷରେ ଅର୍ଜୁନ ଏକାକୀ ନିଜେ ।

ଭାବୁଥାଏ, ଏଭଳି ବୃହତ୍ ସେନାବଳ ଆଗରେ ଅର୍ଜୁନ ସମ୍ଭାଳିବେ ବା କେତେ ସମୟ ? ନିଶ୍ଚୟ ଅଚିରେ ହେବେ ପରାସ୍ତ । ଅଥବା ପାଇବେ ବୀରଗତି । ହାୟ ! ବିଚାରୀ ବିଧବା ରାଜମାତା କୁନ୍ତୀଦେବୀ ଏଇ ନିର୍ବୋଧତା ଲାଗି ପୁତ୍ରହୀନା ହେବାର ଦୁଃଖ ଭୋଗିବେ ସିନା ! ଏହା ବୁଦ୍ଧିହୀନ ଅର୍ଜୁନଙ୍କ ଦୁଃସାହସ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଯାହା ଦେଖିଲି, ବଡ଼ ବିଚିତ୍ର ତାଙ୍କ ଯୁଦ୍ଧର କୌଶଳ । ବାମ-ଦକ୍ଷିଣ ଉଭୟ ହସ୍ତରେ ଅସ୍ତ୍ର ଚଳାଇବାରେ ଖୁବ୍ ପାରଙ୍ଗମ ସେ । ଧନୁର ଗୁଣ ଟାଣିବା, ତହିଁରେ ଅସ୍ତ୍ର ରଖିବା ଓ ଅସ୍ତ୍ର ଛାଡ଼ିବା ମଧ୍ୟରେ ଜଣାପଡୁ ନ ଥାଏ ସମୟର ବ୍ୟବଧାନ । ଗତି ତାଙ୍କର ଏପରି ତୀବ୍ର ଯେ ଆମକୁ ଚାରି ଦିଗ ଦିଶୁଥାଏ ଅର୍ଜୁନମୟ । ପିତାମହ କ୍ରୁଦ୍ଧ ହୋଇ ଏକାଥରକେ ଛାଡ଼ନ୍ତି ସପ୍ତ-ବାଣ । ଅର୍ଜୁନ ଅନୁରୂପ ଭାବରେ ସପ୍ତବାଣ ମାରି ସେହି ବାଣଗୁଡ଼ିକୁ କରନ୍ତି ପ୍ରତିହତ । ପିତାମହଙ୍କ କଣ୍ଠରୁ ସ୍ୱତଃ ସ୍ଫୁରିତ ହୁଏ ତାଙ୍କ ଉଦ୍ଦେଶ୍ୟରେ ପ୍ରଶଂସାବାଣୀ, ''ବାଃ ! ପୁତ୍ର ଅର୍ଜୁନ ! ବାଃ ! ତୁମକୁ ଶତ ଧନ୍ୟବାଦ !''

''ପିତାମହ ! ଆପଣ କାହାଙ୍କ ପକ୍ଷରେ ଲଢୁଛନ୍ତି ? ଆମ ପକ୍ଷରେ ନା ଅର୍ଜୁନଙ୍କ ପକ୍ଷରେ ?'' ଦୁର୍ଯ୍ୟୋଧନଙ୍କ କଟାକ୍ଷ ବଚନ । ଚକ୍ଷୁଦ୍ୱୟ ତାଙ୍କର ଆରକ୍ତ । ମୁଖମଣ୍ଡଳରେ ବିରକ୍ତିଭାବ ସୁସ୍ପଷ୍ଟ ।

''କାହାରି ସପକ୍ଷରେ ନୁହେଁ କିମ୍ବା ବିପକ୍ଷରେ ବି ନୁହେଁ । କେବଳ ହସ୍ତିନାପୁରର ସପକ୍ଷରେ ।'' ଗମ୍ଭୀର ଭାବରେ କହନ୍ତି ପିତାମହ ।

''ଆଉ ଯୁଦ୍ଧର କି ଆବଶ୍ୟକତା ଅଛି ? ଅର୍ଜୁନ ତ ଧରା ପଡ଼ିଯାଇଛନ୍ତି । ପାଣ୍ଡବମାନଙ୍କ ଅଜ୍ଞାତବାସର ମୁଖା ଖୋଲିଯାଇଛି । ଏବେ ସେମାନଙ୍କୁ ଆଉ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ ଭୋଗିବାକୁ ହେବ । ଯୁଦ୍ଧ ବନ୍ଦ କରି ଦ୍ୟୂତକ୍ରୀଡ଼ାର ସର୍ତ୍ତ ଏବେ ପାଳନ କରାଯାଉ ।'' ଦୁର୍ଯ୍ୟୋଧନ ଦୃଢ଼ତାର ସହିତ କହନ୍ତି । ତାଙ୍କୁ ସମର୍ଥନ କରନ୍ତି ମାତୁଳ ଶକୁନି ଓ ଦୁଃଶାସନ ।

''ସେ ବିଚାର ପରେ ପୁତ୍ର ! ଏବେ ଅର୍ଜୁନଙ୍କ ଆକ୍ରମଣର ସମ୍ମୁଖୀନ ହୁଅ । କୁରୁସେନାକୁ ରକ୍ଷା କର । ଆଉ ନିଜକୁ ବି ।'' ପିତାମହଙ୍କ ବାକ୍ୟ ନିସ୍ପୃହ । ସେ ଅଧିକତର ମନୋଯୋଗ ସହିତ ଲାଗିରହନ୍ତି ଯୁଦ୍ଧରେ । ପରିସ୍ଥିତି ତାଙ୍କୁ ପ୍ରାଣହୀନ ଯନ୍ତ୍ରଟିଏ କରିଦେଇଥାଏ ଯେମିତି ।

ଅର୍ଜୁନ ହୁଏତ ଚାହାନ୍ତି ନାହିଁ ଅଧିକ ଲୋକକ୍ଷୟ । ଅଧିକ .ରକ୍ତଧାରାର ଛଳ ଛଳ ପ୍ରବାହ । କ୍ଷତ-ବିକ୍ଷତ ବୀରମାନଙ୍କର ଅଧିକ ଆର୍ତ୍ତ ଚିତ୍କାର । ଯୁଦ୍ଧର ଅବଧିକୁ ଶୀଘ୍ର ଶେଷ କରିଦେବା ପାଇଁ ଛାଡ଼ନ୍ତି ମୋହନାସ୍ତ୍ର । ମାଦକ ବାୟୁର ସୃଷ୍ଟି କରି ମଣିଷକୁ ମୂର୍ଚ୍ଛିତ କରିଦେବାରେ ସମର୍ଥ ଅସ୍ତ୍ର । ଅମାରକ ଅଥଚ ମଣିଷକୁ ପକାଇଦିଏ ପଥର ପରି ନିଶ୍ଚଳ ଅବସ୍ଥାରେ । ଫଳ ତାହାର ତ୍ୱରିତ । ପ୍ରତିକାର ସଂପର୍କରେ ଚିନ୍ତା କରିବା ପୂର୍ବରୁ ହିଁ କାର୍ଯ୍ୟ ଆରମ୍ଭ କରିଦିଏ । ହଠାତ୍ ବହିଆସେ ଚାରିଦିଗରୁ ଦିବ୍ୟ ସୁଗନ୍ଧ ମିଶ୍ରିତ ପବନ । ସେହି ପବନର ଆଘ୍ରାଣରେ ସୈନ୍ୟମାନେ ଜଣକ ପରେ ଜଣେ କରି ହୋଇଯାଆନ୍ତି ମୂର୍ଚ୍ଛିତ । ମୋର ମଧ୍ୟ ସେହି ଦଶା । ହଠାତ୍ ମୋ' ମୁଣ୍ଡ ଘୂରିବାକୁ ଲାଗେ ବାତଚକ୍ର ଭଳି । ସାରା

ପୃଥିବୀ ଯେମିତି ଘୂରୁଥାଏ ମୋ' ଆଗରେ । ଆଉ ସମ୍ଭାଳିପାରେ ନାହିଁ । ମୂର୍ଚ୍ଛିତ ହୋଇ ପଡ଼େଯାଏ ରଥନୀଡ଼ରେ । ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ଓ ଦୁର୍ଯ୍ୟୋଧନ ଆଦି ମୋ' ପୂର୍ବରୁ ମୂର୍ଚ୍ଛିତ । କେବଳ ପିତାମହ ଭୀଷ୍ମ ଲଢୁଥାନ୍ତି ନିସ୍ତେଜ ହୋଇ । ଭାବୁଥାଏ, ହୁଏତ ଆଉ କିଛି ସମୟ ପରେ ସେ ମଧ୍ୟ ହେବେ ମୂର୍ଚ୍ଛିତ ।

ଦୀର୍ଘ ସମୟର ବ୍ୟବଧାନ ପରେ ମୋର ମୂର୍ଚ୍ଛାଭଙ୍ଗ ହୁଏ । କେବଳ ପିତାମହ ଭୀଷ୍ମଙ୍କ ବ୍ୟତୀତ ଅନ୍ୟମାନେ ତଥାପି ମୂର୍ଚ୍ଛିତ । କ୍ରମେ କ୍ରମେ ସେମାନଙ୍କର ମୂର୍ଚ୍ଛା ବି ତୁଟେ । ବଡ଼ ଆଶ୍ଚର୍ଯ୍ୟ ଦୃଶ୍ୟ ପଡ଼େ ଆଖିରେ । ଅର୍ଜୁନ ନାହାନ୍ତି । ଗୋଧନ ବି ନାହାନ୍ତି । ସେମାନେ ହୁଏତ ବିରାଟଙ୍କ ଗୋଶାଳାରେ ପହଞ୍ଚି ଯାଇଥିବେ ଅଥବା ହୋଇଥିବେ ତାହାର ନିକଟବର୍ତ୍ତୀ । ପ୍ରାୟ ସମସ୍ତ ବୀରଙ୍କ ସ୍ୱରୂପ ବିଚିତ୍ର । କାହାରି ଉତ୍ତରୀୟ କିମ୍ବା କବଚ ନାହିଁ । ଦୁର୍ଯ୍ୟୋଧନଙ୍କ ଅବସ୍ଥା ସମସ୍ତଙ୍କଠାରୁ ହୀନ । କେବଳ ଅନ୍ତର୍ବାସ ଛଡ଼ା ଆଉ କିଛି ନାହିଁ ଦେହରେ । ତାଙ୍କ ଚେତା ଫେରିବା ପରେ ସେ ବୀରବିକ୍ରମରେ ଗର୍ଜିଉଠି କହନ୍ତି, ‘‘ଚାଲନ୍ତୁ ପିତାମହ । ଚାଲନ୍ତୁ ଆଚାର୍ଯ୍ୟ ଦ୍ରୋଣ ଓ ମିତ୍ର ଅଙ୍ଗରାଜ । ଅର୍ଜୁନ ଭୀରୁ ଭଳି ପଳାଇ ଯାଇଛନ୍ତି । ତାଙ୍କୁ ଅନୁଧାବନ କରିବା ।''

‘‘ପୁତ୍ର ଦୁର୍ଯ୍ୟୋଧନ ! ବନ୍ଦ କର ଏ ପ୍ରଳାପ । ଅର୍ଜୁନ ବିଜୟୀ । ଆମେ ସମସ୍ତେ ପରାଜିତ । ଏବେ ମୁହଁ ପୋତି ଫେରିଚାଲ ହସ୍ତିନାପୁରକୁ ।''

‘‘ମୁଁ କିନ୍ତୁ ପରାଜୟକୁ ସ୍ୱୀକାର କରେନା ପିତାମହ । ଆମେ ଯୁଦ୍ଧ କରିବା ।'' ତାଙ୍କର ଦମ୍ଭୋକ୍ତି ।

‘‘କ'ଣ ନେଇ ଯୁଦ୍ଧ କରିବ ? ଦେଖ ତୁମ ବୀରମାନଙ୍କ ଅବସ୍ଥା । କାହାରି କବଚ ନାହିଁ କି ଉତ୍ତରୀୟ ନାହିଁ । ଆଉ ନିଜ ଅବସ୍ଥାକୁ ବି ଦେଖ ଭଲକରି । ଯୁଦ୍ଧ କରି ଆଉ ଲୋକହସା ହେବା ଅନୁଚିତ । ମୋ' କଥା ମାନ । ଫେରିଚାଲ ହସ୍ତିନାପୁରକୁ ।'' ଉପଦେଶ ଦେଇ କହନ୍ତି ପିତାମହ ।

‘‘ଆଉ ମୁଁ ଯେଉଁ କଥା ଆଗରୁ କହିଥିଲି ?''

‘‘କେଉଁ କଥା ?''

‘‘ପାଣ୍ଡବମାନେ ଅଜ୍ଞାତବାସର ଅବଧି ପୂର୍ବରୁ ଧରା ପଡ଼ିଯାଇଛନ୍ତି ବୋଲି ।''

‘‘ତାହା ତୁମର ଭ୍ରମ ଧାରଣା ପୁତ୍ର । ଚାନ୍ଦ୍ରବର୍ଷର ଗଣନା ଅନୁସାରେ ସେମାନଙ୍କ ଅଜ୍ଞାତବାସର ଅବଧି ସମାପ୍ତ । ନା କ'ଣ କହୁଛନ୍ତି ଆଚାର୍ଯ୍ୟ ଦ୍ରୋଣ ?'' ଏହା କହି ଦ୍ରୋଣାଚାର୍ଯ୍ୟଙ୍କ ମୁହଁକୁ ଚାହାନ୍ତି ସେ । ଆଚାର୍ଯ୍ୟ ଯତ୍ନର ସହିତ ଗଣନା କରନ୍ତି । ଶେଷରେ କହନ୍ତି, ‘‘ହଁ, ଗଙ୍ଗାପୁତ୍ର ! ପାଣ୍ଡବମାନଙ୍କ ବନବାସର ଅବଧି ପୂର୍ଣ୍ଣ ।''

ଦୁର୍ଯ୍ୟୋଧନ ରହନ୍ତି ନୀରବ । ନିଜ କଥାରୁ ଫେରିଆସନ୍ତି ବେଳାଭୂମିରୁ ବାଧା ପାଇ ସମୁଦ୍ର ଲହରୀ ଫେରିଆସିବା ଭଳି ।

ସେ ସିନା ଭାବାବେଗରେ କହିଯାଉଥାନ୍ତି ଏତେ କଥା । ନିଜର ସ୍ୱରୂପଟିକୁ କିନ୍ତୁ ଏ ପର୍ଯ୍ୟନ୍ତ କରି ନ ଥାନ୍ତି ପରୀକ୍ଷା । ପିତାମହଙ୍କ କଥାରେ ଏବେ ପରୀକ୍ଷା କରି ନିଅନ୍ତି

ନିଜକୁ । ଲାଜେଇ ଯାଆନ୍ତି ଖୁବ୍ । ଅନ୍ତର୍ବାସ ଛଡ଼ା ଆଉ କିଛି ନାହିଁ ଦେହରେ । ଭାରି ଅପମାନିତ ବୋଧ କରନ୍ତି ନିଜକୁ । ସେନାବଳ ସହିତ ଶକଟରେ ଆସିଥିବା ଭଣ୍ଡାରରୁ ନୂତନ ବସ୍ତ୍ର ଓ କବଚ ଆହରଣ କରନ୍ତି । ତାହା ପରେ ଆଦେଶ ଦିଅନ୍ତି ସେନାବଳକୁ ହସ୍ତିନାପୁର ଫେରିଯିବାପାଇଁ ।

କୁରୁସେନାବାହିନୀ ପରାଜୟର ଗ୍ଲାନି ଧରି ଫେରିବାକୁ ଲାଗେ ହସ୍ତିନାପୁର ଅଭିମୁଖରେ ।

ମୋ' ପାଇଁ ଏଇ ଗ୍ଲାନି କିନ୍ତୁ ଥାଏ ଅଧିକର ଦୁଃଖଦ । କାରଣ ଏଇ ଯୁଦ୍ଧରେ ଅର୍ଜୁନଙ୍କ ହାତରେ ମୋ' ପ୍ରିୟ ଅନୁଜ ସଂଗ୍ରାମଜିତ୍ ପାଇଥାନ୍ତି ବୀରଗତି । ଚିରଦିନ ପାଇଁ ହରାଇ ବସିଥାଏ ତାଙ୍କୁ । ଏଥିରେ ଅର୍ଜୁନଙ୍କ ପ୍ରତି ମୋ' କ୍ରୋଧ ବଢ଼ିଯାଏ ଆହୁରି । ଖାଲି ଅପେକ୍ଷା କରି ରହିଥାଏ ଆଗାମୀ କେଉଁ ଦିନର ଶୁଭ ମୁହୂର୍ତ୍ତକୁ ଯେତେବେଳେ ଏହାର ପ୍ରତିଶୋଧ ନେବାପାଇଁ ପାଇବି ସୁଯୋଗ । ପ୍ରତିଶୋଧ-ଚେତନାର ଜ୍ୱାଳାମୁଖୀ ନିରନ୍ତର ଉଦ୍‌ଗୀର୍ଣ୍ଣ ହେଉଥାଏ ମୋ' ଅନ୍ତସ୍ଥଳରୁ !

ସେନାବାହିନୀ ହସ୍ତିନାପୁରରେ ପହଞ୍ଚିଲା ବେଳକୁ ଅସ୍ତଗାମୀ ସୂର୍ଯ୍ୟଙ୍କ ପୀତ ଲୋହିତ ରଶ୍ମି ନଗରର ପ୍ରବେଶଦ୍ୱାରରେ ପଡ଼ି ହସୁଥାଏ ମ୍ଳାନ ହସ ! ଆଉ ଶୁଭୁଥାଏ ନୀଡ଼-ମୁଖୀ ବିହଗମାନଙ୍କର ଶେଷ କାକଳି ! କ୍ଳାନ୍ତ ଓ ଅବସନ୍ନ କାକଳି !!

## ଏକସ୍ତରି

ସତ କଥା ବେଶି ଦିନ ଲୁଚି ରହେନା । ଦିନେ ନା ଦିନେ ହୁଏ ପ୍ରଘଟ । ପାଣ୍ଡବମାନଙ୍କ ଅଜ୍ଞାତବାସର ଅବଧି କଟିଗଲା ଅତି ଗୋପନୀୟ ଭାବରେ । କେହି କିଛି ଜାଣିପାରିଲେ ନାହିଁ । ଶତ ଚେଷ୍ଟା କରି ମଧ ଦୁର୍ଯ୍ୟୋଧନ ହେଲେ ଅକ୍ଷମ । କିନ୍ତୁ ବିରାଟବାହିନୀ ସହିତ କୁରୁବାହିନୀର ହୋଇଥିବା ଯୁଦ୍ଧର ଅବସାନରେ ସବୁ କଥା ହୋଇଗଲା ସ୍ୱଷ୍ଟ । ଲାଗିଗଲେ କୁରୁରାଜ୍ୟର ଗୁପ୍ତଚରଗୋଷ୍ଠୀ । ଆମେ ହସ୍ତିନାପୁରରେ ପହଞ୍ଚିବାର ପର ଦିନ ହିଁ ସେଠାରେ ଜଣାପଡ଼ିଗଲା ସବୁ କଥା । ଖବର ପାଇବା ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନ ମତେ ଡକାଇଲେ ଏବଂ ସବୁ କଥା କହିଗଲେ ଗୋଟି ଗୋଟି କରି ।

ସେ କହିଲେ, ''ମିତ୍ର ଅଙ୍ଗରାଜ । ସବୁ ଉଦ୍ୟମ ମୋର ଏବେ ବ୍ୟର୍ଥ । ପାଣ୍ଡବମାନେ ଦ୍ୟୂତକ୍ରୀଡ଼ାର ସମସ୍ତ ସର୍ତ୍ତ ପୂରଣ କରିସାରିଛନ୍ତି । ମାତୁଳ ଶକୁନିଙ୍କ ଏତେ ଉଦ୍ୟମ ବୃଥା ! ବେଶି ଦୁଃଖ ଆସୁଛି ଆମ ହୀନବୀର୍ଯ୍ୟ ନିର୍ବୋଧ ଗୁପ୍ତଚର ସଂସ୍ଥାକୁ ନେଇ । ଦୀର୍ଘ ଏକ ବର୍ଷର ସୁଯୋଗ ପାଇଲେ । ପାଣ୍ଡବମାନେ ଗୋଟିଏ ଜାଗାରେ ଥିଲେ । ଅଥଚ ସାମାନ୍ୟ ଟିକିଏ ସୂଚନା ପାଇପାରିଲେ ନାହିଁ ସେମାନେ ।''

''ବର୍ତ୍ତମାନ ପାଣ୍ଡବମାନେ ନିଶ୍ଚୟ ରାଜ୍ୟଭାଗ ମାଗିବେ ।'' ମୁଁ କହିଲି ।

''ମାଗିବେ ତ ନିଶ୍ଚୟ । କିନ୍ତୁ ମୁଁ ଦେବି ନାହିଁ । ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମିତ ଭୂମି ବି ଦେବି ନାହିଁ । ଏହା ମୋର ଦ୍ୱିବାର ସତ୍ୟ ।'' ତାଙ୍କ ଦୃଢ଼ ଓ ଦାମ୍ଭିକତାପୂର୍ଣ୍ଣ ଉତ୍ତରରେ ପ୍ରକମ୍ପିତ ସାରା କକ୍ଷ ।

''ମୋର ମଧ୍ୟ ତ୍ରିବାର ସତ୍ୟ ଯେ ମୁଁ ମିତ୍ରଙ୍କ ପକ୍ଷକୁ ସମର୍ଥନ କରି ଲଢ଼ିବି ।'' ତାଙ୍କୁ ଆଶ୍ୱାସନା ଦେଇ କହିଲି ।

ପ୍ରସନ୍ନ ହସ ହସିଲେ ସେ । ଆଉ ସମର୍ଥନସୂଚକ ଶିର ସଞ୍ଚାଳନ କରି କହିଲେ, ''ମୁଁ ଜାଣେ ମିତ୍ର, ଜାଣେ । ଦେଖାଯାଉ, ଏବେ କେଉଁ ପାଣି କେଉଁ ଦିଗକୁ ବହୁଛି ?''

''ହଁ, ତାହା ନୁହେଁ ତ ଆଉ କ'ଣ ?'' ମୋର ସହମତି ପ୍ରକାଶ କରି କହିଲି ।

ମନରେ ମୋର ତଥାପି ଉତ୍କଣ୍ଠା । ଖାଲି ଜାଣିଥିଲି ପାଣ୍ଡବମାନେ ବିରାଟନଗରରେ ଛଦ୍ମବେଶରେ ଥିଲେ ବୋଲି । ତାହା ପୁଣି ଅର୍ଜୁନଙ୍କ ଯୁଦ୍ଧକାଳୀନ ନାରୀବେଶରୁ । ଅନ୍ୟାନ୍ୟ ପାଣ୍ଡବ ଓ ପାଞ୍ଚାଳୀଙ୍କ କଥା ଜାଣି ନ ଥିଲି । କେବଳ ସନ୍ଦେହ ଥିଲା ଯେ ସେମାନେ ବି ସେଇ ବିରାଟନଗରରେ ଥିବେ । ଟିକିନିଖି ବିବରଣୀ ସଂପର୍କରେ କହିଲି ଦୁର୍ଯ୍ୟୋଧନଙ୍କୁ । ସେ ଯାହା ଉତ୍ତର ଦେଲେ ତହିଁରେ ଖୁବ୍ ଚମତ୍କୃତ ମୁଁ । କେତେ ନିଖୁଣ ଭାବରେ ଏଇ ଅଜ୍ଞାତବାସର ନାଟକଟି ଅଭିନୀତ ହୋଇଯାଇଛି ସତେ ! ପାଣ୍ଡବମାନଙ୍କୁ ଏପରି ବିଚକ୍ଷଣ ବୁଦ୍ଧି ସ୍ଫୁରିବା ଅସମ୍ଭବ । ଭାବିଲି, ସେମାନଙ୍କ ହିତାକାଙ୍କ୍ଷୀ ଦ୍ୱାରକାଧିପତି କୃଷ୍ଣ ବୋଧହୁଏ ଏଇ ବୁଦ୍ଧିଟି ତାଙ୍କୁ ଦେଇଥିବେ । ଅଥବା ଦେଇଥିବେ କୁରୁକୁଳର ପିତାମହ ବ୍ୟାସଦେବ । କାରଣ ଉଭୟ ମଝିରେ ମଝିରେ ପାଣ୍ଡବମାନଙ୍କ ବନାଶ୍ରମକୁ ଯାଉଥିବାର ସଂବାଦ କୁରୁ ଗୁପ୍ତଚରମାନେ ଆଣି ପହଞ୍ଚାଇଥିଲେ ।

ଦୁର୍ଯ୍ୟୋଧନଙ୍କ ପାଖରୁ ଶୁଣିଲି, ସେମାନଙ୍କ ପଛେ ପଛେ କୁରୁ ଗୁପ୍ତଚରମାନେ ଲାଗିଥିବାର ସୂଚନା ସେମାନେ ପାଇଯାଇଥାନ୍ତି ବୋଧହୁଏ । କାରଣ ବାରବର୍ଷ ବନବାସର ଅବଧି ପୂରିବାକୁ ଆଉ ଦୁଇ ଦିନ ମାତ୍ର ବାକି ଅଛି, ସେମାନେ ହୋଇଯାନ୍ତି ଆଶ୍ରମରୁ ଅନ୍ତର୍ହିତ । ପାଞ୍ଚ ଭାଇ ବିଭିନ୍ନ ଦିଗ ଓ କୋଣକୁ ଅନୁସରଣ କରିଯାଆନ୍ତି । ତେଣୁ ଆଶ୍ରମକୁ ଆଉ ଫେରିବେ ନାହିଁ ବୋଲି ସନ୍ଦେହର ଅବକାଶ ନ ଥାଏ । କିନ୍ତୁ ଫେରନ୍ତି ନାହିଁ । ଗୁପ୍ତଚରମାନଙ୍କ ଆଖିରେ ଧୂଳି ଦେଇ ଉଭେଇଯାନ୍ତି କୁଆଡ଼େ । ସେମାନେ ଆସି ପହଞ୍ଚନ୍ତି ବିରାଟ ରାଜ୍ୟରେ । ନଗର ସୀମାରେ ଥିବା ନିଜ ନିଜ ଅସ୍ତ୍ରଗୁଡ଼ିକୁ ରଖିଦିଅନ୍ତି ଗୋଟିଏ ଶ୍ମଶାନସ୍ଥ ଶମୀବୃକ୍ଷରେ । ତାହାପରେ ଉପସ୍ଥିତ ହୁଅନ୍ତି ରାଜଦ୍ୱାରରେ ଭିନ୍ନ ଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ରୂପରେ । ତେଣୁ ସହଜରେ ଆଡ଼େଇ ଦେଇପାରନ୍ତି ସନ୍ଦେହର ପରଦାକୁ । ଜ୍ୟେଷ୍ଠପାଣ୍ଡବ ଯୁଧିଷ୍ଠିର ଯାଆନ୍ତି କଙ୍କ ନାମଧାରୀ ଜଣେ ବ୍ରାହ୍ମଣବେଶରେ । ଦ୍ୟୂତକ୍ରୀଡ଼ାରେ ପ୍ରବୀଣ ବୋଲି ରାଜା ବିରାଟଙ୍କୁ ଦିଅନ୍ତି ନିଜ ପରିଚୟ । ସେଠାରେ ରହନ୍ତି ରାଜସଭାର ଜଣେ ସଦସ୍ୟ ହୋଇ । ଦ୍ୟୂତକ୍ରୀଡ଼ାରେ ରାଜାଙ୍କ ଚିତ୍ତବିନୋଦନ କରନ୍ତି । ଆଉ ବେଳେବେଳେ ଶାସ୍ତ୍ର ସଂପର୍କରେ ବି ଦିଅନ୍ତି ଉପଦେଶ । ଭୀମସେନ ବଲ୍ଲବ ନାମରେ ଯୋଗ ଦିଅନ୍ତି ରାଜାଙ୍କ ରନ୍ଧନଶାଳାରେ ଜଣେ ସୂପକାର ଭାବରେ । ଆଉ ମଧ୍ୟମ ପାଣ୍ଡବ ଅର୍ଜୁନ । ସେ ନପୁଂସକବେଶ ସାଜି ବୃହନ୍ନଳା ନାମରେ ରହନ୍ତି ରାଣୀଭବନରେ । ନୃତ୍ୟ ଗୀତ ଶିକ୍ଷା ଦିଅନ୍ତି ରାଜକୁମାରୀ ଉତ୍ତରାଙ୍କୁ । ପୂର୍ବରୁ ଏକ ବର୍ଷ ପାଇଁ ନପୁଂସକ ହୋଇ ରହିବାର ଯେଉଁ ଅଭିଶାପ ପାଇଥାନ୍ତି ଉର୍ବଶୀଙ୍କଠାରୁ ସ୍ୱର୍ଗପୁରରେ ଅବସ୍ଥାନ କାଳରେ ତାହା ଏବେ ଫଳେ । ତାହା ତାଙ୍କ ପାଇଁ ଅଭିଶାପ ନ ହୋଇ ବରଂ ହୁଏ ଆଶୀର୍ବାଦ ।

ପରମ ସହାୟକ ହୁଏ ନିଜ ଛଦ୍ମବେଶକୁ ଗୋପନ ରଖିବାରେ । ନକୁଳ ଗ୍ରନ୍ଥିକ ନାମରେ ପରିଚିତ ହୋଇ ରାଜାଙ୍କ ଅଶ୍ୱଶାଳାର ଅଧ୍ୟକ୍ଷ ଦାୟିତ୍ୱ ନିଅନ୍ତି । ଆଉ ସହଦେବ ନିଯୁକ୍ତି ପାଆନ୍ତି ରାଜାଙ୍କ ଗୋଶାଳାର ଅଧ୍ୟକ୍ଷ ଭାବରେ । ଦ୍ରୌପଦୀ ସୈରିନ୍ଧ୍ରୀ ବେଶରେ ଉପଗତ ହୁଅନ୍ତି ରାଜାଙ୍କ ଆଗରେ ଏବଂ ରାଣୀ ସୁଦେଷ୍ଣାଙ୍କ ଦାସୀର କାର୍ଯ୍ୟଭାର ନିଅନ୍ତି ।

ଏମିତି ବିତିଯିବାକୁ ଲାଗେ ପାଣ୍ଡବମାନଙ୍କ ଅଜ୍ଞାତବାସ ଜୀବନ ବିରାଟଭବନରେ । ନିର୍ବିଘ୍ନରେ ଓ ନିର୍ବାଧରେ । କେହି କିଛି ଜାଣିପାରନ୍ତି ନାହିଁ । ସନ୍ଦେହର ଊର୍ଦ୍ଧ୍ୱରେ ରହିବା ଉଦ୍ଦେଶ୍ୟରେ ସେମାନେ ପରସ୍ପର ସହିତ କଥାବାର୍ତ୍ତା ବି ହୁଅନ୍ତି ନାହିଁ । ଅକସ୍ମାତ୍ ସାକ୍ଷାତ୍ ହୋଇଗଲେ ଅଭିନୟ କରନ୍ତି ପରସ୍ପରର ଅପରିଚିତ ବୋଲି । କିଛି ଦିନ ପରେ କିନ୍ତୁ ହଠାତ୍ ଏଇ ଶାନ୍ତି ହୁଏ ବ୍ୟାହତ । ସୈରନ୍ଧ୍ରୀରୂପିଣୀ ଦ୍ରୌପଦୀ ପଡ଼ନ୍ତି ରାଣୀ ସୁଦେଷ୍ଣାଙ୍କ ଭାଇ ସେନାପତି କୀଚକଙ୍କ ଦୃଷ୍ଟିରେ । ତାଙ୍କ ରୂପରେ ମୁଗ୍ଧ ହୋଇ ସେ ତାଙ୍କୁ ପ୍ରଣୟ ନିବେଦନ କରନ୍ତି । ଅବଶ୍ୟ ସୁଦେଷ୍ଣାଙ୍କ ଜ୍ଞାତସାରରେ । ଦ୍ରୌପଦୀଙ୍କ ଶତ ନିବେଦନ ସତ୍ତ୍ୱେ ସେ କିଛି ସାହାଯ୍ୟ କରିପାରନ୍ତି ନାହିଁ । କୀଚକଙ୍କୁ ମହାଭୟ । ତାଙ୍କରି ବାହୁବଳରେ ହିଁ ପତି ବିରାଟ ଏବେ ମତ୍ସ୍ୟଦେଶର ରାଜା । ଟିକିଏ ଅପ୍ରସନ୍ନ ହେଲେ ସେ ହୁଏତ ହେବେ ଗାଦିଚ୍ୟୁତ । ତେଣୁ ବାଧ୍ୟ ହୋଇ ଦ୍ରୌପଦୀ ବଲ୍ଲବରୂପୀ ଭୀମସେନଙ୍କ ସହାୟତା ନିଅନ୍ତି । ତାଙ୍କ ପରାମର୍ଶରେ କୀଚକଙ୍କୁ ପ୍ରଲୋଭିତ କରାଇ ଦିନେ ଗଭୀର ରାତ୍ରିରେ ନେଇଆସନ୍ତି ରାଜଭବନର ନାଟ୍ୟଶାଳାକୁ । ସେଠାରେ ପୂର୍ବରୁ ଲୁକ୍କାୟିତ ହୋଇ ରହିଥାନ୍ତି ଭୀମସେନ । ସେ ତଡ଼ିତ୍ ବେଗରେ ଆକ୍ରମଣ କରନ୍ତି କୀଚକଙ୍କୁ । କୀଚକ ସଂପୂର୍ଣ୍ଣ ଅପ୍ରସ୍ତୁତ ଏଇ ଅପ୍ରତ୍ୟାଶିତ ଆକ୍ରମଣ ପାଇଁ । ତଥାପି ଲଢ଼ନ୍ତି ଅନେକ ସମୟ ପାଇଁ । ଏଣେ ପୂର୍ବକଳ୍ପିତ ଯୋଜନା ଅନୁଯାୟୀ ବୃହନ୍ନଳା ଠିକ୍ ସେହି ସମୟରେ କରିବସନ୍ତି ମର୍ଦ୍ଦଳର ଅଭ୍ୟାସ । ତାହାର ଗୁରୁଗମ୍ଭୀର ତାନ ମଧ୍ୟରେ ଯୁଦ୍ଧର ଘନଘଟାର ଶବ୍ଦ ମିଳାଇଯାଏ । ଆଉ ମିଳାଇଯାଏ ବି କୀଚକଙ୍କ ଆର୍ତ୍ତ ଚିତ୍କାର । ମର୍ଦ୍ଦଳରେ ଦିଆଯାଉଥିବା ଗୁରୁ ଗୁରୁ ଆଘାତରେ ବୃହନ୍ନଳାଙ୍କ କରାଙ୍ଗୁଳି ହୋଇଯାଏ କ୍ଷତବିକ୍ଷତ । ଝର ଝର ହୋଇ ବହିଯାଏ ରକ୍ତ । ତଥାପି ମର୍ଦ୍ଦଳର ଶବ୍ଦ ବନ୍ଦ ହୁଏନା । ବରଂ ବଢ଼ି ବଢ଼ି ଚାଲିଥାଏ । ବନ୍ଦ ହୁଏ ସେତିକିବେଳେ ଯେତେବେଳେ ଭୀମସେନଙ୍କ ହସ୍ତରେ ମୃତ୍ୟୁ ଘଟେ କୀଚକଙ୍କର । ପର ଦିନ ସକାଳକୁ ପ୍ରଘଟ ହୋଇଯାଏ ସବୁ କଥା । କୀଚକଙ୍କ ମୃତ୍ୟୁରେ ସାରା ରାଜଭବନ ଚକିତ-ବିସ୍ମିତ । ଗୋଟିଏ ବିରାଟ ଆଶ୍ରୟବୃକ୍ଷ ଭାଙ୍ଗିପଡ଼ିବାରୁ ରାଜା ବିରାଟ ବି ଖୁବ୍ ଦୁଃଖିତ । ଦ୍ରୌପଦୀଙ୍କ ଦ୍ୱାରା ପ୍ରଚାରିତ ହୋଇଯାଏ ବିଚିତ୍ର ମନଗଢ଼ା କଥାଟିଏ । ତାଙ୍କ ପ୍ରତି କାମାସକ୍ତ ଦୃଷ୍ଟି ରଖିଥିବାରୁ ତାଙ୍କ ଗନ୍ଧର୍ବପତିଙ୍କ ହସ୍ତରେ ସେ ଏବେ ମୃତ । ସେହି ଦିନଠାରୁ ତାଙ୍କ ମାନସମ୍ମାନ ବଢ଼ିଯାଏ ବିରାଟଭବନରେ । ସେ ଯେ ଜଣେ ବୀରପତ୍ନୀ, ଏହି ଧାରଣା ଆସିଯାଏ ସମସ୍ତଙ୍କର । ସୈରିନ୍ଧ୍ରୀ ଦୃଷ୍ଟିରେ ଦେଖି ତାଙ୍କ ପ୍ରତି ହେୟଜ୍ଞାନ କରିବାକୁ କେହି ଆଉ କରିପାରନ୍ତି ନାହିଁ ସାହସ ।

ହଠାତ୍ ଦିନେ ଖବର ଆସେ ଯେ ତ୍ରିଗର୍ତ୍ତସେନା ମତ୍ସ୍ୟଦେଶ ଉପରେ ଆକ୍ରମଣ କରିଛନ୍ତି ଦକ୍ଷିଣ ଦିଗରୁ । ରାଜା ବିରାଟ ସେହି ଆକ୍ରମଣକୁ ପ୍ରତିହତ କରିବା ପାଇଁ ପଠାନ୍ତି ତାଙ୍କ ସେନାବଳ । ତାହାର ଅଧ୍ୟକ୍ଷ ସ୍ୱୟଂ ସେନାପତି । ପୁଣି ଆଉ ଏକ ବିପତ୍ତି ଘୋଟିଆସେ ସେତିକିବେଳେ ଉତ୍ତର ଦିଗରୁ । କୁରୁସେନାଙ୍କ ଆକ୍ରମଣ ହୁଏ ସେହି ଦିଗରୁ । ସେମାନଙ୍କ ଦ୍ୱାରା ରାଜାଙ୍କ ବିରାଟ ଗୋଧନଦଳ ଅପହୃତ ହୋଇଥିବାର ସଂବାଦ ଆସେ । ରାଜକୁମାର ଉତ୍ତର ସ୍ୱୟଂ କୁରୁସେନାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ହୁଅନ୍ତି । କିନ୍ତୁ ଅସୁବିଧା ହୁଏ ଜଣେ ଯୋଗ୍ୟ ସାରଥି ପାଇବାରେ । ତାଙ୍କ ସାରଥିଙ୍କର ଇତିମଧ୍ୟରେ ମୃତ୍ୟୁ ଘଟିଥାଏ ଅନ୍ୟ ଏକ ଯୁଦ୍ଧରେ । ଏଇ ବିଷୟ ନେଇ ଚିନ୍ତିତ ଥିବା ଅବସ୍ଥାରେ ସୈରିନ୍ଧ୍ରୀରୂପିଣୀ ଦ୍ରୌପଦୀ ତାଙ୍କୁ ସାକ୍ଷାତ କରନ୍ତି ଏବଂ କହନ୍ତି, ''ରାଜକୁମାର ! ଅନୁମତି ଦେଲେ ଗୋଟିଏ କଥା କହନ୍ତି । ଛୋଟ ମୁହଁରେ ବଡ଼ କଥା । କହିବାକୁ ସାହସ ପାଉ ନାହିଁ ।''

''କହ ସୈରିନ୍ଧ୍ରୀ, କହ । ନିର୍ଭୟରେ କହ ।''

''ଶୁଣିଛି, ରାଜକୁମାରଙ୍କର ଜଣେ ସାରଥି ତୁରନ୍ତ ଦରକାର ବୋଲି ।''

''ହଁ, ଦରକାର । ଏଇ ସଙ୍ଗେ ସଙ୍ଗେ ଦରକାର ।''

''ମୁଁ ଜାଣିବାରେ ବୃହନ୍ନଳା ଜଣେ ଭଲ ସାରଥି । ପାଣ୍ଡବମାନଙ୍କ ରାଜଭବନରେ ନୃତ୍ୟଗୀତ ଶିଖାଇବା ଅବସରରେ ଅର୍ଜୁନଙ୍କ ସାରଥି କାମ ଅନେକ ଥର କରିଛନ୍ତି । ଅର୍ଜୁନ ତାଙ୍କ କାମକୁ ବାରମ୍ବାର ପ୍ରଶଂସା ବି କରିଛନ୍ତି । ଅନେକବାର ପୁରସ୍କାର ଦେଇଛନ୍ତି । ତାଙ୍କୁ ସାରଥି ରୂପେ ବାଛନ୍ତୁ । ଭଲ ହେବ ।''

''ହାଃ ! ହାଃ ! ହାଃ ! ନପୁଂସକ ବୃହନ୍ନଳା ପୁଣି ହେବେ ମୋର ସାରଥି ।'' ରାଜକୁମାରଙ୍କ ମୁହଁରେ ଅଟ୍ଟହାସ ।

''ଥରେ ପରୀକ୍ଷା କରି ଦେଖନ୍ତୁ ନା ରାଜକୁମାର । ବୃହନ୍ନଳାଙ୍କୁ ନିଜେ ପଚାରି ବୁଝନ୍ତୁ ।'' ସୈରିନ୍ଧ୍ରୀଙ୍କ ଦାସୀସୁଲଭ ବିନମ୍ର ବାଣୀ ।

ରାଜକୁମାର ଉତ୍ତର ଡାକି ପଚାରିବାରୁ ବୃହନ୍ନଳା ସଙ୍ଗେ ସଙ୍ଗେ ଦିଅନ୍ତି ସ୍ୱୀକୃତି । ନିଜ ବେଣୀଟିକୁ ଲୀଳାୟିତ ଭଙ୍ଗୀରେ ଦକ୍ଷିଣ ହସ୍ତରେ ଥରାଇ ଥରାଇ କହନ୍ତି, ''ମଲା, ଏଇଟା ମୋ'ପାଇଁ କିବା କଥା ? ମୁଁ ତ କେତେଥର ପାଣ୍ଡବ ଅର୍ଜୁନଙ୍କ ସାରଥି ହୋଇଛି । ଆହାହା ! କି ବୀର ସେ ! ଏବେ ଭାଇମାନଙ୍କ ସହିତ କେଉଁଠି ଥିବେ କେଜାଣି ? ସେମାନଙ୍କ ବନବାସ ଯୋଗରୁ ସିନା ମୋର ଏଭଳି ଦୁର୍ଦ୍ଦଶା ।'' ଆତ୍ମବିଶ୍ୱାସ ରଖି କହିବା ସଙ୍ଗେ ସଙ୍ଗେ ପାଣ୍ଡବମାନଙ୍କ ଦୁଃଖରେ ପ୍ରକାଶ କରନ୍ତି ସମବେଦନା । ଆଖିର ଉଦ୍‌ବେଗ ଅଶ୍ରୁକୁ କୌଣସିମତେ ଚାପି ରଖନ୍ତି ।

ଶେଷରେ କୌରବସେନା ବିରୋଧରେ ଯୁଦ୍ଧଯାତ୍ରା କରନ୍ତି ରାଜକୁମାର ଉତ୍ତର । ସାରଥି ସ୍ୱୟଂ ବୃହନ୍ନଳା । ତାଙ୍କ ସାରଥ୍ୟ ଲାଗି ସାରା ରାଜଭବନରେ କୌତୂହଳର କଳରବ । ପରିହାସରେ ପରିସ୍ନାତ । କାହାରି ବିଶ୍ୱାସ ହେଉ ନ ଥାଏ ତାଙ୍କ ସାରଥ୍ୟର

ସଫଳତା ନେଇ । ରାଜା ଓ ରାଣୀ ରାଜକୁମାରଙ୍କ ସୁରକ୍ଷା ପାଇଁ ବିଶେଷ ଭାବରେ ଚିନ୍ତିତ । କିନ୍ତୁ ବାଧ୍ୟ ହୋଇ ତାଙ୍କୁ ପଠାନ୍ତି ଯୁଦ୍ଧକ୍ଷେତ୍ରକୁ ।

ଉତ୍ତର ପ୍ରବଳ ବେଗରେ ଯାଆନ୍ତି । କିନ୍ତୁ କୁରୁସେନାର ପ୍ରବଳତା ଦେଖି ହୋଇଉଠନ୍ତି ଭୟଭୀତ । ପଛଘୁଞ୍ଚା ଦେଇ ପଳାଇ ଆସିବାକୁ ଚାହାନ୍ତି । ବୃହନ୍ନଳା କିନ୍ତୁ ବାରଣ କରନ୍ତି । ତାଙ୍କୁ ଉପଦେଶ ଦେବା ଭଙ୍ଗୀରେ କହନ୍ତି, ‘‘ଏ କ’ଣ କରୁଛନ୍ତି ଆପଣ ? ଯୁଦ୍ଧଭୂମିରୁ ପଳାଇଯିବା ଯେ ଭୀରୁତା । ଜଣେ ବୀରଙ୍କ ପକ୍ଷରେ ମହା ଅପରାଧ । ଆପଣ ତେଣୁ ଯୁଦ୍ଧ କରନ୍ତୁ । ବିଜୟୀ ହେବେ ନିଶ୍ଚୟ ।’’

‘‘ଆଦୌ ନୁହେଁ, ଆଦୌ ନୁହେଁ । ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଦୁର୍ଯ୍ୟୋଧନ, ଅଶ୍ୱତ୍ଥାମା ଆଦି ମହା ମହା ବୀରମାନଙ୍କ ନିକଟରେ ମୋର ବା କି ସାମର୍ଥ୍ୟ ? ଯୁଦ୍ଧ କଲେ ମୃତ୍ୟୁ ନିଶ୍ଚିତ । ଜାଣିଶୁଣି ମୃତ୍ୟୁକୁ ବରଣ କରିବି କାହିଁକି ?’’

‘‘ବିଜୟ କିମ୍ବା ବୀରଗତି ଉଭୟ ବୀରଙ୍କ ପାଇଁ ସମାନ । ଏ କଥା କାହିଁକି ଭୁଲି ଯାଉଛନ୍ତି କୁମାର ?’’

‘‘ମୁଁ ବୀରଗତି ଚାହେନା । ଚାହେଁ ବଞ୍ଚିବାକୁ । ଜୀବନର ସ୍ୱାଦୁ ପୂର୍ଣ୍ଣ ଭାବରେ ଉପଭୋଗ କରିବାର ସୁଯୋଗ ପାଇ ନାହିଁ । ତେଣୁ ଚାହେ ବଞ୍ଚିବାକୁ । ତୁମେ ଶୀଘ୍ର ଶୀଘ୍ର ଫେରାଇନିଅ ରଥ ରାଜଭବନକୁ ।’’

‘‘ନା, ରଥ ଫେରିବ ନାହିଁ ରାଜଭବନକୁ । ବରଂ ମୁଁ ଯେଉଁଠାକୁ ନେବି ସେଠାକୁ । ଏଇ ଯୁଦ୍ଧ ହେବ ହିଁ ହେବ । ମୁଁ ଯୁଦ୍ଧ କରିବି । ରଥର ସାରଥି ହେବେ ସ୍ୱୟଂ ରାଜକୁମାର ଉତ୍ତର ।’’ କର୍କଶ ଓ ଦୃଢ଼ ସ୍ୱରରେ କହନ୍ତି ବୃହନ୍ନଳା । କଣ୍ଠ ନପୁଂସକସୁଲଭ ନୁହେଁ । ବରଂ ପୁରୁଷସୁଲଭ । ମୁଖର ଭଙ୍ଗୀ ନୁହେଁ ବି ଲୀଳାୟିତ । ବରଂ କଠୋରଗମ୍ଭୀର । ଆଖି ଦୁଇଟିରେ ନାହିଁ ଚକିତା ହରିଣୀର ଚଳ ଚଞ୍ଚଳ ଚାହାଣି । ବରଂ ଅଛି ବୀରତ୍ୱର ଦୀପ୍ତି । ସାରା ମୁଖମଣ୍ଡଳରେ ପୌରୁଷର ଝଲକ । ଉତ୍ତରଙ୍କ ପାଇଁ ଆକସ୍ମିକ ଚମକ ସୃଷ୍ଟି କରିଦେଇଥିବା ଅବସରରେ ଅଧରତଳେ ମୃଦୁ ମୃଦୁ ହସ ।

‘‘କ’ଣ କହିଲ ବୃହନ୍ନଳେ ?’’ ଉତ୍ତରଙ୍କ ବିସ୍ମୟର ପ୍ରଶ୍ନ । ବୃହନ୍ନଳାଙ୍କ ଓଜସ୍ୱିନୀ ବାଣୀ ଓ ପୁରୁଷସୁଲଭ କଣ୍ଠସ୍ୱର ଶୁଣି ଗଭୀର ଭାବରେ ସଚକିତ ସେ । ବୃହନ୍ନଳା କ’ଣ ନପୁଂସକ ନୁହନ୍ତି ?

‘‘ନା, ବୃହନ୍ନଳା ନୁହେଁ କୁମାର । ଅର୍ଜୁନ ।’’ ନିଜ ପରିଚୟକୁ ଗୋପନ ନ ରଖି କହନ୍ତି ଅର୍ଜୁନ । ସେତେବେଳକୁ ପୂରିଯାଇଥାଏ ଅଜ୍ଞାତବାସର ଅବଧି । ତେଣୁ ଆବଶ୍ୟକ ନ ଥାଏ ତାହା ଗୋପନ ରଖିବାର । ସେ ଫେରିପାଇଥାନ୍ତି ନିଜ ପୁରୁଷତ୍ୱକୁ ଉର୍ବଶୀଙ୍କ ଅଭିଶାପର ପରିସମାପ୍ତି ପରେ ।

‘‘କ’ଣ ମଧ୍ୟମ ପାଣ୍ଡବ ଅର୍ଜୁନ ?’’ ଉତ୍ତରଙ୍କ ଭୟଭୀତ ଥର ଥର ପ୍ରଶ୍ନ । ଆଖି ଦୁଇଟି ବିସ୍ମୟବିସ୍ଫାରିତ ବି ।

''ହଁ, କୁମାର ।'' ଅଧରତଳେ ଅକ୍ଷୁଣ୍ଣ ସ୍ମିତହାସ୍ୟର ଖଳ ଖଳ ଲହରୀ । ଏହା କହି ସେ ଅନ୍ୟ ସମସ୍ତ ପାଣ୍ଡବ ଓ ଦ୍ରୌପଦୀଙ୍କ ପରିଚୟ ଦିଆଇ ଦିଅନ୍ତି । ଉତ୍ତର ତାଙ୍କ ପ୍ରତି ବୃହନ୍ନଳା ବିଚାରରେ ଯାହା କିଛି କର୍କଶ ବ୍ୟବହାର ଦେଖାଇଛନ୍ତି ଓ ହେୟ ଜ୍ଞାନ କରିଛନ୍ତି ସେଥିପାଇଁ କ୍ଷମା ମାଗନ୍ତି । ଅର୍ଜୁନ କହନ୍ତି, ବର୍ତ୍ତମାନ ''ଏ ସବୁ ଶିଷ୍ଟାଚାର ଦେଖାଇବାର ସମୟ ନୁହେଁ । ତୁରନ୍ତ ଯୁଦ୍ଧ କରି ରାଜାଙ୍କ ହୃତଗୋଧନଙ୍କୁ ଉଦ୍ଧାର କରିବାକୁ ହେବ ।'' ଏହା କହି ଶ୍ମଶାନସ୍ଥ ଶମୀବୃକ୍ଷ ପାଖକୁ ଚଳାଇ ନିଅନ୍ତି ରଥ । ସେଇଠି ନିଜ ଅସ୍ତ୍ର, ଧନୁ ଓ କବଚ ଆଦି ସଂଗ୍ରହ କରି ସଜ୍ଜିତ ହୁଅନ୍ତି ବୀରବେଶରେ । ସେ ହୁଅନ୍ତି ରଥୀ ଓ ଉତ୍ତର ସାରଥି । ବିଦ୍ୟୁତ୍ ବେଗରେ ଆସି ବାଧା ଦିଅନ୍ତି କୁରୁସେନାକୁ ।

ତାହା ପରେ ଆରମ୍ଭ ହୁଏ ଘନଘୋର ଯୁଦ୍ଧ ଯାହାକୁ ଦେଖିଛି ସ୍ୱଚକ୍ଷୁରେ । ଆମେ ସମସ୍ତେ ମୂର୍ଚ୍ଛିତ ହେବା ପରେ ଘଟେ ଏକ ବିଚିତ୍ର ଓ କୌତୂହଳପୂର୍ଣ୍ଣ ଘଟଣା । ଯୁଦ୍ଧଯାତ୍ରା ପୂର୍ବରୁ ଉତ୍ତରା ନିବେଦନ କରିଥାନ୍ତି ଭ୍ରାତା ରାଜକୁମାର ଉତ୍ତରଙ୍କୁ, ''ଭାଇ ! ଯୁଦ୍ଧରେ ବିଜୟୀ ହୋଇ ଫେରି ଆସିଲାବେଳେ ମୋ' ପାଇଁ କେତୋଟି ଜିନିଷ ଆଣିବେ ।''

''କ'ଣ ଭଉଣୀ'' ଉତ୍ତରଙ୍କ ପ୍ରତିପ୍ରଶ୍ନ ।

''ମୋ' ଖେଳନାମାନଙ୍କୁ ସଜାଇବା ପାଇଁ କୌରବ ବୀରମାନଙ୍କ ଉତ୍ତରୀୟ ଓ କବଚ ଆଣିବେ ।''

''ଆଚ୍ଛା ହେଉ । ଯୁଦ୍ଧରେ ବିଜୟୀ ହେଲେ ତ !''

''କାହିଁକି ହେବେ ନାହିଁ ? ଅର୍ଜୁନଙ୍କ ରଥ ଚଳାଇବାରେ ପାରଦର୍ଶିତା ହାସଲ କରିଥିବା ମୋ' ଗୁରୁ ବୃହନ୍ନଳା ପରା ଯାଉଛନ୍ତି ସାଥିରେ । ଆପଣ ନିଶ୍ଚୟ ବିଜୟୀ ହେବେ ।'' ଉତ୍ତରାଙ୍କ ଆତ୍ମବିଶ୍ୱାସଭରା ଉତ୍ତର ।

''ତୁମ ତୁଣ୍ଡ ସୁତୁଣ୍ଡ ହେଉ ଭଉଣୀ ।'' ହସି ହସି କହନ୍ତି ରାଜକୁମାର ଉତ୍ତର ।

ଅର୍ଜୁନ ଏବେ ସେହି କଥାକୁ ସ୍ମରଣ କରାଇଦେଇ କହନ୍ତି, ''ଯାଆନ୍ତୁ ରାଜକୁମାର ! ଶୀଘ୍ର ଯାଆନ୍ତୁ । ବୀରମାନଙ୍କ ମୂର୍ଚ୍ଛାଭଙ୍ଗ ହେବା ପୂର୍ବରୁ ହିଁ ସେମାନଙ୍କ ଉତ୍ତରୀୟ ଓ କବଚ ନେଇଆସନ୍ତୁ । ଉତ୍ତରା ଖେଳନା ସଜାଇବେ । ହଁ, ଆଉ ଗୋଟିଏ କଥା ମନେ ରଖିଥିବେ ।''

''କେଉଁ କଥା ବୀର ପାର୍ଥ ?''

''ଏଇ ସେଠି ଯେ ଶ୍ୱେତବର୍ଣ୍ଣର ରଥଟିର ନୀଡ଼ରେ ଶୋଇଛନ୍ତି, ସେ ମୋ' ପୂଜ୍ୟ ପିତାମହ ଭୀଷ୍ମ । ତାଙ୍କୁ ସ୍ପର୍ଶ କରିବେ ନାହିଁ । ମୋର ମୋହନାସ୍ତ୍ର ତାଙ୍କର କିଛି କରିପାରି ନ ଥିବ । ସେ ଥିବେ ଅମୂର୍ଚ୍ଛିତ ଅବସ୍ଥାରେ ।''

''ଆଜ୍ଞା ।'' ଏହା କହି ରଥରୁ ଅବତରଣ କରନ୍ତି ଉତ୍ତର । ଭୂମି ସ୍ପର୍ଶ କରିବା ମାତ୍ରେ ଆଉ ଗୋଟିଏ କଥା କହନ୍ତି ଅର୍ଜୁନ, ''ଏଇ ସେଠି ଯେ ରଥନୀଡ଼ରେ ମୂର୍ଚ୍ଛିତ ଅବସ୍ଥାରେ ଅଛନ୍ତି, ସେ ଧୃତରାଷ୍ଟ୍ରକୁମାର ମହାମାନୀ ଦୁର୍ଯ୍ୟୋଧନ । ତାଙ୍କରି ଯୋଗରୁ ହିଁ ଆମର ଆଜି

ଏ ଦୁର୍ଦ୍ଦଶା । ତାଙ୍କୁ ତେଣୁ ଅଧିକ ଅପମାନିତ କରିବାକୁ ହେବ । ଅନ୍ତର୍ବାସକୁ ଛାଡ଼ିଦେଇ ଆଉ ସବୁ ବାସ ତାଙ୍କର ନେଇଆସିବେ ।''

''ଆଚ୍ଛା, ଠିକ୍ ଅଛି ।'' ଏହା କହି ତଦନୁଯାୟୀ କାର୍ଯ୍ୟ କରନ୍ତି ସେ । ଆମ ସମସ୍ତଙ୍କ ମୂର୍ଚ୍ଛାଭଙ୍ଗ ପୂର୍ବରୁ ଅପହୃତ ଗୋଧନକୁ ସାଥିରେ ନେଇ ଦୁହେଁ ରଥରେ ବସି ଚାଲିଯାଆନ୍ତି ବିରାଟନଗର ଅଭିମୁଖରେ ।

ଏଣେ ରାଜକୁମାରଙ୍କ ବିଜୟ ସଂବାଦ ପାଇ ରାଜା ବିରାଟ ତାଙ୍କ ସ୍ୱାଗତ-ସଂବର୍ଦ୍ଧନାପାଇଁ କରନ୍ତି ଆୟୋଜନ । ଆଉ ଖୁସି ମନରେ କଙ୍କଙ୍କ ସହିତ ଆରମ୍ଭ କରିଦିଅନ୍ତି ଦ୍ୟୂତକ୍ରୀଡ଼ା । କ୍ରୀଡ଼ା ମଝିରେ ବିଜୟମଦରେ ମାତିଯାଇ କହନ୍ତି, ''ହେ କଙ୍କ ! ଶୁଣିଲେଣି ନା ଗୋଟିଏ ଖୁସି ଖବର ?''

''କ'ଣ ରାଜନ୍ ?'' କଙ୍କଙ୍କ ପ୍ରତିପ୍ରଶ୍ନ ।

''ମୋ' ବୀର ପୁତ୍ର ଉତ୍ତର ଏବେ କୁରୁସେନା ଉପରେ ବିଜୟ ହାସଲ କରି ଫେରି ଆସୁଛନ୍ତି ରାଜଧାନୀକୁ । ସେଥିପାଇଁ ଖୁବ୍ ଗର୍ବିତ ମୁଁ ।''

''ହଁ, ମହାରାଜ ! ନିଶ୍ଚୟ ଗର୍ବର କଥା । ଯାହାଙ୍କ ସାରଥି ସ୍ୱୟଂ ବୃହନ୍ନଳା, ତାଙ୍କର ବିଜୟ ହେବ ହିଁ ହେବ ।''

ରାଜା ବିରାଟଙ୍କ ପକ୍ଷରେ ଏହା ଅସହନୀୟ । ଜଣେ ସାରଥିକୁ ପ୍ରାଥମିକତା ଦେଇଥିବା କାରଣରୁ ବିରକ୍ତ ହୁଅନ୍ତି କଙ୍କଙ୍କ ଉପରେ । କିଛି ନ କହି ମୁହଁଟାକୁ କରିଦିଅନ୍ତି ଅସ୍ୱାଭାବିକ ଭାବରେ ଗମ୍ଭୀର । ନିଜ ପୁତ୍ରଙ୍କ ବିଜୟ ସଂପର୍କରେ ପ୍ରଶଂସାସୂଚକ ବାଣୀ ଆଉ ଦୁଇ ଥର କହିଲାବେଳେ କଙ୍କଙ୍କ ମୁଖରୁ ଠିକ୍ ସେହି କଥା ଶୁଣିବାକୁ ମିଳେ – ଯାହାଙ୍କ ସାରଥି ସ୍ୱୟଂ ବୃହନ୍ନଳା ତାଙ୍କର ବିଜୟ ହେବ ହିଁ ହେବ । ତୃତୀୟଥରର ମନ୍ତବ୍ୟକୁ ଶୁଣି ଆଉ ଧୈର୍ଯ୍ୟ ଧରିପାରନ୍ତିନି ସେ । ଅତିଶୟ କ୍ରୁଦ୍ଧ ହୋଇ କଙ୍କଙ୍କ ମୁଖକୁ ଫିଙ୍ଗନ୍ତି ପଶାକାଠି । ତାଙ୍କ ନାସାଗ୍ରରେ ବାଜି ଝରଝର ହୋଇ ବୁହାଇଦିଏ ରକ୍ତର ଧାରା । କଙ୍କ ଧୈର୍ଯ୍ୟ ଧରି ନିଜ ଉତ୍ତରୀୟରେ ତାହାକୁ ପୋଛିବାକୁ ଲାଗନ୍ତି । ଆଦୌ ବିକାର ନାହିଁ ମନରେ । ଧୈର୍ଯ୍ୟ ଓ ସହନଶୀଳତାର ଏକ ପ୍ରମୂର୍ତ୍ତ ବିଗ୍ରହ ଯେମିତି ।

ଖବରଟା କେମିତି ଶୀଘ୍ର ହୋଇଯାଏ ପ୍ରଘଟ । ରାଜଭବନର ସମସ୍ତଙ୍କ ମୁଖରେ ରାଜା ବିରାଟଙ୍କ ନିନ୍ଦା । ସମସ୍ତେ କରୁଥାନ୍ତି ଧିକ୍କାର । ଛି ! ଛି ! କଙ୍କଙ୍କ ପରି ଜଣେ ଶାନ୍ତଶିଷ୍ଟ ଧର୍ମପରାୟଣ ବ୍ରାହ୍ମଣଙ୍କୁ ଆଜି ଆଘାତ କରିଛନ୍ତି ରାଜା ! ତାଙ୍କୁ ଧର୍ମ ସହିବ ନାହିଁ । ପାକଶାଳାରେ ବି ଯାଇ ପହଞ୍ଚେ ଖବର । ସୂପକାର ବଲ୍ଲବ ତାହା ଶୁଣି ଖୁବ୍ ଉତ୍କ୍ଷିପ୍ତ । ପାକଶାଳାରୁ ଏକ ବିରାଟ ଲୌହ ଦଣ୍ଡ ଧରି ଧାଇଁଆସନ୍ତି ରାଜାଙ୍କ ପାଖକୁ । ପଥରେ ଥିବା ସମସ୍ତ ବାଧାକୁ ଅଚିରେ କରନ୍ତି ଅତିକ୍ରମ । ଜଣେ-ଦୁଇ ଜଣ ସଶସ୍ତ୍ର ପ୍ରହରୀଙ୍କୁ ଲୌହଦଣ୍ଡର ଆଘାତରେ ମୂର୍ଚ୍ଛିତ ବି କରିଦେଇଥାନ୍ତି । ମହାପ୍ରଳୟର ଭୀମ ପ୍ରଭଞ୍ଜନ ଭଳି ଧାଉଁଥାନ୍ତି । କକ୍ଷର ଦ୍ୱାରଦେଶରେ ପହଞ୍ଚିଯାଇ ସିଂହ ଭଳି ଗର୍ଜନ କରି କହନ୍ତି, ''ଆରେ ଦୁଷ୍ଟ ରାଜା ବିରାଟ । ତୁ ଏ କ'ଣ କଲୁ ? ସାକ୍ଷାତ ଧର୍ମର ଅବତାରଙ୍କୁ କଲୁ ଆଘାତ !

ତତେ ଯମପୁର ଡାକୁଛି । ଏଇ ସଙ୍ଗେ ସଙ୍ଗେ ଗୋଟିଏ ମାତ୍ର ଆଘାତରେ ତୋ' ମୁଣ୍ଡଟାକୁ ଦୁଇ ଫାଳ କରିଦେଉଛି ।'' ଏହା କହି ଆଘାତ କରିବା ପାଇଁ ଆସନ୍ତି ଆଗେଇ ।

ବିରାଟ ଚକିତ-ବିସ୍ମିତ । ଆଉ ଭୟଭୀତ ବି । ସୂପକାର ବଲ୍ଲବଙ୍କ ଭଳି ସରଳ ଓ ମିଷ୍ଟଭାଷୀ ବ୍ୟକ୍ତିଙ୍କର ଆଜି ଏ କି ରୂପ ! କିଛି ବୁଝିପାରୁ ନ ଥାନ୍ତି ସେ । ଘୁଞ୍ଚିଯାଇ ଆତ୍ମରକ୍ଷା କରନ୍ତି ।

କଙ୍କ ହସ୍ତର ସଂକେତରେ ବାରଣ କରନ୍ତି ବଲ୍ଲବଙ୍କୁ । ଶାନ୍ତ କରାନ୍ତି । କହନ୍ତି, ''ହେ ବଲ୍ଲବ ! କ୍ଷମାଠାରୁ ବଡ଼ ଧର୍ମ କିଛି ନାହିଁ । କ୍ଷମା ଯଜ୍ଞ, ବେଦ, ଶ୍ରୁତ, ବ୍ରହ୍ମ, ସତ୍ୟ, ତପଃ ଓ ଶ୍ରୌତ ସବୁ କିଛି । ତୁମେ ତେଣୁ କ୍ଷମାଭାବ ଆଚରଣ କର । ଶାନ୍ତ ହୁଅ ।''

ବଲ୍ଲବ ତାଙ୍କ କଥା ମାନି ଶାନ୍ତ ହୁଅନ୍ତି । କିନ୍ତୁ ଉତ୍‌ଫଣ ସର୍ପ ଭଳି ବିଷଭରା ଉଷ୍ଣ ନିଃଶ୍ୱାସ ଛାଡୁଥାନ୍ତି ଅବିରତ ।

ରାଜା ବଲ୍ଲବଙ୍କ ଦୁର୍ବ୍ୟବହାର ଲାଗି ଦଣ୍ଡବିଧାନ କଥା ବିଚାର କରୁଥିବା ଅବସରରେ ହଠାତ୍ ଝଡ଼ବେଗରେ କକ୍ଷ ମଧ୍ୟରେ ପ୍ରବେଶ କରନ୍ତି ଉତ୍ତର । ସାଥିରେ ଜଣେ ରାଜକୁମାର । ସଙ୍ଗେ ସଙ୍ଗେ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ସେଠାରେ କହିଉଠନ୍ତି ସେ, ''ଏଇ ମୋ' ବିଜୟୀ ପୁତ୍ର ଆସିଗଲେ ।'' ତାହା ପରେ ଆଗେଇଯାଆନ୍ତି ଉତ୍ତରଙ୍କୁ ଆଲିଙ୍ଗନ କରିବାପାଇଁ ।

ଉତ୍ତର କହନ୍ତି, ''ନାଇଁ ମହାରାଜ ! ମୁଁ ବିଜୟୀ ନୁହେଁ । ବିଜୟୀ ଅର୍ଜୁନ ।''

''କେଉଁ ଅର୍ଜୁନ ?'' ରାଜାଙ୍କ ବିସ୍ମୟଭରା ପ୍ରଶ୍ନ ।

''ପାଣ୍ଡବ ଅର୍ଜୁନ । ସେ ବୃହନ୍ନଳାବେଶରେ ଆମ ରାଜଭବନରେ ଥିଲେ । ସେଇ ହିଁ ପରାସ୍ତ କରିଛନ୍ତି କୁରୁସେନାକୁ । ଯାହାଙ୍କୁ ଆପଣ ଅଜ୍ଞାନତାର କାରଣରୁ ପଶାକାଠିରେ ଆଘାତ କରିଛନ୍ତି, ସେ ଆଉ କେହି ନୁହନ୍ତି, ସ୍ୱୟଂ ଧର୍ମରାଜ ଯୁଧିଷ୍ଠିର ।''

ତଥାପି ବିରାଟଙ୍କ ମନରେ ସନ୍ଦେହ । ସେ ପୁଣି ପଚାରନ୍ତି, ''ଆଚ୍ଛା, ଭୀମସେନ, ନକୁଳ ଓ ସହଦେବ କେଉଁଠି ?''

''ବଲ୍ଲବ ଆଉ କେହି ନୁହନ୍ତି ସ୍ୱୟଂ ଭୀମସେନ । ଆମ ଅଶ୍ୱଶାଳାର ଅଧ୍ୟକ୍ଷ ନକୁଳ । ଆଉ ଗୋଶାଳାର ଅଧ୍ୟକ୍ଷ ସହଦେବ ।''

''ଦ୍ରୌପଦୀ ପୁଣି ଗଲେ କୁଆଡ଼େ ?''

''କୁଆଡ଼େ ନାହିଁ ଏଇଠି ଅଛନ୍ତି ଆମ ରାଜଭବନରେ । ସୈରିନ୍ଧ୍ରୀ ହିଁ ମହାରାଣୀ ଦ୍ରୌପଦୀ ।

''ବଡ଼ ଆଶ୍ଚର୍ଯ୍ୟ ! ମୁଁ ଏ ପର୍ଯ୍ୟନ୍ତ କିଛି ଜାଣିପାରି ନ ଥିଲି ।'' ରାଜାଙ୍କ କଣ୍ଠରୁ ସ୍ୱତଃ ନିର୍ଗତ ହୁଏ ଅନୁତାପର ସିକ୍ତ ବିସ୍ମୟବିମୂଢ଼ ବାଣୀ । ତାହା ପରେ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟକରି କହନ୍ତି, ''ମତେ କ୍ଷମା କରନ୍ତୁ ଧର୍ମରାଜ । ମୁଁ ଅଜ୍ଞତା ହେତୁ ଆପଣଙ୍କୁ ଏତେ କଷ୍ଟ ଦେଲି । ଅନ୍ୟାନ୍ୟ ପାଣ୍ଡବମାନେ ଓ ମହାରାଣୀ ଦ୍ରୌପଦୀ ମଧ୍ୟ ଖୁବ୍ କଷ୍ଟ ସହିଛନ୍ତି । ସେଥିପାଇଁ ବି କ୍ଷମା ଚାହୁଁଛି ।''

''କ୍ଷମାର ପ୍ରଶ୍ନ ଉଠୁଛି କେଉଁଠି ରାଜନ୍ ? ଆମେ ତ ଆପଣଙ୍କ ନିକଟରେ ଚିରଋଣୀ । ଆପଣ ଆମକୁ ଏକବର୍ଷ ଧରି ଦେଇଛନ୍ତି ଆଶ୍ରୟ । ଆପଣଙ୍କ ସାହାଯ୍ୟରେ ଆମେ ଅଜ୍ଞାତବାସର ଅବଧିକୁ ପୂରା କରାଇପାରିଛୁ । ଆମେ ବରଂ ଆପଣଙ୍କଠାରୁ କ୍ଷମା ଚାହୁଁଛୁ ଆପଣ ଉଠାଇଥିବା କଷ୍ଟ ଲାଗି ।''

''ଆପଣ ଅତି ମହାନ୍ ଧର୍ମରାଜ ଯୁଧିଷ୍ଠିର ।'' ଆନନ୍ଦର ଅଶ୍ରୁ ଝରିଯାଏ ରାଜାଙ୍କ ଦୁଇ ଆଖିରୁ ଧାର ଧାର ହୋଇ । ତାଙ୍କ ମନର ସକଳ କାଳିମାକୁ ଓ ପାଣ୍ଡବମାନଙ୍କ ବନବାସର କଷ୍ଟକୁ ତାହା ଧୋଇଦେଉଥାଏ ଯେମିତି । କିଛି ସମୟ ପରେ ପୁଣି କହନ୍ତି ଯୁଧିଷ୍ଠିରଙ୍କୁ, ''ହେ ଧର୍ମରାଜ ! ମୁଁ ଏଇ ବନ୍ଧୁତାକୁ ଚିରଦିନ ଲାଗି ଅତୁଟ ରଖିବାକୁ ଚାହେଁ ମୋ' ପ୍ରିୟତମା କନ୍ୟା ଉତ୍ତରାଙ୍କୁ ଅର୍ଜୁନଙ୍କ ହାତରେ ଟେକିଦେଇ । ଏଥିରେ ଆପଣଙ୍କ ମତ କ'ଣ ?''

''ଅର୍ଜୁନ ଏହାର ଉତ୍ତର ନିଜେ ହିଁ ଦିଅନ୍ତୁ ।'' ଅର୍ଜୁନଙ୍କ ଆଡ଼କୁ ଚାହିଁ କହନ୍ତି ଯୁଧିଷ୍ଠିର ।

''ଏହା ଅସମ୍ଭବ । ଆଉ ଅଧର୍ମ ବି । ଉତ୍ତରା ମୋ' ଶିଷ୍ୟା । ତେଣୁ ପୁତ୍ରୀ ସମାନ । ତାଙ୍କୁ କେମିତି ବା ଗ୍ରହଣ କରିବି ପତ୍ନୀରୂପରେ ? ମୁଁ ବରଂ ପ୍ରସ୍ତୁତ ପୁତ୍ରବଧୂରୂପେ ଗ୍ରହଣ କରିବାକୁ । ମତ୍ସ୍ୟରାଜ ଯଦି ଚାହାନ୍ତି, ତା'ହେଲେ ମୋ' ପୁତ୍ର ଅଭିମନ୍ୟୁଙ୍କ ହାତରେ ତାଙ୍କୁ ଟେକିଦେଇପାରନ୍ତି । ଅବଶ୍ୟ ଅଗ୍ରଜ ଯୁଧିଷ୍ଠିର ସହମତ ହେଲେ ।''

ରାଜା ବିରାଟ ଏଥିରେ ରାଜି ହୁଅନ୍ତି । ଆଉ ଜ୍ୟେଷ୍ଠପାଣ୍ଡବ ଯୁଧିଷ୍ଠିର ବି । ଦୁର୍ଯ୍ୟୋଧନଙ୍କଠାରୁ ଏହି ଖବର ଶୁଣିସାରିବା ପରେ ପଚାରିଲି, ''ଆଚ୍ଛା, ମିତ୍ର ଦୁର୍ଯ୍ୟୋଧନ ! ବର୍ତ୍ତମାନର ପରିସ୍ଥିତି କ'ଣ ? ପାଣ୍ଡବମାନଙ୍କ ପାଖରୁ କିଛି ସନ୍ଦେଶ ଆସିଲାଣି ?''

''ଏ ପର୍ଯ୍ୟନ୍ତ ତ ଆସି ନାହିଁ । ଭାବୁଛି, ସେମାନେ ତ କୁମାର ଅଭିମନ୍ୟୁଙ୍କ ବିବାହ ନେଇ ବ୍ୟସ୍ତ । ତାହା ସରିଲେ ହୁଏତ ଆସିପାରେ ।''

''ହୁଏତ ।'' ସହମତି ପ୍ରକାଶ କରି କହିଲି ।

ପରବର୍ତ୍ତୀ ଘଟଣାବଳୀକୁ ଉତ୍କଣ୍ଠିତ ହୋଇ ଚାହିଁରହିଲୁ ଆମେ । ମତେ ଲାଗୁଥିଲା, ସତେଯେମିତି ଆମେ ଦଇବଦ୍ୱାରା ଟଣାହୋଇ ଚାଲିଛୁ କେଉଁ ଏକ ଆଗ୍ନେୟଗିରିର ଜ୍ୱାଳାମୁଖୀ ଆଡ଼କୁ । ଚାହିଁଲେ ବି ଏଡ଼ାଇ ପାରୁ ନାହୁଁ ଏଇ ଗତିକୁ । ନିତାନ୍ତ ଅସହାୟ ଓ ବିବଶ ଆମେ !

## ବାସ୍ତରି

ଘଟଣା... ଘଟଣା... ଆଉ ଘଟଣା... ଏବେ ଖାଲି ଅନେକ ଘଟଣାର ନିରବଚ୍ଛିନ୍ନ ପ୍ରବାହ । ଲକ୍ଷ୍ୟ କରିଥାଏ, ଗୋଟିକ ପରେ ଗୋଟିଏ କରି ଦ୍ରୁତ ଗତିରେ ଆସିଯାଉଥାନ୍ତି ସେମାନେ । ଗୋଟିଏ ଅପରଟି ସହିତ ସଂପୃକ୍ତ । ଅଥବା ଅପରଟିର କାରଣରୁ ସୃଷ୍ଟ । ଏପରିକି ହସ୍ତିନାପୁରର ବାହାରେ ଘଟିଯାଉଥିବା ଘଟଣାମାନଙ୍କର ମଧ୍ୟ

ହସ୍ତିନାପୁରର ଭାଗ୍ୟ ସହିତ ଥାଏ ସଂପର୍କ । ସେଗୁଡ଼ିକ ପାଣ୍ଡବ-କୌରବମାନଙ୍କ ସୌଭାଗ୍ୟକୁ ଅଥବା ଦୁର୍ଭାଗ୍ୟକୁ କରୁଥାଏ ପ୍ରଭାବାନ୍ୱିତ । ଯେପରିକି ଅଭିମନ୍ୟୁଙ୍କ ଉତ୍ତରାଙ୍କ ସହିତ ବିବାହ । ଏହା ଘଟେ ବିରାଟଙ୍କ ରାଜ୍ୟରେ ଥିବା ଉପପ୍ଲବ୍ୟ ନଗରରେ ପାଣ୍ଡବମାନଙ୍କ ଅସ୍ଥାୟୀ ନିବାସସ୍ଥଳରେ । ଫଳରେ ପାଣ୍ଡବମାନଙ୍କର ମତ୍ସ୍ୟରାଜ ବିରାଟ ଓ ଦ୍ୱାରକାଧିପତି କୃଷ୍ଣଙ୍କ ସଂପର୍କ ହୋଇଯାଏ ଅଧିକତର ଘନୀଭୂତ । ପାଣ୍ଡବମାନେ ହୋଇଉଠନ୍ତି ବଳବତ୍ତର । କୌରବ-ପାଣ୍ଡବମାନଙ୍କ ସଂପର୍କର ନିକିତିଟିକୁ ତାହା ଦୋହଲାଇଦିଏ ପାଣ୍ଡବମାନଙ୍କ ସପକ୍ଷରେ । ଏମିତି ଅନେକ କିଛି ଘଟଣା ଘଟିବାରେ ଲାଗିଛି ହସ୍ତିନାପୁରରେ କିମ୍ବା ଅନ୍ୟତ୍ର । ସବୁଥିରେ କୌରବ-ପାଣ୍ଡବ ସଂପର୍କ ଛନ୍ଦାଛନ୍ଦି ମାଛଧରା ଜାଲର ଗ୍ରଥିତ ସୂତ୍ର ଭଳି !

ଆମେ ଯାହା ଭାବିଥିଲୁ ଅଭିମନ୍ୟୁଙ୍କ ବିବାହର ଠିକ୍ ପରେ ପରେ ତାହାହିଁ ଘଟିଲା । ତାଙ୍କ ବିବାହର ପନ୍ଦର ଦିନ ନ ପୂରୁଣୁ ଦିନେ କୁରାରାଜସଭାକୁ ଆସିଲେ ରାଜା ଦ୍ରୁପଦଙ୍କ ପୁରୋହିତ ପାଣ୍ଡବମାନଙ୍କ ପକ୍ଷରୁ ଏକ ସ୍ୱତନ୍ତ୍ର ଦୂତ ସାଜି । ମହାରାଜ ରାଜା ଦ୍ରୁପଦଙ୍କ ସମ୍ବନ୍ଧୀ । ତେଣୁ ତାଙ୍କ ପାଇଁ ଯଥେଷ୍ଟ ଉପଢ଼ୌକନ ଆଣିଥିଲେ ସେ । ମହାରାଜାଙ୍କୁ ଯଥାଯୋଗ୍ୟ ମାନ୍ୟତା ଦେଖାଇବା ପରେ ନିବେଦନ କଲେ, ‘‘ପାଣ୍ଡବମାନଙ୍କ ପକ୍ଷରୁ ଏକ ସନ୍ଦେଶ ଆଣିଛି । ଅନୁମତି ଦେଲେ କହିବି ।’’

‘‘ଅନୁମତି ଦେଉଛି । କହନ୍ତୁ ପ୍ରଥମେ କିନ୍ତୁ କହନ୍ତୁ ମୋ’ ଅନୁଜପୁତ୍ର ପାଣ୍ଡବମାନେ କେମିତି ଅଛନ୍ତି ? ଆଉ ପୁତ୍ରବଧୂ ଦ୍ରୌପଦୀଙ୍କର ସବୁ ଭଲ ତ ?’’

ଲକ୍ଷ୍ୟ କଲି, ମାତୁଳ ଶକୁନି ଓ ଦୁର୍ଯ୍ୟୋଧନ ହସୁଥାନ୍ତି ମୁରୁକି ମୁରୁକି । ଆନନ୍ଦର ହସ ନୁହେଁ । ବରଂ ଶ୍ଳେଷର ହସ । ଶତ୍ରୁମାନଙ୍କ ଦୁଃଖରେ ଖୁସିର ହସ । ମହାରାଜଙ୍କ ଛଳନାପୂର୍ଣ୍ଣ କୁଶଳ ପ୍ରଶ୍ନ ସହିତ ସମତା ରକ୍ଷା କରୁଥିଲା ଯେମିତି । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟଙ୍କ ମୁଖମଣ୍ଡଳ ସୁପ୍ରସନ୍ନ । ମହାରାଜଙ୍କ ମନଃସ୍ଥିତିରେ କିଛିଟା ପରିବର୍ତ୍ତନ ହୋଇଛି ବୋଲି ସେମାନଙ୍କ ଧାରଣା ବୋଧହୁଏ । ମୁଁ କିନ୍ତୁ ସବୁ କଥା ଜାଣିଥିଲି । ମହାରାଜ, ଶକୁନି ଓ ଦୁର୍ଯ୍ୟୋଧନଙ୍କୁ ନେଇ ଯେଉଁ ଯୋଜନାର ତ୍ରିଭୁଜଟି ଗଢ଼ା, ସେ ବିଷୟରେ ଥିଲି ସଂପୂର୍ଣ୍ଣ ଅବହିତ । ତେଣୁ ବସିଥିଲି ସେମିତି ପ୍ରତିକ୍ରିୟାହୀନ ଅବସ୍ଥାରେ ।

ରାଜଦୂତ ଉତ୍ତର ଦେଇ କହିଲେ, ‘‘ସମସ୍ତଙ୍କ ସର୍ବଶୁଭ ମହାରାଜ । ଯୁଧିଷ୍ଠିର ଆପଣଙ୍କ ପାଇଁ ଓ ରାଜମାତା ଗାନ୍ଧାରୀଙ୍କ ପାଇଁ ପ୍ରଣାମ ଜଣାଇଛନ୍ତି । ଆଉ ଚାହିଁଛନ୍ତି ଆଶୀର୍ବାଦ ।’’

‘‘ମୋର ଆଶୀର୍ବାଦ ତ ସଦାସର୍ବଦା ରହିଛି ତାଙ୍କ ପ୍ରତି । ଆଉ ଅନ୍ୟାନ୍ୟ ଅନୁଜପୁତ୍ରମାନଙ୍କ ପ୍ରତି ବି । ସେମାନେ ଦୀର୍ଘଜୀବୀ ହୁଅନ୍ତୁ ।’’

ମନେ ମନେ ଭାବୁଥାଏ, ଭବିଷ୍ୟତର ଇତିହାସ ଯଦି ମୂର୍ତ୍ତିମାନ୍ ବିଗ୍ରହ ଧରି ରାଜସଭାରେ ଠିଆ ହୋଇଥାନ୍ତା, ସେ ହୁଏତ ଦେଇଥାନ୍ତା ଏଇ ଶ୍ଳେଷଭରା ମନ୍ତବ୍ୟ — ହେ ରାଜନ୍ ! ଆପଣଙ୍କ ଆଶୀର୍ବାଦରେ ପରା ବାରଣାବତରେ ଜତୁଗୃହ ହୋଇଥିଲା ନିର୍ମିତ !

କପଟ ଦ୍ୟୁତକ୍ରୀଡ଼ାର ଆୟୋଜନ କରି ନିମନ୍ତ୍ରିତ କରାହୋଇଥିଲା ଯୁଧିଷ୍ଠିରଙ୍କୁ ! ରାଜସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ର କରାଇବାର ଉଦ୍ୟମ ହୋଇଥିଲା ! ପାଣ୍ଡବମାନଙ୍କୁ ବନବାସର କଷ୍ଟ ଭୋଗ କରିବାକୁ ପଡ଼ିଥିଲା । ପୁଣି ଅଜ୍ଞାତବାସ ସମୟରେ ସେମାନଙ୍କୁ ଖୋଜି ବାହାର କରିବା ପାଇଁ ନିରନ୍ତର ଚାଲିଥିଲା ଚେଷ୍ଟା ! ଏଇ ଚେଷ୍ଟାର ଏକ ଅଙ୍ଗରୂପରେ କରାଯାଇଥିଲା ରାଜା ବିରାଟଙ୍କ ଗୋଧନ ଅପହରଣ ! ଏଇ ତା'ହେଲେ ଆପଣଙ୍କ ଶୁଭ ଆଶୀର୍ବାଦ ସ୍ୱରୂପ !! ବାଃ ରେ ବାଃ !!

ମହାରାଜ ପୁଣି ପଚାରିଲେ, ''ଆଚ୍ଛା, ପୁରୋହିତ ମହାଶୟ ! କହୁଥିଲେ ପରା କ'ଣ ସନ୍ଦେଶ ଆଣିଛନ୍ତି ବୋଲି । ଏବେ କହନ୍ତୁ ।''

''ମହାରାଜ ! ପାଣ୍ଡବମାନେ ଦ୍ୟୁତକ୍ରୀଡ଼ାର ସର୍ତ୍ତକୁ ପୂର୍ଣ୍ଣ କରିସାରିଛନ୍ତି । ସେମାନେ ଚାହାନ୍ତି କୌରବମାନଙ୍କ ସହିତ ସନ୍ଧି କରିବେ । ସେମାନଙ୍କ ସାଥିରେ ଭାଇ ଭାଇ ଭଳି ଚଳିବେ ।''

ତାଙ୍କ ବାକ୍ୟ ସଂପୂର୍ଣ୍ଣ ହେବା ପୂର୍ବରୁ ଦୁର୍ଯ୍ୟୋଧନ ବାଧା ଦେଇ କହିଲେ, ''ସନ୍ଧି କେବଳ ସମାନ ପକ୍ଷ ସହିତ କରାଯାଏ । ସେମାନେ ରାଜ୍ୟରୁ ନିର୍ବାସିତ । ଦରିଦ୍ର ଭିକ୍ଷୁକ ଭଳି ବୁଲୁଛନ୍ତି ଇତସ୍ତତଃ । ସେମାନଙ୍କ ସହିତ ସନ୍ଧି କରିବା ଅସମ୍ଭବ । ଏହା ମୁଁ କଦାପି କରାଇଦେବି ନାହିଁ ।''

ପିତାମହ ଖୁବ୍ ବିରକ୍ତ ଆଉ କ୍ରୋଧିତ ବି । କହିଲେ, ''ପୁତ୍ର ଦୁର୍ଯ୍ୟୋଧନ ! ରାଜସଭାର ଶିଷ୍ଟାଚାର ରକ୍ଷା କର । ଦୂତଙ୍କୁ ତାଙ୍କ ବକ୍ତବ୍ୟ ଶେଷ କରିବାର ସୁଯୋଗ ଦିଅ ।''

''ହଁ, ଦୂତବର ! ଆଗେଇଚାଲନ୍ତୁ ଆପଣଙ୍କ ବକ୍ତବ୍ୟରେ ।'' କହିଲେ ମହାରାଜ ।

ଉତ୍ସାହିତ ହୋଇ କହିଚାଲିଲେ ସେ, ''ହେ ମହାରାଜ ! ପାଣ୍ଡବମାନେ ଆପଣଙ୍କ ଅନୁଜପୁତ୍ର । ପୁତ୍ର ସମାନ । ସେମାନେ ଆପଣଙ୍କଠାରୁ କେବଳ ତ ନ୍ୟାୟ ନୁହେଁ, ସ୍ନେହ ଓ ଶ୍ରଦ୍ଧା ବି ଚାହାନ୍ତି ।''

''ସବୁ ମିଳିବ । ଆପଣ କହିଚାଲନ୍ତୁ ।'' ମହାରାଜଙ୍କ ଆଶ୍ୱାସନାଭରା ବାଣୀ । ଦୁର୍ଯ୍ୟୋଧନଙ୍କ ମୁଖମଣ୍ଡଳରେ ବିକୃତି । ବିରକ୍ତିର ପ୍ରତିଛବି । ଆତଙ୍କିତ ବୋଲି ବି ଜଣା ପଡୁଥାନ୍ତି । ଭାବୁଥାନ୍ତି ହୁଏତ, ଭାବାବେଗରେ ମହାରାଜ କିଛି ଭୁଲ କରିବସିବେ ନାହିଁ ତ ? ପାଣ୍ଡବମାନଙ୍କ ପ୍ରସ୍ତାବରେ ସ୍ୱୀକୃତି ଦେଇଦେବେ ନାହିଁ ତ ?

ଦୂତ ପୁଣି କହିଲେ, ''ମହାରାଜ ! ବନବାସ ଓ ଅଜ୍ଞାତବାସର ଅବଧି ସଫଳ ଭାବରେ ପୂରଣ କରିସାରିବା ପରେ ପାଣ୍ଡବମାନେ ନିଜ ରାଜ୍ୟ ସେମାନଙ୍କୁ ଫେରାଇଦେବା ପାଇଁ ଅନୁରୋଧ କରିଛନ୍ତି । ତାହା ଦେଲେ ସେମାନେ ଅନୁଗୃହୀତ ହେବେ ବୋଲି କହିଛନ୍ତି । ପୁଣି କହିଛନ୍ତି ଯେ ଏହା ସେମାନଙ୍କ ଦାବି କେବଳ ନୁହେଁ । ଏହା ବରଂ ଜ୍ୟେଷ୍ଠ ପିତା ହିସାବରେ ଆପଣଙ୍କ ନିକଟରେ ଅଳି । ଏହା ପୂରଣ କରନ୍ତୁ ଏବଂ ଦୁଇ ପକ୍ଷରେ ଚିରଶାନ୍ତି ରଖାଇବାରେ ସହାୟକ ହୁଅନ୍ତୁ ।''

ସଭାସଦ୍ ସମସ୍ତଙ୍କ ମନରେ ଉଦ୍‌ବେଗ । ସମସ୍ତେ ଚାହିଁ ରହିଥାନ୍ତି ମହାରାଜଙ୍କ ମୁହଁକୁ କ'ଣ କହୁଛନ୍ତି ଜାଣିବାପାଇଁ । ସେମାନଙ୍କ ଦୃଷ୍ଟି ମହାରାଜ ଓ ମହାମନ୍ତ୍ରୀ ବିଦୁରଙ୍କ ମଧ୍ୟରେ କ୍ଷଣକୁ କ୍ଷଣ ପରିବର୍ତ୍ତିତ । ଏଭଳି ଅବସ୍ଥାରେ ମହାମନ୍ତ୍ରୀ କି ପରାମର୍ଶ ଦେଉଛନ୍ତି ଜାଣିବାପାଇଁ ବି ସମସ୍ତେ ସମଧିକ ଆଗ୍ରହାନ୍ୱିତ । ଏ ପରିସ୍ଥିତିରେ ମହାରାଜଙ୍କର ଅବଶ୍ୟ କର୍ତ୍ତବ୍ୟ ତାଙ୍କ ପରାମର୍ଶ ନେବା ପାଇଁ । କିନ୍ତୁ ସେ ନୀରବ । କେବଳ ଚାହିଁରହିଥାନ୍ତି ପ୍ରିୟ ପୁତ୍ର ଦୁର୍ଯ୍ୟୋଧନଙ୍କ ପ୍ରତି ।

ଦୁର୍ଯ୍ୟୋଧନ ଉଠି କହିଲେ, ''ପାଣ୍ଡବମାନଙ୍କୁ ରାଜ୍ୟଭାଗ ଦିଆଯାଇପାରିବ ନାହିଁ । ସେମାନେ ନିର୍ବାସିତ ଜୀବନ ହିଁ ଭୋଗିବେ । ରାଜ୍ୟ କେବଳ ବୀରମାନଙ୍କ ଭୋଗ୍ୟ । ଭୀରୁ କାପୁରୁଷ ଭିକ୍ଷାର୍ଥୀମାନଙ୍କର ନୁହେଁ । ଯଦି ସାହସ ଥାଏ, ତେବେ ଯୁଦ୍ଧ କରନ୍ତୁ । ନିଜ ଦାବିକୁ ସାବ୍ୟସ୍ତ କରନ୍ତୁ ବଳପୂର୍ବକ ।''

ଦୂତ ନାନା ପ୍ରକାର ମିଠା ମିଠା କଥା କହି ଶାନ୍ତି ଲାଗି ତାଙ୍କୁ ଅନୁପ୍ରେରିତ କରିବାର ଚେଷ୍ଟା କଲେ । କିନ୍ତୁ ସବୁ ବିଫଳ । ଦୁର୍ଯ୍ୟୋଧନ ଅଟଳ ମହାମେରୁ । ନିଜ କଥାରୁ ଅଙ୍ଗୁଳି ମାତ୍ର ଟଳିବାକୁ ଅପ୍ରସ୍ତୁତ । ଶେଷ କଥା ଶୁଣାଇଦେଲେ ଗମ୍ଭୀର କଣ୍ଠରେ, ''ଫେରି କହିଦିଅନ୍ତୁ ଯୁଧିଷ୍ଠିରଙ୍କୁ – ବିନା ଯୁଦ୍ଧରେ କିଛି ହିଁ ରାଜ୍ୟ ପାଇପାରିବେ ନାହିଁ ! ଏପରିକି ସୂଚ୍ୟଗ୍ର ପରିମିତ ଭୂମି ବି ନୁହେଁ । ପୂର୍ବରୁ ମୋ' ଆଗରେ କହିଥିବା କଥାର ପୁନରାବୃତ୍ତି ହିଁ କଲେ ।

''ଏହା କ'ଣ ମହାରାଜଙ୍କ ନିଷ୍ପତ୍ତି ?'' ଦୂତଙ୍କ ପୁନର୍ବାର ବିନୀତ ପ୍ରଶ୍ନ ମହରାଜଙ୍କୁ ।

ସଭାସଦ୍‌ମାନେ ଆହୁରି ଉଦ୍‌ବିଗ୍ନ ମହାରାଜଙ୍କ ନିଷ୍ପତ୍ତି ଶୁଣିବାପାଇଁ । କାରଣ ତାହାରି ଉପରେ ନିର୍ଭରଶୀଳ ସବୁ କିଛି । ସେଇ ହିଁ ହସ୍ତିନାପୁରର ରାଜା । ଅନ୍ଧ ହେଲେ ମଧ୍ୟ ଜ୍ଞାନଚକ୍ଷୁ ବୋଲି ତାଙ୍କର ଖୁବ୍ ଖ୍ୟାତି । ଭବିଷ୍ୟତର ଇତିହାସକୁ ଗଢ଼ିବାରେ ସେ ତ କେବଳ ସହାୟତା ଦେବେ ନାହିଁ ବରଂ ନିଜେ ଗଢ଼ିବେ । କାରଣ 'ରାଜା କାଳସ୍ୟ କାରଣମ୍' । କାଳର କାରଣ ହେଉଛନ୍ତି ରାଜା । ସେ ଯେଉଁ ଦିଗକୁ ଚାହିଁବେ, କାଳର ଗତି ହେବ ଠିକ୍ ସେହି ଦିଗକୁ । ତେଣୁ କମ୍ ବଡ଼ ଦାୟିତ୍ୱ ନାହିଁ ତାଙ୍କର । କିନ୍ତୁ ତଥାପି ସେ ନୀରବ । କପାଳରେ ଘନମୁକ୍ତିତ ସ୍ୱେଦବିନ୍ଦୁ ଓ ଭାଙ୍ଗ । ହୁଏତ ବହୁତ କିଛି ଚିନ୍ତା କରୁଛନ୍ତି । ଅଥଚ ନେଇପାରୁ ନାହାନ୍ତି କିଛି ନିର୍ଣ୍ଣୟ । ନିର୍ଣ୍ଣୟ ନେବାରେ ସହାୟତା ଦେବାପାଇଁ ମହା ମହା ଜ୍ଞାନୀମାନେ ଉପସ୍ଥିତ ରାଜସଭାରେ । ଅଥଚ ସେମାନଙ୍କ ପରାମର୍ଶ ନେଉ ନାହାନ୍ତି କିମ୍ବା ଚାହୁଁ ବି ନାହାନ୍ତି ସେମାନଙ୍କ ପ୍ରତି । ହସ୍ତିନାପୁରର ନ୍ୟାୟମୂର୍ତ୍ତି ମହାରାଜ ଯେପରି ଆଜି ପାଲଟିଯାଇଛନ୍ତି ମୂକ । ପାଷାଣର ପ୍ରତିମାଟିଏ । ପ୍ରତିକ୍ରିୟାହୀନ । ସ୍ପନ୍ଦନହୀନ । ସଂପୂର୍ଣ୍ଣ ଜଡ଼ । ହାୟ ରେ ହସ୍ତିନାପୁରର ଭାଗ୍ୟ !

ତାଙ୍କ ଜଡ଼ତାକୁ ଭାଙ୍ଗିବାର ଚେଷ୍ଟା କରି ଦୂତଙ୍କ ପୁନର୍ବାର ପ୍ରଶ୍ନ, ''ଜଣାନ୍ତୁ ମହାରାଜ ଆପଣଙ୍କ ନିଷ୍ପତ୍ତି । କୁମାର ଦୁର୍ଯ୍ୟୋଧନଙ୍କ ପ୍ରସ୍ତାବ କ'ଣ ଆପଣଙ୍କ ନିଷ୍ପତ୍ତି ବୋଲି ଧରାଯିବ ?''

''ହଁ ।'' ଅତି ସଂକ୍ଷିପ୍ତ ଏକାକ୍ଷର ଉତ୍ତର ମହାରାଜଙ୍କର ।

ସଭାସଦମାନେ ସମସ୍ତେ ବିସ୍ମୟ-ଚକିତ । ପିତାମହ ଭୀଷ୍ମଙ୍କ ମୁଖମଣ୍ଡଳରେ ତୀବ୍ର ବେଦନାର ସନ୍ତରଣ । ବିକର୍ଣ୍ଣ ତଥାପି କ'ଣ କହିବା ପାଇଁ ଉଠୁଥିଲେ । ଦୁର୍ଯ୍ୟୋଧନ କିନ୍ତୁ ତାଙ୍କୁ ବସାଇଦେଇ କହିଲେ ଆକଟ କରି, ''ବସ ଅନୁଜ ବିକର୍ଣ୍ଣ, ବସ । ମହାରାଜଙ୍କ ନିଷ୍ପତ୍ତି ଶୁଣିବା ପରେ ତୁମର ଆଉ କିଛି କହିବାର ଅଧିକାର ନାହିଁ ।''

ବିକର୍ଣ୍ଣ ବସିପଡ଼ିଲେ ହତାଶ ହୋଇ ବେଦନାକ୍ତ ମୁଖମଣ୍ଡଳ ଧରି ।

ପାଣ୍ଡବଦୂତ ଫେରିଗଲେ ଉପପ୍ଲବ୍ୟ ନଗରକୁ ନିରାଶ ମନ ନେଇ ।

ସେତେବେଳେ ଦିନଟାରେ ବି ରାଜୋଦ୍ୟାନର କୌଣସି ଏକ ବୃକ୍ଷରୁ ଭାସିଆସୁଥିଲା ମୃତ୍ୟୁର ସମ୍ବାଦବାହୀ ଅଶୁଭ ପେଚକର ଭୟଙ୍କର ଶବ୍ଦ ହୁଁ... ହୁଁ... ହୁଁ... ହୁଁ... କାଳ କାଳ ଧରି ହସ୍ତିନାପୁରର ସଭାକକ୍ଷରେ ନ୍ୟାୟବିଚାରର ଯେଉଁ ନର୍ତ୍ତକୀଟି ନାଚି ଆସୁଥିଲା ସଚପଳ ଭଙ୍ଗୀରେ ହଠାତ୍ ତା'ର ଶ୍ୱାସରୁଦ୍ଧ ହେବା ଫଳରେ ସେ ଯେମିତି କରିଉଠୁଛି ବିକଳ ଆର୍ତ୍ତନାଦ ! ମୁମୂର୍ଷୁର ଆର୍ତ୍ତନାଦ !!

## ତେସ୍ତରି

ଅଳ୍ପ କିଛି ଦିନ ପରେ ପୁଣି ଏକ ରାଜସଭା ଆହୂତ ହସ୍ତିନାପୁରରେ । ଆଜି ସେଠାକୁ ଆସୁଛନ୍ତି ଯଦୁକୁଳଚନ୍ଦ୍ର ଦ୍ୱାରକାଧିପତି କୃଷ୍ଣ । ଖାଲି ତ ଯଦୁକୁଳର ଚନ୍ଦ୍ର ନୁହନ୍ତି । ସାରା ମାନବଜାତିର ଚନ୍ଦ୍ର ସେ । ଆଜି ଯେଉଁ କ୍ଷୀୟମାଣ ମାନବବାଦ ସଢୁଛି ଅମାବାସ୍ୟାର ନୀରନ୍ଧ୍ର ଅନ୍ଧକାରରେ, ତାହାକୁ ଉଦ୍ଧାର କରି ଆଲୋକରେ ଭସାଇଦେବା ପାଇଁ ଏକ ମାତ୍ର ପୂର୍ଣ୍ଣଚନ୍ଦ୍ର ସେ । ସେ ଆଜି ଆସୁଛନ୍ତି ପାଣ୍ଡବମାନଙ୍କ ଦୂତ ସାଜି । ସାଥିରେ ଆଣୁଛନ୍ତି ଶାନ୍ତି ପ୍ରସ୍ତାବ । କୌରବ ପାଣ୍ଡବମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ହେବ ଶାନ୍ତି । ବିଗ୍ରହ-ମାର୍ଗରୁ ଘୁଞ୍ଚିଯିବେ ଉଭୟ ପକ୍ଷ । ଯେଉଁ ଭୀମ ଦୁର୍ବାର ଆଗ୍ନେୟଗିରିର ଉଦ୍‌ଗିରଣ ହେବାର ଆଶଙ୍କା ଅଛି, ତାହାର ସମ୍ଭାବନା ଦୂର ହୋଇଯିବ ଚିରଦିନ ପାଇଁ । ମହାରାଜଙ୍କର ଭାରି ଆଶା ଓ ବିଶ୍ୱାସ ଯେ ପରମ ବୁଦ୍ଧିମାନ କୃଷ୍ଣ କିଛି ଗୋଟାଏ ବାଟ ନିଶ୍ଚୟ ବାହାର କରିବେ । ଉଭୟ ପକ୍ଷକୁ ଆସନ୍ନ ମହାବିପତ୍ତିରୁ ରକ୍ଷା କରିବେ । ତେଣୁ ତାଙ୍କ ସ୍ୱାଗତ ଲାଗି ବିଶେଷ ବ୍ୟବସ୍ଥାମାନ କରିବାକୁ ଦେଇଛନ୍ତି ଦୃଢ଼ ଆଦେଶ । ମହାମନ୍ତ୍ରୀ ବିଦୁର ତେଣୁ ଆଜି ଖୁବ୍ କର୍ମପ୍ରବଣ । ତାଙ୍କୁ ସକଳ ବ୍ୟବସ୍ଥା ଟିକିନିଖି ନିଜେ ଦେଖିବାକୁ ପଡୁଛି ।

ଉପପ୍ଲବ୍ୟ ନଗରରୁ ବାହାରି କୃଷ୍ଣ ପଥ ମଧ୍ୟରେ ବିଶ୍ରାମ ନେଲେ ବୃକସ୍ଥଳ ବୋଲି ଗୋଟିଏ ସ୍ଥାନରେ । ସେଠାରେ ରାତିଟା କଟାଇ ସକାଳୁ ସକାଳୁ ଗଙ୍ଗା ପାରିହୋଇ ପ୍ରବେଶ କଲେ ହସ୍ତିନାପୁରର ସୀମାରେ । ସେପର୍ଯ୍ୟନ୍ତ ପଥଟି ହସ୍ତିନାପୁରରୁ ଥାଏ ସୁସଜ୍ଜିତ । ନାଗରିକମାନେ ଓ ଜନପଦବାସୀମାନେ ପଥର ଦୁଇ ପାର୍ଶ୍ୱରେ ଠିଆ ହୋଇ ତାଙ୍କୁ ସ୍ୱାଗତ ସଂବର୍ଦ୍ଧନା କଲେ । ହସ୍ତିନାପୁର ପକ୍ଷରୁ ମୁଁ ଓ ମିତ୍ର ଅଶ୍ୱତ୍ଥାମା ଯାଇଥିଲୁ ତାଙ୍କ ସ୍ୱାଗତ ଲାଗି । ଦେଖିଲି, ଚାରୋଟି ଶ୍ୱେତାଶ୍ୱଯୁକ୍ତ ସୁବର୍ଣ୍ଣମଣ୍ଡିତ ରଥରେ ଆସୀନ

ମାତ୍ର ଦୁଇ ଜଣ ବ୍ୟକ୍ତି । ଜଣେ ସ୍ୱୟଂ ଯାଦବରାଜ କୃଷ୍ଣ । ଅପରଜଣକ ସାରଥି ଦାରୁକ । କୃଷ୍ଣଙ୍କ ନୀଳ କଳେବରକୁ ପୀତାମ୍ବର ମାନୁଛି ଭାରି ସୁନ୍ଦର ଭାବରେ । ସୁବର୍ଣ୍ଣଖଚିତ ମୁକୁଟରେ ଶୋଭାୟମାନ ମୟୂରପୁଚ୍ଛ । ଗୋପପୁରରେ ଅବସ୍ଥାନ କାଳରେ ଥିବା ଚିରସହଚର ସେଇ ମୟୂରପୁଚ୍ଛର ଶିରୋଭୂଷଣକୁ ଆଦରିନେଇଛନ୍ତି ସାରା ଜୀବନ । ନବୋଦିତ ସୂର୍ଯ୍ୟଙ୍କ ଝଲମଲ କିରଣରେ ବସନଭୂଷଣ ଧରି ସାରା ତନୁ ତାଙ୍କର ଉଠୁଛି ଝଟକି । ରଙ୍ଗାଧରରେ ଦରଦର ହସ । ଆମକୁ ଦେଖିବାମାତ୍ରେ ସେ ରଥ ଅଟକାଇ ଅବତରଣ କଲେ ତହିଁରୁ । ଦରହସ ତାଙ୍କର ଆହୁରି ହୋଇଉଠିଲା ବିସ୍ତାରିତ ଠିକ୍ ଶ୍ୟାମଳ ପଲ୍ଲବ ଗୁଚ୍ଛମଧ୍ୟରେ ପୁଞ୍ଜିତ ମଲ୍ଲୀସ୍ତବକ ଭଳି !

ତାଙ୍କୁ ଦେଖି ଆମେ ଦୁହେଁ ସମସ୍ୱରରେ ସଂବର୍ଦ୍ଧନା କଲୁ, "ଜୟତୁ ଦ୍ୱାରକାଧିରାଜ କୃଷ୍ଣ ।"

"ଜୟ ତୁ ଅଙ୍ଗରାଜ କର୍ଣ୍ଣ । ଜୟତୁ ବ୍ରହ୍ମବିତ୍ ଅଶ୍ୱତ୍ଥାମା ।" ପ୍ରତ୍ୟୁତ୍ତରରେ ଆମ ଦୁହିଁଙ୍କ ପ୍ରତି ତାଙ୍କର ଅଭିବାଦନ ।

ସଙ୍ଗେ ସଙ୍ଗେ ବ୍ରାହ୍ମଣମାନଙ୍କର ସ୍ୱସ୍ତ୍ୟୟନ ମନ୍ତ୍ର ସହିତ ତାଳ ଦେଇ ବାଜିଉଠିଲା ଶଙ୍ଖ, ଭେରୀ, ମର୍ଦ୍ଦଳ, ତୂରୀ ଆଦି ନାନାପ୍ରକାର ବାଦ୍ୟ । ଅପେକ୍ଷମାଣ ଜନତାଙ୍କ ପକ୍ଷରୁ ପୁଷ୍କଳ ପୁଷ୍ପବୃଷ୍ଟି । ଜଣେ ବୃଦ୍ଧାମହିଳା ଥରି ଥରି ଆସି ତାଙ୍କ ଗଳାରେ ଗଳାଇଦେଲେ ଫୁଲମାଳାଟିଏ । ସେ ନଇଁପଡ଼ି ତାହାକୁ ଗ୍ରହଣ କଲେ ଓ ପ୍ରଣାମ କଲେ ତାଙ୍କ ପାଦତଳେ । ବୃଦ୍ଧାଜଣକ ଆଶୀର୍ବାଦ ଦେଇ କହିଲେ, "ଦୀର୍ଘାୟୁ ଭବ ବତ୍ସ ।" ଏହିପରି ପ୍ରଣାମ-ଆଶୀର୍ବାଦ ମଧ୍ୟରେ ସେ ଯାତ୍ରା କଲେ ହସ୍ତିନାପୁର ଅଭିମୁଖରେ । ପୂର୍ବରୁ ସଜ୍ଜିତ ହୋଇ ରଖାଯାଇଥିବା ସଶସ୍ତ୍ର ସୈନ୍ୟଭରା ରଥଟି ତାଙ୍କ ଆଗରେ ଚାଲିଲା ପଥପ୍ରଦର୍ଶନ କରି କରି । ଆମ ରଥଟି ତାଙ୍କ ପଛରେ ।

ହସ୍ତିନାପୁର ମହାଦ୍ୱାର ନିକଟରେ ମଧ୍ୟ ସମଧିକ ଉଚ୍ଛ୍ୱସିତ ସଂବର୍ଦ୍ଧନା । ମହାମାନବଙ୍କ ଆଗମନୀ ଲାଗି ମହୋତ୍ସବର ଆୟୋଜନ । ନାଗରିକମାନଙ୍କର ପ୍ରବଳ ଭିଡ଼ । ସଂବର୍ଦ୍ଧନାର ନେତୃତ୍ୱ ନେଇଥାନ୍ତି ପିତାମହ ଭୀଷ୍ମ, ମହାରାଜ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ । ଚାରିଜଣଯାକ କୃଷ୍ଣଙ୍କ ନିକଟରେ ମାନନୀୟ । ସେମାନଙ୍କୁ ସମସ୍ତଙ୍କୁ ଯଥାବିଧି ପ୍ରଣାମ କରି ସେମାନଙ୍କ ଆଶୀର୍ବାଦ ନେଲେ ସେ । ଗୋଟିଏ ବିଶେଷ କଥା ଲକ୍ଷ୍ୟ କଲି ମୁଁ । ଦୁର୍ଯ୍ୟୋଧନ କିମ୍ବା ମାତୁଳ ଶକୁନି ସମ୍ବର୍ଦ୍ଧନାକାରୀମାନଙ୍କ ମଧ୍ୟରେ ନ ଥିଲେ । ଶୁଣିଲି, ସେମାନେ କୁଆଡ଼େ ପୂର୍ବରୁ ରାଜସଭାରୁ ଚାଲିଯାଇଛନ୍ତି । ଭାବିଲି, ମାତୁଳ ଶକୁନି ନ ଆସିଲେ ନାହିଁ । କିନ୍ତୁ ମିତ୍ର ଦୁର୍ଯ୍ୟୋଧନଙ୍କ ଆସିବା ଉଚିତ ଥିଲା । କାରଣ ସେ ଜ୍ୟେଷ୍ଠ କୌରବ ଓ ଯୁବରାଜ । ମନର ପ୍ରତିକ୍ରିୟାକୁ କେବଳ ଚାପିରଖିଲି ମନରେ ।

ଧୃତରାଷ୍ଟ୍ର କୃଷ୍ଣଙ୍କୁ ରାଜଭବନ ଭିତରକୁ ଯିବାପାଇଁ ଅନୁରୋଧ କରି କହିଲେ, "ଚାଲନ୍ତୁ ଯାଦବରାଜ, ରାଜଭବନ ଭିତରକୁ । କିଛି ସମୟ ବିଶ୍ରାମ ପରେ ସଭାଭବନକୁ ଆସିବେ ।"

''କ୍ଷମା କରିବେ ମହାରାଜ । ମୁଁ ଯେଉଁ କାମଟି ପାଇଁ ଆସିଛି, ତାହା ଆଗ ସାରେଁ । ବର୍ତ୍ତମାନ ଅନ୍ୟ ବାକ୍ୟାଳାପ ପାଇଁ ସମୟ ନାହିଁ । କାର୍ଯ୍ୟରେ ବିଳମ୍ବ ହୋଇ ଯାଉଛି ।'' ହସି ହସି ଅତି ବିନମ୍ର ଭାବରେ ମହାରାଜଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ ସେ ଓ ଆଗେଇଲେ ସଭାଭବନ ପ୍ରତି । ପିତାମହ ଭୀଷ୍ମ, ମହାରାଜ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ ମଧ୍ୟ ବାଧ୍ୟ ହୋଇ ଚାଲିଲେ ସେହି ଦିଗରେ । ମୁଁ ଓ ଅଶ୍ୱତ୍ଥାମା ଅନୁସରଣ କଲୁ ସେମାନଙ୍କୁ ।

ସଭାଗୃହରେ ପ୍ରବେଶ କରିବା ମାତ୍ରେ ହିଁ କୃଷ୍ଣ ହସ୍ତିନାପୁରର ପୁରାତନ ରାଜସିଂହାସନ ପ୍ରତି କଲେ ପ୍ରଣାମ । ତାହା ପରେ ସଭାସଦମାନଙ୍କ ଉଦ୍ଦେଶ୍ୟରେ ବି କଲେ ପ୍ରଣାମ । ମହାମନ୍ତ୍ରୀ ବିଦୁର ତାଙ୍କ ଲାଗି ଉଦ୍ଦିଷ୍ଟ ଆସନ ନିକଟକୁ ତାଙ୍କୁ ନେଇଗଲେ । ତହିଁରେ ବସିବା ଉତ୍ତାରୁ ସେ ଚାରିଆଡ଼କୁ ବୁଲାଇ ଆଣିଲେ ଆଖି । ଓଠତଳର ହସ ସଂକ୍ରମିତ କରିଥାଏ ଆଖିକଣକୁ । ସେହି ସଂକ୍ରମଣ ହଠାତ୍ ଯେମତି ଆଚ୍ଛନ୍ନ କରିଦେଲା ସାରା ସଭାଭବନକୁ । କି ମୋହକ ଢଳ ଢଳ ଚାହାଣି ସତେ ! ଅମୃତର ଶତଧାରା ବହି ଯାଉଛି ଯେମିତି ! ଶତ୍ରୁ ହେଲେ ବି ସେଇ ଧାରାରୁ ଆକଣ୍ଠ ପିଇଯିବା ପାଇଁ ଇଚ୍ଛା କରିବ । କ୍ଷଣକ ପୂର୍ବରୁ ଯେଉଁ ମୃଦୁ ଗୁଞ୍ଜରଣ ଉଠୁଥିଲା ସଭାଭବନରେ, ତାହା ଏବେ ହଠାତ୍ ସ୍ତବ୍ଧ । ସମସ୍ତଙ୍କ ମୁଗ୍ଧ ଦୃଷ୍ଟି କୃଷ୍ଣଙ୍କ ମଦନମୋହନ ରୂପ ପ୍ରତି ଆକୃଷ୍ଟ । ଆଉ ଉଦଗ୍ର ଆଗ୍ରହ ବି ତାଙ୍କ କଣ୍ଠର ବାଣୀ ଶୁଣିବାକୁ ।

ସଭା ଆରମ୍ଭରେ ମହାମନ୍ତ୍ରୀ ବିଦୁର ସ୍ୱାଗତ କଲେ ତାଙ୍କୁ ଏବଂ ନିଜ ଆସନ ଗ୍ରହଣ କରିବା ପୂର୍ବରୁ କହିଲେ, ''ଏବେ ଯାଦବରାଜ ଦ୍ୱାରକାଧିପତି କୃଷ୍ଣ ତାଙ୍କ ନିବେଦନ ସ୍ୱୟଂ ଜଣାଇବେ । ସଭାସଦ୍‌ମାନେ ସମସ୍ତେ ଶାନ୍ତ ମନ ନେଇ ତାହା ଉପରେ ବିଚାର କରନ୍ତୁ । ପରିସ୍ଥିତି ଅତି ଗୁରୁତ୍ୱପୂର୍ଣ୍ଣ । ଭବିଷ୍ୟତ ଇତିହାସ କିପରି ଲେଖାଯିବ, ତାହା ଆପଣମାନେ ସ୍ଥିର ଚିତ୍ତରେ ବିଚାର କରନ୍ତୁ ।'' ଆଖି ତାଙ୍କର ଆବେଗରେ ଛଳ ଛଳ । ଆଉ କିଛି ଅଧିକ ନ କହି ବସିପଡ଼ିଲେ ଆସନରେ ।

ଉତ୍ତରୀୟକୁ ସଂଯତ କରି କୃଷ୍ଣ ଆସନରୁ ଉଠିଲେ ଏବଂ କହିବାକୁ ଆରମ୍ଭ କଲେ । କଣ୍ଠସ୍ୱର ଲଳିତ-ଗମ୍ଭୀର । ଭାଷା ଦ୍ୱିଧାହୀନ ଓ ଓଜସ୍ୱିତାରେ ଉଚ୍ଛଳ । ଆଉ ପ୍ରରୋଚକ ବି । କହୁଥିବାବେଳେ ଭେଦକ ଦୃଷ୍ଟି ବୁଲି ଆସୁଥାଏ ସଭାଭବନର ଚାରି ଦିଗରେ । ଦୀର୍ଘ ଏକ ଭାଷଣ-ଭଙ୍ଗୀରେ କହିବାକୁ ଆରମ୍ଭ କଲେ, ''ହେ ଭୀଷ୍ମ, ମହାରାଜ ଧୃତରାଷ୍ଟ୍ର, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ମହାମନ୍ତ୍ରୀ ବିଦୁର, ଅଙ୍ଗରାଜ କର୍ଣ୍ଣ, ଅଶ୍ୱତ୍ଥାମା ଓ ଗାନ୍ଧାରରାଜ ଶକୁନି ! ହେ ଦୁର୍ଯ୍ୟୋଧନ ଓ ଅନ୍ୟାନ୍ୟ କୌରବଗଣ ! ହେ କୁଳବୃଦ୍ଧ ନାଗରିକ, ଜାନପଦ ଓ ଅନ୍ୟାନ୍ୟ କୁରୁଯୋଦ୍ଧାଗଣ ! ଆପଣମାନେ ମନଧ୍ୟାନ ଦେଇ ଶୁଣନ୍ତୁ । ମୁଁ ଏଠାକୁ ଯଦୁକୁଳପତି କୃଷ୍ଣ ହିସାବରେ ଆସି ନାହିଁ । ଶାନ୍ତିର ବାର୍ତ୍ତା ନେଇ ଆସିଛି ପାଣ୍ଡବମାନଙ୍କ ଦୂତ ହିସାବରେ । ପାଣ୍ଡବମାନେ ଓ କୌରବମାନେ ଉଭୟ ମୋର ବନ୍ଧୁ । ଉଭୟଙ୍କ ମଧ୍ୟରେ କେମିତି ଚିରଶାନ୍ତି ପ୍ରତିଷ୍ଠିତ ହେବ, ଉଭୟ ପକ୍ଷ କେମିତି ଚିରସୁଖୀ ହୋଇ ରହିବେ, ତାହା ମୋର ଆନ୍ତରିକ ଇଚ୍ଛା । ଶାନ୍ତି ଓ ସୁଖପାଇଁ ଧନ୍ ଯେ

ଆବଶ୍ୟକ ତାହା ମୁଁ ମାନୁଛି । କିନ୍ତୁ ଧନଲୋଭ ନୁହେଁ । ଧନକୁ ନିଜ କର୍ମବଳରେ ଅର୍ଜନ କରିବାକୁ ହେବ । କାହାରି ପାଖରୁ ଛିନ୍ନ କରି ଆଣିବାକୁ ହେବ ନାହିଁ । ତ୍ୟାଗ ଓ ଭୋଗର ସମନ୍ୱିତ ଜୀବନ ଜୀଇଁଲେ ଯାଇ ମଣିଷ ସୁଖୀ ହୋଇପାରିବ । ଲୋଭ କଲେ ହେବ ସଂଘର୍ଷର ସୃଷ୍ଟି । ସଂଘର୍ଷ ସୁଖ-ଶାନ୍ତି ଦେଇପାରିବ ନାହିଁ କଦାପି । ସେଥିପାଇଁ ତ ଆମ ପୂର୍ବଜ ମୁନିଋଷିମାନେ କହିଛନ୍ତି ଏବଂ ବେଦାନ୍ତ ବି କହିଛି– 'ମା ଗୃଧଃ କସ୍ୟସ୍ୱିଦ୍ଧନମ୍' । କାହାରି ଧନ ପ୍ରତି ଲୋଭ କର ନାହିଁ ।''

କୃଷ୍ଣଙ୍କ ବକ୍ତବ୍ୟର ଭୂମିକା ଥିଲା ବଳିଷ୍ଠ ଭାବରେ ଅନୁପ୍ରେରକ ଓ ରୋଚକ ବି । ନୀତିବାକ୍ୟରେ ପରିପୂର୍ଣ୍ଣ । ମହାରାଜ ତାଙ୍କୁ ଉତ୍ସାହ ଦେବାକୁ ଯାଇ କହିଲେ, ''କହି ଚାଲନ୍ତୁ ଯାଦବପତି । କହି ଚାଲନ୍ତୁ ।''

କୃଷ୍ଣ ଆଗେଇଲେ, ''ଆପଣମାନେ ସମସ୍ତେ ତ ଏ ପର୍ଯ୍ୟନ୍ତ ଦେଖିଆସିଛନ୍ତି ପାଣ୍ଡବମାନଙ୍କ ପ୍ରତି ଗୋଟିକ ପରେ ଗୋଟିଏ କରି କି କି ଅନ୍ୟାୟ କରାଯାଇଛି । ଆଉ ପରୀକ୍ଷା ବି କରିଆସିଛନ୍ତି ସେମାନଙ୍କ ସହନଶୀଳତା । ସେମାନେ ସମସ୍ତେ ଅନ୍ୟାୟ-ଅତ୍ୟାଚାର ସହିଯାଇଛନ୍ତି ସତ୍ୟ ଓ ଧର୍ମକୁ ଆଖିରେ ରଖି । ଏବେ କିନ୍ତୁ ସବୁ କିଛିର ସୀମା ଟପିଯାଇଛି । ଆଉ ସହିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ସତ୍ୟ ଓ ଧର୍ମ ବର୍ତ୍ତମାନ ଘୋରତର ବିପନ୍ନ । ତାହାକୁ ରକ୍ଷା କରିବା ସମସ୍ତ ସତ୍ୟନିଷ୍ଠ ଓ ଧର୍ମନିଷ୍ଠ ବ୍ୟକ୍ତିଙ୍କ କର୍ତ୍ତବ୍ୟ । ସେମାନେ ତାହାକୁ ରକ୍ଷା କରିବା ନିମିତ୍ତ ଆଗେଇ ଆସିବାପାଇଁ ଏବେ ସଂକଳ୍ପବଦ୍ଧ । ଆପଣମାନେ ଭାବନ୍ତୁ ନାହିଁ ଯେ ମୁଁ ଯୁଦ୍ଧର ଭୟ ଦେଖାଉଛି ବୋଲି । ଦୂତର କର୍ତ୍ତବ୍ୟ ଶାନ୍ତି ପ୍ରସ୍ତାବ ଦେବା । ମୁଁ ସେହି ପ୍ରସ୍ତାବ ହିଁ ଦେଉଛି । ଆପଣମାନଙ୍କ ନିର୍ଣ୍ଣୟର ସହାୟକ ଦେବା ନିମିତ୍ତ ଅସତ୍ୟର ମୁଖାଟିକୁ ଖୋଲିଦେଉଛି । ସତ୍ୟ ଓ ଧର୍ମ ଉପରେ ପଡ଼ିଥିବା ଆବରଣଟିକୁ କରିଦେଉଛି ଅପସାରିତ । କହନ୍ତୁ ଆପଣମାନେ । ଆଉ କହନ୍ତୁ ବି ଦୁର୍ଯ୍ୟୋଧନ । ବାଳକ ଭୀମସେନଙ୍କୁ ବିଷମିଶ୍ରିତ ଖାଦ୍ୟ ଖୁଆଇବାରେ କେଉଁ ସତ୍ୟ ଓ ଧର୍ମ କାର୍ଯ୍ୟ କରିଥିଲା ? କୁନ୍ତୀଦେବୀଙ୍କୁ ପଞ୍ଚପୁତ୍ରଙ୍କ ସହିତ ଜାଳିପୋଡ଼ି ମାରିଦେବା ନିମିତ୍ତ ଗୋପନରେ ବାରଣାବତରେ ଲାକ୍ଷାଗୃହ ନିର୍ମାଣ କରିବା ପଛରେ କେଉଁ ସତ୍ୟ ଓ ଧର୍ମ ଥିଲା ? ପାଣ୍ଡବମାନଙ୍କୁ ପିତ୍ରାର୍ଜିତ ରାଜ୍ୟରୁ ଉଚିତ ଭାଗ ନ ଦେଇ ଅରଣ୍ୟପୂର୍ଣ୍ଣ ଖାଣ୍ଡବପ୍ରସ୍ଥ ଦେବା ପଛରେ ପୁଣି କେଉଁ ସତ୍ୟ ଓ ଧର୍ମ ଥିଲା ? ଖାଲି ସେତିକି ନୁହେଁ । କପଟଦ୍ୟୂତର ଆୟୋଜନ କରାଯାଇ ଯୁଧିଷ୍ଠିରଙ୍କୁ ପରାସ୍ତ କରାଗଲା । ଥରେ ନୁହେଁ । ଦୁଇ ଦୁଇ ଥର । ପାଣ୍ଡବପତ୍ନୀ ଦ୍ରୌପଦୀଙ୍କୁ ସଭା ମଧ୍ୟରେ ବିବସ୍ତ୍ରା କରିବାର ବିଫଳ ଉଦ୍ୟମ କରାଗଲା । ଶେଷରେ କପଟପୂର୍ଣ୍ଣ ପଣର ଜାଲ ବିଛାଇ ପାଣ୍ଡବମାନଙ୍କୁ ପତ୍ନୀଙ୍କ ସହିତ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ ଭୋଗିବାକୁ ପଠାଗଲା । ଏ ସବୁ ମୂଳରେ କେଉଁ ଧର୍ମ ଓ ସତ୍ୟ ଥିଲା ?''

କୃଷ୍ଣଙ୍କ ଆଖି ଦିଓଟି ଜଳୁଥିଲା । କ୍ରୋଧରେ ନୁହେଁ । ବରଂ ଏକ ତେଜୋମୟ ମହାଦ୍ୟୁତିରେ । ସତ୍ୟ ପ୍ରକାଶନରେ ମାର୍ଜିତ ଓ ପରିଶୀଳିତ । ସଭାସଦ ସମସ୍ତେ ନୀରବ । କାହାରି କିଛି ସାହସ ନାହିଁ କହିବାକୁ । ଆତ୍ମରକ୍ଷାର ସମସ୍ତ ଦ୍ୱାର ରୁଦ୍ଧ ଯେମିତି ।

ଦୁର୍ଯ୍ୟୋଧନ କ'ଣ କହିବାକୁ ଉଠୁଥିଲେ । କିନ୍ତୁ ପିତାମହଙ୍କଠାରୁ ହସ୍ତର ଇଙ୍ଗିତ ପାଇ ବସିଲେ ତୁନି ହୋଇ ।

"ମୁଁ ଜାଣେ, ଆପଣମାନେ ଏହାର ପ୍ରତିବାଦରେ କିଛି କହିପାରିବେ ନାହିଁ । କାରଣ ଏ ସବୁ ଥିଲା ଅନ୍ୟାୟ, ଅସତ୍ୟ ଓ ଅଧର୍ମ । ଏବେ ଏହାର ପ୍ରତିକାର କରିବାର ବେଳ ଆସିଛି । ଅତୀତର କଳଙ୍କକୁ ଧୋଇଦେବାର ବେଳ ଆସିଛି । ଆପଣମାନଙ୍କ ବିବେକ ବିଚାର ଉପରେ ସବୁ କିଛି ନିର୍ଭରଶୀଳ । ପାଣ୍ଡବମାନେ ଚାହାନ୍ତି, ଶାନ୍ତିପୂର୍ଣ୍ଣ ଉପାୟରେ ସେମାନଙ୍କ ହୃତରାଜ୍ୟ ଏବେ ଫେରାଇ ଦିଆଯାଉ । ବହୁତ କଷ୍ଟ ସହିଲେଣି ସେମାନେ । ବୟସ ବି ଗଡ଼ିଗଲାଣି । ସମସ୍ତେ ପ୍ରାୟ ଟପିଗଲେଣି ଷାଠିଏ ବର୍ଷର ପରମାୟୁ । ଏବେ ଚାହାନ୍ତି ଏକ ସ୍ଥିର ଜୀବନ । ନିଜ ରାଜ୍ୟରେ ରହି ଶାନ୍ତିରେ ବିତାଇବେ ଅବଶିଷ୍ଟ ଜୀବନ ।" ପୂର୍ବଭଳି ଦୃଢ଼ ଅଥଚ ବିନୟଭରା କଣ୍ଠରେ କହିଲେ ସେ । କିଛି ସମୟ ରହିଯାଇ ପୁଣି କହିଲେ, "ଯଦି ପିତ୍ରାର୍ଜିତ ରାଜ୍ୟରୁ ଅର୍ଦ୍ଧେକ ସେମାନଙ୍କୁ ଦିଆଯାଇ ନ ପାରୁଛି, ତେବେ ଅନ୍ତତଃ ଖାଣ୍ଡବପ୍ରସ୍ଥ ରାଜ୍ୟଟି ଦିଆଯାଉ । ନିଜ ଉଦ୍ୟମରେ ସେମାନେ ଗଢ଼ିଛନ୍ତି ରାଜ୍ୟଟିକୁ । ଆଉ ସମୃଦ୍ଧ କରିଛନ୍ତି ବି ରାଜଧାନୀ ଇନ୍ଦ୍ରପ୍ରସ୍ଥକୁ । ଏଥିରେ କିଛି ଆପତ୍ତି ରହିବ ନାହିଁ ବୋଧହୁଏ ।"

ଏଣିକି ଧୈର୍ଯ୍ୟ ରହିଲା ନାହିଁ ଦୁର୍ଯ୍ୟୋଧନଙ୍କର । ସେ ଚାହୁଁ ନ ଥିଲେ କୃଷ୍ଣଙ୍କ ବକ୍ତବ୍ୟର ସମୟସୀମା ବଢୁ ବୋଲି । ତାଙ୍କର ହୁଏତ ଧାରଣା, କୃଷ୍ଣଙ୍କ ବାଣୀର ମାଦକ ଶକ୍ତି ତାଙ୍କ ରୂପର ମାଦକ ଶକ୍ତିଠାରୁ ଅଧିକ ବେଶି । ଅଚିରେ ମୋହିତ ହୋଇଯିବେ ଶ୍ରୋତାମାନେ । କିଛି ସମୟ ବିଳମ୍ବରେ ହୁଏତ ସଭାସଦମାନେ ହରାଇବସିବେ ଆତ୍ମସତ୍ତା । ରାଜି ହୋଇଯିବେ ତାଙ୍କ କଥାରେ । ମହାରାଜ ବି ବାଦ ପଡ଼ିବେ ନାହିଁ ସେଥିରୁ । ନିଜେ ଦୁର୍ଯ୍ୟୋଧନ ଯେ ସେହି ଅବସ୍ଥାରେ ନ ପଡ଼ିବେ ସେ କଥା କିଏ କହିବ ? ତେଣୁ ସେ ଚାହୁଁଥିଲେ ତାଙ୍କ ବକ୍ତବ୍ୟର ଆଶୁ ସମାପ୍ତି । ହଠାତ୍ ଉଠି ପ୍ରଶ୍ନ କଲେ ସେ, "ଖାଣ୍ଡବପ୍ରସ୍ଥ ଯଦି ଦିଆ ନ ଯିବ, ତେବେ ପାଣ୍ଡବମାନେ କ'ଣ କରିବେ ?"

"ତଥାପି ମଧ୍ୟ ଯୁଦ୍ଧ କରିବେ ନାହିଁ । ସେମାନଙ୍କ ଭରଣ-ପୋଷଣ ଲାଗି ପାଞ୍ଚଖଣ୍ଡ ମାତ୍ର ଗାଁ ଦେଲେ ବି ଚଳିଯିବ । ମହାରାଜ ଯଦି ଚାହାନ୍ତି, ତେବେ ତାହା ଦେଇ ଅନୁଗୃହୀତ କରାନ୍ତୁ ସେମାନଙ୍କୁ ।"

"ଯଦି ତାହା ବି ଦିଆ ନ ଯାଏ ?"

"ଦିଆ ନ ଯିବ ବା କେମିତି ? ହସ୍ତିନାପୁରର ରାଜସିଂହାସନ ନିକଟରୁ ଏଇ ସାମାନ୍ୟ ମୌଳିକ ନ୍ୟାୟ ନ ମିଳିବ ବା କେମିତି ? ଯାହା ସେମାନଙ୍କ ଜନ୍ମଗତ ଅଧିକାର, ସେଥିରୁ ସେମାନଙ୍କୁ ବଞ୍ଚିତ କରାଯିବ ବା କିପରି ? ମହାରାଜ ଓ ସାରା ରାଜସଭା ଏ କଥା ଧ୍ୟାନର ସହିତ ବିଚାର କରି ଦେଖନ୍ତୁ ।" କୃଷ୍ଣଙ୍କ କଥାରେ ଦୃଢ଼ତା ।

ସେ ତଥାପି ବୁଝାଇ କହିଚାଲିଥିଲେ । କ୍ରୋଧ କିମ୍ବା ବିରକ୍ତିର ସାମାନ୍ୟତମ ସୂଚନା ନ ଥିଲା ମୁଖମଣ୍ଡଳରେ । ଆଚାର୍ଯ୍ୟ ଅବୁଝା ଶିଷ୍ୟମାନଙ୍କୁ ବାରମ୍ବାର ବୁଝାଇ କହୁଥାନ୍ତି ଯେମିତି । ଅଥଚ ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଆଦି ସଭାସଦମାନଙ୍କ ମଧ୍ୟରୁ କେହି

ଖୋଲୁ ନ ଥାନ୍ତି ତୁଣ୍ଡ । ପଥର ପ୍ରତିମାମାନଙ୍କ ଭଳି ବସିଥାନ୍ତି । ମହାରାଜଙ୍କ ଅବସ୍ଥା ମଧ୍ୟ ତଦ୍ରୂପ । ସମସ୍ତଙ୍କୁ କ'ଣ ଗ୍ରାସ କରିଦେଇଥାଏ ଯେମିତି ।

ଦୁର୍ଯ୍ୟୋଧନ ଶେଷ କଥା ଶୁଣାଇବାକୁ ଯାଇ କହିଲେ, ''ବିନା ଯୁଦ୍ଧରେ ପାଣ୍ଡବମାନଙ୍କୁ ସୂଚ୍ୟଗ୍ର ପରିମିତ ଭୂମି ବି ଦିଆଯାଇ ପାରିବ ନାହିଁ । ନାହିଁ । ନାହିଁ । ନାହିଁ । ତ୍ରିବାର ନାହିଁ । ଏହା ଖାଲି ମୋ' ମତ ନୁହେଁ । ସାରା ରାଜସଭାର ବି ମତ । ଆଉ ମହାରାଜଙ୍କ ନିଷ୍ପତ୍ତି ମଧ୍ୟ ।'' ସ୍ୱରରେ ତାଙ୍କର ଦୃଢ଼ତା ।

କୃଷ୍ଣଙ୍କ ଧୈର୍ଯ୍ୟ ତଥାପି ତ୍ରୁଟି ନ ଥାଏ । ଅଟଳ ମହାମେରୁ ସେ । ମହାରାଜଙ୍କୁ ଲକ୍ଷ୍ୟ କରି କହିଲେ, ''ହେ ମହାରାଜ ! ରାଜା ଦ୍ରୁପଦଙ୍କ ପୁରୋହିତଙ୍କୁ ଠିକ୍ ଏହି କଥା କୁହାଯାଇଥିଲା । ତେଣୁ ନିରାଶ ହୋଇ ଫେରିଯାଇଥିଲେ ସେ । ତାହା ସତ୍ତ୍ୱେ ପାଣ୍ଡବମାନେ ପୁଣିଥରେ ମତେ ପଠାଇଲେ କାହିଁକି ? କାରଣ ସେମାନେ ଶାନ୍ତି ଚାହାନ୍ତି । ମିତ୍ରତା ଚାହାନ୍ତି । ଚାହାନ୍ତି ସୌହାର୍ଦ୍ଦ୍ୟ । ଯୁଦ୍ଧ ଚାହାନ୍ତି ନାହିଁ । ବାଧ୍ୟ ହେଲେ ଯାଇ ଯୁଦ୍ଧ କରିବେ । ମୁଁ ଯେଉଁ ନ୍ୟୂନତମ ଦାବି କହୁଛି ତାହା କ'ଣ ଅସ୍ୱୀକାର କରୁଛନ୍ତି ଆପଣ ? କହନ୍ତୁ, ଆପଣଙ୍କ ଉପରେ ସବୁ କିଛି ନିର୍ଭରଶୀଳ ।''

''କହନ୍ତୁ ମହାରାଜ ।'' ବେଦନାକ୍ତ କଣ୍ଠରେ କହିଲେ ପିତାମହ । କଥାର ସମାଧାନ ପାଇଁ ତାଙ୍କର ଉଦଗ୍ର ଆଗ୍ରହ ।

''ଜଣେ ସାମାନ୍ୟ ଦୂତ ହୋଇ କୁରୁସିଂହାସନକୁ ଏଭଳି ଭୟ ଦେଖାଇବା ଉଚିତ ନୁହେଁ । ପାଣ୍ଡବମାନେ ଯୁଦ୍ଧ କରିବେ ତ କରନ୍ତୁ । କେହି ଡରୁ ନାହାନ୍ତି । ଯଦି ଶକ୍ତି ଅଛି ତେବେ ନିଜ ଅଧିକାରକୁ କରନ୍ତୁ ସାବ୍ୟସ୍ତ ।'' ସିଂହ ଭଳି ଗର୍ଜିଉଠିଲେ ଦୁର୍ଯ୍ୟୋଧନ । ରକ୍ତାଭ ଆଖି ଦୁଇଟି କୁରାଳଚକ୍ର ଭଳି ଘୂର୍ଣ୍ଣାୟମାନ ।

''ଯୁଦ୍ଧ ତ କରିବେ ନିଶ୍ଚୟ । ବାଧ୍ୟ ହୋଇ କରିବେ । କିନ୍ତୁ ଏ ଯୁଦ୍ଧ ହେବ ନାହିଁ କୌରବ-ପାଣ୍ଡବଙ୍କ ମଧ୍ୟରେ । ଏହା ବରଂ ହେବ ଅନ୍ୟାୟ ବିରୋଧରେ ନ୍ୟାୟର ଯୁଦ୍ଧ । ଅଧର୍ମ ବିରୋଧରେ ଧର୍ମର ଯୁଦ୍ଧ । ଅସତ୍ୟ ବିରୋଧରେ ସତ୍ୟର ଯୁଦ୍ଧ । କୌଣସି ପକ୍ଷ ଜିଣିବେ ନାହିଁ କିମ୍ବା ହାରିବେ ନାହିଁ । ହାରିବ ଅନ୍ୟାୟ, ଅଧର୍ମ ଓ ଅସତ୍ୟ । ଆଉ ଜିଣିବ ନ୍ୟାୟ, ଧର୍ମ ଓ ସତ୍ୟ । ଏହାର ପରିଣତି ପାଇଁ ଆଉ କେହି ଦାୟୀ ନୁହନ୍ତି । କେବଳ କୁରୁସିଂହାସନ ହିଁ ଦାୟୀ ।'' ନିର୍ଭୀକ ଭାବରେ କହିଲେ କୃଷ୍ଣ । ସତ୍ୟର ପ୍ରମୂର୍ତ୍ତ ବିଗ୍ରହ କେବଳ ସତ୍ୟ ହିଁ କହିଲେ । ନିରାଟ ସତ୍ୟ ।

''କୁରୁସିଂହାସନ ପ୍ରତି ଆକ୍ଷେପ କରି ତୁମେ ଏଭଳି କଥା କହିବାକୁ ସାହସ କିପରି କରିପାରିଲ ? ଦୂତ ଅବଧ୍ୟ । ତେଣୁ ତୁମକୁ ପ୍ରାଣଦଣ୍ଡ ଦେବାକୁ ଆଦେଶ ଦେଉ ନାହିଁ ।'' ପୁଣି ଗର୍ଜିଉଠିଲେ ଦୁର୍ଯ୍ୟୋଧନ । ତାହା ପରେ ସଶସ୍ତ୍ର ପ୍ରହରୀମାନଙ୍କ ପ୍ରତି ଆଦେଶ ଦେଲେ, ''ବନ୍ଦୀ କର ଏ ଭଣ୍ଡ ଗୋପାଳକୁ । କପଟୀ ସାଜି କହୁଛି କ'ଣ ନା ଭଗବାନ୍‌ଙ୍କ ଅବତାର ! ଏ ଐନ୍ଦ୍ରଜାଲିକ ତାନ୍ତ୍ରିକ ଛଡ଼ା ଆଉ କେହି ନୁହେଁ । ହୁଁ !!''

ବିଦ୍ୟୁତ୍ ଗତିରେ ଆସନରୁ ଉଠିପଡ଼ିଲେ ପିତାମହ । କହିଲେ, ''ରସନା ସଂଯତ କର ପୁତ୍ର ଦୁର୍ଯ୍ୟୋଧନ । ଜାଣିପାରୁଛ କାହାଙ୍କୁ କ'ଣ କହୁଛ ?''

"ଆପଣଙ୍କୁ ତ ନିଶ୍ଚୟ ବାଧୁଥିବ ପିତାମହ । କାରଣ ଆପଣ ପାଣ୍ଡବମାନଙ୍କ ହିତୈଷୀ ।" ଦୁର୍ଯ୍ୟୋଧନଙ୍କ ଆକ୍ଷେପୋକ୍ତି । ପିତାମହଙ୍କ ପ୍ରତି ବାଧକ ଆଘାତ ।

ପ୍ରତିବାଦରେ ସଭାକକ୍ଷ ତ୍ୟାଗ କଲେ କ୍ରୁଦ୍ଧ ପିତାମହ ।

ଶତସିଂହର ପରାକ୍ରମ ନେଇ ଗର୍ଜିଉଠିଲେ କୃଷ୍ଣ, "ଦୁର୍ଯ୍ୟୋଧନ !" ହଠାତ୍ ଏକାଧାରରେ ସହସ୍ର ବଜ୍ର ପଡ଼ିଲା ଯେମିତି । ସମସ୍ତେ ଚକିତ-ସ୍ତବ୍ଧ । ତାଙ୍କ ଆଖି ଦୁଇଟି ଜଳୁଛି ପ୍ରଳୟର ନିଆଁ ଭଳି । ଧୀରେ ଧୀରେ ଫୁଲିଉଠୁଛି ସକଳ ଅବୟବ । କ୍ଷଣକ ମଧ୍ୟରେ ତାଙ୍କ ମୁକୁଟ ଯାଇ ସ୍ପର୍ଶ କଲା କକ୍ଷର ଛାତକୁ । ପରକ୍ଷଣରେ ପୁଣି ଅସାଧାରଣ ଦିବ୍ୟ ମୂର୍ତ୍ତି । ଓଷ୍ଠାଧରରେ ଦର ଦର ହସର ଝଲକ । କ୍ଷଣକୁ କ୍ଷଣ ରୂପର ପରିବର୍ତ୍ତନରେ ସମସ୍ତେ ଭୀତତ୍ରସ୍ତ । କାହାରି ସାହସ ନାହିଁ ତାଙ୍କୁ ବନ୍ଦୀ କରିନେବା ପାଇଁ । ଧୀରେ ଧୀରେ ଅପସରିଯାଉଛନ୍ତି ସେ ସଭାକକ୍ଷରୁ । ମହାରାଜ କେବଳ ନୀରବ ଦର୍ଶକ । ଯେତେ ଯେତେ ଘଟଣା ଘଟୁଛି ତାହାର ସମ୍ମୋହିତ ସାକ୍ଷୀ ମାତ୍ର । କିଛି କହିବାର କ୍ଷମତା ନାହିଁ । ନା ପ୍ରତିବାଦରେ ଅଥବା ସମର୍ଥନରେ ।

ମହାରାଜ ତାଙ୍କୁ ହାତଯୋଡ଼ି ପ୍ରାର୍ଥନା କଲେ, "ହେ ବାସୁଦେବ ! ଦୁର୍ଯ୍ୟୋଧନ ଅବୋଧ । ତାଙ୍କୁ କ୍ଷମା କରନ୍ତୁ ଦୟା କରି ।"

"ମୁଁ କିଏ କ୍ଷମା କରିବାକୁ ? ଧର୍ମ, ନ୍ୟାୟ ଓ ସତ୍ୟକୁ ଯେଉଁ ପଳେ ପଳେ ହତ୍ୟା କରି ଚାଲିଛନ୍ତି ସେ ସେମାନେ କ'ଣ ତାଙ୍କୁ କ୍ଷମା ଦେବେ ? ଦ୍ରୌପଦୀଙ୍କୁ ବିବସ୍ତ୍ରା କଲାବେଳେ ତାଙ୍କ ଆଖିରୁ ଝରିପଡ଼ିଥିବା ଅଶ୍ରୁବିନ୍ଦୁଗୁଡ଼ିକ କ'ଣ କ୍ଷମା ଦେବେ ? ତାଙ୍କ ରୁକ୍ଷ ମୁକୁଳା କେଶ ଯେଉଁ ଦୀର୍ଘ ସମୟ ଧରି ଫୁରୁ ଫୁରୁ ହୋଇ ଉଡୁଛି ପବନରେ, ସେ କ'ଣ କ୍ଷମା ଦେବ ? ଆଉ ଭବିଷ୍ୟତର ଇତିହାସ କ'ଣ କ୍ଷମା ଦେବ ? ହସ୍ତିନାପୁରର ଇତିହାସ ପୃଷ୍ଠାରେ ଯେଉଁ କଳଙ୍କିତ ଅଧ୍ୟାୟମାନ ଗୋଟିକ ପରେ ଗୋଟିଏ କରି ଲେଖିଚାଲିଛନ୍ତି ସେ, ସେଥିପାଇଁ କ'ଣ ତାଙ୍କ ସ୍ୱର୍ଗବାସୀ ପୂର୍ବଜମାନେ କ୍ଷମା ଦେବେ ତାଙ୍କୁ ? ନା, କଦାପି ନୁହେଁ । ଏମାନେ କେହି କ୍ଷମାଦେବେ ନାହିଁ । ନିଜ କୃତକର୍ମର ଫଳ ତାଙ୍କୁ ଭୋଗିବାକୁ ହିଁ ପଡ଼ିବ ଯେତେ ତିକ୍ତ ଅସ୍ୱାଦ୍ୟ ହେଉ ପଛକେ ।" ଦ୍ୱିଧାହୀନ ଓ ସ୍ପଷ୍ଟ ତାଙ୍କ ବକ୍ତବ୍ୟ ।

ମହାରାଜ ତାଙ୍କୁ ହସ୍ତିନାପୁରରେ ଦିବାଭୋଜନ ଲାଗି କଲେ ନିମନ୍ତ୍ରଣ । ତାହାକୁ ସେ ପ୍ରତ୍ୟାଖ୍ୟାନ କରି କହିଲେ, "ଅବଶ୍ୟ ଆଜି ହସ୍ତିନାପୁରରେ ଭୋଜନ କରିବି । କିନ୍ତୁ ଅନ୍ୟାୟର ପରିପୋଷକ ଏ ରାଜଭବନରେ ନୁହେଁ । ବରଂ ବିଦୁରଙ୍କର ପର୍ଣ୍ଣ କୁଟୀରରେ ।" ଏହା କହି ସେ ଆଗେଇଲେ ନଗରର ମହାଦ୍ୱାର ଅଭିମୁଖରେ । ମହାରାଜ ଆଦି ସମସ୍ତେ ଭୟଭୀତ । ମହାରାଜ ସ୍ୱୟଂ କେତେଜଣ ପ୍ରମୁଖ ସଭାସଦଙ୍କୁ ଧରି ତାଙ୍କୁ ବିଦାୟ ଦେଲେ ମହାଦ୍ୱାରରେ । ମୁଁ ମଧ୍ୟ ଯାଇଥିଲି ସାଥିରେ ।

ବାରମ୍ବାର ମୋ' ମନରେ ଅନୁଚିନ୍ତା – ଏ କୃଷ୍ଣ କିଏ ? କ'ଣ ଯଦୁକୁଳର ଅଧିପତି ? ଅଥବା ଗୋପପୁରରେ ଲାଳିତ-ପାଳିତ ଜଣେ ଗୋପାଳ ? କିମ୍ବା ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା ? ନା ଦୁର୍ଯ୍ୟୋଧନଙ୍କ କହିଲା ଭଳି ଜଣେ କପଟୀ ଐନ୍ଦ୍ରଜାଲିକ ? ତନ୍ତ୍ରଶାସ୍ତ୍ରରେ ଧୁରନ୍ଧର ବ୍ୟକ୍ତି ? ଏଇ ଚିନ୍ତାରେ ଘୂରି ଯାଉଥିଲା ମୋ' ମୁଣ୍ଡ ।

କିନ୍ତୁ ପରକ୍ଷଣରେ ସଦ୍‌ବୁଦ୍ଧି ମତେ କହୁଥିଲା ଯଥାର୍ଥ କଥା । ବିବେକ ବାରମ୍ବାର କଷାଘାତ କରୁଥିଲା । ନା, ଏ ସବୁ କିଛି ନୁହନ୍ତି ସେ । ସେ ଅସାଧାରଣ । ସେ ଈଶ୍ୱରୀୟ ଅଂଶରେ ଜାତ । ସାଧାରଣ ମାନବ ଜନ୍ମ ପାଇ ମଧ ମାନବତ୍ୱର ଊର୍ଦ୍ଧ୍ୱରେ । ମହାମାନବ ସେ । ମାନବଜାତିର ଓ ମାନବଧର୍ମର ଉଦ୍ଧାରପାଇଁ ତାଙ୍କ ଜନ୍ମ ।

''କର୍ଣ୍ଣ ! ଆସ ।'' ମହାଦ୍ୱାର ନିକଟରେ ମତେ ଲକ୍ଷ୍ୟ କରି ଡାକିଲେ ସେ । ମିଠା-ମିଠା ସ୍ୱର । ଖୁବ୍ ଆନ୍ତରିକ ଡାକ । ଆଖିକଣରେ ସମ୍ମୋହକ ହସ । ସମସ୍ତ ବ୍ୟକ୍ତିତ୍ୱ ମୋର ହଠାତ୍ ମିଳାଇଗଲା ଯେମିତି । ତାଙ୍କ ପାଖକୁ ଗଲି ସମ୍ମୋହିତ ମୃଗଟି ଭଳି ।

''ମୋ' ରଥରେ ବସ । ମୁଁ ତୁମକୁ ନେଇ ତୁମ ଭବନରେ ଛାଡ଼ିଦେଇଆସିବି । ସେଠାରୁ ଯିବି ବିଦୁରଭବନକୁ । ତୁମ ନିଜ ରଥଟିକୁ ଫେରାଇଦିଅ ।'' ଏହା କହି ନିଜ ରଥଟିକୁ ଦେଖାଇଦେଲେ ସେ । ମୁଁ ସମ୍ମୋହିତ ଅବସ୍ଥାରେ ଥାଇ ସେଥିରେ ଆଗ ବସିଲି । ସେ ତାହା ପରେ ବସି ଆଦେଶ ଦେଲେ, ''ହେ ଦାରୁକ ! ରଥ ଚଳାଅ ଗଙ୍ଗାତୀରକୁ ।''

''ଯେ ଆଜ୍ଞା ।'' ସାରଥି ଆଦେଶ ମାନି ରଥ ଚଳାଇଲେ ।

ରଥ ଧୀରେ ଧୀରେ ଆଗେଇଚାଲିଲା ଗଙ୍ଗାତୀରକୁ । କିଛି ଦୂର ଯିବା ପରେ ଧରିଲା ଦ୍ରୁତଗତି । ମୋ' ମନର ଭାବନା କିନ୍ତୁ ତାହାଠାରୁ ଆହୁରି ଦ୍ରୁତତର । କୃଷ୍ଣ କାହିଁକି ଡାକିଛନ୍ତି ? କ'ଣ ଉଦ୍ଦେଶ୍ୟ ତାଙ୍କର ?

## ଚଉସ୍ତରି

''ଏଇଠି ରଥ ରଖ ଦାରୁକ ।'' ଗଙ୍ଗାତୀରରେ ରଥ ଚାଲୁଥିବା ଅବସ୍ଥାରେ ଗୋଟିଏ ନିର୍ଜନ ପ୍ରାନ୍ତରଭୂମି ଦେଖି ଯଦୁପତି କହିଲେ ସାରଥିଙ୍କୁ ।

''ଯେ ଆଜ୍ଞା ।'' ଦାରୁକଙ୍କ ଉତ୍ତର । ରଥ ରଖିଲେ ସେ । ଆମେ ଦୁହେଁ ରଥରୁ ଓହ୍ଲାଇଲୁ । କୃଷ୍ଣ ମୋ' ହାତରେ ହାତ ରଖି କହିଲେ, ''ଚାଲ କର୍ଣ୍ଣ, ଆଉ ଟିକିଏ ଆଗକୁ ।'' ତାଙ୍କ ହାତର ପରଶରେ କି ଏକ ବିଜୁଳିର ଚମକ ଖେଳିଗଲା ମୋ' ସାରା ତନୁମନ ଧରି । ରୋମାଞ୍ଚିତ ହୋଇଉଠିଲି ସେଇ ଯାଦୁକରୀ ପରଶ ଟିକକରେ !

ଆମେ ଦୁହେଁ ଆଗେଇଲୁ । ଏଣୁତେଣୁ ସୁଖଦୁଃଖର ଆଳାପ ମଧ୍ୟରେ କିଛି ସମୟ ଅତିକ୍ରାନ୍ତ । ଅପେକ୍ଷାକୃତ ନିର୍ଜନତର ସ୍ଥାନଟିଏ । ଏକ ବିରାଟ ଅଶ୍ୱତ୍ଥବୃକ୍ଷର ଛାୟାଶୀତଳ ଭୂମି । ଗୋଟିଏ ଉପଳାସନ ବାଛିବସିଲେ ସେ । ଆଉ ମୁଁ ବି ବସିଲି ଅନ୍ୟ ଏକ ଉପଳାସନରେ ତାଙ୍କ ପାଖେ ପାଖେ । କଥା ଆରମ୍ଭ କରିବା ପୂର୍ବରୁ ମୋ' କାନ୍ଧ ଉପରେ ହାତ ରଖିଲେ ସେ । ତାହା ପରେ କହିଲେ, ''ହେ କର୍ଣ୍ଣ ! ଏତେ ଲୋକଙ୍କ ମଧ୍ୟରୁ ତୁମକୁ ବାଛି ଆଜି ସାଥିରେ ନେଇଆସିଛି କେଉଁଥିପାଇଁ ଜାଣ ?''

''କେଉଁଥିପାଇଁ ବାସୁଦେବ ?'' ମୋର ଉଦଗ୍ର ପ୍ରତିପ୍ରଶ୍ନ ।

''ତୁମ ଆଗରେ ଏକ ଦାରୁଣ ସତ୍ୟ ପ୍ରକାଶ କରିବାପାଇଁ । ହୁଏତ ଖୁବ୍ ଆଘାତ କରିପାରେ ତୁମକୁ । ସହିପାରିବ ତ ?''

''କାହିଁକି ସହିପାରିବି ନାହିଁ ? ସାରା ଜୀବନ ଧରି ଏତେ କଷ୍ଟ, ଏତେ ଯାତନା, ଏତେ ଅପମାନ ସହିଲି । ଏତେ ଅବହେଳାର ଶିକାର ହେଲି । ସେ ସବୁ ସହି ସହି ହୃଦୟ ମୋର ପାଷାଣଠାରୁ ଆହୁରି ଅଧିକ ଟାଣ ହୋଇଯାଇଛି ବାସୁଦେବ । ନୀଚକୁଳରେ ଜନ୍ମର ଅଭିଶାପଠାରୁ ଆରମ୍ଭ କରି ଗୁରୁ ବ୍ରାହ୍ମଣଙ୍କ ଅଭିଶାପର ନିଆଁରେ ଜଳି ଜଳି ଆସିଛି ଏଇ କର୍ଣ୍ଣ ବୋଲି ମଣିଷଟି । ଜୀବନର ସକଳ କୋମଳ ପ୍ରବୃତ୍ତି ତା'ର ମରିଯାଇଛି । ଆଉ ଅଧିକ ଦାରୁଣ ସମ୍ବାଦ ତା'ପାଇଁ କ'ଣ ହୋଇପାରେ ଯେ ସେ ସହିପାରିବ ନାହିଁ ? କହନ୍ତୁ ଆପଣ କ'ଣ କହିବାପାଇଁ ଚାହାନ୍ତି ?'' ପ୍ରଗଲ୍‌ଭତା ପ୍ରକାଶ କରି କହିଲି । ଭାଷାରେ ମୋର ଅଭିମାନ ଓ ଅନ୍ତର୍ବେଦନାର ଗୁଞ୍ଜରଣ !

''ଦେଖ ଏଇ ଗଙ୍ଗାଜଳରେ ଝଲମଲ ସୂର୍ଯ୍ୟଦେବଙ୍କ ତେଜୋମୟ ପ୍ରତିବିମ୍ବକୁ । ଏଇ ପ୍ରତିବିମ୍ବ ଭଳି ତୁମେ ବି ସୂର୍ଯ୍ୟଦେବଙ୍କ ଏକ ପ୍ରତିବିମ୍ବ । ତୁମେ ତାଙ୍କରି ପୁତ୍ର । ତୁମେ ଦେବପୁତ୍ର କର୍ଣ୍ଣ, ଦେବପୁତ୍ର ।''

''ଏ କି ପରିହାସ କରୁଛନ୍ତି ମତେ ? ସାରା ଜଗତ ତ ଜୀବନ ଭରି କରିଆସିଲା ପରିହାସ ! ଶେଷକୁ ଆପଣଙ୍କ ଭଳି ମହାପୁରୁଷ ବି ଥିଲେ ପରିହାସ କରିବାକୁ ! ବଡ଼ ଦୁଃଖୀ ମୁଁ ! ବଡ଼ ଭାଗ୍ୟହୀନ ।'' ଦୁଃଖ ପ୍ରକାଶ କରି କହିଲି । ଛାତିରେ ଭରପୂର ଅଭିମାନଭରା ଅନ୍ତର୍ବେଦନା ।

''ତୁମେ ଏ କ'ଣ କହୁଛ କର୍ଣ୍ଣ ? ତୁମେ ଦୁଃଖୀ ନୁହଁ । ନୁହଁ ବି ଭାଗ୍ୟହୀନ । ମହାସୁଖୀ ତୁମେ । ମହାଭାଗ୍ୟ ନେଇ ତୁମ ଜନ୍ମ । ଅଶେଷ ଯଶଃ ଓ କୀର୍ତ୍ତିର ଅଧିକାରୀ । ତୁମ ମାତା ସ୍ୱୟଂ କୁନ୍ତୀଦେବୀ । ମୋ' ପିଉସୀ । ଜନ୍ମ ତୁମର ସୂର୍ଯ୍ୟଦେବଙ୍କ ଔରସରୁ । ସୂତ ଅଧିରଥ ତୁମର ପିତା ନୁହନ୍ତି । ତାଙ୍କ ପତ୍ନୀ ରାଧା ବି ନୁହନ୍ତି ମାତା । ସେମାନେ ତୁମକୁ ପାଳିଛନ୍ତି ମାତ୍ର । ମତେ ବିଶ୍ୱାସ କର । ଏହା ନିରାଟ ସତ୍ୟ ।''

ହଠାତ୍ କି ଏକ ଆବେଗାତ୍ମକ ଚମକରେ ଉଠିଆସିଲି ଉପଳାସନରୁ । କୃଷ୍ଣଙ୍କ ପାଦ ଦୁଇଟିକୁ ଖୁବ୍ ଜୋର୍‌ରେ ଧରି କହିଲି ଆକୁଳ କଣ୍ଠରେ, ''ନାଇଁ, ବାସୁଦେବ, ନାଇଁ । କହନ୍ତୁ ଏ ସବୁ ମିଥ୍ୟା ବୋଲି । ମୋର ପିତା ଅଧିରଥ । ମାତା ରାଧା । ଏହା ଛଡ଼ା ଅନ୍ୟ କୌଣସି ସତ୍ୟକୁ ସହିବା ଅସମ୍ଭବ ମୋ' ପକ୍ଷରେ । ପରିହାସରେ ଏତେ ବଡ଼ ଆଘାତ ଦିଅନ୍ତୁ ନାହିଁ ମତେ । ଦୟାକରି ଦିଅନ୍ତୁ ନାହିଁ.... ଫେରାଇ ନିଅନ୍ତୁ ଆପଣଙ୍କ କଥା ।'' ଲୁହର ଧାର ବୁହାଇ ପଖାଳି ଦେଲି ତାଙ୍କ ଶ୍ରୀଚରଣ ଦିଓଟିକୁ । ସେ ମତେ ଆଦରରେ ଦୁଇ ବାହୁରେ ଟେକିନେଲେ ଓ ନିଜ ଉତ୍ତରୀୟରେ ମୋ' ଲୁହ ପୋଛିଦେଇ କହିଲେ ''ଯାହା ନିରାଟ ସତ୍ୟ ତାହାକୁ ସହିବାକୁ ହେବ ହିଁ ହେବ । କ୍ଷୁରଧାର ଭଳି ତୀକ୍ଷ୍ଣ ହେଲେ ବି ସହିବାକୁ ହେବ । ଯେତେ କଷ୍ଟ ହେଲେ ବି ତେଣୁ ତୁମେ ଏଇ ସତ୍ୟକୁ ଗ୍ରହଣ କରିନିଅ ଧୀରେ ଧୀରେ । ତୁମେ ରାଧେୟ ନୁହଁ, କୌନ୍ତେୟ । ପ୍ରଥମ ପାଣ୍ଡବ । ପୂତ ପବିତ୍ର କୁରୁବଂଶରେ ତୁମ ଜନ୍ମ । ସୂତକୁଳରେ ନୁହେଁ । ମୁଁ ତୁମର ମାମୁ ପୁଅ ଭାଇ । ଆମେ ଦୁହେଁ ଭାଇ ଭାଇ ।'' ଏହା କହି ଅତି ନିବିଡ଼ ଭାବରେ ମତେ ଆଲିଙ୍ଗନ କଲେ ସେ ଏବଂ ପାଖରେ ନେଇ ପୁଣି ବସାଇଲେ ଉପଳାସନରେ । ଧୀରେ ଧୀରେ ମୋର ବିଶ୍ୱାସ ଆସିଲା ତାଙ୍କ କଥା ପ୍ରତି ।

ଏକ ମୁଗ୍ଧ ପୁଲକରେ ସାରା ତନୁମନ ମୋର ଏବେ ରୋମାଞ୍ଚିତ । ବିନ୍ଦୁ ବିନ୍ଦୁ ଭରି ରକ୍ତରେ ସଂବେଗର ଅଧୀର ପ୍ରବାହ ! ତାହାର ପ୍ରଖରତାରେ ଧମନୀର ଆବରଣ ଫାଟି ପଡ଼ିବ ଯେମିତି । ମୁଁ ସୂତପୁତ୍ର ନୁହେଁ । ମୋର ଜନ୍ମ ନୁହେଁ ନୀଚ କୁଳରେ । ମୁଁ ଦେବପୁତ୍ର । ସୂର୍ଯ୍ୟଦେବଙ୍କ ପୁତ୍ର । ମୁଁ କ୍ଷତ୍ରିୟବର ପାଣ୍ଡୁଙ୍କ ପୁତ୍ର । ବୀର ପଞ୍ଚପାଣ୍ଡବଙ୍କ ଅଗ୍ରଜ । ମହାରାଣୀ କୁନ୍ତୀଦେବୀ ମୋର ମାତା । ଆଃ ! କି ଆନନ୍ଦ ! ଏଇ ପରିଚୟଟି କିଏ ମତେ ଆଗରୁ ଦେଇଥାନ୍ତା ହେଲେ ! ଇଚ୍ଛା ହେଉଥିଲା, ଉନ୍ମତ୍ତ ଭାବେ ନାଚି ନାଚି ଧାଇଁଯାଆନ୍ତି ଗଙ୍ଗାତୀରରୁ ହସ୍ତିନାପୁରକୁ ଏବଂ କହନ୍ତି ଛାତି ଫୁଲାଇ ''ହେ ପିତାମହ ଭୀଷ୍ମ ! ମୁଁ ଆପଣଙ୍କ ପ୍ରୌତ୍ର, ପ୍ରଥମ ପାଣ୍ଡବ ।'' ଆଉ କହନ୍ତି ବି ଆଚାର୍ଯ୍ୟ ଦ୍ରୋଣ ଓ କୃପାଚାର୍ଯ୍ୟଙ୍କୁ, ''ହେ ଆଚାର୍ଯ୍ୟ ! ମୁଁ ରାଧେୟ ନୁହେଁ । ନୁହେଁ ସୂତ ଅଧିରଥଙ୍କ ପୁତ୍ର । ମୁଁ କୌନ୍ତେୟ । ଖାଲି ତ ପାଣ୍ଡବମାନଙ୍କର ନୁହେଁ, ପାଣ୍ଡବ-କୌରବ ସମସ୍ତଙ୍କର ଜ୍ୟେଷ୍ଠ ।'' ଖାଲି ସେତିକି ନୁହେଁ, ନଗରର ଦ୍ୱାରେ ଦ୍ୱାରେ ବୁଲି ରାଜଭବନର ପ୍ରତିଟି କକ୍ଷରେ ବୁଲି କହିଦିଅନ୍ତି ଏଇ କଥା । ଖୋଲିଦିଅନ୍ତି ମୋ' ଜନ୍ମକୁ ନେଇ ପଡ଼ିଥିବା ରହସ୍ୟର ଆବରଣଟିକୁ ।

ପରମୁହୂର୍ତ୍ତରେ ବହୁ କଷ୍ଟରେ ସଂଯତ କଲି ନିଜକୁ । ଚାପିରଖିଲି ହୃଦୟର ଆବେଗକୁ । ପଚାରିଲି, ''ଯଦି ଏହା ସତ୍ୟ, ତେବେ କେଉଁ କାରଣରୁ ମାଆ ମତେ ଦୂରେଇ ଦେଲେ ? କେଉଁ ମାଆ କ'ଣ ଦୂରେଇ ଦେଇପାରନ୍ତି ନିଜ ଜନ୍ମିତ ସନ୍ତାନକୁ ? ପୁଣି ପାଣ୍ଡବମାନଙ୍କ ଅଗ୍ରଜ ହୋଇ ସେମାନଙ୍କଠାରୁ ଦୂରରେ ଅଛି କେମିତି ?''

''ଭାଇ କର୍ଣ୍ଣ ! କେବଳ ବିବଶତା । ଲୋକଲଜ୍ଜା ନେଇ ବିବଶତା । ତୁମେ କୁନ୍ତୀଦେବୀଙ୍କ କାନୀନ ପୁତ୍ର । କୁମାରୀ ଅବସ୍ଥାରେ ସୂର୍ଯ୍ୟଦେବଙ୍କ ଔରସରୁ ତୁମର ଜନ୍ମ । ଏଇ ସତ୍ୟଟିକୁ ଗୋପନ ରଖିବାପାଇଁ ସେ ତ୍ୟାଗ କରିଛନ୍ତି ତୁମକୁ । ଏବେ ମଧ ସେ ଜଳି ଜଳି ମରୁଛନ୍ତି ଅନ୍ତର୍ବେଦନାରେ ।''

''ମତେ ସବୁ କଥା ପରିଷ୍କାର କରି କହନ୍ତୁ ବାସୁଦେବ । ମାତାଙ୍କ ବ୍ୟକ୍ତିଗତ ଗୋପନୀୟତା ସଂପର୍କରେ ପ୍ରଶ୍ନ କରିବାର ଅଧିକାର ଅବଶ୍ୟ ମୋର ନାହିଁ । କିନ୍ତୁ ପିତାଙ୍କ ବିଷୟରେ ପ୍ରଶ୍ନ ପଚାରିବାର ଅଧିକାର ତ ଅଛି । ଯଦି ଆପତ୍ତି ନ ଥାଏ, ତେବେ ତାହା କହି ମୋ' ସନ୍ଦେହ ମୋଚନ କରନ୍ତୁ ।'' କଣ୍ଠରେ ମୋର ଅନୁନୟଭରା ବାଣୀ । ରହସ୍ୟ ଜାଲର ପ୍ରତିଟି ଗ୍ରନ୍ଥିକୁ ଛିନ୍ନ-ଭିନ୍ନ କରିବାକୁ ଚାହୁଁଥିଲି ।

''ନାଇଁ ଆପତ୍ତି ରହିବ କାହିଁକି ? ସବୁ କହୁଛି । ମନଧ୍ୟାନ ଦେଇ ଶୁଣ । ବଡ଼ ଦୀର୍ଘ ଓ ମର୍ମନ୍ତୁଦ ଏ କାହାଣୀ ।''

ତାହା ପରେ ସେ ଗୋଟି ଗୋଟି କରି ସମସ୍ତ ଘଟଣା କହିବାକୁ ଆରମ୍ଭ କଲେ ।

କୁନ୍ତୀଦେବୀଙ୍କ ଜନ୍ମ ପ୍ରକୃତରେ ମଥୁରାର ବୃଷ୍ଣି ବଂଶରେ । ଜନକ ଶୂରସେନ । ବାସୁଦେବଙ୍କ ପିତାମହ । ପିଲାଦିନର ନାଁ ପୃଥା । କିନ୍ତୁ ଶୈଶବ ଅବସ୍ଥାରୁ ଲାଳିତ ପାଳିତ ହୁଅନ୍ତି ପାଳକ ପିତା ଭୋଜପୁରର ଅଧିପତି କୁନ୍ତିଭୋଜଙ୍କ ରାଜଭବନରେ । ଭୋଜପୁର

ଆସିବାରେ ନୂତନ ନାମ ଧାରଣ କରନ୍ତି କୁନ୍ତୀ । ସେତେବେଳେ ଥାଆନ୍ତି କୁମାରୀ । ସେହି ଅବସ୍ଥାରେ ରାଜଭବନକୁ ଅତିଥିସ୍ୱରୂପ ଆସିଥିବା ଦୁର୍ବାସା ଋଷିଙ୍କର ସେବା କରି ତାଙ୍କଠାରୁ ପାଆନ୍ତି ଏକ ଦିବ୍ୟ ମନ୍ତ୍ର– ଯେଉଁ ଦେବତାଙ୍କୁ ଆବାହନ କଲେ ତାଙ୍କଠାରୁ ହେବ ପୁତ୍ରପ୍ରାପ୍ତି । ଜଣେ କୁମାରୀର କୌତୂହଳୀ ମନ ନେଇ ଦିନେ ସେଇ ମନ୍ତ୍ରଟିକୁ ଜପି ଆବାହନ କରନ୍ତି ସୂର୍ଯ୍ୟଦେବଙ୍କୁ । ସୂର୍ଯ୍ୟ ମନ୍ତ୍ରଦ୍ୱାରା ବଶୀଭୂତ ହୋଇ ଆସନ୍ତି ତାଙ୍କ ପାଖକୁ । ତାଙ୍କ ଔରସରୁ ମୋର ହୁଏ ଜନ୍ମ । ଭୋଜପୁର ରାଜକନ୍ୟାଙ୍କ ପାଇଁ ଏହା ଥାଏ ଘୋର କଳଙ୍କର ଦାଗ । ସମାଜର ତାଡ଼ନାକୁ ଭୟ କରି ଏଇ କଳଙ୍କକୁ ଚାହାନ୍ତି ଦୂରେଇ ଦେବାପାଇଁ । ହୃଦୟକୁ ପଥର କରି ମତେ ଏକ ମଞ୍ଜୁଷାରେ ରଖି ଭସାଇଦିଅନ୍ତି ଅଶ୍ୱନଦୀରେ । ମଞ୍ଜୁଷାଟି ଭାସି ଭାସି ଯାଏ ଅଶ୍ୱନଦୀରୁ ଚର୍ମଣ୍ୱତୀ ନଦୀକୁ । ସେଠାରୁ ପୁଣି ଯମୁନାନଦୀକୁ ଏବଂ ଯମୁନାନଦୀରୁ ଶେଷରେ ଗଙ୍ଗାନଦୀକୁ । ଗଙ୍ଗାନଦୀରୁ ଭାସମାନ ଅବସ୍ଥାରେ ଥିବା ମଞ୍ଜୁଷାଟିକୁ ଉଦ୍ଧାର କରନ୍ତି ସ୍ନାନରତା ରାଧାମାତା । ସେହି ଦିନଠାରୁ ମୁଁ ହୋଇଯାଏ ତାଙ୍କ ପୁତ୍ର । ବଢ଼ିବାକୁ ଲାଗେ ସୂତପୁତ୍ରର ପରିଚୟ ନେଇ । ମୋର କୌନ୍ତେୟ ପରିଚୟଟି ରହିଯାଏ ଜଗତର ଅଗୋଚରରେ ।

ଏଇ କାହାଣୀଟି ଶୁଣିବା ପରେ ହଠାତ୍ ମୋ' ମନେ ପଡ଼ିଲା ଇନ୍ଦ୍ରପ୍ରସ୍ଥ ନଗରୀର ରାଜଭବନ କାନ୍ଥରେ ଅଙ୍କିତ ଚିତ୍ରଟିର କଥା । ନଦୀକୂଳରେ ଯେଉଁ ନାରୀଜଣକ ଠିଆ ହୋଇଥିଲେ ସେ ତେବେ ଆଉ କେହି ନୁହନ୍ତି । ମୋ' ମାତା କୁନ୍ତୀଦେବୀ । ମନେପଡ଼ିଲା ସେଇ ଚିତ୍ରମାତାଙ୍କ କାତର ମୁଖମଣ୍ଡଳର ଭାବମୂର୍ତ୍ତି । ହାୟ ! ବିଚାରୀ ମାଆ ମୋର କେତେ ଦୁଃଖିନୀ ସତେ ! ଦାସୀ ଯେଉଁ ମଞ୍ଜୁଷାଟି ଭସାଇ ଦେଉଥିଲା ନଦୀସ୍ରୋତରେ ତାହା ଭିତରେ ଥିଲି ମୁଁ । ଚିତ୍ରର ଯେଉଁ ରହସ୍ୟକୁ କେହି ଜାଣିପାରି ନ ଥିଲେ, ଆଜି ଜାଣିପାରିଲି ମୁଁ ବାସୁଦେବଙ୍କ ପ୍ରସାଦରୁ । ମନରେ ମୋର ଆନନ୍ଦର ଅଭିନବ ଉଲ୍ଲାସ ।

କିନ୍ତୁ ପରକ୍ଷଣରେ ଭାବିଲି, ଜାଣିକରି ଲାଭ ବା କ'ଣ ? ମୁଁ କ'ଣ ଡିଣ୍ଡିମ ପିଟି ଏବେ କହିପାରିବି ସମାଜକୁ କୌନ୍ତେୟ ବୋଲି ? ପ୍ରଥମ ପାଣ୍ଡବ ବୋଲି ? ପାଣ୍ଡବମାନଙ୍କ ଅଗ୍ରଜ ବୋଲି ? ସେ ନୈତିକ ସାହସ କ'ଣ ମୋର ଅଛି ? ଥିଲେ ବି ବର୍ତ୍ତମାନର ପରିସ୍ଥିତିରେ କ'ଣ ତାହା କରାଇଦେବ ? ରାଜ୍ୟଭାଗ ନେଇ କୌରବ-ପାଣ୍ଡବମାନଙ୍କ ମଧ୍ୟରେ ସଂଘର୍ଷ ହେବାଟା ଅବଶ୍ୟମ୍ଭାବୀ । ଆଉ ସେଥିରେ ଦୁର୍ଯ୍ୟୋଧନଙ୍କ ପକ୍ଷକୁ ସମର୍ଥନ କରିବି ବୋଲି କଥା ଦେଇଛି ତାଙ୍କୁ । ସେଇ ପ୍ରତିଶ୍ରୁତି ମତେ କରିଦେଇଛି ସଂପୂର୍ଣ୍ଣ ରୂପେ ବିବଶ । ତେଣୁ ତାଙ୍କ ପକ୍ଷକୁ ପରିତ୍ୟାଗ କରିବା ପ୍ରଶ୍ନ ଉଠୁ ହିଁ ନାହିଁ । ଏଇ ବିବଶତା ମତେ ଗ୍ରାସ କରିଥିବା ବେଳେ ମୋର ଜନ୍ମରହସ୍ୟର ଉଦ୍‌ଘାଟନ ମୋ' ପାଇଁ ଏକ ବିଡ଼ମ୍ବନା ସିନା ! ଏକ କ୍ରୂର ପରିହାସ ସିନା ! ବଡ଼ ଦୁର୍ଭାଗ୍ୟ ସିନା ! ହାୟ ରେ ଦୁର୍ଭାଗା କର୍ଣ୍ଣ । ମୋର ଜନ୍ମ ଦୁର୍ଭାଗ୍ୟରେ । ସାରା ଜୀବନ ଦୁର୍ଭାଗ୍ୟରେ । ଆଉ ମରଣ ବି ଦୁର୍ଭାଗ୍ୟରେ । ମନରେ ମୋର ବାରମ୍ବାର ପ୍ରଶ୍ନ– ଏ କ'ଣ କଲେ ବାସୁଦେବ ? ଯେତେବେଳେ କର୍ଣ୍ଣ ତା'ର ସମସ୍ତ ବଳବିକ୍ରମ ନେଇ ପ୍ରସ୍ତୁତ ହେଉଥିଲା ଆସନ୍ନ ମହାଭାରତ ଯୁଦ୍ଧରେ ବୀରତ୍ୱର ପରାକାଷ୍ଠା ଦେଖାଇ ନୂତନ ଇତିହାସ ରଚନା କରିବାକୁ,

ସେତେବେଳେ ତା'ର ସମସ୍ତ ଶୌର୍ଯ୍ୟ-ବୀର୍ଯ୍ୟକୁ ଅପହରଣ କରିନେଲେ ? ତା'କୁ କରିଦେଲେ ଏକ ଦୁର୍ବଳ ସାଧାରଣ ମଣିଷ । ଇନ୍ଦ୍ର କବଚ-କୁଣ୍ଡଳ ମାଗି ନେଇଥିଲେ । ତାହାକୁ ସେ ସହିଯାଇଥିଲା । କିନ୍ତୁ ଆଜି ଯେ ତା'ର ସର୍ବସ୍ୱ ଚାଲିଗଲା । କର୍ଣ୍ଣତ୍ୱ ବୋଲି ଯେଉଁ ଅଭିମାନ, ତାହା ଚାଲିଗଲା । କେଉଁ ଭରସାରେ ଠିଆହେବ ସେ ମହାଯୁଦ୍ଧରେ ? ବର୍ମରୂପେ ସୁରକ୍ଷା ଦେବ ମିତ୍ର ଦୁର୍ଯ୍ୟୋଧନଙ୍କୁ ? ମନରେ ମୋର ନୈରାଶ୍ୟର ବନ୍ୟା ! ଆଖିରେ ଲୁହ ଡବ-ଡବ !

ମତେ ଚିନ୍ତାନ୍ୱିତ ଦେଖି କୃଷ୍ଣ କହିଲେ, ''ହେ କର୍ଣ୍ଣ ! ଏତେ ଭାବୁଛ କ'ଣ ? ଅତୁଳ ଭାଗ୍ୟଶୀଳ ବଂଶରେ ଜନ୍ମ ତୁମର । ତୁମେ ପ୍ରଥମ ପାଣ୍ଡବ । କୁରୁସିଂହାସନର ପ୍ରଥମ ଅଧିକାରୀ । ଭାଗ୍ୟ ତୁମକୁ ଡାକୁଛି ସେଇ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ।'' ବାଣୀ ତାଙ୍କର ଆଶ୍ୱାସନା ଓ ଉତ୍ସାହରେ ଛଳ ଛଳ । ମୋ' ମାନସିକ ଦୁଶ୍ଚିନ୍ତାକୁ ଦୂର କରିବା ପାଇଁ ଖୁବ୍ ଚେଷ୍ଟିତ ସେ ।

''ହେ କୃଷ୍ଣ ! ଏଇ ଯେଉଁ ଆତ୍ମପରିଚୟ ମତେ ଆଜି ଦେଲେ, ତାହାକୁ ଧରି କେଉଁ ସାହସରେ ସମ୍ମୁଖୀନ ହେବି ପାଣ୍ଡବମାନଙ୍କ ଆଗରେ ଯୁଦ୍ଧଭୂମିରେ ? ଏଭଳି ସନ୍ଧିକ୍ଷଣରେ କାହିଁକି ଦୁର୍ବଳ କରିଦେଲେ ମତେ ?'' ମନରେ ମୋର ଆହତ ଅଭିମାନ ।

''ଏଇଥିପାଇଁ ଯେ ତୁମେ ଏବେ ପାଣ୍ଡବମାନଙ୍କ ପକ୍ଷକୁ ଚାଲିଯିବ । ନିଜ ମାଆଙ୍କ କୋଳକୁ ଚାଲିଯିବ । ତାହାର ଅପୂର୍ଣ୍ଣ ସ୍ଥାନଟିକୁ ପୂର୍ଣ୍ଣ କରିଦେବ । ଦୀର୍ଘଦିନ ଧରି ତାଙ୍କ ଆଖିରୁ ଯେଉଁ ଅଶ୍ରୁଧାର ବହିଚାଲିଛି, 'ମାଆ' ବୋଲି ଥରେ ଡାକିଦେଇ ତାହାକୁ ପୋଛିଦେବ ନିଜ ଉତ୍ତରୀୟରେ । ଏଇଥିପାଇଁ... କେବଳ ଏଇଥିପାଇଁ...''

''ତାହାର ସମୟ ବହୁଦିନରୁ ଗଡ଼ିଯାଇଛି କେଶବ ।''

''ମୁଁ କିନ୍ତୁ ସହମତ ନୁହେଁ କର୍ଣ୍ଣ ! ସମୟ ଏବେବି ଅଛି । ତୁମେ ପାଣ୍ଡବ ପକ୍ଷକୁ ଫେରିଯାଅ । ସେମାନେ ଫୁଲଚନ୍ଦନ ଦେଇ ସଂବର୍ଦ୍ଧନା କରିବେ ତୁମକୁ । ତୁମ ଚରଣ-ଧୂଳି ନେବେ । ଅନୁଜ ବୋଲି କହି ତୁମେ ଆଲିଙ୍ଗନ କରିବ ସେମାନଙ୍କୁ । ତୁମେ ହେବ ହସ୍ତିନାପୁରର ରାଜା । ଯୁଧିଷ୍ଠିର ଓ ଭୀମ ଦୁଇ ପାର୍ଶ୍ୱରେ ଥାଇ ଢାଳିବେ ଚାମର । ଅର୍ଜୁନ ହେବେ ଦେହରକ୍ଷୀ । ନକୁଳ ସହଦେବ ପାଦ ସେବା କରିବେ । ସାରା ହସ୍ତିନାପୁରର ଗଗନ-ପବନ ପ୍ରକମ୍ପିତ ହୋଇଉଠିବ ତୁମ ଜୟନାଦରେ । ତାହାର ପୂର୍ବଶ୍ରୀ ପୁଣି ଆସିବ ଫେରି । ତୁମେ ଫେରିଆସ କର୍ଣ୍ଣ, ନିଜ ଘରକୁ ଫେରିଆସ । ଦୁର୍ଯ୍ୟୋଧନଙ୍କ ପକ୍ଷ ନେଇ ନିଜ ଯଶଃ ଓ କୀର୍ତ୍ତିର ଆଲୋକକୁ ଘନ ଅନ୍ଧକାରରେ ନଷ୍ଟ କରିବାକୁ ଦିଅ ନାହିଁ ।''

''ହେ କେଶବ । ସବୁ ବୁଝୁଛି ମୁଁ । ଜାଣୁଛି ଦୁର୍ଯ୍ୟୋଧନଙ୍କ ପକ୍ଷ କେତେ ଦୁର୍ବଳ । ଆଉ ଜାଣୁଛି ବି ସତ୍ୟ ଓ ଧର୍ମଠାରୁ ସେ କେତେ ଦୂରରେ ।''

''ଜାଣି ଜାଣି ତାଙ୍କୁ ସମର୍ଥନ କରୁଛ କାହିଁକି ? ପୂର୍ବରୁ ସିନା ଅଜ୍ଞାତରେ ତାହା କରିଆସୁଥିଲ । ଏବେ ନିଜ ପରିଚୟ ପାଇ ମଧ୍ୟ ତାହା କରିବ କାହିଁକି ? ରକ୍ତର ଡାକ କ'ଣ ବାଜୁନି ତୁମ କାନରେ ?''

''ବାଜୁଛି କୃଷ୍ଣ, ବାଜୁଛି । ଯଥେଷ୍ଟ ବାଜୁଛି । ହେଲେ ଆଉ ଏକ ମହତ୍ତର ଡାକ ମତେ ଟାଣିଆଣୁଛି ବିପରୀତ ଦିଗକୁ । ଧର୍ମ ଓ କର୍ତ୍ତବ୍ୟର ଡାକ । ସେଇ ଡାକରେ ମୁଁ ସମର୍ଥନ କରୁଛି ଦୁର୍ଯ୍ୟୋଧନଙ୍କ ପକ୍ଷକୁ । ସେ ମୋ' ପରମ ମିତ୍ର । ମତେ ଆଶ୍ରୟ ଦେଇଛନ୍ତି । ମୋ' ମହତ୍ତ୍ୱାକାଙ୍‌କ୍ଷା ପୂରଣ କରିବାରେ ସାହାଯ୍ୟ କରିଛନ୍ତି । ତାଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ଭାଙ୍ଗିପାରିବି ନାହିଁ । ଭାଙ୍ଗିବାଟା ଅଧର୍ମ । ତେଣୁ ଧର୍ମ ଓ କର୍ତ୍ତବ୍ୟ ପ୍ରତି ସମ୍ମାନବୋଧ ରଖିଥିବା କର୍ଣ୍ଣ ଆଜି ବିବଶ । ସେ କଦାପି ଛାଡ଼ିପାରିବ ନାହିଁ ତା'ର ମିତ୍ର ଦୁର୍ଯ୍ୟୋଧନଙ୍କୁ ?'' ଭାବାବେଗରେ କହିଗଲି ।

''ତା'ହେଲେ କ'ଣ ନିଜ ଜନ୍ମଦାତ୍ରୀ ମାତା କୁନ୍ତୀଦେବୀଙ୍କୁ ଛାଡ଼ିଦେବ ?'' ତାଙ୍କର ସାଶ୍ଚର୍ଯ୍ୟ ପ୍ରଶ୍ନ । ତିର୍ଯ୍ୟକ୍ ଦୃଷ୍ଟି ଢାଳି ଚାହିଁରହିଲେ ମତେ ।

''ହଁ, ଛାଡ଼ିଦେବି । ଆପଣ ସିନା ଯଶୋଦା ମାତାଙ୍କୁ ଛାଡ଼ିଦେଲେ । ଆଉ ଛାଡ଼ିଦେଲେ ବି ନନ୍ଦ ପିତାଙ୍କୁ । ମୁଁ କିନ୍ତୁ ରାଧା ମାତା ଓ ଅଧିରଥ ପିତାଙ୍କୁ ଛାଡ଼ିବି ନାହିଁ । ମୁଁ ଚିରଦିନ ସୂତପୁତ୍ର ହୋଇ ରହିବି । ରାଧେୟ ହୋଇ ରହିବି । କୌନ୍ତେୟ କିନ୍ତୁ ନୁହେଁ । ମୋର ସୂତ ପିତାମାତା ଅବଶ୍ୟ ଏବେ ସ୍ୱର୍ଗବାସୀ । କିନ୍ତୁ ମୁଁ ପଦେ ପଦେ ଅନୁଭବ କରିପାରୁଛି ସେମାନଙ୍କ ଉପସ୍ଥିତି । ସେମାନଙ୍କ ଆତ୍ମାମାନେ ଏବେ ମଧ୍ୟ ଆଶୀର୍ବାଦର ଜଳ ମୋ' ଉପରେ ଢାଳି ଢାଳି ଘୂରୁଛନ୍ତି ମୋ' ଚତୁର୍ଦ୍ଦିଗରେ । ସେମାନଙ୍କ ଆତ୍ମାକୁ କଷ୍ଟ ଦେଇପାରିବି ନାହିଁ । କ୍ଷମା କରନ୍ତୁ ବାସୁଦେବ । ଆପଣଙ୍କ କଥା ରଖିପାରୁ ନାହିଁ ।'' ଆଖିରୁ ଉଦ୍‌ଗତ ଅଶ୍ରୁକୁ ସମ୍ଭାଳୁଥିବା ଅବସ୍ଥାରେ କହିଲି । ଆବେଗରେ ଥର ଥର ଥିବା ଅବସ୍ଥାରେ ଶେଷ କେଇ ପଦ ସ୍ପଷ୍ଟ ଭାବରେ କହିପାରିଲି ନାହିଁ ।

କୃଷ୍ଣ ବୁଝିପାରିଲେ ମୋ' ମନଃସ୍ଥିତିକୁ । କହିଲେ, ''ଧନ୍ୟ ବୀର କୌନ୍ତେୟ । ଧନ୍ୟ ତୁମ କର୍ତ୍ତବ୍ୟବୋଧ !!''

''ନା, ନା, କୌନ୍ତେୟ ନୁହେଁ କେଶବ । ରାଧେୟ ।'' ସଂଶୋଧନ କରିବାପାଇଁ ପରାମର୍ଶ ଦେଲି ।

''ହଁ, ରାଧେୟ ! ଧନ୍ୟା ତୁମର ରାଧା ମାତା । ଧନ୍ୟ ତୁମର ଯଶଃକୀର୍ତ୍ତୀ ! ଅନ୍ଧକାରର ଗର୍ଭରେ ଥାଇ ମଧ୍ୟ ତୁମେ ଉଜଳି ଉଠୁଥିବ ଚିରଦିନ ଦିବ୍ୟ ଦୀପ୍ତି ଧରି ।'' ସେ ଏହା କହି ଉଠିବାକୁ ବସିଲେ ।

ଉଠିବା ପୂର୍ବରୁ ତାଙ୍କୁ କହିଲି, ''ରହନ୍ତୁ ବାସୁଦେବ । ମୋ'ର ତିନୋଟି ପ୍ରାର୍ଥନା ଆପଣଙ୍କୁ ଅଛି । ଦୟା କରି ରକ୍ଷା କରିବେ ।''

''କହ କର୍ଣ୍ଣ ! କହ । ତୁମ ପାଇଁ କିଛି ଅଦେୟ ମୋର ନାହିଁ ।''

''ମୋ' ଜନ୍ମରହସ୍ୟ ମାତା କୁନ୍ତୀଦେବୀ ଜାଣନ୍ତି । ଆପଣ ଜାଣିଛନ୍ତି । ଆଉ ଆଜି ମୁଁ ଜାଣିଲି । ଆଉ କାହାଙ୍କୁ ଯେପରି ଏହା ନ କହନ୍ତି ଆପଣ । ମୋ' ମୃତ୍ୟୁ ପରେ ପଛକେ ଲୋକେ ତାହା ଜାଣନ୍ତୁ । କିନ୍ତୁ ତାହା ପୂର୍ବରୁ ନୁହେଁ ।

''ତଥାସ୍ତୁ । ଆଉ ଦ୍ୱିତୀୟ ପ୍ରାର୍ଥନାଟି କ'ଣ ?''

''ମୋର ଅର୍ଜୁନଙ୍କ ସହିତ ତ ନିଶ୍ଚୟ ଯୁଦ୍ଧ ହେବ । ଜାଣେ ନା କାହାର ହେବ ବୀରଗତି । ଯଦି ମୋର ବୀରଗତି ହୁଏ ଅର୍ଜୁନଙ୍କ ହାତରେ ଏବଂ ଯଦି ତାହା ଆଗରୁ ମୋ' ପୁତ୍ର ବସୁସେନଙ୍କ ବୀରଗତି ହୋଇଥାଏ, ତେବେ ଆପଣ ଗୋଟିଏ କଥା କରିବେ । ଅନୁଜ ଯୁଧିଷ୍ଠିରଙ୍କୁ କହିବେ ମୋର ମୁଖାଗ୍ନି ଦେବାପାଇଁ । ଗଙ୍ଗାମାତା କୁନ୍ତୀଦେବୀ ଓ ରାଧାଦେବୀଙ୍କ ଭଳି ମୋର ଆଉ ଜଣେ ମାତା । ମତେ କୋଳରେ ବହୁ ସମୟ ଧରି ବହିଆସିଥିଲେ ସେ । ଯୁଧିଷ୍ଠିରଙ୍କୁ କହିବେ ମୋ' ଚିତାଭସ୍ମକୁ ନେଇ ତାଙ୍କରି ବକ୍ଷରେ ପକାଇଦେବା ପାଇଁ । ତା'ହେଲେ ମାତୃକୋଳର ଶେଷ ସ୍ପର୍ଶଟିକକ ପାଇଁ ଅତୃପ୍ତ ଆତ୍ମା ମୋର ତୃପ୍ତ ହେବ ।''

''ତାହା ମଧ୍ୟ ହେବ । ଆଉ ତୃତୀୟ ପ୍ରାର୍ଥନା ?''

''ଏହା ମୋର ଅନ୍ତିମ ପ୍ରାର୍ଥନା । ଅନୁତପ୍ତ ବିକଳ ହୃଦୟର କାତର ପ୍ରାର୍ଥନା । ପାଞ୍ଚାଳୀ ମୋର ଅନୁଜବଧୂ । ପୁତ୍ରବଧୂ ସମାନ । ପଞ୍ଚପତି ଥାଇ ବି ସେ ମହାସତୀ । ତାଙ୍କୁ କୁରୁସଭାରେ ଅପମାନ ଦେଇଥିବାରୁ ଚିର ଅନୁତପ୍ତ ମୁଁ । ତାଙ୍କୁ କହିବ, ପାରିବେ ଯଦି ମତେ କ୍ଷମା ଦେବେ ଏବଂ ମୋ' ଚିତାଭସ୍ମରେ ଦୁଇ ଟୋପା ଅଶ୍ରୁ ଢାଳିଦେବେ । ତା'ହେଲେ ମହାକଳଙ୍କର ଦାଗ ମୋର ଧୋଇହୋଇଯିବ ସେଇ ଅଶ୍ରୁଧାରରେ ! ସ୍ୱର୍ଗତ ଆତ୍ମା ମୋର ଶାନ୍ତି ପାଇବ ।''

''ତଥାସ୍ତୁ ।''

ତାହା ପରେ ଆମେ ଦୁହେଁ ଉଠିଲୁ ଓ ଚାଲି ଚାଲି ଗଲୁ କୃଷ୍ଣଙ୍କ ରଥ ନିକଟକୁ । ଉଭୟ ନୀରବ । ମୋ' ମନ ମଧ୍ୟରେ ପ୍ରବଳ ପ୍ରଭଞ୍ଜନର ଘାତପ୍ରତିଘାତ । ଦୁର୍ବାର ତାହାର ପ୍ରବାହ । ଖୁବ୍ ଅସ୍ତବ୍ୟସ୍ତ ମୁଁ । ନୂତନ ପରିଚୟକୁ ଗ୍ରହଣ କରିପାରୁ ନାହିଁ କି ପୁରାତନ ପରିଚୟକୁ ଛିନ୍ନ କରିପାରୁ ନାହିଁ । ମତେ ଲାଗୁଥାଏ ସେଇ ପ୍ରଭଞ୍ଜନ ଦ୍ୱାରା ଉଡ଼ି ଉଡ଼ି ଯାଉଥିବା ସତେଯେମିତି ଛିନ୍ନ ପତ୍ରଟିଏ ମୁଁ । ଗତି କେଉଁଠିକୁ ଜାଣେନା । ଖାଲି ଯାଉଛି ଉଡ଼ି ଉଡ଼ି ! କୃଷ୍ଣଙ୍କ ମନଃସ୍ଥିତି କ'ଣ ତାହା କିନ୍ତୁ ମତେ ଥିଲା ଅଜଣା । ନିର୍ବିକାର ଭାବରେ ଚାଲିଥିଲେ ସେ ଆଗକୁ ଆଗକୁ ।

ରଥ ମୋ' ଭବନ ସମ୍ମୁଖରେ ଲାଗିଲା । ଓହ୍ଲାଇଗଲି ମୁଁ । ତାଙ୍କୁ ବିଦାୟ ସଂଭାଷଣ କରିବା ଅବସରରେ ସେ ହସ ହସ ମୁଖରେ କହିଲେ, ''ହେ ରାଧେୟ । ତୁମେ ନିଜ କର୍ତ୍ତବ୍ୟ କରିଯାଅ ନିଷ୍କାମ ଭାବରେ । ତାହାହିଁ ଧର୍ମ । ତାହାହିଁ ସତ୍ୟ । ତାହାହିଁ ମୁକ୍ତିର ମାର୍ଗ ।'' ଏହା କହି ସେ ଚାଲିଗଲେ ବିଦୁରଙ୍କ ପର୍ଣ୍ଣକୁଟୀ ଅଭିମୁଖରେ ।

ସେହିଦିନୁ ଆଉ ଦେଖି ନାହିଁ ତାଙ୍କୁ । ଆଜି ଦେଖୁଛି ଯୁଦ୍ଧଭୂମିରେ ମୋ' ଶେଷ ଯୁଦ୍ଧ ଅବସରରେ ।

## ପଞ୍ଚସ୍ତରି

ବାସୁଦେବ ହସ୍ତିନାପୁରରୁ ଚାଲିଗଲେ । ଏକ ବିସ୍ଫୋରକ ଆଗ୍ନେୟଗିରିର ପୂର୍ବ ସୂଚନା ଦେଇ ଚାଲିଗଲେ । ମତେ ଅସ୍ୱାଭାବିକ ଭାବରେ ଦୁର୍ବଳ କରିଦେଇ ଚାଲିଗଲେ ।

ମଣିହରା ଫଣୀଟି ଭଳି କେବଳ ଅଙ୍ଗରାଜରୂପୀ ନିର୍ମୋକଟି ଧରି ସ୍ଥାଣୁ ଭଳି ପଡ଼ି ରହିଲି । ସଂପୂର୍ଣ୍ଣ ରୂପେ ହରାଇବସିଲି ମାନସିକ ଭାରସାମ୍ୟ । ମିତ୍ର ଦୁର୍ଯ୍ୟୋଧନ ଅନେକବାର ମତେ ପ୍ରଶ୍ନ କଲେ କୃଷ୍ଣ ଓ ମୋ' ମଧ୍ୟରେ ହୋଇଥିବା ବାର୍ତ୍ତାଳାପର ବିଷୟବସ୍ତୁକୁ ଜାଣିବା ପାଇଁ । କୌଣସିମତେ ଏଡ଼ାଇ ଦେଇଥିଲି ସେ ପ୍ରଶ୍ନକୁ । ବାଧ୍ୟ କରିବାରୁ କହିଥିଲି ଏଣୁ ତେଣୁ ସୁଖ-ଦୁଃଖ କଥା ପଡ଼ିଥିଲା ବୋଲି ।

କିନ୍ତୁ ତାଙ୍କ ଚାଲିଯିବାରେ ବିଶେଷ ପ୍ରଭାବ ପଡ଼ିଥିଲା ମହାରାଜଙ୍କ ଉପରେ । ଖୁବ୍ ଭୀତତ୍ରସ୍ତ ସେ । ଦୁର୍ଯ୍ୟୋଧନଙ୍କ ନିଷ୍କଣ୍ଟକ ରାଜ୍ୟଭୋଗ କରିବାର ସମ୍ଭାବନା ନେଇ । ସାମଗ୍ରିକ କୁରୁବଂଶର ସୁରକ୍ଷା ନେଇ । ବିଶେଷକରି ଭବିଷ୍ୟତର ଯେଉଁ ଇତିହାସ ସେ ସୃଷ୍ଟି କରିବାକୁ ଯାଉଛନ୍ତି ସେଥିନେଇ । ପିତାମହ ଭୀଷ୍ମ, ମହାମନ୍ତ୍ରୀ ବିଦୁର, ସଞ୍ଜୟ କକା, ଆଚାର୍ଯ୍ୟ ଦ୍ରୋଣ ଆଦି କୁରୁ-ସିଂହାସନର ସକଳ ହିତାକାଙ୍‌କ୍ଷୀଙ୍କ ବାରମ୍ବାର ଦୁର୍ବାର ଚାପ । ପୁଣି ସ୍ୱୟଂ ରାଜମାତା ଗାନ୍ଧାରୀଙ୍କ ଅଳି । ଏଣେ ପୁଣି ପ୍ରିୟ ପୁତ୍ର ଦୁର୍ଯ୍ୟୋଧନଙ୍କ ଦ୍ୱାରା ବିପରୀତ ଦିଗ ଆଡ଼କୁ ଆକର୍ଷଣ । ହିତାକାଙ୍‌କ୍ଷୀମାନେ ପାଣ୍ଡବମାନଙ୍କ ସହିତ ସନ୍ଧି କରିବାପାଇଁ ପ୍ରସ୍ତାବ ଦେଉଥିବାବେଳେ ତେଣେ ଦୁର୍ଯ୍ୟୋଧନ ପକ୍ଷରୁ ରଣହୁଙ୍କାରର ପ୍ରସ୍ତାବ । କ'ଣ କରିବେ କିଛି ଠିକ୍ କରିପାରୁ ନ ଥାନ୍ତି ସେ । କୁରୁସେନା ଯେ ଦୁର୍ବଳ ଥିଲା ତାହା ନୁହେଁ । ତାହା ବରଂ ଥିଲା ଯଥେଷ୍ଟ ସବଳ । ପୁଣି ସମର୍ଥକ ରାଜାମାନଙ୍କ ସୈନ୍ୟବଳ ମିଶିଗଲେ ତାହା ଅଧିକ ବଳଶାଳୀ ହେବାର ଥିଲା ସମ୍ଭାବନା । କିନ୍ତୁ ପାଣ୍ଡବମାନଙ୍କ ପକ୍ଷରେ ଗୋଟିଏ ବିରାଟ ବଳ ଥିଲେ କୃଷ୍ଣ । ପୁଣି ସେମାନଙ୍କ ପକ୍ଷରେ ଥିଲା ଧର୍ମ । ଧର୍ମ ଯେଉଁଠି କୃଷ୍ଣ ସେଇଠି । ଆଉ କୃଷ୍ଣ ଯେଉଁଠି ବିଜୟ ସେଇଠି । ଯୁଦ୍ଧ ଯଦି ହୁଏ, ତେବେ ପାଣ୍ଡବମାନେ ଯେ ବିଜୟୀ ହେବେ ଏ ବିଷୟରେ ଥିଲେ ସେ ଦୃଢ଼ନିଶ୍ଚୟ । ତେଣୁ କୌଣସିମତେ ସେମାନଙ୍କ ସହିତ ଶାନ୍ତିସ୍ଥାପନ କରିବାକୁ ଚାହୁଁଥିଲେ ସେ ।

ସେ ସଞ୍ଜୟଙ୍କୁ ପଠାଇଲେ ଉପପ୍ଳବ୍ୟ ନଗରୀକୁ ଶାନ୍ତିର ସନ୍ଦେଶ ଦେଇ । ଯାହା ଶୁଣିଲି, ତାହା ମଧ୍ୟ ହେଲା ବିଫଳ । କାରଣ ତାହା ମୂଳରେ ନିଷ୍ଠା ନ ଥିଲା । ବରଂ ଥିଲା ଛଳନା । ଫମ୍ପା ଶୁଭେଚ୍ଛା ଓ ଆଶୀର୍ବାଦର ଭରପୂର ପ୍ରସ୍ତାବ । ବିନିମୟରେ ସେ କିଛି ଦେବେ ନାହିଁ ପାଣ୍ଡବମାନଙ୍କୁ । ଅଥଚ ତାଙ୍କର ଇଚ୍ଛା ଯେ ପାଣ୍ଡବମାନେ ରହିବେ ନୀରବରେ ଶାନ୍ତ ହୋଇ । ଯୁଧିଷ୍ଠିର ସଂଜୟଙ୍କୁ ଭକ୍ତି କରନ୍ତି । କକା ବୋଲି ମାନନ୍ତି । ସେ ପଚାରିଲେ, ''କକା, ଜ୍ୟେଷ୍ଠତାତ ମହାରାଜ ଧୃତରାଷ୍ଟ୍ର ଆମ ପାଖକୁ ଯେଉଁ ଶାନ୍ତି ପ୍ରସ୍ତାବ ପଠାଇଛନ୍ତି, ସେଥିପାଇଁ ଆମେ ଧନ୍ୟ । ଆଚ୍ଛା, ସେ ରାଜ୍ୟଭୋଗ ଦେବା କଥା କିଛି କହିଛନ୍ତି ନା ନାହିଁ ?''

''ନାହିଁ ।'' ସତ୍ୟ କଥା ପ୍ରକାଶ କଲେ ସଞ୍ଜୟ ।

''ହେଲା ଏବେ, ଆମେ ଶାନ୍ତିରେ ରହିବୁ ବୋଲି କହି ପଠାଇଛନ୍ତି । କେଉଁଠି ରହିବୁ ସେ କଥା କିଛି କହିଛନ୍ତି କି ?''

''ନା, କହି ନାହାନ୍ତି ।''

''ବଣରେ ରହିବୁ ନା ପର ରାଜ୍ୟରେ ଏଇ ଉପପ୍ଳବ୍ୟ ନଗରୀରେ ରହିବୁ, ସେ ବିଷୟରେ କିଛି କହିଛନ୍ତି ?''

''ତାହା ବି ନୁହେଁ ।''

''ତା'ହେଲେ ଏହା କି ଶାନ୍ତି ପ୍ରସ୍ତାବ ? ଶାନ୍ତି ପ୍ରସ୍ତାବରେ ଉଭୟ ପକ୍ଷ ମଧ୍ୟରେ କିଛିଟା ବିନିମୟ ଘଟିଥାଏ । ଆମେ ବିନିମୟରେ କିଛି ପାଇବୁ ନାହିଁ । ଅଥଚ ସନ୍ଧି କରି ଆମ ଅଧିକାରକୁ ଛାଡ଼ିଦେବୁ । ଏହା କିପରି କଥା ? ଏହା ତ ଘୋର ଅନ୍ୟାୟ । ଏହା ଆଦୌ ଗ୍ରହଣଯୋଗ୍ୟ ନୁହେଁ ।''

''ମୁଁ ତେବେ କ'ଣ କହିବି ଯାଇ ମହାରାଜଙ୍କୁ ?''

''କହିବେ, ପାଣ୍ଡବମାନେ ଭିକ୍ଷୁକ ଭଳି ହାତ ପତାଇ ଏ ଲଜ୍ଜାକର ପ୍ରସ୍ତାବକୁ ଗ୍ରହଣ କରିବାକୁ ଅସମର୍ଥ । ସେମାନେ ଯୁଦ୍ଧ ମାଧ୍ୟମରେ ହିଁ ନିଜ ଅଧିକାରକୁ ସାବ୍ୟସ୍ତ କରିବେ ।'' ଦୃଢ଼ତାର ସହିତ କହିଲେ ଯୁଧିଷ୍ଠିର । ତାଙ୍କ ଭଳି ସରଳ ହୃଦୟର ବ୍ୟକ୍ତି ଯେ ଧର୍ମରକ୍ଷାର ପ୍ରଶ୍ନ ଉଠିଲେ ଏଭଳି ଦୃଢ଼ ଓ କଠୋର ହୋଇପାରନ୍ତି ତାହା ପ୍ରମାଣ କରି ଦେଖାଇଦେଲେ ସେ ।

ସଂଜୟ ଫେରିଆସିଲେ ବିଫଳ ମନୋରଥ ହୋଇ ।

ଜଣାଯାଉଛି, ଏବେ ଯୁଦ୍ଧ ଛଡ଼ା ଆଉ ଯେମିତି ଅନ୍ୟ ଗତି ନାହିଁ । କାରଣ ଉଭୟ ପକ୍ଷ ନିଜ ନିଜ ଦାବିରେ ଅଟଳ । ନୈତିକତା କିମ୍ବା ଯୌକ୍ତିକତାର ବିଚାର ନାହିଁ ଏଥିରେ । କେବଳ ବଳ ହିଁ ନେବ ନିର୍ଣ୍ଣାୟକ ଭୂମିକା । ଯେ ସବଳ ସେ ଦୁର୍ବଳକୁ କରିବ କବଳିତ । କରିବ ପଦାନତ । ଏହା ମତ୍ସ୍ୟନ୍ୟାୟ ଛଡ଼ା ଆଉ କ'ଣ ବା ହୋଇପାରେ ? ମଣିଷର ବିବେକ କାମ ନ କଲେ ସେ ହୋଇଯାଏ ଠିକ୍ ମାଛ ଭଳି । ବଡ଼ମାଛଟି ଛୋଟମାଛକୁ ଖାଇଦିଏ । ଆହୁରି ବଡ଼ମାଛଟିଏ ସେହି ବଡ଼ମାଛଟିକୁ ବି ଖାଇଦିଏ । ଏମିତି ପରସ୍ପରକୁ ଖାଇବା ପ୍ରକ୍ରିୟାଟି ଚାଲିଥାଏ । ମଣିଷର ବୁଦ୍ଧି ଅଛି । ବିବେକ ଅଛି । ସେ କୁଆଡ଼େ ଦିବ୍ୟତ୍ୱର ଅଭିପ୍ରକାଶ । ମାନବ ସଭ୍ୟତାର ବିକାଶ ସହସ୍ର ସହସ୍ର ବର୍ଷ ଧରି ହୋଇଆସୁଛି । ବହୁ ମୁନି-ଋଷି, ସାଧୁ-ସନ୍ନ୍ୟାସୀ ବହୁ ଉତ୍ତମ କଥା କହିଆସିଛନ୍ତି । ଆଉ ଏବେ କହୁଛନ୍ତି ମଧ୍ୟ । ଅଥଚ ମଣିଷ ମଧ୍ୟରେ ଥିବା ସେଇ ଆଦିମ ହିଂସ୍ର ପ୍ରବୃତ୍ତିଟି ଏ ପର୍ଯ୍ୟନ୍ତ ଲୋପ ପାଇ ନାହିଁ । ବଡ଼ ଆଶ୍ଚର୍ଯ୍ୟ ! କୌଣସି ସମସ୍ୟାର ସମାଧାନ ହୋଇ ନ ପାରିଲେ ଶେଷକୁ ସେ ନେଉଛି ଯୁଦ୍ଧର ଆଶ୍ରୟ । ଯୁଦ୍ଧ କ'ଣ ପ୍ରକୃତରେ ସମସ୍ୟାର ସମାଧାନ କରେ ? ବରଂ ତାହା ସୃଷ୍ଟି କରେ ନୂତନ ନୂତନ ସମସ୍ୟା । ଏହା ଲକ୍ଷ୍ୟ ହାସଲ କରିବାର କଠୋରତମ ଉପାୟ । ଏହାଦ୍ୱାରା କଦାପି କଲ୍ୟାଣ ହୋଇପାରେନା ମାନବ ଜାତିର । ସାମୟିକ ଭାବରେ ଏହା କିଛିଟା ଧନ-ସମ୍ପତ୍ତି ଅଥବା ବାହ୍ୟ ସୁଖ-ଆନନ୍ଦ ହୁଏତ ଆଣିଦେଇପାରେ । କିନ୍ତୁ ଯେଉଁ ଚିର ଆନନ୍ଦ ମାନବ ଜୀବନରେ ଚରମ ଲକ୍ଷ୍ୟ, ତାହା ଆଣିଦେଇପାରେନା । ବରଂ ତାହାଠାରୁ ଦୂରେଇ ନେଇଯାଏ ମାନବକୁ । ଆଉ ଭବିଷ୍ୟତର ବଂଶଧରମାନଙ୍କ ପାଇଁ କେବଳ ରଖିଦେଇଯାଏ ଅହଙ୍କାର, କପଟ, କ୍ରୂରତା,

ପ୍ରତିଶୋଧ ଆଦି ବିକାରଗୁଡ଼ିକର ନିଦର୍ଶନ । ବେଳେବେଳେ ଏଇ ଚିନ୍ତା ଆଘାତ କରେ ମୋ' ମନକୁ ।

ଆଉ ବେଳେବେଳେ ବିପରୀତ ଚିନ୍ତାର ପ୍ରତ୍ୟାଘାତ ବି ଆସେ । ଜଣେ ସାଧାରଣ କ୍ରୋଧୀ ଓ ପ୍ରତିହିଂସାପରାୟଣ ମଣିଷଟି ଭଳି ମୋ' ମନ ବି ଢଳିଯାଏ ଯୁଦ୍ଧ ପ୍ରତି । ତାହା ପାଇଁ ଖୋଜି ଖୋଜି ବାହାର କରେ ଯଥାର୍ଥତା । ଭାବେ, ଯାହା କିଛି ସିଦ୍ଧି ହାସଲ କରିଛି ଏଇ ଜୀବନରେ, ତାହା ମୂଳରେ ବିଶେଷ କରି ଅଛି ଏଇ ଯୁଦ୍ଧ । ଏଇ ଯୁଦ୍ଧ ମାଧ୍ୟମରେ ହିଁ ଜୟ କରିଛି ଅସଂଖ୍ୟ ରାଜ୍ୟ । ସେଥିପାଇଁ ଗଣ୍ୟ ମହାବୀର ବୋଲି । ଦୀର୍ଘଦିନ ଧରି ଯେଉଁ ଅସ୍ତ୍ରଶିକ୍ଷା କରିଛି ଏବଂ ଆବଶ୍ୟକ ସ୍ଥଳେ ଗୁରୁଙ୍କ ନିକଟରେ ମିଥ୍ୟାବାଦୀ ହୋଇଛି, ତାହା ଆଉ କେଉଁଥିପାଇଁ ? କେବଳ ଏଇ ଯୁଦ୍ଧ ପାଇଁ । ଯେଉଁ ଅପମାନ ପାଇଛି ରାଜକୁମାରମାନଙ୍କ ଅସ୍ତ୍ରପରୀକ୍ଷା ଅବସରରେ ତାହାର ପ୍ରତିଶୋଧ ନେବା ଏଇ ଯୁଦ୍ଧ ମାଧ୍ୟମରେ ହିଁ ସମ୍ଭବ । ତାହା ହେଲେ ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧାର ସୁଯୋଗ ମିଳିବ । ତେଣୁ ଆସନ୍ନ ମହାସମରକୁ ମୁଁ ଅଭ୍ୟର୍ଥନା କରୁଥିଲି ମନେ ମନେ ।

ଯାହା ଚାହୁଁଥିଲି ତାହା ଏବେ ଘଟିବାକୁ ଯାଉଛି । କୌରବ-ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ହେବା ନିଶ୍ଚିତ । ଅବଶ୍ୟ ମୋ' ଚାହିଁବା ନ ଚାହିଁବା କିମ୍ବା ଆଉ କାହାର ଚାହିଁବା ନ ଚାହିଁବା କାରଣରୁ ନୁହେଁ । କେବଳ ଦୈବର କାରଣରୁ । ଦୈବଦ୍ୱାରା ଯାହା ସ୍ଥିରୀକୃତ ତାହା ଅଲଂଘନୀୟ । ତାହା ଘଟିବ ହିଁ ଘଟିବ । ଆମେ କ୍ଷୁଦ୍ର କ୍ଷୁଦ୍ର ମନୁଷ୍ୟମାନେ କେବଳ ନିଜ ନିଜ ଭୂମିକାଟିମାନ ନିଭାଇ ଚାଲିଥିବା । ଅନନ୍ତ କାଳ ମଧ୍ୟରେ ଏଇ ଆସନ୍ନ ମହାସମରଟି କ୍ଷୁଦ୍ର ସର୍ଷପବୀଜଠାରୁ ଆହୁରି କ୍ଷୁଦ୍ରତର । ପୁଣି ଆମ ଭୂମିକାଟିମାନ ତାହାଠାରୁ ଆହୁରି କ୍ଷୁଦ୍ରତର । ତଥାପି ଆମେ ନିଜ ନିଜ ଭୂମିକା ନେଇ ଫାଟିପଡୁଛୁ ଅଭିମାନରେ ! ହାୟ ରେ ନିର୍ବୋଧ ଆମେ ମଣିଷମାନେ !

ମହାମନ୍ତ୍ରୀ ବିଦୁର ଗଭୀର ଭାବରେ ମର୍ମାହତ । ସଂପୂର୍ଣ୍ଣ ବୀତସ୍ପୃହ ଓ ନିରୁତ୍ସାହିତ ନିଜ ମନ୍ତ୍ରିପଦ ପ୍ରତି । ତାଙ୍କ ମନ୍ତ୍ରଣା କେହି ଶୁଣିବାକୁ ପ୍ରସ୍ତୁତ ନାହାନ୍ତି । ନା ଦୁର୍ଯ୍ୟୋଧନ ନା ସ୍ୱୟଂ ମହାରାଜ ଧୃତରାଷ୍ଟ୍ର ଯାହାଙ୍କୁ ସେ ଭକ୍ତି କରନ୍ତି ଅଗ୍ରଜ ଭାବରେ । ଏଭଳି ମନଃସ୍ଥିତି ନେଇ ସେ ରହିପାରିଲେ ନାହିଁ ହସ୍ତିନାପୁରରେ । ତୀର୍ଥଯାତ୍ରାରେ ବାହାରିଗଲେ ହିମାଳୟ ପ୍ରଦେଶକୁ । ଆଶା, ହୁଏତ କିଛିଟା ମାନସିକ ଶାନ୍ତି ମିଳିପାରେ ପବିତ୍ର ତୀର୍ଥଯାତ୍ରାରୁ ।

ଉଭୟ ପକ୍ଷର ଯୁଦ୍ଧ ପାଇଁ ଘମାଘୋଟ ଆୟୋଜନ ! ଉଭୟ ପକ୍ଷରୁ ଦୂତମାନେ ପ୍ରେରିତ ବିଭିନ୍ନ ରାଜ୍ୟକୁ ସଂପୃକ୍ତ ରାଜାମାନଙ୍କ ସମର୍ଥନ ହାସଲ କରିବା ଉଦ୍ଦେଶ୍ୟରେ । ଧୀରେ ଧୀରେ ବିଭିନ୍ନ ରାଜ୍ୟରୁ ମିତ୍ର ରାଜାମାନେ ସେମାନଙ୍କ ସେନାବଳ ଧରି ଦୁଇ ପକ୍ଷରେ ଯୋଗ ଦେବାକୁ ଆସନ୍ତି । ହସ୍ତିନାପୁରରେ ଅଙ୍ଗ, ଅଙ୍ଗାରକ, ମଗଧ, ମଦ୍ର, ଗାନ୍ଧାର, ଅବନ୍ତୀ, ନିଷଧ, ସିନ୍ଧୁ, କଳିଙ୍ଗ, ଚେଦି ଆଦି ରାଜାମାନଙ୍କ ସମାରୋହ । କ୍ଷେମଧୂର୍ତ୍ତି, କ୍ଷେମଶର୍ମା, ଦ୍ରୋଣ, କୃପ, ଶଲ୍ୟ, ଶକୁନି, ଜୟଦ୍ରଥ ଆଦି ବୀରମାନେ ଅଛନ୍ତି । ତାହାଛଡ଼ା ଅଛି ବି ଦ୍ୱାରକାର ମହାପରାକ୍ରମୀ ନାରାୟଣୀ ସେନା । ଅନୁରୂପ

ଭାବରେ ପାଣ୍ଡବ ପକ୍ଷରେ ଦ୍ରୁପଦ, ବିରାଟ ଆଦି ରାଜାମାନଙ୍କ ସେନାଦଳ ସମାବିଷ୍ଟ । ବୀରମାନଙ୍କ ମଧ୍ୟରେ ଅଛନ୍ତି ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଉତ୍ତର, ଅଭିମନ୍ୟୁ, ସାତ୍ୟକି ଆଦି ବୀରଗଣ ଓ ପାଣ୍ଡବ ପଞ୍ଚଭ୍ରାତା । ତାହା ଛଡ଼ା ଅଛନ୍ତି ବାସୁଦେବ କୃଷ୍ଣ ନିରସ୍ତ୍ର ରହିବାର ପ୍ରତିଶ୍ରୁତି ଦେଇ । ନିରସ୍ତ୍ର ଥାଇ ମଧ୍ୟ ଶତାଧିକ ସଶସ୍ତ୍ର ବୀରଙ୍କଠାରୁ ବଳବତ୍ତର ସେ । ହସ୍ତିନାପୁର ଓ କ୍ଷୁଦ୍ର ଉପପ୍ଳବ୍ୟ ନଗରୀ ରଥୀ, ଅତିରଥୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ସୈନ୍ୟମାନଙ୍କଦ୍ୱାରା ହୋଇଉଠେ ଭରପୂର । ଯେଉଁଆଡ଼କୁ ଦେଖିବ ଖାଲି ମୁଣ୍ଡମାଳ । ମନୁଷ୍ୟମାନଙ୍କର ଅଥବା ବାହନମାନଙ୍କର । ଗୋରଥ, ଅଶ୍ୱରଥଗୁଡ଼ିକର ଚକ୍ରଚାଳନର ଧୂଳିରେ ସାରା ଆକାଶ ପରିବ୍ୟାପ୍ତ । ଅଶ୍ୱମାନଙ୍କ ହ୍ରେଷାରବ ଓ ହସ୍ତୀମାନଙ୍କ ବୃଂହଣଧ୍ୱନି ଉଚ୍ଛୃଙ୍ଖଳ ସମୁଦ୍ର ଭଳି ପ୍ରତୀତ ।

ଏହା ଭିତରେ ମଦ୍ରରାଜ ଶଲ୍ୟଙ୍କ ପକ୍ଷ ସମର୍ଥନ ନେଇ ଘଟେ ଏକ ବିଚିତ୍ର ଓ କୌତୁକାବହ ଘଟଣା । ଶକୁନିଙ୍କ ଉପସ୍ଥିତ କୂଟବୁଦ୍ଧିର ପ୍ରୟୋଗ ଫଳରେ ସେ ନ ଚାହୁଁଥିଲେ ବି ଦୁର୍ଯ୍ୟୋଧନଙ୍କ ପକ୍ଷ ସମର୍ଥନ କରନ୍ତି । ନିଜ ଭଣଜା ଯୁଧିଷ୍ଠିର ତାଙ୍କ ଅଭ୍ୟର୍ଥନା ଲାଗି ତୋରଣ ଆଦିର ନିର୍ମାଣ କରାଇଥାନ୍ତି । କିନ୍ତୁ ଶକୁନିଙ୍କ ପରାମର୍ଶରେ ଦୁର୍ଯ୍ୟୋଧନ ଯାଇ ଅର୍ଦ୍ଧପଥରୁ ତାଙ୍କୁ ସଂବର୍ଦ୍ଧିତ କରନ୍ତି । ତୋରଣ ଆଦିକୁ ଦୁର୍ଯ୍ୟୋଧନଙ୍କର ଭାବି ସେ ତାଙ୍କ ପକ୍ଷକୁ ସମର୍ଥନ କରନ୍ତି । କିନ୍ତୁ କଥାଟା ପରେ ଜଣାପଡ଼ିଯାଏ । ତାହା ଜାଣିପାରି ଯୁଧିଷ୍ଠିର ପରେ ତାଙ୍କୁ ଦେଖାକରନ୍ତି ବ୍ୟକ୍ତିଗତ ଭାବରେ । ଆଉ ଅନୁରୋଧ କରନ୍ତି ପାଣ୍ଡବପକ୍ଷକୁ ଆସିବାପାଇଁ । ସେ ଦୁଃଖ ପ୍ରକାଶ କରି କହନ୍ତି, ''ଭଣଜା ଯୁଧିଷ୍ଠିର ! କ୍ଷତ୍ରିୟ ମୁଁ । ପୁଣି ରାଜା ବି । ତୁମେ ଯେମିତି ମୋ'ର ଭଣଜା, ଦୁର୍ଯ୍ୟୋଧନ ବି ସେମିତି ଭଣଜା । ତାଙ୍କ ପକ୍ଷରେ ରହିବି ବୋଲି କଥା ଦେଇଦେଇଛି । ତେଣୁ ଆଉ ତାହା ଫେରାଇ ଆଣିପାରିବି ନାହିଁ । ମୋ' ସମର୍ଥନ ଛଡ଼ା ଆଉ ଯାହା ମାଗୁଛ ମାଗ ।''

''ତା' ହେଲେ ଏତିକି ଆମ ପାଇଁ କରିବେ ମାମୁ । ଯଦି କେବେ ଆପଣଙ୍କର କର୍ଣ୍ଣଙ୍କ ସାରଥି ହେବାକୁ ପଡ଼େ, ତେବେ ତାଙ୍କ ବଳପରାକ୍ରମକୁ ନଷ୍ଟ କଲା ଭଳି ତାଙ୍କୁ ନିରୁତ୍ସାହପୂର୍ଣ୍ଣ କଥାମାନ କହିବେ ।'' ଯୁଧିଷ୍ଠିର ନିବେଦନ କରନ୍ତି ।

''ଏଇ ସାମାନ୍ୟ କଥା ମାଗିଲ ଭଣଜା ? ସେଭଳି ପରିସ୍ଥିତି କ'ଣ କେବେ ଆସିବ ? ମୁଁ କ'ଣ କେବେ ସୂତପୁତ୍ର କର୍ଣ୍ଣଙ୍କ ସାରଥି ହେବାପାଇଁ ସ୍ୱୀକୃତି ଦେବି ? ଅସମ୍ଭବ ଏ କଥା । ଆଉ କ'ଣ ମାଗୁଛ ମାଗ ।'' ଶଲ୍ୟ ହସି ହସି କହନ୍ତି ।

''ନାଇଁ ମାମୁ । ମୋର ସେଇ ଗୋଟିଏ ପ୍ରାର୍ଥନା । ତାହା ପୂରଣ କରନ୍ତୁ ।''

''ତଥାସ୍ତୁ ।'' ଶଲ୍ୟ ତାଙ୍କ ପ୍ରାର୍ଥନା ପୂରଣ କରି କହନ୍ତି ।

ଖବର ପାଇଲି ଯେ ଏଭଳି ପ୍ରାର୍ଥନା କୁଆଡ଼େ ଯୁଧିଷ୍ଠିର କୃଷ୍ଣଙ୍କ ପରାମର୍ଶରେ ହିଁ କରିଛନ୍ତି । ଏହାର ଉଦ୍ଦେଶ୍ୟ ବୁଝିପାରି ନ ଥିଲି । କିନ୍ତୁ କଥାଟାକୁ ଉଡ଼ାଇଦେଇ ନ ଥିଲି ହସି ହସି । ଭାବୁଥିଲି, ଏହାର କିଛି ଗୁରୁତ୍ୱ ଥିବ ବୋଧହୁଏ । କୃଷ୍ଣ ଜଣେ ମହାପୁରୁଷ । ତ୍ରିକାଳଦର୍ଶୀ । ସେ କ'ଣ ମିଛଟାରେ ଏ ପରାମର୍ଶ ଦେଇଛନ୍ତି ? ଆଜି ମୋର ଅନ୍ତିମ ଯୁଦ୍ଧ

ଅବସରରେ ବୁଝୁଛି ତାହାର ତାତ୍ପର୍ଯ୍ୟ । ଶଲ୍ୟ ହୋଇଛନ୍ତି ମୋ' ସାରଥି । ସେ ପଦେ ପଦେ ଯୁଧିଷ୍ଠିରଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ପାଳନ କରିଛନ୍ତି । ମତେ ଯୁଦ୍ଧବେଳେ ବାରମ୍ବାର ନିରୁତ୍ସାହିତ କରିଛନ୍ତି । ମୋର ଯାହା କିଛି ବଳବୀର୍ଯ୍ୟ ଥିଲା ତାହାକୁ ତିଳ ତିଳ କରି ଖର୍ବ କରିଛନ୍ତି । ମୋର ଯୁଦ୍ଧଭୂମିରେ ପତନର ସେ ବି ଗୋଟିଏ କାରଣ । ବଡ଼ ବିଚିତ୍ର ବୁଦ୍ଧି ବାସୁଦେବଙ୍କର ! ମାୟାଧର ସେ । ତାଙ୍କ ମାୟାରେ ପଶିବ କିଏ ? ମାତୁଳ ଶକୁନିଙ୍କ ଭଳି ଶହ ଶହ ମାୟାବୀଙ୍କୁ ଗର୍ଭସ୍ଥ କରିଦେବେ ସେ ମାୟା-ପ୍ରଦର୍ଶନରେ !!

ଦ୍ୱାରକାଧିପତି କୃଷ୍ଣଙ୍କ ସହାୟତା ସଂପର୍କୀୟ ଘଟଣାଟି । ତାହା ବି 'ସମଧିକ କୌତୁକାବହ । ସ୍ୱୟଂ ଦୁର୍ଯ୍ୟୋଧନଙ୍କ ମୁଖରୁ ଶୁଣିଥିଲି ତାଙ୍କର ଦ୍ୱାରକାରୁ ଫେରିଆସିବା ପରେ ।

ଉଭୟ ଦୁର୍ଯ୍ୟୋଧନ ଓ ଅର୍ଜୁନ ଯାଆନ୍ତି ଦ୍ୱାରକାଧିପତି କୃଷ୍ଣଙ୍କ ସହାୟତା ମାଗି । କୃଷ୍ଣ ବିଶ୍ରାମ ନେଉଥାନ୍ତି ଶଯ୍ୟାଗୃହରେ । ସେହି ଗୃହରେ ଉଭୟ ଅପେକ୍ଷା କରି ରହନ୍ତି ତାଙ୍କ ନିଦ୍ରାଭଙ୍ଗ ପର୍ଯ୍ୟନ୍ତ । ଅର୍ଜୁନ ବସନ୍ତି ପାଦତଳେ ଓ ଦୁର୍ଯ୍ୟୋଧନ ନିଜ ଅଭିମାନ ନେଇ ତାଙ୍କ ମୁଣ୍ଡ ନିକଟରେ ପଡ଼ିଥିବା ଏକ ଆସନରେ । ନିଦ୍ରା ଭଙ୍ଗ ମାତ୍ରେ ସେ ପ୍ରଥମେ ଦେଖନ୍ତି ଅର୍ଜୁନଙ୍କୁ । ପଚାରନ୍ତି ତାଙ୍କ ଆସିବାର ଅଭିଳାଷ । ଅର୍ଜୁନ ନିଜ ଅଭିଳାଷ ଜଣାନ୍ତି । ତାହା ପରେ ଦେଖନ୍ତି ଦୁର୍ଯ୍ୟୋଧନଙ୍କୁ । ସେ ମଧ୍ୟ ଜଣାନ୍ତି ଅନୁରୂପ ଅଭିଳାଷ ।

କୃଷ୍ଣ ହସି ହସି କହନ୍ତି, ''ଦେଖ ଦୁର୍ଯ୍ୟୋଧନ ଓ ଅର୍ଜୁନ ! ତୁମେ ଦୁହେଁ ମୋର ବନ୍ଧୁ । ଉଭୟ ଯୁଦ୍ଧରେ ମୋ' ସହାୟତା ପାଇଁ ଆସିଛ । ତେଣୁ ଉଭୟଙ୍କୁ ସହାୟତା ଦେବି । ଏକ ପକ୍ଷରେ ମୋର ପ୍ରବଳ ପରାକ୍ରମୀ ଏକ ଅକ୍ଷୌହିଣୀ ନାରାୟଣୀ ସେନା । ଆଉ ଅନ୍ୟ ପକ୍ଷରେ ନିରସ୍ତ୍ର ମୁଁ । ଏହିପରି ଭାବରେ ତୁମ ଦୁହିଁଙ୍କ ମଧ୍ୟରେ ସହାୟତା ଭାଗ କରିବାପାଇଁ ମୋର ବିଚାର । ଅର୍ଜୁନଙ୍କୁ ପ୍ରଥମେ ଦେଖିଛି । ତାହା ଛଡ଼ା ସେ ବୟସରେ ସାନ । ତେଣୁ ତାଙ୍କୁ ଆଗ ପଚାରିବି ସେ କ'ଣ ଚାହାନ୍ତି ? ଶସ୍ତ୍ରହୀନ ମତେ ନା ଏକ ଅକ୍ଷୌହିଣୀ ନାରାୟଣୀ ସେନା ?''

ଅର୍ଜୁନଙ୍କୁ ପଚାରିବାରେ ସେ ଉତ୍ତର ଦିଅନ୍ତି, ''ମୋର ଆପଣଙ୍କୁ ହିଁ ଲୋଡ଼ା । ନିରସ୍ତ୍ର ହୁଅନ୍ତୁ ପଛକେ ।''

''ତଥାସ୍ତୁ ।'' ତାଙ୍କ ପ୍ରାର୍ଥନା ପୂରଣ କରନ୍ତି କୃଷ୍ଣ ।

ଦୁର୍ଯ୍ୟୋଧନଙ୍କୁ ପଚାରିବା ପୂର୍ବରୁ ସେ ଖୁସି ହୋଇ କହିଦିଅନ୍ତି, ''ମୁଁ ଏକ ଅକ୍ଷୌହିଣୀ ନାରୟଣୀ ସେନା ଚାହେଁ ।''

''ତଥାସ୍ତୁ ।'' ତାଙ୍କ ପ୍ରାର୍ଥନା ମଧ୍ୟ ପୂରଣ କରନ୍ତି ସେ ।

ଦୁର୍ଯ୍ୟୋଧନ ଫେରିଆସି ମତେ ଛାତି ଫୁଲାଇ କହିଲେ, ''ଦେଖିଲ ମିତ୍ର କର୍ଣ୍ଣ, ଅର୍ଜୁନ କେତେ ନିର୍ବୋଧ ? ସେ ନିରସ୍ତ୍ର କୃଷ୍ଣଙ୍କୁ ପାଇଛନ୍ତି ସାହାଯ୍ୟ ଆକାରରେ । ପୁଣି ନିଜ ଇଚ୍ଛାରେ । ମୁଁ ପାଇଛି କ'ଣ ଜାଣ ? ଏକ ଅକ୍ଷୌହିଣୀ ନାରାୟଣୀ ସେନା ।'' ହସି ହସି ଗଡ଼ିଗଲେ ପ୍ରାପ୍ତିର ଆନନ୍ଦରେ ।

ଗମ୍ଭୀର କଣ୍ଠରେ କହିଲି, ''ଜାଣିଲି ମିତ୍ର, ତୁମେ ହିଁ ଠକିଗଲ । ଅର୍ଜୁନ କିନ୍ତୁ ନୁହନ୍ତି । ଏକମାତ୍ର ନିରସ୍ତ୍ର କୃଷ୍ଣ ଲକ୍ଷେ ଅକ୍ଷୌହିଣୀ ନାରାୟଣୀ ସେନାଠାରୁ ଅଧିକ ବିକ୍ରମଶାଳୀ । କୃଷ୍ଣ ତୁମକୁ ଭୁଲେଇ ଦେଇଛନ୍ତି କଥାରେ ।''

''ତୁମ ମୁହଁରେ ସବୁବେଳେ କୃଷ୍ଣଙ୍କ ପ୍ରଶଂସା ! ସେ କ'ଣ କି ଏମିତି ? ତୁମ ମୋ' ଭଳି ଜଣେ ବୀର ନା ଆଉ କ'ଣ ? ତାଙ୍କୁ ଏଭଳି ଅଯଥା ଗୁରୁତ୍ୱ ଦେବାଟା ପସନ୍ଦ କରେନା ମୁଁ ।'' ଦୁର୍ଯ୍ୟୋଧନଙ୍କ କଣ୍ଠରେ କୃଷ୍ଣଙ୍କ ପ୍ରତି ଅବହେଳାପୂର୍ଣ୍ଣ ଭାଷା ।

''ତୁମ ପସନ୍ଦ-ଅପସନ୍ଦରେ କିଛି ଯାଏ ଆସେ ନାହିଁ । ତାହାଦ୍ୱାରା ସେ ବଡ଼ କିମ୍ବା ଛୋଟ ହୋଇଯିବେ ନାହିଁ । ସେ ଏ ଯୁଗର ଶ୍ରେଷ୍ଠ ପୁରୁଷ ।''

''ମୁଁ କିନ୍ତୁ ସହମତ ନୁହେଁ । ମୋ' ମତରେ ସେ ଜଣେ ଧୂର୍ତ୍ତ ଗୋପାଳ । ନାନା ପ୍ରକାର କୂଟ-କପଟ କରି ଆଜି ଦ୍ୱାରକାଧିପତି ।'' ତାଙ୍କ କଣ୍ଠରେ କୃଷ୍ଣଙ୍କ ପ୍ରତି ତାଚ୍ଛଲ୍ୟପୂର୍ଣ୍ଣ ଭାଷା ।

ଆଉ ସେ ବିଷୟରେ ଆମ ଦୁହିଁଙ୍କ ମଧ୍ୟରେ ଆଲୋଚନା ହୋଇ ନ ଥିଲା ।

ସମୟ ଗଡ଼ିଯିବା ସଙ୍ଗେ ସଙ୍ଗେ ଦୁଇ ପକ୍ଷର ସୈନ୍ୟସଂଗ୍ରହ କ୍ରମେ କ୍ରମେ ସୁଦୃଢ଼ ହେବାରେ ଲାଗିଛି । କୌରବମାନଙ୍କର ଏଗାର ଅକ୍ଷୌହିଣୀ ସୈନ୍ୟ ଓ ପାଣ୍ଡବମାନଙ୍କର ସାତ ଅକ୍ଷୌହିଣୀ ସୈନ୍ୟ ସଂଗୃହୀତ । ପ୍ରତ୍ୟେକ ଅକ୍ଷୌହିଣୀ ସୈନ୍ୟଙ୍କ ଦାୟିତ୍ୱରେ ଜଣେ ଜଣେ ଅଧ୍ୟକ୍ଷ । ସାମଗ୍ରିକ ସୈନ୍ୟବଳର ସେନାପତି ନିର୍ବାଚନ ତଥାପି ବାକି । ଯୁଦ୍ଧାରମ୍ଭର ଦୁଇ ଦିନ ପୂର୍ବରୁ ହୋଇଯିବାର ସମ୍ଭାବନା । ସେ ସଂପର୍କରେ ଆଲୋଚନା ତଥାପି ଅସମାପ୍ତ । କୌରବପକ୍ଷର ଏଗାର ଜଣ ଅଧ୍ୟକ୍ଷ ହେଲେ କୃପାଚାର୍ଯ୍ୟ, ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, ଶଲ୍ୟ, ସିନ୍ଧୁରାଜ ଜୟଦ୍ରଥ, କାମ୍ବୋଜରାଜ ସୁଦକ୍ଷିଣ, କୃତବର୍ମା, ମୁଁ ନିଜେ, ଭୂରିଶ୍ରବା, ଶକୁନି ଓ ବାହ୍ଲୀକ । ପାଣ୍ଡବପକ୍ଷର ସାତ ଜଣ ଅଧ୍ୟକ୍ଷ ହେଲେ ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଚେକିତାନ, ସାତ୍ୟକି ଓ ଭୀମସେନ । ଆଜି ସିନା ଗୋଟିଏ ଅକ୍ଷୌହିଣୀ ସେନାବଳର ଅଧ୍ୟକ୍ଷ ଦାୟିତ୍ୱ ମତେ ସମର୍ପିତ । କିନ୍ତୁ ପରେ ଏଭଳି ପରିସ୍ଥିତି ଆସିଛି ଯାହା ଫଳରେ ଯୁଦ୍ଧର ପ୍ରଥମ ଦଶଟି ଦିନ ସେଇ ଦାୟିତ୍ୱଟି ନେଇପାରି ନାହିଁ । ଖାଲି ସେଇ ଦାୟିତ୍ୱ କ'ଣ, ଯୁଦ୍ଧରେ ବି ଭାଗ ନେଇପାରି ନାହିଁ । ବଡ଼ ଲଜ୍ଜାକର ସେଇ ପରିସ୍ଥିତି । ଖୁବ୍ ଆଘାତ ପାଇଛି ସେଥିରେ । ବାରମ୍ବାର ମନକୁ ପଚାରିଛି— ସାରା ଜୀବନଟା କ'ଣ ଆଘାତ ପାଇବାପାଇଁ କର୍ଣ୍ଣର ଜନ୍ମ ? ତା'ହେଲେ ବିଧାତା ତା'କୁ ଏଭଳି ହୀନଜନ୍ମ ଦେଲେ କାହିଁକି ? ଆଉ ଯଦି ଦେଲେ, ତା' ହେଲେ ତା' ମଧ୍ୟରେ ଜଣେ ବୀରର ସହଜାତ ଆଶା-ଆକାଙ୍କ୍ଷା ଭରିଦେଲେ କାହିଁକି ? ନିରୁପାୟ ହୋଇ ସବୁ କଥା ସହିଯାଇଛି ଗତ ଦିନଗୁଡ଼ିକର ଘଟଣାବଳୀ ଭଳି । ସେ କଥା ସମୟ ଆସିଲେ ପରେ କହିବି ।

ପରସ୍ପର ଆଲୋଚନା ମାଧ୍ୟମରେ ଯୁଦ୍ଧର ସ୍ଥାନ ମଧ୍ୟ ନିରୂପିତ । ଧର୍ମକ୍ଷେତ୍ର କୁରୁକ୍ଷେତ୍ର ସେଇ ସ୍ଥାନ । ହସ୍ତିନାପୁରର ନିକଟରେ ।

ଯୁଦ୍ଧର ଆରମ୍ଭ ଦିବସ ମଧ୍ୟ ନିରୂପିତ । ମାର୍ଗଶୀର୍ଷ ମାସର କୃଷ୍ଣ ପକ୍ଷ ଦ୍ୱିତୀୟା ତିଥି । ତିଥିଟି କିନ୍ତୁ ବଡ଼ ଅଶୁଭ । କୁରୁରାଜ୍ୟର ରାଜଜ୍ୟୋତିଷ ବାରଣ କରୁଥିଲେ ଏଇ ତିଥିଟି ପାଇଁ । କାରଣ ଏଥିରେ ମହାସଂହାରର ଯୋଗ ଅଛି । ସାତ ସାତଟା ଗ୍ରହର ଏକତ୍ର ସଂଯୋଗ । ବଡ଼ ଅଶୁଭ । କିନ୍ତୁ ଏହା ଶକୁନିଙ୍କ ଦ୍ୱାରା ସ୍ଥିରୀକୃତ । ତେଣୁ ଦୁର୍ଯ୍ୟୋଧନ ଏଇ ତିଥିଟି ପାଇଁ ଅଟଳ । ବିନା ଦ୍ୱିଧାରେ ମହାରାଜ ବାଧ୍ୟ ହୋଇ ଦେଲେ ସ୍ୱୀକୃତି ।

ତିଥି ନିର୍ବାଚନ ପୁଣି ପ୍ରଥମେ କରିଛନ୍ତି ଦୁର୍ଯ୍ୟୋଧନ । ଉପପ୍ଳବ୍ୟ ନଗରକୁ ଦୂତ ପଠାଇ ଯୁଧିଷ୍ଠିରଙ୍କୁ ରାଜି କରାଇ ନେଇଛନ୍ତି । ଶୁଣିଲି, ତାଙ୍କ ପୁରୋହିତ ଧୌମ୍ୟ କୁଆଡ଼େ ଏଇ ପ୍ରଳୟସୂଚକ ତିଥିଟିକୁ ଗ୍ରହଣ ନ କରିବାପାଇଁ ପରାମର୍ଶ ଦେଇଥିଲେ ଯୁଧିଷ୍ଠିରଙ୍କୁ । କିନ୍ତୁ ଯୁଧିଷ୍ଠିର କହିଥିଲେ, ''ସୁଯୋଧନ ମୋର ଅନୁଜ । ତାଙ୍କ ପକ୍ଷରୁ ଯେତେବେଳେ ତିଥି ନିର୍ବାଚନର ପ୍ରସ୍ତାବଟି ଆସିଛି, ତାହାକୁ ଗ୍ରହଣ କରିନେବା ମୋର ଉଚିତ । ନ ହେଲେ ସେ ମନ କଷ୍ଟ କରିବେ ।''

''ହଁ, ହଁ, ତାହା ନୁହେଁ ତ ଆଉ କ'ଣ ?'' ଯାଦବପତି କୃଷ୍ଣଙ୍କ ସହମତି । ଆଉ ତାଙ୍କ ମୁଖମଣ୍ଡଳରେ ଚିରପରିଚିତ ସେଇ ରହସ୍ୟମୟ ଦରଦର ହସ । କାହାର ବିନାଶକୁ ଆଖି ଆଗରେ ରଖି ସେ ହସୁଥିଲେ ଏଇ ହସ, ତାହା କେବଳ ତାଙ୍କୁ ହିଁ ଜଣା ।

ତିଥି ନିର୍ବାଚନରେ ଶକୁନିଙ୍କ ଭୂମିକା ସଂପର୍କରେ ଯେତେବେଳେ ଜାଣିବାକୁ ପାଇଲି, ସେତେବେଳେ ଅନେକ କିଛି ଭାବନା ଛୁଇଁଲା ମୋ' ମନକୁ । ସେଦିନ ସେ ଦ୍ୟୂତକ୍ରୀଡ଼ା ଲାଗି ଦାରୁଣ ତିଥିଟିକୁ ନିର୍ବାଚନ କରିଥିଲେ । ତାହା ଫଳରେ ଭବିଷ୍ୟତର ମହାସମରର ବୀଜଟି ପୋତା ହୋଇଥିଲା । ଆଜି ବି ପୁଣି ସେଇ ମହାସମରର ତିଥି ନିର୍ବାଚକ ସେଇ । ଏହା ଜାଣିଶୁଣି କରୁ ନାହାନ୍ତି ତ ଆଉ କ'ଣ ? କ'ଣ ଚାହାନ୍ତି ସେ ? କୌରବମାନଙ୍କ ମଙ୍ଗଳ ନା ଧ୍ୱଂସ ? ତାଙ୍କ କୂଟକପଟର ଜାଲକୁ ଛିନ୍ନ କରିବା ମୋ' ପକ୍ଷରେ ଏକାନ୍ତ ଦୁରୂହ । ଭାବି ଭାବି ସେମିତି ରହିଲି ସିନା, ପହଞ୍ଚିପାରିଲି ନାହିଁ କୌଣସି ନିର୍ଣ୍ଣୟରେ ।

ଉପପ୍ଳବ୍ୟ ନଗରୀ କୁରୁକ୍ଷେତ୍ରଠାରୁ ଖୁବ୍ ଦୂରରେ । ତେଣୁ ଆଗରୁ ପାଣ୍ଡବବାହିନୀ ଯୁଦ୍ଧଭୂମି ଅଭିମୁଖରେ ଆରମ୍ଭ କରିଦେଇଛି ଅଭିଯାନ । ଯୁଦ୍ଧାରମ୍ଭର ଅନ୍ତତଃ ଦିନେ ଦୁଇ ଦିନ ପୂର୍ବରୁ କୁରୁକ୍ଷେତ୍ରରେ ଶିବିର ପକାଇବେ । ତାହା ହସ୍ତିନାପୁରର ଖୁବ୍ ନିକଟରେ । ତେଣୁ କୌରବବାହିନୀ ଯାତ୍ରା ଆରମ୍ଭ କରି ନାହାନ୍ତି । ପାଣ୍ଡବବାହିନୀର ଗତିବିଧିକୁ ଲକ୍ଷ୍ୟ ରଖିଛନ୍ତି । ଉପଯୁକ୍ତ ସମୟରେ କରିବେ ଯାତ୍ରାରମ୍ଭ ।

ଏହିପରି ଯୁଦ୍ଧାରମ୍ଭର ଘଟଣାବହୁଳ ପୂର୍ବ ଦିବସଗୁଡ଼ିକ ବିତିଯିବାକୁ ଲାଗିଲା । ସମସ୍ତଙ୍କ ମନରେ ଆଶଙ୍କା । ଛାତିରେ ଭୟ । କେବେ ସେଇ ଅଶୁଭ ମୁହୂର୍ତ୍ତଟି ଆସିବ । ଆଉ କେଉଁଭଳି ପ୍ରଳୟଙ୍କରୀ ମୂର୍ତ୍ତି ଧରି ? କିଏ ରହିବ ଓ କିଏ ଯିବ ? କିଏ ହସିବ ? ପୁଣି କିଏ କାନ୍ଦିବ ? କିଏ ଜିଣିବ ? ଆଉ କିଏ ହାରିବ ? ହାୟ ! ବଡ଼ ଦୟନୀୟ ଏ ମାନସିକ ସ୍ଥିତି !! କେବଳ ମଣିଷକୁ ଦାୟୀ କରାଯାଇପାରେନା ଏଥିପାଇଁ । ଏକମାତ୍ର ଦୈବ ହିଁ ଦାୟୀ । କାରଣ ବିଚରା ମଣିଷ ତ ଅସହାୟ କ୍ରୀଡ଼ନକ ଭଳି ଦୈବଦ୍ୱାରା ଚାଳିତ !

## ଛଅସ୍ତରି

ଯୁଦ୍ଧାରମ୍ଭ ପାଇଁ ତଥାପି ବାକି ଅଛି ପାଞ୍ଚ ଦିନ । ସୂର୍ଯ୍ୟାସ୍ତ ସମୟ । ଗଙ୍ଗାତୀରକୁ ଯାଇ ସଂଧ୍ୟାସ୍ନାନ କରୁଥାଏ ମୁଁ । ସୂର୍ଯ୍ୟଦେବ ଲାଲିମାର ଅପରୂପ ସୌନ୍ଦର୍ଯ୍ୟରେ ପରିଶୀଳିତ ଥାଇ ହସୁଥାନ୍ତି ପଶ୍ଚିମାକାଶରେ । ନୀଡ଼ବାହୁଡ଼ା ବିହଗମାନଙ୍କର କଳ କଳ କାକଳିସ୍ୱରରେ ଗଗନ ମୁଖରିତ । କ୍ରୀଡ଼ାରତ ଚକ୍ରବାକମିଥୁନ ବିଦାୟର ଅବ୍ୟବହିତ ପୂର୍ବରୁ ଏବେ ଶେଷ ଚଞ୍ଚୁଲଗ୍ନ ଅବସ୍ଥାରେ । ଆଉ ଅଳ୍ପ ସମୟ ଗଲେ ବିଚ୍ଛିନ୍ନ ହେବେ ପରସ୍ପରଠାରୁ ଗୋଟିଏ ରାତି ପାଇଁ । ଦିବସର ଆଲୋକ ବି ଧରଣୀଠାରୁ ବିଦାୟ ନେବା ପାଇଁ ପ୍ରସ୍ତୁତ । ଚାରିଆଡ଼େ କେମିତି ଗୋଟାଏ ବିଦାୟକାଳୀନ କରୁଣିମାର ଅନୁଲେପ ! ଗଙ୍ଗାର ଛଳ ଛଳ ଧାରା ଯେମିତି ହରାଇ ବସିଛି ତାହାର ସ୍ୱାଭାବିକ ମଧୁରିମା । ଉଚ୍ଛୁଳି ଉଠୁଛି ଯେମିତି ବୁକୁ ଥରାଇ ଚାପା କ୍ରନ୍ଦନରେ ! ମୁଁ ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ପୂଜାର୍ଘ୍ୟ ଅର୍ପଣ କରୁଥିବା ଅବସରରେ ସ୍ତୁତିମନ୍ତ୍ର ବୋଲୁଛି –

ନମଃ ସବିତ୍ରେ ଜଗଦେକଚକ୍ଷୁଷେ
ଜଗତ୍ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ
ବିରଞ୍ଚି ନାରାୟଣଶଙ୍କରାତ୍ମନେ ।।
ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ
ହାରୀ ହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ।।

ସଂଧ୍ୟା ପୂଜା ସାରି ତୁଠପଥରରେ ରଖାଯାଇଥିବା ଅଧୋବାସ ପିନ୍ଧିଲି । ଉତ୍ତରୀୟଟି କାନ୍ଧରେ ପକାଇଲି । ତାହା ପରେ ଧୀରେ ଧୀରେ ଉଠିଲି ଉପରକୁ । ମୋ' ରଥଟି ଥିଲା କିଛି ଦୂରରେ । ଚାଲି ଚାଲି ସେହି ଦିଗକୁ ଗଲି । ପଥପାର୍ଶ୍ୱରେ ଗୋଟିଏ ବିରାଟ ବଟବୃକ୍ଷ । ତାହାର ଅନ୍ତରାଳରେ ଠିଆ ହୋଇଛନ୍ତି କେହି ଜଣେ । ନାରୀ ଭଳି ଜଣା ପଡୁଛନ୍ତି । ଦୁର୍ବାର ସାନ୍ଧ୍ୟପବନର ଆଘାତରେ ତାଙ୍କ ପଣତକାନିର କିଛିଟା ଅଂଶ ଉଡ଼ିବା ଫଳରେ ତାଙ୍କ ନାରୀ ପରିଚୟର ସୂଚନା ଦେଇଦେଉଛି । ମନେ ମନେ ଭାବୁଥାଏ, କିଏ ଏହି ନାରୀମୂର୍ତ୍ତି ହୋଇପାରନ୍ତି ? କାହିଁକି ଠିଆ ହୋଇଛନ୍ତି ଏଠି ମୋ' ଗମନପଥରେ ? ପୁଣି ମାର୍ଗଶୀର୍ଷ ମାସର ଏଇ ଶୀତାକୁଳ ସଂଧ୍ୟାଲଗ୍ନରେ ? କ'ଣ ତାଙ୍କର ଅଭିଳାଷ ? ପାଖକୁ ଯାଇ ଦେଖିଲି ମୁହଁ ଆଡ଼ କରି ଠିଆ ହୋଇଛନ୍ତି ସେ । ଭାବମୂର୍ତ୍ତିରୁ ଜଣାପଡୁଛି ଜଣେ ସମ୍ଭ୍ରାନ୍ତ ବଂଶର ମହିଳା । ତାଙ୍କୁ ଚିହ୍ନି ନ ପାରି ପଚାରିଲି, "କିଏ ଆପଣ ଦେବୀ ?"

"ଦେବୀ ନୁହେଁ, ମାଆ । ମତେ ମାଆ ବୋଲି ଡାକ ।" ସେ ଥରିଲା ଥରିଲା କଣ୍ଠରେ କହିଲେ । ତଥାପି ମୁହଁ ରଖିଥାନ୍ତି ସେ କଡ଼କୁ । ମୋ' ଆଡ଼କୁ ମୁହଁ କରି ନ ଥାନ୍ତି । ତାଙ୍କ କଣ୍ଠସ୍ୱରରୁ ଜଣାପଡୁଥାଏ ଖୁବ୍ ଦୁଃଖିନୀ ସେ । ଭାରି ମାନସିକ କଷ୍ଟ ପାଉଛନ୍ତି ହୁଏତ ।

''ହଁ, ମାଆ ନୁହେଁ ତ ଆଉ କ'ଣ ? ସକଳ ନାରୀ ତ ମୋ' ମାଆ । ଆପଣ ବି ସେମିତି ମୋ' ମାଆ ।'' ବିନୀତ ସ୍ୱରରେ କହିଲି ।

''ମୁଁ ସେ ମାଆ ନୁହେଁ ପୁତ୍ର । ଯାହାର କୋଳରେ ଥାଇ ତୁମେ ପ୍ରଥମ ଥର ପାଇଁ ଦେଖିଥିଲ ଧରଣୀର ଆଲୋକକୁ, ମୁଁ ସେଇ ମାଆ ।'' ଏହା କହି ସେ ତାଙ୍କ ମୁହଁ ବୁଲାଇଦେଲେ । ଚକିତବିସ୍ମୟରେ ଦେଖିଲି ତାଙ୍କ ମୁହଁକୁ । ଛଳ ଛଳ କରୁଣାୟିତ ନେତ୍ରଯୁଗଳ । ବାହୁଦ୍ୱୟ ମତେ ଆଲିଙ୍ଗନ କରିବାକୁ ଉଦଗ୍ର । ଅଥଚ କି ଏକ ସଙ୍କୋଚରେ ତାହା ହୋଇପାରୁ ନାହିଁ ଲମ୍ବିତ । ଅସହାୟ ଚାହାଣିରେ ଚାହିଁରହିଛନ୍ତି ମତେ । ଏ ଆଉ କେଉଁ ନାରୀ ନୁହନ୍ତି । ସ୍ୱୟଂ ପାଣ୍ଡୁମହିଷୀ କୁନ୍ତୀଦେବୀ । ପାଣ୍ଡବ ଜନନୀ । ଆମ ସମସ୍ତଙ୍କର ପାଇଁ ପରିଚିତା ସାନରାଣୀମା' ନାମରେ । ମୋର ଚିରବନ୍ଦନୀୟା ।

''ଏ ସୂତପୁତ୍ର କର୍ଣ୍ଣର ପ୍ରଣାମ ଗ୍ରହଣ କରନ୍ତୁ ସାନରାଣୀମା' । କହନ୍ତୁ ଏ କର୍ଣ୍ଣ ଆପଣଙ୍କର କି ସେବା କରିପାରେ ?'' ଅବନତ ଶିରରେ କହିଲି ଓ ଠିକ୍ ସେମିତି ଠିଆ ହୋଇ ରହିଲି ଜଣେ ଅନୁଗତ ବ୍ୟକ୍ତି ଭଳି ।

କି ଏକ ଭାବାବେଗରେ ସେ ଲାଗି ଆସିଲେ ମୋ' ନିକଟକୁ । ମୋ' ଚିବୁକଟିକୁ ଟେକି ଧରି କହିଲେ, ''ସବୁ ଲାଜ ଛାଡ଼ି ଆଜି ତୁମ ପାଖକୁ ଆସିଛି ପୁତ୍ର । ସାନରାଣୀମା' ଡାକି ଆଉ ଅଧିକ ଲାଜ ଦିଅନା ମତେ । ଭାରି କଷ୍ଟ ଲାଗୁଛି । ସାରା ଜୀବନ ବହୁ ଦୁଃଖକଷ୍ଟ ସହିଛି । ଏ ବୃଦ୍ଧାବସ୍ଥାରେ ଆଉ ଅଧିକ କଷ୍ଟ ସହିବାର ସାମର୍ଥ୍ୟ ନାହିଁ ମୋର ।

''ମନରେ ଯଦି କଷ୍ଟ ଦେଇଥାଏ ସେଥିପାଇଁ ଦୁଃଖିତ । କିନ୍ତୁ ବିଚରା ସୂତପୁତ୍ରର ଆଉ ଚାରା ବା କ'ଣ ? ଆଉ କି ଭଙ୍ଗୀରେ ବା ସେ ସମ୍ବୋଧନ କରିପାରିବ ପାଣ୍ଡୁମହିଷୀଙ୍କୁ ?''

''ମୁଁ ତୁମ ପାଖରେ କେବଳ ପାଣ୍ଡୁମହିଷୀ ନୁହେଁ ପୁତ୍ର । ତୁମ ଗର୍ଭଧାରିଣୀ ମାଆ । ତୁମ କଅଁଳ ମୁହଁଟିକୁ ଦେଖିବାପାଇଁ ଦଶମାସ ଦଶଦିନ ଗର୍ଭର ବେଦନା ଯେ ସହିଥିଲା ସେହି ମାଆ । ଜରାୟୁର ଦ୍ୱାରକୁ ଛିନ୍ନ-ଭିନ୍ନ କରି ତୁମେ ବାହାରର ଆଲୋକ ଦେଖିବା ଅବସରରେ ଯେଉଁ ଆଲୋକର ବନ୍ୟା ମୋ' ହୃଦୟରେ ବୁହାଇ ଦେଇଥିଲ ମୁଁ ସେଇ ମାଆ । ତୁମେ ସୂତପୁତ୍ର ନୁହଁ, ସୂର୍ଯ୍ୟପୁତ୍ର । ପ୍ରଥମ ପାଣ୍ଡବ । ପଞ୍ଚ ପାଣ୍ଡବଙ୍କ ଅଗ୍ରଜ ।'' ତାଙ୍କ ଭାବଗଦ୍‌ଗଦ କଣ୍ଠସ୍ୱର ପ୍ରଳୟର ବନ୍ୟାଭଳି ଭସାଇନେଲା ମୋ' ଅଭିମାନର ପାହାଡ଼କୁ । ସୂର୍ଯ୍ୟରଶ୍ମିର ସଂପାତରେ ନବନୀତ ଭଳି ତରଳିଗଲି । ସମଧିକ ଥର ଥର କଣ୍ଠରେ କହିଲି, ''ଏହା ଭିତରେ ସବୁ କଥା ମତେ କହିଦେଇଛନ୍ତି ବାସୁଦେବ । ବତାଇ ଦେଇଛନ୍ତି ମୋ' ଜନ୍ମରହସ୍ୟ ।''

''ଏହା ଜାଣି ମଧ୍ୟ ତୁମେ ଏପର୍ଯ୍ୟନ୍ତ ମତେ ମାଆ ବୋଲି ଡାକି ନାହିଁ । ମୋ' କୋଳରେ ମୁଣ୍ଡ ଗୁଞ୍ଜିଦେଇ ନାହଁ । ଏ ମାଆ କ'ଣ ତୁମର ଏଡ଼େ ଅଭାଗିନୀ !'' ଏହା କହି ସେ ପିଲାଙ୍କ ଭଳି ଭଳି କଇଁ କଇଁ ହୋଇ କାନ୍ଦି ଉଠିଲେ ।

''ମାଆ ! କାନ୍ଦ ନାଇଁ ମା । କ୍ଷମା କର ଏଇ ଅଭିମାନୀ ପୁତ୍ରକୁ ।'' ଏହା କହି ତାଙ୍କ ଉଦ୍‌ଗତ ଅଶ୍ରୁକୁ ପୋଛିଦେଲି ନିଜ ଉତ୍ତରୀୟରେ । ଆଉ ଲୋଟିଗଲି ତାଙ୍କ ସ୍ନେହୋଚ୍ଛଳ ବକ୍ଷରେ ।

"ଥରେ ନୁହଁ । ଦୁଇ ଥର ନୁହଁ । ଶହେ ଥର ଡାକ ମାଆ ବୋଲି । ଦୀର୍ଘଦିନଗୁଡ଼ିକର ଅଶୁଣା ଡାକରେ ଆଜି ଛାତିତଳ ମୋର ଶୀତଳ ହେଉ ।" ବାଷ୍ପାକୁଳ ନେତ୍ରରେ କହିଲେ ସେ ।

"ମାଆ ! ମାଆ !" ଆଉ ଅଧିକ ଡାକିପାରିଲି ନାହିଁ । ଆବେଶରେ କଣ୍ଠ ମୋର ବାଷ୍ପରୁଦ୍ଧ । ମାଆ ମୋର ଶିରକୁ ବାରମ୍ବାର ଆଘ୍ରାଣ କରିବାକୁ ଲାଗିଲେ । ବହୁ ସମୟ ଧରି ଆଖି ବୁଜି ରହିଗଲି ଏଇଭଳି ଅବସ୍ଥାରେ । ମୁଗ୍ଧ ପଲକର ଅନୁଭବ । ଲାଗୁଥିଲା, ସତେ ଯେମିତି ହରାଇ ବସିଛି ଆତ୍ମସତ୍ତା ! ହୋଇଯାଇଛି ମହାଶୂନ୍ୟ ! ନା, ନା, ମହାଶୂନ୍ୟ ନୁହେଁ । ବରଂ ମହାପୂର୍ଣ୍ଣ । ଏଭଳି ପୂର୍ଣ୍ଣ ଯେ ତାହାର ଆଦି ନାହିଁ କି ଅନ୍ତ ନାହିଁ ମୋର କ୍ଷୁଦ୍ର ସତ୍ତାଟି କେଉଁଠି ହଜିଯାଇଛି ତାହା ଭିତରେ ଯେ ଖୋଜି ଖୋଜି ପାଉ ନାହିଁ !

କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ପଚାରିଲି, "ମାଆ । ଏ ଅଭିମାନୀ ପୁତ୍ର ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ । କିଛି ନ ଭାବିଲେ ପଚାରିବି ।"

"ଗୋଟିଏ ପ୍ରଶ୍ନ କାହିଁକି ? କୋଟିଏ ପ୍ରଶ୍ନ ପଚାରିପାର । ସବୁ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ମୁଁ । ଶତ ଶତ ତଟିନୀର ପ୍ରବାହକୁ ସାଗର ନିଜ ବୁକୁରେ ଗ୍ରହଣ କରିନେଲା ଭଳି ତୁମର ସକଳ ପ୍ରଶ୍ନକୁ ଗ୍ରହଣ କରିନେବି ।" ଆବେଗଭରା ତାଙ୍କ ଉତ୍ତର ।

"କହନ୍ତୁ ମାଆ, ଆପଣ କାହିଁକି ମତେ ଭସାଇଦେଲେ ନଦୀଜଳରେ ବିଧାତାଦତ୍ତ ମାତୃସ୍ତନ୍ୟର ଆଦ୍ୟ ଅମୃତରୁ ବଞ୍ଚିତ କରି ? କାହିଁକି କରିଦେଲେ ମତେ କୁଳଶୀଳହୀନ ? ଦୁନିଆର ଅଗୋଚରରେ କାହିଁକି ରଖିଦେଲେ ମୋ' ପରିଚୟକୁ ? କାହିଁକି ମତେ ଦୂରେଇଦେଲେ ମୋ' ପ୍ରାଣପ୍ରିୟ ଅନୁଜମାନଙ୍କ ପାଖରୁ ? କାହିଁକି ମତେ ଦୀର୍ଘଦିନ ଧରି ଭୋଗାଇଲେ ସାମାଜିକ ଅବହେଳା ଓ ନିର୍ଯାତନା ? ଯେଉଁ ଅନ୍ତର୍ବେଦନା ନିରନ୍ତର ଗୁମୁରି ଉଠୁଥିଲା ମୋ' ହୃଦୟରେ, ତାହାର ପ୍ରତିଧ୍ୱନି କ'ଣ ସାମାନ୍ୟତମ ଭାବରେ ଅନୁରଣିତ ହେଉ ନ ଥିଲା ଆପଣଙ୍କ ହୃଦୟରେ ?" ମୋ' ପ୍ରଶ୍ନରେ ଥିଲା କିଛିଟା କଠୋରତା ।

"ସବୁ ହେଉଥିଲା ପୁତ୍ର, ସବୁ ହେଉଥିଲା । କିନ୍ତୁ ବିବଶ ମୁଁ । ତୁମକୁ ତ ବାସୁଦେବ ସବୁ କଥା କହିଛନ୍ତି । ଆଉ ସେହି ପ୍ରଶ୍ନ ପଚାରି ମତେ ଅପମାନିତା କରୁଛ କାହିଁକି ? ଭର୍ତ୍ସନା କରୁଛ କାହିଁକି ?"

"ଅପମାନ ଦେବା କିମ୍ବା ଭର୍ତ୍ସନା କରିବା ମୋର ଉଦ୍ଦେଶ୍ୟ ନୁହେଁ ମାଆ । କ୍ଷମା କରିବେ ଯଦି ଆପଣଙ୍କୁ ଏଇ ପ୍ରଶ୍ନ କିଛି ଆଘାତ ଦେଇଥାଏ । ପୁତ୍ର ହିସାବରେ ମୋ' ଜନ୍ମଗତ ଅଧିକାର ନେଇ ଏଇ ପ୍ରଶ୍ନ ପଚାରିଛି ଆପଣଙ୍କୁ ।" ବିନୀତ ଭାବରେ କହିଲି ।

"ତୁମେ ଥିଲ ମୋର କାନୀନ ପୁତ୍ର । ସମାଜର ଭୟରେ ବିବଶ ହୋଇ ତୁମକୁ କରିଥିଲି ବିସର୍ଜନ । ସେହିଦିନୁ ପ୍ରାଣ ମୋର କିପରି ଯେ କାନ୍ଦି ଉଠୁଥିଲା ଅହରହ ତାହା ଭଗବାନ୍ ଜାଣନ୍ତି ।" କାନ୍ଦି କାନ୍ଦି କହିଲେ ସେ ।

"ମୋ' ପ୍ରାଣ ତ କମ୍ କାନ୍ଦି ନାହିଁ ମାଆ !"

"ତୁମେ ତ ଦେଖିଛ ପୁତ୍ର ଅସ୍ତ୍ରପରୀକ୍ଷା ସମୟରେ ମୋର ମନଃସ୍ଥିତି । ଯେତେବେଳେ ତୁମର ପୁତ୍ର ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କଥା ଉଠିଲା ଏବଂ କୃପାଚାର୍ଯ୍ୟ ତୁମକୁ ସୂତପୁତ୍ର

ବୋଲି କହି ତହିଁରୁ ନିବୃତ୍ତ କରାଇଲେ, ସେତେବେଳେ ଗଭୀର ଦୁଃଖରେ ମୂର୍ଚ୍ଛିତ ହୋଇଯାଇଥିଲି । ମୂର୍ଚ୍ଛାଭଙ୍ଗ ପରେ ପୁତ୍ର ଦୁର୍ଯ୍ୟୋଧନ ତୁମକୁ ଅଙ୍ଗରାଜପଦରେ ଭୂଷିତ କରିଥିବା କଥା ଶୁଣି ହୋଇଉଠିଥିଲି ଖୁବ୍ ଆନନ୍ଦିତ । ଚାହୁଁଥିଲି ତୁମର ଅର୍ଜୁନଙ୍କ ସହିତ ଯୁଦ୍ଧ ନ ହେଉ । କେଉଁ ମାଆ ବା ଚାହିଁବ ଦୁଇ ସହୋଦର ସନ୍ତାନଙ୍କ ମଧ୍ୟରେ ସଂଘର୍ଷ ? ତୁମେ ତ ସବୁ ଦେଖିଛ ପୁତ୍ର ।'

''ହଁ, ଦେଖିଛି । କିନ୍ତୁ ମୋର ଅର୍ଜୁନଙ୍କ ସହିତ ଯେଉଁ ସଂଘର୍ଷକୁ ଆପଣ ଭୟ କରୁଛନ୍ତି ତାହା ହେବ ହିଁ ହେବ । ତାହା ନିୟତିର ଲିଖନ ।''

''କାହିଁକି ପୁତ୍ର ?''

''ମୁଁ ଦୁର୍ଯ୍ୟୋଧନଙ୍କ ପକ୍ଷକୁ ସମର୍ଥନ କରିବାପାଇଁ ବିବଶ । ଯେଉଁ ବିବଶତାର କାରଣରୁ ଆପଣ ମତେ ଦୂରେଇ ଦେଇଥିଲେ ସଦ୍ୟଜାତ ଶିଶୁ ଅବସ୍ଥାରେ, ସେଇ ବିବଶତା ମତେ ବାଧ କରୁଛି ଦୁର୍ଯ୍ୟୋଧନଙ୍କ ପକ୍ଷକୁ ସମର୍ଥନ କରିବାପାଇଁ । ସେଥିପାଇଁ ପ୍ରତିଶ୍ରୁତିବଦ୍ଧ ମୁଁ ।''

''କିନ୍ତୁ ମୁଁ ତ ଆଜି ତୁମକୁ ନିଜ କୋଳକୁ ଫେରାଇନେବା ପାଇଁ ଆସିଛି ପୁତ୍ର । ଯେଉଁ କୋଳ ତୁମର ଜନ୍ମଗତ ଦାବି ତାହା ତୁମକୁ ଦେଇଦେବା ପାଇଁ ଆସିଛି । ତୁମେ ପାଣ୍ଡବ ଶିବିରକୁ ଫେରିଯିବ । ଅଗ୍ରଜ ଭାବରେ ସେମାନଙ୍କ ହୃଦୟସିଂହାସନରେ ବସିବ । ତୁମେ ହେବ ହସ୍ତିନାପୁରର ଭାବୀ ରାଜା । ଆସ ପୁତ୍ର, ଏବେ ଫେରିଆସ । ଚିରଦୁଃଖିନୀ ମାଆର ଶୂନ୍ୟ କୋଳକୁ ଫେରିଆସ ।'' ତାଙ୍କ କଣ୍ଠସ୍ୱରରେ କାତରତାର ସନ୍ତରଣ । ମତେ ଫେରାଇନେବାପାଇଁ ସ୍ନେହୋଚ୍ଛଳ ଉଦଗ୍ର ବାହୁ ପ୍ରସାରିତ ।

''ଆପଣ ବହୁତ ବିଳମ୍ବରେ ଆସିଲେ ମାଆ । ପରିସ୍ଥିତି ବର୍ତ୍ତମାନ ସଂପୂର୍ଣ୍ଣ ରୂପେ ବଦଳି ଯାଇଛି । ମୁଁ ସୂତପୁତ୍ରର ପରିଚୟ ନେଇ ବଞ୍ଚିଛି । ସେଇ ପରିଚୟରେ ହିଁ ଆଖି ବୁଜିବି । ଆପଣଙ୍କୁ ଅନୁରୋଧ, ଏ କଥା ମୋ' ଜୀବଦ୍ଦଶାରେ ଆଉ କେହି ଯେମିତି ନ ଜାଣନ୍ତି । ଆପଣ ଗୋପନ ରଖିବେ ଏହାକୁ ।''

''କିନ୍ତୁ କାହିଁକି ? ମୁଁ ଏବେ ଷଷ୍ଠ ପାଣ୍ଡବଙ୍କ ଜନନୀ ବୋଲି ନିଜ ପରିଚୟ ଦେବାକୁ ଚାହେଁ । ଜଗତ ଯାହା କହୁ ପଛକେ । ମୁଁ ଜାଣିଶୁଣି କାହିଁକି କରିବି ମାତୃତ୍ୱର ଅବମାନନା ? ଆଉ ସନ୍ତୁଳି ହେଉଥିବି ଚିରଦିନ ସେଥିପାଇଁ ?''

''ମୁଁ କିନ୍ତୁ ମାଆ, ପ୍ରଥମ ପାଣ୍ଡବର ଅଥବା ପ୍ରଥମ କୌନ୍ତେୟର ପରିଚୟ ଦେବାକୁ ଚାହେନା ଜୀବଦ୍ଦଶାରେ । ତାହାର କାରଣ, ପୂର୍ବରୁ ଯାହା କହିଥିଲି, ବିବଶତା । ଆପଣଙ୍କ କଥା ସଂପୂର୍ଣ୍ଣ ରଖିପାରୁ ନାହିଁ । କ୍ଷମାଦେବେ ଏତିକି ପ୍ରତିଶ୍ରୁତି ଦେଉଛି ଯେ ଆପଣ ପଞ୍ଚପାଣ୍ଡବଙ୍କ ଜନନୀ ହୋଇ ଅଛନ୍ତି । ଆଉ ଭବିଷ୍ୟତରେ ରହିଥିବେ ମଧ୍ୟ ।''

''ଆଉ ମୋ' ଷଷ୍ଠ ପାଣ୍ଡବ ?'' ତାଙ୍କର ଉଦଗ୍ର ପ୍ରଶ୍ନ । ମୁଖମଣ୍ଡଳରେ ତୀବ୍ର ଉତ୍କଣ୍ଠାର କୁଞ୍ଚିତ ରେଖା ।

''ଷଷ୍ଠ ପାଣ୍ଡବର ନାମ ଚିରଦିନ ପାଇଁ ଲୋପ ପାଇଯିବ ଏ ଧରଣୀରୁ । ଅନୁଜ ଅର୍ଜୁନ ଓ ମୋ' ମଧ୍ୟରେ ନିଶ୍ଚୟ ଯୁଦ୍ଧ ହେବ । ସେଥିରେ ମୋର କିମ୍ବା ତାଙ୍କର ବୀରଗତି ହେବ ହିଁ ହେବ । ଆପଣଙ୍କର ପଞ୍ଚପାଣ୍ଡବଙ୍କ ଜନନୀ ହୋଇ ରହିବା କିନ୍ତୁ ଥିବ ଅକ୍ଷୁଣ୍ଣ । ଏହାଛଡ଼ା ଆଉ ଅଧିକ କିଛି ଆପଣଙ୍କୁ ଏ ଅଧମ ଭାଗ୍ୟହୀନ ପୁତ୍ର ଦେଇପାରିବ ନାହିଁ ମାଆ ।''

''ବଡ଼ ନିଷ୍ଠୁର କଥା ଶୁଣାଇଲ ତୁମେ ପୁତ୍ର !'' କାତର ସ୍ୱରରେ କାନ୍ଦି କାନ୍ଦି କହିଲେ ସେ ।

''ନିଷ୍ଠୁର ହୋଇପାରେ । କିନ୍ତୁ ଏହା ସତ୍ୟ । ସତ୍ୟକୁ ସାହସର ସହିତ ସହିନିଅନ୍ତୁ ମାଆ । ଆଉ ଗୋଟିଏ କଥା କହିରଖୁଛି ମାଆ । ଆପଣଙ୍କ ପଞ୍ଚପୁତ୍ର ବିଜୟୀ ହେବେ । କାରଣ ଧର୍ମ ଅଛି ସେମାନଙ୍କ ପାଖରେ । ଆଉ କୃଷ୍ଣ ବି ଅଛନ୍ତି । କୃଷ୍ଣ ଯେଉଁଠି ବିଜୟ ସେଇଠି । ମୁଁ ଜାଣିଶୁଣି କର୍ତ୍ତବ୍ୟର ଅନୁରୋଧରେ ପରାଜିତ ହେବାକୁ ଥିବା ପକ୍ଷରେ ସମର୍ଥକ ହୋଇ ଲଢ଼ିବାକୁ ଯାଉଛି ।''

''ମୁଁ ତା'ହେଲେ କ'ଣ ଏତିକି ନେଇ ଫେରିଯିବି ପୁତ୍ର ?''

''ଏତିକି କାହିଁକି ? ଜାଣିଛନ୍ତି ତ ମାଆ ଆପଣଙ୍କ ଏ ପୁତ୍ର ଦାନୀ ବୋଲି । ତା'ର ଆହୁରି ଅଛି ଶେଷ ଦାନ ଆପଣଙ୍କୁ ଦେବାପାଇଁ । ମାଆ, ଯେଉଁ କୋଳରୁ ମତେ ଦୀର୍ଘଦିନ ଧରି ବଞ୍ଚିତ କରି ରଖିଛନ୍ତି, ଆଜି ସେଥିରେ ଆଶ୍ରୟ ଦିଅନ୍ତୁ କିଛି ସମୟ ପାଇଁ । ନୟନନୀରରେ ଆପଣଙ୍କ ପଣତକାନିକୁ ପଖାଳିଦିଏଁ । ତାହା ହିଁ ମୋର ଆପଣଙ୍କୁ ଶେଷ ଦାନ ।'' ଆବେଗଭରା କଣ୍ଠରେ କହିଲି ।

''ପୁତ୍ର ମୋର ! ସ୍ନେହର ପୁତ୍ର ମୋର !'' ଏହା କହି ଆଗେଇ ଆସିଲେ ସେ ଓ ସଙ୍ଗେ ସଙ୍ଗେ ଗୋଡ଼ ଲମ୍ବାଇ ବସିପଡ଼ିଲେ ଛାୟାଛନ୍ନ ଭୂମିରେ । ତାଙ୍କ କୋଳରେ ଶିଶୁଟି ଭଳି ଶୋଇରହି ମୁଣ୍ଡ ଗୁଞ୍ଜିଦେଲି । ମୋ' ଲୁହଧାରରେ ତାଙ୍କ ସାରା ପଣତକାନି ଓଦା । ସେ ମଧ୍ୟ କାନ୍ଦୁଥାନ୍ତି । ଆଉ ମୋ' ଲୁହକୁ ପୋଛିଦେଇ କହୁଥାନ୍ତି, ''ଶାନ୍ତ ହୁଅ ପୁତ୍ର ! ଆଉ କାନ୍ଦନା ।''

କବଚକୁଣ୍ଡଳହୀନ ମୋ' ଦେହରେ ହାତ ବୁଲାଇ ଆଣୁଥିବା ଅବସରରେ ସେ କ'ଣ ଭାବିଲେ କେଜାଣି, ତାଙ୍କ ଊର୍ଦ୍ଧ୍ୱବାସଟିକୁ ମୋ' ଛାତିରେ ଜଡ଼ାଇଦେଲେ ନିବିଡ଼ ଭାବରେ । ଆଉ ଦୁଇ ଗଣ୍ଡରେ ଭରିଦେଲେ ଚୁମ୍ବନ ଉପରେ ଚୁମ୍ବନ । ମତେ ଲାଗୁଥିଲା ମୋ' ବକ୍ଷଦେଶରେ ପୁଣି ଯେମିତି ଫେରିଆସିଛି ହୃତ ଜନ୍ମଜାତ କବଚ ! ଆଉ ମାତୃଚୁମ୍ବନର ଅମୃତମୟ ସ୍ପର୍ଶ ସତେ ଯେମିତି ଆଣିଦେଉଛି ହୃତ ଅମୃତକୁଣ୍ଡଳଦ୍ୱୟର ଦୋଳନଜନିତ ସ୍ପର୍ଶ ! ଖୁବ୍ ସୁରକ୍ଷିତ ଅନୁଭବ କଲି ମୁଁ । ହଠାତ୍ ମୋ' କର୍ଣ୍ଣତ୍ୱ ଫେରିଆସିବା ଭଳି ଲାଗିଲା । ଉଭୟ ଆମେ ନୀରବ । କେବଳ ପରସ୍ପରର ସ୍ପର୍ଶର ପୁଲକକୁ ଅନୁଭବ କରି ଚାଲିଥିଲୁ । ଆଃ ! କି ସ୍ୱର୍ଗୀୟ ସେ ଅନୁଭୂତି !

କିଛି ସମୟ ପରେ ତାଙ୍କ କୋଳରୁ ଉଠିଲି ଓ ବିଦାୟ ନେଇ ଚାଲିଆସିଲି ଦ୍ରୁତ ଗତିରେ । ଫେରିଚାହିଁବାର ସାହସ ନ ଥିଲା । ପଛରୁ ଖାଲି ଶୁଣିଥିଲି ତାଙ୍କ ଚାପା କ୍ରନ୍ଦନ

ଧ୍ୱନି ! ଦୁର୍ଭାଗା ପୁତ୍ର କର୍ଣ୍ଣର ଅଭାଗିନୀ ମାଆଙ୍କ କ୍ରନ୍ଦନଧ୍ୱନି ! ଅଥଚ ମୋ' ବୁକୁର କପୋତୀଟି ଯେଉଁ ବାରମ୍ବାର ମୁଣ୍ଡ ପିଟି ବାହୁନି ଉଠୁଥିଲା, ତାହା କାହାକୁ ବା ଶୁଭୁଥିଲା ? ମୋ' ମାଆ କ'ଣ ସତରେ ଶୁଣିପାରୁଥିବେ ? କେଜାଣି ?

ସୂର୍ଯ୍ୟ ଧୀରେ ଧୀରେ ବୁଡ଼ି ଯାଉଥିଲେ ପଶ୍ଚିମାକାଶରେ । ଧରଣୀମାତାଙ୍କ ନୟନରେ ସାନ୍ଧ୍ୟ ଶିଶିରର ଅଶ୍ରୁବିନ୍ଦୁ ଉଠୁଥିଲା ଛଳଛଳେଇ !

## ସତସ୍ତରି

ଭୟ... ଭୟ... ଓ ଭୟ... ମଣିଷର ଚିରଶତ୍ରୁ ଭୟ । ତା'ର ମାନସିକ ଶାନ୍ତିର ହତ୍ୟାକାରୀ । ବେଳେବେଳେ ସେ ଆସେ ଅତର୍କିତ ଭାବରେ । ଆଉ ବେଳେବେଳେ ଯଥେଷ୍ଟ ପୂର୍ବ ସୂଚନା ଦେଇ । ତା'ର ଆଗମନର ଘଣ୍ଟା-ଧ୍ୱନି ଶୁଭେ ବହୁତ ଦୂରରୁ । ଅଥଚ ବିଚରା ମଣିଷ । ଖାଲି ଡରି ଡରି ମରେ ସିନା । କିଛି ହିଁ ପ୍ରତିକାର କରିପାରେ ନା । ସକଳ ପ୍ରଳୟଙ୍କର ଭୟର ଗତିବିଧି ଏମିତି । ମହାଭାରତ ମହାସମର ସେମିତି ଏକ ଭୟ ଯାହାର ଯଥେଷ୍ଟ ପୂର୍ବ ସୂଚନା ଥିଲା । ଯଥେଷ୍ଟ ସତର୍କ ବାଣୀ ବି ଥିଲା । ଅଥଚ କେହି କିଛି କରିପାରିଲେ ନାହିଁ । ପ୍ରତିକାରର ଯତ୍‌ସାମାନ୍ୟ ଉଦ୍ୟମ ଅବଶ୍ୟ ଥିଲା । କିନ୍ତୁ ସବୁ ହେଲା ବୃଥା । ତାହା ଏବେ ପ୍ରାୟ ବର୍ତ୍ତମାନର କବାଟରେ ଧକ୍କା ମାରିବା ଉପରେ । ଆଜି ମାର୍ଗଶୀର୍ଷ ମାସର କୃଷ୍ଣା ପ୍ରଥମା ତିଥି । ଆଜି ରାତି ପାହିଲେ କାଲି ଦ୍ୱିତୀୟା ତିଥିରେ ହେବ ସେଇ ପ୍ରଳୟଙ୍କର ଯୁଦ୍ଧ । କୌରବ-ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ । ଅସତ୍ୟ-ସତ୍ୟ ମଧ୍ୟରେ ଯୁଦ୍ଧ । ଅଧର୍ମ-ଧର୍ମ ମଧ୍ୟରେ ଯୁଦ୍ଧ । ଅନ୍ୟାୟ-ନ୍ୟାୟ ମଧ୍ୟରେ ଯୁଦ୍ଧ । ନିରପେକ୍ଷ କାଳ ତୁଳାଦଣ୍ଡ ଧରି ବିଚାର କରିବ ଜୟ-ପରାଜୟର ଗତିକୁ । ଆଉ ନିର୍ଣ୍ଣୟ କରିବ ଚରମ ପରିଣତି ।

ସମସ୍ତଙ୍କ ମନରେ ଆଶଙ୍କା, କିଏ ଜିଣିବ ? କିଏ ହାରିବ ? ମନରେ ବେଳେବେଳେ ବାଜେ ପରମ ଦାର୍ଶନିକ କୃଷ୍ଣଙ୍କ ଭବିଷ୍ୟତ୍‌ବାଣୀ ଯାହା ସେ ଶୁଣାଇଥିଲେ ବିଗତ ଦିନରେ କୁରୁସଭାରେ – ଏ ଯୁଦ୍ଧରେ କେହି ଜିଣିବେ ନାହିଁ କି ହାରିବେ ନାହିଁ । ଓଃ ! ଏହାର ରୂପ କିଭଳି ଭୟାନକ ହେବ କେଜାଣି ?

ପାଣ୍ଡବ ସୈନ୍ୟବାହିନୀ ଦ୍ରୁତଗତିରେ ଆଗେଇ ଚାଲିଛନ୍ତି କୁରୁକ୍ଷେତ୍ର ଅଭିମୁଖରେ । ଆଜି ଅପରାହ୍ଣ ସୁଦ୍ଧା ପହଞ୍ଚିଯିବେ ବୋଧହୁଏ । ଦ୍ରୁପଦନନ୍ଦନ ମହାବୀର ଧୃଷ୍ଟଦ୍ୟୁମ୍ନ ତାହାର ସେନାପତି ଭାବରେ ନିର୍ବାଚିତ । କୌରବବାହିନୀର ଯାତ୍ରା ଆରମ୍ଭ ହୋଇ ନାହିଁ । ସାମାନ୍ୟ ଘଡ଼ିକର ବାଟ । ଯଥାସମୟରେ ଲକ୍ଷ୍ୟସ୍ଥଳୀରେ ପହଞ୍ଚିଯିବେ ବୋଲି ଆଶା । ଏବେ ଚାଲିଛି କୌରବବାହିନୀର ସେନାପତି ଚୟନ କାର୍ଯ୍ୟ । ଧୃଷ୍ଟଦ୍ୟୁମ୍ନଙ୍କ ସମ୍ମୁଖୀନ ହେଲା ଭଳି ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ଚୟନ କରିବାକୁ ହେବ । କିଏ ସେହି ବ୍ୟକ୍ତି ? ଏଥିନେଇ ତୁମୁଳ ବିଚାର ଆଲୋଚନା । ଗତ ତିନି ଦିନ ଧରି ଚାଲିଛି ଯେ ଏ ପର୍ଯ୍ୟନ୍ତ ସରି

ନାହିଁ । ଦୁର୍ଯ୍ୟୋଧନଙ୍କ ଇଚ୍ଛା, ଦ୍ରୋଣାଚାର୍ଯ୍ୟ ହୁଅନ୍ତୁ ସେନାପତି । କିନ୍ତୁ ଆଚାର୍ଯ୍ୟଙ୍କ ଭିନ୍ନ ମତ । ତାହା ଅବଶ୍ୟ ଯଥାର୍ଥ । ପିତାମହ ଭୀଷ୍ମ ଜୀବିତ । ସାରା ଜଗତର ଶ୍ରେଷ୍ଠ ବୀର ସେ । ସ୍ୱୟଂ ପରଶୁରାମ ହାର ମାନିଛନ୍ତି ତାଙ୍କଠାରୁ । ସେ ବଞ୍ଚି ଥାଉଁ ଥାଉଁ ଦ୍ରୋଣାଚାର୍ଯ୍ୟ କିପରି ବା ସେନାପତିପଦ ନେବେ ? ମାତୁଳ ଶକୁନି ମଧ୍ୟ ତାଙ୍କ ସହିତ ସହମତ ।

ଦୁର୍ଯ୍ୟୋଧନ ଶେଷରେ ରାଜି ହୋଇ ଚାଲନ୍ତି ପିତାମହଙ୍କ ଭବନକୁ । ସହଯାତ୍ରୀ ଆଚାର୍ଯ୍ୟ, ମାତୁଳ ଶକୁନି ଓ ମୁଁ । ପିତାମହଙ୍କୁ ସେନାପତିପଦ ଲାଗି ଅନୁରୋଧ କରନ୍ତି । ପ୍ରଥମେ କିନ୍ତୁ ମନା କରିଦିଅନ୍ତି ସେ । କହନ୍ତି, ''ପୁତ୍ର ଦୁର୍ଯ୍ୟୋଧନ ! ମୁଁ ତ ଆଗରୁ ତୁମକୁ ବାରଣ କରୁଥିଲି ଦ୍ୟୂତକ୍ରୀଡ଼ା ଲାଗି । ତାହା ମାନିଲ ନାହିଁ । ସବୁର ମୂଳରେ ସେହି ଦ୍ୟୂତକ୍ରୀଡ଼ା । ପାଣ୍ଡବମାନଙ୍କୁ ରାଜ୍ୟଭାଗ ଦେଲ ନାହିଁ । କୃଷ୍ଣଙ୍କ ଦ୍ୱାରା ଅଣାଯାଇଥିବା ସନ୍ଧିପ୍ରସ୍ତାବକୁ ବି କରିଦେଲ ପ୍ରତ୍ୟାଖ୍ୟାନ । ଏବେ ସେମାନେ ଯୁଦ୍ଧ ମାଧ୍ୟମରେ ନିଜ ଦାବି ହାସଲ କରିବାକୁ ଚାହୁଁଛନ୍ତି । ମୁଁ ଏଥିରେ ତୁମକୁ କି ସହାୟତା ବା ଦେଇପାରିବି ?''

''ଯାହା ହେବାର ତ ହୋଇଗଲାଣି ପିତାମହ । ଏବେ କୌରବମାନଙ୍କ ଉପରେ ମହାବିପଦ । ପାଣ୍ଡବବାହିନୀ ସଜାଗ ହୋଇ ରହିଛନ୍ତି ଆକ୍ରମଣ କରିବାପାଇଁ । ଏତେବେଳେ ଆପଣ ସେନାପତି ନ ହେଲେ ପାଣ୍ଡବସେନାପତି ଧୃଷ୍ଟଦ୍ୟୁମ୍ନଙ୍କ ସମ୍ମୁଖୀନ ହେବେ କିଏ ? ଆମ ମଧ୍ୟରେ ସେଭଳି କୌଣସି ବୀରଙ୍କୁ ଦେଖିବାକୁ ପାଉ ନାହିଁ । ଆପଣ ଦୟା କରି ଏ ଦାୟିତ୍ୱ ନିଅନ୍ତୁ ।'' ଦୁର୍ଯ୍ୟୋଧନଙ୍କର ପୁନର୍ବାର ବିନମ୍ର ଅନୁରୋଧ ।

''ଦେଖ ପୁତ୍ର ! ମୁଁ କୌରବମାନଙ୍କ ସପକ୍ଷରେ କିମ୍ବା ପାଣ୍ଡବମାନଙ୍କ ବିପକ୍ଷରେ ଲଢ଼ିପାରିବି ନାହିଁ । ସ୍ୱର୍ଗତ ପିତାଙ୍କୁ କଥା ଦେଇଛି ବଞ୍ଚିଥିବା ପର୍ଯ୍ୟନ୍ତ ହସ୍ତିନାପୁରର ସୁରକ୍ଷା ପ୍ରତି ଦୃଷ୍ଟି ରଖିଥିବି । ଆବଶ୍ୟକ ପଡ଼ିଲେ ହସ୍ତିନାପୁର ପାଇଁ ହିଁ ଲଢ଼ିବି ।'' ପିତାମହଙ୍କ ଦୃଢ଼ୋକ୍ତି । ପାଣ୍ଡବ-କୌରବ ଉଭୟଙ୍କ ପ୍ରତି ସମାନ ସ୍ନେହଭାବର ଅଭିପ୍ରକାଶ । ସମସ୍ତେ ତ ତାଙ୍କ ପୌତ୍ର । କାହାଙ୍କ ପ୍ରତି କାହିଁକି ଅନୁରାଗୀ ବା ବିରାଗୀ ହେବେ ?

''ହେ ଗଙ୍ଗାପୁତ୍ର ଭୀଷ୍ମ ! ଏବେ ସେହି ହସ୍ତିନାପୁର ଉପରେ ହିଁ ଆକ୍ରମଣ ହେବାକୁ ଯାଉଛି । ତାହାର ସୁରକ୍ଷା ବିପନ୍ନ । ତେଣୁ ଆପଣଙ୍କ କଥାରେ ତାହାରି ସୁରକ୍ଷା ଲାଗି ଆପଣଙ୍କର ସେନାପତି ପଦ ନେବା ଉଚିତ ।'' ଆଚାର୍ଯ୍ୟ ଦ୍ରୋଣ ପିତାମହଙ୍କୁ ଅନୁପ୍ରେରିତ କରିବାର ଉଦ୍ୟମ କରି କହନ୍ତି ।

ପିତାମହ ଟିକିଏ ଚିନ୍ତା କରିବାକୁ ଲାଗିଲେ । ଏହି ଅବସରରେ ମୁଁ ଆଗେଇଯାଇ କହିଲି, ''ହେ ପିତାମହ ! ଆପଣ ସେନାପତି ହୁଅନ୍ତୁ । ଆମ ପକ୍ଷ ଖୁବ୍ ବଳବାନ୍ । ଆମେ ନିଶ୍ଚୟ ବିଜୟୀ ହେବୁ ।''

''ତୁମେ ପାଣ୍ଡବମାନଙ୍କର ବଳ କେତେ ତାହା ଜାଣି ନାହଁ ସୂତପୁତ୍ର କର୍ଣ୍ଣ । ଅସ୍ତ୍ରବିଦ୍ୟା ସୂତବିଦ୍ୟା ଭଳି ସରଳ ନୁହେଁ । ନିଜ ମୌଳିକ ବିଦ୍ୟା ପ୍ରତି ଅଧିକ ଧ୍ୟାନ ଦିଅ ।'' ତାଙ୍କର ବିରକ୍ତିଭରା ମନ୍ତବ୍ୟ । ପଦେ ପଦେ ମତେ ଆଘାତ ଦେବାର ଅଭୀପ୍ସା ।

''ଏଇ ଯୁଦ୍ଧରେ ମୋର ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା ହେବ ହିଁ ହେବ । ଏଥିରେ ନିଶ୍ଚୟ ହେବ ତାଙ୍କର ବୀରଗତି । ତାହା ପରେ ଆମକୁ ପାଣ୍ଡବମାନଙ୍କ ଉପରେ ବିଜୟ ହାସଲ କରିବାରେ କିଛି ଅସୁବିଧା ହେବ ନାହିଁ ।'' କଣ୍ଠରେ ମୋର ସ୍ପର୍ଦ୍ଧାଭାବ ।

''ଅର୍ଜୁନଙ୍କ ସାରଥି ସ୍ୱୟଂ ବାସୁଦେବ କୃଷ୍ଣ । ତାହାଛଡ଼ା ସେ ନିଜେ ବି ଜଣେ ମହାବୀର । ତାଙ୍କୁ ଏପରି ଅବହେଳା କର ନାହିଁ ରାଧେୟ ।''

''ସେ ଯାହା ଥାଆନ୍ତୁ ନା କାହିଁକି ଏଥରକ ମୋ' ହାତରେ ନିଶ୍ଚୟ ବୀରଗତି ପାଇବେ ।'' କଥାରେ ମୋର ଗଭୀର ଆତ୍ମବିଶ୍ୱାସ ଓ ଦୃଢ଼ତା ।

''ବୃଥା ଆସ୍ଫାଳନ ତୁମର ଏ ସୂତପୁତ୍ର କର୍ଣ୍ଣ । ଯଦି ତୁମଠାରେ ଏତେ ସାମର୍ଥ୍ୟ, ତା'ହେଲେ ଦ୍ରୌପଦୀଙ୍କ ସ୍ୱୟଂବରରେ ତାହା ଦେଖାଇଲ ନାହିଁ କାହିଁକି ? ବିରାଟଙ୍କ ଗୋଧନ ଅପହରଣ ବେଳେ ସେ ଶକ୍ତି-ସାମର୍ଥ୍ୟ କୁଆଡ଼େ ଥିଲା ? ପୁଣି କୁଆଡ଼େ ଥିଲା ଚିତ୍ରସେନ ଗନ୍ଧର୍ବଙ୍କ ହାତରେ ବନ୍ଦୀ ହେଲା ବେଳେ । ଏଇ ଅର୍ଜୁନ ପରା ତୁମକୁ ବନ୍ଧନମୁକ୍ତ କରିଥିଲେ । ନ ହେଲେ ବର୍ତ୍ତମାନ ବି ଗନ୍ଧର୍ବ-ବନ୍ଦିଶାଳାରେ ସଢୁଥାନ୍ତ । କ'ଣ ଏତେ ଶୀଘ୍ର ଭୁଲିଗଲଣି ଏ ସବୁ କଥା ?'' ତାଙ୍କର ମୋ' ପ୍ରତି ପୂର୍ବଠାରୁ ଆହୁରି ଅଧିକ କଟୁ ଆକ୍ଷେପୋକ୍ତି । ଲାଜରେ ମୁହଁ ତଳକୁ ହୋଇଗଲା ମୋର । ମନେ ମନେ ହେଉଥିଲି ବି କ୍ରୋଧିତ । କୌଣସିମତେ ନିଜକୁ ସଂଯତ କରି କହିଲି, ''କଥା ଦେଉଛି ପିତାମହ, ଏଥରକ କିନ୍ତୁ ଅର୍ଜୁନ ବର୍ତ୍ତିଯିବେ ନାହିଁ ମତେ । ଇନ୍ଦ୍ରପ୍ରଦତ୍ତ ମହାଶକ୍ତିର ଅଧିକାରୀ ମୁଁ । ଅବ୍ୟର୍ଥ ସେ ଶକ୍ତି । ତାଙ୍କରି ଉପରେ ହିଁ ପ୍ରୟୋଗ କରିବି । ଦେଖିବେ, ମୋ' ସହିତ ପ୍ରଥମ ଯୁଦ୍ଧରେ ହିଁ ସେ ପାଇବେ ବୀରଗତି ।'' କଥାରେ ମୋର ଦମ୍ଭ ଓ ଅଭିମାନ । ମୁଷ୍ଟିବଦ୍ଧ ଦକ୍ଷିଣ ହସ୍ତରେ ସମ୍ଭାବ୍ୟ ବିଜୟର ସୂଚନା ।

ଲକ୍ଷ୍ୟ କଲି ପିତାମହଙ୍କ ମୁଖମଣ୍ଡଳକୁ । ଭାବିଥିଲି କିଛି ପ୍ରଶଂସାସୂଚକ କଥା ବୋଧହୁଏ କହିବେ ମତେ । ଆସନ୍ନ ବିଜୟର ସମ୍ଭାବନା ଦେଖି ହୁଏତ ତାହା ଉଠିବ ଉଜଳି । କିନ୍ତୁ ଦେଖିଲି ବିପରୀତ କଥା । ହଠାତ୍ ଝାଉଁଳି ପଡ଼ିଲେ ସେ କି ଏକ ଅନ୍ତର୍ବେଦନାରେ । ଆଖି ଦୁଇଟି ଅଶ୍ରୁମୁକ୍ତିତ । ଆଚାର୍ଯ୍ୟଙ୍କ ମୁଖମଣ୍ଡଳ ମଧ୍ୟ ସମଧିକ ବିଷଣ୍ଣ । ପ୍ରସନ୍ନତାର ଝଲକ କେବଳ ମାତୁଳ ଶକୁନି ଓ ଦୁର୍ଯ୍ୟୋଧନଙ୍କ ମୁଖମଣ୍ଡଳରେ । ମନରେ ମୋର ଝଡ଼ । ପିତାମହ ଭୀଷ୍ମ ଓ ଆଚାର୍ଯ୍ୟ ଦ୍ରୋଣ କ'ଣ ପ୍ରକୃତରେ ଅର୍ଜୁନଙ୍କ ବୀରଗତି ଚାହାନ୍ତି ନାହିଁ ? ତା'ହେଲେ କେଉଁ ପକ୍ଷର ସମର୍ଥକ ସେମାନେ ? ପାଣ୍ଡବପକ୍ଷର ନା କୌରବପକ୍ଷର ? ଅଥବା ମୋ' ଭଳି ବିବଶତା ହେତୁ ଅଧର୍ମପକ୍ଷକୁ ସମର୍ଥନ କରି ବିଜୟ ଚାହାନ୍ତି ଧର୍ମପକ୍ଷର ?

ନୀରବତା ପରେ ମୁହଁ ଖୋଲିଲେ ପିତାମହ । କହିଲେ, ''ତଥାପି ମୋର ତୁମ କଥାରେ ବିଶ୍ୱାସ ହେଉ ନାହିଁ ସୂତପୁତ୍ର କର୍ଣ୍ଣ ।'' ତାହା ପରେ ଦୁର୍ଯ୍ୟୋଧନଙ୍କ ପ୍ରତି ଲକ୍ଷ୍ୟ କରି କହିଲେ, ''ପୁତ୍ର ଦୁର୍ଯ୍ୟୋଧନ । ତୁମ ପ୍ରସ୍ତାବରେ ମୁଁ ସମ୍ମତ, କିନ୍ତୁ ଗୋଟିଏ ସର୍ତ୍ତରେ ।''

''ଖୁବ୍ ଖୁସି ହେଲି ପିତାମହ ! ଆଉ ଅନୁଗୃହୀତ ବି । କହନ୍ତୁ ତ ସର୍ତ୍ତଟି କ'ଣ ?'' ଦୁର୍ଯ୍ୟୋଧନଙ୍କ ଉଦ୍‌ବେଗଭରା ପ୍ରଶ୍ନ ।

''ମୁଁ ସେନାପତି ଥିବା ପର୍ଯ୍ୟନ୍ତ ସୂତପୁତ୍ର କର୍ଣ୍ଣ ଯୁଦ୍ଧକ୍ଷେତ୍ରକୁ ଯାଇପାରିବେ ନାହିଁ ! କ'ଣ ଏଥିରେ ରାଜି ତୁମେ ?''

ଦୁର୍ଯ୍ୟୋଧନ ପଡ଼ିଲେ ଚମକି । ଆଉ ମୁଁ ବି । ଭାବୁଥାଏ, ପିତାମହଙ୍କର ଏ କି ଦାରୁଣ ସର୍ତ୍ତ ! ମତେ ତା'ହେଲେ କ'ଣ ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବାର ସୁଯୋଗ ମିଳିବ ନାହିଁ ? ଚିରଦିନ ଧରି ପୋଷିତ ଏଇ ଅଭିଳାଷଟି ରହିଯିବ ଅପୂର୍ଣ୍ଣ ? ଯେଉଁଥିପାଇଁ ବାସୁଦେବ କୃଷ୍ଣ ଓ ମାତା କୁନ୍ତୀଦେବୀଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଇଛି ତାହାକୁ କ'ଣ ସାକାର କରିପାରିବି ନାହିଁ ଏ ଜୀବନରେ ? ପିତାମହ ମତେ ଅବଶ୍ୟ ଅନେକବାର ସୂତପୁତ୍ର ବୋଲି ଡାକିଛନ୍ତି ଅତୀତରେ । କିନ୍ତୁ ଆଜି ଭଳି ଆଘାତ ଦେଇ ନାହାନ୍ତି କେଉଁ ଦିନ । ଆଜି ଏମିତି ବାରମ୍ବାର ସୂତପୁତ୍ର ବୋଲି ଡାକି ଆଘାତ ଦେଉଛନ୍ତି କାହିଁକି ? ସୂତପୁତ୍ର ହେଲି ବୋଲି କ'ଣ ମୁଁ ଏତେ ହୀନ ? ଏତେ ଘୃଣା ଓ ଆକ୍ଷେପର ପାତ୍ର ? ଦାଣ୍ଡର ଅଳିଆ ପରି ଯେ ପାଇବ ସେ ଫିଙ୍ଗିଦେବ ଦୂରକୁ ? ମନେ ମନେ ଖୁବ୍ କ୍ଷୁବ୍ଧ ହୋଇଉଠୁଥିଲି । କି ପ୍ରତିକ୍ରିୟା ପ୍ରକାଶ କରିବି ଭାବିପାରୁ ନ ଥିଲି । ବସିଥିଲି ନୀରବ ଅଭିମାନରେ ।

ଦୁର୍ଯ୍ୟୋଧନ ଆକୁଳ ନେତ୍ରରେ ଚାହିଁଲେ ମୋ' ପ୍ରତି । ପ୍ରଶ୍ନିଳ ଚାହାଣି । ବୁଝିପାରିଲି ତାଙ୍କ ମଧ୍ୟରେ ବହୁଥିବା ଅନ୍ତର୍ଦ୍ୱନ୍ଦ୍ୱର ଝଞ୍ଜାକୁ । ସେ ଚାହାନ୍ତି ପିତାମହ ସେନାପତି ହୁଅନ୍ତୁ । ଅଥଚ ତାଙ୍କଦ୍ୱାରାହିଁ ଆରୋପିତ ସର୍ତ୍ତକୁ ଗ୍ରହଣ କରିପାରୁ ନ ଥାନ୍ତି । ଆଉ କରି ବି ପାରୁ ନ ଥାନ୍ତି ପ୍ରତ୍ୟାଖ୍ୟାନ । ମୁଁ ତାଙ୍କର ପ୍ରିୟ ମିତ୍ର । ମୋ' ହୃଦୟକୁ ଆଘାତ କଲାଭଳି କଥା କହିବାକୁ ଚାହୁ ନ ଥାନ୍ତି । ଆଗେଇ ଆସିଲି ତାଙ୍କୁ ଏ ଧର୍ମସଙ୍କଟରୁ ଉଦ୍ଧାର କରିବା ପାଇଁ । କହିଲି, ''ହେ ପିତାମହ ! ମୁଁ ଆପେ ଆପେ ଦୂରେଇଯାଉଛି ଯୁଦ୍ଧକ୍ଷେତ୍ରରୁ । ଆପଣ ସେନାପତି ହୁଅନ୍ତୁ ।''

ଲକ୍ଷ୍ୟକଲି ପୁଣି ତାଙ୍କ ମୁଖମଣ୍ଡଳରେ ଫେରିଆସିଲା ପ୍ରସନ୍ନତା । ଆଚାର୍ଯ୍ୟଙ୍କର ବି । ଶେଷରେ ସେନାପତି ହେବାପାଇଁ ରାଜି ହେଲେ ସେ ! କହିଲେ, ''ଶୁଣ ଦୁର୍ଯ୍ୟୋଧନ ! ମୁଁ ପ୍ରତିଦିନ ପାଣ୍ଡବପକ୍ଷର ଦଶସହସ୍ର ସୈନ୍ୟ ମାରିବି । କିନ୍ତୁ ନିଜ ହାତରେ ପାଣ୍ଡବମାନଙ୍କ ଜୀବନ ନେବି ନାହିଁ ।''

ମହାଡ଼ମ୍ବରରେ ସେନାପତିପଦରେ ତାଙ୍କର ଅଭିଷେକ କରାଗଲା ଘଡ଼ିକ ମଧ୍ୟରେ ।

ସୂର୍ଯ୍ୟାସ୍ତ ପୂର୍ବରୁ ପିତାମହଙ୍କ ନେତୃତ୍ୱରେ କୌରବବାହିନୀ ନିଜ ଶିବିର ପକାଇଲା କୁରୁକ୍ଷେତ୍ରର ପୂର୍ବ ନିର୍ଦ୍ଦିଷ୍ଟ ସ୍ଥାନରେ ଠିକ୍ ପାଣ୍ଡବବାହିନୀର ବିପରୀତ ଦିଗରେ ପଶ୍ଚିମକୁ ମୁଖ କରି ପାଣ୍ଡବବାହିନୀ ଥିଲା ପୂର୍ବାମୁଖୀ ।

ମୁଁ ଫେରିଗଲି ନିଜ ଭବନକୁ ନିରାଶ ମନ ନେଇ । ବୀରାଭିମାନର ଭଗ୍ନ ପାଦଟିକୁ ଘୋସାରି ଘୋସାରି । ଅନ୍ତରତଳେ ଦାଉ ଦାଉ ନିଆଁ । ପ୍ରତିଟି ଶିରାରେ, ପ୍ରତିଟି

ଧମନୀରେ ଉଷ୍ଣରକ୍ତର ପ୍ରଖର ପ୍ରବାହ । ରକ୍ତନଳୀର ସୂକ୍ଷ୍ମ ଆବରଣକୁ ଫୁଟାଇ ବାହାରି ଆସିବାକୁ ଚେଷ୍ଟିତ ଯେମିତି । ଅନ୍ତରାତ୍ମାରେ ବଞ୍ଚିତ ପ୍ରାଣର ମୁହୁର୍ମୁହୁଃ କାତର ବିଳାପ !

ଲାଗୁଥାଏ, ଅଦୃଷ୍ଟ ଯେମିତି କେଉଁ ଏକ ସୁଦୂର ଚକ୍ରବାଳରୁ ମତେ ଉପହାସ କରି କହୁଛି – କର୍ଣ୍ଣ ! ଜନ୍ମ ତୋ'ର ବଞ୍ଚିତ କୁଳରେ । ଜୀଇଁ ରହିଛୁ ବଞ୍ଚିତ ହୋଇ । ଆଉ ଶେଷ ନିଃଶ୍ୱାସ ଛାଡ଼ିବୁ ସେଇ ବଞ୍ଚିତ ଅବସ୍ଥାରେ । ଭବିଷ୍ୟତର ଇତିହାସ ତତେ ଖୋଜି ବାହାର କରିବ ବଞ୍ଚିତମାନଙ୍କ ଅଳିଆଗଦାରୁ ! ଅଭିଜାତମାନଙ୍କ ସ୍ୱର୍ଣ୍ଣଚୂଡ଼ ମନ୍ଦିର-ଗର୍ଭରୁ କିନ୍ତୁ ନୁହେଁ !

## ଅଠସ୍ତରି

ଯୁଦ୍ଧ... ଯୁଦ୍ଧ... ଓ ଯୁଦ୍ଧ... ଦିନରେ ଯୁଦ୍ଧ । ରାତିରେ ଯୁଦ୍ଧ । ସକାଳେ ଯୁଦ୍ଧ । ସଂଧ୍ୟାରେ ଯୁଦ୍ଧ । ସବୁ ସମୟରେ ଚାଲିଛି କୁରୁକ୍ଷେତ୍ରର ମହାଯୁଦ୍ଧ । ଚାଲିଛି ଜୟ-ପରାଜୟର ବାରମ୍ବାର ପଟ୍ଟପରିବର୍ତ୍ତନ ମଧ୍ୟରେ । କେତେବେଳେ ପାଣ୍ଡବମାନେ ବିଜୟୀ ତ ଆଉ କେତେବେଳେ କୌରବମାନେ ବିଜୟୀ । ଯୁଦ୍ଧ ସରୁ ନାହିଁ କି ଜୟ ପରାଜୟର ପଟ୍ଟ ପରିବର୍ତ୍ତନ ବି ସରୁ ନାହିଁ । ବୀରମାନଙ୍କ ରକ୍ତରେ କୁରୁକ୍ଷେତ୍ରର ପବିତ୍ର ଭୂମି ରଞ୍ଜିତ ହେବାରେ ଲାଗିଛି । ଭବିଷ୍ୟତର ଇତିହାସ ଲେଖାଚାଲିଛି ନିରନ୍ତର ରକ୍ତାକ୍ଷରରେ । ଲେଖା ସରି ନାହିଁ । କେବେ ସରିବ କେଜାଣି ? ବିଜୟ ହେଉ ଅଥବା ବୀରଗତି ହେଉ, ବୀରମାନଙ୍କ ପାଇଁ ସବୁ ସମାନ । ସମସ୍ତେ ତେଣୁ ଉତ୍ସାହ-ଉଲ୍ଲାସରେ ଯୁଦ୍ଧରତ । କେଉଁଠି ସାମାନ୍ୟ ଭାବରେ ବି ନାହିଁ ଶିଥିଳତା ।

କୌରବପକ୍ଷର ସେନାପତି ପିତାମହ ଭୀଷ୍ମ । ପାଣ୍ଡବପକ୍ଷରେ ସେନାପତି ଦ୍ରୁପଦନନ୍ଦନ ଧୃଷ୍ଟଦ୍ୟୁମ୍ନ । ମହାବୀର ଭାବରେ ଉଭୟଙ୍କର ସୁଖ୍ୟାତି । ତେଣୁ ସମସ୍କନ୍ଧ ହୋଇ ଚାଲିଛି ଯୁଦ୍ଧ । ଏ ପର୍ଯ୍ୟନ୍ତ ନିର୍ଣ୍ଣାୟକ ସ୍ତରରେ ପହଞ୍ଚି ନାହିଁ । ଯାହା ଜଣାଯାଉଛି, ଆହୁରି ଅଧିକ ସମୟ ଲାଗିବ ଏଥିପାଇଁ । ଆର୍ଯ୍ୟାବର୍ତ୍ତର ସ୍ୱନାମଧନ୍ୟ ସଂସ୍କୃତି ଏବେ ବିକଳାଙ୍ଗ ଓ ବିକୃତ । ତାହାକୁ ସୁସ୍ଥ ଓ ସୁକୃତ କରିବାକୁ ଗଲେ ସହିଦମାନଙ୍କ ରକ୍ତ ଲୋଡ଼ା । ସେହି ରକ୍ତପାତ ଏବେ ଚାଲିଛି ।

ଅଥଚ ମୁଁ କର୍ଣ୍ଣ । ଅସ୍ତ୍ର ଥାଇ ବି ଆଜି ଅସ୍ତ୍ରହୀନ । ବଳ ଥାଇ ବି ଦୁର୍ବଳ । ବୀର୍ଯ୍ୟ ଥାଇ ବି ନିର୍ବୀର୍ଯ୍ୟ । ସ୍ଥାଣୁଟି ଭଳି ବସିରହିଛି ନିଜ ଶିବିରରେ ଭରା ଅନ୍ତର୍ବେଦନା ଧରି । ପ୍ରତିଟି ବିନ୍ଦୁ ରକ୍ତ ମୋର ଟକମକ ହୋଇ ଫୁଟୁଛି । ସାରା ଜୀବନ ଧରି କୁରୁମାନଙ୍କ ନେତୃତ୍ୱ ନେଇଆସିଲି । ଅଥଚ ଏଇ ସଙ୍କଟମୟ ପରିସ୍ଥିତିରେ ତାହା କରିପାରିଲି ନାହିଁ । ମୋ' ଇଚ୍ଛାରେ ନୁହେଁ । ବରଂ ଅନ୍ୟଜଣଙ୍କ ଇଚ୍ଛାରେ । ମିତ୍ର ଦୁର୍ଯ୍ୟୋଧନ ବିବଶ ହୋଇ ମତେ ବଞ୍ଚିତ କଲେ ସେଇ ସୌଭାଗ୍ୟରୁ । ଆଉ ମୁଁ ମଧ୍ୟ ବସିରହିଲି ବିବଶ ହୋଇ । ବିବଶତା... ବିବଶତା... ଏଇ ବିବଶତା ଯେମିତି ମତେ ଛାଡ଼ିବ ନାହିଁ ସାରା ଜୀବନ ଧରି ! ହସ୍ତ, ପଦ, ମନ, ପ୍ରାଣ ସବୁ କିଛିକୁ ଶୃଙ୍ଖଳରେ ବାନ୍ଧି ରଖିଛି ଯେ ଯେମିତି !! ଯୁଦ୍ଧବାଦ୍ୟର ଗମ୍ଭୀର

ଧ୍ୱନି ଶୁଣି ମନ ମୋର ଅସ୍ଥିର । ଇଚ୍ଛା ହେଉଛି, ଶିବିରର ଦ୍ୱାରକୁ ଭାଙ୍ଗିଦେଇ ଲମ୍ଫ ଦିଅନ୍ତି ଯୁଦ୍ଧଭୂମିରେ । ତାହାକୁ କରିଦିଅନ୍ତି ଆହୁରି ଲାଲ ଟକ ଟକ । ନିଜ ରକ୍ତରେ ଓ ଶତ୍ରୁମାନଙ୍କ ରକ୍ତରେ । କିନ୍ତୁ ନିରୁପାୟ । ପିତାମହ ସେନାପତି ଥିବାପର୍ଯ୍ୟନ୍ତ ଅସ୍ତ୍ର ଧରିପାରିବି ନାହିଁ । ସେଥିପାଇଁ ପ୍ରତିଶ୍ରୁତିବଦ୍ଧ । ତେଣୁ କୌଣସିମତେ ସଂଯତ କରି ରଖୁଛି ମନକୁ । ଉତ୍‌ଫଣ କଳା ନାଗଟି ପେଡ଼ି ଭିତରେ ନିର୍ବୀର୍ଯ୍ୟ ହୋଇ ପଡ଼ିରହିଲା ଭଳି ପଡ଼ି ରହିଛି ଶିବିର ମଧ୍ୟରେ । ଯୁଦ୍ଧଭୂମିର ଅତି ନିକଟରେ । ଅଥଚ କାର୍ଯ୍ୟତଃ ତାହାଠାରୁ ଅନେକ ଦୂରରେ । ଏଇ ତ କର୍ଣ୍ଣର ଜୀବନ । ସବୁ ଥାଇ କିଛି ନ ଥିଲା ଭଳି ! କୁଳ ଥାଇ କୁଳହୀନ । ଅସ୍ତ୍ର ଥାଇ ଅସ୍ତ୍ରହୀନ । ପ୍ରାଣ ଥାଇ ପ୍ରାଣହୀନ । ହାୟ ରେ ମୋ' ଭାଗ୍ୟ !

ଶିବିରରେ ନିରସ୍ତ୍ର ହୋଇ ବସିରହିଥିଲେ ବି ଯୁଦ୍ଧର ଦୈନନ୍ଦିନ ଘଟଣାବଳୀ ସଂପର୍କରେ ଖବର ସଂଗ୍ରହ କରୁଛି ମିତ୍ର ଦୁର୍ଯ୍ୟୋଧନଙ୍କ ଅନୁଗ୍ରହରୁ । ସେ ମୋ' ପାଇଁ ନିଯୁକ୍ତ କରିଛନ୍ତି ଏକାଧିକ ଚର । ସେମାନେ ମଝିରେ ମଝିରେ ଆସି ସମସ୍ତ ଖବର ନିବେଦନ କରୁଛନ୍ତି ମୋ' ଆଗରେ । ପ୍ରତ୍ୟହ ତ ଅନେକ ଘଟଣା ଘଟୁଛି । ଅନେକ ବୀର ମରୁଛନ୍ତି । ଅନେକ ମୁମୂର୍ଷୁ ଅବସ୍ଥାରେ ଥାଇ କରୁଛନ୍ତି ଆର୍ତ୍ତ ଚିତ୍କାର । ଉଭୟ ପକ୍ଷର ବ୍ୟୂହରଚନାର ଶୈଳୀ ପ୍ରତିଦିନ ବଦଳିବାରେ ଲାଗିଛି । ମକରବ୍ୟୂହ, ଶକଟବ୍ୟୂହ, ସାରଙ୍ଗବ୍ୟୂହ, ଗରୁଡ଼ବ୍ୟୂହ ଆଦି ନାନା ପ୍ରକାର ବ୍ୟୂହ ରଚନା କରି ଚାଲିଛନ୍ତି ଉଭୟ ପକ୍ଷ । ପ୍ରତିପକ୍ଷର ବ୍ୟୂହକୁ ଭେଦ କରିବା ଲାଗି ଉଦ୍ୟମ ଚାଲିଥିବା ଅବସରରେ ନିଜ ପକ୍ଷର ସୁରକ୍ଷା ଲାଗି ସମୁଚିତ ବ୍ୟୂହର ରଚନା ଚାଲିଛି । ଯୁଦ୍ଧର ଶୈଳୀ ମଧ୍ୟ ବଦଳୁଛି କ୍ଷଣକୁ କ୍ଷଣ ପରିସ୍ଥିତିକୁ ଚାହିଁ । ଏମିତି ଯାହା କିଛି ଘଟଣା ଘଟିଯାଉଛି ପ୍ରତିଦିନ ସେ ସବୁର ବର୍ଣ୍ଣନା ମୋ' ପକ୍ଷରେ ଅସମ୍ଭବ । ସବୁ କଥା ବି ମନେ ନାହିଁ । ତେବେ ଯେଉଁ ପ୍ରଧାନ ପ୍ରଧାନ ଘଟଣାମାନ ଚରମୁଖରୁ ଶୁଣି ମନେରଖିଛି ସେହି ବିଷୟରେ ହିଁ କେବଳ କହୁଛି ।

ଟପ୍ ଟପ୍ ଟପ୍ । ଦ୍ରୁତ ଗତିରେ ଆସୁଥିବା ଅଶ୍ୱର ଟାପୁ ଶବ୍ଦ । କେହି ଜଣେ ଅଶ୍ୱାରୋହୀ ମୋ' ଶିବିର ଆଡ଼କୁ ଆସୁଥିବାର ଅନୁଭବ କଲି । ବାହାରିଆସିଲି ଉଦ୍‌ଗ୍ରୀବ ହୋଇ ଶିବିର ଦ୍ୱାର ପର୍ଯ୍ୟନ୍ତ ଘଟଣା କ'ଣ ଜାଣିବାପାଇଁ । ଅଶ୍ୱାରୋହୀ ଅଶ୍ୱପୃଷ୍ଠରୁ ଅବତରଣ କରି ପ୍ରଣାମ କଲା ମତେ । ସେ ଆଉ କେହି ନୁହେଁ, ଦୁର୍ଯ୍ୟୋଧନଙ୍କ ଦ୍ୱାରା ନିଯୁକ୍ତ ଚର । ମୋ' ପାଇଁ କିଛି ସଂବାଦ ବହନ କରିଆଣିଛି ବୋଧହୁଏ । ମନ ବି ଥିଲା ମୋର ଅସ୍ଥିର । କାରଣ କିଛି ସମୟ ପୂର୍ବରୁ ରଣବାଦ୍ୟ ବାଜିବା ପରେ ପୁଣି ହଠାତ୍ ବନ୍ଦ ହୋଇଗଲା । କିଛି ସମୟ ପରେ ପୁଣି ଉଠିଲା ବାଜି ।

ଚରକୁ ପ୍ରଶ୍ନ କଲି, ''ଖବର କ'ଣ ? ରଣବାଦ୍ୟ ବାଜିବା ହଠାତ୍ ବନ୍ଦ ହୋଇଗଲା କାହିଁକି ? ଏବେ ପୁଣି ବାଜିଉଠୁଛି କାହିଁକି ?''

''କିଛି ବିଶେଷ ଖବର ନାହିଁ ମହାରାଜ । ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଧର୍ମରାଜ ଯୁଧିଷ୍ଠିର ନିରସ୍ତ୍ର ଅବସ୍ଥାରେ ଚାଲି ଚାଲି ଆସିଲେ କୁରୁବାହିନୀ ନିକଟକୁ । ପିତାମହ ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ଓ କୃପାଚାର୍ଯ୍ୟ ଆଦି ଗୁରୁଜନମାନଙ୍କ ଆଶୀର୍ବାଦ ଭିକ୍ଷା କରି ସେମାନଙ୍କଠାରୁ ଯୁଦ୍ଧ ପାଇଁ ଅନୁମତି ମାଗିଲେ ।''

''ସେଇଠୁଁ ?''

''ସେମାନେ ଅନୁମତି ତ ଦେଲେ । ତାହା ଛଡ଼ା ଆଶୀର୍ବାଦ ଦେଇ କହିଲେ – ଦୀର୍ଘାୟୁ ଭବ । 'ବିଜୟତୁ ଧର୍ମଃ ।''

''ବିଜୟୀ ଭବ ବୋଲି କେହି ଆଶୀର୍ବାଦ ଦେଇ ନାହାନ୍ତି ?''

''ନା ମହାରାଜ ।''

ମନେ ମନେ ଭାବିଲି ଯୁଦ୍ଧର ଶିଷ୍ଟାଚାରକୁ ଜଗି ଯୁଧିଷ୍ଠିରଙ୍କୁ ସିନା ଗୁରୁଜନମାନେ ବିଜୟର ଆଶୀର୍ବାଦ ଦେଇ ନାହାନ୍ତି । ଏଇ ଯେଉଁ ଧର୍ମର ବିଜୟ ହେଉ ବୋଲି କାମନା କରିଚନ୍ତି ଅନ୍ତରର ଗଭୀରତମ ପ୍ରଦେଶରୁ, ତାହାହିଁ ତ ବିଜୟର ଆଶୀର୍ବାଦ । ସେମାନେ ଜାଣନ୍ତି ଯୁଧିଷ୍ଠିରଙ୍କ ପକ୍ଷରେ ଧର୍ମ ଅଛି । ତେଣୁ ଧର୍ମର ଜୟ ହେଉ ବୋଲି କହିବା ଅର୍ଥ ତାଙ୍କର ଜୟ ହେବ । ବଡ଼ ଚତୁରତାର ସହିତ ତାଙ୍କୁ ଦେଇଛନ୍ତି ବିଜୟର ଆଶୀର୍ବାଦ । ଜାଣିଶୁଣି ସେମାନେ ଏକ ପରାଜିତ ଯୁଦ୍ଧ ଲଢୁଛନ୍ତି ବିବଶ ହୋଇ । କାରଣ କୌରବମାନଙ୍କ ଅନ୍ନରେ ପ୍ରତିପାଳିତ ସେମାନେ । ଏଭଳି ସ୍ଥିତିରେ କୌରବମାନଙ୍କର ବିଜୟ ହେବ ବା କିପରି ?

ମନରେ ମୋର ଅସୀମ କୌତୂହଳ ପରବର୍ତ୍ତୀ ଘଟଣା ଜାଣିବା ପାଇଁ । ପଚାରିଲି ''ସେଉଠୁ କ'ଣ ହେଲା କହ ତ ଚର ?''

''କୃଷ୍ଣ ଅର୍ଜୁନଙ୍କ ସାରଥି ହୋଇ ତାଙ୍କ ରଥଟିକୁ ନେଇ ଦୁଇ ସେନାବାହିନୀର ମଝିରେ ରଖିଦେଲେ । ଆଉ ଜଣ ଜଣ କରି କୁରୁବାହିନୀର ସମସ୍ତ ପ୍ରମୁଖ ବୀରଙ୍କୁ ଦେଲେ ଚିହ୍ନାଇ । ଅର୍ଜୁନ ଗାଣ୍ଡୀବ ଧନୁ ଟେକିବାକୁ ଯାଉଥିଲେ । କିନ୍ତୁ ହଠାତ୍ କ'ଣ ଭାବି ମୁଣ୍ଡରେ ହାତ ଦେଇ ବସିପଡ଼ିଲେ ରଥନୀଡ଼ରେ । ମୁହଁ ଝାଉଁଳି ପଡ଼ିଥାଏ ଦୁଃଖ ଓ ଅବସାଦରେ । ଗାଣ୍ଡୀବଧନୁଟିକୁ ଥୋଇଦେଇଥାନ୍ତି ରଥରେ ।''

''କିନ୍ତୁ କାହିଁକି ? ଅର୍ଜୁନଙ୍କ ପରି ଜଣେ ମହାବୀରଙ୍କ ପକ୍ଷରେ ଏଭଳି କାତରତା କାହିଁକି ?'' ମୋର ସଚକିତ ପ୍ରଶ୍ନ ।

''ସାମାନ୍ୟ ରାଜ୍ୟପାଇଁ ଗୁରୁଜନ ଓ ଆତ୍ମୀୟଜନମାନଙ୍କ ସହିତ ଲଢ଼ି ନିଜ ହାତକୁ କଳଙ୍କିତ କରିବା ଅପେକ୍ଷା ବରଂ ତୀର୍ଥଭୂମିକୁ ଯାଇ ଭିକ୍ଷାଟନ କରି ବଞ୍ଚିବା କ'ଣ ଶ୍ରେଷ୍ଠ ନୁହେଁ ମହାରାଜ ? ଏହି ପ୍ରଶ୍ନ ସେ ପଚାରିଲେ କୃଷ୍ଣଙ୍କୁ ! ଆଚ୍ଛା, ଆପଣ କହିଲେ, କ'ଣ ଭୁଲ ପ୍ରଶ୍ନଟିଏ ପଚାରିଲେ ଅର୍ଜୁନ ?''

ପ୍ରଶ୍ନ ଠିକ୍ କି ଭୁଲ ସେ ବିଷୟରେ କିଛି ମନ୍ତବ୍ୟ ନ ଦେଇ କହିଲି, ''କୃଷ୍ଣ ତ କ'ଣ ଉତ୍ତର ଦେଇଥିବେ । ସେ ଜଣେ ମହାନ୍ ଦାର୍ଶନିକ । କହ କି ଉତ୍ତର ସେ ଦେଲେ ?''

''ସେ ତ ଅନେକ ସମୟ ଧରି ତାଙ୍କୁ କିଛି କହୁଥାନ୍ତି କାନମୂଳରେ ଚୁପ୍ ଚୁପ୍ କରି । ଅର୍ଜୁନ ମଝିରେ ମଝିରେ କିଛି ପ୍ରଶ୍ନ ବି ପଚାରୁଥାନ୍ତି । କୃଷ୍ଣ ତାହାର ଉତ୍ତର ବି ଦେଉଥାନ୍ତି । ଆମକୁ ପରିଷ୍କାର କିଛି ଶୁଭୁ ନ ଥାଏ । ଅର୍ଜୁନ କିନ୍ତୁ ସବୁ ଶୁଣିପାରୁଥାନ୍ତି । କୃଷ୍ଣ ଏମିତି କିଛି ଗୋପନ ଉପଦେଶ ଦେଉଥାନ୍ତି ଯାହାଫଳରେ ଅର୍ଜୁନଙ୍କ ମୁଖମଣ୍ଡଳର ପ୍ରସନ୍ନତା ଫେରି

ଆସୁଥାଏ ଧୀରେ ଧୀରେ । ଆମେ କେବଳ ତାଙ୍କର ଶେଷ କେଇ ପଦ କଥା ଶୁଣିପାରିଲୁ ଯାହା ସେ ବଡ଼ ପାଟିରେ କହିଥିଲେ ।''

''କ'ଣ ସେ କଥା ?''

''ଉଠ ପାର୍ଥ ! ଜାଗ । ନିଜ କର୍ତ୍ତବ୍ୟ କରିଯାଅ । ଫଳାଫଳ ପ୍ରତି ଦୃଷ୍ଟି ରଖ ନାହିଁ । ତାହା ମତେ ହିଁ ସମର୍ପଣ କରିଦିଅ । ସକଳ ପାପରୁ ତୁମକୁ ମୁକ୍ତି କରିଦେବି ମୁଁ । କ୍ଷତ୍ରିୟର କର୍ତ୍ତବ୍ୟ ଯୁଦ୍ଧ କରିବା । ତାହାହିଁ ତୁମପାଇଁ ଧର୍ମ । ତାହା କର ।''

''ତାହା ପରେ ?''

''ଅର୍ଜୁନ ନୂଆ ଉତ୍ସାହ ଧରି ଉଠିଲେ । ବାରମ୍ବାର ଟଙ୍କାର ଦେଲେ ଗାଣ୍ଡୀବଧନୁରେ । ଦୁଇ ପକ୍ଷରୁ ଆସୁଥିବା ଟଙ୍କାର ଓ ପ୍ରତିଟଙ୍କାରର ଶବ୍ଦରେ ଯୁଦ୍ଧଭୂମି ମୁଖରିତ ହୋଇଉଠିଲା । ପୁଣି ବାଜିଉଠିଲା ଶଙ୍ଖ, ଭେରୀ ଆଦି ରଣବାଦ୍ୟ ଗମ୍ଭୀର ନାଦରେ । ଯୁଦ୍ଧ ଆରମ୍ଭ ହୋଇଗଲା ।''

ଅର୍ଜୁନଙ୍କୁ କୃଷ୍ଣ ଦେଇଥିବା ଉପଦେଶର ସାରକଥା ନିହିତ ତାଙ୍କଦ୍ୱାରା ଉଚ୍ଚାରିତ ଶେଷ କେତୋଟି ପଙ୍କ୍ତିରେ ଯାହା ସେ କହିଥିଲେ ଉଚ୍ଚସ୍ୱରରେ । ଏହା ଖାଲିତ ଅର୍ଜୁନଙ୍କ ପାଇଁ ନ ଥିଲା ଅଭିପ୍ରେତ । ବରଂ ଅଭିପ୍ରେତ ଥିଲା ଯୁଦ୍ଧରତ ସମସ୍ତ ବୀରଙ୍କ ପାଇଁ । ଖାଲି ସେତିକି ନୁହେଁ ସଂସାରରେ ଜୀବନସଂଗ୍ରାମରତ ସାରା ମାନବସମାଜ ପାଇଁବି । ମୋର ଶେଷ ଦେଖା ତାଙ୍କ ସହିତ ହେଲାବେଳେ ମତେ ଅନୁରୂପ ଉପଦେଶ ଦେଇ କହିଥିଲେ – କର୍ଣ୍ଣ ! ତୁମେ ନିଜ କର୍ତ୍ତବ୍ୟ କରିଯାଅ । ଫଳାଫଳ କଥା ଚିନ୍ତା କର ନାହିଁ । ବାସ୍ତବିକ ଏହା ହିଁ ତ ନିଷ୍କାମ କର୍ମର ସାରତତ୍ତ୍ୱ ଯାହା ବେଦାନ୍ତର ଛତ୍ରେ ଛତ୍ରେ ଅନୁରଣିତ । କୃଷ୍ଣ ଠିକ୍ ସେହି କଥାକୁ ହିଁ ଦେଇଥିଲେ ଅର୍ଜୁନଙ୍କ ଆଗରେ ଓ ମୋ' ଆଗରେ । କର୍ମବାଦର ଜଣେ ମହାନ୍ ପ୍ରବକ୍ତା ସେ । କେବଳ ତ ପ୍ରବକ୍ତା ନୁହନ୍ତି । ଜଣେ ସଫଳ ପ୍ରକର୍ତ୍ତା ମଧ । ସାରା ଜୀବନ ତାଙ୍କର କର୍ମମୟ । ନିଜପାଇଁ କିଛି ନୁହେଁ । ସବୁ ଜଗତର କଲ୍ୟାଣପାଇଁ । ତାଙ୍କ ବକ୍ତବ୍ୟ ହେଲା ମଣିଷ ଜୀବନ ଏକ ସ୍ୱାର୍ଥମେଧ ଯଜ୍ଞ । ପୂର୍ବରୁ ପଶ୍ଚିମକୁ ଓ ଉତ୍ତରରୁ ଦକ୍ଷିଣକୁ ଚାଲି ଚାଲି ସାରା ଆର୍ଯ୍ୟାବର୍ତ୍ତରେ ପ୍ରଚାର କରୁଛନ୍ତି ସେ ଏଇ କର୍ମବାଦ । ନିଜ ଜୀବନରେ ବି ତାହା କରାଇ ଦେଖାଇଦେଇଛନ୍ତି । ଗୋପପୁରରୁ ମଥୁରା, ମଥୁରାରୁ ଦ୍ୱାରକା ସର୍ବତ୍ର ରହିଆସିଛନ୍ତି ସେ । କିନ୍ତୁ କୌଣସି ଗୋଟିଏ ସ୍ଥଳର କର୍ମବନ୍ଧନ ତାଙ୍କୁ ବାନ୍ଧି ରଖିପାରି ନାହିଁ । ମୁକ୍ତ ବିହଙ୍ଗମ ଭଳି ଉଡ଼ି ବୁଲୁଛନ୍ତି ସେ ନୈଷ୍କର୍ମ୍ୟର ମହାକାଶ ବୁକୁରେ । ଅହରହ କର୍ମ କରି ମଧ ସେ କର୍ମହୀନତାର ଆନନ୍ଦରେ ମଗ୍ନ । ସେହି ମହାନ୍ ଦାର୍ଶନିକ କୃଷ୍ଣ ଆଜି ଅର୍ଜୁନଙ୍କ ମାଧମରେ ସାରା ମାନବଜାତିକୁ ବୁଝାଇଛନ୍ତି କର୍ମତତ୍ତ୍ୱ । ଆମର ଆଜି ବଡ଼ ଭାଗ୍ୟ ଯେ ତାଙ୍କ ଭଳି ଜଣେ ମହାପୁରୁଷଙ୍କୁ ରକ୍ତମାଂସଧାରୀ ମନୁଷ୍ୟରୂପରେ ଦେଖିପାରୁଛେଁ, ତାଙ୍କ କଥା ଶୁଣିପାରୁଛେଁ ଏବଂ ତାଙ୍କ ସହିତ ନିରନ୍ତର ମିଶିପାରୁଛେଁ । ଅର୍ଜୁନ ତ ଆହୁରି ଭାଗ୍ୟବାନ୍ । କାରଣ ତାଙ୍କ ରଥରେ ସ୍ୱୟଂ ସାରଥି ସେ ।

ମନେ ମନେ ଏଇ କଥା ଚିନ୍ତା କରୁଥିବା ଅବସରରେ ସୂର୍ଯ୍ୟଦେବ ବୁଡ଼ିଗଲେ ଧରଣୀବୁକୁରେ ଶେଷ ରଶ୍ମିଜାଲ ବିଛାଇଦେଇ । ରଣବାଦ୍ୟର ଧ୍ୱନି ଧୀରେ ଧୀରେ ନିସ୍ତବ୍ଧ

ହେବା ଅବସ୍ଥାରୁ କ୍ରମେ ବନ୍ଦ ହୋଇଗଲା ସଂପୂର୍ଣ୍ଣରୂପେ । ପ୍ରଥମ ଦିନର ଯୁଦ୍ଧ ଏବେ ପରିସମାପ୍ତ । ଉଭୟ ପକ୍ଷର ବୀରମାନେ ଫେରିଆସିଲେ ନିଜ ଶିବିରକୁ ।

ନରମାଂସଭକ୍ଷୀ ନିଶାଚର ଜନ୍ତୁମାନଙ୍କ କୋଳାହଳ କ୍ରମେ ଘନେଇ ଉଠିବାକୁ ଲାଗିଲା ଯୁଦ୍ଧଭୂମିରେ । କେତେ ସଧବାଙ୍କ ସୀମନ୍ତରୁ ସୀମନ୍ତ ଲିଭିଗଲା, କେତେ ନିରାଶ୍ରୟ ବୃଦ୍ଧ ପିତାମାତାଙ୍କ ଆଶ୍ରୟ ଯଷ୍ଟି ହଜିଗଲା, କେତେ ପ୍ରଣୟପେଲବ କେଳିମନ୍ଦିରର ଦୀପ ଲିଭିଗଲା, ତାହାର ହିସାବ ରଖିବା ହୋଇଉଠିଲା ଅସମ୍ଭବ । ଅନନ୍ତ କାଳ ମଧ୍ୟରେ ଏମାନଙ୍କ ଆନନ୍ଦ-ଉଲ୍ଲାସ, ଆଶା-ନିରାଶା, ସୁଖଦୁଃଖର ମୁହୂର୍ତ୍ତଗୁଡ଼ିକର ମୂଲ୍ୟ ବା କେତେ ? ମହାକାଳର ମହାଶୂନ୍ୟତା ମଧ୍ୟରେ ସବୁ ଲୀନ !

ସେଇ ମହାଶୂନ୍ୟତାରେ ହଜିଯିବା ଅବସରରେ ପୂର୍ଣ୍ଣତାର ସ୍ୱାଦୁ କିଏ ପାଇଛି ଅଥବା କିଏ ନ ପାଇଛି ତାହାର ହିସାବ କିଏ ବା ରଖିଛି ?

## ଅଣାଅଣୀ

ଏମିତି ଅତିକ୍ରାନ୍ତ ନଅ ଦିନର ଯୁଦ୍ଧ ପିତାମହ ଭୀଷ୍ମଙ୍କ ସେନାପତିତ୍ୱରେ । ତାଙ୍କ ପ୍ରତିଶ୍ରୁତି ଅନୁସାରେ ପ୍ରତିଦିନ ପାଣ୍ଡବପକ୍ଷର ଦଶସହସ୍ର ଯୋଦ୍ଧାଙ୍କୁ ଦେଇଛନ୍ତି ସେ ବୀରଗତିର ସୌଭାଗ୍ୟ । କୌରବପକ୍ଷର କ୍ଷୟକ୍ଷତି ବି କିଛି କମ୍ ନୁହେଁ । ହେଲେ ପାଣ୍ଡବମାନଙ୍କ କ୍ଷୟକ୍ଷତିଠାରୁ ଯଥେଷ୍ଟ କମ୍ । ଦୁର୍ଯ୍ୟୋଧନ ତେଣୁ ଖୁବ୍ ଉଲ୍ଲସିତ । ଯଦିଓ ପିତାମହଙ୍କ ନିଷ୍ଠା ଉପରେ ତଥାପି ତାଙ୍କର ସନ୍ଦେହ, ସେ ଭାବୁଛନ୍ତି ଏହିଭଳି ଗତି କଲେ ଯୁଦ୍ଧ ତାଙ୍କୁ ନିଶ୍ଚୟ ବିଜୟ ଆଣିଦେବ । ଅଜସ୍ର ବିପର୍ଯ୍ୟୟ ଓ କ୍ଷୟକ୍ଷତି କାରଣରୁ ପାଣ୍ଡବମାନଙ୍କ ମନରେ ସ୍ୱାଭାବିକ ବିଷଣ୍ଣତା ।

ଆଜି ଦଶମ ଦିନର ଯୁଦ୍ଧାରମ୍ଭ ହେବା ଉପରେ ।

ଯୁଦ୍ଧାରମ୍ଭ ପୂର୍ବରୁ ଦୁର୍ଯ୍ୟୋଧନ ଉପଗତ ମୋ' ଶିବିରରେ । ତାଙ୍କୁ ସ୍ୱାଗତ କରିବା ପୂର୍ବରୁ ସେ ମତେ କହି ପକାଇଲେ "ଏକ ଗୁରୁତର ସଂବାଦ ମିତ୍ର ଅଙ୍ଗରାଜ କର୍ଣ୍ଣ । ସେଇଟି ଦେବାକୁ ବ୍ୟକ୍ତିଗତ ଭାବରେ ଧାଇଁଆସିଛି ତୁମ ପାଖକୁ ।" କଣ୍ଠରେ ତାଙ୍କର ଉଦ୍‌ବେଗର ସ୍ୱାକ୍ଷର । କପାଳରେ ଚିନ୍ତାର ଭାଙ୍ଗ । ମୁଖମଣ୍ଡଳ ଅପ୍ରସନ୍ନ । ଭାବିନେଲି କିଛି ଗୋଟାଏ ଅଘଟଣ ଘଟିଛି ବୋଧହୁଏ ଏଇ ରାତି ଭିତରେ । କାରଣ କାଲି ସଂଧ୍ୟା ସମୟରେ ଖୁବ୍ ତ ପ୍ରସନ୍ନ ଜଣାପଡୁଥିଲେ ସେ । ଆକଣ୍ଠ ପ୍ରସନ୍ନା ମଦିରା ପିଇ ନାଚୁଥିଲେ ଉନ୍ମତ୍ତ ଭଳି । ବାରମ୍ବାର ଚିତ୍କାର କରୁଥିଲେ– ଆମ ବିଜୟ ସୁନିଶ୍ଚିତ । ଆମ ବିଜୟ ସୁନିଶ୍ଚିତ । ଏବେ ହଠାତ୍ ପୁଣି କ'ଣ ଘଟିଲା ବୋଲି ଆଶ୍ଚର୍ଯ୍ୟଚକିତ ମୁଁ ।

"କ'ଣ ସେ ସଂବାଦଟି ମିତ୍ର ?" ତାଙ୍କୁ ବସିବାକୁ ଆସନ ଦେଖାଇଦେଇ କଲି ପ୍ରତିପ୍ରଶ୍ନ । ସେ ଉତ୍ତରୀୟକୁ ସଜାଡୁଥିବା ଅବସରରେ ବସିଗଲେ ଏବଂ ଉତ୍ତରୀୟର ଗୋଟିଏ କାନିରେ ମୁହଁର ଝାଳକୁ ପୋଛିନେଲେ ।

"ପିତାମହଙ୍କ କାର୍ଯ୍ୟକଳାପ ଉପରେ ମୁଁ ଲକ୍ଷ୍ୟ ରଖିଆସୁଛି ଗତ କିଛି ଦିନ ଧରି ।"

"ଏହା ତୁମର ଅନ୍ୟାୟ ମିତ୍ର । ପିତାମହ କୁରୁ-ସିଂହାସନର ସୁରକ୍ଷା ଲାଗି ପ୍ରତିଶ୍ରୁତିବଦ୍ଧ । ସେ ସନ୍ଦେହର ଉର୍ଦ୍ଧ୍ୱରେ ।"

"କେବଳ କୁରୁସିଂହାସନର ସୁରକ୍ଷା ପାଇଁ । କୌରବମାନଙ୍କ ସୁରକ୍ଷା ପାଇଁ କିନ୍ତୁ ନୁହେଁ । ଗତ ରାତ୍ରିର ଘଟଣା ତାହା କରିଦେଇଛି ପ୍ରମାଣିତ ।" ଦୁର୍ଯ୍ୟୋଧନଙ୍କ ଆକ୍ଷେପୋକ୍ତି । ସତେଯେମିତି ଏକ ଦୃଢ଼ ପ୍ରମାଣ ପାଇଛନ୍ତି ପିତାମହଙ୍କ ବିରୋଧରେ । ସେ ପୁଣି କହିଲେ, "ସେଠାରୁ ସଂବାଦ ମିଳିଛି, କାଲି ରାତିରେ ଯୁଧିଷ୍ଠିର ପିତାମହଙ୍କୁ ଭେଟିଥିଲେ ।"

"ହେ ମିତ୍ର ! ଯୁଧିଷ୍ଠିରଙ୍କ ରାତ୍ରିବେଳାରେ ପିତାମହଙ୍କୁ ଦର୍ଶନ କରିବା କିଛି ଅସ୍ୱାଭାବିକ ନୁହେଁ । ଯୁଦ୍ଧର ନିୟମ ନିର୍ଦ୍ଧାରଣ ବେଳେ ତ ସ୍ଥିର ହୋଇଯାଇଛି ଯେ ଯୁଦ୍ଧ ବିରତି ସମୟରେ ଉଭୟ ପକ୍ଷ ପରସ୍ପର ସହିତ ମିତ୍ର ଭଳି ଆଚରଣ କରିବେ ବୋଲି । ତେଣୁ ଏଥିରେ ଆପତ୍ତି କରିବାର କ'ଣ ଅଛି ?" ତାଙ୍କୁ ସାନ୍ତ୍ୱନା ଦେଇ କହିଲି । ତାହା ପରେ କହିଲି, "ଆଚ୍ଛା, କହ ତ କେଉଁ ବିଷୟରେ ଆଲୋଚନା ହୋଇଥିଲା ? ଚର କିଛି ସଂବାଦ ସଂଗ୍ରହ କରିପାରିଛି କି ଏ ବିଷୟ ନେଇ ?"

"ନା, କିଛି ନୁହେଁ । କାରଣ ଆଲୋଚନା ହେଉଥିଲା ପିତାମହଙ୍କ ଅନ୍ତର୍ଭବନରେ । ତାହା ଭିତରକୁ ଯିବା ଅସମ୍ଭବ । ଦୂରରେ ଥାଇ ଚର ଯାହା ଆଭାସ ପାଇଛି, ତାହାହିଁ କହୁଥିଲା । କୁଆଡ଼େ 'ଶିଖଣ୍ଡୀ' ନାଁ ବାରମ୍ବାର ଉଚ୍ଚାରଣ କରୁଥିଲେ ପିତାମହ । ଏହାର ଅର୍ଥ କ'ଣ ଆଦୌ ଜଣାପଡୁ ନାହିଁ ।"

"ତୁମେ ପିତାମହଙ୍କୁ ଏ ବିଷୟରେ କିଛି ପଚାରିଥିଲ ?"

"ପଚାରିଛି । ତାଙ୍କ ପାଖରୁ ତ ଏଇ ତୁମ ପାଖକୁ ଆସୁଛି ମିତ୍ର ।"

"କ'ଣ କହିଲେ ସେ ?"

"ଯୁଧିଷ୍ଠିରଙ୍କ ଆସିଥିବା କଥା ସ୍ୱୀକାର କଲେ । କିନ୍ତୁ ଆଲୋଚନାର ବିଷୟବସ୍ତୁ ଗୁପ୍ତ ରଖିଲେ । କହିଲେ– ତାହା ମୋର ବ୍ୟକ୍ତିଗତ ବ୍ୟାପାର । ସେଥିରେ ତୁମର ମୁଣ୍ଡ ଖେଳାଇବା ଆବଶ୍ୟକ ନାହିଁ ।"

"ଆଉ ପୁଣି କିଛି କହିଲେ ନା ନାହିଁ ?"

"ହଁ, କହିଲେ– ମୋ' ହାତରେ ଅସ୍ତ୍ର ଥିବା ପର୍ଯ୍ୟନ୍ତ ହସ୍ତିନାପୁରର ସପକ୍ଷରେ ଲଢୁଥିବି । ପଛଘୁଞ୍ଚା ଦେବି ନାହିଁ କି କୌରବବାହିନୀକୁ ପରିତ୍ୟାଗ କରିବି ନାହିଁ । ତୁମେ ଏ ବିଷୟରେ ନିଶ୍ଚିନ୍ତ ଥାଅ ପୁତ୍ର ଦୁର୍ଯ୍ୟୋଧନ ।"

"ତା'ହେଲେ ମିତ୍ର, ତୁମର ଯୁଧିଷ୍ଠିରଙ୍କ ସାକ୍ଷାତ୍କାର ନେଇ ମୁଣ୍ଡ ଖେଳାଇବା କ'ଣ ଆବଶ୍ୟକ ? ପିତାମହ ତାଙ୍କ କଥା ନିଶ୍ଚୟ ରଖିବେ । ଏବେ ନିଶ୍ଚିନ୍ତ ହୋଇ ଯାଅ ଯୁଦ୍ଧଭୂମିକୁ ।"

''ସବୁ ବୁଝିପାରୁଛି ମିତ୍ର । କିନ୍ତୁ ପିତାମହଙ୍କ ଶକ୍ତି-ପରାକ୍ରମ ଯାହା ସେ ତ ଗୋଟିଏ ଦିନରେ ହିଁ ଯୁଦ୍ଧକୁ କରିଦେଇଥାନ୍ତେ ସମାପ୍ତ । ଅଥଚ ଦୀର୍ଘ ନଅ ଦିନ ଧରି ଗଡ଼ାଇ ଚାଲିଛନ୍ତି ଯୁଦ୍ଧକୁ । ପାଣ୍ଡବପ୍ରୀତି ହେତୁ ତାଙ୍କର ଏଭଳି ଶିଥିଳତା । ସେଥିପାଇଁ ଚିନ୍ତିତ ମୁଁ ।''

''କିନ୍ତୁ ସେ ତ ତାଙ୍କ ପ୍ରତିଶ୍ରୁତିମତେ ପାଣ୍ଡବବାହିନୀର ଦଶସହସ୍ର ସୈନ୍ୟଙ୍କୁ ନିତି ମାରି ଚାଲିଛନ୍ତି । ପାଣ୍ଡବମାନଙ୍କୁ ମାରି ନାହାନ୍ତି । କାରଣ ସେଥିପାଇଁ ବି ସେ ପ୍ରତିଶ୍ରୁତି ବଦ୍ଧ । ତେଣୁ ତୁମର ତାଙ୍କ ଉପରେ ଦୋଷାରୋପ କରିବା ଉଚିତ ନୁହେଁ ।'' ପିତାମହଙ୍କ ପକ୍ଷ ସମର୍ଥନ କରି କହିଲି ।

''କିନ୍ତୁ ମିତ୍ର, ତୁମେ ଯଦି ଯୁଦ୍ଧ କରୁଥାନ୍ତ, ତେବେ ଏତେବେଳକୁ ପାଣ୍ଡବମାନଙ୍କ ବୀରଗତି ହୋଇସାରନ୍ତାଣି ।''

''ହୁଏତ । କିନ୍ତୁ ତାହା ତ ଇଚ୍ଛା ନୁହେଁ ନିୟତିର । ନିୟତି ଆଜି ମୋ' ହାତଗୋଡ଼କୁ ବାନ୍ଧି ଦେଇ ମତେ ସ୍ଥାଣୁ ଭଳି ପକାଇ ରଖିଛି ଏଇ ଶିବିରରେ ।'' ପାଣ୍ଡବମାନଙ୍କ ବୀରଗତିର ସମ୍ଭାବନା ନେଇ ଛଳ ସାନ୍ତ୍ୱନା ଦେଇ କହିଲି । ମୁଁ ଯେ ଅର୍ଜୁନଙ୍କ ଛଡ଼ା ଆଉ କୌଣସି ପାଣ୍ଡବଙ୍କ ପ୍ରାଣ ନେବି ନାହିଁ ବୋଲି ମାତା କୁନ୍ତୀଦେବୀଙ୍କ ନିକଟରେ ପ୍ରତିଶ୍ରୁତିବଦ୍ଧ, ଏହା ଗୋପନ ରଖିଲି ତାଙ୍କଠାରୁ ।

ସେ ତାହା ପରେ ମୋ'ଠାରୁ ବିଦାୟ ନେଇ ଚାଲିଗଲେ ଯୁଦ୍ଧଭୂମିକୁ ।

ସେ ଚାଲିଯିବା ପରେ ଚିତ୍ତଗହନରେ ମୋର ଗଭୀର ଆନ୍ଦୋଳନ । ପିତାମହ ଭୀଷ୍ମ । ଅତୀତର ସେଇ ବୀର ଯେ ଏକୋଇଶବାର ପୃଥିବୀକୁ କ୍ଷତ୍ରିୟହୀନ କରିଥିବା ଜମଦଗ୍ନିନନ୍ଦନ ପରଶୁରାମଙ୍କୁ କରିଥିଲେ ପରାଜିତ । ସକଳ ବ୍ରହ୍ମାସ୍ତ୍ର ଓ ଦିବ୍ୟାସ୍ତ୍ରର ଅଧିକାରୀ । ସ୍ୱୟଂ ଦେବରାଜ ଇନ୍ଦ୍ର ବି ତାଙ୍କୁ ଯୁଦ୍ଧରେ ପାରିବେ କି ନାହିଁ ସନ୍ଦେହ । ଅଥଚ ଆଜି ନିର୍ବୀର୍ଯ୍ୟ ଓ ନିସ୍ତେଜ । ଏହାର କାରଣ କ'ଣ ତାଙ୍କ ବୃଦ୍ଧାବସ୍ଥା ନା ପାର୍ଥସାରଥି କୃଷ୍ଣଙ୍କ ଅଭୂତପୂର୍ବ ରଣକୌଶଳ ? ଅଥବା ପାଣ୍ଡବମାନଙ୍କର କିମ୍ବା ସେମାନଙ୍କ ସହାୟକ ଅନ୍ୟାନ୍ୟ ବୀରମାନଙ୍କର ଉଗ୍ରବୀରତା ? ନା, ନା, ଏହା କଦାପି ସମ୍ଭବ ନୁହେଁ । ଅନ୍ତତଃ ପିତାମହଙ୍କ ପରି ଜଣେ ଅଦ୍ୱିତୀୟ ବୀରଙ୍କ ପକ୍ଷେ । ଖାଲି ପ୍ରେମର କୋମଳ ଜାଲରେ ବନ୍ଧା ସେ । ସେହି ଜାଲ ଯାହା ଲୌହର ଶୃଙ୍ଖଳଠାରୁ ବହୁ ଗୁଣରେ ଦୃଢ଼ତର । ଭଗବାନ୍‌ଙ୍କୁ ଭକ୍ତ ସହିତ, ପିତାମାତାଙ୍କୁ ସନ୍ତାନ ସହିତ, ପ୍ରେମିକକୁ ପ୍ରେମିକା ସହିତ ଏଇ ପ୍ରେମର ବନ୍ଧନର ହିଁ ବାନ୍ଧି ରଖିଥାଏ ଅତି ନିବିଡ଼ ଭାବରେ । ଯେତେ ବଳବାନ୍ ଥିଲେ ମଧ୍ୟ ବ୍ୟକ୍ତି ପ୍ରେମ ନିକଟରେ ହୋଇଯାଏ ଅତ୍ୟନ୍ତ ଦୁର୍ବଳ । ଶିଶୁ ସନ୍ତାନ ଯଦି ଦରୋଟି ସ୍ୱରରେ ଡାକ ଦିଏ ପିତାମାତା ତା'କୁ ଉତ୍ତର ଦିଅନ୍ତି ସେଇ ଦରୋଟି ସ୍ୱରରେ । କେତୋଟି ମୁହୂର୍ତ୍ତ ଲାଗି ହୋଇଯାଆନ୍ତି ଶିଶୁ । ନିତାନ୍ତ ଅସହାୟ ଓ ଦୁର୍ବଳ । ଏଇ ବନ୍ଧନର ପରାକାଷ୍ଠା କେବଳ ତ ସୀମିତ ନ ଥାଏ ମନୁଷ୍ୟମାନଙ୍କ ମଧ୍ୟରେ । ଏହା ମଧ୍ୟ ପ୍ରସାରିତ ଇତର ପଶୁ-ପକ୍ଷୀ ଜଗତକୁ । ପ୍ରେମର ବାହୁ କୋମଳ ହେଲେ କ'ଣ ହେଲା, ତାହା ଲମ୍ବିତ ବହୁ ଦୂରକୁ । ପିତାମହ ଆଜି ସେଇ ପ୍ରେମର ବନ୍ଧନରେ ବନ୍ଦୀ । ମନ ଧାଉଁଛି ପାଣ୍ଡବମାନଙ୍କ ପ୍ରତି ।

ଅଥଚ ଶରୀର ସେବା କରୁଛି କୌରବମାନଙ୍କର । ତେଣୁ ତାଙ୍କର କୁରୁ-ପାଣ୍ଡବ ଯୁଦ୍ଧରେ ଏଭଳି ଶିଥିଳତା । ସେଥିପାଇଁ ତାଙ୍କୁ ଦୋଷ ଦେଇ ଲାଭ ବା କ'ଣ ? ସେ ତ ଜଣେ ରକ୍ତମାଂସଧାରୀ ମଣିଷ । ରକ୍ତର ଆହ୍ୱାନକୁ ଭୁଲିଯାଇପାରିବେ କିପରି ? ବିବଶତା । ହଁ, ବିବଶତା । ଏଇ ବିବଶତା ହିଁ କେବଳ ତାଙ୍କୁ ଏଇ ଯୁଦ୍ଧରେ କୌରବପକ୍ଷରେ ସେନାପତିଙ୍କ ଭୂମିକାରେ ଅବତୀର୍ଣ୍ଣ ହେବାପାଇଁ ବାଧ୍ୟ କରିଛି ।

ଏ ତ ଗଲା ଗୋଟିଏ ଦିଗରୁ ବିଚାର । ଆଉ ଗୋଟିଏ ଦିଗରୁ ବିଚାର କରିବାରେ ଅନ୍ୟ ଏକ ଯୁକ୍ତିର ପ୍ରଭଞ୍ଜନ ଦୋହଲାଇ ଦେଉଥିଲା ମୋ' ମନଃସ୍ଥିତିକୁ । ଭାବୁଥିଲି, ପିତାମହ ଏମିତି ଛଳନାପୂର୍ଣ୍ଣ ଆଚରଣ ଦେଖାଉଛନ୍ତି କାହିଁକି ? ଯଦି ଏଭଳି କରିବାର ଥିଲା, ତେବେ ପ୍ରକାଶ୍ୟରେ ପାଣ୍ଡବପକ୍ଷରେ ଯୋଗ ଦେଲେ ନାହିଁ କାହିଁକି ? ତାହା ଯଦି ନ କଲେ, ତେବେ ହସ୍ତିନାପୁରକୁ ଛାଡ଼ି ମହାମନ୍ତ୍ରୀ ବିଦୁରଙ୍କ ଭଳି ତୀର୍ଥାଟନରେ ବାହାରିଗଲେ ନାହିଁ କାହିଁକି ? ତାହା ନ କରି ସେ ସଂପ୍ରତି ଯେଉଁ ଆଚରଣ ଦେଖାଉଛନ୍ତି ସେଥିରେ ତାଙ୍କ ଯଶଃରେ କଳଙ୍କ ଲାଗିଯାଉ ନାହିଁକି ? ପରକ୍ଷଣରେ ଏହାର ଉତ୍ତର ମୁଁ ନିଜେ ହିଁ ଦେଇଦେଉଥିଲି ନିଜକୁ ସ୍ୱର୍ଗତ ପିତା ମହାରାଜ ଶାନ୍ତନୁଙ୍କୁ ଦେଇଥିବା ତାଙ୍କ ପ୍ରତିଶ୍ରୁତି କଥା ମନେପକାଇ । ସେ ତାଙ୍କୁ ପ୍ରତିଶ୍ରୁତି ଦେଇ କହିଥିଲେ ଆଜୀବନ ବ୍ରହ୍ମଚାରୀ ଥାଇ ହସ୍ତିନାପୁରର ସୁରକ୍ଷା ପ୍ରତି ଦୃଷ୍ଟି ଦେବେ ବୋଲି । ତେଣୁ ତୀର୍ଥାଟନରେ ଯାଇଥାନ୍ତେ ବା କିପରି ? ଅଥବା ପାଣ୍ଡବପକ୍ଷରେ ଥାଇ ହସ୍ତିନାପୁର ବିରୋଧରେ ଅସ୍ତ୍ର ଉତ୍ତୋଳନ କରିଥାନ୍ତେ ବା କିପରି ?

ଏମିତି ଚିନ୍ତା-ପ୍ରତିଚିନ୍ତା ମଧ୍ୟରେ ମୋର ମଧ୍ୟାହ୍ନ ଭୋଜନ ଶେଷ । ସାମାନ୍ୟ ଟିକିଏ ବିଶ୍ରାମ ନେବା ପରେ ଶିବିରରେ ବସିଛି, ଶୁଣିପାରିଲି ଅଦୂରରୁ ଭାସିଆସୁଥିବା ଯୁଦ୍ଧର ଘନଘୋର କଳରବ । ଅସ୍ତ୍ରଶସ୍ତ୍ରର ଝନତ୍କାର, ବାଣଗୁଡ଼ିକର ସାଇଁ ସାଇଁ ଶବ୍ଦ, ବୀରମାନଙ୍କର ଧନୁଷ୍ଟଙ୍କାର, ବାହନମାନଙ୍କର ଚିତ୍କାର ଓ ହତାହତମାନଙ୍କର ଆର୍ତ୍ତ କଣ୍ଠସ୍ୱର ହୋଇଉଠୁଥାଏ ଘନତର । ଗାଣ୍ଡୀବ ଧନୁର ଗମ୍ଭୀର ଟଙ୍କାର ସ୍ପଷ୍ଟ ବାଜୁଥାଏ କାନରେ । ଅର୍ଜୁନ ଘୋର ଯୁଦ୍ଧରତ ଥିବାର ନିଦର୍ଶନ । ଅତି ଭୀଷଣ ଯୁଦ୍ଧ ଚାଲିଛି ବୋଧହୁଏ । କିନ୍ତୁ କେଜାଣି କାହିଁକି ହଠାତ୍ ବନ୍ଦ ହୋଇଯାଏ ସବୁ ଶବ୍ଦ । ଖାଲି ଶୁଭୁଥାଏ ହାହାକାର ଧ୍ୱନି । ଭାବିଲି, ଏବେ ହୁଏତ କୌଣସିଜଣେ ମହାବୀରଙ୍କର ବୀରଗତି ହୋଇଯାଇଛି । ସେଥିପାଇଁ ଅସ୍ଥାୟୀ ଭାବରେ ଯୁଦ୍ଧବିରତି । ମନରେ ଉଦ୍‌ବେଗ ଜାଣିବାପାଇଁ କିଏ ସେହି ମହାବୀରଜଣକ ? ଏ କେଉଁ ବିରାଟ ବଟବୃକ୍ଷର ଉନ୍ମୂଳନ ହୋଇଛି ଯାହା ଫଳରେ କୁରୁକ୍ଷେତ୍ର ଯୁଦ୍ଧର ଏ ପରିଣତି ?

ମୋର ସକଳ ଉତ୍କଣ୍ଠାକୁ ଦୂର କରିଦେଇ ଚର ଆସି ଖବର ଦେଲା, ''ମହାରାଜ ! ଆଜି ପିତାମହ ଭୀଷ୍ମଙ୍କ ପତନ ହୋଇଗଲା ।''

''କେତେବେଳେ ?''

''ଏଇ କ୍ଷଣକ ପୂର୍ବରୁ । ସେଥିପାଇଁ ଯୁଦ୍ଧ ବନ୍ଦ ।''

''କାହାଙ୍କ ହାତରେ ?''

"ମହାବୀର ଦ୍ରୁପଦନନ୍ଦନ ଶିଖଣ୍ଡୀଙ୍କ ହାତରେ ।"

"ଅସମ୍ଭବ । ଏହା କେବେ ହୋଇପାରେନା । ଶିଖଣ୍ଡୀଙ୍କ ବୀରତ୍ୱ କେତେ ମତେ ଭଲ ଭାବରେ ଜଣା । ତାଙ୍କ ହାତରେ ପିତାମହଙ୍କ ପତନ ଘଟିପାରେନା । ଏହା ପଛରେ ନିଶ୍ଚୟ ଆଉ କିଛି ରହସ୍ୟ ଅଛି ।"

"ହଁ, ମହାରାଜ ! ଲୋକେ ତ ସେଇଆ ସନ୍ଦେହ କରୁଛନ୍ତି । ଆଉ କୁହାକୁହି ହେଉଛନ୍ତି ଗୋଟିଏ ବିଚିତ୍ର କଥା ।"

"କ'ଣ ସେ କଥା ଶୀଘ୍ର କହ ଚର ?" ମନରେ ମୋର ଭରା ଆଗ୍ରହ ଓ ଉତ୍କଣ୍ଠା ।"

"ପିତାମହ ଖୁବ୍ ବୀରତ୍ୱର ସହିତ ଲଢୁଥାନ୍ତି । ହଠାତ୍ ସେଠାକୁ ଆସି ଶିଖଣ୍ଡୀ ତାଙ୍କୁ ଯୁଦ୍ଧପାଇଁ କରନ୍ତି ଆହ୍ୱାନ । ତାଙ୍କୁ ଦେଖି ସେ ଅସ୍ତ୍ରତ୍ୟାଗ କରନ୍ତି । ଶିଖଣ୍ଡୀ କିନ୍ତୁ ଅସ୍ତ୍ରପ୍ରହାର କରି ଚାଲନ୍ତି । ପିତାମହ କେବଳ ନୀରବରେ ସହିଯାଆନ୍ତି ସମସ୍ତ ପ୍ରହାର ।"

"ତାହାପରେ ?"

"ଏତିକିବେଳେ ଆସିଯାଆନ୍ତି ଅର୍ଜୁନ । ସେ ଶିଖଣ୍ଡୀଙ୍କ ପଛରେ ଥାଇ ପିତାମହଙ୍କ ଉପରେ ପ୍ରଚଣ୍ଡ ଭାବରେ କରନ୍ତି ଗୋଟିକ ପରେ ଗୋଟିଏ ଶସ୍ତ୍ରାଘାତ । ଶେଷରେ ସେ ଟଳିପଡ଼ନ୍ତି ରଥରୁ । କ୍ଷତବିକ୍ଷତ ଶରୀର ଧରି ପଡ଼ନ୍ତି ଯୁଦ୍ଧଭୂମିରେ ।" ଏହା କହୁ କହୁ ତା'ର କଣ୍ଠ ରୁଦ୍ଧ ହୋଇଆସିଲା ଦୁଃଖର ଆବେଗରେ ।

ମନେ ମନେ ଅର୍ଜୁନଙ୍କର ଖୁବ୍ ନିନ୍ଦା କଲି । ତାଙ୍କ ଭଳି ଜଣେ ବୀରଙ୍କ ପକ୍ଷେ ଏଭଳି ଛଳଯୁଦ୍ଧ ଅନୁଚିତ । ବିଶେଷକରି ପିତାମହଙ୍କ ପରି ତାଙ୍କର ଜଣେ ହିତାକାଙ୍କ୍ଷୀ ବ୍ୟକ୍ତିଙ୍କ ବିରୋଧରେ । ଏ କ'ଣ କଲେ ଅର୍ଜୁନ ? ବର୍ଷ ବର୍ଷ ଧରି ତାଙ୍କର ଯେଉଁ ଶୁଭ୍ର ଯଶଃ, ତହିଁରେ ଚିରଦିନ ଲାଗି କଳଙ୍କ ବୋଳିଦେଲେ ସିନା ! କେବଳ ତ ନିଜ ଯଶକୁ ନୁହେଁ, ସାରା କୁରୁବଂଶର ଯଶକୁ ଆଜି କରିଦେଲେ କଳଙ୍କିତ !

"ପିତାମହଙ୍କର ମୃତ୍ୟୁ ହୋଇ ନ ଥିବ । କାରଣ ସେ ପିତାଙ୍କଠାରୁ ପାଇଛନ୍ତି ଇଚ୍ଛା ମୃତ୍ୟୁର ବର ।"

"ହଁ, ମହାରାଜ । ସେ ଏପର୍ଯ୍ୟନ୍ତ ବି ଜୀବିତ । ଯୁଦ୍ଧଭୂମିରେ ପଡ଼ିରହିଛନ୍ତି ଶରଶଯ୍ୟାରେ ।"

ତାହା ପରର ଏହିପରି ବର୍ଣ୍ଣନା କରେ ଚର । ତହିଁରୁ ବୁଝିପାରେ ମୁଁ ଅର୍ଜୁନଙ୍କ ଅସାଧାରଣ ବୀରତ୍ୱ । ଆଉ ପିତାମହଙ୍କର ତାଙ୍କ ପ୍ରତି ଥିବା ଗଭୀର ପ୍ରେମଭାବ ଯାହା ଆଶୀର୍ବାଦର ଅମୃତରେ ସଦା ଉଛୁଳ । ପିତାମହଙ୍କ ସାରା ଅଙ୍ଗ ବାଣ ଭରପୂର । ଅଥଚ ଶିର ବାଣହୀନ । ବାଣଗୁଡ଼ିକର ଆଧିକ୍ୟ ଭୂମିକୁ ସ୍ପର୍ଶ ନ କରି ଶରଶଯ୍ୟାରେ ଥାଆନ୍ତି । ଶିରଟି ଝୁଲି ପଡ଼ିଥାଏ ତଳକୁ । ଖୁବ୍ କଷ୍ଟ ଦେଉଥାଏ । ସେ ଚାହାନ୍ତି ଏକ ଉପଯୁକ୍ତ ଉପାଧାନ । ଦୁର୍ଯ୍ୟୋଧନ ଆଣି ଦିଅନ୍ତି ସୁକୋମଳ ତୁଳି-ଉପାଧାନ । ତାହା କିନ୍ତୁ ପ୍ରତ୍ୟାଖ୍ୟାନ କରନ୍ତି ସେ । ବୀର ଅର୍ଜୁନଙ୍କ ଆଡ଼େ ଚାହାନ୍ତି । ତାଙ୍କ ବୀରୋଚିତ ଇଚ୍ଛା ପୂରଣ କରିବାକୁ ଯାଇ ଅର୍ଜୁନ ତିନୋଟି ବାଣ ମାରି ମୁଣ୍ଡଟିକୁ ଟେକିଦିଅନ୍ତି ଉପରକୁ ।

ପ୍ରସନ୍ନତା ଖେଳିଯାଏ ପିତାମହଙ୍କ ମୁଖମଣ୍ଡଳରେ । ପୁଣି ତୃଷ୍ଣାରେ ଅଧୀର ହୋଇ ମାଗନ୍ତି ଜଳ । ଦୁର୍ଯ୍ୟୋଧନ ରାଜଭବନରୁ ଆଣିଦିଅନ୍ତି ସୁବାସିତ ଜଳର ଏକ ପୂର୍ଣ୍ଣ କଳସ । ତାହାକୁ ବି ସେ କରନ୍ତି ପ୍ରତ୍ୟାଖ୍ୟାନ । ଅର୍ଜୁନଙ୍କ ଆଡ଼େ ଚାହିଁବାରେ ସେ ବାଣ ମାରି ଭୂମି ଫୁଟାଇ ଗଙ୍ଗାର ଧାରାକୁ କରାନ୍ତି ଉଦ୍‌ଗତ । ସେଇ ଜଳ ପିଇ ଅଶେଷ ପରିତୃପ୍ତ ହୁଅନ୍ତି ସେ । ଅର୍ଜୁନଙ୍କୁ ସାଧୁବାଦ ଜଣାନ୍ତି । ଆଉ ଆଶୀର୍ବାଦ କରି କହନ୍ତି, "ବିଜୟୀ ଭବ ବତ୍ସ !" ଦୁର୍ଯ୍ୟୋଧନ ଅପମାନିତ ଓ ଅପ୍ରସନ୍ନ । ପିତାମହଙ୍କ ମୁଖମଣ୍ଡଳରେ କିନ୍ତୁ ଶାନ୍ତି ଓ ସୌମ୍ୟଭାବ !

ଏହି ଖବର ଦେବା ପରେ ଚର ବିଦାୟ ନେଇଗଲା ମୋ' ଶିବିରରୁ ।

ଯେଉଁପରି ଭାବରେ ପିତାମହଙ୍କ ପତନ ହେଲା, ସେଥିରୁ ବୁଝିପାରିଲି ବିଗତ ରାତ୍ରିରେ ତାଙ୍କର ଯୁଧିଷ୍ଠିରଙ୍କ ସହିତ ହୋଇଥିବା କଥୋପକଥନର ପ୍ରକୃତ ରହସ୍ୟ । ସେ ନିଜ ମୃତ୍ୟୁର ରହସ୍ୟଟିକୁ ଖୋଲି ଦେଇଥିଲେ ଯୁଧିଷ୍ଠିରଙ୍କ ଆଗରେ । ଶିଖଣ୍ଡୀଙ୍କୁ ସେ ନାରୀ ରୂପରେ ଗଣୁଥିଲେ । ବାସ୍ତବରେ ଶିଖଣ୍ଡୀ ଜନ୍ମ ହୋଇଥିଲେ କନ୍ୟାରୂପରେ । ପରେ ଲିଙ୍ଗ ପରିବର୍ତ୍ତନ ଫଳରେ ହୋଇଛନ୍ତି ପୁରୁଷ । କିନ୍ତୁ ତାଙ୍କ ପୁରୁଷତ୍ୱକୁ ସ୍ୱୀକାର କରିବାପାଇଁ ଅନିଚ୍ଛୁକ ପିତାମହ । ସେ ଅସ୍ତ୍ର ଧରିଥିବା ହେତୁ ପିତାମହ ବାଧହୋଇ ଛାଡ଼ିଦେଲେ ନିଜ ଅସ୍ତ୍ର-ଶସ୍ତ୍ର । କାରଣ ବୀରଙ୍କ ପକ୍ଷରେ ନାରୀହତ୍ୟା କିମ୍ବା ନାରୀ ପ୍ରତି ଅସ୍ତ୍ରାଘାତ ଅନୁଚିତ । ପିତାମହ ଜଣେ ମହାବୀର । ବୀରତ୍ୱର ସକଳ ନୀତିନିୟମ ଓ ଶୃଙ୍ଖଳାର ଜ୍ଞାନରେ ପରିଶୀଳିତ । ସେ ତେଣୁ ନିବୃତ୍ତ ହେଲେ ଏଇ ନିନ୍ଦନୀୟ କର୍ମରୁ । ଏଥିରୁ ମୋର ସ୍ପଷ୍ଟ ଧାରଣା ହେଲା, ପିତାମହଙ୍କ ପତନ ସ୍ୱେଚ୍ଛାକୃତ । ପାଣ୍ଡବମାନଙ୍କୁ ବିଜୟୀ ହେବାପାଇଁ ସୁଯୋଗ ଦେବାଲାଗି ଏଇ ଅଭିନବ ଇଚ୍ଛା ପତନଟିର ସୃଷ୍ଟି ।

ତେବେ ଗୋଟିଏ କଥା ଆନନ୍ଦ ଦେଉଥିଲା ମତେ । ଏଣିକି ଏଇ ଯୁଦ୍ଧରେ ଯୋଗଦେଇ ପାରିବି । ଚିର ଆକାଂକ୍ଷିତ ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧାର କଳ୍ପନାକୁ କରିପାରିବି ରୂପାୟିତ । ବାଃ ! କି ସୁଯୋଗ ! ଏହାକୁ ହରାଇବାର ନୁହେଁ !

## ଅଶୀ

ପିତାମହ ଭୀଷ୍ମ ମତେ ଜୀବନସାରା ଘୃଣା କରିଆସିଛନ୍ତି । କରିଆସିଛନ୍ତି ବି ହେୟ ଜ୍ଞାନ । ସୂତପୁତ୍ର ବୋଲି କହି ବାରମ୍ବାର ଦେଇଆସିଛନ୍ତି ଆଘାତ । ମୋ' ବୀରତ୍ୱକୁ ସ୍ୱୀକାର କରିବା ପାଇଁ ଏକାନ୍ତ ଅନିଚ୍ଛୁକ । ମୋ' ଆଗରେ ଅର୍ଜୁନଙ୍କ ଭୂୟସୀ ପ୍ରଶଂସା କରିଆସିଛନ୍ତି ବହୁ ବାର । ତାଙ୍କ ମତରେ ଅର୍ଜୁନ ଚନ୍ଦ୍ର ହେଲେ ମୁଁ କୁଆଡ଼େ ବାମନ । ତେଣୁ ଅର୍ଜୁନରୂପୀ ଚନ୍ଦ୍ରକୁ ଛୁଇଁବାର ମୋର ଯେଉଁ ଆଶା-ଆକାଂକ୍ଷା ତାହା ଏକାନ୍ତ ଅଯଥାର୍ଥ । ତାଙ୍କରି ପାଇଁ ତ ଆଜି ମୁଁ ଶିବିରରେ ବନ୍ଦୀ ହେଲା ଭଳି ପଡ଼ିରହିଛି । ପିଞ୍ଜରାବଦ୍ଧ ସିଂହଟି ଭଳି ଖାଲି ଛାଡୁଛି ଗର୍ଜନ । ନିତାନ୍ତ ନିଷ୍ଫଳ ଓ ନିରର୍ଥକ । ତାଙ୍କ ବୟସ ଓ ସାମୟିକ

ରାଜନୈତିକ ସ୍ଥିତିକୁ ଆଖି ଆଗରେ ରଖି ମୁଁ ସିନା ନୀରବ ରହୁଛି । କିଛି କରୁ ନାହିଁ ପ୍ରତିବାଦ । ସବୁ ସହିଯାଉଛି ପଥରଟି ଭଳି । କିନ୍ତୁ ମନେ ମନେ ତାଙ୍କ ପ୍ରତି ଯେ କ୍ରୋଧଭାବ ଆସୁ ନାହିଁ ସେ କଥା କହିଲେ ହେବି ମିଥ୍ୟାବାଦୀ । ପ୍ରକୃତପକ୍ଷେ ତାଙ୍କ ପ୍ରତି ଖୁବ୍ କ୍ଷୁବ୍ଧ ମୁଁ । କେବଳ ବିବଶ ହୋଇ ସମସ୍ତ କ୍ଷୋଭକୁ ହୃଦୟ ମଧ୍ୟରେ ଚାପି ରଖିଛି ଯାହା ।

ଆଜି କିନ୍ତୁ ତାଙ୍କ ପତନରେ ସବୁ କିଛି ଓଲଟ-ପାଲଟ । ତାଙ୍କ ପ୍ରତି ଥିବା କ୍ରୋଧ ଓ ଅସୂୟାଭାବ ମୋର ଯାଇଛି ତୁଟି । ଅଭିମାନର ତୁଷାର-ପର୍ବତ ମୋର ବିଗଳିତ । ଇଚ୍ଛା ହେଲା, ତାଙ୍କ ପାଖକୁ ଯାଇ ଶେଷ ଦର୍ଶନ କରିବି । ଅନୁମତି ମାଗିବି ଏଇ ମହାସମରରେ ଯୋଗଦାନ ପାଇଁ । ଆଉ ମାଗିବି ବି ଆଶୀର୍ବାଦ । ତାଙ୍କ ଭଳି କୁଳବୃଦ୍ଧଙ୍କ ଆଶୀର୍ବାଦର ଯଥେଷ୍ଟ ମୂଲ୍ୟ ଅଛି ଜୀବନରେ । ବିଶେଷକରି ଏ ମହାସଂଗ୍ରାମରେ ।

ପିତାମହଙ୍କ ଇଚ୍ଛା, ବର୍ତ୍ତମାନ ଦେହତ୍ୟାଗ କରିବେ ନାହିଁ । କରିବେ ସୂର୍ଯ୍ୟଙ୍କ ଉତ୍ତରାୟଣ ସମୟରେ । ବର୍ତ୍ତମାନ ଦକ୍ଷିଣାୟନର ପ୍ରାୟ ଶେଷ ପର୍ଯ୍ୟାୟ । ଆଉ କିଛି ଦିନ ପରେ ହେବ ମକର ସଂକ୍ରାନ୍ତି । ସେହିଦିନଠାରୁ ଉତ୍ତରାୟଣର ଆରମ୍ଭ । ସେଇ ସମୟ ଭିତରେ ବାଛିନେବେ ଗୋଟିଏ ଦିନ ଦେହତ୍ୟାଗ ପାଇଁ । ଏଇ ଦୀର୍ଘଦିନର ବ୍ୟବଧାନ ମଧ୍ୟରେ ତାଙ୍କ ଦେହକୁ ସୁରକ୍ଷିତ ରଖିବାକୁ ହେବ ହିଂସ୍ରଜନ୍ତୁମାନଙ୍କ ଆକ୍ରମଣ ଭୟରୁ । ଦୁର୍ଯ୍ୟୋଧନ ତେଣୁ ସଶସ୍ତ୍ର ପ୍ରହରୀମାନଙ୍କର ବ୍ୟବସ୍ଥା କରିଛନ୍ତି । ଶରଶଯ୍ୟାର ଚାରିପଟେ ଖୋଳାଯାଇଛି ଗଭୀର ଖାତ । ଇତର ପ୍ରାଣୀମାନେ ବାଧା ପାଇବେ ଯେମିତି ।

ତାଙ୍କ ପତନ ପରେ ଦୀର୍ଘ ସମୟ ଧରି ଲାଗିରହିଲା ତାଙ୍କୁ ଦେଖିବାପାଇଁ ଦର୍ଶକମାନଙ୍କ ଭିଡ଼ । କେହି କେହି ଏକାକୀ ଯାଉଥାନ୍ତି ତ ଆଉ କେହି କେହି ଯାଉନ୍ତି ଦଳ ଦଳ ହୋଇ । ପୁରନାରୀମାନଙ୍କ ଭିଡ଼ ବି କିଛି କମ୍ ନ ଥାଏ । ନିଶାର୍ଦ୍ଧ ହେବାକୁ ଘଡ଼ିଏ ବାକି । ଦର୍ଶକମାନଙ୍କ ଯିବା ସଂପୂର୍ଣ୍ଣ ବନ୍ଦ । ଏହି ସମୟକୁ ଉପଯୁକ୍ତ ବିଚାରି ଗଲି ତାଙ୍କ ପାଖକୁ ।

ତାଙ୍କ ପାଦ ଦୁଇଟିକୁ ଛୁଇଁ ପ୍ରଣାମ କରିବା ଅବସରରେ କହିଲି, ''ମୁଁ ସୂତପୁତ୍ର ରାଧେୟ କର୍ଣ୍ଣ ପ୍ରଣାମ କରୁଛି ପିତାମହ ।''

ସେ ଧୀରେ ଧୀରେ ଆଖି ଖୋଲିଲେ । ପ୍ରସନ୍ନ ମୁଖରେ କ୍ଷୀଣ ସ୍ୱର ତୋଳି କହିଲେ, ''ଆସ ପୁତ୍ର କର୍ଣ୍ଣ, ମୋ' ପାଖକୁ ଆସ ।''

ତାଙ୍କ ପାଖକୁ ଗଲି । ସେ ମୋ' ହାତପାପୁଲିକୁ ଧରିବାପାଇଁ ଚେଷ୍ଟା କରୁଥିଲେ । କିନ୍ତୁ ପାରିଲେ ନାହିଁ । ହାତ ଟେକିବାକୁ ସଂପୂର୍ଣ୍ଣ ଅକ୍ଷମ । ଅଗଣିତ ବାଣ ମାରିବାର ଶକ୍ତି ବହନ କରିଥିବା ହସ୍ତ ଏବେ ପୂରାପୂରି ଅଚଳ । ହାୟ ରେ ଭାଗ୍ୟ ! କହିଲେ କରୁଣ କଣ୍ଠରେ, ''ମୋ' ହାତରେ ତୁମ ହାତ ରଖ ପୁତ୍ର ।''

ମାନିଲି ତାଙ୍କ କଥା । ସେ ଆବେଗରେ ଚାପିରଖିଲେ ମୋ' ହାତକୁ ଏବଂ କହିଲେ । ''ହେ ପୁତ୍ର ! ତୁମେ ସୂତପୁତ୍ର ନୁହଁ । ରାଧେୟ ବି ନୁହଁ । ତୁମେ କୌନ୍ତେୟ । ତୁମେ ପ୍ରଥମ

ପାଣ୍ଡବ । ପ୍ରାଣ ମୋର ଚାହୁଁଥିଲା ତୁମକୁ ଦେଖିବାପାଇଁ । ଆସିଲ, ଖୁବ୍ ଭଲ କଲ ।''

ସାରା ଶିରା-ପ୍ରଶିରାରେ ମୋର ବିଜୁଳିର ଚମକ । ଏ କି ନାମରେ ଆଜି ମତେ ଡାକୁଛନ୍ତି ପିତାମହ ? ସାରା ଜୀବନ ଧରି ଯେ ମତେ ସୂତପୁତ୍ର କହି ଘୃଣା କରି ଆସୁଥିଲେ, ଆଜି ଡାକୁଛନ୍ତି ପ୍ରଥମ ପାଣ୍ଡବ ବୋଲି ? କୌନ୍ତେୟ ବୋଲି ? ପଚାରିଲି, ''ମୁଁ କୌନ୍ତେୟ ନୁହେଁ ପିତାମହ । ରାଧେୟ କର୍ଣ୍ଣ । ପାଣ୍ଡବ ନୁହେଁ । ଅଧୀରଥପୁତ୍ର ।''

''ମୁଁ ସଜ୍ଞାନରେ ଅଛି । କିଛି ଭୁଲ କହୁ ନାହିଁ । ମୁଁ ଜାଣେ ତୁମେ କୌନ୍ତେୟ । ତୁମେ ପାଣ୍ଡବ । ବାସୁଦେବ କୃଷ୍ଣ ମତେ ସବୁ କଥା କହିଛନ୍ତି ।''

''ତା'ହେଲେ ମତେ ସୂତପୁତ୍ର ବୋଲି କହି ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା କରିବାରେ ବାରଣ କରୁଥିଲେ କାହିଁକି ? ଆପଣଙ୍କ ଯୋଗରୁ ହିଁ ମୁଁ ଆଜି ଏଭଳି ବନ୍ଦୀ ଅବସ୍ଥାରେ ପଡ଼ି ରହିଛି ଶିବିରରେ । ବୀର୍ଯ୍ୟ ଥାଇ ପାଲଟିଯାଇଛି ନିର୍ବୀର୍ଯ୍ୟ ।'' ମୋର ଉଦ୍‌ଗତ ଅଭିମାନ ।

''ମୋ' ନିଜ ସ୍ୱାର୍ଥ ପାଇଁ ପୁତ୍ର । ଆଉ ଜଗତର ସ୍ୱାର୍ଥ ପାଇଁ ମଧ୍ୟ ।''

''କିଛି ବୁଝିପାରିଲି ନାହିଁ ପିତାମହ ।''

''ଅର୍ଜୁନ ଓ ତୁମେ ମୋ' ନିକଟରେ ସମାନ ଭାବରେ ପ୍ରିୟ । ଜାଣିଥିଲି ତୁମ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ହେଲେ କାହାଙ୍କର ଜଣଙ୍କର ବୀରଗତି ହେବ ହିଁ ହେବ । ତୁମ ଦୁହିଁଙ୍କ ମଧ୍ୟରୁ କାହାଙ୍କୁ ହରାଇବାକୁ ଚାହୁଁ ନ ଥିଲି । ଆଉ ଶୁଣ ବି ପୁତ୍ର । ହଜାରେ ବର୍ଷରେ ଜଣେ କର୍ଣ୍ଣ ଓ ଜଣେ ଅର୍ଜୁନ ଜନ୍ମ ନିଅନ୍ତି । ତୁମ ଦୁହିଁଙ୍କ ଅମୂଲ୍ୟ ଜୀବନ ଜଗତ ପକ୍ଷରେ ମଙ୍ଗଳକର । ଦୁଇଟିରୁ ଗୋଟିଏ ଜୀବନ ଚାଲିଗଲେ ଜଗତର ଅଶେଷ କ୍ଷତି । ସେଥିପାଇଁ ଜାଣିଶୁଣି ତୁମ ଦୁହିଁଙ୍କ ସଂଘର୍ଷକୁ କରିଆସୁଥିଲି ନିବାରଣ । ଏ ବୃଦ୍ଧ ପିତାମହର କଥାକୁ କିଛି ଧରିବ ନାହିଁ ପୁତ୍ର ।'' ଭାବପ୍ରବଣ ଭାବରେ କହିଗଲେ ସେ । ଦୁଇଚକ୍ଷୁରୁ ଧାର ଧାର ହୋଇ ଲୁହ ବହିଯିବାକୁ ଲାଗିଲା । ମୁଁ ନିଜ ଉତ୍ତରୀୟରେ ତାଙ୍କ ଅଶ୍ରୁଧାରକୁ ପୋଛିଦେଇ କହିଲି, ''ମତେ କ୍ଷମା କରିବେ ପିତାମହ ଆପଣଙ୍କୁ ଏଭଳି ପ୍ରଶ୍ନ ଆଘାତ ଦେଲି ବୋଲି ।''

''କ୍ଷମା କରିବା ପ୍ରଶ୍ନ ଉଠୁ ନାହିଁ ପୁତ୍ର । ତୁମର ଅଛି ଅଧିକାର । ମୋ' ଅଧିକାର ବଳରେ ତୁମକୁ ଗୋଟିଏ କଥା କହିବି । ରଖିବ ପୁତ୍ର ?'' ଏକପ୍ରକାର ଅଳି କରିବା ଢଙ୍ଗରେ ଉତ୍ତର ଆଶାରେ ଚାହୁଁଥାନ୍ତି ମତେ ।

କହିଲି, '' ରଖିବି ପିତାମହ, ରଖିବି ନିଶ୍ଚୟ । କିନ୍ତୁ ମୋ' ଧର୍ମର ବିନିମୟରେ ନୁହେଁ ।''

''ଜ୍ୟେଷ୍ଠଭ୍ରାତା ଅନୁଜମାନଙ୍କର ପିତା ସମାନ । ସେମାନଙ୍କୁ ସୁରକ୍ଷା ଦେବା ତାଙ୍କ ଧର୍ମ । ଏ କଥା ମାନୁଛ ନା ନାହିଁ ?''

''ମାନୁଛି ପିତାମହ ।'' ମୋର ଅକୁଣ୍ଠ ସମର୍ଥନ ।

''ପାଣ୍ଡବମାନେ ତୁମ ସହୋଦର ଅନୁଜ । ସେମାନଙ୍କୁ ଆଶ୍ରୟ ଦେବା ତୁମ ଧର୍ମ । ତୁମେ ତେଣୁ ସେମାନଙ୍କ ପାଖକୁ ଏବେ ଚାଲିଯାଅ । ସୁରକ୍ଷା ଦିଅ ସେମାନଙ୍କୁ । ତା'ହେଲେ ଏ ଯୁଦ୍ଧ ଏତିକିରେ ବନ୍ଦ ହୋଇଯିବ ଆପେ ଆପେ ।''

''ତାହା କିନ୍ତୁ ଅସମ୍ଭବ ପିତାମହ । ଅନ୍ତତଃ ବର୍ତ୍ତମାନର ପରିସ୍ଥିତିରେ ।''

''କାହିଁକି ଅସମ୍ଭବ ?'' ପିତାମହଙ୍କ ଅଧୈର୍ଯ୍ୟ ଓ ଉତ୍କଣ୍ଠିତ ପ୍ରଶ୍ନ !

''ଆଉ ଏକ ଧର୍ମ ମତେ କରିଦେଇଛି ବିବଶ । ଦୁର୍ଯ୍ୟୋଧନଙ୍କ ସହିତ ମିତ୍ରତାର ବନ୍ଧନରେ ବନ୍ଧା ମୁଁ । ତାଙ୍କୁ ଏ ବିପତ୍ତି ବେଳେ ଛାଡ଼ିପାରିବି ନାହିଁ । ମୋ' ଜନ୍ମରହସ୍ୟର ଦ୍ୱାର ଖୋଲିଦେବାକୁ ଯାଇ କୃଷ୍ଣ ବି ଏହି କଥା କହିଥିଲେ ମତେ । ମାତା କୁନ୍ତୀଦେବୀ ବି କହିଥିଲେ । କିନ୍ତୁ ସେମାନଙ୍କୁ ଫେରାଇଦେଇଛି । ଆପଣଙ୍କ କଥା ରଖିପାରୁ ନାହିଁ ବୋଲି କ୍ଷମା ଦେବେ । ମୁଁ କାଲିଠାରୁ ଯୁଦ୍ଧକୁ ଯିବି । ମତେ ଅନୁମତି ଦିଅନ୍ତୁ । ଆଉ ଦିଅନ୍ତୁ ବି ଆଶୀର୍ବାଦ ।''

ପିତାମହଙ୍କ ସଜଳ ନୟନ ତଳେ ସକରୁଣ ଦୃଷ୍ଟି । ସେ କହିଲେ, ''ତୁମେ ଯୁଦ୍ଧ କରିପାର ପୁତ୍ର । ମୁଁ ଜାଣେ ତୁମେ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବ ନିଶ୍ଚୟ । ତେଣୁ ବିଜୟର ଆଶୀର୍ବାଦ ଦେଇପାରିବି ନାହିଁ । ଅର୍ଜୁନ ଆସିଥିଲେ ବି ତାଙ୍କୁ ତୁମ ବିରୋଧରେ ଲଢ଼ିବାପାଇଁ ଦେଇ ନ ଥାନ୍ତି ସେଭଳି ଆଶୀର୍ବାଦ ।''

''ଆପଣଙ୍କ ଇଚ୍ଛାମତ ଆଶୀର୍ବାଦ ଦିଅନ୍ତୁ ପିତାମହ ।''

''ଦୀର୍ଘାୟୁର୍ଭବ ବତ୍ସ !'' ଆଶୀର୍ବାଦ ଦେଇ କହିଲେ ସେ । ଆଖିକଣରେ ସ୍ନେହ ଓ କରୁଣିମାର ଏକ ମିଶ୍ରିତ ପ୍ରବାହ !

ତାଙ୍କ ପାଦଧୂଳିକୁ ମୁଣ୍ଡରେ ମାରି ବିଦାୟ ନେଲି ତାଙ୍କଠାରୁ । ସେଇ ମୋର ଶେଷ ଦେଖା । ବିଦାୟକାଳୀନ ତାଙ୍କ ସକରୁଣ ଚାହାଣିରେ ବିଚଳିତ ମୁଁ । ରହିପାରିଲି ନାହିଁ ଆଉ ଅଧିକ ସମୟ । ରହିଥିଲେ ନିଜେ ହୁଏତ ଫାଟିପଡ଼ିଥାନ୍ତି କୋହଭରା ବିଳାପରେ । ଝଡ଼ ବେଗରେ ଚାଲିଆସିଲି ତାଙ୍କ ପାଖରୁ । ଆଉ ଫେରି ଚାହିଁ ନାହିଁ ପଛକୁ । ଯୁଦ୍ଧଭୂମିର ସୀମାନ୍ତରେ ଥିବା ଗୋଟିଏ ବୃକ୍ଷରୁ କେଉଁ ଏକ ଏକାକୀ ପକ୍ଷୀର କାତର କାକଳି ଭାସି ଆସୁଥିଲା ଧୀରେ ଧୀରେ ! ମୋ' ବୁକୁ-ପକ୍ଷୀଟି ବି ତାହା ସହିତ ତାଳ ଦେଇ କାନ୍ଦୁଥିଲା ଗୁମୁରି ଗୁମୁରି !!

## ଏକାଅଶୀ

ଆଜି ଯୁଦ୍ଧର ଏକାଦଶ ଦିବସ । ପିତାମହଙ୍କ ପତନ ପରେ ଦ୍ରୋଣାଚାର୍ଯ୍ୟ ଏବେ କୌରବବାହିନୀର ସେନାପତି ।

ମୁଁ ଆଜି ପ୍ରଥମ ଥର ପାଇଁ ବାହାରୁଛି ଯୁଦ୍ଧଭୂମିକୁ । ଅସ୍ଥାୟୀ ଭାବରେ ମୋ' ଅଧିକ୍ଷତାରୁ ଅପସାରିତ ଏକ ଅକ୍ଷୌହିଣୀ ସେନାବାହିନୀ ପୁନର୍ବାର ଫେରି ପାଇଛି ।

ଯୁଦ୍ଧଯାତ୍ରା କରିବା ପୂର୍ବରୁ କେଜାଣି କାହିଁକି ଏଇ ଯୁଦ୍ଧ ସଂପର୍କରେ ମନରେ ଜାଗିଲା ଏକ ବିଚିତ୍ର ଅନୁଚିନ୍ତା । ଭାବୁଥାଏ, ଗତ ଦଶ ଦିନ ଧରି ଯୁଦ୍ଧ ହେଲା । ଆଉ କେତେ ଦିନ ଯୁଦ୍ଧ ହେବ ଜଣା ନାହିଁ । କେଉଁ ପକ୍ଷ ବିଜୟୀ ହେବ ତାହା ବି ଅଜଣା । ଏଇ ଦଶ ଦିନ ମଧ୍ୟରେ କ'ଣ ମିଳିଛି କେଉଁ ପକ୍ଷକୁ ? କ'ଣ ବା ହରାଇବସିଛି କେଉଁ ପକ୍ଷ ? ଅଗଣିତ ଜନସଂହାର ଘଟିଛି ଉଭୟ ପକ୍ଷରୁ । ସବୁ ତ କ୍ଷତି । ଲାଭ ଆଉ କେଉଁଠି ? କୁରୁକ୍ଷେତ୍ରର ପବିତ୍ର ଭୂମିରେ ଯେଉଁ ରକ୍ତନଦୀ ବହିଚାଲିଛି ତାହା ଆଉ କେତେ ଦିନ ବହିବ କେଜାଣି ? ଯୁଦ୍ଧର ଗତିରୁ ଯାହା ଜଣାପଡୁଛି, ଏଣିକି ତାହା ଫୁଲିଉଠିବ ସିନା, ଆଉ କମିବାର ଆଶା ନାହିଁ । ବିବୃଦ୍ଧା ତଟିନୀ ଦୁଇ କୂଳର ଗଛଗୁଡ଼ିକୁ ଉପାଡ଼ିଦେବା ପର୍ଯ୍ୟନ୍ତ ତାହା ବହିଚାଲିଥିବ । ତା'ହେଲେ କ'ଣ ଏଇ ଯୁଦ୍ଧର ଲକ୍ଷ୍ୟ କେବଳ ଧ୍ୱଂସସାଧନ ? କେବଳ ମୃତ୍ୟୁର ଆବାହନ ? ମଣିଷ କ'ଣ କେବଳ ମରିବା ପାଇଁ ଲଢୁଛି ? ବଞ୍ଚିବା ପାଇଁ ନୁହେଁ ?

ଯୁଦ୍ଧ କ'ଣ ଅନ୍ତିମ ସତ୍ୟ ଯାହାଦ୍ୱାରା ସମସ୍ତ ସମସ୍ୟାର ପ୍ରକୃତ ରୂପ ଦେଖିହୁଏ ? ଆଉ ସମାଧାନ ବି କରିହୁଏ ? ଏଇ ମହାଭାରତ ଯୁଦ୍ଧ ଯେପରି ଭୟଙ୍କର ରୂପ ନେଇଛି ଏବଂ ଆହୁରି ଅଧିକ ଭୟଙ୍କର ରୂପ ନେବାର ସମ୍ଭାବନା ଅଛି, ସେଥିରେ ତ ମନୁଷ୍ୟଜାତି ଜୀବନ ପ୍ରତି ସକଳ ଶ୍ରଦ୍ଧା ଓ ପ୍ରେମ ହରାଇବସିବ । ଶ୍ରଦ୍ଧା ଓ ପ୍ରେମ ନ ଥିଲେ ଜୀବନ ତ ମୃତ୍ୟୁ ସମାନ । ଏଭଳି ଜୀବନ୍ମୃତ୍ୟୁର ବଳୟ ମଧ୍ୟରେ ଥାଇ ମନୁଷ୍ୟଜାତି କେତେଦିନ ଆଉ ତିଷ୍ଠି ରହିବ ? ଏହା ଫଳରେ ରାଷ୍ଟ୍ରର ସାଂସ୍କୃତିକ ଭିତ୍ତିଟି ଟଳମଳ ହୋଇପଡ଼ିବ ସିନା ! ଅସଂସ୍କୃତ ରାଷ୍ଟ୍ରରେ ରହିବାଟା ହିଂସ୍ରଜନ୍ତୁ ଅଧ୍ୟୁଷିତ ଅରଣ୍ୟ ମଧ୍ୟରେ ରହିବା ସହିତ ସମାନ । କାହିଁକି ତା'ହେଲେ ହୋଇଛି ଏ ଯୁଦ୍ଧ ? ମତେ ଯାହା ଜଣାପଡୁଛି ଅନ୍ତର୍ଦୃଷ୍ଟିରେ ବାସୁଦେବ କୃଷ୍ଣ ହିଁ ଏହାର ମୂଳରେ । ସେଇ ହିଁ ଏହାର କାରଣ, କାର୍ଯ୍ୟ ଓ ପରିଣତି । ଯେତେବେଳେ ଯୁଦ୍ଧର ବୀଜଟି ବପନ କରାଗଲା ଦ୍ୟୁତକ୍ରୀଡ଼ାରେ ସେ ସେତେବେଳେ ଥିଲେ ପାଣ୍ଡବମାନଙ୍କ ସହିତ ଖୁବ୍ ପରିଚିତ ଓ ତାଙ୍କର ହିତାକାଙ୍କ୍ଷୀ ମଧ୍ୟ । ତାହାକୁ ବାଧା ଦେଇ ନ ଥିଲେ ସେ । ବରଂ ରହିଥିଲେ ନିରପେକ୍ଷ । ପାଣ୍ଡବମାନଙ୍କ ବନବାସ ସମୟରେ ସେମାନଙ୍କୁ ସାନ୍ତ୍ୱନା ଓ ଉତ୍ସାହ ଦେଇଆସିଥିଲେ । ବିବାହବନ୍ଧନ ଆଦି ନାନା ମାଧ୍ୟମରେ ଶକ୍ତିଶାଳୀ କରାଇଚାଲିଥିଲେ ସେମାନଙ୍କୁ । ରାଜ୍ୟଭାଗ ଦାବି କରିବାପାଇଁ ଅନୁପ୍ରେରିତ ବି କରିଥିଲେ । କୁରୁରାଜସଭାକୁ ପାଣ୍ଡବ ପକ୍ଷରୁ ଶାନ୍ତିର ସନ୍ଦେଶ ଧରି ଆସିଥିଲେ । ନିଜ ଅଲୌକିକତାର ଝଲକ ଦେଖାଇ କୌରବମାନଙ୍କୁ ଓ ସେମାନଙ୍କ ସମର୍ଥକମାନଙ୍କୁ କରାଇଥିଲେ ବି ଭୟଭୀତ । ସେଦିନର ଶାନ୍ତିଦୂତ ଆଜି ଯୁଦ୍ଧରେ ପାର୍ଥ ସାରଥି । ଅସ୍ତ୍ର ଧରି ନାହାନ୍ତି ସତ । କିନ୍ତୁ ନାନା ଭାବରେ ଯୁଦ୍ଧର ଗତିକୁ କରୁଛନ୍ତି ନିୟନ୍ତ୍ରିତ । ଏଇ ତ ନିଜେ କରୁଥିବା ପ୍ରତିଜ୍ଞାକୁ ଭଙ୍ଗ କରି ଯୁଦ୍ଧର ତୃତୀୟ ଦିନ ଭୀଷ୍ମଙ୍କ ଉପରେ ଚକ୍ରାଘାତ କରିବାକୁ

ହେଉଥିଲେ ଉଦ୍ୟତ । କାରଣ ଅର୍ଜୁନଙ୍କ ଜୀବନ ପ୍ରତି ବିପଦ ଆସୁଥିଲା ଘନେଇ । ଅର୍ଜୁନ ତାଙ୍କୁ ନିଜ ପ୍ରତିଜ୍ଞା କଥା ସ୍ମରଣ କରାଇଦେଇ ଚକ୍ରାଘାତ ପାଇଁ ବାରଣ କରି ନ ଥିଲେ ସେ ହୁଏତ ଯୁଦ୍ଧ କରିଥାନ୍ତେ ସେଦିନ । ତାଙ୍କରି ପ୍ରରୋଚନାରେ ସିନା ଚକ୍ର ପ୍ରତ୍ୟାହୃତ କଲେ ସେ । ଏଥିରୁ ଯାହା ଜଣା ଯାଉଛି ସେ ଏକ ନିର୍ଦ୍ଦିଷ୍ଟ ଦିଗରେ ଚାହାନ୍ତି ଯୁଦ୍ଧକୁ ନେବାପାଇଁ । ତାହାର ସାମାନ୍ୟ ଦିଗଭ୍ରଷ୍ଟତା ସହିପାରୁ ନାହାନ୍ତି । ଏ ସବୁ କାହିଁକି ? କେଉଁଥିପାଇଁ ସେ କରାଉଛନ୍ତି ଏ ଯୁଦ୍ଧ ? କେଉଁଥିପାଇ ବିଞ୍ଚି ଦେଉଛନ୍ତି ଧ୍ୱଂସଲୀଳାର ଏ ଭସ୍ମରାଶି ? କ'ଣ ପାଣ୍ଡବମାନଙ୍କ ପ୍ରତି କରାଯାଇଥିବା ଅନ୍ୟାୟର ପ୍ରତିଶୋଧ ନେବାପାଇଁ ? ଅନ୍ଧ ଧୃତରାଷ୍ଟ୍ରଙ୍କୁ ଓ ତାଙ୍କ ପୁତ୍ରମାନଙ୍କୁ ସତ୍ୟ କ'ଣ ତାହା ଦେଖାଇଦେବା ପାଇଁ ? ଅଥବା ପାଣ୍ଡବ ଯୁଧିଷ୍ଠିରଙ୍କୁ କୁରୁସିଂହାସନରେ ଅଧିଷ୍ଠିତ କରାଇବା ପାଇଁ ?

ଏଇଭଳି ପ୍ରଶ୍ନମାନ ଯେତେ ପଚାରୁଛି ନିଜକୁ, ସେତେ ମନ ମୋର ଖୋଜି ବୁଲୁଛି ସେଗୁଡ଼ିକର ଉତ୍ତର ନିଜ ଅନ୍ତର୍ଦୃଷ୍ଟି ମାଧ୍ୟମରେ । ତାହାରି ଆଲୋକରେ ସ୍ପଷ୍ଟ ଦେଖିପାରୁଛି ଏଇ ଯୁଦ୍ଧର ପ୍ରକୃତ ଲକ୍ଷ୍ୟ । ଏହାର ଲକ୍ଷ୍ୟ ଏ ସବୁ କିଛି ନୁହେଁ । କୃଷ୍ଣ ଏ ଯୁଦ୍ଧଟିକୁ କରାଇଛନ୍ତି ଏବଂ ଏକ ନିର୍ଦ୍ଦିଷ୍ଟ ନିୟନ୍ତ୍ରିତ ପଥରେ ଗତି କରାଉଛନ୍ତି କେବଳ ଗୋଟିଏ ଉଦ୍ଦେଶ୍ୟ ଲାଗି । ଜୀବନର ଯାହା ଚିରନ୍ତନ ସତ୍ୟ ତାହା କିପରି ମାନବଜାତି ବୁଝୁ ସେଇ ସୁଯୋଗଟି ଦେବାଲାଗି । ତେଣୁ ସତ୍ୟୋପଲବ୍ଧି ଲାଗି ଏ ଯୁଦ୍ଧ । କୁରୁସିଂହାସନର ଅଧିକାର ପାଇଁ ନୁହେଁ କିମ୍ବା ରାଜ୍ୟଭାଗର ଯଥାର୍ଥତାକୁ ପ୍ରତିପାଦିତ କରିବାପାଇଁ ନୁହେଁ । ମଣିଷ ମଧ୍ୟରେ ଅଛି ଯେଉଁ ଅମର ଚେତନା ତାହା ଚିର ଆଲୋକମୟ । ସେଇ ଚେତନାର ଉପଲବ୍ଧି ଲାଗି ମୁନିଋଷିମାନେ ଓ ଅନ୍ୟାନ୍ୟ ପୂର୍ବଜ ମହାପୁରୁଷମାନେ ଦେଖାଇଯାଇଛନ୍ତି ଉପଯୁକ୍ତ ପଥ । ଧର୍ମଶାସ୍ତ୍ର, ନୀତିଶାସ୍ତ୍ରମାନେ ତାହାକୁ ଦୋହରାଇଛନ୍ତି । ଅଥଚ ମଣିଷ ପଥଭ୍ରଷ୍ଟ ହୋଇ ନିଜ କର୍ତ୍ତବ୍ୟ ଭୁଲିଯାଇଛି । ଅନ୍ୟାୟ, ଅଧର୍ମ, ଲୋଭ, ମୋହ, ଆସକ୍ତି ଆଦିରେ ମାତି ରହିଛି । ଏହାର ପରିଣତି ଯେ କି ଭୟଙ୍କର ହୋଇପାରେ ତାହା ଦେଖାଇଦେଉଛି ଏ ଯୁଦ୍ଧ । ଯେତେବେଳେ ସକଳ ଶାନ୍ତିମୟ ପନ୍ଥା ବ୍ୟର୍ଥବିଫଳ, ସେତେବେଳେ ଯୁଦ୍ଧ ହେବ ହିଁ ହେବ । ଏଇ ଶିକ୍ଷା ମାନବଜାତି ପାଇବ ଏ ଯୁଦ୍ଧରୁ । ଆଜି କୃଷ୍ଣ ନ ଥିଲେ ଆଉ କାହାଙ୍କ ହାତରେ ହୁଏତ ଏହା କରାଯାଇଥାନ୍ତା । ଏହାର ଚରମ ଲକ୍ଷ୍ୟ ତେଣୁ ଧ୍ୱଂସ ନୁହେଁ । ବରଂ ଗଠନ । ପୁନର୍ଗଠନ । ନୂଆ ସମାଜ ଗଢ଼ିଉଠିବ । ଅପସଂସ୍କୃତି ଦୂର ହୋଇଯିବ । ପଙ୍କିଳ ସରୋବରର ବୁକୁ ଫୁଟାଇ ଶାନ୍ତି, ମୈତ୍ରୀ, ସହୃଦୟତାର ଶତଦଳ ଉଠିବ ବିକଶି । ଏହାହିଁ ଲକ୍ଷ୍ୟ ଏ ଯୁଦ୍ଧର । ନୂତନ ପିଢ଼ି ପାଇଁ ଯଥେଷ୍ଟ ଦିଗ୍‌ଦର୍ଶନ ଦେବ ଏଇ ଯୁଦ୍ଧ ମହାଭାରତ ମହାସମର । ମହାଧ୍ୱଂସର ଭସ୍ମସ୍ତୂପ ଉପରେ ମହାମୃତର ସୁରଧୁନୀ-ଧାରା ଢାଳି ଦେଇଯିବ ! ଯୁଗସ୍ରଷ୍ଟା ମହାପୁରୁଷ କୃଷ୍ଣଙ୍କର ଏହାହିଁ ଇଚ୍ଛା ।

ତାଙ୍କ ଉଦ୍ଦେଶ୍ୟରେ ମନେ ମନେ ଶତ ପ୍ରଣାମ କରି ରଥରେ ବସିଲି ଓ ବାହାରିଲି ଯୁଦ୍ଧଭୂମିକୁ । ସେତେବେଳେ ମୋ' ସୈନ୍ୟବାହିନୀ ଉଲ୍ଲସିତ ହୋଇ ଚିତ୍କାର କରିଉଠୁଥିଲା, "ଜୟତୁ ଅଙ୍ଗରାଜଃ କର୍ଣ୍ଣଃ ଜୟତୁ ।"

ମନରେ ମୋର ଉଦଗ୍ର ପିପାସା, କେତେବେଳେ ପାଇବି ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାର ସୁଯୋଗ ?

## ବୟାଅଶୀ

'ବିଜୟ' ନାଁ ଥିବା ମୋ' ରଥଟିର ବସି ଦ୍ରୁତଗତିରେ ଆଗେଇ ଚାଲିଥାଏ ଯୁଦ୍ଧଭୂମିକୁ । ସେଠାରେ ପହଞ୍ଚି ସର୍ବପ୍ରଥମେ ଖୋଜିଲି ଅର୍ଜୁନଙ୍କୁ । ଇନ୍ଦ୍ରପ୍ରଦତ୍ତ ମହାଶକ୍ତିଟିକୁ ସଞ୍ଚିତ କରି ରଖିଛି କେବଳ ତାଙ୍କରି ଉପରେ । ଥରଟିଏ ମାତ୍ର ମତେ ଯୁଦ୍ଧରେ ଭେଟିଲେ ତାଙ୍କର ସମସ୍ତ ଗର୍ବ ହେବ ଖର୍ବ । ବୀରଗତି ପାଇବେ ସେ । ବାରମ୍ବାର ଧନୁଷ୍ଟଙ୍କାର ଦେଇ ଆହ୍ୱାନ କଲି ତାଙ୍କୁ, ''ଆସ ଅର୍ଜୁନ, ଆସ । ବଡ଼ ବୀର ବୋଲି ଗର୍ବ ଅଭିମାନରେ ଫୁଲିଉଠୁଛ ପରା । ଯଦି ଶକ୍ତି ଅଛି, ତେବେ ତାହାର ପରିଚୟ ଦିଅ ମୋ' ଆଗରେ ।''

ମୋ' ଧନୁଷ୍ଟଙ୍କାରର ପ୍ରତ୍ୟୁତ୍ତର ଦେଲେ ସେ ଗାଣ୍ଡୀବର ତୀବ୍ର ଗମ୍ଭୀର ଟଙ୍କାରରେ । ଦୂରରୁ ଦେଖିଲି ତାଙ୍କ ରଥର କପିଧ୍ୱଜା । ମନେ ମନେ ଭାରି ଖୁସି । ଏଇ, ଅର୍ଜୁନ ଆସିଗଲେ । ମୋର ଚିରପୋଷିତ ଆଶା ଏବେ ହେବ ପୂରଣ । ବଡ଼ ଉତ୍କଣ୍ଠାର ସହିତ ଅପେକ୍ଷା କରିରହିଲି ତାଙ୍କ ଆଗମନକୁ । ତାହାକୁ ତ୍ୱରାନ୍ୱିତ କରିବାପାଇଁ ଧନୁଷ୍ଟଙ୍କାର ମୋର ଧାରଣ କରିବାକୁ ଲାଗିଲା ଆହୁରି ତୀବ୍ରତର ସ୍ୱର । କିନ୍ତୁ ହଠାତ୍ ପରିସ୍ଥିତିର ପରିବର୍ତ୍ତନ । ଲକ୍ଷ୍ୟ କଲି, କୃଷ୍ଣ ଅର୍ଜୁନଙ୍କୁ କର୍ଣ୍ଣମୂଳରେ କିଛି ଗୋପନ କଥା କହିଲେ । ତାହା ପରେ ଫେରାଇନେଲେ ରଥ ଓ ତାହାକୁ ବାହିନେଲେ ଅନ୍ୟ ଦିଗକୁ । ବୁଝିପାରିଲି, ସେ କୌଣସିମତେ ଅର୍ଜୁନଙ୍କୁ ମୋ' ସହିତ ଯୁଦ୍ଧ କରିବାର ସୁଯୋଗ ଦେବାକୁ ଅନିଚ୍ଛୁକ । ଏହାର କାରଣ କ'ଣ ଜାଣିପାରୁ ନ ଥାଏ ।

ଅର୍ଜୁନଙ୍କ ପରିବର୍ତ୍ତେ ଭୀମସେନ ମତେ ପ୍ରତ୍ୟାହ୍ୱାନ ଦିଅନ୍ତି ଯୁଦ୍ଧପାଇଁ । ମନ ଚାହୁଁ ନ ଥାଏ ତାଙ୍କ ସହିତ ଯୁଦ୍ଧ କରିବାକୁ । ସ୍ୱାଭାବିକ ଅନୁଜପ୍ରେମ ଦୁର୍ବଳ କରିଦେଉଥାଏ ମତେ । ମାତା କୁନ୍ତୀଦେବୀଙ୍କୁ ଦେଇଥିବା ବଚନ ପୁଣି କରିଦେଉଥାଏ ଆହୁରି ଦୁର୍ବଳତର । ଯୁଦ୍ଧ କରୁ କରୁ ଅସାବଧାନତାରେ ଯଦି କିଛି ଘଟିଯାଏ ଏବଂ ଯଦି ତାଙ୍କର ବୀରଗତି ହୋଇଯାଏ, ତା'ହେଲେ କିପରି ମୁହଁ ଦେଖାଇବି ତାଙ୍କୁ ? ଭୀମସେନ ତାଙ୍କ ଆଡୁ ଆଗ ଆକ୍ରମଣ କରନ୍ତି ମୋ' ଉପରେ । ମୁଁ କେବଳ ଆତ୍ମରକ୍ଷା ହିଁ କରୁଥାଏ । ଏହାକୁ ସମ୍ଭବତଃ ସେ ଭାବୁଥାନ୍ତି ମୋ' ଦୁର୍ବଳତା ବୋଲି । ମୋ' ସାରଥିଙ୍କୁ ଆଘାତ କରି ମୃତ୍ୟୁମୁଖକୁ ଦିଅନ୍ତି ଠେଲି । ରଥଟିକୁ ବି ଦିଅନ୍ତି ଭାଙ୍ଗି । କ୍ରୋଧରେ ବାଧ ହୋଇ ଶସ୍ତ୍ରାଘାତ କରେ ମୁଁ । ସଙ୍ଗେ ସଙ୍ଗେ ସେ ତଳେ ପଡ଼ିଯାଆନ୍ତି । ମନରେ ମୋର ଆଶଙ୍କା, ହୁଏତ ତାଙ୍କ ବୀରଗତି ହୋଇଯାଇଛି । ଉତ୍କଣ୍ଠିତ ହୋଇ ଧାଇଁଯାଏ ତାଙ୍କ ପାଖକୁ ପରୀକ୍ଷା କରିବାପାଇଁ । ପ୍ରାଣତଳେ ମୋର ବେଦନାକ୍ତ ଚିତ୍କାର ! ଏ ମୁଁ କ'ଣ କଲି ଆଜି ? ମାଆଙ୍କ କଥାକୁ ରଖିପାରିଲି ନାହିଁ । ଆଉ ଅଳ୍ପ ଦୂର ଅଛି ତାଙ୍କ ପାଖରେ ପହଞ୍ଚିବା ପାଇଁ । ଦେଖିଲି, ସେ

ଉଠିବାପାଇଁ ଚେଷ୍ଟା କରୁଛନ୍ତି । ତା' ହେଲେ ବଞ୍ଚିଛନ୍ତି ସେ । ଆଶ୍ୱସ୍ତ ହେଲି । ମତକୁ ହଠାତ୍ କରିଦେଲି ପରିବର୍ତ୍ତିତ । ପାଖରେ ପହଞ୍ଚି ଧନୁର୍ଗୁଣକୁ ବେଢ଼ାଇ ଆଣିଲି ତାଙ୍କ ଗ୍ରୀବାଦେଶରେ ଓ ତାଙ୍କୁ ଟାଣି ଟାଣି ଉଠାଇଦେଲି । କ୍ରୋଧିତ କଣ୍ଠରେ କହିଲି, ''ଇଚ୍ଛା ହେଉଛି, ତୁମ ପିଠିକୁ ପ୍ରତୋଦଦ୍ୱାରା ଆଘାତ କରନ୍ତି । କିନ୍ତୁ ତୁମେ ଏବେ ନିରସ୍ତ୍ର । ତେଣୁ ଛାଡ଼ିଦେଲି । ଜୀବନ ଧରି ଚାଲିଯାଅ । ଆଉ ଏପରି ଦୁଃସାହସ କରିବ ନାହିଁ କେବେ ।''

ସରମରେ ମୁଣ୍ଡ ପୋତି ଚାଲିଗଲେ ସେ । ତାଙ୍କ ଜୀବନରେ ଏଇଟା ଥିଲା ପ୍ରଥମ ପରାଜୟ ।

ସାରା ଯୁଦ୍ଧଭୂମିରେ ଖୋଜିଲି ଅର୍ଜୁନଙ୍କୁ । କିନ୍ତୁ କେଉଁଠିହେଲେ ପାଇଲି ନାହିଁ । ସୁଚତୁର ପାର୍ଥସାରଥି କୃଷ୍ଣ ତାଙ୍କୁ ନେଇଯାଇଥିଲେ ମୋ'ଠାରୁ ବହୁ ଦୂରକୁ । ଏପରିକି ତାଙ୍କ ଗାଣ୍ଡୀବର ଟଙ୍କାର-ଶବ୍ଦ ବି ଶୁଣାଯାଉ ନ ଥିଲା ମତେ । ଆଶ୍ଚର୍ଯ୍ୟ ମୁଁ । କୁଆଡ଼େ ଗଲେ ଅର୍ଜୁନ ? ବାସୁଦେବ କୃଷ୍ଣ କ'ଣ କେଉଁଠି ଲୁଚାଇ ରଖିଛନ୍ତି ତାଙ୍କୁ ? ଏଇ କୁରୁକ୍ଷେତ୍ର ଯୁଦ୍ଧଭୂମିରେ ନା ଆଉ କେଉଁଠି ? କିନ୍ତୁ କାହିଁକି ? କ'ଣ ଏହାର ରହସ୍ୟ ? ଅର୍ଜୁନଙ୍କ ଭଳି ମହାବୀର ସମ୍ଭାଳି ରହିଛନ୍ତି ବା କେମିତି ? ବାରମ୍ବାର ମୋ' ଆହ୍ୱାନର ପ୍ରତ୍ୟୁତ୍ତର ନ ଦେବାରୁ ତାଙ୍କୁ କ'ଣ କହୁଥିବେ ଲୋକମାନେ ? ଭୀରୁ କାପୁରୁଷ ବୋଲି ନୁହେଁ କି ? କିପରି ସହିଛନ୍ତି ସେ ଏଇ ଅପମାନ ?

ସୂର୍ଯ୍ୟଙ୍କ କିରଣ ଯେତେ ପ୍ରଖର ହୋଇଉଠୁଥାଏ ମୋ' କ୍ରୋଧ ସେତେ ବଢ଼ିଉଠୁଥାଏ । ମତେ ଲାଗୁଥାଏ, ମୋର ପିତା ସୂର୍ଯ୍ୟଦେବ ଯେମିତି ନିଜ ରଶ୍ମିର ଶାଣ ପଥରରେ ମୋ' ନାରାଚ ଗୋମୁଖ, ଭିନ୍ଦିପାଳ, ସୁବର୍ଣ୍ଣପୁଙ୍ଖ, ବସ୍ତିକ, ଗଜାସ୍ଥି, ଗୃଧ୍ରପତ୍ର, ଜିହ୍ମ, ସୂଚୀ ଆଦି ବିଭିନ୍ନ ବାଣକୁ ଶାଣିତ କରିଦେଇ ମତେ ବାରମ୍ବାର ଉତ୍ସାହିତ କରି କହୁଛନ୍ତି, ''ଯାଅ ପୁତ୍ର କର୍ଣ୍ଣ, ଯାଅ । ଅର୍ଜୁନଙ୍କୁ ଖୋଜି ବାହାର କର । ତାଙ୍କ ସହିତ ଯୁଦ୍ଧ କର । ବିଜୟ ତୁମର ।'' ଉତ୍ସାହିତ ହୋଇ ତାଙ୍କୁ ଖୋଜୁଥିବା ଅବସରରେ ବ୍ୟର୍ଥବିଫଳ ହୋଇ ମୋ' ପୁଞ୍ଜୀଭୂତ କ୍ରୋଧକୁ ଢାଳିଦେଉଛି ଅନ୍ୟ ବିପକ୍ଷୀ ବୀରମାନଙ୍କ ଉପରେ । ବିରାଟ ଓ ଦ୍ରୁପଦଙ୍କ ଅନେକ ବୀର ବୀରଗତି ପାଇଛି ମୋ' ହାତରେ । ମୋ' ହାତରେ ଯାଦବବୀର ସାତ୍ୟକି ବି ଗଭୀର ଭାବରେ କ୍ଷତ-ବିକ୍ଷତ ଓ ପରାଜିତ । ଯୁଧିଷ୍ଠିର, ନକୁଳ ଓ ସହଦେବ ଅବଶ୍ୟ ପଡ଼ିଛନ୍ତି ମୋ' ଆଗରେ । କିନ୍ତୁ ସେମାନଙ୍କୁ ରଥହୀନ ଓ ଅସ୍ତ୍ରହୀନ କରାଇଦେଇ କେବଳ ପରାସ୍ତ କରିଛି ସିନା, ସେମାନଙ୍କ ଉପରେ କରି ନାହିଁ ଘାତକ ପ୍ରହାର । ସେମାନଙ୍କ ପ୍ରତି ମୋର ଏଇ କୋମଳ ଶିଥିଳ ବ୍ୟବହାରରେ କୁରୁବାହିନୀର ସମସ୍ତେ ଚକିତ-ବିସ୍ମିତ । ସ୍ୱୟଂ ମିତ୍ର ଦୁର୍ଯ୍ୟୋଧନ ବି । ସେ ତ ଥରେ ମତେ ଜିଜ୍ଞାସା କରିଛନ୍ତି କାରଣ । ମାତାଙ୍କୁ ଦେଇଥିବା ପ୍ରତିଶ୍ରୁତି କିନ୍ତୁ କହି ନାହିଁ ତାଙ୍କୁ । ବରଂ କହିଛି, ''ଅସ୍ତ୍ରହୀନ ବୀରଙ୍କ ଉପରେ ଆଘାତ କରିବା ବୀରଧର୍ମ ନୁହେଁ । ମୁଁ ସେଇ ଧର୍ମ ପାଳିଛି ମାତ୍ର ।'' ତାହା ଶୁଣିବା ପରେ ସେ ପଚାରି ନାହାନ୍ତି ଆଉ କିଛି ପ୍ରଶ୍ନ । କାରଣ ମୋ' ମର୍ଯ୍ୟାଦାଜ୍ଞାନ ବିଷୟରେ ସଂପୂର୍ଣ୍ଣ ଅବହିତ ସେ ।

ଠିକ୍ ଏହିପରି ଭାବରେ ବିତିଯାଏ ପରବର୍ତ୍ତୀ ଦିନଟି ମଧ୍ୟ । ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାର ସୁଯୋଗ ପାଏ ନାହିଁ । ଶୁଣି ବି ପାରେ ନାହିଁ ତାଙ୍କ ଗାଣ୍ଡୀବର ଟଙ୍କାର । ବିଫଳମନୋରଥ ହୋଇ ଫେରେ ଶିବିରକୁ । ଉଭୟ ପକ୍ଷର ଅନେକ ବୀର ମୃତାହତ ହୁଅନ୍ତି । ବିଶେଷକରି ଭୀମଙ୍କ ହାତରେ କୌରବ ତିନି ଭାଇ ଦୁର୍ମୁଖ, ଦୁର୍ଜ୍ଜୟ ଓ ବିକର୍ଣ୍ଣ ପାଆନ୍ତି ବୀରଗତି । ବହୁ କଷ୍ଟରେ ଶବସ୍ତୂପ ମଧ୍ୟରୁ ଚିହ୍ନିତ କରାଯାଏ ସେମାନଙ୍କ ଶବକୁ । ଦୁର୍ଯ୍ୟୋଧନ ଭାରି ଦୁଃଖିତ । କାରଣ ଏ ପର୍ଯ୍ୟନ୍ତ ଜଣେ ହେଲେ ପାଣ୍ଡବ ବି ପାଇଲେ ନାହିଁ ବୀରଗତି । ଯେଉଁ ଶିଥିଳ ଯୁଦ୍ଧର ଦୋଷ ସେ ପିତାମହ ଭୀଷ୍ମଙ୍କ ଉପରେ ଆରୋପ କରୁଥିଲେ, ଏବେ ତାହା ଦ୍ରୋଣାଚାର୍ଯ୍ୟଙ୍କ ଉପରେ ବି ଆରୋପ କରିବାକୁ ଲାଗନ୍ତି ।

ସେଦିନ ରାତିରେ ଆଚାର୍ଯ୍ୟଙ୍କ ଶିବିରକୁ ଗଲେ ସେ । ଆଉ କହିଲେ, ‘‘ହେ ଆଚାର୍ଯ୍ୟ ! ଆପଣଙ୍କ ପରି ଜଣେ ବୀର ଥାଉଁ ଥାଉଁ ଏ ପର୍ଯ୍ୟନ୍ତ ଜଣେ କେହି ପାଣ୍ଡବ ବୀରଗତି ପାଇପାରିଲେ ନାହିଁ । ଆଉ ଆପଣ ଏ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କୁ ବନ୍ଦୀ ବି କରିପାରିଲେ ନାହିଁ । ବଡ଼ ଦୁଃଖର କଥା ।’’

‘‘ଦେଖ ବତ୍ସ ଦୁର୍ଯ୍ୟୋଧନ ! ମୁଁ ଏବେ ବୃଦ୍ଧ । ତଥାପି ସାମର୍ଥ୍ୟକୁ ଚାହିଁ ଲଢୁଛି । ପାଣ୍ଡବମାନଙ୍କ ବଧ କଥା ଯାହା କହୁଛ, ତାହା ଏତେ ସହଜ ନୁହେଁ ।’’

‘‘କାରଣ ?’’ ଦୁର୍ଯ୍ୟୋଧନଙ୍କ ଅଧୈର୍ଯ୍ୟ ପ୍ରଶ୍ନ ।

‘‘କାରଣ ସେମାନେ ମହାବୀର । ପରସ୍ପର ସହିତ ସମନ୍ୱୟ ରକ୍ଷା କରି ଚାଲିଛନ୍ତି ଯୁଦ୍ଧରେ । ଜଣେ କେହି ବିପଦରେ ପଡ଼ିଲେ ଆଉ ଜଣେ ଆସି ତୁରନ୍ତ ସହାୟତା ଦେଉଛନ୍ତି ତାଙ୍କୁ । ତାହାଛଡ଼ା ବାସୁଦେବ କୃଷ୍ଣ ସେମାନଙ୍କ ସହାୟକ । ସର୍ବୋପରି ଧର୍ମ ରକ୍ଷା କରୁଛି ସେମାନଙ୍କୁ ।’’ ଆଚାର୍ଯ୍ୟଙ୍କ ସ୍ପଷ୍ଟୋକ୍ତି ।

‘‘ଏ ସବୁ କିଛି ନୁହେଁ ଆଚାର୍ଯ୍ୟ । ମୁଁ ବୁଝିଛି, କାରଣ କେବଳ ଗୋଟିଏ । ଆପଣଙ୍କର ଦୁର୍ବଳତା ପାଣ୍ଡବମାନଙ୍କ ପ୍ରତି । ବିଶେଷକରି ପ୍ରିୟ ଶିଷ୍ୟ ଅର୍ଜୁନଙ୍କ ପ୍ରତି । ତେଣୁ ଜାଣିଶୁଣି ଶିଥିଳ ଯୁଦ୍ଧ କରୁଛନ୍ତି । ବାହାରକୁ ଦେଖାଇହେଉଛନ୍ତି କୌରବମାନଙ୍କ ସେନାପତି ବୋଲି । ଅଥଚ ଚାହୁଁଛନ୍ତି ପାଣ୍ଡବମାନଙ୍କ ବିଜୟ । ତାହାର ଏକ ଛଦ୍ମନାମ ଦେଇଛନ୍ତି ଧର୍ମର ବିଜୟ ବୋଲି । ସବୁ କପଟ । ସବୁ ଛଳନା । ସବୁ ମିଥ୍ୟାଚାର ।’’ ଦୁର୍ଯ୍ୟୋଧନଙ୍କ ଦୀର୍ଘୋକ୍ତି ସେ ପରିପୂର୍ଣ୍ଣ ଓ ଉଚ୍ଛଳ ଭାବପ୍ରବଣତା । ଆଉ ତାଚ୍ଛଲ୍ୟର ତୀବ୍ର କଟୁ ଆଘାତ ।

ଆଚାର୍ଯ୍ୟ ଅତି ମାତ୍ରାରେ କ୍ଷୁବ୍ଧ । ଚକ୍ଷୁ ତାଙ୍କ ଆରକ୍ତ । ମୁଖମଣ୍ଡଳ ଥର ଥର । ହଠାତ୍ ଉଠିପଡ଼ନ୍ତି ଆସନରୁ କି ଏକ ଉତ୍ତେଜନାରେ । ଉତ୍ତରୀୟ ଖସିଯାଏ ସ୍କନ୍ଧରୁ । ତାହାକୁ ସଜାଡ଼ିବା ଅବସରରେ ପୁଣି ବସିପଡ଼ନ୍ତି ଏବଂ କହନ୍ତି, ‘‘ତୁମେ ସଂଯତ ହୋଇ କଥା କହ ବତ୍ସ ! ଜାଣ ତ ମୁଁ ତୁମର ଆଚାର୍ଯ୍ୟ । ଆଉ କୁରୁବାହିନୀର ସେନାପତି । ନିଜ ମର୍ଯ୍ୟାଦାର ସୀମାକୁ ଲଂଘିଯାଅନା ।’’

‘‘ମୁଁ କେବଳ ସତ୍ୟ କହିଛି ଆଚାର୍ଯ୍ୟ । ଆପଣ କୌରବ ସେନାପତି । ଅଥଚ ନିଜେ ପାଣ୍ଡବ ସମର୍ଥକ ।’’ ଦୁର୍ଯ୍ୟୋଧନଙ୍କ କଥାରେ ପୂର୍ବଭଳି ଦୃଢ଼ତାର ଅଭିବ୍ୟକ୍ତି । ନିଜ

ଅଭିମାନକୁ ଛାଡ଼ିବାକୁ ପ୍ରସ୍ତୁତ ନ ଥାନ୍ତି ସେ । ନମ୍ରତା ଦେଖାଇବା ତାଙ୍କ ଜାତକରେ ନାହିଁ ଯେମିତି ।

"ମିଥ୍ୟା । ମିଥ୍ୟା । ସଂପୂର୍ଣ୍ଣ ମିଥ୍ୟା । ତୁମେ ବୃଥାରେ ମିଥ୍ୟାରୋପ କରୁଛ ଦୁର୍ଯ୍ୟୋଧନ । ଯଦି ପାଣ୍ଡବମାନଙ୍କୁ ଏତେ ଦୁର୍ବଳ ବୋଲି ଭାବୁଛ, ତା'ହେଲେ ଯାଅ । ସେମାନଙ୍କ ସହିତ ଯୁଦ୍ଧ କରି ଜଣେହେଲେ କାହାଙ୍କୁ ବୀରଗତି ଦେବାପାଇଁ ଚେଷ୍ଟା କର । ତେବେ ଜଣାପଡ଼ିବ ତୁମ ବୀରତ୍ୱ ।" କ୍ରୋଧରେ ବିସ୍ଫାରିତ ଆଖି ଦୁଇଟିକୁ ଆହୁରି ଅଧିକ କରି କହନ୍ତି ଆଚାର୍ଯ୍ୟ । କ୍ଷଣକ ପରେ ପୁଣି କହନ୍ତି, "କାଲିର ଯୁଦ୍ଧ କିପରି ଭୟଙ୍କର ହେଉଛି ଦେଖିବ । ମତେ ମୋ' କର୍ତ୍ତବ୍ୟ ନିଭାଇବାକୁ ଛାଡ଼ିଦିଅ" ଏହା କହି ବିଦାୟ ଦିଅନ୍ତି ଦୁର୍ଯ୍ୟୋଧନଙ୍କୁ ।

ଦୁର୍ଯ୍ୟୋଧନ ନିଜ ଶିବିରକୁ ଫେରିବା ବାଟରେ ମୋ' ଆଗରେ ଖୋଲିଦିଅନ୍ତି ସବୁ କଥା । ବିଶେଷକରି ଆଗାମୀ କାଲିର ସମ୍ଭାବ୍ୟ ଭୟଙ୍କର ଯୁଦ୍ଧ କଥା ସ୍ମରଣ କରାଇ ଦିଅନ୍ତି ।

"ଆଚାର୍ଯ୍ୟ ନିଶ୍ଚୟ ରକ୍ଷା କରିବେ ତାଙ୍କ ପ୍ରତିଶ୍ରୁତି ।" ମୁଁ ପ୍ରତିକ୍ରିୟା ପ୍ରକାଶ କରି କହେ । ଆଶ୍ୱସ୍ତ ହୁଅନ୍ତି ସେ ।

ଦୁର୍ଯ୍ୟୋଧନ ମୋ' ଶିବିର ଛାଡ଼ିବା ପରେ ଭାବେ, ସତରେ କ'ଣ ଆଚାର୍ଯ୍ୟ ଘାତକ ଅସ୍ତ୍ର ପ୍ରୟୋଗ କରିପାରିବେ ପାଣ୍ଡବମାନଙ୍କ ପ୍ରତି ? ଆଉ ବିଶେଷକରି ପ୍ରିୟ ଶିଷ୍ୟ ଅର୍ଜୁନଙ୍କ ପ୍ରତି ? ତାଙ୍କ ଅନ୍ତରତଳେ ପାଣ୍ଡବପ୍ରେମର ଯେଉଁ ଉତ୍ତରଳ ଅମୃତଧାରା ପ୍ରବହମାନ, ତାହା ସକଳ ବିଷାକ୍ତ ଅସ୍ତ୍ରକୁ କରିଦେବ ନାହିଁ କି ଅମୃତାୟିତ ? ସକଳ ଗୁରୁ ଅସ୍ତ୍ରକୁ ପୁଷ୍ପାୟିତ ? ଦେଖାଯାଉ, କାଲ କ'ଣ ଦେଖାଉଛି ?

ମୋ' ମନରେ କିନ୍ତୁ କେବଳ ସେଇ ଗୋଟିଏ ଅନୁଚିନ୍ତା, କିପରି ଅର୍ଜୁନଙ୍କୁ ଭେଟିବି ଯୁଦ୍ଧଭୂମିରେ ! ଏଇ ଚିନ୍ତାରେ କଟାଇଲି ରାତିଟି ଭରା ଉଦ୍‌ବେଗର ମଧ ଦେଇ ।

## ତେୟାଅଶୀ

ଆଜି ଯୁଦ୍ଧର ଦ୍ୱାଦଶ ଦିନ । ତିଥି କୃଷ୍ଣପକ୍ଷ ତ୍ରୟୋଦଶୀ ।

ଆଜି ପାଣ୍ଡବମାନଙ୍କ ମଧ୍ୟରୁ କୌଣସି ଜଣଙ୍କର ହେବ ବୀରଗତି । ଅଥବା ଯୁଧିଷ୍ଠିର ହେବେ ଦ୍ରୋଣାଚାର୍ଯ୍ୟଙ୍କ ହସ୍ତରେ ବନ୍ଦୀ । ସେଥିପାଇଁ ପ୍ରତିଶ୍ରୁତିବଦ୍ଧ ସେ । କୌରବବାହିନୀ ସଜ୍ଜିତ ଏକ ନୂତନ ବ୍ୟୂହରେ । ନାମ ଚକ୍ରବ୍ୟୂହ । ଭେଦିବା ଅସମ୍ଭବ । ଭେଦିବାର କୌଶଳ ପାଣ୍ଡବମାନଙ୍କ ମଧ୍ୟରୁ କେବଳ ଜଣଙ୍କୁ ହିଁ ଜଣା । ସେ ହେଉଛନ୍ତି ଅର୍ଜୁନ । ତାଙ୍କୁ କିପରି ଚକ୍ରବ୍ୟୂହଠାରୁ ଦୂରେଇ ନିଆଯିବ ତାହାର ବ୍ୟବସ୍ଥା କରିସାରିଛନ୍ତି ଆଚାର୍ଯ୍ୟ । ସଂଶପ୍ତକସେନା ଶପଥବଦ୍ଧ ବୀରଗତି ପାଇବାପାଇଁ ଅଥବା ଅର୍ଜୁନଙ୍କୁ ବୀରଗତି ଦେବାପାଇଁ । ସେମାନେ ତାଙ୍କୁ ଯୁଦ୍ଧର ଆହ୍ୱାନ ଦେଇ ନେଇଯିବେ ଦୂରକୁ । ଚକ୍ରବ୍ୟୂହର

କୋଳାହଳଠାରୁ ବହୁତ ଦୂରକୁ । ଅର୍ଜୁନଙ୍କ ସହାୟତା ବିନା ଅନ୍ୟାନ୍ୟ ପାଣ୍ଡବମାନେ ଓ ପାଣ୍ଡବସେନା ଦୁର୍ବଳ । ଏଇ ସୁଯୋଗରେ ଆଚାର୍ଯ୍ୟ ଆଗେଇଯିବେ କାର୍ଯ୍ୟସିଦ୍ଧି ପଥରେ । ଯୋଜନାଟି ସୁପରିକଳ୍ପିତ ବୋଲି ଲାଗୁଥିଲା ମତେ ।

ଯୋଜନା ଅନୁସାର କାର୍ଯ୍ୟାରମ୍ଭ ହୋଇଯାଇଛି । ଅର୍ଜୁନ ବର୍ତ୍ତମାନ ସଂଶପ୍ତକସେନା ସହିତ ଲଢୁଥିବା ଅବସ୍ଥାରେ ଧୀରେ ଧୀରେ ଚାଲିଯାଉଛନ୍ତି ଦୂରକୁ । କ୍ଷୀଣସ୍ୱରରେ ଶୁଣାଯାଉଛି ଗାଣ୍ଡୀବର ଟଙ୍କାର । କିଛି ସମୟ ପରେ ତାହା ବି ଆଉ ପଡୁ ନାହିଁ କାନରେ । ସେ ଏବେ ଚକ୍ରବ୍ୟୂହଠାରୁ ବହୁତ ଦୂରରେ ।

ପାଣ୍ଡବଶିବିରରେ ଚିନ୍ତା । କିଏ ଏହି ଚକ୍ରବ୍ୟୂହକୁ ଭେଦ କରିବ ? କାହାରିକୁ ଜଣା ନାହିଁ ଭେଦ ଓ ତହିଁରୁ ନିର୍ଗମନର ରହସ୍ୟ । ସେଠାରୁ ଖବର ମିଳେ, ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ କୁଆଡ଼େ ଆସିବେ ଚକ୍ରବ୍ୟୂହ ଭେଦ ପାଇଁ । ତାଙ୍କୁ କେବଳ ଭେଦ କରିବାର ଉପାୟଟି ଜଣା । ନିର୍ଗମନର ଉପାୟ ଅଜଣା । ସେ ପ୍ରଥମେ ପଥ ପରିଷ୍କାର କରିଦେବେ । ତାଙ୍କ ପଛେ ପଛେ ପାଣ୍ଡବମାନେ ଭେଦ କରିବେ ବ୍ୟୂହକୁ ତାଙ୍କୁ ଅନୁସରଣ କରି ।

ସଂବାଦଟା ଶୁଣି ମତେ ଲାଗେ କେମିତି କେମିତି । ସୁଭଦ୍ରାନନ୍ଦନ ଅଭିମନ୍ୟୁଙ୍କ ବୟସ ଖୁବ୍ ଅଳ୍ପ । ଅସ୍ତ୍ରଶିକ୍ଷା ସଂପୂର୍ଣ୍ଣ କରିଥିବେ କି ନାହିଁ ସନ୍ଦେହ । କୈଶୋର ଅତିକ୍ରମ କରି ଏଇ ମାତ୍ର ଯୌବନର ଦେହଳିରେ ଦେଇଛନ୍ତି ପାଦ । ସେ ପୁଣି ଭେଦ କରିବେ ଚକ୍ରବ୍ୟୂହ ! ମତେ ଅସମ୍ଭବ ଲାଗୁଥାଏ ।

ଦ୍ରୋଣାଚାର୍ଯ୍ୟ ହୁଏତ ଜାଣିଥାନ୍ତି ତାଙ୍କ ସାମର୍ଥ୍ୟ । ଅର୍ଜୁନଙ୍କ ପୁତ୍ର ସେ । ପୁଣି ବାସୁଦେବ କୃଷ୍ଣଙ୍କ ଭଣଜା । ତେଣୁ ତାଙ୍କ ପ୍ରତି ଅବହେଳା ଦେଖାନ୍ତି ନାହିଁ । ମୁଖ୍ୟ ଦ୍ୱାରଦେଶରେ ଅବସ୍ଥାପିତ କରାନ୍ତି ସିନ୍ଧୁରାଜ ଜୟଦ୍ରଥଙ୍କୁ । ତାଙ୍କ ପ୍ରତି ନିର୍ଦ୍ଦେଶ, ସେ ଚକ୍ରବ୍ୟୂହର ମୁଖ୍ୟ ଦ୍ୱାରକୁ ଅତିକ୍ରମ କରିବାପାଇଁ କେବଳ ସୁଯୋଗ ଦେବେ ଅଭିମନ୍ୟୁଙ୍କୁ । କିନ୍ତୁ ତାଙ୍କ ଯିବା ପରେ ରୁଦ୍ଧ କରିଦେବେ ଦ୍ୱାରଦେଶ । ପାଣ୍ଡବମାନଙ୍କୁ ଯିବାପାଇଁ ଦେବେ ନାହିଁ । ଫଳରେ ଏକାକୀ ଥିବା ଅବସ୍ଥାରେ ବ୍ୟୂହ ମଧ୍ୟରେ ନିଶ୍ଚିତ ଭାବରେ ଅଭିମନ୍ୟୁଙ୍କର ହେବ ପତନ । ବଡ଼ମାଛକୁ ଜାଲରେ ଧରିବାର ଏକ ନିର୍ଭରଯୋଗ୍ୟ ଉପାୟ । କିଛି ମନ୍ଦ ନୁହେଁ । ଆଚାର୍ଯ୍ୟଙ୍କ ବୁଦ୍ଧି ପ୍ରକୃତରେ ପ୍ରଶଂସାର୍ହ ।

ଯଥାସମୟରେ ଅଭିମନ୍ୟୁ ଆସନ୍ତି ଚକ୍ରବ୍ୟୂହର ମୁଖ୍ୟଦ୍ୱାର ନିକଟକୁ । ପଛେ ପଛେ ପାଣ୍ଡବମାନଙ୍କ ସହିତ ବିରାଟ ସେନାବାହିନୀ, ଜ୍ୟେଷ୍ଠପାଣ୍ଡବ ଯୁଧିଷ୍ଠିରଙ୍କ ନେତୃତ୍ୱରେ । ଅଭିମନ୍ୟୁଙ୍କୁ ଦେଖିବାମାତ୍ରେ ଦୟାରେ ତରଳିଯାଏ ମୁଁ । ଠିକ୍ ଅର୍ଜୁନଙ୍କ ଭଳି ଭାବମୂର୍ତ୍ତି । ଶ୍ୟାମଳ ଶରୀର । ଆଜାନୁଲମ୍ବିତ ଦୁଇ ବାହୁ । ଆୟତ ଚକ୍ଷୁ ନିରନ୍ତର ଶୌର୍ଯ୍ୟର ଝଲକରେ ଦୀପ୍ତିମାନ । ଅସ୍ତ୍ରଚାଳନରେ ଅପୂର୍ବ ସ୍ଫୂର୍ତ୍ତି । ଦ୍ୱିତୀୟ ଫାଲଗୁନୀ ଭଳି ଜଣା ପଡୁଥାନ୍ତି । ମନେ ମନେ ଭାବୁଥାଏ, ବିଚରା ଅଭିମନ୍ୟୁ ! ଆଉ କିଛି ସମୟ ପରେ ହୁଏତ ପାଇବେ ବୀରଗତି । ତାଙ୍କୁ କିଏ ଏ ଦୁର୍ବୁଦ୍ଧି ଦେଲା କେଜାଣି ? ଯାହାଙ୍କ ମାତୁଳ ସ୍ୱୟଂ ବାସୁଦେବ କୃଷ୍ଣ, ସେ କେମିତି ତାଙ୍କୁ ଛାଡ଼ିଦେଲେ ବିପଦର ଏ ନୀରନ୍ଧ୍ର ଗହ୍ୱର ଭିତରକୁ ।

ଚାରିଆଡ଼େ ଘେରି ଠିଆ ହୋଇଛନ୍ତି କ୍ଷୁଧିତ ସିଂହଗଣ । ସେମାନଙ୍କ ଆଗରେ କ୍ଷୁଦ୍ର ଶଶକଟି ବା କ'ଣ କରିପାରିବ ? ଜାଣିପାରୁ ନ ଥାଏ କାହିଁକି ତାଙ୍କ ପ୍ରତି ମୋର ଏ ଦ୍ରବୀଭୂତ ଭାବ ? ଏ ସମବେଦନା ? କ'ଣ ସେ ମୋ' ଅନୁଜପୁତ୍ର ବୋଲି ? ନା କୈଶୋରକୁ ଅତିକ୍ରମ କରିଥିବା ଅନଭିଜ୍ଞ ଯୁବକ ବୋଲି ? ହୁଏତ ରକ୍ତର ଆହ୍ୱାନରେ ହୋଇଯାଉଥିବି ବିବଶ ! ପର ମୁହୂର୍ତ୍ତରେ କିନ୍ତୁ ସ୍ଥିର କରିନିଏ ମନକୁ । ଯେତେହେଲେ ଏ ଜଣେ ପାଣ୍ଡବପକ୍ଷର ବୀର । ତେଣୁ ଆମ ପକ୍ଷର ଶତ୍ରୁ । ମତେ ତେଣୁ ୟାଙ୍କ ପ୍ରତି ଦେଖାଇବାକୁ ହେବ ଶତ୍ରୁ ଭଳି ଆଚରଣ । ମନ-ବୃକ୍ଷରେ ସଙ୍ଗେ ସଙ୍ଗେ ଦୃଢ଼ତାର ଫୁଲ ଫୁଟାଏ ।

ଅଭିମନ୍ୟୁ ଚକ୍ରବ୍ୟୂହର ମହାଦ୍ୱାରକୁ ଅତିକ୍ରମ କରି ଗୋଟିକ ପରେ ଗୋଟିଏ କରି ଭେଦ କରନ୍ତି ଅନ୍ୟ ଦ୍ୱାରଗୁଡ଼ିକୁ । ତାଙ୍କ ପରେ ପାଣ୍ଡବମାନେ ବହୁ ଚେଷ୍ଟା କରନ୍ତି ବ୍ୟୂହପ୍ରବେଶ ଲାଗି । କିନ୍ତୁ ଜୟଦ୍ରଥ ନିଜ ହସ୍ତରେ ପାଣ୍ଡବମାନଙ୍କୁ ଥରେ ମାତ୍ର ଜୀବନରେ ପରାସ୍ତ କରିଦେବାର ବର ପାଇଥାନ୍ତି ମହାଦେବଙ୍କଠାରୁ । ତାହା ବର୍ତ୍ତମାନ ହୁଏ ସାକାର । ଅଭିମନ୍ୟୁ ବ୍ୟୂହ ମଧ୍ୟରେ ରହିଯାଆନ୍ତି ଏକାକୀ । ବ୍ୟୂହରୁ ନିର୍ଗମନର ଉପାୟ ତାଙ୍କୁ ଅଜଣା । ତେଣୁ ନିରନ୍ତର ସେ ଯୁଦ୍ଧ ହିଁ କରନ୍ତି । ଏହା ଛଡ଼ା ଆଉ ନ ଥାଏ ଅନ୍ୟ କିଛି ପନ୍ଥା ।

ସିଂହବିକ୍ରମରେ ଯୁଦ୍ଧ କରିଚାଲିଥାନ୍ତି ଅଭିମନ୍ୟୁ । ଚିନ୍ତାହୀନ ଓ ଭୟହୀନ । ଅସ୍ତ୍ରଚାଳନର ସ୍ଫୂର୍ତ୍ତି ଠିକ୍ ଅର୍ଜୁନଙ୍କ ଭଳି । ଅନେକ ଯୋଦ୍ଧା ବୀରଗତି ପାଆନ୍ତି ତାଙ୍କ ହାତରେ । ଲଢ଼ି ଲଢ଼ି ସାରା ଅଙ୍ଗ କ୍ଷତ-ବିକ୍ଷତ । ତଥାପି ଖାତିର ନାହିଁ । ଶିଥିଳତା ବି ନାହିଁ । ଚଳମାନ ଫୁଲଭରା ପଲାଶବୃକ୍ଷଟି ଭଳି ସାରା ଯୁଦ୍ଧଭୂମିକୁ ଆଚ୍ଛନ୍ନ କରି ଚାଲିଛନ୍ତି । ଗତି ଏତେ କ୍ଷିପ୍ର ଯେ ପ୍ରତିଟି ମୁହୂର୍ତ୍ତରେ ପ୍ରତିଟି ସ୍ଥାନରେ ଦେଖାଦେଉଛନ୍ତି ସେ । କୌରବବାହିନୀ ଅତି ମାତ୍ରାରେ ବିଚଳିତ ଓ ଭୟଭୀତ । ଯଦି ଏହିଭଳି ଆଉ ଦୁଇଘଡ଼ି ଯୁଦ୍ଧ ଚାଲେ, ତେବେ ହୁଏତ ସାରା କୌରବବାହିନୀ ହୋଇଯିବ ନିର୍ମୂଳ । ମହାଭାରତ ମହାସମରର ଆଜି ହିଁ ଘଟିବ ପରିସମାପ୍ତି । ପିତାମହ ଭୀଷ୍ମ ଓ ଆଚାର୍ଯ୍ୟ ଦ୍ରୋଣଙ୍କ ଭଳି ମହା ମହା ବୀରମାନେ ଯେଉଁ ଯୁଦ୍ଧକୁ ଏ ପର୍ଯ୍ୟନ୍ତ ତ୍ରୟୋଦଶ ଦିନ ଧରି ଗଡ଼ାଇ ଆଣିଛନ୍ତି, ତାହାକୁ ଗୋଟିଏ ମାତ୍ର ଦିନରେ ସୌଭଦ୍ରେୟ ଅଭିମନ୍ୟୁ କରିଦେବେ ଶେଷ । ବାଃ ରେ ବୀର ନବଯୁବକ ! ଧନ୍ୟ ତୁମର ପିତାମାତା ! ଧନ୍ୟ ତୁମର ବୀରତ୍ୱ ! ପୁଣି ଧନ୍ୟ ତୁମର ବିଦ୍ୟାଗୁରୁ ! ମନେ ମନେ ତାଙ୍କ ଉଦ୍ଦେଶ୍ୟରେ ଅଶେଷ ଧନ୍ୟବାଦ ଦେଉଥାଏ ।

ଆଚାର୍ଯ୍ୟ ଦ୍ରୋଣ ମଧ୍ୟ ତାଙ୍କ ବଳବୀର୍ଯ୍ୟ ଦେଖି ସମଧିକ ବିସ୍ମିତ । ସେ ଯେ ଏଭଳି ଶୌର୍ଯ୍ୟବାନ୍, ତାହା ଥାଏ ତାଙ୍କ କଳ୍ପନାତୀତ ।

ଦୁର୍ଯ୍ୟୋଧନ ଖୁବ୍ ଭୟଭୀତ । ଆଉ ଗଭୀର ଭାବରେ କ୍ଷୁବ୍ଧ ବି । କାରଣ ଇତିମଧ୍ୟରେ ତାଙ୍କ ପୁତ୍ର ଲକ୍ଷ୍ମଣଙ୍କର ବୀରଗତି ହୋଇଯାଇଥାଏ ଅଭିମନ୍ୟୁଙ୍କ ହସ୍ତରେ । ସେ ତୁରନ୍ତ ପରାମର୍ଶ କରନ୍ତି ଆଚାର୍ଯ୍ୟଙ୍କ ସହିତ । କୌଣସିମତେ ଚକ୍ରବ୍ୟୂହ ମଧ୍ୟରେ ହିଁ ଅଭିମନ୍ୟୁଙ୍କୁ ବଧ କରିବାକୁ ହେବ ।

"କିନ୍ତୁ କେମିତି ? କୌଣସି ବୀର ତ ତାଙ୍କ ସମକକ୍ଷ ନୁହନ୍ତି । କିଏ ତାଙ୍କୁ ବଧ କରିବ ?" ଦ୍ରୋଣାଚାର୍ଯ୍ୟଙ୍କ ସନ୍ଦେହଭରା ପ୍ରଶ୍ନ ।

"ଆମେ ସମସ୍ତେ ମିଶି । ତାହାଛଡ଼ା ଆଉ ଅନ୍ୟ ଗତି ନାହିଁ ।" ଦୁର୍ଯ୍ୟୋଧନଙ୍କ ଉତ୍ତର ।

"ହେ ଦୁର୍ଯ୍ୟୋଧନ ! ଯୁଦ୍ଧ ଆରମ୍ଭରୁ ହିଁ ନୀତି ସ୍ଥିର ହୋଇଯାଇଛି । କେବଳ ଜଣେ ବୀର ଏକ ସମୟରେ ଅନ୍ୟ ଜଣେ ବୀରଙ୍କ ସହିତ ଲଢ଼ିପାରିବେ । ଏକାଧିକ ବୀର କେମିତି ଲଢ଼ିବେ ଅଭିମନ୍ୟୁଙ୍କ ସହିତ ? ଏହା ଯେ ଅନ୍ୟାୟ ଯୁଦ୍ଧ । ଅପଯଶ ମିଳିବ ।" ଦ୍ୱିଧାଭରା କଣ୍ଠରେ କହନ୍ତି ଆଚାର୍ଯ୍ୟ ।

"ନ୍ୟାୟ-ଅନ୍ୟାୟ, ଧର୍ମ-ଅଧର୍ମ, ଯଶ-ଅପଯଶର ପ୍ରଶ୍ନ ଏଠି ଉଠୁ ନାହିଁ ଆଚାର୍ଯ୍ୟ । ଏଠି ଉଠୁଛି ଜୀବନରକ୍ଷାର ପ୍ରଶ୍ନ । ଜୀବନରକ୍ଷା ପାଇଁ ଯେକୌଣସି ଉପାୟ ଅବଲମ୍ବନ କରାଯାଇପାରେ । ପ୍ରଥମେ ଜୀବନ । ତା ପରେ ଯାଇ ଅନ୍ୟ ସମସ୍ତର ବିଚାର ।"

"ହେ ମିତ୍ର ଦୁର୍ଯ୍ୟୋଧନ ! ଆମେ ବୀର । ତେଣୁ ଆମେ ବୀରର ଜୀବନ ବଞ୍ଚିବା । ଆମେ ମଣିଷ । ତେଣୁ ମଣିଷର ଜୀବନ ବଞ୍ଚିବା । ପଶୁର ଜୀବନ କିନ୍ତୁ ନୁହେଁ । ଏଭଳି କରିବା ଅନୁଚିତ ।" ଦୁର୍ଯ୍ୟୋଧନଙ୍କୁ ଏଭଳି ଅନ୍ୟାୟ ଯୁଦ୍ଧ ନ କରିବା ପାଇଁ ପରାମର୍ଶ ଦେବାକୁ ଯାଇ କହେ ମୁଁ ।

ସେ କିନ୍ତୁ ନିଜ ଜିଦ୍‌ରେ ଅଟଳ । ଷଡ଼୍‌ରଥୀ ମିଶି ଅଭିମନ୍ୟୁଙ୍କୁ ଏଇଠି ଶେଷ କରିଦେବାକୁ ହେବ । ଆହତ ସର୍ପକୁ ବଞ୍ଚିବାକୁ ଦେବା ଅର୍ଥ ଜାଣିଶୁଣି ମୃତ୍ୟୁକୁ ନିମନ୍ତ୍ରଣ କରି ଆଣିବା । ଶେଷରେ ତାଙ୍କରି କଥା ରହେ । ଷଡ଼୍‌ରଥୀଙ୍କ ନାମ ମଧ୍ୟ ନିର୍ଦ୍ଧାରିତ ହୋଇଯାଏ – ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, କୃତବର୍ମା, ଅଶ୍ୱତ୍ଥାମା, ବୃହଦ୍‌ବଳ ଓ ମୁଁ ନିଜେ ।

ଅଭିମନ୍ୟୁ ଚକ୍ରବ୍ୟୂହର କେନ୍ଦ୍ରସ୍ଥଳରେ ଥିବା ଅବସ୍ଥାରେ ଆମେ ଷଡ଼୍‌ରଥୀ ତାଙ୍କୁ ଘେରିଯାଉ ଓ ଆକ୍ରମଣ କରୁ ଚତୁର୍ଦ୍ଦିଗରୁ । ସେ ଏ ଅନ୍ୟାୟ ଯୁଦ୍ଧର ପ୍ରତିବାଦ କରନ୍ତି । ଆଶ୍ଚର୍ଯ୍ୟଚକିତ ହୋଇ ଚାହାନ୍ତି ଆମ୍ଭମାନଙ୍କୁ । ହୁଏତ ଭାବୁଥାନ୍ତି– ଏମାନେ ସମସ୍ତେ ଜଣେ ଜଣେ ବରିଷ୍ଠ ବୀର । ଜଗତରେ ଖ୍ୟାତି ଅଛି ଏମାନଙ୍କର । ଏ କି ଅନ୍ୟାୟ ଯୁଦ୍ଧ କରୁଛନ୍ତି ଏମାନେ ? ଛଅ ରଥୀ ମିଶି ପ୍ରହାର କରୁଛନ୍ତି ଜଣେ ରଥୀ ଉପରେ ! ତାଙ୍କ ପ୍ରତିବାଦ ଶୁଣିବାକୁ ଆଦୌ ପ୍ରସ୍ତୁତ ନ ଥାଉ ଆମେ । ଅଚିରେ ସେ ହୁଅନ୍ତି ଅସ୍ତ୍ରହୀନ ଓ ରଥହୀନ । ଏପରି ଅବସ୍ଥାରେ ମଧ୍ୟ ଆମ ପ୍ରହାର ବନ୍ଦ ହେଉ ନ ଥାଏ । ରଥଚକ୍ର ସାହାଯ୍ୟରେ ଆତ୍ମରକ୍ଷା କରୁଥାନ୍ତି ସେ । ଆଉ ଚିତ୍କାର କରୁଥାନ୍ତି, "ତାତ ଯୁଧିଷ୍ଠିର ! ତାତ ଭୀମସେନ ! ତାତ ନକୁଳ ! ତାତ ସହଦେବ ! ରକ୍ଷା କରନ୍ତୁ ।" ତାଙ୍କ ଆର୍ତ୍ତସ୍ୱର ସେମିତି ମିଳାଇଯାଏ ଆକାଶରେ । କେହି ଆସନ୍ତି ନାହିଁ ତାଙ୍କ ସୁରକ୍ଷା ଲାଗି । ଏତିକି ବେଳେ ତାଙ୍କଦ୍ୱାରା ପୂର୍ବରୁ ଭଗ୍ନରଥ ହୋଇଥିବା ଦୁଃଶାସନପୁତ୍ର ମାଡ଼ିଆସନ୍ତି ଭୀମ

ବିକ୍ରମରେ ଏବଂ ଅସହାୟ ଅବସ୍ଥାରେ ତାଙ୍କ ଶିରକୁ କରନ୍ତି ଗଦାଘାତ । ତାହା ଥାଏ ଘାତକ ପ୍ରହାର । ଆମ ସପ୍ତରଥୀଙ୍କ ମିଳିତ ଉଦ୍ୟମରେ ଏହିପରି ହୁଏ ତାଙ୍କର ବୀରଗତି । ଚିରଦିନ ପାଇଁ ଆଖି ବୁଜିବା ପୂର୍ବରୁ ସେ ଶେଷ ଚିତ୍କାର କରନ୍ତି, ''ତା... ତ... ଯୁ... ଧି.... ।'' ପଦଟିକୁ କରିପାରନ୍ତି ନାହିଁ ସଂପୂର୍ଣ୍ଣ । ତାଙ୍କର ବୀରଗତି ହୁଏ ।

ସେଦିନର ଯୁଦ୍ଧରେ ପାଣ୍ଡବମାନେ ପରାସ୍ତ । ଆମେ କୌରବପକ୍ଷ ବିଜୟୀ । ବିଜୟୀ ହୋଇ ମଧ୍ୟ ମୋ' ମୁଖମଣ୍ଡଳରେ କିନ୍ତୁ ପରାଜୟର ଗ୍ଲାନି । ସାରା ଜୀବନରେ ପାଇଥିବା ସକଳ ବିଜୟର ଝଟକ ଯେମିତି ଲିଭିଯାଇଥାଏ ଏଇ ଗ୍ଲାନିର କାଳିମାରେ !

ସୂର୍ଯ୍ୟାସ୍ତର ଘଡ଼ିକ ଉତ୍ତାରୁ ଉଷ୍ଣୋଦକରେ କ୍ଷତ ସ୍ଥାନଗୁଡ଼ିକୁ ପରିଷ୍କାର କରିଦେଇ ସେବକମାନେ ଔଷଧର ପ୍ରୟୋଗ କରିସାରିଥାନ୍ତି ମୋ' ଦେହରେ । କ୍ଲାନ୍ତ ଦେହଟାକୁ ଧରି ବସିଥାଏ ଆସନରେ । ଦେହଟା ସିନା ସ୍ଥିର ଥାଏ । ମନ କିନ୍ତୁ ଅସ୍ଥିର । ଘୂରିବୁଲୁଥାଏ କେତେ ଦିଗରେ ଅଗଣିତ ଭାବନାକୁ ନେଇ । ସେଇ ଭାବନା ଅବସନ୍ନ ଦେହ ଓ ମନକୁ କରିଦେଉଥାଏ ଆହୁରି ଅବସନ୍ନ । ମତେ ଅତଳ ଗହ୍ୱର ମଧ୍ୟରେ ପଡ଼ିଯିବା ଭଳି ଲାଗୁଥାଏ । ବାରମ୍ବାର ଚାହୁଁଥାଏ ମୋ' ହାତକୁ । ସ୍ନେହରେ ନୁହେଁ, ବରଂ ଘୃଣାରେ । ଗର୍ବରେ ନୁହେଁ, ବରଂ ଅବସାଦରେ । ଛି ! ଛି ! ଆଜି କ'ଣ କଲି ମୁଁ ଏଇ ହାତରେ ? ଅନ୍ୟାୟ ଯୁଦ୍ଧରେ ଅନ୍ୟ ଛଅଜଣ ରଥୀଙ୍କ ସହିତ ମିଶି ଜଣେ ନିବେଦିତ ସୂର୍ଯ୍ୟଙ୍କ ସମାନ ପ୍ରତିଭାବାନ୍ ଯୁବକ ରଥୀଙ୍କୁ କଲି ବଧ ! ସେ ପୁଣି ଆଉ କେହି ନୁହନ୍ତି । ମୋ' ଅନୁଜପୁତ୍ର । ପୁତ୍ର ସମାନ । ପୁତ୍ରହତ୍ୟାର ଅପରାଧରେ ଅପରାଧୀ ମୁଁ । ମୋର ଏତେ ପୁଣ୍ୟ, ଦାନ, ଧର୍ମ, ଯଜ୍ଞ ସବୁ ଆଜି ଧୂଳିସାତ୍ ସିନା ! ଆଜିର ଯୁଦ୍ଧରେ ବିଜୟୀ ହୋଇଛି ବୋଲି ଦାବି କରି କେଉଁ ଗର୍ବରେ ମୁହଁ ଦେଖାଇବ ଜଗତକୁ ? କାଲି ଯେତେବେଳେ ପ୍ରାତଃସ୍ନାନ ଅବସରରେ ପିତା ସୂର୍ଯ୍ୟଦେବଙ୍କୁ ପ୍ରଣାମ କରିବି, ସେତେବେଳେ ଏଇ କଳଙ୍କିତ ଆଖି ଦିଓଟିରେ କେମିତି ବା ଚାହିଁବି ତାଙ୍କ ଆଡ଼କୁ ? ଯଦି ଅର୍ଜୁନ ଓ ମୋ' ମଧ୍ୟରେ ହେବାକୁ ଥିବା ଯୁଦ୍ଧରେ ଦୈବାତ୍ ମୁଁ ବଞ୍ଚିଯାଏ ଓ ଅର୍ଜୁନଙ୍କର ହୁଏ ବୀରଗତି, ତେବେ ଅନୁଜବଧୂ ସୁଭଦ୍ରାଙ୍କୁ ପୁତ୍ରଶୋକ ଲାଗି କ'ଣ କହି ଦେବି ସାନ୍ତ୍ୱନା ? ତାଙ୍କ ମୁଣ୍ଡକୁ ଆଉଁଶିଦେବାର ସାହସ ଏଇ କଳଙ୍କିତ ହାତର ରହିବ ତ ? ଆଃ ! ଚିତ୍କାର କରିଉଠିଲି କି ଏକ ଅବ୍ୟକ୍ତ ବେଦନାରେ !

ଆଉ ବସିପାରିଲି ନାହିଁ ଆସନରେ । ଉଠିପଡ଼ିଲି ଓ ଶିବିର ମଧ୍ୟରେ ପଦଚାରଣ କରିବାକୁ ଲାଗିଲି ଅସ୍ଥିର ଭାବରେ । ମାର୍ଗଶିରର ଶୀତାର୍ତ୍ତ ରାତ୍ରି । ତଥାପି ଦେହ ମୋର ମାତ୍ରାଧିକ ଭାବରେ ଉଷ୍ଣାୟିତ । ମନର ଉଷ୍ଣତା ତ ତାହାଠାରୁ ଅଧିକ । ତେଣୁ ଶୀତଳତା ଅନୁଭବ କରିବାପାଇଁ କିଛି ସମୟ ବାହାରେ ପଦଚାରଣ କଲି ।

ଲକ୍ଷ୍ୟ କଲି ଗୋଟିଏ ରଥ ଦ୍ରୁତ ଗତିରେ ଆସୁଛି ମୋ' ଶିବିର ଦିଗକୁ । ମଶାଲ ଆଲୁଅ ସାହାଯ୍ୟରେ ଚିହ୍ନିପାରିଲି ରଥକୁ ଓ ରଥାଚାରୀଙ୍କୁ ! ମିତ୍ର ଦୁର୍ଯ୍ୟୋଧନ ଆସୁଛନ୍ତି ।

ସେ ରଥରୁ ଅବତରଣ କରିବା ସଙ୍ଗେ ସଙ୍ଗେ ମତେ କହିଲେ 'ଏତେ ଥଣ୍ଡାରେ ବାହାରେ ବୁଲୁଛ କାହିଁକି ମିତ୍ର ?

''ଭିତରେ ଭାରି ଗରମ ।''

''ବିଜୟବୋଧର ଉଷ୍ଣତା ତାହାର ମୁଖ୍ୟ କାରଣ ନିଶ୍ଚୟ । ସେଥିପାଇଁ ବଧାଇ ଦେଉଛି ମିତ୍ର ।'' ତାଙ୍କ ଅଧରତଳେ ଦର ଦର ହସ । ମୋର ପ୍ରଶଂସାରେ ଉଚ୍ଛଳ ।

''ଧନ୍ୟବାଦ ।'' ଗତାନୁଗତିକତା ରକ୍ଷା କରି ମୋର ସଂକ୍ଷିପ୍ତ ଉତ୍ତର । ଆଉ ଅଧରତଳେ ଶୁଖିଲା ଫିକା ହସ । ସେଇ ହସ ତଳେ ଛପିରହିଥିବା ଅନ୍ତର୍ବେଦନାକୁ କେବଳ ମୁଇଁ ହିଁ ବୁଝୁଥିଲି ।

ତାହା ପରେ ଦୁହେଁ ଶିବିର ମଧ୍ୟକୁ ଯାଇ ବସିଲୁ । ଆସନ ଗ୍ରହଣ କରିବା ପରେ ସେ କହିଲେ, ''ଜାଣିଛ ନା ମିତ୍ର ପାଣ୍ଡବ-ଶିବିର କଥା ? ବଡ଼ ସୁସଂବାଦ । ଚର ଏଇ ମାତ୍ର ଖବର ଆଣିଛି । କାଲି ସୂର୍ଯ୍ୟାସ୍ତର ପରେ ପରେ ଦେହତ୍ୟାଗ କରିବେ ଅର୍ଜୁନ ।''

''କାହିଁକି ?'' ମୋର ଆଶ୍ଚର୍ଯ୍ୟଭରା ପ୍ରଶ୍ନ ।

''ସଂଶପ୍ତକମାନଙ୍କୁ ମାରି ଅର୍ଜୁନ ଶିବିରକୁ ଫେରନ୍ତି ସଂଧ୍ୟାବେଳକୁ । ଯୁଧିଷ୍ଠିରଙ୍କ ମୁଖରୁ ଅଭିମନ୍ୟୁବଧର ଖବର ପାଇ ହୁଅନ୍ତି ବିଶେଷ କ୍ରୁଦ୍ଧ । ସବୁତକ ଦୋଷ ଦିଅନ୍ତି ଜୟଦ୍ରଥଙ୍କ ଉପରେ । କାରଣ ତାଙ୍କଦ୍ୱାରା ବ୍ୟୂହଦ୍ୱାର ରୁଦ୍ଧ ହେବା ଫଳରେ ପାଣ୍ଡବମାନେ ପଶିପାରି ନାହାନ୍ତି ବ୍ୟୂହ ମଧ୍ୟରେ । ଫଳରେ ଅରକ୍ଷିତ ଅସହାୟ ଅବସ୍ଥାରେ ଅଭିମନ୍ୟୁ ପାଇଛନ୍ତି ବୀରଗତି । ସେ ପ୍ରତିଜ୍ଞା କରିଛନ୍ତି କାଲି ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥଙ୍କୁ ବଧ କରିବେ । ନ କରିପାରିଲେ ଅଗ୍ନିରେ ଦେବେ ଆତ୍ମାହୁତି ।'' ଦୁର୍ଯ୍ୟୋଧନ ଘଟଣାର ଟିକିନିଖି ବିବରଣୀ ଦେଇ କହିଲେ ।

''ଜୟଦ୍ରଥଙ୍କୁ ଅର୍ଜୁନ ଠିକ୍ ସମୟ ମଧ୍ୟରେ ବଧ କରିପାରିବେ ନାହିଁ ବୋଲି କାହିଁକି ଭାବୁଛ ମିତ୍ର ? ମୋର ଧାରଣା, ସେ ତାଙ୍କ ପ୍ରତିଜ୍ଞାକୁ ସିଦ୍ଧ ନ କରି ଛାଡ଼ିବେ ନାହିଁ । ଯେଉଁଠି ବାସୁଦେବ କୃଷ୍ଣଙ୍କ ସହାୟତା, ସେଠି ଅସମ୍ଭବ କ'ଣ ?'' ମୁଁ ଜୋର ଦେଇ କହିଲି ।

''ତାହାର ବ୍ୟବସ୍ଥା ଆଚାର୍ଯ୍ୟ କରୁଛନ୍ତି । ସେ ଏଭଳି ବ୍ୟୂହଟିଏ ଗଢୁଛନ୍ତି ଯେ ତାହା ମଧ୍ୟରେ ଲୁଚି ରହିଥିବା ଜୟଦ୍ରଥଙ୍କ ସନ୍ଧାନ କେହି ପାଇପାରିବେ ନାହିଁ । ତେଣୁ ଅର୍ଜୁନଙ୍କ ଆତ୍ମାହୁତି ସୁନିଶ୍ଚିତ ।'' ତୃପ୍ତିର ହସ ହସି କହିଲେ ସେ ।

''ଆଚ୍ଛା, ଦେଖାଯାଉ ।'' ମୋର ସକ୍ଷିପ୍ତ ମନ୍ତବ୍ୟ ।

ଦୁର୍ଯ୍ୟୋଧନ ତାହା ପରେ ଚାଲିଗଲେ ମୋ' ପାଖରୁ ।

ତାଙ୍କ ଯିବା ପରେ ପରେ ମନରେ ମୋର ଅନୁଚିନ୍ତା – ସତରେ କ'ଣ ଆଚାର୍ଯ୍ୟ ବଞ୍ଚାଇପାରିବେ ଜୟଦ୍ରଥଙ୍କୁ ? ସତରେ କ'ଣ ଅର୍ଜୁନଙ୍କୁ ଆତ୍ମାହୁତି ଦେବାକୁ ପଡ଼ିବ ?

ତାଙ୍କ ଶକ୍ତି ଯାହା, ସେ ତ ପାତାଳର ଅତଳ ତଳ ଗର୍ଭରୁ ବାହାର କରି ଆଣିପାରିବେ ନିଜ ଶତ୍ରୁକୁ । ଆଚାର୍ଯ୍ୟ ତେବେ କେଉଁଠି ନେଇ ଲୁଚାଇବେ ଜୟଦ୍ରଥଙ୍କୁ ? ଅର୍ଜୁନଙ୍କର ଏଇ ଯେଉଁ ପ୍ରତିଜ୍ଞା, ତାହା ଜୟଦ୍ରଥଙ୍କ ଭାଗ୍ୟରେ ଦୈବ କ'ଣ ଲେଖିଛି ତାହାର ପୂର୍ବ ସୂଚନା ମାତ୍ର । ତାହାକୁ ଲଂଘଯିବାର ଶକ୍ତି କ'ଣ ଅଛି ଜୟଦ୍ରଥଙ୍କର ? ଅଥବା ତାଙ୍କ ଆଶ୍ରୟଦାତା ଆଚାର୍ଯ୍ୟ ଦ୍ରୋଣଙ୍କର ? କଦାପି ନୁହେଁ... କଦାପି ନୁହେଁ...

ଆଗାମୀ ଦିନର ଘଟଣାକୁ ଚାହିଁରହିଲି ଆଶାୟୀ ହୋଇ । ତାହାର ସୁଦୂରପ୍ରସାରୀ ପ୍ରଭାବ ନିଶ୍ଚୟ ପଡ଼ିବ ମୋ' ଜୀବନର ଗତିବିଧି ଉପରେ । କାରଣ ମୋର ମଧ ଗୋଟିଏ ଶପଥ ଅଛି । ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧା ଦେଖାଇବି !

## ଚୌରାଅଶୀ

ଆଜି ଯୁଦ୍ଧର ତ୍ରୟୋଦଶ ଦିନ । ତିଥି ଚତୁର୍ଦ୍ଦଶୀ ଅର୍ଜୁନଙ୍କ ପ୍ରତିଜ୍ଞା କଥା ଶୁଣି ଜୟଦ୍ରଥ ଖୁବ୍ ଭୟଭୀତ । ନିଜ ରାଜ୍ୟକୁ ଫେରିଯିବାପାଇଁ ବସିଥିଲେ । ଦୁର୍ଯ୍ୟୋଧନ ଓ ଦ୍ରୋଣାଚାର୍ଯ୍ୟ ଅଭୟ ଦେବାରୁ ରହିଯାଇଛନ୍ତି । ତାଙ୍କ ସୁରକ୍ଷାପାଇଁ ଅତି ଯତ୍ନର ସହିତ ଆଚାର୍ଯ୍ୟ ନିର୍ମାଣ କରିଛନ୍ତି ପଦ୍ମବ୍ୟୂହ । ପାଖୁଡ଼ାଗୁଡ଼ିକ ମଧରେ କେଶର । କେଶର ମଧରେ ଥିବା ଗୁପ୍ତଗୃହରେ ଲୁଚିରହିଛନ୍ତି ଜୟଦ୍ରଥ । ତାଙ୍କୁ ଖୋଜି ପାଇବା ଅର୍ଜୁନଙ୍କ ସାଧନାତୀତ ।

ଅର୍ଜୁନ କିନ୍ତୁ ବିଜୁଳି ଗତିରେ ତାଙ୍କୁ ଖୋଜି ବୁଲୁଛନ୍ତି ଯୁଦ୍ଧଭୂମିର ଏଣେ ତେଣେ । ଆଗରେ ପଡୁଥିବା ସମସ୍ତ ବୀରଙ୍କୁ ବାରମ୍ବାର ପଚାରୁଛନ୍ତି ଜୟଦ୍ରଥ କାହାନ୍ତି ବୋଲି । ଉତ୍ତର ନ ପାଇ ସେମାନଙ୍କ ସହିତ ଲଢୁଛନ୍ତି ଏବଂ ଶେଷରେ ସେମାନଙ୍କୁ କରୁଛନ୍ତି ବଧ କିମ୍ବା ପରାସ୍ତ । କିନ୍ତୁ ପାଇପାରୁ ନାହାନ୍ତି ତାଙ୍କ ସନ୍ଧାନ । ଆଶ୍ଚର୍ଯ୍ୟଚକିତ ସେ । କ'ଣ କୁଆଡ଼େ ଉଭେଇଗଲେ ଆକାଶରେ ?

ଆଚାର୍ଯ୍ୟଙ୍କ ଏଇ ଯୋଜନାକୁ ମନେ ମନେ ଖୁବ୍ ପ୍ରଶଂସା କରୁଥିଲି ମୁଁ ।

ଆଜି ସଂଧ୍ୟାର ଦୁଇଘଡ଼ି ପୂର୍ବରୁ ସଂପୂର୍ଣ୍ଣ ସୂର୍ଯ୍ୟଗ୍ରହଣ । ଚତୁର୍ଦ୍ଦଶୀ ତିଥିରେ ସୂର୍ଯ୍ୟଗ୍ରହଣ ଏକ ବିଚିତ୍ର ଘଟଣା ! ଆମେ କିନ୍ତୁ ଯୁଦ୍ଧର ବ୍ୟସ୍ତତା ମଧରେ ଭୁଲିଯାଇଥିଲୁ ସେ କଥା । ଅର୍ଜୁନଙ୍କ କାର୍ଯ୍ୟକଳାପରୁ ଜାଣିଲି ସେ ମଧ ଏ ବିଷୟରେ ଅନବହିତ । ହୁଏତ ଜାଣିଥିଲେ ଜାଣିଥିବେ ବାସୁଦେବ କୃଷ୍ଣ ।

କିଛି ସମୟ ପରେ ଯଥାକାଳରେ ସୂର୍ଯ୍ୟଦେବ ସଂପୂର୍ଣ୍ଣ ଗ୍ରସ୍ତ । ଚାରିଆଡ଼େ ଅନ୍ଧକାର ଛାଇ ହୋଇଗଲା । ପକ୍ଷୀମାନେ ଆରମ୍ଭ କରିଦେଲେ ନିଜ ନୀଡ଼କୁ ଫେରିବା । କୁରୁକ୍ଷେତ୍ରରେ ଧୀରେ ଧୀରେ ଶହ ଶହ ମଶାଲ ପ୍ରଜ୍ୱଳିତ ହେବାକୁ ଲାଗିଲା । ସମସ୍ତେ ଭାବିନେଲେ ସଂଧ୍ୟା ଆସିଗଲା ବୋଲି ।

ଜୟଦ୍ରଥ ଖୁବ୍ ଆଶ୍ୱସ୍ତ । ଏପର୍ଯ୍ୟନ୍ତ ଅଛନ୍ତି ଅକ୍ଷତ ଶରୀରରେ । ଭଙ୍ଗ ହୋଇଛି ଅର୍ଜୁନଙ୍କ ପ୍ରତିଜ୍ଞା । ଆତ୍ମାହୁତି ଦେବାପାଇଁ ତାଙ୍କ ଆଦେଶରେ ଏବେ ଚିତା ପ୍ରସ୍ତୁତ । ସେ କୃଷ୍ଣ, ଯୁଧିଷ୍ଠିର, ଭୀମ ଆଦିଙ୍କୁ ବନ୍ଦନ କଲେ ଏବଂ ତାହା ପରେ ଉଠିବାକୁ ଉଦ୍ୟତ ହେଲେ ଚିତା ଉପରକୁ । ସାଥିରେ ବି ଧରିଲେ ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣୀର । ତାଙ୍କ ମତରେ ସେମାନଙ୍କ ପରାକ୍ରମ ଦେଖାଇବାର ବେଳ ଏବେ ସମାପ୍ତ । ଆଉ ଏଇ ପୃଥିବୀରେ ରହି ଲାଭ ବା କ'ଣ ? ତେଣୁ ତାଙ୍କ ସହିତ ସେମାନେ ମଧ ହେବେ ଭସ୍ମୀଭୂତ । ତାଙ୍କ କଣ୍ଠରୁ ନିର୍ଗତ ହେବାକୁ ଲାଗିଲା ମୃତ୍ୟୁକାଳୀନ ଶେଷ ମନ୍ତ୍ର – 'ବାୟୁର ନିଳମମୃତମଥେଦଂ ଭସ୍ମାନ୍ତଂ ଶରୀରଂ । ଓଁ ତେ ସ୍ମର କୃତଂ ସ୍ମର କ୍ରତୋ ସ୍ମର କୃତଂ ସ୍ମର' । ପ୍ରାଣବାୟୁ ଅନନ୍ତ ଜୀବନ । ଏ ଶରୀରର ଶେଷ ପରିଣତି ପାଉଁଶ । ରେ ମନ ! ତୁ ମନେ ପକା । କଲା କର୍ମକୁ ମନେ ପକା । ରେ ମନ ! ତୁ ମନେ ପକା । କଲା କର୍ମକୁ ମନେ ପକା । ଜଣେ ସେବକ ଥର ଥର ହାତରେ ମଶାଲ ଦ୍ୱାରା ଚିତାଗ୍ନି ଜଳାଇଦେଲା ।

ପାଣ୍ଡବମାନଙ୍କ ଛଡ଼ା ଅନ୍ୟାନ୍ୟ ପାଣ୍ଡବପକ୍ଷର ବୀରମାନେ ଓ ବାସୁଦେବ କୃଷ୍ଣ ଚିତାସ୍ଥଳୀରେ ଉପସ୍ଥିତ । ସମସ୍ତଙ୍କ ନୟନରେ ଅଶ୍ରୁ । ଦୁର୍ଯ୍ୟୋଧନ, ଦୁଃଶାସନ ଆଦି କୌରବମାନଙ୍କ ସମେତ ମୁଁ ମଧ ଥାଏ । ଜୟଦ୍ରଥ ଛାତି ଫୁଲାଇ ବାହାରିଆସିଥାନ୍ତି ଗୁପ୍ତ ଆଶ୍ରୟସ୍ଥଳୀରୁ ଓ ଠିଆ ହୋଇଥାନ୍ତି ଚିତାର ନିକଟରେ । ଅଧରତଳେ କ୍ରୂର ହିଂସ୍ର ହସର ରେଖା । ଶତ୍ରୁର ଆସନ୍ନ ମୃତ୍ୟୁରେ ନିଷ୍ଠୁର ଆନନ୍ଦରେ ପରିସ୍ନାତ !

ହଠାତ୍ ଦୃଶ୍ୟର ପରିବର୍ତ୍ତନ । ପଶ୍ଚିମାକାଶ ଆଲୋକିତ । ସୂର୍ଯ୍ୟ ସଂପୂର୍ଣ୍ଣରୂପେ ଗ୍ରହଣମୁକ୍ତ । କୁରୁକ୍ଷେତ୍ରରେ ପୁଞ୍ଜୀଭୂତ ସୂର୍ଯ୍ୟରଶ୍ମି ବିଚ୍ଛୁରିତ । ନୀଡ଼ ଛାଡ଼ି ବିହଗମାନେ ଶୁଣି ଆସିଲେ ବାହାରି । ସେତେବେଳେ ଯାଇ ବୁଝାପଡ଼ିଲା ସବୁ କଥାର ରହସ୍ୟ । ଉପସ୍ଥିତ ଜନତା ମଧ୍ୟରେ ଗୁଞ୍ଜରଣ । ସୂର୍ଯ୍ୟ ଅସ୍ତ ହୋଇ ନ ଥିଲେ । ଗ୍ରସ୍ତ ହୋଇଥିଲେ ମାତ୍ର ।

ଦୀପ୍ତିମାନ୍ ସୂର୍ଯ୍ୟଙ୍କ ଆଡ଼କୁ ଲକ୍ଷ୍ୟ କରି ବାସୁଦେବ ଚିତ୍କାର କରିଉଠିଲେ, "ରହିଯାଅ, ରହିଯାଅ ପାର୍ଥ । ଏଇ ସେଠି ଦେଖ ସୂର୍ଯ୍ୟଙ୍କୁ । ଆଉ ଜୟଦ୍ରଥଙ୍କୁ ବି । ସୂର୍ଯ୍ୟାସ୍ତ ହୋଇ ନାହିଁ ।"

ଚିତା ଉପରେ ପାଦ ଦେବାକୁ ଯାଉଥିବା ଅର୍ଜୁନ ହଠାତ୍ ସ୍ତବ୍ଧ । ଚାହିଁଦେଲେ ଆକାଶକୁ ଓ ଜୟଦ୍ରଥଙ୍କ ଆଡ଼କୁ । ଜୟଦ୍ରଥ ଭୟରେ ଥରହର । ଅର୍ଜୁନଙ୍କ କ୍ରୋଧିତ ନୟନଦ୍ୱୟରେ ଅଗ୍ନିର ସ୍ଫୁଲିଙ୍ଗ । ମୁହୂର୍ତ୍ତକରେ କଲେ ଜୟଦ୍ରଥଙ୍କ ଶିରଚ୍ଛେଦ । ତାଙ୍କ ପ୍ରତିଜ୍ଞା ପୂର୍ଣ୍ଣ ହେଲା ।

ଜୟଦ୍ରଥଙ୍କୁ ସୁରକ୍ଷା ଦେଇପାରିଲେ ନାହିଁ ବୋଲି ଆଚାର୍ଯ୍ୟ ଖୁବ୍ କ୍ରୋଧିତ । ଅର୍ଜୁନଙ୍କ ପ୍ରତି ଆକ୍ଷେପ କରି କହିଲେ, "ନିରସ୍ତ୍ର ଅବସ୍ଥାରେ ତୁମେ ବଧ କଲ ଜୟଦ୍ରଥଙ୍କୁ । ଏ କେଉଁ ଧର୍ମ ପାଳିଲ ? ଧିକ୍ ତୁମ ବୀରତ୍ୱକୁ !"

ଅର୍ଜୁନ କିଛି ଉତ୍ତର ଦେବା ପୂର୍ବରୁ ବାସୁଦେବ ସ୍ୱୟଂ ଆଗେଇଆସିଲେ ଓ କହିଲେ ସମଧିକ ଆକ୍ଷେପ ବାଣୀ, ''ହେ ଆଚାର୍ଯ୍ୟ ! ଆପଣ ମନେପକାନ୍ତୁ ନିଜ କଥାକୁ । ଗତ କାଲି ଆପଣମାନେ ସପ୍ତରଥୀ ମିଶି ନିରସ୍ତ୍ର ଅଭିମନ୍ୟୁଙ୍କୁ ବଧ କରିଥିଲେ । ଏଇଟା ଥିଲା କେଉଁ ବୀରଧର୍ମ ?''

ଆଚାର୍ଯ୍ୟ ନିରୁତ୍ତର ଲଜ୍ଜାରେ । ଅଧିକ କ୍ରୋଧିତ ହୋଇ ବଢ଼ାଇଦେଲେ ଯୁଦ୍ଧର ବେଗକୁ । ସୂର୍ଯ୍ୟାସ୍ତ ପରେ ମଧ ଚାଲିଲା ରାତ୍ରିଯୁଦ୍ଧ ।

ନିଜ ଭଗିନୀପତି ଜୟଦ୍ରଥଙ୍କ ବୀରଗତି ପରେ ଦୁଃଖରେ ଭାଙ୍ଗିପଡ଼ନ୍ତି ଦୁର୍ଯ୍ୟୋଧନ । କିଛି ସମୟ ପାଇଁ ଫେରିଯାଆନ୍ତି ଶିବିରକୁ ଏବଂ ପ୍ରକାଶ କରନ୍ତି ଗଭୀର ଶୋକ । ମୁଁ ତାଙ୍କୁ ସାନ୍ତ୍ୱନା ଦେଇ କହେ, ''ହେ ମିତ୍ର ! ଦୁଃଖ କର ନାହିଁ । ଯାହା ହେବାର ହୋଇଯାଇଛି । ଏବେ ଦେଖ ମୁଁ କ'ଣ କରୁଛି ? ଅଳ୍ପ କିଛି ସମୟ ମଧ୍ୟରେ ସଜଡ଼ାଯାଇଥିବା ଚିତାରେ ଅର୍ଜୁନଙ୍କ ଚିତାଗ୍ନି ଜଳିଉଠିବ । ମନରେ ଧୈର୍ଯ୍ୟ ଧର ।''

କୃପାଚାର୍ଯ୍ୟ ସେତେବେଳେ ଥିଲେ ତାଙ୍କ ପାଖରେ । ସେ ମୋ କଥା ଶୁଣି କହିଲେ, ''ହେ ସୂତପୁତ୍ର କର୍ଣ୍ଣ ! ତୁମର ଏମିତି ଦମ୍ଭପୂର୍ଣ୍ଣ କଥା ଅନେକବାର ଆମେ ଶୁଣିଆସୁଛୁ । ଖାଲି କହି ହିଁ ଆସୁଛ ଅନେକ କଥା । କିନ୍ତୁ କାର୍ଯ୍ୟରେ କିଛି ଦେଖାଇପାରୁ ନାହଁ । ଆଉ ସେଭଳି କଥା କହିବ ନାହିଁ ।'' ତାଙ୍କର ତାଚ୍ଛଲ୍ୟଭରା କଣ୍ଠସ୍ୱର ।

''ହେ ବ୍ରାହ୍ମଣ ! ମୋ' ପାଖରେ ଇନ୍ଦ୍ରପ୍ରଦତ୍ତ ମହାଶକ୍ତି ଅଛି । ଦେଖନ୍ତୁ ମୁଁ କ'ଣ କରିପାରୁଛି । ସେଥିରୁ ମୁକୁଳିବାର ଶକ୍ତି କାହାରି ନାହିଁ । ଅର୍ଜୁନ କିବା ଛାର !'' ଅର୍ଜୁନଙ୍କ ପ୍ରତି ଅବହେଳା ଦେଖାଇ କହିଲି ।

''ସ୍ୱୟଂ ମହାଦେବ କିରାତବେଶ ଧରିଥିବା ଅବସରରେ ଯାହାଙ୍କ ହସ୍ତରେ ପରାଜିତ ତୁମେ ତାଙ୍କର କ'ଣ ବା କରିପାରିବ ? ଦେଖାଅ ନାହିଁ ଏପରି ବୃଥା ଆସ୍ଫାଳନ ।'' ପୁନର୍ବାର ତାଙ୍କର ଆକ୍ଷେପୋକ୍ତି ।

ଆଉ ସହିପାରିଲି ନାହିଁ । କ୍ରୋଧ ଉଠିଗଲା ପଞ୍ଚମକୁ । ଖଡ୍‌ଗ ଉତ୍ତୋଳନ କରି ତାଙ୍କୁ ଆଘାତ କରିବାକୁ ବସିଲି । ଦୁର୍ଯ୍ୟୋଧନ ହଠାତ୍ ଉଠିଯାଇ ବାଧା ଦେଲେ ମତେ । କହିଲେ, ''କ୍ରୋଧାନ୍ଧ ହୋଇ ଏ ତୁମେ କ'ଣ କରିବାକୁ ଯାଉଛ ମିତ୍ର ? କୃପାଚାର୍ଯ୍ୟ ଆମ୍ଭମାନଙ୍କ ଆଚାର୍ଯ୍ୟ । ଆଉ ହିତାକାଙ୍‌କ୍ଷୀ ବି । ପୁଣି ବ୍ରାହ୍ମଣ । ତାଙ୍କ ଉପରେ ଆଘାତ କରିବାକୁ ଯାଉଛ । ଛି ! ଛି ! ବନ୍ଦ କର ।''

ମୁଁ କୃପାଚାର୍ଯ୍ୟଙ୍କୁ ଅପମାନିତ କରିଥିବା କଥା କେମିତି ଜାଣିପାରିଲେ ଅଶ୍ୱତ୍ଥାମା । ସେ ଧନୁର୍ବାଣ ଧରି ଝଡ଼ବେଗରେ ପ୍ରବେଶ କଲେ ଶିବିର ମଧ୍ୟରେ ଏବଂ ମତେ ଲକ୍ଷ୍ୟ କରି କରି କହିଲେ, ''ଆରେ ସୂତପୁତ୍ର କର୍ଣ୍ଣ ! ତୋ'ର ଏତେ ସାହସ ଯେ ତୁ ମୋ' ମାମୁଙ୍କୁ ଅପମାନିତ କଲୁ ? ଏଇ ତାହାର ଶାସ୍ତି ନେ ।'' ଏହା କହି ଧନୁର୍ଗୁଣ ଟାଣି ମୋ'

ଉପରେ ବାଧକ ଶରାଘାତ କରିବାକୁ ହେଲେ ଉଦ୍ୟତ । ଦୁର୍ଯ୍ୟୋଧନ ଉଠିଯାଇ ଧରିପକାଇଲେ ତାଙ୍କ ହାତ ଏବଂ କହିଲେ, ''କ୍ଷାନ୍ତ ହୁଅ ଗୁରୁପୁତ୍ର ଅଶ୍ୱତ୍ଥାମା । କ୍ଷାନ୍ତ ହୁଅ । କର୍ଣ୍ଣ ଆମ ଦୁହିଁଙ୍କ ମିତ୍ର । ଆଉ ଆମେ ଦୁହେଁ ମଧ୍ୟ ପରସ୍ପର ମିତ୍ର । ଆମ ମଧ୍ୟରେ ଏଭଳି ଆଚରଣ ଅଶୋଭନୀୟ ।''

ଦୁର୍ଯ୍ୟୋଧନଙ୍କ ପରାମର୍ଶରେ ଆମେ ଦୁହେଁ ଶାନ୍ତ ହେଲୁ । ଆଉ କୃପାଚାର୍ଯ୍ୟ ବି । ମୋ' ଆଚରଣ ଲାଗି କ୍ଷମା ମାଗିଲି ତାଙ୍କୁ । ହୃଦୟ ତାଙ୍କର ଉଦାର । ସେ କ୍ଷମା ଦେଲେ । ତାହା ପରେ ମୁଁ ଓ ଅଶ୍ୱତ୍ଥାମା ଆଲିଙ୍ଗନପାଶରେ ବାନ୍ଧିରଖିଲୁ ପରସ୍ପରକୁ । ଅଶ୍ୱତ୍ଥାମା କହିଲେ, ''ଦେଖିଲ ତ ମିତ୍ର କର୍ଣ୍ଣ, କ୍ରୋଧର ଶକ୍ତି କେତେ ? ତାହା ମଣିଷକୁ ଅନ୍ଧ କରିଦିଏ । ଏଥିପ୍ରତି ସାବଧାନ ହେବାପାଇଁ ଅନେକଥର କହିଛି ତୁମକୁ । ଅଥଚ ଆଜି ନିଜେ ହୋଇଗଲି ତାହାର ଶରବ୍ୟ । ବଡ଼ ଦୁଃଖର କଥା ।''

''ହଁ ମିତ୍ର ଅଶ୍ୱତ୍ଥାମା ! ମୁଁ ବି ତ ସେଇ ଭୁଲ କରିବସିଥିଲି ।''

ତାହା ପରେ ଦୁହେଁ ପରସ୍ପରଙ୍କୁ ଚାହିଁ ଏଇ କ୍ଷଣିକ ଉତ୍ତେଜନାରେ ମାନସିକ ଭାରସାମ୍ୟ ହରାଇଥିବା କାରଣରୁ ହସିବାକୁ ଲାଗିଲୁ ଖୁବ୍ ଜୋର୍‌ରେ ।

ଯୁଦ୍ଧଭୂମିକୁ ଫେରିଆସିଲି ନୂତନ ଉତ୍ସାହ ଓ ଉଦ୍ଦୀପନା ନେଇ । ସୂର୍ଯ୍ୟଦେବ ଏବେ ପ୍ରକୃତରେ ଅସ୍ତମିତ । ଯୁଦ୍ଧ କିନ୍ତୁ ଚାଲିଛି ଦିବାଯୁଦ୍ଧଠାରୁ ପ୍ରବଳତର ଭାବରେ । ଚାରି ଦିଗରେ ମଶାଲର ଆଲୁଅ । ଦିନଭଳି ଦିଶୁଛି ପରିଷ୍କାର । ସହସ୍ର ସହସ୍ର ବୀରଙ୍କ ଶବ ଲୋଟୁଛି ଯୁଦ୍ଧଭୂମିରେ । ମୁମୂର୍ଷୁ ବୀରମାନଙ୍କ ଆର୍ତ୍ତଚିତ୍କାରରେ କାନ ଅତଡ଼ା ପଡୁଛି । ଅସ୍ତ୍ରଶସ୍ତ୍ରର ଝନତ୍କାର ଶବ୍ଦସହିତ ବାହନମାନଙ୍କ ଚିତ୍କାର ଓ ରଥଚକ୍ରଗୁଡ଼ିକର ଘର୍ଘର ନାଦ ସୃଷ୍ଟି କରୁଛି ଏକ ଅଭୂତପୂର୍ବ ମିଶ୍ରିତ ଗୁଞ୍ଜରଣ । ନାରାଚ, ସର୍ପମୁଖ, ସୂଚୀ, ଜିହ୍ମ, ଗଜାସ୍ଥି, ଗବାସ୍ଥି, ଗୋମୁଖ, ଗୃଧ୍ରପତ୍ର ଆଦି ବାଣଗୁଡ଼ିକର ସାଇଁ ସାଇଁ ଶବ୍ଦ ସହିତ ଧନୁଷ୍ଟଙ୍କାର ମିଶିଯାଇ ଭୟଙ୍କର ଘାତକ ବାତାବରଣ ସୃଷ୍ଟି କରୁଛି । ସହିଦମାନଙ୍କ ମହାତ୍ୟାଗରେ ପରିଶୀଳିତ ହୋଇଚାଲିଛି ମହାସମର ରାତ୍ରିର ମହାନ୍ଧକାରକୁ ମଶାଲ ଆଲୋକଦ୍ୱାରା ଦୂର କରାଇଦେଇ । କାହାର ମହାଇଙ୍ଗିତରେ ଓ କେଉଁ ମହାସିଦ୍ଧିର ପରିପୂର୍ତ୍ତି ଉଦ୍ଦେଶ୍ୟରେ ଏହା ଚାଲିଛି କେଜାଣି ? କିଏ ସେଇ ମହାପୁରୁଷ ଯେ ନୂତନ କରି ମହାଇତିହାସର ପୃଷ୍ଠା ପରେ ପୃଷ୍ଠା ଲେଖି ଚାଲିଛନ୍ତି ନିରନ୍ତର ଅବିଶ୍ରାନ୍ତ ଭାବରେ ? କେଉଁ ମହାଯଶ ମିଳିବ କାହାକୁ ସେ କଥା କିଏ କହିପାରିବ ? ଏଇଭଳି ଅନୁଚିନ୍ତାମାନ ବେଳେବେଳେ ଆସୁଥାଏ ମୋ' ମନରେ ।

ଯେତେ ଆହ୍ୱାନ ଦେଲେ ବି ଅର୍ଜୁନ ଆସୁ ନ ଥାନ୍ତି ମୋର ସମ୍ମୁଖୀନ ହେବାପାଇଁ । ଶୁଣିଲି, ଏହା କୁଆଡ଼େ ବାସୁଦେବ କୃଷ୍ଣଙ୍କ ପରାମର୍ଶରେ ଫଳଶ୍ରୁତି । ଅର୍ଜୁନ ପରିବର୍ତ୍ତେ ମୋର ସମ୍ମୁଖୀନ ହେବାପାଇଁ ଆସେ ଭୀମସେନନନ୍ଦନ ରାକ୍ଷସ ଘଟୋତ୍କଚ । ମତ୍ତହସ୍ତୀ ପରି ବିଚରଣ କରୁଥାଏ ଯୁଦ୍ଧଭୂମିରେ । ବାମ ଦକ୍ଷିଣ ଦୁଇ ହସ୍ତରେ ଗୋଟିକ ପରେ

ଗୋଟିଏ ସୈନ୍ୟଙ୍କୁ ଚାଲିଥାଏ ଗର୍ଭସ୍ଥ କରି । ପଦାଘାତରେ ଚୂରି ଚୂରି ଯାଉଥାଏ ରଥଗୁଡ଼ିକୁ । କୌଣସି ଅସ୍ତ୍ର ତା'କୁ ଦେଇପାରୁ ନ ଥାଏ ବାଧା । କେତେବେଳେ ପ୍ରକାଶ୍ୟ ଯୁଦ୍ଧରେ ଆଉ କେତେବେଳେ ମାୟା-ଯୁଦ୍ଧରେ ମାତିଉଠିଥାଏ । ରାକ୍ଷସମାନେ ରାତ୍ରି ଯୁଦ୍ଧରେ ସ୍ୱାଭାବିକ ଭାବରେ ପ୍ରବଳ । ସେଇ ସ୍ୱଭାବ ଧରି ସେ ହୋଇଉଠିଥାଏ ଭୟଙ୍କର ଭାବରେ ଦୁର୍ବାର । ପାରମ୍ପରିକ ଅସ୍ତ୍ରଗୁଡ଼ିକ ନିକଟରେ ବ୍ରହ୍ମାସ୍ତ୍ର ଯେମିତି । ତେଣୁ ତାକୁ ପ୍ରତିହତ କରିବା ନ ଥାଏ ସହଜ । ତା'କୁ ଦେଖିବାମାତ୍ରେ ହିଁ କୁରୁ ସୈନ୍ୟମାନେ ଧାଇଁ ପଳାଇଯାଉଥାନ୍ତି ଭୟରେ । ସମସ୍ତଙ୍କର 'ତ୍ରାହି ତ୍ରାହି' ଡାକ । ଅନେକ ସମୟ ଧରି ସେ ଯୁଦ୍ଧରତ । ମୋ' ସହିତ ଉଭୟ ପ୍ରକାଶ୍ୟ ଯୁଦ୍ଧ ଓ ମାୟାଯୁଦ୍ଧ । ତା'ର ସମସ୍ତ ଅସ୍ତ୍ରକୁ ଖଣ୍ଡନ କଲି । ଆଉ ମାୟାକୁ ବି । ତଥାପି ତା'ର ଶ୍ରାନ୍ତି ନାହିଁ କି କ୍ଳାନ୍ତି ନାହିଁ । ବରଂ ତେଜ ପ୍ରବଳରୁ ପ୍ରବଳତର । ଖୁବ୍ ଚକିତ-ବିସ୍ମିତ ମୁଁ । ଜଣେ ରାକ୍ଷସ ପୁଣି ଏଭଳି ବୀର୍ଯ୍ୟବାନ୍ ହୋଇପାରେ ? ହୋଇପାରେ ବି ଏଭଳି ପରାକ୍ରମୀ ? ଆର୍ଯ୍ୟ-ରାକ୍ଷସମିଶ୍ରିତ ରକ୍ତ ପୁଣି ଏଭଳି ଶୌର୍ଯ୍ୟ ସୃଷ୍ଟି କରିପାରେ ?

ଦୁର୍ଯ୍ୟୋଧନ ଏବେ ଅସ୍ତବ୍ୟସ୍ତ । କୁରୁସୈନ୍ୟଙ୍କ କ୍ଷୟକ୍ଷତି ଅତି ମାତ୍ରାରେ ବଢ଼ି ବଢ଼ି ଚାଲିଛି । ରାକ୍ଷସ ଘଟୋତ୍କଚ ହୁଏତ ରାତି ପାହିବା ପୂର୍ବରୁ ଯୁଦ୍ଧକୁ କରିଦେଇପାରେ ପରିସମାପ୍ତ । ତା'ର ବଧ ତେଣୁ ନିତାନ୍ତ ଆବଶ୍ୟକ । ଏଇ ଚିନ୍ତା ନେଇ ସେ ଆସିଲେ ମୋ' ପାଖକୁ ଏବଂ କହିଲେ, "ହେ ମିତ୍ର ରାଧେୟ ! ଆଉ ଡେରି କର ନାହିଁ । ଇନ୍ଦ୍ରପ୍ରଦତ୍ତ ଅମୋଘ ଶକ୍ତି ଛାଡ଼ି ରାକ୍ଷସ ଘଟୋତ୍କଚକୁ ବଧ କର ।"

"ନା, ମିତ୍ର ! ତାହା କରିପାରିବି ନାହିଁ । ସେଇଟିକୁ ଏତେଦିନ ଧରି ସାଇତି ରଖିଛି କେବଳ ଅର୍ଜୁନଙ୍କ ପାଇଁ । ଥରେ ପ୍ରୟୋଗ କଲେ ଚିରଦିନ ଲାଗି ତାହାକୁ ହରାଇବସିବି । ଏ ଭୁଲ କରିବି ନାହିଁ ।" ତାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି କହିଲି ।

"ଆଜି ରାତି ପାହିଲା ବେଳକୁ ଆମେ ବଞ୍ଚିଥିଲେ ସିନା ତୁମେ ଅର୍ଜୁନଙ୍କ ସହିତ ଲଢ଼ିବ । ଯାହା ଜଣାପଡୁଛି, ଆଜି ତ ଘଟୋତ୍କଚ ହସ୍ତରେ ଯୁଦ୍ଧ ଶେଷ ହୋଇଯିବ । ତେଣୁ ତୁମକୁ ବିଶେଷ ଅନୁରୋଧ, ଘଟୋତ୍କଚ ଉପରେ ଅମୋଘ ଶକ୍ତିଟିକୁ ପ୍ରୟୋଗ କର । ନ କଲେ ରକ୍ଷା ନାହିଁ ।" ଦୃଢ଼ତାର ସହିତ ତାଙ୍କର ବାରମ୍ବାର ଅନୁରୋଧ ।

ଶେଷକୁ ଅନିଚ୍ଛାସତ୍ତ୍ୱେ ବିବଶ ହୋଇ ପ୍ରୟୋଗ କଲି ମହାଶକ୍ତିଟିକୁ । ତାହା ପ୍ରଳୟର ଅଗ୍ନି ବର୍ଷାଇ ପଡ଼ିଲା ଆସି ଘଟୋତ୍କଚ ଉପରେ । ପରେ ପରେ ଚାଲିଗଲା ଇନ୍ଦ୍ରଙ୍କ ପାଖକୁ । ଆଉ ଫେରିଲା ନାହିଁ । ଭୟଙ୍କର ଗର୍ଜନ କରି ଭୂମିରେ ପଡ଼ି ଛଟପଟ ହେବାକୁ ଲାଗିଲା ଘଟୋତ୍କଚ ଏବଂ ପରେ ପରେ ଶେଷନିଃଶ୍ୱାସ ଛାଡ଼ିଲା । କୁରୁବାହିନୀରେ ବିଜୟର ଶଙ୍ଖନାଦ । ସୈନ୍ୟମାନଙ୍କ ମୁଖମଣ୍ଡଳ ପ୍ରସନ୍ନ । ସମସ୍ତେ ଏବେ ଆଶ୍ୱସ୍ତ ।

ମୋ' ମନରେ କିନ୍ତୁ ଅଶେଷ ଦୁଃଖ । କାରଣ ଯାହା କିଛି ଶେଷ ଶକ୍ତି ମୋର ଥିଲା, ତାହା ଏବେ ଚାଲିଗଲା । ମୁଁ ହୋଇଗଲି ସଂପୂର୍ଣ୍ଣ ରୂପେ ଶକ୍ତିହୀନ । ମୋ' ପାଖରେ

ରହିଲା କେବଳ ଅତୀତର ଗୁରୁ-ବ୍ରାହ୍ମଣଙ୍କ ଅଭିଶାପର ବୋଝ ଏଇ ଦୁର୍ବଳତାକୁ ଅଧିକତର ଦୁର୍ବଳ କରିଦେବା ପାଇଁ । ହାୟ ରେ ମୋ' ଭାଗ୍ୟ ! ମନେ ମନେ ଭାଗ୍ୟକୁ ଖୁବ୍ ନିନ୍ଦିବାକୁ ଲାଗିଲି ।

କୌରବବାହିନୀର ଶଙ୍ଖନାଦ ନୀରବ ହେବା ପରେ ନନ୍ଦିଘୋଷ ରଥରେ ଆସୀନ ବାସୁଦେବ କୃଷ୍ଣଙ୍କ ପାଞ୍ଚଜନ୍ୟ ଗର୍ଜିଉଠିଲା ଗମ୍ଭୀର ନାଦରେ । ବିସ୍ମିତ ମୁଁ । ଘଟୋତ୍କଚ ଭଳି ବୀରର ପତନରେ ପାଣ୍ଡବପକ୍ଷ ଦୁଃଖିତ ହେବା କଥା । ଅଥଚ କୃଷ୍ଣ ଏବେ ଆନନ୍ଦରେ ଶଙ୍ଖନାଦ କରୁଛନ୍ତି ! କ'ଣ ଏହାର କାରଣ ହୋଇପାରେ ?

ସେଦିନର ଯୁଦ୍ଧରେ ପାଣ୍ଡବପକ୍ଷ ହେଲା ପରାସ୍ତ ।

ଶିବିରକୁ ଫେରିବା ପରେ ଯାଇ ବୁଝିପାରିଲି କୃଷ୍ଣଙ୍କ ବିଜୟୋନ୍ମତ୍ତତା ମଧ୍ୟରେ ଶଙ୍ଖନାଦ କରିବାର ରହସ୍ୟ । ଚର ସମସ୍ତ ଖବର ମତେ ଆଣିଦେଲା । ଯୁଧିଷ୍ଠିର କୁଆଡ଼େ ଘଟୋତ୍କଚର ବଧରେ ଖୁବ୍ ଭାଙ୍ଗିପଡ଼ିଥିବା ଅବସ୍ଥାରେ ପଚାରିଲେ କୃଷ୍ଣଙ୍କୁ, "ହେ ବାସୁଦେବ ! ବର୍ତ୍ତମାନ ଆମର ପୁତ୍ରଶୋକରେ ଦୁଃଖ କରିବାର ସମୟ । ଅଥଚ ଆପଣ ଆନନ୍ଦରେ ଶଙ୍ଖନାଦ କରୁଛନ୍ତି ! ବଡ଼ ଆଶ୍ଚର୍ଯ୍ୟ ! ଏହାର କାରଣ କ'ଣ ?"

"ଅତି ସରଳ ଧର୍ମରାଜ । ଇନ୍ଦ୍ରପ୍ରଦତ୍ତ ମହାଶକ୍ତିଟି ଏବେ ଚାଲିଯାଇଛି କର୍ଣ୍ଣଙ୍କ ପାଖରୁ । ଅର୍ଜୁନଙ୍କ ଜୀବନ ପ୍ରତି ତାଙ୍କଠାରୁ ଚିରଦିନ ଦୂର ହୋଇଛି ବିପଦ । ଏବେ ଅର୍ଜୁନ ନିର୍ଭୟରେ ତାଙ୍କ ସହିତ ଲଢ଼ିପାରିବେ । ଏଇ ମୁହୂର୍ତ୍ତଟିକୁ ଅପେକ୍ଷା କରି ଏ ପର୍ଯ୍ୟନ୍ତ ତାଙ୍କୁ କର୍ଣ୍ଣଙ୍କ ସହିତ ଲଢ଼ିବାର ସୁଯୋଗ ଦେଉ ନ ଥିଲି ।" ରଙ୍ଗାଧର ତଳେ ସ୍ୱାଭାବିକ ହସ ହସି କହିଲେ ସେ ।

ଏତେବେଳେ ଯାଇ ବୁଝିପାରିଲି ସବୁ କଥା । କୃଷ୍ଣ ତା'ହେଲେ ଜାଣିଶୁଣି ଅର୍ଜୁନଙ୍କୁ ମୋ'ଠାରୁ ରଖୁଥିଲେ ଦୂରେଇ । ଆଉ ଜାଣି-ଶୁଣି ଘଟୋତ୍କଚକୁ ମୋ' ସହିତ ଲଢ଼ିବାପାଇଁ ପଠାଇ ମତେ ଆଜି କରିଦେଇଛନ୍ତି ଶକ୍ତିହୀନ ।

ବଡ଼ ବିଚିତ୍ର ଏ କୃଷ୍ଣ ! ଆହୁରି ବିଚିତ୍ର ଯାଙ୍କ ରହସ୍ୟ !!

## ପଞ୍ଚାଅଶୀ

ଆଜି ମହାସମରର ପଞ୍ଚଦଶ ଦିବସ । ଶୁକ୍ଳ ପକ୍ଷ ପ୍ରତିପଦା ତିଥି । ଆଚାର୍ଯ୍ୟ ଦ୍ରୋଣଙ୍କ ସେନାପତିତ୍ୱର ଶେଷ ଦିନ । ଆଜି ହିଁ ତାଙ୍କର ବୀରଗତି ପାଇବାର ଦିନ । ଏହା ଘଟେ ଏକ ମର୍ମନ୍ତୁଦ ଓ କରୁଣ ପରିସ୍ଥିତି ମଧ୍ୟରେ ପାଣ୍ଡବପକ୍ଷରୁ ଛଳନାର ଜାଲ ବିଛାଇବା ଦ୍ୱାରା । ସବୁଠାରୁ ଦୁଃଖ ଓ ଆଶ୍ଚର୍ଯ୍ୟ ହେଲା, ଏଇ ଛଳନା-ଜାଲରେ କେତୋଟି ଗଣ୍ଠି ପକାଇବାର ଦାୟିତ୍ୱ ନେଇଥିଲେ ସ୍ୱୟଂ ଧର୍ମରାଜ ଯୁଧିଷ୍ଠିର । ଏଇ ଖବରଟି ଜାଣିସାରିବା ପରେ ଯୁଧିଷ୍ଠିର ସତ୍ୟବାଦୀ ବୋଲି ମୋର ଯେଉଁ ଧାରଣା ଥିଲା,

ତାହା ଗଲା ବଦଳି । ତାଙ୍କ ପ୍ରତି ପୂର୍ବ ଭଳି ଆଉ ରହି ନ ଥିଲା ମୋ'ର ସମ୍ମାନବୋଧ । ସ୍ୱାର୍ଥସିଦ୍ଧି ପାଇଁ ତାଙ୍କର ଏତେ ତଳକୁ ଖସିଯିବାଟାକୁ ପସନ୍ଦ କରି ନ ଥିଲି ମୁଁ । ବଡ଼ ବିଚିତ୍ର ସେ ଘଟଣା ।

ସେଦିନ ଆଚାର୍ଯ୍ୟ ଯେଉଁ ପରାକ୍ରମ ଦେଖାଇ ଲଢୁଥିଲେ, ତାହା ଥିଲା ଅନନ୍ୟ । ବିଭିନ୍ନ ପାଣ୍ଡବ ବାରମ୍ବାର ତାଙ୍କ ହସ୍ତରେ ହେଉଥିଲେ ପରାଜିତ । ଏକାଧିକବାର ସେ ଯୁଧିଷ୍ଠିରଙ୍କୁ ପ୍ରାୟ ବନ୍ଦୀ କରିନେବାର ଅବସ୍ଥାକୁ ଆସିଯାଇଥିଲେ । ଅର୍ଜୁନ ତାଙ୍କୁ ଉଦ୍ଧାର କରିଥିଲେ ଏଭଳି ଦୟନୀୟ ପରିସ୍ଥିତିରୁ । ଶେଷକୁ ଏଭଳି ହେଲା ଯେ ଯୁଧିଷ୍ଠିର ଆଉ ସାହସ କଲେ ନାହିଁ ଆଚାର୍ଯ୍ୟଙ୍କ ସମ୍ମୁଖକୁ ଯିବାପାଇଁ । ଦୀପଶିଖାଟି ଲିଭିଯିବା ପୂର୍ବରୁ ଖୁବ୍ ଉଜ୍ଜ୍ୱଳ ଆଲୋକ ଦେଇ ଜଳିଉଠିଲା ଭଳି ଆଚାର୍ଯ୍ୟ ଜଳିଉଠୁଥିଲେ ଅପୂର୍ବ ଶୌର୍ଯ୍ୟ ପ୍ରଦର୍ଶନରେ । ସତେଯେମିତି ସକଳ ପରାକ୍ରମର ଏକ ମୂର୍ତ୍ତିମାନ୍ ବିଗ୍ରହ ! ଦେବସେନାପତି କାର୍ତ୍ତିକେୟଙ୍କର ଏକ ଅବିକଳ ପ୍ରତିଛବି !!

ଦିନ ଦି' ପହର । ମାର୍ଗଶିର ମାସ ହେଲେ ମଧ୍ୟ ଆଜି କାହିଁକି ସୂର୍ଯ୍ୟତାପ ଅଧିକତର ଉଷ୍ଣ ଜଣାପଡୁଥାଏ । ଏଣେ ଆଚାର୍ଯ୍ୟ ମଧ୍ୟ ଦ୍ୱିତୀୟ ସୂର୍ଯ୍ୟଙ୍କ ଭଳି ନିଜ ବୀରତାର ତେଜ ବିକିରଣ କରି ଲଢୁଥାନ୍ତି । ଯୁଦ୍ଧରତ ସୈନ୍ୟମାନେ ଦୁଇ ସୂର୍ଯ୍ୟଙ୍କ ପ୍ରଚଣ୍ଡ ଉତ୍ତାପରେ ହୋଇଉଠୁଥାନ୍ତି ଅସ୍ଥିର । ହଠାତ୍ ଆଚାର୍ଯ୍ୟଙ୍କ ଯୁଦ୍ଧରେ ପଡ଼ିଗଲା ଭଙ୍ଗା । ଧନୁର୍ବାଣ ତାଙ୍କର ସ୍ତବ୍ଧ । ତାଙ୍କ କାନରେ ବାଜିଲା, କିଏ ଜଣେ କହୁଛନ୍ତି, "ଅଶ୍ୱତ୍ଥାମା ଏବେ ମୃତ ।" ସେ ଲକ୍ଷ୍ୟ କଲେ ଜଣେ କେହି ଅଶ୍ୱତ୍ଥାମାଙ୍କ ମୃତ୍ୟୁ ସନ୍ଦେଶ ଶୁଣାଇ ଶୁଣାଇ ରଥ ଝପଟାଇ ଆସୁଛନ୍ତି ତାଙ୍କ ଆଡ଼କୁ । ପାଖକୁ ଆସିବାରେ ଚିହ୍ନିପାରିଲେ ରଥାରୋହୀଙ୍କୁ । ସେ ଭୀମସେନ ।

ତୁମେ ସତ କହୁଛ ଭୀମସେନ, "ଅଶ୍ୱତ୍ଥାମା କ'ଣ ପ୍ରକୃତରେ ମୃତ ?"

"ହଁ, ଆଚାର୍ଯ୍ୟ ! ମୁଁ ପରା ନିଜେ ଦେଖିଆସିଲି ।"

"ମୋର କାହିଁକି ତୁମ କଥାରେ ଆଦୌ ବିଶ୍ୱାସ ହେଉ ନାହିଁ ।"

"ଆପଣ ବିଶ୍ୱାସ କରନ୍ତୁ କି ନ କରନ୍ତୁ, ଅଶ୍ୱତ୍ଥାମା କିନ୍ତୁ ମୃତ ।" ଏହା କହି ଭୀମସେନ ଚାଲିଗଲେ ଅନ୍ୟ ଦିଗରେ ।

ଆଚାର୍ଯ୍ୟଙ୍କର ମନରେ ତଥାପି ସନ୍ଦେହ । ସେ ଭୀମସେନଙ୍କ କଥାରେ ବିଶ୍ୱାସ କରିପାରୁ ନାହାନ୍ତି । ଅଥଚ ନ କରି ରହିପାରୁ ନାହାନ୍ତି । ମନରେ ଦ୍ୱନ୍ଦର ଝଡ଼ । ସତ୍ୟ କ'ଣ ଜାଣିବା ପାଇଁ ମନରେ ଉଦଗ୍ର ଉତ୍କଣ୍ଠା । ଯୁଧିଷ୍ଠିରଙ୍କ ପାଖକୁ ଯାଇ ପଚାରିଲେ ପ୍ରଶ୍ନ, "କହ ଧର୍ମରାଜ ଯୁଧିଷ୍ଠିର ! ସତରେ କ'ଣ ଅଶ୍ୱତ୍ଥାମା ମୃତ ?"

ତାଙ୍କର ବିଶ୍ୱାସ, ଯୁଧିଷ୍ଠିର ନିଶ୍ଚୟ ସତ୍ୟ କଥା କହିବେ । ଏଇଠି ତାଙ୍କ ବିଶ୍ୱାସରେ ବିଷ ଦେଲେ ସେ । କହିଲେ, "ଅଶ୍ୱତ୍ଥାମା ହତଃ ନରେ ବା କୁଞ୍ଜରେ ବା" ।

'ଅଶ୍ୱତ୍‌ଥାମା ହତଃ' ଅଂଶଟିକୁ କେବଳ ଉଚ୍ଚାରଣ କଲେ· ଆଚାର୍ଯ୍ୟଙ୍କୁ ଶୁଭିବା ଭଳି ଢଙ୍ଗରେ । ବାକି ଅଂଶଟିକୁ ଅତି ଅନୁଚ୍ଚ ସ୍ୱରରେ । ତେଣୁ ଆଚାର୍ଯ୍ୟ ଭାବିନେଲେ, ତାଙ୍କ ପୁତ୍ର ବୀର ଅଶ୍ୱତ୍‌ଥାମା ପ୍ରାଣତ୍ୟାଗ କରିଛନ୍ତି ବୋଲି ।

ପ୍ରକୃତରେ ଭୀମସେନଙ୍କ ହସ୍ତରେ ଅଶ୍ୱତ୍‌ଥାମା ନାମକ ହସ୍ତୀଟିଏ ହିଁ ମରିଥିଲା । କେବଳ ଧର୍ମରକ୍ଷା କରିବାକୁ ଯାଇ ଯୁଧିଷ୍ଠିର ଅନୁଚ୍ଚ ସ୍ୱରରେ ଉଚ୍ଚାରଣ କରିଥିଲେ 'କୁଞ୍ଜର' ଶବ୍ଦଟି । ଭାବିଲି, ଏହା ଧର୍ମରକ୍ଷାର ବାହାନା ଛଡ଼ା ଆଉ କ'ଣ ବା ହୋଇପାରେ ?

ସେଇ ମୁହୂର୍ତ୍ତରୁ ହିଁ ଯୁଦ୍ଧ ପ୍ରତି ଆଚାର୍ଯ୍ୟଙ୍କର ଆସିଗଲା ଅଶ୍ରଦ୍ଧା ଓ ବୈରାଗ୍ୟ । ପଞ୍ଚାଅଶୀ ବର୍ଷର ବୃଦ୍ଧ ଆଚାର୍ଯ୍ୟ ପୁତ୍ରଶୋକରେ ଅତ୍ୟନ୍ତ ଅଧୀର । କିଛିକ୍ଷଣପୂର୍ବରୁ ଯେଉଁ ଆଖି ଦିଓଟି ଜଳୁଥିଲା ବୀରତ୍ୱର ଦୀପ୍ତିରେ, ତାହା ଏବେ ଅଶ୍ରୁରେ ଛଳ ଛଳ । ଅଶ୍ରୁଧାର ବହି ଲୋଳିତ-ପଳିତ ଦୁଇ ଗଣ୍ଡଦେଶକୁ କରିଦେଲା ପ୍ଳାବିତ । ଧନୁର୍ବାଣ ଦୂରକୁ ଫିଙ୍ଗିଦେଇ ବସିପଡ଼ିଲେ ଯୋଗାସନରେ ରଥ ଉପରେ । ନିଜକୁ ଧୀରେ ଧୀରେ ସଂଯତ କରିନେଇ ହେଲେ ଧ୍ୟାନଲଗ୍ନ । ଅନ୍ତର୍ଦୃଷ୍ଟିରେ କରିବାକୁ ଲାଗିଲେ ଆତ୍ମଦର୍ଶନ । ଏହା ଥିଲା ଦ୍ରୁପଦନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କ ପାଇଁ ପିତୃଶତ୍ରୁ ଉପରେ ପ୍ରତିଶୋଧ ନେବାପାଇଁ ଉପଯୁକ୍ତ ସମୟ । ଉନ୍ମୁକ୍ତ ଖଡ୍‌ଗ ଉତ୍ତୋଳନ କରି ସେ ରଥରୁ ଅବତରଣ କଲେ ଏବଂ ଧାଇଁବାକୁ ଲାଗିଲେ ଆଚାର୍ଯ୍ୟଙ୍କ ରଥ ନିକଟକୁ । ପାଣ୍ଡବମାନେ ଡାକ ଛାଡ଼ିଥାନ୍ତି, "ରହିଯାଅ ଧୃଷ୍ଟଦ୍ୟୁମ୍ନ ! ରହିଯାଅ ।" କିନ୍ତୁ କାହାରି କଥାକୁ ଭ୍ରୂକ୍ଷେପ ନ କରି ଧାଉଁଥାନ୍ତି ସେ ଦ୍ରୁତଗତିରେ । ସତେଅବା କ୍ରୁଦ୍ଧ ସିଂହଟି ସୁପ୍ତ ଗୋଟିଏ ହରିଣ ଉପରେ ମାରିବ ଲମ୍ଫ ! ଆଖିପିଛୁଳାକେ ଆଚାର୍ଯ୍ୟଙ୍କ ଗ୍ରୀବାଦେଶରେ ଦେଲେ ଏକ ଘାତକ ପ୍ରହାର । ସେତିକିରେ ତାଙ୍କ ମୁଣ୍ଡ ଓ ଗଣ୍ଡି ଅଲଗା ହୋଇଗଲା । ସେ ପାଇଲେ ବୀରଗତି ।

"ଦ୍ରୋଣ ଚାଲିଗଲେ ! ଦ୍ରୋଣ ଚାଲିଗଲେ ।" ଚିତ୍କାର ଶୁଣାଗଲା ଉଭୟ ପକ୍ଷର ସେନାମଣ୍ଡଳରୁ । ଯୁଦ୍ଧ ଆପେ ଆପେ ବନ୍ଦ ହୋଇଗଲା । ଅନେକ ବୀର ଆସି ତାଙ୍କର ଶେଷ ଦର୍ଶନ କଲେ । ଅଶ୍ୱତ୍‌ଥାମା ଅଶ୍ରୁମୋଚନ କରୁଥିବା ଅବସ୍ଥାରେ ନିଜ ପିତାଙ୍କ ମୁଣ୍ଡ ଓ ଗଣ୍ଡିକୁ ଏକାଠି ଯୋଡ଼ିରଖି ତାହା ଉପରେ ଗୋଟିଏ ଶ୍ୱେତ ଉତ୍ତରୀୟ ଘୋଡ଼ାଇଦେଲେ । ଦର୍ଶକମାନଙ୍କ ଲାଗି କେବଳ ମୁଣ୍ଡଟି ଦିଶୁଥାଏ ବାହାରକୁ । ଶ୍ରଦ୍ଧାଞ୍ଜଳି ଦେବାପାଇଁ ଆସିଥିବା ଦର୍ଶକମାନଙ୍କ ଲମ୍ବା ଧାଡ଼ି ଲାଗିରହିଲା ଦୀର୍ଘ ସମୟ ପର୍ଯ୍ୟନ୍ତ ।

ସାରାଜୀବନ ଧରି ଆଚାର୍ଯ୍ୟ ମତେ ସୂତପୁତ୍ର ବୋଲି କହି ନାନା ଢଙ୍ଗରେ କରିଆସିଛନ୍ତି ଅବହେଳା । ଦେଇଆସିଛନ୍ତି ଘୋର ମାନସିକ ଯନ୍ତ୍ରଣା । ତଥାପି ତାଙ୍କର ଏଇ ଦୟନୀୟ ମୃତ୍ୟୁରେ ଦ୍ରବୀଭୂତ ମୁଁ । ତାଙ୍କ ଚେତନାହୀନ ପାଦ ଦୁଇଟିକୁ ଧରି ଅଶ୍ରୁତର୍ପଣ କରୁଥିବାବେଳେ ମୋ' ଆତ୍ମା ତାଙ୍କୁ ଯେମିତି କହୁଥିଲା, "ହେ ଆଚାର୍ଯ୍ୟ !

ସାରା ଜୀବନ ଧରି ଆପଣ ମୋ' ପରିଚୟ ପାଇପାରିଲେ ନାହିଁ ! ତାହା ଜଗତକୁ ଜଣା ହେବା ପୂର୍ବରୁ ଆଖି ବୁଜିଦେଲେ ! ମୋର ବଡ଼ ଦୁର୍ଭାଗ୍ୟ !!''

ଅଶ୍ୱତ୍ଥାମାଙ୍କୁ କ'ଣ କହି ସାନ୍ତ୍ୱନା ଦେବି, କିଛି ବାକ୍ୟ ସ୍ଫୁରିଲା ନାହିଁ । କେବଳ ଥର ଥର ହାତ ନେଇ ରଖିଲି ତାଙ୍କ କାନ୍ଧରେ ଏବଂ ଝର ଝର କରି ଗଡ଼ାଇ ଚାଲିଲି ଅଶ୍ରୁ । ଭକ୍ତି, ଶ୍ରଦ୍ଧା ଓ ଅନ୍ତର୍ବେଦନାର ଅଶ୍ରୁ !

ଆଚାର୍ଯ୍ୟ ଥିଲେ ଧନୁର୍ବିଦ୍ୟାର ଏକ ସାକ୍ଷାତ ପ୍ରମୂର୍ତ୍ତ ବିଗ୍ରହ । ତାଙ୍କ ଚାଲିଯିବାରେ ଜଗତରୁ ଧନୁର୍ବିଦ୍ୟା ଚାଲିଗଲା ଭଳି ଲାଗିଲା ।

ପିତାଙ୍କ ମୃତ୍ୟୁରେ କ୍ରୁଦ୍ଧ ହୋଇ ପ୍ରତିଶୋଧ ନେବା ଇଚ୍ଛାରେ ଅଶ୍ୱତ୍ଥାମା ଅବଶ୍ୟ ପ୍ରୟୋଗ କରିଥିଲେ ଦୁର୍ବାର ଧ୍ୱଂସକାରୀ ନାରାୟଣାସ୍ତ୍ର । କିନ୍ତୁ ପାଣ୍ଡବପକ୍ଷର କ୍ଷତିସାଧନ କରିବା ପୂର୍ବରୁ ତାହା ବାସୁଦେବ କୃଷ୍ଣଙ୍କ ଦ୍ୱାରା ହୋଇଯାଇଥିଲା ନିବାରିତ ।

ଆଚାର୍ଯ୍ୟଙ୍କ ବୀରଗତି ହେବାରେ କୁରୁପାଣ୍ଡବ ମହାସମର ଏକ ନୂଆ ମୋଡ଼ ନେବାକୁ ବସିଲା । ପାଣ୍ଡବପକ୍ଷର ବିଜୟର ସମ୍ଭାବନା ହୋଇଉଠିଲା ଉଜ୍ଜ୍ୱଳତର ।

ନୀରବ ଅବସରରେ ଭାବୁଥାଏ, ବାସୁଦେବ କୃଷ୍ଣ ଯେଉଁମାନଙ୍କର ସହାୟ, ସେମାନେ କ'ଣ କେବେହେଲେ ହାରିବେ ?

## ଛୟାଅଶୀ

କୁରୁକ୍ଷେତ୍ରର ରଣାଙ୍ଗନରେ ପ୍ରଥମ ସୂର୍ଯ୍ୟରଶ୍ମି ଦୁର୍ବାଦଳର ଶ୍ୟାମଳ ବୁକୁଦେଶରେ ପ୍ରଲମ୍ବିତ ମୁକ୍ତାହାରକୁ ଚୁମ୍ବନ କରିବାର ଅବ୍ୟବହିତ ପରେ ହିଁ କୌରବ ସୈନ୍ୟବାହିନୀର ଜୟନାଦରେ ପ୍ରକମ୍ପିତ ହୋଇଉଠିଲା ଗଗନ-ପବନ । ଗତ ରାତ୍ରିରେ ମୋର ହୋଇଯାଇଛି କୌରବବାହିନୀର ସେନାପତିପଦରେ ଅଭିଷେକ । ଦୁର୍ଯ୍ୟୋଧନ ନିଜ ହାତରେ ପିନ୍ଧାଇ ଦେଇଛନ୍ତି ସେନାପତିଙ୍କ ମୁକୁଟ । ଯୁଦ୍ଧାରମ୍ଭ ପୂର୍ବରୁ ମୋ'ର ଜୟଗାନ କରିବା ଅବସରରେ କୌରବବାହିନୀର ଚିତ୍କାର ''ଜୟତୁ ଅଙ୍ଗରାଜଃ କର୍ଣ୍ଣଃ ଜୟତୁ ।'' ତୂରୀ, ଭେରୀ, ଶଙ୍ଖ ଆଦିର ମିଳିତ ଧ୍ୱନି ମଧ୍ୟରେ ଆଗେଇଚାଲିଲେ ସେନାଦଳ ଓ ସଙ୍ଗେ ସଙ୍ଗେ ପୂର୍ବକଳ୍ପିତ ବ୍ୟବସ୍ଥା ଅନୁଯାୟୀ ସଜ୍ଜିତ ହୋଇଗଲେ ମକରବ୍ୟୂହରେ । ସର୍ବାଗ୍ରେ ସାରଥି ସତ୍ୟସେନଙ୍କ ଦ୍ୱାରା ଚାଳିତ ମୋ' ରଥ । ମକରର ମୁଖଭାଗରୁ ଓ ପୃଷ୍ଠଭାଗରୁ ବିପକ୍ଷ ବାହିନୀ ପ୍ରତି ଯେମିତି ଅତିମାତ୍ରାରେ ଘାତକ ପ୍ରହାର ଆସେ ତାହାର ସୁବ୍ୟବସ୍ଥା କରିସାରିଥିଲି ।

ମକରର ଦୁଇ ନେତ୍ରଭାଗରେ ମାତୁଳ ଶକୁନି ଓ ତାଙ୍କ ପୁତ୍ର ଉଲୂକ । ବାମ ପାଦରେ କୃତବର୍ମା । ଦକ୍ଷିଣ ପାଦରେ ଗୌତମ । ପୃଷ୍ଠଭାଗରେ ମଦ୍ରରାଜ ଶଲ୍ୟ ଓ ମଧ୍ୟଭାଗରେ ଦୁର୍ଯ୍ୟୋଧନ । ମୁଁ ନିଜେ ରହିଥିଲି ମୁଖଭାଗରେ । ସମସ୍ତଙ୍କୁ ମୋର କଠୋର ଆଦେଶ –

ଯେକୌଣସି ପରିସ୍ଥିତିରେ ବି କରିବାକୁ ହେବ ନାହିଁ ବ୍ୟୂହଭଙ୍ଗ । କାରଣ ଆକ୍ରମଣ ଓ ଆତ୍ମରକ୍ଷାର ପନ୍ଥାମାନ ସ୍ଥିର- କରାଯାଇଛି ଏଇ ବ୍ୟୂହବଦ୍ଧ ସୈନ୍ୟସଜ୍ଜାକୁ ନେଇ । ସାମାନ୍ୟ ତ୍ରୁଟିରେ ତାହା ପଡ଼ିବ ଭୁଶୁଡ଼ି ।

ଦୁର୍ଯ୍ୟୋଧନ ଶଙ୍ଖଧ୍ୱନି ଦ୍ୱାରା ଆକ୍ରମଣର ଆଦେଶ ଦେବାପାଇଁ ସଂକେତ ଦେଲେ । ସଙ୍ଗେ ସଙ୍ଗେ ମୁଁ ବଜ୍ରଗମ୍ଭୀର କଣ୍ଠର ଆଦେଶ ଦେଲି, ''ଆକ୍ରମଣ ।''

ତୁରନ୍ତ ଏହା ପାଳିତ ହେଲା । ସାରଥି ମୋ' ରଥକୁ ଆଗେଇନେବାକୁ ଲାଗିଲେ ଦ୍ରୁତଗତିରେ । ମୋ' ପଛେ ପଛେ ଆକ୍ରମକ କୁରୁବାହିନୀ ଆଗେଇବାକୁ ଲାଗିଲା । ସମସ୍ତଙ୍କ ଦେହ ଓ ମନରେ ଅପୂର୍ବ ସ୍ଫୂର୍ତ୍ତି । ବିଜୟକୁସୁମ ଚୟନ କରିବାପାଇଁ ସମସ୍ତେ ଆଗ୍ରହୀ ।

ପାଣ୍ଡବବାହିନୀର ନେତୃତ୍ୱ ନେଉଥାନ୍ତି ଅର୍ଜୁନ । ସେ ମଧ୍ୟ ସମଧିକ ଗମ୍ଭୀର ସ୍ୱରରେ ଆଦେଶ ଦେଲେ ପ୍ରତ୍ୟାକ୍ରମଣ ପାଇଁ ଏବଂ ଆକ୍ରମଣର ପୂର୍ବାଭାସର ସୂଚନା ଦେଇ ଗାଣ୍ଡୀବ ଧନୁରୁ ଛାଡ଼ିବାକୁ ଲାଗିଲେ ଟଙ୍କାର ଉପରେ ଟଙ୍କାର । ପାଣ୍ଡବବାହିନୀରେ ମଧ୍ୟ ସମଧିକ ବିଜୟାଭିଳାଷର ସୂଚନା ।

ଆକ୍ରମଣ ପ୍ରତ୍ୟାକ୍ରମଣ ମଧ୍ୟରେ ଧୀରେ ଧୀରେ ଘନେଇଉଠିଲା ଯୁଦ୍ଧ । ଉଭୟ ପକ୍ଷ ଅବସାଦହୀନ । ମଧ୍ୟାହ୍ନ ବେଳକୁ ପହଞ୍ଚିଯାଇଥିଲା ଚରମ ଅବସ୍ଥାରେ । ପଟ୍ଟିଶ, ତୋମର, ଭିନ୍ଦିପାଳ, ଶତଘ୍ନୀ, ଖଡ୍ଗ, ଶୂଳ ଆଦି ବିଭିନ୍ନ ଅସ୍ତ୍ରର ଘାତ-ପ୍ରତିଘାତ ମଧ୍ୟରେ ଯୁଦ୍ଧଭୂମିରେ ରକ୍ତର କର୍ଦ୍ଦମ ଜମିଉଠିବାକୁ ଲାଗିଲା । ନିରନ୍ତର ଛୁଟିଆସୁଥିବା ବାଣଗୁଡ଼ିକର ସାଇଁ ସାଇଁ ଶବ୍ଦ ସହିତ ଧନୁଷ୍ଟଙ୍କାରସମୂହର ଗମ୍ଭୀର ଶବ୍ଦ ମିଶିଯାଇ ଖୁବ୍ ଭୀତିସଞ୍ଚାର କରିବାକୁ ଲାଗିଲା ଭୀରୁମାନଙ୍କ ମନରେ । ମୋ' ସେନାପତିତ୍ୱର ପ୍ରଥମ ଦିବସରେ ଯୁଦ୍ଧର ଅପୂର୍ବ ଘନଘଟା !

ଏହା ମଧ୍ୟରେ ଯୁଧିଷ୍ଠିର, ନକୁଳ ଓ ସହଦେବ ଏଇ ତିନିଜଣଙ୍କ ସହିତ ମୋର ହୋଇଯାଇଛି ଭୀଷଣ ଯୁଦ୍ଧ । ସେମାନେ ପରାସ୍ତ । ମୁଁ କିନ୍ତୁ ସେମାନଙ୍କ ଉପରେ ମାରକ ଆଘାତ କରି ନାହିଁ । ଛାଡ଼ିଦେଇଛି ମାତା କୁନ୍ତୀଙ୍କୁ ଦେଇଥିବା ବଚନକୁ ସ୍ମରଣ କରି । ସମସ୍ତଙ୍କୁ କହିଛି, ''ଯାଅ ! ଜୀବନ ନେଇ ଫେରିଯାଅ । ଅର୍ଜୁନ ପରା ମହାବୀର । ତାଙ୍କୁ ହିଁ ପଠାଇଦିଅ ମୋ' ପାଖକୁ ଯୁଦ୍ଧ କରିବାପାଇଁ ।''

ସାରଥି ସତ୍ୟସେନ ଏଇ କୋମଳ ଯୁଦ୍ଧର ଅର୍ଥ ବୁଝି ନ ପାରି ମତେ ପଚାରିଛନ୍ତି, ''ହେ ମହାରାଜ ! ମୁଁ ଗୋଟିଏ କଥା ଏପର୍ଯ୍ୟନ୍ତ ବୁଝିପାରିଲି ନାହିଁ । କିଛି ନ ଭାବିଲେ ପ୍ରଶ୍ନଟିଏ ପଚାରିଥାନ୍ତି ।''

''ସେ ଥିଲେ ମୋର ଅତି ପ୍ରିୟ । ଆଉ ଜଣେ ସୁଯୋଗ୍ୟ ସାରଥି ମଧ୍ୟ । ଦିଗ୍‌ବିଜୟ ସମୟରେ ସାରଥ୍ୟକର୍ମ ନିର୍ବାହ କରିଥିଲେ ଅତି ସୁନ୍ଦର ଭାବରେ । ତାଙ୍କୁ ଉତ୍ସାହିତ କରିବାକୁ ଯାଇ କହିଲି, ''କ'ଣ ପଚାରିବ ପଚାର ସତ୍ୟସେନ । କିଛି ଭାବ ନାହିଁ ।''

''ଏଇ ପାଣ୍ଡବ ତିନିଭାଇଙ୍କୁ ଆପଣ ବଧ କରିବାର ଅବସ୍ଥାରେ ଥିଲେ । ଅଥଚ ସେମାନଙ୍କୁ ଛାଡ଼ିଦେଲେ କାହିଁକି ?''

''କାରଣ ସେମାନେ ଥିଲେ ନିରସ୍ତ୍ର । ସେମାନଙ୍କୁ ନିରସ୍ତ୍ର କରିଦେଇଥିଲି । ଏଭଳି ଅବସ୍ଥାରେ ସେମାନଙ୍କୁ ବଧ କରିବା ବୀରଧର୍ମର ବିରୋଧୀ । ଅର୍ଜୁନ ଜଣେ ମହାବୀର । ମୋର ଇଚ୍ଛା ତାଙ୍କୁ ବଧ କରିବା । ସେଇ ସୁଯୋଗ ଖୋଜୁଛି ।''

''କିନ୍ତୁ ମହାରାଜ ! ଆଜି ସେ ସୁଯୋଗ ମିଳିବ କି ନାହିଁ କେଜାଣି ?''

''କାହିଁକି ମିଳିବ ନାହିଁ ବୋଲି ଭାବୁଛ ସତ୍ୟସେନ ?''

''କାରଣ ମୁଁ ଦେଖୁଛି, ଅର୍ଜୁନ ଯେତେ ଆପଣଙ୍କ ପାଖକୁ ଆସିବାକୁ ଚାହୁଁଛନ୍ତି, କୃଷ୍ଣ ତାଙ୍କୁ କ'ଣ କହି ସେତେ ଦୂରକୁ ଅନ୍ୟ କାର୍ଯ୍ୟରେ ନେଇଯାଉଛନ୍ତି । କ'ଣ ଏହାର ରହସ୍ୟ କେଜାଣି ?''

''ମୋର ମଧ ସେଇ ସନ୍ଦେହ । କିନ୍ତୁ ରହସ୍ୟ କ'ଣ ବୁଝିପାରୁ ନାହିଁ ।'' ପରେ ପରେ ପୁଣି କହିଲି, ''ଅର୍ଜୁନ ଯିବେ ବା କୁଆଡ଼େ ? ଆଜି ନ ଆସିଲେ କାଲି ତ ଆସିବେ ମୋ' ଆଗକୁ । ନ ହେଲେ ତହିଁ ଆରଦିନ ।''

ମନେ ମନେ ଭାବୁଥାଏ, କୃଷ୍ଣଙ୍କର ଏ ପୁଣି କି ରହସ୍ୟମୟ ନାଟକର ଅଭିନୟ ? ଛଳନାର ଜାଲ ବିଛାଇ ତ ମୋ'ଠାରୁ ଇନ୍ଦ୍ରପ୍ରଦତ୍ତ ଶକ୍ତିଟିକୁ ଦୂରେଇନେଲେ । ମତେ କରିଦେଲେ ଶକ୍ତିହୀନ । ଆଜି ପୁଣି କାହିଁକି ମୋର ଅର୍ଜୁନଙ୍କ ସହିତ ଅସ୍ତ୍ରସ୍ପର୍ଦ୍ଧାରେ ହେଉଛନ୍ତି ବାଧକ ? କ'ଣ ମତେ ଆହୁରି କିଛି ଅଧିକ ଶକ୍ତିହୀନ କରିବା ତାଙ୍କ ଲକ୍ଷ୍ୟ ?

ଏଇ ଚିନ୍ତା ମତେ ବିବ୍ରତ କରିବାର ଚେଷ୍ଟା କରୁଥିଲେ ବି ତାହାକୁ କୌଣସିମତେ ଏଡ଼ାଇଦେଇ ଲାଗିଗଲି ଯୁଦ୍ଧରେ । ମୋ' ସ୍ଫୂର୍ତ୍ତିଭରା ହସ୍ତରୁ ଗୋଟିକ ପରେ ଗୋଟିଏ ବାଣ ଛୁଟିବାକୁ ଲାଗିଲା । ପାଣ୍ଡବବାହିନୀର ଯୋଦ୍ଧାମାନଙ୍କ ଶବରେ ପୋତି ହୋଇଗଲା ଯୁଦ୍ଧଭୂମି ।

ମଧ୍ୟାହ୍ନ ପରେ ଦୁଇଘଡ଼ି ସମୟ ଅତିକ୍ରାନ୍ତ । ଏତିକିବେଳେ ଏକ ଦାରୁଣ ସଂବାଦ ପାଇଲି । ଦୁଃଶାସନଙ୍କର ଭୀମସେନଙ୍କ ହାତରେ ବୀରଗତି ହୋଇଗଲା । ସେତେବେଳେ ଟିକିନିଖି ଖବର ଶୁଣିବା ପାଇଁ ନ ଥିଲା ଧୈର୍ଯ୍ୟ । ଅଥବା ସମୟ । ସଂଧ୍ୟାରେ ଶିବିରକୁ ଫେରିବା ପରେ ସବିଶେଷ ଖବର ଜାଣିପାରିଲି । ଭାରି ଦୁଃଖ ଲାଗିଲା । କାରଣ ମିତ୍ର ଦୁର୍ଯ୍ୟୋଧନଙ୍କ ଦକ୍ଷିଣବାହୁ ଏବେ ଛିନ୍ନ । ତାଙ୍କ ପାଇଁ ଏଇ ଘଟଣା ଏକ ଦାରୁଣ ଆଘାତ । ଯାହା ଶୁଣିଲି ତାହା ଏବେ କହୁଛି ।

ଭୀମସେନ ଓ ଦୁଃଶାସନ ଅପୂର୍ବ ବଳବିକ୍ରମ ଦେଖାଇ ଯୁଦ୍ଧ କରୁଥାନ୍ତି ପରସ୍ପର ସହିତ । ବହୁ ସମୟ ଧରି ଦୁଇ ବୀରଙ୍କ ମଧ୍ୟରେ ଲାଗେ ଗଦାଯୁଦ୍ଧ । ଉଭୟ କ୍ଷତବିକ୍ଷତ । କେହି କାହାଙ୍କ ଉପରେ ପାରନ୍ତି ନାହିଁ ବିଜୟ ହାସଲ କରି । ତାହା ପରେ ମାତନ୍ତି ମୁଷ୍ଟି ଯୁଦ୍ଧରେ । ଉଭୟଙ୍କ ମୁଷ୍ଟିର ଆଘାତ ଲାଗୁଥାଏ ବଜ୍ର ପଡ଼ିଲା ଭଳି । କ୍ରମେ କ୍ରମେ

ଭୀମସେନ ହୋଇଉଠନ୍ତି ପ୍ରବଳତର । ଦୁଃଶାସନ ଧୀରେ ଧୀରେ ଶିଥିଳ ଓ ଅବସନ୍ନ । ଶେଷରେ ଭୀମସେନ ଉତ୍ତାନ ଭାବରେ ଶୁଆଇ ଦିଅନ୍ତି ତାଙ୍କୁ ଓ ଛାତିରେ ବସି ସାରା ଅଙ୍ଗରେ ଗୋଟିକ ପରେ ଗୋଟିଏ କରି ଦିଅନ୍ତି ମୁଷ୍ଟ୍ୟାଘାତ । ଆଉ ଚାପ ବି ଦିଅନ୍ତି ଗ୍ରୀବାଦେଶରେ । ଆର୍ତ୍ତଚିତ୍କାର କରି ଉଠନ୍ତି ଦୁଃଶାସନ । କ୍ରୋଧରେ ଗର୍ଜନ କରି କହନ୍ତି ଭୀମସେନ, ''ଆମେ ଦୁଷ୍ଟ ! ମନେପକା ମୁଁ କ'ଣ କହିଥିଲି କୁରୁସଭା ତଳେ ? ତୁ ଯେଉଁ ହାତରେ ପାଞ୍ଚାଳୀଙ୍କ ବସ୍ତ୍ରହରଣ କରିବାର ଉଦ୍ୟମ କରିଛୁ, ତାହାକୁ ଉପାଡ଼ି ସେଇ ରକ୍ତ ଆକଣ୍ଠ ପିଇବି ଏବଂ ସେଇଥିରେ ବାନ୍ଧିବି ତାଙ୍କ ମୁକୁଳା ବେଣୀକୁ । ଆଜିପର୍ଯ୍ୟନ୍ତ ତାଙ୍କ କେଶ ଅଛି ମୁକୁଳା । ଆଜି ତାହାକୁ ତୋ' ରକ୍ତରେ ବାନ୍ଧିବାର ସୁଯୋଗ ଆସିଛି । ଏହାକୁ କଦାପି ଛାଡ଼ିବି ନାହିଁ । ଏବେ ନେ ତୋ' ପାପର ଶାସ୍ତି ।'' ଏହା କହି ବଳପୂର୍ବକ ଉପାଡ଼ି ଦିଅନ୍ତି ତା'ର ଦୁଇବାହୁ । ଢକ୍ ଢକ୍ କରି ପିଇଯାଆନ୍ତି ତହିଁରୁ ଝରୁଥିବା ରକ୍ତ । ଆଉ ଅଞ୍ଜଳିଭରା ରକ୍ତ ନେଇ ଧାଇଁଯାଆନ୍ତି ପାଣ୍ଡବଶିବିରକୁ । ପାଞ୍ଚାଳୀଙ୍କ ମୁକୁଳା ବେଣୀକୁ ବାନ୍ଧିଦିଅନ୍ତି ସେଇ ରକ୍ତରେ । ତାଙ୍କ ମନର ବହୁପୋଷିତ ଅଭିଳାଷ ମେଣ୍ଟେ । ପ୍ରତିଶୋଧରେ ଅଗ୍ନି ହୁଏ ପ୍ରଶମିତ ।

ଏଇ କାହାଣୀ ଶୁଣିଲା ବେଳେ ଦେହ ମୋର ଉଠୁଥାଏ ଶିହରି । ଇସ୍ ! କି ବୀଭତ୍ସ ଏ ଦୃଶ୍ୟ ! ପୁଣି କି ନିଷ୍ଠୁର ଏ ପ୍ରତିଶୋଧବୋଧ !

ଏବେ ପୁଣି ଫେରିଯାଉଛି ଯୁଦ୍ଧଭୂମିକୁ । କାରଣ ଆଜିର ଯୁଦ୍ଧ ଏ ପର୍ଯ୍ୟନ୍ତ ବି ସରି ନାହିଁ ।

ସଂଧ୍ୟା ଆସିବା ଉପରେ । ସୂର୍ଯ୍ୟଦେବଙ୍କ ତିର୍ଯ୍ୟକ୍ ପୀତଲୋହିତ ସୌମ୍ୟ କିରଣରେ କୁରୁକ୍ଷେତ୍ରର ଯୁଦ୍ଧଭୂମି ପରିସ୍ନାତ । ସାରା ଦିନ ଯୁଦ୍ଧ କରିବା ପରେ ଯୋଦ୍ଧାମାନେ କ୍ଲାନ୍ତ ଶ୍ରାନ୍ତ । ମୁଁ ମଧ କ୍ଲାନ୍ତ ଶ୍ରାନ୍ତ ଓ ଅବସନ୍ନ । କେତୋଟି ମୁହୂର୍ତ୍ତ ପରେ ସୂର୍ଯ୍ୟ ବୁଡ଼ିଯିବେ ଏବଂ ଯୁଦ୍ଧବିରତି ପରେ ପ୍ରସ୍ଥାନ କରିବି ଶିବିରକୁ । ଦେହ ଓ ମନରେ ଶିଥିଳତା । ଯୁଦ୍ଧଜନିତ କ୍ଲାନ୍ତି ପରେ ବିଶ୍ରାମ ନେବାର ଅନୁଚିନ୍ତାରେ ଚିତ୍ତ ଆଚ୍ଛନ୍ନ । ଏତିକିବେଳେ ଦେଖିଲି କୃଷ୍ଣ ଅର୍ଜୁନଙ୍କ ରଥକୁ ଆଣି ହଠାତ୍ ଅବସ୍ଥାପିତ କରିଦେଲେ ମୋ' ଆଗରେ । ଅର୍ଜୁନଙ୍କୁ ଦେଖିବା ପରେ କି ଏକ ନବୀନ ସ୍ଫୂର୍ତ୍ତି ଅନୁଭବ କଲି ସାରା ଅଙ୍ଗରେ । ସମସ୍ତ ଅବସାଦ ଚାଲିଗଲା ହଠାତ୍ । ଯୁଦ୍ଧ ପାଇଁ ଆମ ଦୁହିଁଙ୍କ ଆହ୍ୱାନ-ପ୍ରତ୍ୟାହ୍ୱାନରେ ମୁଖରିତ ହୋଇଉଠିଲା କୁରୁକ୍ଷେତ୍ରର ଯୁଦ୍ଧଭୂମି । ଉଭୟଙ୍କ ପକ୍ଷରୁ ଛୁଟିବାକୁ ଲାଗିଲା ଶତ ଶତ ବାଣ । ବାଣଗୁଡ଼ିକର ଘର୍ଷଣଜନିତ ଅଗ୍ନିସ୍ଫୁଲିଙ୍ଗରେ ଆକାଶ ଆଚ୍ଛନ୍ନ । ଆକାଶବୁକୁରେ ଆଗ୍ନେୟଗିରିର ଝଲକ ଯେମିତି । ଉଭୟଙ୍କ କ୍ଷତସ୍ଥାନରୁ ଉଷ୍ଣ ରକ୍ତର ତରଳ ପ୍ରବାହ ।

ଏତିକିବେଳେ ତୀବ୍ରବେଗରେ ଅର୍ଜୁନଙ୍କ ଗାଣ୍ଡୀବ ଧନୁରୁ ଏକ ତୀକ୍ଷ୍ଣ ନାରାଚ ଆସି ବିନ୍ଧିଦେଲା ମୋ' ସାରଥି ସତ୍ୟସେନଙ୍କ ବକ୍ଷୋଦେଶକୁ । ସଙ୍ଗେ ସଙ୍ଗେ ଟଳିପଡ଼ିଲେ ସେ

ରଥନୀଡ଼ରୁ । ଚିରଦିନ ପାଇଁ ଆଖି ବୁଜିଲେ । ସାରଥିହୀନ ଅବସ୍ଥାରେ ରଥ ମୋର ଧାଇଁବାକୁ ଲାଗିଲା ଇତସ୍ତତଃ । କୌଣସିମତେ ଗୋଟିଏ ହାତରେ ଅଶ୍ୱମାନଙ୍କ ବାଗ୍‌ଡୋରକୁ ସମ୍ଭାଳି ଅପରହସ୍ତରେ ଛାଡ଼ିଲି ଏକ ତୀକ୍ଷ୍ଣ ଶୂଳ ଅର୍ଜୁନଙ୍କ ଛାତିକୁ ଲକ୍ଷ୍ୟକରି । ତାହାକୁ କିନ୍ତୁ ସେ ବାଣ ମାରି କାଟିଦେଲେ ତିନି ଖଣ୍ଡ କରି ।

ଏହା ମଧ୍ୟରେ ସୂର୍ଯ୍ୟ ହେଲେ ଅସ୍ତମିତ । କୃଷ୍ଣଙ୍କ ପରାମର୍ଶରେ ଅର୍ଜୁନ ତାଙ୍କ ଆଡୁ ବନ୍ଦ କଲେ ଯୁଦ୍ଧ । ମୁଁ ବି ଫେରିଆସିଲି ଶିବିରକୁ ଆମ ସେନାବଳ ସହିତ ।

ଆମ ଦୁହିଁଙ୍କ ମଧ୍ୟରେ ହୋଇଥିବା ସେ ଦିନର ଯୁଦ୍ଧ ରହିଲା ଅମୀମାଂସିତ ।

## ସତାଅଶୀ

ମୋ' ପ୍ରିୟ ସାରଥି ସତ୍ୟସେନଙ୍କ ମୃତ୍ୟୁରେ ଖୁବ୍ ଭାଙ୍ଗିପଡ଼ିଥିଲି । ସେ ତ କେବଳ ମୋର ସାରଥି ନ ଥିଲେ । ଥିଲେ ଜଣେ ପ୍ରବୀଣ ଯୋଦ୍ଧା । ଆକ୍ରମଣ ଓ ଆତ୍ମରକ୍ଷାର ସମସ୍ତ କଳାକୌଶଳ ଜଣାଥିଲା ତାଙ୍କୁ । ତେଣୁ ସେ ବି ଥିଲେ ମୋର ଜଣେ ଶ୍ରେଷ୍ଠ ପରାମର୍ଶଦାତା । ତାଙ୍କୁ ହରାଇ ଖୁବ୍ ହତୋତ୍ସାହ ହୋଇଯାଇଥିଲି । ରାତି ପାହିଲେ ପୁଣି ଯୁଦ୍ଧ । ମୁଁ କୁରୁବାହିନୀର ସେନାପତି । ଜଣେ ସୁଯୋଗ୍ୟ ସାରଥି ନ ଥାଇ କିପରି ବା ଯାଇପାରିବି ଯୁଦ୍ଧକୁ ? ବିଶେଷକରି ମୋର ଅର୍ଜୁନଙ୍କ ସହିତ ଆଜି ଯେଉଁ ଅମୀମାଂସିତ ଯୁଦ୍ଧ ହୋଇଛି, କାଲି ଯେତେବେଳେ ତାହାର ପୁନରାରମ୍ଭ ହେବ, ସେତେବେଳେ ଜଣେ ଅର୍ବାଚୀନ ସାରଥିଙ୍କୁ ନେଇ କିପରି ସମ୍ମୁଖୀନ ହେବି ତାଙ୍କର ? ତେଣୁ କୃଷ୍ଣଙ୍କ ଭଳି ଜଣେ ସୁଯୋଗ୍ୟ ସାରଥି ମୋର ନିତାନ୍ତ ଆବଶ୍ୟକ । ମନେ ମନେ ଖୋଜିବାକୁ ଲାଗିଲି ତାଙ୍କୁ । ମଦ୍ରରାଜ ଶଲ୍ୟଙ୍କ ଛଡ଼ା ଆଉ ଦ୍ୱିତୀୟ କାହାଙ୍କୁ ପାଇଲି ନାହିଁ । ଅବଶ୍ୟ ସେ ଯୁଧିଷ୍ଠିରଙ୍କୁ ପୂର୍ବରୁ ଦେଇଥିବା ପ୍ରତିଶ୍ରୁତି କଥା ଶୁଣିଥିଲି । ସେ କଥା ଦେଇଥିଲେ ଯେ ଯୁଦ୍ଧ ବେଳେ ମତେ ନାନା ଢଙ୍ଗରେ କରିବେ ନିରୁତ୍ସାହିତ । ଭାବିଲି କରନ୍ତୁ । ସେଥିରେ କ୍ଷତି କ'ଣ ? ସାରା ଜୀବନ ଧରି ନିନ୍ଦା-ଅପମାନ ସହି ସହି ପଥର ଭଳି ଟାଣ ହୋଇଯାଇଛି ମୋ' ହୃଦୟ ଓ ମନ । ଆଉ କେତୋଟି ଅପମାନସୂଚକ କଥା ତାଙ୍କର କାନରେ ବାଜିଲେ କିଛି ହିଁ କ୍ଷତି ହେବ ନାହିଁ ମୋର । ସେ ଯାହା କହିବେ କହନ୍ତୁ ପଛକେ, ସାରଥ୍ୟ କର୍ମରେ ତ ଅବହେଳା ଦେଖାଇବେ ନାହିଁ । ନିଜ ସାରଥି-ଧର୍ମରୁ ହେବେ ନାହିଁ ସ୍ଖଳିତ । କିନ୍ତୁ ସେ ରାଜି ହେଲେ ହେଲା । ତଥାପି ଚେଷ୍ଟା କରିବା ପାଇଁ ମନେ ମନେ ସ୍ଥିର କଲି । ଏଇ ଚିନ୍ତା ନେଇ ପ୍ରବେଶ କଲି ଦୁର୍ଯ୍ୟୋଧନଙ୍କ ଶିବିରରେ ।

ସେ ଦୁଃଶାସନଙ୍କ ପାଇଁ ଶୋକ କରୁଥିଲେ । ସମବେଦନା ପ୍ରକାଶ କଲି ତାଙ୍କ ପ୍ରତି । ସେ ମଧ୍ୟ ସତ୍ୟସେନଙ୍କ ମୃତ୍ୟୁ ଲାଗି ଜଣାଇଲେ ସମବେଦନା ଏବଂ ପଚାରିଲେ, ''ମିତ୍ର କର୍ଣ୍ଣ ! ଏବେ ଆଉ କାହାଙ୍କୁ ସାରଥି ରୂପେ ଚୟନ କରିଛ ନା କରିବ ?''

''ସେଥିପାଇଁ ତ ତୁମ ପାଖକୁ ଆସିଛି ମିତ୍ର । ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାକୁ ହେଲେ ମୋ' ପାଇଁ ବାସୁଦେବ କୃଷ୍ଣଙ୍କ ଭଳି ଜଣେ ସମର୍ଥ ସାରଥି ଆବଶ୍ୟକ ।''

''ନିଶ୍ଚୟ ! ଏଭଳି ସାରଥି କିଏ ଅଛନ୍ତି ଆମ ପକ୍ଷରେ ?''

''ମଦ୍ରରାଜ ଶଲ୍ୟ ।''

ଚମକିପଡ଼ିଲେ ସେ । କହିଲେ, ''ମହାମାନୀ ମାତୁଳ ଶଲ୍ୟ । ତାଙ୍କ ଭଳି ଜଣେ ପରାକ୍ରମୀ ବୀର ରାଜା କ'ଣ ରାଜି ହେବେ ଏ ପ୍ରସ୍ତାବରେ ?''

''ତା'ହେଲେ ତୁମେ ଆଉ ଅନ୍ୟ କାହାଙ୍କୁ ସେନାପତିରୂପେ ଚୟନ କର ମିତ୍ର । ମୁଁ କାଲି ଯୁଦ୍ଧର ସେନାପତି ହୋଇପାରିବି ନାହିଁ । ଅବଶ୍ୟ ଲଢ଼ିବି ଜଣେ ସାଧାରଣ ବୀର ଭାବରେ ।'' ମୋର ସ୍ପଷ୍ଟ ଉତ୍ତର ।

ଦୁର୍ଯ୍ୟୋଧନଙ୍କ ଛାତିତଳେ ଭୟର କମ୍ପନ । ମନରେ ଆଶଙ୍କା । ମୁଁ ସେନାପତି ନ ହେଲେ ହୁଏତ ଗଭୀର ଭାବରେ କ୍ଷତିଗ୍ରସ୍ତ ହେବେ ସେ । ମୁଁ କୁଆଡ଼େ ତାଙ୍କର ଶେଷ ଭରସା । ଏଇ ଧାରଣା ତାଙ୍କର । ତେଣୁ ମତେ ହାତଛଡ଼ା କରିବାକୁ ଚାହାନ୍ତି ନାହିଁ । ଝାଉଁଳା ମୁହଁକୁ ଆହୁରି ଝାଉଁଳାଇ ଦେଇଥିବା ଫିକା ଓଠକୁ ଥରାଇ କହିଲେ, ''ଆଚ୍ଛା ମିତ୍ର କର୍ଣ୍ଣ, ମୁଁ ଏବେ ମଦ୍ରରାଜଙ୍କୁ ଡକାଇ ବୁଝେଁ । ତୁମେ ମଧ୍ୟ ଥାଅ ଏଇଠି ।''

''ଆଚ୍ଛା, ହେଉ ।'' ମୋର ସଂକ୍ଷିପ୍ତ ଉତ୍ତର ।

ମଦ୍ରରାଜ ଶଲ୍ୟ ଖବର ପାଇ ଆସିଲେ । ଦୁର୍ଯ୍ୟୋଧନ ତାଙ୍କୁ ଅଭିବାଦନ କରି ସସମ୍ମାନ ବସାଇଲେ ଆସନରେ । ମୁଁ ମଧ୍ୟ ପ୍ରଣାମ କଲି ।

ପ୍ରସ୍ତାବଟି ପଡ଼ିବା ମାତ୍ରେ ସେ ରାଗରେ ପାଚିଉଠିଲେ । ସଙ୍ଗେ ସଙ୍ଗେ ମନା କରିଦେଲେ ସୂତପୁତ୍ରର ସାରଥି ହେବାଲାଗି । ଦୁର୍ଯ୍ୟୋଧନ ତାଙ୍କୁ ଆହୁରି ବହୁତ ବୁଝାଇଲେ । ଅଳି କରିବା ଢଙ୍ଗରେ କହିଲେ । ପ୍ରାର୍ଥନା ବି କଲେ । ମାତୁଳ ହିସାବରେ ତାଙ୍କୁ ଏଇ ବରଟି ଦେଇ ଅନୁଗୃହୀତ କରିବା ପାଇଁ କଲେ ବିନୀତ ଅନୁରୋଧ । ଶେଷରେ ଯାଇ ରାଜି ହେଲେ ସେ ।

ଖୁବ୍ ଉଲ୍ଲସିତ ହୋଇଉଠିଲି ଆନନ୍ଦରେ । ଭାବିଲି, ଏଥରକ ଅର୍ଜୁନଙ୍କ ଉପରେ ବିଜୟ ମୋ' ହାତମୁଠାରେ । ମଦ୍ରରାଜ ଶଲ୍ୟ ବାସୁଦେବ କୃଷ୍ଣଙ୍କ ଭଳି ଜଣେ ସମର୍ଥ ସାରଥି । କେତେକ କଳା-କୌଶଳରେ କୃଷ୍ଣଙ୍କୁ ବି ବଳିଯିବେ । ତେଣୁ ଖୁସି ହୋଇ କହି ପକାଇଲି, ''ଆପଣ ମୋ' ସାରଥି ଥିଲେ ମୁଁ ତିନି ଭୁବନକୁ ଜୟ କରିଯିବି । ପାଣ୍ଡବ ଅର୍ଜୁନ କିବା ଛାର !''

''ହେ ସୂତପୁତ୍ର କର୍ଣ୍ଣ ! ଅର୍ଜୁନ ତିନି ଭୁବନକୁ ବଳିକରି । ତୁମେ ତାଙ୍କୁ ଜାଣି ନାହଁ । ତେଣୁ ଏଭଳି କଥା କହୁଛ ।''

''ବିଶ୍ୱାସ କରନ୍ତୁ ମତେ ମଦ୍ରରାଜ ! କାଲିର ଯୁଦ୍ଧରେ ନିଶ୍ଚୟ ଅର୍ଜୁନ ମୋ' ହାତରେ ପାଇବେ ବୀରଗତି ।'' ମୋର ଆତ୍ମବିଶ୍ୱାସଭରା ବାଣୀ । ଦାମ୍ଭିକତା ବି ଥିଲା ତହିଁରେ ।

''ହେ ସୂତପୁତ୍ର ! ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ଅଶ୍ୱଶାଳାର ପରିଚର୍ଯ୍ୟା ସହିତ ସମାନ ନୁହେଁ । ଏଭଳି ବୃଥା ଆସ୍ଫାଳନ ଅନେକବାର ଦେଖାଇଛ ଅତୀତରେ । ଆଉ ଦେଖାଅ ନାହିଁ । ବରଂ ଅର୍ଜୁନଙ୍କ ହାତରେ ବୀରଗତି ପାଇବା ପାଇଁ ପ୍ରସ୍ତୁତ ହୋଇ ରହ ।'' ମୋ' ପ୍ରତି ତାଙ୍କର ଆକ୍ଷେପଭରା କଟୁ ଭାଷା ।

କ୍ରୋଧ ତାଙ୍କର ତଥାପି ଅଶାନ୍ତ । ଆଉ କ'ଣ କହିବାକୁ ଯାଉଥିଲେ । ପରିସ୍ଥିତିର ଉଷ୍ମତାକୁ ବୁଝିପାରି ଦୁର୍ଯ୍ୟୋଧନ ତାଙ୍କୁ ଶାନ୍ତ କରାଇଲେ । ତାଙ୍କ ସାରଥ୍ୟ ଉପରେ ଥିଲି ନିର୍ଭରଶୀଳ । ତେଣୁ ତାଙ୍କୁ ବିରକ୍ତ କରିବାପାଇଁ ନ ଚାହିଁ ରହିଲି ନୀରବ । ସହିଗଲି ଏଇ କଟୁ ଭାଷାଜର୍ଜରିତ ଅପମାନକୁ ।

ଶିବିରକୁ ଫେରି ଲୋଟିଗଲି ଶଯ୍ୟାଧାରରେ । ମୋର ବିଶ୍ରାମ ଆବଶ୍ୟକ । କାଲିର ଯୁଦ୍ଧ ହେବ ଅତି ଭୟଙ୍କର । କିଏ କହିବ, ଏହା ମୋର ଅଥବା ଅର୍ଜୁନଙ୍କର ଅନ୍ତିମ ଯୁଦ୍ଧ ହେବ କି ନାହିଁ ? କିନ୍ତୁ ସହଜରେ ନିଦ ଆସୁ ନ ଥାଏ । ବିଶ୍ରାମ ନେବାର ମୁହୂର୍ତ୍ତଗୁଡ଼ିକ ନାନା ପ୍ରକାର ଚିନ୍ତା-ଅନୁଚିନ୍ତାର ଦୋଳିରେ ଦୋଳାୟମାନ । ମଦ୍ରରାଜ ମତେ ସୂତପୁତ୍ର କହି ଅବଜ୍ଞାଭବ ଦେଖାଇଲେ । କ୍ଷତି କ'ଣ ? ତାଙ୍କର ବା ଦୋଷ କେଉଁଠି । ସେ ତ ସତ୍ୟ କଥାଟି ହିଁ କହିଛନ୍ତି । ମୁଁ କ'ଣ ଜଗତ ନିକଟରେ ସୂତପୁତ୍ର ରୂପେ ପରିଚିତ ନୁହେଁ କି ? ତାହା ଛଡ଼ା ସେ ଅତୀତରେ ଯୁଧିଷ୍ଠିରଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ଏବେ ପାଳୁଛନ୍ତି ମାତ୍ର । ପାଣ୍ଡବମାନଙ୍କ ସହିତ ଯୁଦ୍ଧ ଅବସରରେ ସେ ମୋ' ଉତ୍ସାହକୁ କ୍ଷୁଣ୍ଣ କଲା ଭଳି କଥାମାନ କହିବେ ବୋଲି ତାଙ୍କ ପାଖରେ ଅଛନ୍ତି ପ୍ରତିଶ୍ରୁତିବଦ୍ଧ । ତାହାକୁ ଏବେ ପାଳୁଛନ୍ତି । ପ୍ରକୃତ ଯୁଦ୍ଧବେଳେ ସେ ତ ଏହାଠାରୁ ଆହୁରି ଅଧିକ କିଛି କହିବେ । କିନ୍ତୁ ସେ କଥାକୁ ମନକୁ ନେବି କାହିଁକି ? ତାଙ୍କ ସୂତପୁତ୍ର ବୋଲି ଡାକିବାଟା ଯେତେ ବ୍ୟଥା ଦେଉ ନ ଥିଲା ମନରେ ତାହାଠାରୁ ଅଧିକ ବ୍ୟଥା ଦେଉଥିଲା ମୁଁ ଯେ ପ୍ରଥମ ପାଣ୍ଡବ ତାହା ନିଜେ ପ୍ରକାଶ କରିବାର ଅସମାର୍ଥ୍ୟ ! ହାୟ ରେ ମୋ' ଜୀବନ ! ମୁଁ କୁଆଡ଼େ ଦେବ-ପୁତ୍ର ଓ କ୍ଷତ୍ରିୟପୁତ୍ର । କୁଆଡ଼େ ମୁଁ କୁରୁବଂଶର ଗୌରବ ପ୍ରଥମ ପାଣ୍ଡବ ! ଅଥଚ ସୂତପୁତ୍ରର ନିଗଡ଼-ବନ୍ଧନ ମତେ ବାନ୍ଧିରଖିଛି ଚିରଦିନ ଲାଗି !

ଏଭଳି ଭାଗ୍ୟହୀନ ଜୀବନ ଯେମିତି ଆଉ କାହାପାଇଁ ନ ଆସୁ । ଗୋଟିଏ କର୍ଣ୍ଣର ଆତ୍ମାହୁତିରେ ଭବିଷ୍ୟତର କର୍ଣ୍ଣମାନଙ୍କ ଜୀବନ ଯେମିତି ଉଜ୍ଜ୍ୱଳ ହେଉ ! ଗୋଟିଏ ଦଳିତର ଅଗ୍ନିବର୍ଷୀ ଦୀର୍ଘନିଶ୍ୱାସ ଯେମିତି ଭବିଷ୍ୟତର ଦଳିତମାନଙ୍କ ଲୁହକୁ ଶୁଖାଇଦେଉ ! ଗୋଟିଏ ପଚମାନ ଶରୀରର ସାର ପାଇ ସେମାନଙ୍କ ଜୀବନରେ ଫୁଲ ଯେମିତି ବିକଶି ଉଠୁ !!

ଏଇ ଅନୁଚିନ୍ତାରେ ଅଧୀର ଥିବା ଅବସ୍ଥାରେ ସେଦିନ ନିଦ୍ରା ଗଲି । ପ୍ରାଣଭରା ନିଦ୍ରା ! ପର ଦିନ ନିଦ୍ରା ଯିବାର ସୌଭାଗ୍ୟ ଆସିବ କି ନାହିଁ କିଏ ଜାଣେ ?

## ଅଠାଅଶୀ

ଆଜି ମହାସମରର ସପ୍ତଦଶ ଦିନ । ସବୁ ଦିନ ପରି ଗାତ୍ରୋତ୍ଥାନ ପୂର୍ବରୁ ମହାମୃତ୍ୟୁଞ୍ଜୟ ମନ୍ତ୍ରଟିକୁ ଜପିଲି :

ଓଁ ତ୍ର୍ୟମ୍ବକଂ ଯଜାମହେ
ସୁଗନ୍ଧିପୁଷ୍ଟିବର୍ଦ୍ଧନମ୍ ।
ଉର୍ବାରୁକମିବ ବନ୍ଧନାତ୍
ମୃତ୍ୟୋର୍ମୁକ୍ଷିୟ ମାମୃତାତ୍ ।''

ଶଯ୍ୟାତ୍ୟାଗ ପରେ ହଠାତ୍ କାହିଁକି ମନ ହେଲା ପ୍ରିୟ ପୁତ୍ର ବୃଷସେନଙ୍କୁ ଦେଖିବାପାଇଁ । ସେ ଏଇ କୁରୁକ୍ଷେତ୍ରରେ ତାଙ୍କ ଶିବିରରେ ଥାଆନ୍ତି ଅନ୍ୟତ୍ର । ଆଜିର ଯୁଦ୍ଧକୁ ମଧ୍ୟ ଯିବେ । ଖବର ଦେଲି ସୂର୍ଯ୍ୟୋଦୟ ପୂର୍ବରୁ ମତେ ଆସି ଦେଖା କରିବାପାଇଁ । ସେ ଆସିଲେ କାଳବିଳମ୍ବ ନ କରି । ତାଙ୍କୁ ଆପାଦମସ୍ତକ ନିରୀକ୍ଷଣ କଲି ପରିତୃପ୍ତ ନୟନରେ । ପ୍ରଶସ୍ତ ବକ୍ଷ । କାନ୍ତ ଗୌର ତନୁ । ଆଜାନୁଲମ୍ବିତ ବାହୁ । ଏଇ ମୋ' ବୀର ପୁତ୍ର ବୃଷସେନ । ତାଙ୍କୁ ଆଲିଙ୍ଗନ କରି ତାଙ୍କ ଶିର ଆଘ୍ରାଣ କଲି ଏବଂ କି ଏକ ଉଦଗ୍ର ପିପାସା ନେଇ ଅଜସ୍ର ଚୁମ୍ବନ ଢାଳିଦେଲି ପ୍ରଶସ୍ତ ଭାଲପଟରେ । ଲାଜେଇଗଲେ ସେ । କେବଳ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ ମତେ । ତାଙ୍କୁ ଯୁଦ୍ଧ ସଂପର୍କରେ ଆବଶ୍ୟକ ଉପଦେଶ ଦେଇ ବିଦାୟ ଦେଲି ।

ଯୁଦ୍ଧବାଦ୍ୟମାନେ ବାଜିଉଠିଲେ ଗମ୍ଭୀର ନାଦରେ । ଯୁଦ୍ଧଯାତ୍ରାରେ ବାହାରିଲି । ବାହାରିବାର ଠିକ୍ ପୂର୍ବରୁ ଗୁପ୍ତଚର ପାଣ୍ଡବପକ୍ଷରୁ ଏକ ବିଶେଷ ସଂବାଦ ଆଣି କହିଲା, ''ମହାରାଜ ! ଅର୍ଜୁନ ଆଜି କୃଷ୍ଣଙ୍କୁ ସାକ୍ଷୀ ରଖି ଯୁଧିଷ୍ଠିରଙ୍କ ଆଗରେ ଶପଥ ନେଇଛନ୍ତି ।''

''କି ଶପଥ ?''

''ବଡ଼ ଭୀଷଣ ମହାରାଜ ।''

''କହ ଶପଥଟା କ'ଣ ?

''ସେ ଆପଣଙ୍କୁ ବଧ ନ କଲେ ଆଜି ଫେରିବେ ନାହିଁ ଯୁଦ୍ଧଭୂମିରୁ ।''

''ଓ, ଏଇ କଥା ? ମୁଁ ବି ତ ଶପଥ ନେଇଛି ମନେ ମନେ ତାଙ୍କୁ ବଧ ନ କରି ଫେରିବି ନାହିଁ ଯୁଦ୍ଧଭୂମିରୁ ।'' କଥାଟାକୁ ଉଡ଼ାଇଦେଲି ହସରେ । ବୀର ନିକଟରେ

ମୃତ୍ୟୁର ଭୟ ତୁଚ୍ଛ । ବୀର ପାଇଁ ତ ତାହା ସାଧାରଣ ମୃତ୍ୟୁ ନୁହେଁ । ତାହା ବୀରଗତି । ସେଇଥିରେ ତା'ର ମୁକ୍ତି । ବୀରଗତି ଅଥବା ବିଜୟ, ଉଭୟର ଅଧିକାରୀ ହେଲେ ବି ତା'ପାଇଁ ମିଳେ ଯଶ । ମୋ'ପାଇଁ ଏଇ ଦୁଇଟିରୁ ଆଜି ଯାହା ମିଳିବ, ସେଥିରେ ହେବି ଯଶସ୍ୱୀ । ତେଣୁ କ୍ଷୋଭ କରିବି କାହିଁକି ମନରେ ? ଆମ ଦୁହିଁଙ୍କ ମଧ୍ୟରେ ଆଜି ଯେଉଁ ଯୁଦ୍ଧ ହେବ, ତାହାର ଶେଷ ପରିଣତି ତ ଆଖିକୁ ଦିଶୁଛି ଜଳ ଜଳ ହୋଇ । ଦୁହିଁଙ୍କ ମଧ୍ୟରୁ ଜଣେ କାହାଙ୍କର ନିଶ୍ଚୟ ହେବ ବୀରଗତି । ତା'ହେଲେ ପଞ୍ଚପାଣ୍ଡବଙ୍କ ସଂଖ୍ୟା ରହିବ ଅକ୍ଷୁଣ୍ଣ । ମାତା କୁନ୍ତୀଦେବୀଙ୍କର ପଞ୍ଚପୁତ୍ରଙ୍କ ଜନନୀ ହେବାର ଯଶ ସାମାନ୍ୟ ଟିକିଏ ବି ଊଣା ହେବ ନାହିଁ । ମୋର ତାଙ୍କୁ ଦେଇଥିବା ପ୍ରତିଶ୍ରୁତି ହେବ ଅକ୍ଷରେ ଅକ୍ଷରେ ପାଳିତ । ତେଣୁ ଦୁଃଖ କରିବି କାହିଁକି ? ବରଂ ସୁଖ କରିବି ମାତାଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳିତ ହେଲା ବୋଲି । ମନକୁ ଏହିପରି ସ୍ଥିରରଖି ରଥ ଚାଳିବାପାଇଁ ଦେଲି ଆଦେଶ । ପରେ ପରେ ବୁଡ଼ିଗଲି ଭୀଷଣ ସଂଗ୍ରାମରେ । କିନ୍ତୁ ଏପର୍ଯ୍ୟନ୍ତ ଭେଟି ନ ଥିଲି ଅର୍ଜୁନଙ୍କୁ । ଯୁଧିଷ୍ଠିର ଆଦି ଅନ୍ୟ ପାଣ୍ଡବମାନେ ଅବଶ୍ୟ ଜଣଙ୍କ ପରେ ଜଣେ ଆସିଥିଲେ ମୋ' ସହିତ ଯୁଦ୍ଧ କରିବାପାଇଁ । କିନ୍ତୁ ସମସ୍ତେ ହୋଇଥିଲେ ପରାଜିତ । ମାତାଙ୍କୁ ଦେଇଥିବା କଥା ଅନୁସାରେ କାହାଙ୍କ ଉପରେ କରି ନ ଥିଲି ମାରକ ଆଘାତ । ପୂର୍ବ ଦିନମାନଙ୍କ ଭଳି ସେମାନଙ୍କୁ ଛାଡ଼ି ଦେଇଥିଲି କେବଳ କ୍ଷତାକ୍ତ କରି । ଯୁଧିଷ୍ଠିର ତ ନିଜକୁ ଏଭଳି ଅପମାନିତ ବୋଧ କଲେ ଯେ ଯୁଦ୍ଧଭୂମି ଛାଡ଼ି ଚାଲିଗଲେ ଶିବିରକୁ । ଆଉ ସେଦିନ ଫେରି ନାହାନ୍ତି ଯୁଦ୍ଧଭୂମିକୁ ।

ଯୁଦ୍ଧର ଘନଘଟା ମଧ୍ୟରେ ମଜ୍ଜି ରହିଥିବା ବେଳେ ଖବର ପାଇଲି, ପୁତ୍ର ବୃଷସେନ ଅର୍ଜୁନଙ୍କ ଦ୍ୱାରା ଆକ୍ରାନ୍ତ । ଜୀବନ ତାଙ୍କର ସଙ୍କଟାପନ୍ନ । ତଥାପି ଯୁଦ୍ଧଭୂମି ଛାଡୁ ନାହାନ୍ତି ସେ । ମତେ ତେଣୁ ଯାଇ ତାଙ୍କୁ ସହାୟତା ଦେବାକୁ ହେବ ।

ସାରଥିଙ୍କୁ ଆଦେଶ ଦେଲି, ''ତୁରନ୍ତ ରଥ ନିଅନ୍ତୁ ସେହି ସ୍ଥାନକୁ ଯେଉଁଠି ବୃଷସେନ ଅର୍ଜୁନଙ୍କ ସହିତ ଯୁଦ୍ଧରତ ।''

''ରଥ ତ ଚଳାଇନେବି ମୁଁ । କିନ୍ତୁ ତୁମେ କ'ଣ ତାଙ୍କୁ ଏକାକୀ ପାରିବ ଅଙ୍ଗରାଜ ? ଆଉ ତିନି ଚାରି ଜଣ ରଥୀଙ୍କୁ ସାଙ୍ଗରେ ନେଇଯାଅ ।'' ତାଙ୍କର ତାଚ୍ଛଲ୍ୟପୂର୍ଣ୍ଣ ବାଣୀ ।

''କାହିଁକି ପାରିବି ନାହିଁ ? ନିଶ୍ଚୟ ପାରିବି । ଆଜି ସାରା ଜଗତ ଦେଖିବ କର୍ଣ୍ଣାର୍ଜୁନ ଯୁଦ୍ଧ କି ଭୟଙ୍କର ? କିଏ ବେଶି ଶକ୍ତିଶାଳୀ ? କର୍ଣ୍ଣ ନା ଅର୍ଜୁନ ?''

''ତାଙ୍କ ପୁତ୍ର କିଶୋର ଅଭିମନ୍ୟୁଙ୍କୁ ବଧ କରିବାପାଇଁ ତୁମେ ଆଉ ଛଅରଥୀଙ୍କ ସହିତ ମିଶି ଯୁଦ୍ଧ କରିଥିଲ । ସେଥିପାଇଁ ଏପରି କହିଲି ।'' ଏହା କହି ହୋ ହୋ ହୋଇ ହସି ଉଠିଲେ ସେ । ଅବଜ୍ଞାର ଅଟ୍ଟହାସ । ମୋ' ବୀରତ୍ୱ ପ୍ରତି କ୍ରୂର ଆକ୍ଷେପ ।

"ମୁଁ ରଥୀ । ମୋ' ଆଦେଶରେ ହିଁ ରଥ ଚାଲିବ ।" କ୍ରୋଧିତ କଣ୍ଠରେ କହିଲି ।

"ତାହା ତ ନିଶ୍ଚୟ । ଖାଲି ପ୍ରଭଞ୍ଜନରେ ରଥ ଓଲଟି ନ ପଡ଼ିଲେ ହେଲା ।" ପୁଣି ତାଙ୍କର ତାଚ୍ଛଲ୍ୟଭରା କ୍ରୁର ଅଟ୍ଟହାସ । ମତେ ହୀନମ୍ମନ୍ୟତାରେ ବୁଡ଼ାଇ ଦେବାର ଚେଷ୍ଟା ।

"ହୁଁ ।" ଅବଜ୍ଞାର ହୁଙ୍କାର ମାରି ଗମ୍ଭୀର ଭାବରେ ବସିରହିଲି । ମଦ୍ରରାଜ ରଥ ବାହିନେଲେ ବୃଷସେନ-ଅର୍ଜୁନଙ୍କ ଯୁଦ୍ଧକ୍ଷେତ୍ରକୁ । ମତେ ଦେଖିବାମାତ୍ରେ ଅର୍ଜୁନ କ୍ରୋଧିତ କଣ୍ଠରେ କହିଲେ, "ହେ କର୍ଣ୍ଣ ! ତୁମେ ପରା ମହାବୀର ବୋଲି କରୁଛ ଗର୍ବ । ଅଥଚ ସେ ଦିନ ମୋ' ପୁତ୍ର କିଶୋର ଅଭିମନ୍ୟୁଙ୍କୁ ବଧ କରିଥିଲ ଅନ୍ୟ ଛଅଜଣ ରଥୀଙ୍କ ସହିତ ମିଶି । ପୁଣି ସେ ନିରସ୍ତ୍ର ଥିବା ଅବସ୍ଥାରେ । ତାହାର ପ୍ରତିଶୋଧ ଏବେ ନେଉଛି । ମୁଁ ଏକାକୀ ତୁମ ପୁତ୍ର ବୃଷସେନଙ୍କୁ ସଶସ୍ତ୍ର ଥିବା ଅବସ୍ଥାରେ ବଧ କରୁଛି । ପାରୁଛ ଯଦି ରକ୍ଷା କର ।" ଏହା କହି ସେ ଛାଡ଼ିଲେ ଏକ ଭୟଙ୍କର ମାରକ ବାଣ । ପ୍ରତିବାଣ ମୋର ହେଲା ବ୍ୟର୍ଥ । ସଙ୍ଗେ ସଙ୍ଗେ ବୃଷସେନ ଟଳିପଡ଼ିଲେ ନିର୍ଜୀବ ହୋଇ ।

ମୋରି ଆଗରେ ମୋ' ପ୍ରିୟ ପୁତ୍ରଙ୍କ ବୀରଗତି ହୋଇଗଲା । କିଛି କରିପାରିଲି ନାହିଁ । ଧିକ୍ ମୋ' ପିତୃତ୍ୱକୁ ! ଶତ ଧିକ୍ ମୋ' ବୀରତ୍ୱକୁ ! ଶତ ସହସ୍ର ଧିକ୍ ଦିଗ୍‌ବିଜୟ ମାଧ୍ୟମରେ ସଞ୍ଚିତ ହୋଇଥିବା ମୋର ପୁଞ୍ଜୀଭୂତ ଯଶକୁ ! ମନେ ମନେ ଭାବୁଥାଏ, ଆଜି ସକାଳେ ଆଉ ଟିକିଏ ଅଧିକ ସମୟ ପାଇଁ ହେଲେ ମୋ' ପ୍ରିୟ ପୁତ୍ରଙ୍କୁ ବାନ୍ଧି ରଖିଥାନ୍ତି ଆଲିଙ୍ଗନପାଶରେ । ଆଉ ଟିକିଏ ଅଧିକ ସମୟ ପାଇଁ ହେଲେ ପାଇଥାନ୍ତି ତାଙ୍କ ଅଙ୍ଗସ୍ପର୍ଶ । ତାଙ୍କ ଶିରକୁ ଆଘ୍ରାଣ କରି ତାହାରି ମାଧ୍ୟମରେ ହେଲେ କିଛି ଅଧିକ ସମୟ ପାଇଁ ଏକାକାର କରିଦେଇଥାନ୍ତି ଆମ ଦୁହିଁଙ୍କ ପ୍ରାଣକୁ । କିନ୍ତୁ ହାୟ ! ସେ ସୌଭାଗ୍ୟ ମୋ' ଜୀବନରେ କାହିଁ ? ମୁଁ ତ ଏକ ଚିରଉପେକ୍ଷିତ ଆବର୍ଜନାର ସ୍ତୂପ ! ତହିଁରେ ପଦ୍ମଫୁଲ ଫୁଟିବ ବା କିପରି ? ସେ ଆଶା କରିବି ବା କାହିଁକି ?

କିନ୍ତୁ ପରକ୍ଷଣରେ ମନକୁ ସ୍ଥିର କରିନେଲି । ମହାନ୍ କର୍ତ୍ତବ୍ୟ ପଡ଼ିଛି ମୋ' ଆଗରେ । ନିଭାଇବାକୁ ହେବ ତାହାକୁ । ଏଇ ନିଭାଇବା ମଧ୍ୟରେ ପୁତ୍ରହତ୍ୟାର ପ୍ରତିଶୋଧ ନେବାକୁ ହେବ । ଅର୍ଜୁନଙ୍କ ଆଡ଼େ କ୍ରୁଧିତ ନୟନରେ ଚାହିଁ ଆରମ୍ଭ କରିଦେଲି ପ୍ରଚଣ୍ଡ ଆକ୍ରମଣ । ତାଙ୍କର ମଧ୍ୟ ସମଧିକ ପ୍ରଚଣ୍ଡତା ସହିତ ପ୍ରତ୍ୟାକ୍ରମଣ । ମଧ୍ୟାହ୍ନ ହେଲା । ତାହା ଗଡ଼ିଯାଇ ଅପରାହ୍ନ ବି ହେଲା । ତାହା ପୁଣି ଗଡ଼ିଯିବାକୁ ବସିଲା । ତଥାପି ଯୁଦ୍ଧର ବିରାମ ନାହିଁ । ଉଭୟ ଆମେ ପ୍ରତିଜ୍ଞାବଦ୍ଧ ଆଜି ଶେଷ ଯୁଦ୍ଧଟି ଲଢ଼ିବା ପାଇଁ । ଉଭୟଙ୍କ ଶରୀର କ୍ଷତବିକ୍ଷତ । ଆମେ ଦୁହେଁ ରକ୍ତଜର୍ଜର ଦେହ ଧରି ଦୁଇଟି ଫୁଲଭରା ପଳାଶବୃକ୍ଷ ସମାନ ଦିଶୁଥିଲୁ । ପାରମ୍ପରିକ ଅସ୍ତ୍ରଗୁଡ଼ିକ ଛଡ଼ା ସକଳ ପ୍ରକାର ଦିବ୍ୟାସ୍ତ୍ରର ପ୍ରୟୋଗ ଚାଲିଛି

କେବଳ ବ୍ରାହ୍ମାସ୍ତ୍ରକୁ ଛାଡ଼ିଦେଇ । ଅସ୍ତ୍ର ପ୍ରୟୋଗର କ୍ଷିପ୍ରତା ସହିତ ସମତାଳ ରଖି ତାହାର ନିବାରଣ ପ୍ରକ୍ରିୟା ମଧ୍ୟ ସମଧିକ କ୍ଷିପ୍ର । ତଥାପି ଆମେ କେହି ପଛଘୁଞ୍ଚା ଦେଉ ନ ଥାଉ । ପରସ୍ପରକୁ କ୍ରୋଧିତ କରିବା ପାଇଁ ମଝିରେ ମଝିରେ ଚାଲିଥାଏ ପରସ୍ପର ପ୍ରତି ଆକ୍ଷେପପୂର୍ଣ୍ଣ ବାକ୍ୟବାଣର ପ୍ରୟୋଗ । ଅର୍ଜୁନଙ୍କ ବଳବିକ୍ରମକୁ ମୁଁ ବାକ୍ୟରେ ସିନା ପ୍ରକାଶ କରୁ ନ ଥାଏ । କିନ୍ତୁ ମନେ ମନେ କରୁଥାଏ ଖୁବ୍ ପ୍ରଶଂସା । ଯେତେହେଲେ ସେ ମୋ' ସହୋଦର ଅନୁଜ । ଅଜ୍ଞାତସାରରେ ମୋ' ରକ୍ତ ତାଙ୍କୁ ଯେଉଁ ଡାକ ଦେଉଛି କେମିତି ବା ତାହାକୁ ଦମନ କରିଥାନ୍ତି ମୁଁ ? ମୁଁ ଯେ ମଣିଷ । ପଥରରେ ତିଆରି ନୁହେଁ । ରକ୍ତ-ମାଂସରେ ଗଢ଼ା ମଣିଷ । ସ୍ୱାଭାବିକ ଅନୁଜପ୍ରେମକୁ କେମିତି ବା ଦୂରେଇ ଦେଇପାରିବି ? ଆଜି ଯଦି କୌରବପକ୍ଷରେ ନ ଥାନ୍ତି, ତେବେ ଏଇ ଅର୍ଜୁନଙ୍କୁ ତାଙ୍କ ବୀରତ୍ୱ ଲାଗି ବଧାଇ ଦେବାକୁ ଯାଇ ନେଇଥାନ୍ତି କୋଳେଇ । ଆଉ ଭାଲପଟରେ ଲେଖିଦେଇଥାନ୍ତି ଅଜସ୍ର ଚୁମ୍ବନର ସ୍ୱାକ୍ଷର । ଆଦରରେ ଆଘ୍ରାଣ କରିଥାନ୍ତି ଶିରକୁ । ଭାଗ୍ୟର ବିପର୍ଯ୍ୟୟରୁ ସିନା ତାହା ଆଜି ହୋଇପାରୁ ନାହିଁ । ଫଲ୍‌ଗୁ-ଧାରା ପରି ଅନ୍ତରରେ ବହୁଥିବା ସହଜାତ ଅନୁଜ ପ୍ରେମର ଧାରା ମତେ ଦ୍ରବିତ କରିଦେଉଥାଏ ଯେମିତି !

ମଝିରେ ମଝିରେ ନିଜ ସାରଥି ମଦ୍ରରାଜଙ୍କ ନିରୁତ୍ସାହ ବାଣୀ ମୋ' ବୀରତ୍ୱର ଆଭାକୁ ମଉଳାଇ ଦେଉଥାଏ ଆଶ୍ୱିନ ପ୍ରଭାତର ମଉଳା ଜହ୍ନ ଭଳି ! ଅଜ୍ଞାତରେ ମୁଁ ଯାଉଥାଏ ମଉଳି ମଉଳି ! ଧନୁର୍ବାଣ ଧରିଥିବା ଦୁଇ ହସ୍ତ ଶିଥିଳିତ !

କର୍ଣ୍ଣ ତା'ର କର୍ଣ୍ଣତ୍ୱକୁ ହରାଇ ବସୁଥାଏ ଧୀରେ ଧୀରେ !!

ଏଇ ଚିନ୍ତାରେ ଟିକିଏ ଅସାବଧାନ ହୋଇଗଲି । ତାହାରି ସୁଯୋଗରେ ଅର୍ଜୁନଙ୍କର ଏକ ତୀକ୍ଷ୍ଣ ବାଣ ମୋର ବାମ ବାହୁକୁ ବିଦ୍ଧ କଲା । ଅବଶ୍ୟ ବାଣଟିକୁ କାଢ଼ିଦେଲି ବଳପୂର୍ବକ । କିନ୍ତୁ ବାମ ବାହୁଟି କିଛି ସମୟ ପାଇଁ ହୋଇଗଲା ଦୁର୍ବଳ । ଖଡ଼୍‌ଗଯୁଦ୍ଧ ଅଥବା ଶୂଳଯୁଦ୍ଧ କରିବାପାଇଁ ବାହାରିଥିଲି । କିନ୍ତୁ ମୋ' ରଥଚକ୍ରଟି ଭୂମି ଭିତରେ ପଶିଗଲା । ଆଉ ଚଳିଲା ନାହିଁ । ସଙ୍ଗେ ସଙ୍ଗେ ମୋର ସକଳ ଦିବ୍ୟାସ୍ତ୍ରର ଜ୍ଞାନ ମଧ୍ୟ ଗଲା ପାସୋରି । ବୁଝିଗଲି, ଗୁରୁ-ବ୍ରାହ୍ମଣଙ୍କ ଦାରୁଣ ଅଭିଶାପ ଏବେ ଫଳିଲା । ଏହା ନିଶ୍ଚୟ ମୋ' ଜୀବନର ସଙ୍କଟମୟ ସମୟ । ଶଲ୍ୟ ଯେତେ ଚେଷ୍ଟା କଲେ ବି ରଥ ଆଉ ଚଳିଲା ନାହିଁ । ମୁଁ ତେଣୁ ନିରସ୍ତ୍ର ଅବସ୍ଥାରେ ଥାଇ ରଥରୁ ଅବତରଣ କଲି ଓ ରଥଚକ୍ରକୁ ଟେକିବାର କଲି ଚେଷ୍ଟା । କିନ୍ତୁ ସକଳ ଚେଷ୍ଟା ମୋର ବ୍ୟର୍ଥ ।

ଅର୍ଜୁନଙ୍କ ଉଦ୍ଦେଶ୍ୟରେ ଚିତ୍କାର କରି କହିଲି, ''ମୁଁ ବର୍ତ୍ତମାନ ନିରସ୍ତ୍ର । ତୁମେ କ୍ଷାନ୍ତ ହୁଅ ପାର୍ଥ । ରଥଚକ୍ରଟିକୁ ଟେକିଦିଏଁ । ତାହା ପରେ ଆମେ ଯୁଦ୍ଧ କରିବା ।''

ଅର୍ଜୁନ କ୍ଷାନ୍ତ ଅସ୍ତ୍ରପ୍ରହାରରୁ । ଦୁର୍ଦ୍ଧର୍ଷ ଗାଣ୍ଡୀବ ଟଙ୍କାର ନୀରବିତ । ମୁଁ ଅସ୍ତ୍ର ଧରିବା ଯାଏ ଅପେକ୍ଷା କରିଥାନ୍ତି । ବାସୁଦେବ କୃଷ୍ଣ କିନ୍ତୁ ତାଙ୍କ ଉପରେ ବିରକ୍ତ ହୋଇ କହିଲେ, ''ଏ ତୁମେ କ'ଣ କରୁଛ ପାର୍ଥ ? ବର୍ତ୍ତମାନ ହିଁ ଉପଯୁକ୍ତ ସମୟ କର୍ଣ୍ଣଙ୍କୁ ବୀରଗତି ଦେବା ପାଇଁ । ବୀର ହିସାବରେ ନିଜ କର୍ତ୍ତବ୍ୟ ପାଳନ କର । ଅସ୍ତ୍ରପ୍ରହାର କର । ଅବହେଳା କର ନାହିଁ । ଦୁର୍ବଳତା ଛାଡ଼ ।''

''ହେ ବାସୁଦେବ ! କର୍ଣ୍ଣ ଏବେ ନିରସ୍ତ୍ର । ନିରସ୍ତ୍ର ଅବସ୍ଥାରେ କେମିତି ମୁଁ ତାଙ୍କ ଉପରେ ପ୍ରହାର କରିବି ଅସ୍ତ୍ର ? ମୋ' ବୀରତ୍ୱର ଯଶଃରେ କଳଙ୍କ ଲାଗିବ । ଅଧର୍ମ ହେବ ।'' ଅର୍ଜୁନଙ୍କ ବାକ୍ୟରେ ମାନସିକ ଦ୍ୱନ୍ଦ୍ୱର ପ୍ରତିଫଳନ ।

''ହେ ବାସୁଦେବ ! ଅର୍ଜୁନ ଯାହା କହୁଛନ୍ତି ତାହା ଠିକ୍ କଥା । ନିରସ୍ତ୍ର ବ୍ୟକ୍ତି ଉପରେ ଅସ୍ତ୍ରପ୍ରହାର କରିବା ବୀରୋଚିତ ଧର୍ମ ନୁହେଁ ।'' ଅର୍ଜୁନଙ୍କୁ ସମର୍ଥନ କରି କହିଲି ।

''ହେ କର୍ଣ୍ଣ ! ଧର୍ମ କଥା ପୁଣି ଉଠାଉଛ କାହିଁକି ? ନିରସ୍ତ୍ର ଅଭିମନ୍ୟୁଙ୍କୁ ସପ୍ତରଥୀ ମିଶି ହତ୍ୟା କରିବା ପଛରେ କେଉଁ ଧର୍ମ ଥିଲା ? ଭୀମସେନଙ୍କୁ ବିଷମିଶ୍ରିତ ଖାଦ୍ୟ ଖୁଆଇବାରେ କେଉଁ ଧର୍ମ ହୋଇଥିଲା ପାଳିତ ? ବାରଣାବତରେ ଜତୁଗୃହ ନିର୍ମାଣ କରିବା, ପାଣ୍ଡବମାନଙ୍କୁ କପଟ ଦ୍ୟୂତକ୍ରୀଡ଼ାରେ ପରାସ୍ତ କରିବା, ପାଞ୍ଚାଳୀଙ୍କ ବସ୍ତ୍ରହରଣ ପାଇଁ ଉଦ୍ୟମ କରିବା ଆଦି ପଛରେ କେଉଁ ଧର୍ମ କାର୍ଯ୍ୟ କରୁଥିଲା ? ତୁମେ ପାପ କରିଥିଲ । ପାପର ପକ୍ଷକୁ ସମର୍ଥନ କରିଥିଲ ଏବଂ ଏବେ କରୁଛ ବି । ତାହାର ଫଳ ଭୋଗିବାକୁ ଗଲାବେଳେ ଧର୍ମର ନାମ ଉଠାଉଛ କାହିଁକି ?'' ତାଙ୍କ ଭାଷା ବଡ଼ ଓଜସ୍ୱିନୀ ଓ ତାଚ୍ଛଲ୍ୟରେ ଭରପୂର । ଓଠକଣରେ ବିଦ୍ରୂପର ହାସ୍ୟରେଖା । ସେଥିରେ ଖୁବ୍ ଉଦ୍‌ବୁଦ୍ଧ ହୋଇଉଠିଲେ ଅର୍ଜୁନ ।

କୃଷ୍ଣ ତାଙ୍କୁ ଲକ୍ଷ୍ୟ କରି ପୁଣି କହିଲେ, ''ଆଉ ଡେରି କର ନାହିଁ । ଶତ୍ରୁ ଦୁର୍ବଳ ଥିବା ଅବସ୍ଥାରେ ତା' ଉପରେ ଘାତକ ପ୍ରହାର କରିବା ଉଚିତ । ତୁରନ୍ତ ଅସ୍ତ୍ରପ୍ରହାର କର । ସମସ୍ତ ଦ୍ୱିଧାକୁ ଦୂରେଇଦିଅ ମନରୁ । ତୁମେ ଅର୍ଜୁନ । ଅନର୍ଜୁନ ହୁଅ ନାହିଁ ।''

ଉତ୍ସାହ ଓ ଉଦ୍ଦୀପନାରେ ଏବେ ସମୁଚ୍ଛଳ ଅର୍ଜୁନ । ଆଖି ଦୁଇଟିରେ ପ୍ରତିଶୋଧର ଦାବାନଳ । ସାରା ଅଙ୍ଗ ଥରିଉଠୁଛି କ୍ରୋଧରେ । ଝଞ୍ଜାର ଆଘାତରେ ଶ୍ୟାମଳ ବନସଭା ଯେମିତି । ଫୁଲିଲା ଫୁଲିଲା ନାସାପୁଟରେ ବାରମ୍ବାର ସ୍ଫୁରଣ । ଶ୍ୟାମଳ ମୁଖମଣ୍ଡଳରେ ରକ୍ତିମାର ଝଟକ ସେତେ ସ୍ପଷ୍ଟ ଜଣା ନ ପଡୁଥିଲେ ବି ତାହାର ଭଙ୍ଗୀ ସୂଚାଇ ଦେଉଛି କେତେ ଦୂର କ୍ରୁଦ୍ଧ ସେ । ତାଙ୍କ ସୌମ୍ୟ ମୂର୍ତ୍ତି ଯେ ଏଭଳି ଭୟଙ୍କର ହୋଇପାରେ ତାହା ଥିଲା ମୋର କଳ୍ପନାତୀତ । ଗାଣ୍ଡୀବ ଧନୁର ଗୁଣଟିକୁ କର୍ଣ୍ଣ ପର୍ଯ୍ୟନ୍ତ ଟାଣି ପ୍ରହାର କଲେ ଏକ ଭୟଙ୍କର ଘାତକ ଅସ୍ତ୍ର । ତାହା ମୋ' ବକ୍ଷ ଭେଦ କରି ବାହାରିଗଲା । ରଥଚକ୍ରକୁ

ଉଠାଇବାର ଉଦ୍ୟମ କରୁଥିବା ଅବସ୍ଥାରେ ଟଳିପଡ଼ିଲି । ଜୀବନ ମୋର ମରଣାପନ୍ନ । ଅଥଚ ସମସ୍ତଙ୍କ ଧାରଣା ମୁଁ ଶେଷନିଃଶ୍ୱାସ ଛାଡ଼ିଛି ।

ମନେ ମନେ ଆଶ୍ୱସ୍ତ ମୁଁ । ଯାହାହେଉ, ଆଉ କିଛି ସମୟ ପରେ ମୋର ହେବ ବୀରଗତି । ମାତା କୁନ୍ତୀଦେବୀଙ୍କୁ ଦେଇଥିବା ବଚନ ଏବେ ରହିଲା । ସେ ରହିଲେ ପଞ୍ଚପାଣ୍ଡବଙ୍କ ଜନନୀ ହୋଇ । ଷଷ୍ଠପାଣ୍ଡବର ଯେମିତି ଆବିର୍ଭାବ ହୋଇଥିଲା ଗୋପନରେ, ଠିକ୍ ସେମିତି ଗୋପନରେ ଆଜି ସେ ଚାଲିଯାଉଛି ଏ ଜଗତରୁ । ଆଃ ! କି ପରିତୃପ୍ତି ! ମା'ଙ୍କୁ ଦେଇଥିବା କଥାକୁ ବଶମ୍ବଦ ପୁତ୍ର ମୁଁ ରକ୍ଷା କରିପାରିଛି !

ମନ ଭାରି ଡାକୁଥାଏ, 'ଅନୁଜ ଅର୍ଜୁନ ଏଇ ମୁହୂର୍ତ୍ତରେ ମୋ' ପାଖକୁ ଟିକିଏ ଆସନ୍ତେ କି ! ତା' ହେଲେ ଯେଉଁ ହସ୍ତରେ ସେ ମତେ ଦେଇଛନ୍ତି ମରଣାନ୍ତକ ଆଘାତ, ତାହାକୁ ନେଇ କ୍ଷତସ୍ଥଳରେ ଚାପିଧରନ୍ତି ମୁଁ । ସେଥିରେ ପାଆନ୍ତି ଅନ୍ତିମ ଶାନ୍ତି । ଅପୂର୍ବ ଆଶ୍ୱାସ ! କିନ୍ତୁ ତାହା କ'ଣ ସମ୍ଭବ ? ସେ ତ ମୋର ବୀରଗତି ହୋଇଗଲା ବୋଲି ଧରିନେଇ ରଥ ଫେରାଇ ଚାଲିଯାଇଛନ୍ତି । ମଦ୍ରରାଜ ଶଲ୍ୟ ମଧ ସେଇ ଧାରଣାର ଅନୁବର୍ତ୍ତୀ ହୋଇ ଅଚଳ ରଥଟିକୁ ଛାଡ଼ି ଚାଲିଯାଇଛନ୍ତି । ଖାଲି ମୁଁ ପଡ଼ିରହିଛି ଏକାକୀ ଅର୍ଦ୍ଧଚେତନ ଅବସ୍ଥାରେ ସ୍ତୂପୀକୃତ ଶବ ମଧରେ ।

ଶବସ୍ତୂପର ଆବରଣକୁ ବହୁ କଷ୍ଟରେ ଆଡ଼େଇ ଦେଇ ଚାହିଁଲି । ଯୁଦ୍ଧକ୍ଷେତ୍ର ଏବେ ଶୂନ୍ୟ । ମୋର ପତନ ପରେ ଯୁଦ୍ଧ ଆପେ ଆପେ ବନ୍ଦ ହୋଇଯାଇଛି । ଅଦୂରରେ ଦିଶୁଛି ପିତାମହ ଭୀଷ୍ମଙ୍କ ଶରଶଯ୍ୟାର ସ୍ଥଳୀଟି । ସଶସ୍ତ୍ର ସୈନିକମାନେ ଜଗିରହିଛନ୍ତି ତାଙ୍କୁ । ଆକାଶକୁ ଚାହିଁଲି । ସୂର୍ଯ୍ୟ ଏବେ ବୁଡ଼ିବା ଉପରେ । ଅଥଚ ବୁଡୁ ନାହାନ୍ତି । ମତେ ଲାଗୁଥାଏ, ସତେ ଯେମିତି ଆଜି ଅସ୍ୱାଭାବିକ ଭାବରେ ବିଳମ୍ବ ହୋଇଯାଇଛି ତାଙ୍କ ଅସ୍ତଲଗ୍ନ ! ମନେ ପଡ଼ିଲା ଅତୀତ ଦିନର ସେଇ ଘଟଣାଟି ଯେଉଁ ଦିନ ମୋର ଆଦ୍ୟ ଗୁରୁ ଓ ପିତା ସୂର୍ଯ୍ୟଦେବ ମତେ କହୁଥିବା ଭଳି ଲାଗିଥିଲା "ପୁତ୍ର କର୍ଣ୍ଣ ! ତୁମେ ଶେଷ ଦାନ ନ ଦେବା ପର୍ଯ୍ୟନ୍ତ ମୁଁ ଅସ୍ତମିତ ହେବି ନାହିଁ ଆକାଶରୁ ।" କ'ଣ ସେଇଥିପାଇଁ ସେ ଅପେକ୍ଷା କରି ରହିଛନ୍ତି ଏପର୍ଯ୍ୟନ୍ତ ? ମୋର କ'ଣ ଶେଷ ଦାନ ଆହୁରି ଅଛି ବାକି ? ପୁଣି ଏ ମୁମୂର୍ଷୁ ଅବସ୍ଥାରେ ଆଉ କି ଦାନ ବା ଦେଇପାରିବି ଏ ଯୁଦ୍ଧଭୂମିରେ ? ଆଉ କ'ଣ ବା ଅଛି ନିଜର ହୋଇ ? ମନେ ମନେ ଖୁବ୍ ବ୍ୟସ୍ତ ହୋଇ ଉଠୁଥିଲି ।

ଏତିକିବେଳେ ଶୁଣିପାରିଲି କାହାଙ୍କର କାତର କ୍ରନ୍ଦନ ଧ୍ୱନି । କଣ୍ଠସ୍ୱରରୁ ଜଣା ପଡୁଥାଏ, ସେ ଜଣେ ବୃଦ୍ଧ ବ୍ୟକ୍ତି, କାନ ଡେରି ଶୁଣିଲି କ୍ରନ୍ଦନର କାରଣ ଜାଣିବା ପାଇଁ । ଦେହ ମୋର ଶକ୍ତିହୀନ । ତଥାପି ମନ ଚାହୁଁଥାଏ, ଏଇ ଅସହାୟ ବୃଦ୍ଧଜଣଙ୍କୁ କିଛି ହେଲେ ସାହାଯ୍ୟ କରନ୍ତି କେମିତି । ସେ କୁରୁକ୍ଷେତ୍ର ଦେଇ ଯାଇଥିବା ଚଲା ରାସ୍ତା ଧରି

ଆସୁଥାନ୍ତି । ଧୀରେ ଧୀରେ ପାଖକୁ ଆସିବା ଫଳରେ ସ୍ପଷ୍ଟ ଭାବରେ ଶୁଣିପାରିଲି ତାଙ୍କ କ୍ରନ୍ଦନସ୍ୱର । ଜାଣିପାରିଲି ସେ ଜଣେ ଯାଚକ ବ୍ରାହ୍ମଣ । ସୁଦୂର ଅଙ୍ଗଦେଶରୁ ଆସିଥିଲେ ମୋ'ଠାରୁ ଦାନଗ୍ରହଣ କରିବା ପାଇଁ । ଏଇ ଦାନ ନେଲେ ନିଜ କନ୍ୟାଙ୍କ ବିବାହ ସମ୍ପାଦନ କରିବେ । କିନ୍ତୁ ଏଠି ଆସି ଶୁଣନ୍ତି ଯେ ମୋର ଯୁଦ୍ଧରେ ହୋଇଯାଇଛି ବୀରଗତି । ତେଣୁ କାନ୍ଦି କାନ୍ଦି ଏବେ ଫେରିଯାଉଛନ୍ତି ସ୍ୱଗୃହକୁ । ବାରମ୍ବାର ବିଳାପ କରି କହୁଛନ୍ତି, ''ଦାନବୀର କର୍ଣ୍ଣ ତ ଚାଲିଗଲେ । ଆଉ କିଏ ମତେ ଦେବେ ମନଲାଖି ଦାନ । ଏ ଦରିଦ୍ର ବ୍ରାହ୍ମଣ କିପରି ବା କରିବ ତା' କନ୍ୟଙ୍କ ବିବାହ ? ସେ ଚିରଦିନ ଅନୂଢ଼ା ରହିଯିବେ ସିନା ! ହାୟ ରେ ବିଧାତା ! ହାୟରେ ମୋ' ଭାଗ୍ୟ !!

ମନରେ ମୋର ଗଭୀର ଇଚ୍ଛା । ଉଦଗ୍ର ଆଗ୍ରହ । ତାଙ୍କୁ କେମିତି ଡାକନ୍ତି । କିନ୍ତୁ କେମିତି ? ପାଟି ଯେ ଫିଟୁ ନାହିଁ ଭଲ କରି । ଏତେ ଅନୁଚ୍ଚ ସ୍ୱରରେ ଡାକିଲେ କ'ଣ ଶୁଣି ପାରିବେ ସେ ? ଚିତ୍ତ ତଳେ ମୋର ହତାଶା । ଦାନବୀର କର୍ଣ୍ଣ ବୋଲି ଏତେ ନାଁ ଜଗତରେ ! ଆଜି କ'ଣ ଏଇ ଶେଷ ଯାଚକ ଜଣକ ଫେରିଯିବେ ମୋ' ନିକଟରୁ ? ଏଇ ଅପଯଶ କ'ଣ ଲେଖାଥିଲା ମୋ' ଭାଗ୍ୟରେ ? ଲୁହ ଜମିଆସିଲା ଆଖିକଣରେ ।

ଶବସ୍ତୂପ ମଧ୍ୟରୁ ମୁଣ୍ଡ ଟେକିଲି ଆଉ ଟିକିଏ ଉପରକୁ । ଦେଖିପାରିଲି ପିତାମହଙ୍କୁ ଜଗି ରହିଥିବା ଜଣେ ରକ୍ଷୀକୁ । ଅକସ୍ମାତ୍ ସେ ଚାହିଁଦେଲା ମତେ । ଚିହ୍ନିପାରିଲା । ମୋର ବୀରଗତି ହୋଇ ନାହିଁ ବୋଲି ହେଲା ଆଶ୍ୱସ୍ତ । ହୁଏତ ଏଇ ସଂବାଦ ସେ ଦେଇଥାନ୍ତା ଅନ୍ୟମାନଙ୍କୁ । ତାହା ପରେ ଛୁଟିଥାନ୍ତେ ମୋ'ପାଖକୁ ଦଳ ଦଳ ହୋଇ ଦର୍ଶକମାନେ । ମତେ ଯୁଦ୍ଧଭୂମିରୁ ଟେକିନେଇ କରିଥାନ୍ତେ ଚିକିତ୍ସା । ସେ କିଛି କରିବା ପୂର୍ବରୁ ତା'କୁ ପାଖକୁ ଆସିବା ପାଇଁ କହିଲି । ସେ ଆସିଲା ଓ ଅଭିବାଦନ କଲା ମତେ । ସେନାପତି ହିସାବରେ ସେହି ଅଭିବାଦନକୁ ଗ୍ରହଣ କରିବାର ଶକ୍ତି ହରାଇ ବସିଥିଲି । କେବଳ ଶୁଖିଲା ହସ ହସିଥିଲି ମାତ୍ର । ତାହାକୁ ଗ୍ରହଣ କରିବାର ସେତିକି ବଳ ଛଡ଼ା ଆଉ ଅଧିକ ବଳ ନ ଥିଲା ମୋ' ପାଖରେ ।

ରକ୍ଷୀକୁ ହସ୍ତଦ୍ୱାରା ପୁଣି ସଂକେତ ଦେଲି ପଥଚାରୀ ଯାଚକ ବ୍ରାହ୍ମଣଙ୍କୁ ମୋ' ପାଖକୁ ଡାକିଆଣିବା ପାଇଁ । ମୁଁ ବଞ୍ଚିଛି ବୋଲି ଶୁଣି ଉତ୍କଣ୍ଠିତ ହୋଇ ବ୍ରାହ୍ମଣଜଣକ ଧାଇଁ ଆସିଲେ । ମୋର ଏଭଳି ଅବସ୍ଥା ଦେଖି ତରଳିଗଲେ ଦୟାରେ । ଇଚ୍ଛା କଲେ ନାହିଁ ଧନଯାଚନା କରିବାକୁ । ହାହାକାର ଧ୍ୱନି କରି ଆହୁରି ଅଧିକ କାତର ବିଳାପ କରିବାକୁ ଲାଗିଲେ ।

ତାଙ୍କୁ କହିଲି ଅନୁଚ୍ଚ ସ୍ୱରରେ, ''ହେ ବ୍ରାହ୍ମଣ ! ମୁଁ ଆପଣଙ୍କ ସବୁ କଥା ଶୁଣିଛି । କନ୍ୟାଙ୍କ ବିବାହ ଲାଗି ଧନ ଯାଚନା କରି ଆସିଥିଲେ ମୋ' ପାଖକୁ । ଏବେ ଫେରି ଯାଉଛନ୍ତି ହତାଶ ହୋଇ ।''

"ହେ ରାଜନ୍ ! ହେ ଦାନବୀର କର୍ଣ୍ଣ ! ତୁମର ତ ଏଭଳି ଅବସ୍ଥା । ଆଉ ଧନ ମାଗିବି କେମିତି ? ଭଗବାନ୍ କରନ୍ତୁ, ତୁମେ ଶୀଘ୍ର ଆରୋଗ୍ୟ ଲାଭ କର ।"

"ଧନ୍ୟବାଦ ଆପଣଙ୍କ ସଦିଚ୍ଛା ପାଇଁ । ମୁଁ ବର୍ତ୍ତମାନ ମୁମୂର୍ଷୁ ଅବସ୍ଥାରେ । ଆରୋଗ୍ୟ ହେବାର ସମ୍ଭାବନା ନାହିଁ । ଆପଣଙ୍କୁ ମୋର ଶେଷ ଦାନ ଦେବାପାଇଁ ଚାହୁଁଛି । ଏ ପର୍ଯ୍ୟନ୍ତ କୌଣସି ଯାଚକ ଫେରି ନାହାନ୍ତି କର୍ଣ୍ଣ ପାଖରୁ ନିରାଶ ହୋଇ । ଆପଣ ତେଣୁ ଫେରିଯିବେ ବା କିପରି ? ନିଅନ୍ତୁ ଏଇ ଶେଷ ଦାନ ।" ଏହା କହି ମୋ' ଦକ୍ଷିଣହସ୍ତରେ ଅନାମିକାଙ୍ଗୁଳିରେ ଥିବା ରତ୍ନମୁଦ୍ରିକାଟିକୁ କାଢ଼ି ତାଙ୍କୁ ଦେବାପାଇଁ ଚାହିଁଲି । କିନ୍ତୁ ପାରିଲି ନାହିଁ । ଅଙ୍ଗୁଳିଟି ଫୁଲି ଯାଇଥିଲା ହାତପାପୁଲିରେ ଗୋଟିଏ ସୂଚୀବାଣ ବିଦ୍ଧ ହୋଇଥିବା କାରଣରୁ । ମୁହୂର୍ତ୍ତକରେ ସ୍ଥିର କରିନେଲି ଉପାୟ । କଟିରୁ ଛୁରୀକାଖଣ୍ଡଟି କାଢ଼ି କାଟିଦେଲି ଅଙ୍ଗୁଳିକୁ । ସଙ୍ଗେ ସଙ୍ଗେ ବାହାରିପଡ଼ିଲା ରକ୍ତଜର୍ଜର ମୁଦ୍ରିକାଟି । ତାହାକୁ ବ୍ରାହ୍ମଣଙ୍କ ହସ୍ତରେ ବଢ଼ାଇଦେଇ ପ୍ରସନ୍ନ ମୁଖରେ କହିଲି, "ହେ ବ୍ରାହ୍ମଣ ! ନିଅନ୍ତୁ ଏଇ ମୋ' ମୁଦ୍ରିକାଟି । ଜଳଦ୍ୱାରା ଏଇ ଦାନ ତର୍ପିତ ହେବାର ସୁଯୋଗ ନାହିଁ । ତେଣୁ ମୋ' ରକ୍ତଦ୍ୱାରା ତର୍ପିତ ଏଇଟିକୁ ଗ୍ରହଣ କରନ୍ତୁ ଖୁସି ମନରେ ।"

ସେ ଦାନକୁ ଗ୍ରହଣ କଲେ ଏବଂ କହିଲେ, "ହେ ମହାଦାନୀ କର୍ଣ୍ଣ ! ମୁଁ ଖୁବ୍ ପ୍ରସନ୍ନ ତୁମର ଏଇ ଦାନରେ । ଆଶୀର୍ବାଦ ଦେବାପାଇଁ ଚାହୁଁଛି । କିନ୍ତୁ କି ଆଶୀର୍ବାଦ ଦେବି ? ଏଭଳି ଅବସ୍ଥାରେ ଦୀର୍ଘଜୀବୀ ହୁଅ, ବୋଲି ତ କହିପାରିବି ନାହିଁ । ତାହା ହେବ ମୂଲ୍ୟହୀନ । କ'ଣ କହିବି ଯଶସ୍ୱୀ ହୁଅ ବୋଲି ?"

"ନା, ବ୍ରାହ୍ମଣ ! ମୋର ସେ ସବୁ କିଛି ଲୋଡ଼ା ନାହିଁ । ମୁଁ ଚାହେ, ଯଦି ମୋର ଏଇ ଦାନରେ କିଛି ପୁଣ୍ୟ ଥାଏ, ତା'ହେଲେ ତାହାର ସୁଫଳ ଭୋଗ କରନ୍ତୁ ମୋ' ପରେ ଜଗତକୁ ଆସିବାକୁ ଥିବା ଅଗଣିତ ଦଳିତ-ମଥିତ ଓ ଅବହେଳିତ କର୍ଣ୍ଣମାନେ । ସେଇମାନଙ୍କ ଜୀବନର ସୁଖର ପ୍ରଦୀପଟିମାନ ଚିରଦିନ ଜଳୁଥାଉ ସୁଗନ୍ଧିତ ଶିଖା ତୋଳି । ଏଇ ଆଶୀର୍ବାଦ ଦିଅନ୍ତୁ ବ୍ରାହ୍ମଣ ।"

"ତଥାସ୍ତୁ ।" ଆଶୀର୍ବାଦ ଦେଇ ବ୍ରାହ୍ମଣ ଚାଲିଗଲେ ।

ଚିତ୍ତମନ ମୋର ଏବେ ଖୁବ୍ ସୁପ୍ରସନ୍ନ । ଯାହାହେଉ, ଶେଷ ନିଃଶ୍ୱାସ ଛାଡ଼ିବା ପୂର୍ବରୁ ମୋ' ଜୀବନ କାହାଣୀଟି ସାରିଦେଲି । ଖାଲି ସାରି ତ ଦେଲି ନାହିଁ । ଭବିଷ୍ୟତରେ ଯେଉଁ କର୍ଣ୍ଣମାନେ ଜନ୍ମ ନେବେ ସେମାନଙ୍କ ସୁଖମୟ ଜୀବନ ଲାଗି ରଖିଦେଇଗଲି ବ୍ରାହ୍ମଣଙ୍କ ଆଶୀର୍ବାଦ ଓ ମୋ' ଦାନକର୍ମର ପୁଣ୍ୟଫଳ । ସେମାନଙ୍କ ଆଗାମୀ କାଲି ଲାଗି ଉତ୍ସର୍ଗ କରିଦେଲି ମୋ' ଆଜିକୁ । ସେମାନଙ୍କ ଭୋଗର କାମନା କରି ସାରା ଜୀବନ ତ୍ୟାଗର ଅଗ୍ନିଶିଖାରେ ଜଳାଇଦେଲି ନିଜକୁ । ମୋ' ଜୀବନ-କାହାଣୀଟିକୁ ଶୁଣି ସେମାନଙ୍କ ମଧ୍ୟରୁ ଜଣେ କେହି ଯଦି ସଂଘର୍ଷ, ଅବମାନନା, ଅପମାନ ଓ ନିର୍ଯ୍ୟାତନାତ

ଊର୍ଦ୍ଧ୍ୱକୁ ଉଠି ସୁଖମୟ ଜୀବନ ବିତାଇବାର ଉଦ୍ୟମ କରନ୍ତି ଓ ତହିଁରେ ସଫଳ ହୁଅନ୍ତି, ତା'ହେଲେ ସେ ପୁରରେ ଥାଇ ମଧ ମୋ' ଆତ୍ମା ଚିର ଶାନ୍ତି ପାଇବ !

ସୂର୍ଯ୍ୟଦେବ ବୁଡ଼ିଯିବା ପୂର୍ବରୁ ତାଙ୍କ ପୀତଲୋହିତ ରଶ୍ମିରୁ ମୋଞ୍ଚାଏ ଆଣି ବୁଣି ଦେଉଛନ୍ତି ମୋ' ଭାଲଦେଶରେ । ବିଦାୟୀ ପୁତ୍ରକୁ ବିଦାୟୀ ପିତାଙ୍କର ଶେଷ ଚୁମ୍ବନ ଯେମିତି ।

ଆଃ ! କି ଶାନ୍ତି ! କି ମହାଶାନ୍ତି ! ପୁଣି ଏ ଅଶାନ୍ତ କୁରୁକ୍ଷେତ୍ର ବୁକୁରେ ! ଏଇ, ଆଖିପତା ମୋର ଚିରଦିନ ପାଇଁ ମୁଦି ହୋଇଯାଉଛି ଧୀରେ ଧୀରେ !





ସୁରେନ୍ଦ୍ରନାଥ ଶତପଥୀଙ୍କ ଜନ୍ମ ଅବିଭକ୍ତ କଟକ ଜିଲ୍ଲାସ୍ଥ (ଅଧୁନା ଜଗତ୍‌ସିଂହପୁର ଜିଲ୍ଲାସ୍ଥ) ବାଗଲପୁର ଗ୍ରାମରେ । ଶିକ୍ଷା ସମାପ୍ତି ପରେ ସେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗ ଦେଇ ସରକାରୀ କାର୍ଯ୍ୟରୁ ସେବାନିବୃତ୍ତ ହୁଅନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ଭାବରେ । ପ୍ରଶାସନିକ ସେବାରେ ଜଞ୍ଜାଳମୟ ପରିବେଶରେ ଥାଇ ମଧ୍ୟ ନିଜକୁ ନିୟମିତ ଭାବରେ ନିୟୋଜିତ କରାନ୍ତି ସାହିତ୍ୟ-ସେବାରେ ।

ଉଭୟ ସର୍ଜନାତ୍ମକ ଓ ଗବେଷଣାତ୍ମକ ପୁସ୍ତକମାନଙ୍କର ରଚୟିତା ସେ । ଏହି ଦୀର୍ଘ ବର୍ଷମାନଙ୍କର ସାଧନା ଫଳରେ ସୃଷ୍ଟି କରନ୍ତି ଅଜସ୍ର ସାହିତ୍ୟ-ସମ୍ଭାର । ସାହିତ୍ୟର ବିଭିନ୍ନ ବିଭାଗ, ଯଥା – କ୍ଷୁଦ୍ରଗଳ୍ପ, କବିତା, ପ୍ରବନ୍ଧ, ଉପନ୍ୟାସ, ଅନୁବାଦ ଆଦିକୁ ସ୍ପର୍ଶ କରିଛି ତାଙ୍କ କୃତିସମୂହ । ସେମାନଙ୍କର ବଳୟ ପରିବ୍ୟାପ୍ତ ସାହିତ୍ୟ, ଧର୍ମ, ସଂସ୍କୃତି, ଦର୍ଶନ, ଇତିହାସ, ସମାଜବିଜ୍ଞାନ, ପୁରାତତ୍ତ୍ୱ, ନୃତତ୍ତ୍ୱ ଆଦି ବିଭିନ୍ନ ଶୃଙ୍ଖଳା ପର୍ଯ୍ୟନ୍ତ । ପୌରାଣିକ ଉପନ୍ୟାସମାନ ରଚନା କରିବାରେ ବିଶେଷ ଭାବରେ ସିଦ୍ଧହସ୍ତ ସେ । ପୁରାଣ, ଇତିହାସ ଆଦିରେ ଥିବା ଇତିହାସର ଗୁଞ୍ଜରଣ ତଥା ଚିରନ୍ତନ ମାନବୀୟ ମୂଲ୍ୟବୋଧ ସମୂହର ଅନୁଲେପନକୁ ଆବିଷ୍କାର କରିବାରେ ଜଣେ ସମର୍ଥ ସାଧକ ।

ସାମଗ୍ରିକ ସାହିତ୍ୟିକ କୃତି ପାଇଁ ସେ ୧୯୯୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ସଂବର୍ଦ୍ଧିତ । ପୁନଶ୍ଚ ଉକ୍ତ ଏକାଡେମୀ ଦ୍ୱାରା ତାଙ୍କ କୃତ 'ମଛରା' ଉପନ୍ୟାସ ୧୯୯୭ ମସିହାର ଶ୍ରେଷ୍ଠ ଉପନ୍ୟାସ ଭାବରେ ପୁରସ୍କୃତ ।

